

*Jagata Darshanare Jagannatha*, the award-winning book is a study of the Jagannath cult in its sociological and philosophical context. It advances the view that the humanistic philosophy inherent in the cult has its origins in the community-oriented society of the Prearyan people and the early settlers. Guru Charan Patnaik quotes extensively from early Vedic, post-Vedic and Buddhist texts to prove his point. *Jagata Darshanare Jagannatha* with its profound scholarship, polemical force, logical subtlety, methodological rigour, historical hindsight and literary flavour is recognised as an outstanding contribution to Indian cultural studies in the Oriya Language.

—SAHITYA AKADEMI

# ଜଗତ ଦର୍ଶନରେ
# ଜଗନ୍ନାଥ

**କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ**

ଗୁରୁଚରଣ ପଟ୍ଟନାୟକ

ପ୍ରିୟଦର୍ଶୀ
ଅନନ୍ତ ଆଲୋକ
ଶଙ୍କର ପୁର, କଟକ

# JAGAT DARSHANARE JAGANATH

GURUCHARAN PATNAIK

# ଜଗତ ଦର୍ଶନରେ ଜଗନ୍ନାଥ

ଗୁରୁଚରଣ ପଟ୍ଟନାୟକ

ପ୍ରକାଶକ :
**ପ୍ରିୟଦର୍ଶୀ**
ଅନନ୍ତ-ଆଲୋକ, ଶଙ୍କରପୁର, କଟକ -୧୨
ପୁର୍ନମୁଦ୍ରଣ - **୧୯୯୭**

ଅକ୍ଷର ସଜ୍ଜା :
**ବିଟ୍ ମାଇକ୍ରୋ କମ୍ପ୍ୟୁଟର**
ଶକ୍ତିନଗର, କଟକ - ୧୨

ମୁଦ୍ରଣ :
**ଟେକ୍ନୋ ଆର୍ଟସ ଅଫସେଟ୍**
କଲ୍ୟାଣୀ ନଗର, କଟକ - ୧୩

ପ୍ରାପ୍ତିସ୍ଥାନ :
**ନବଯୁଗ ଗ୍ରନ୍ଥାଳୟ**
ବକ୍ସିବଜାର ରୋଡ୍, କଟକ -୧

ମୂଲ୍ୟ — **ଏକ ଶତ ଟଙ୍କା ମାତ୍ର**

# କାହିଁକି ଏ ପ୍ରେରଣା ?

ପ୍ରଥମରୁ କହିରଖେ, ଏ ପୁସ୍ତକଟି କୌଣସି ଏକ ଗବେଷକ, ଐତିହାସିକ ବା ଦାର୍ଶନିକ ଦୃଷ୍ଟିକୋଣରୁ ଲିଖିତ ନୁହେଁ । ତାହା ମୋର ପେସା କି ଉଦ୍ଦେଶ୍ୟ ନୁହେଁ । ଜଣେ ସାମାଜିକ, ରାଜନୈତିକ କର୍ମୀ ଭାବରେ ସବୁ ବିଷୟ ଜାଣିବା ବା ସବୁ ପଶ୍ନର ଉତ୍ତର ଖୋଜିବାରେ ଆଗ୍ରହ ଭିତରୁ ଏହାର ଆରମ୍ଭ । ଜଗତର ନାଥ ଭାବରେ, ଜଗତର ସମସ୍ତଙ୍କ ସହିତ ଜଗନ୍ନାଥ ଜଡ଼ିତ । ସେ ଦୃଷ୍ଟିରୁ ଜଗନ୍ନାଥଙ୍କଠାରୁ ବଳି ଜଗତରେ ଆଉ ଅଧିକ ଆଗ୍ରହପ୍ରଦ ମହତ୍ୱପୂର୍ଣ୍ଣ ଓ ପ୍ରୟୋଜନୀୟ ବିଷୟ କ'ଣ ଥାଇପାରେ ? କେଉଁ ଆଦିମ କାଳରୁ ଅନାଗତ ଭବିଷ୍ୟତ ଧରି ଯେପରି ମଣିଷର ବିସ୍ତାର, ସେହିପରି ଏପରି ପୌଣସି ବିଷୟ ନାହିଁ, ଯାହା ଜଗନ୍ନାଥ ଭାବ ପରିସରର ଅନ୍ତର୍ଭୁକ୍ତ ନୁହେଁ । ସେହି ଆଲୋଚନା ଅତି ଦୁରୂହ ଓ କଷ୍ଟସାଧ ହେଲେ ବି ସେ ଦିଗରେ ମାର୍ଗର ନିର୍ଣ୍ଣୟ ବିନା ଜଗନ୍ନାଥଙ୍କର ସନ୍ଧାନ ନାହିଁ ।

ଅତୀତ ଯଦି ସତ୍ୟରୁ କିଛି ପ୍ରଦାନ କରେ, ତେବେ ଭବିଷ୍ୟତ ତାହାଠାରୁ ଅଧିକ ସତ୍ୟକୁ ଲକ୍ଷିତ କରି ରଖେ । ତେଣୁ ମଣିଷର ଅଗ୍ରଗତି ନିର୍ଭର କରେ ସେହି ସତ୍ୟର ଅନ୍ୱେଷଣ ଉପରେ । ସେହି ଅତୀତ ଓ ଭବିଷ୍ୟତର ସମନ୍ୱୟ ହେଲେ ଜଗନ୍ନାଥ । ସେହି ସମନ୍ୱୟର ସଙ୍କେତ ଭାବରେ ତାଙ୍କର ଏହି ଅନୁଶୀଳନୀ ।

ସେ ଦିଗରେ ସବୁଠୁ ଗୁରୁତ୍ୱପୂର୍ଣ୍ଣ ହେଉଛି ମଣିଷର ବିଚାରର ମାନ, ତାର ତଉଲ କରିବାର ପ୍ରଣାଳୀ । ଅତୀତକୁ ବର୍ତ୍ତମାନର ସ୍ତର, ମାନ ଓ ନିକିତିରେ ତଉଲିବା ଯେପରି ସମ୍ଭବ ନୁହେଁ, ସେହିପରି ବର୍ତ୍ତମାନକୁ ଅତୀତର ମାନ, ସ୍ତର ବା ମାଗୁଣିରେ ମାପିବାକ ଯିବା ହାସ୍ୟାସ୍ପଦ । ତଦ୍ଧାରା ଅତୀତର ଅଚଳନ୍ତି ଧାରଣା ଓ ବିଶ୍ୱାସ, ଭବିଷ୍ୟତକୁ ବାନ୍ଧି ଧରେ, ତା'ର ଗତିକୁ ପ୍ରତିରୋଧ କରେ ।

ଦ୍ୱିତୀୟରେ, ଅତୀତର ଅବଦାନକୁ ଯେତେ ସ୍ୱୀକାର କଲେ ବି ଭବିଷ୍ୟତ ପ୍ରତି ମଣିଷର ଦାୟିତ୍ୱ ଓ କର୍ତ୍ତବ୍ୟବୋଧ ତାହାଠାରୁ ସର୍ବଦା ଅଧିକ । ଅଲଙ୍ଘନୀୟ ଭବିଷ୍ୟତର ସେହି ଦାବୀ । ଅତୀତ ଗଲାଣି, ତାହାଠାରୁ କେବଳ ଶିକ୍ଷାର ନେଇହେବ, ତାକୁ ଆଉ ବଦଳାଇବା ବା ଗଢ଼ି ହେବନାହିଁ । କିନ୍ତୁ ଆସୁଛି ଭବିଷ୍ୟତ । ତାହାଲାଗି

ଆଗକୁ ଅନାଇବାକୁ ହେବ, ଯେହେତୁ ଗଢ଼ିବାକୁ ହେବ ତାକୁ । ତେଣୁ ଜଗନ୍ନାଥଙ୍କ ଆଲୋଚନା ଇତିହାସର ନିରବଚ୍ଛିନ୍ନ ସ୍ରୋତରେ କେବଳ ଅତୀତର ଅନାବରଣ ନୁହେଁ, ତାର ଭବିଷ୍ୟତର ନିୟନ୍ତ୍ରଣ ମଧ୍ୟ— ଯାହାକି ଧର୍ମବିଶ୍ୱାସ ଦ୍ୱାରା ସଦା ଉପେକ୍ଷିତ । ସେହିମାନେ ଜଗନ୍ନଥଙ୍କ ଅନାବରଣକୁ ଯମଭଳି ଭୟ କରନ୍ତି, ଯାହାଙ୍କର ଭବିଷ୍ୟତ ଜଗନ୍ନାଥଙ୍କର ଜାଗତିକ ଦୀପ୍ତିର ଆଲୋକରେ ଚିର ଅନ୍ଧକାରମୟ ।

ଏହି ଲେଖାର ପରିକଳ୍ପନା ଏକ ବିଶେଷ ଅବସ୍ଥାରୁ ଉଦ୍ଭୂତ । ତାହାର ଜନ୍ମ, ସେହି ଜଗନ୍ନାଥ ମନ୍ଦିରରୁ । ମନ୍ଦିରରୁ ଚୂନ କିଛିଟା ଛଡ଼ା ହେଲା ପରେ ତାକୁ ଦେଖି, ଦିନେ ଭାଇ ଅନନ୍ତ ପଟ୍ଟନାୟକଙ୍କ ସହିତ ତାର କାରୁକାର୍ଯ୍ୟ ଏବଂ ତାର ଐତିହାସିକ ତାତ୍ପର୍ଯ୍ୟ ନେଇ ଆଲୋଚନା କଲା ଭିତରେ ହଠାତ୍ ମନରେ ଉଠିଲା, ଯଦି ଜଗନ୍ନାଥଙ୍କ ଦେହରେ ବୋଳା ହୋଇଥିବା ଧର୍ମର ସବୁ ପ୍ରଲେପକୁ ପୋଛି ପରିଷ୍କାର କରି ଦିଆଯାଆନ୍ତା, ତେବେ ଜଗନ୍ନାଥ ତାଙ୍କର ନିଜସ୍ୱ ରୂପରେ କିପରି ପ୍ରକାଶ ପାଆନ୍ତେ ? କ'ଣ ତାଙ୍କର ସେହି ନିର୍ମଳ, ଅନାବିଳ ରୂପର ସୂଚନା, କ'ଣ ତାର ଭାବର ତାତ୍ପର୍ଯ୍ୟ ଏବଂ ତାର ସେଇ ଜୀବନର ସନ୍ଦେଶ ? ଭାଇ କଥାଟାକୁ ସାଙ୍ଗେ ସାଙ୍ଗେ ଓଲଟାଇ ଦେଇ କହିଲେ, ''ତୁ ନିଜେ ଲେଖୁନୁ, କହୁଛୁ କାହାକୁ ?'' ସେ ଦିନ କଥାଟା ସେତିକି ରହିଯାଇଥିଲା ।

ଭାଇ ଚାଲିଗଲା ପରେ, ତାଙ୍କର ସ୍ମୃତି ସବୁ ଉଙ୍କି ମାରିବାରେ ଲାଗିଲେ । ସେ ଦିନର ସେଇ କଥାର ଗୁରୁତ୍ୱ ମୋ ପକ୍ଷରେ ବହୁଗୁଣ ବଢ଼ିଗଲା । ଜୀଇଲା ଲୋକଙ୍କୁ ଫାଙ୍କି ଦିଆଯାଇ ପାରେ, ମୃତଲୋକ କ୍ଷେତ୍ରରେ ମଣିଷ ନିଜେ ଫାଙ୍କି ହୋଇଯାଏ । ଏବେ ତାଙ୍କର ସେଇ ଅପୂର୍ଣ୍ଣ ଇଚ୍ଛା ଏକ ଅଲଙ୍ଘନୀୟ ନିର୍ଦ୍ଦେଶରେ ପରିଣତ ହେଲା । ଏଥିପୂର୍ବରୁ ଏକ ପ୍ରବନ୍ଧରେ ସେହି କର୍ତ୍ତବ୍ୟ ପୂରା କରିବାର ଚେଷ୍ଟା କରିଥିଲି । ତାକୁ ଲେଖିଲା ପରେ ଦେଖିଲି, ସେଥିରେ ଆଲୋଚିତ ପ୍ରଶ୍ନର ଉତ୍ତର ତୁଳନାରେ ଉତ୍ଥାପିତ ପଶ୍ନର ସଂଖ୍ୟା ବହୁଗୁଣ ଅଧିକ, କାରଣ ଜନନ୍ନାଥଙ୍କର ଆଲୋଚନାର ଅର୍ଥ ଜଗତର ଯାବତୀୟ ପ୍ରଶ୍ନର ବିଚାର ।

ଏସବୁ ସାଙ୍ଗକୁ ଜଗନ୍ନାଥଙ୍କ ସହିତ ମୋର ନିଜର ଗୋଟାଏ ସମ୍ପର୍କ ରହିଛି, ଅତି ପିଲାଦିନୁ, ୧୩ ବର୍ଷ ବୟସରୁ । କହିବାକୁ ଗଲେ, ତାଙ୍କରି ମନ୍ଦିରୁ ହିଁ ମୋର ରାଜନୈତିକ ଜୀବନଯାତ୍ରାର ଆରମ୍ଭ । ସ୍କୁଲ ଛାଡ଼ି ଯଦିଓ ମୁଁ କଟକରେ ୧୯୩୦-୩୨ ଆନ୍ଦୋଳନରେ ଯୋଗ ଦେଲି, କିନ୍ତୁ ମୋର କର୍ମକ୍ଷେତ୍ର ଥିଲା ପୁରୀ । ପୁଲିସ ଭୟରେ ସେତେବେଳେ କଂଗ୍ରେସବାଲାଙ୍କୁ କେହି ଠାବ ଦିଅନ୍ତି ନାହିଁ, ତେଣୁ ଜଗନ୍ନାଥ ହେଲେ ଆଶ୍ରୟ । ଗୋଟିଏ ସମୟରେ ମନ୍ଦିର ଥିଲା କର୍ମୀମାନଙ୍କ କାର୍ଯ୍ୟର କେନ୍ଦ୍ରସ୍ଥଳୀ । ସେ ଆଉ ଏକ ଇତିହାସ । ସେତିକିବେଳେ ଜଗନ୍ନାଥଙ୍କ ସହ ବହୁଦିନ କଟାଇବାର ସୁଯୋଗ ମିଳିଛି, ତାଙ୍କୁ ନିକଟରୁ ଦେଖିବା, ପାଖରୁ ଡାକିବା ସୁବିଧା ପାଇ କେତେ କରଯୋଡ଼ି ନିକଟରୁ ଦେଖିବା, ପାଖରୁ ଡାକିବା ସୁବିଧା ପାଇ କେତେ

କରଯୋଡ଼ି ଜଣାଇଛି । ସମସ୍ତଙ୍କ ଭଳି ଆଖିବୁଜି ତାଙ୍କ ଦେଖିବାକୁ ଚାହିଁଛି, ଜାଣିବାକୁ ବସଛି ବିଶ୍ୱାସ ଭିତରେ, ଏବଂ ତାଙ୍କୁ ନିଜର କାମନା ପୂରଣରେ ଲଗାଇବାରେ ପ୍ରୟାସ କରିଛି ଭକ୍ତିର ବଳରେ । କିନ୍ତୁ ଆଜି ତାର ବାଷଠି ବର୍ଷ ପରେ, ଜୀବନଯାତ୍ରାର ଶେଷ କାଳରେ ଚେଷ୍ଟା କରିଛି ଜଗନ୍ନାଥଙ୍କୁ ଆଖିଖୋଲି ଦେଖିବା ପାଇଁ, ବୁଝିବା ପାଇଁ ଜଗତର ବିବର୍ତ୍ତନ ଭିତରେ ଏବଂ ପାଇବା ପାଇଁ ଜାଗତିକ ବାସ୍ତବତାର ରୂପାୟନ ମଧ୍ୟରେ । ତାହା ଅନ୍ୟ ସମସ୍ତଙ୍କର ଗତାନୁଗତିକ ମାର୍ଗଠାରୁ ସମ୍ପୂର୍ଣ୍ଣ ଭିନ୍ନ । କାରଣ ଏହା କୌଣସି ବ୍ୟକ୍ତିଗତ ବିଶ୍ୱାସ ନୁହେଁ, ସାର୍ବଜନୀନ ଅଭିଜ୍ଞତା । ମୁଁ ଯାହା ଦେଖିବି, ବୁଝିବି ଓ ପାଇବି— ତାର ଅଧିକାରୀ ସମସ୍ତେ । ପ୍ରତ୍ୟେକ ତାହା ଦେଖିପାରନ୍ତି, ବୁଝିପାରନ୍ତି ଓ ପାଇପାରନ୍ତି । ସମସ୍ତେ ତାଙ୍କୁ ପାଇ ପାରିଲେ, କେବଳ ମୁଁ ତାଙ୍କୁ ପାଇ ପାରିବି । ତଦ୍ୱାରା ମୋର ସେହି ସତ୍ୟତା ଯେପରି ପ୍ରମାଣିତ ହେବ, ସେହିପରି ଅନ୍ୟଦିଗରେ ଜଗନ୍ନାଥ ମଧ୍ୟ ଏକ ବିଶ୍ୱାସରୁ ବାସ୍ତବତାରେ ରୂପାନ୍ତରିତ ହେବେ ।

ଜଗନ୍ନାଥଙ୍କ ଦ୍ୱାରା ଜଗତକୁ ପାଇବା ଏବଂ ଜଗତକୁ ପାଇବା ଭିତରେ ଜଗନ୍ନାଥଙ୍କୁ ପାଇବା— ଏ ଦୁଇଟି ବିପରୀତ ମାର୍ଗ । ଗୋଟିଏ ବିଶ୍ୱାସ ହେଲେ ଅନ୍ୟଟି ବାସ୍ତବତାର କ୍ରମାଗତ ଅନୁସନ୍ଧିତ୍ସା । ଏହି ଦୁଇପଥ ଯେପରି ଜଗରେ ପ୍ରଚଳିତ, ସେହିପରି ତାହା ପ୍ରତିଫଳିତ ଜଗନ୍ନଥଙ୍କଠାରେ । ଗୋଟିଏ ଜଗନ୍ନାଥ ଧର୍ମ ହେଲେ ଅନ୍ୟଟି ଜଗନ୍ନାଥ-ଭାବ । ଅବସ୍ଥାଚକ୍ରରେ ଧର୍ମର ବରାବର ପରିବର୍ତ୍ତନ ଘଟୁଥିଲାବେଳେ, ଭାବ କିନ୍ତୁ ତାଙ୍କର ସ୍ୱଭାବଜ, ସହଜାତ—ତାର ପରିବର୍ତ୍ତନ ନାହିଁ । ସେହି ଭାବର ସୌରଭର ସଞ୍ଚାରଣ ତାର ସ୍ୱଭାବର ପ୍ରସ୍ଫୁଟନରେ ସମ୍ଭବ କେବଳ ।

ଜଗନ୍ନାଥଙ୍କ ଆଲୋଚନା ଲାଗି ଜଗତଯାକର ସବୁ ପାଠ ଲୋଡ଼ା । ନୃତତ୍ତ୍ୱଠାରୁ ଭାଷାତତ୍ତ୍ୱ, ପ୍ରାଣୀ ଓ ପଦାର୍ଥ ବିଜ୍ଞାନରୁ ଅନ୍ତରୀକ୍ଷ ବିଜ୍ଞାନ ଏବଂ ଅଣୁ ବୀକ୍ଷଣରୁ ଦୂରବୀକ୍ଷଣଯାଏ ସବୁକିଛି ଆବଶ୍ୟକ । ବିଜ୍ଞାନର ବିକାଶରେ ସବୁ ଦେବତାଙ୍କର ବିଲୟ ଘଟୁଥିଲାବେଳେ ବିକଶିତ ହୁଅନ୍ତି ଏକମାତ୍ର ଜଗନ୍ନାଥ । ତାହା ପ୍ରମାଣ କରେ ତାଙ୍କର ଜାଗତିକ, ଭୌତିକ ବାସ୍ତବତାକୁ । ତେଣୁ ଜାଗତିକ ଭୌତିକତା ଛଡ଼ା ତାଙ୍କର ବିଚାରର ଅନ୍ୟ କୌଣସି ବାସ୍ତବ ମାଧ୍ୟମ ନାହିଁ । ମଣିଷର ମାତୃଭାଷାରୁ ତାର ଜାତୀୟତା ଓ ଜନ୍ମସ୍ଥାନର ସୂଚନା ମିଳିଲା ଭଳି ଜଗନ୍ନାଥଙ୍କର ପରିଚୟ ମିଳେ, ତାଙ୍କର ଦୈନନ୍ଦିନ ଜୀବନ ସହିତ ଜଡ଼ିତ ଶବ୍ଦାବଳୀରୁ । ତାଙ୍କର ସେହି ଶବ୍ଦତତ୍ତ୍ୱ ଓ ଭାଷାତତ୍ତ୍ୱ କହିଦେବ ଜଗନ୍ନାଥ କେତେ ଅଂଶରେ ଅଷ୍ଟ୍ରିକ, ଦ୍ରାବିଡ଼ ବା ଆର୍ଯ୍ୟବଂଶଜ । କେଉଁ ସଭ୍ୟତା ସଂସ୍କୃତି ଭିତର ଦେଇ ସେ ବଢ଼ିଛନ୍ତି । ଏହିପରି ବିଭିନ୍ନ ଦିଗରୁ ସେ ସବୁର ଆଲୋଚନା ସମ୍ଭବ ନ ହେଲେ ବି, ଜଗନ୍ନାଥଙ୍କୁ ତାଙ୍କର ସେହି ମୂଳ ଜାଗତିକ ବାସ୍ତବତା ଦୃଷ୍ଟିରୁ ଦେଖିବାର ଉଦ୍ୟମ ହୋଇଛି ।

ଭାରତୀୟ ଚିନ୍ତାରାଜ୍ୟରେ ଭୌତିକ ବାସ୍ତବତାର ଭିତ୍ତି ରଚନା କରିବାରେ ଯେଉଁମାନେ ଅଗ୍ରଣୀ ଓ ପ୍ରତିଷ୍ଠିତ, ସେମାନଙ୍କ ଭିତରୁ ବିଶେଷକରି ଗବେଷକ ଡି. ଡି. କୋସାମ୍ବି, ଦାର୍ଶନିକ ଦେବୀପ୍ରସାଦ ଚଟ୍ଟୋପାଧ୍ୟାୟ ଓ ଐତିହାସିକ ଆର୍. ଏସ୍. ଶର୍ମା ଆଦିଙ୍କର ବିଚାର ଆଲୋଚନା ବହୁ କ୍ଷେତ୍ରରେ ଏ ଲେଖାର ଆଧାର ହୋଇଛି । ଯେଉଁମାନଙ୍କର ଅବଦାନରେ ଏ ପୁସ୍ତକଟି ପରିପୁଷ୍ଟ, ଲେଖକ ସେ ସମସ୍ତଙ୍କ ନିକଟରେ ନିଜର କୃତଜ୍ଞତା ଜ୍ଞାପନ କରେ ।

ଏହାର ପାଣ୍ଡୁଲିପିଟିକୁ ଆମୂଳଚୂଳ ପଢ଼ି ନିଜର ସମାଲୋଚନା ଓ ପରାମର୍ଶ ଦ୍ୱାରା ସାହାଯ୍ୟ କରିଥିବାରୁ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ଗୋବିନ୍ଦଚନ୍ଦ୍ର ମହାନ୍ତି ବିଶେଷ ଧନ୍ୟବାଦାର୍ହ ।

ଯାହାଙ୍କ ସାହାଯ୍ୟ ବିନା ଏହି ପାଣ୍ଡୁଲିପିଟି ମୂଳରୁ ପ୍ରସ୍ତୁତ ହୋଇପାରି ନ ଥାନ୍ତା, ସେହିପରି ଏକ ସାଧାନାତୀତ କାର୍ଯ୍ୟର ସମାଧାନ ଲାଗି ଶ୍ରୀମତୀ ମିନିକା ପଟ୍ଟନାୟକଙ୍କର ସହଯୋଗ ଯଥାର୍ଥରେ ସ୍ୱୀକାର୍ଯ୍ୟ ।

ଶେଷରେ କେତେକ ବିଶେଷ ତ୍ରୁଟି ଯୋଗୁଁ ଶୁଦ୍ଧିପତ୍ର ପ୍ରତି ଯଥାଯଥ ଦୃଷ୍ଟି ଦେବାଲାଗି ପାଠକମାନଙ୍କୁ ଅନୁରୋଧ । ଏଥିରେ ସୂଚିତ ସବୁ ସୂକ୍ତ ଓ ଶ୍ଳୋକର ସମ୍ପୂର୍ଣ୍ଣ ଉଦ୍ଧାର ସମ୍ଭବ ନ ହେଲେ ମଧ୍ୟ କେତେକ ଗୁରୁତ୍ୱପୂର୍ଣ୍ଣ ଉଦ୍ଧୃତିକୁ ଏଡ଼ି ଦିଆଯାଇ ନପାରେ । ତାହା ପରିଶିଷ୍ଟରେ ରହିଛି ।

ମୁଁ କହୁନାହିଁ ଯେ ସମସ୍ତେ ଏଇ ଆଲୋଚନାକୁ ଗ୍ରହଣ କରନ୍ତୁ । ମୋର ଏକମାତ୍ର ଅନୁରୋଧ, ପ୍ରତ୍ୟେକେ ସ୍ୱାଧୀନ ଭାବରେ ଚିନ୍ତା କରନ୍ତୁ । ଶେଷରେ ଯୁବକମାନଙ୍କ ପ୍ରତି ସେହି ଶହୀଦ ଭଗତସିଂହଙ୍କ ବାଣୀ ଉଦ୍ଧାର କରି ମୁଁ ମୋର ବକ୍ତବ୍ୟ ସାଙ୍ଗ କରିବାକୁ ଚାହେଁ ।

"Please do not read it, to follow blindly; and take it for granted what is written in it. Read it, criticise it, think over it, try to formulate your own ideas with its help."

- ଗୁରୁଚରଣ ପଟ୍ଟନାୟକ

୨୫ । ୧୦ ।୧୯୯୨



# ସୂଚୀ

# ପ୍ରଥମ ପର୍ବ

## ବିପରୀତ ଦୃଷ୍ଟିରେ :

କଦବା କେହି କାହାକୁ ହତ୍ୟା କରେ । କିନ୍ତୁ, ମଣିଷ ମାତ୍ରେ ସବୁ ସମୟରେ ଜଗନ୍ନାଥଙ୍କୁ ହତ୍ୟା କରିବାରେ ଲାଗିଛନ୍ତି । ସେ ପୁଣି ହେଉଛନ୍ତି ପରମାତ୍ମା । ପରମାତ୍ମା ହତ୍ୟା ? ଶୁଣିଲାମାତ୍ରେ ଲୋକ ଚମକି ପଡ଼ିବ । କିଏବା ତୋବା ତୋବା କହି କାନରେ ହାତ ଦେବ, କିଏବା କଥାଟାକୁ ହସରେ ଉଡ଼ାଇ ଦେବେ । ସମସ୍ତେ ଭାବିବେ ଏଇଟା ଗୁଲିଖଟି ଗପକୁ ବଳିଗଲା । ଯେଉଁଠି ସାଧାରଣ ଆତ୍ମା 'ନ ହନ୍ୟତେ', ସେଠି ପୁଣି ପରମାତ୍ମାଙ୍କ ହତ୍ୟା, ଏ ଏକ ବଦ୍ଧ ପାଗଳର ଗୋଟାଏ ଅବାଧ ପ୍ରଳାପ । ଲୋକ ଯେତେ ନାସ୍ତିକ, ଯେଡ଼େ ପାପିଷ୍ଠ ହେଲେ ବି ଏମିତି ପାପାତ୍ମା ନାହିଁ, ଯିଏ ସେ ହତ୍ୟା କଥା ସ୍ୱପ୍ନରେ ସୁଦ୍ଧା ଭାବିବାକୁ ସାହସ କରିବ, ତୁଣ୍ଡରେ ଧରିବା ତ ଦୂରର କଥା । ସୂର୍ଯ୍ୟ ଭିତରେ ଅନ୍ଧାରକୁ ଅଣ୍ଡାଳିଲା ଭଳି ଏ ଏକ ନିର୍ବୋଧ ପ୍ରୟାସ । କଥାଟା କିନ୍ତୁ ନିରାଟ ସତ୍ୟ । ତାର ପତ୍ୟକ୍ଷ ପ୍ରମାଣ ସେଇ ମଣିଷ, ତାର ନିଜର ଦୟନୀୟ ଅବସ୍ଥା ।

ମଣିଷ ଯେଉଁ ଯୁଗର, ଯେଉଁ ଜାତିର, ଯେଉଁ ଦେଶ ବା ଧର୍ମର ହେଉ ପଛେ, ସେ ଆଜନ୍ମରୁ ଆପଣାର ଆତ୍ମାକୁ ଖୋଜିବାରେ ଲାଗିଛି । ସେ ଦିଗରେ ତାର ଟିକିଏ ହେଲେ ବିଶ୍ରାମ ନାହିଁ । ପୃଥିବୀ ସାରା ଘୂରିବା, ଅରଣ୍ୟରେ ବୁଲିବା, ଧ୍ୟାନରେ ବୁଡ଼ିବା, କଳ୍ପନାରେ ଉଡ଼ିବା, ନିଆଁରେ ପୋଡ଼ିବା ଏବଂ ଶେଷରେ ଆହାର ଛାଡ଼ି ଆଧିଆ ପଡ଼ିବା ଆଦି କୌଣସି ମାର୍ଗ ବାକି ରଖିନାହିଁ । ଏମିତିକି ଅଣୁବୀକ୍ଷଣର ସାହାଯ୍ୟରେ ଅଣୁର ଅନ୍ତକୁ ଦରାଣ୍ଡିବାଠାରୁ, ଦୂରବୀକ୍ଷଣ ସାହାଯ୍ୟରେ ଅନ୍ତରୀକ୍ଷ ଅନ୍ତରକୁ ନିରୀକ୍ଷଣ କରିବାଯାଏଁ, ବିଶ୍ୱର ପ୍ରତ୍ୟେକ କୋଣକୁ ମଣିଷ ମନ୍ଥିବାରେ ଲାଗିଛି । ତା ସତ୍ତ୍ୱେ ଆତ୍ମାର ଆବିଷ୍କାର ଦିଗରେ ସେ ତାର ଉଦ୍ୟମର ଆରମ୍ଭରେ ଯେଉଁଠି ଥିଲା, ଏବେବି ସେଇଠି । କାରଣ ମଣିଷ ଆତ୍ମାର ଅନ୍ୱେଷଣ କରେ ପରମାତ୍ମାର ହତ୍ୟାର ପଥରେ । ପରମାତ୍ମା ଯଦି ସର୍ବବ୍ୟାପୀ, ସକଳ ଆତ୍ମାର ସର୍ବୋଚ୍ଚ, ସର୍ବଉତ୍କୃଷ୍ଟ ସମଷ୍ଟିର ପରମ ଅଭିବ୍ୟକ୍ତି ହୁଏ, ତେବେ ସେଇ ଅଭିବ୍ୟକ୍ତିର ହତ୍ୟାରେ କିପରିବା ମଣିଷ ନିଜର ଆତ୍ମାର ସନ୍ଧାନ ପାଇପାରେ ? ସମଷ୍ଟିର

ବିନାଶରେ ବ୍ୟଷ୍ଟିର ଉପଲବ୍ଧି କ'ଣ କସ୍ମିନ କାଳେ ସମ୍ଭବ ? ମଣିଷ ଜୀବନର ବ୍ୟର୍ଥତା କ'ଣ ତାର ସେଇ ପଥ-ବିଭ୍ରାନ୍ତିର ପରିଚୟ ନୁହେଁ ?

ଆତ୍ମାର ସନ୍ଧାନରେ ମଣିଷ ବହୁ ଦେବାଦେବୀ ସୃଷ୍ଟି କରୁଛି । ଗ୍ରାମ ଦେବାଦେବୀଙ୍କ ଠାରୁ ଆରମ୍ଭ କରି ରାମ, କୃଷ୍ଣ ଓ ତାଙ୍କଠାରୁ ଆହୁରି ଉଚ୍ଚ— ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କ ଯାଏ ଏକାଧିକ ବିଶ୍ୱଦେବତାଙ୍କୁ ଲୋଡ଼ିଛି । ଖୋଦ୍ ଆଲ୍ଲା ଈଶ୍ୱର ଭଗବାନଙ୍କୁ ଡାକିଛି । ଯୁଗ ଯୁଗ ଧରି ମଣିଷ ସେମାନଙ୍କ ପଛରେ ଯେତେ ଧାଇଁଲେ ବି ସେ ନିଜର ଆତ୍ମା କି ପରମାତ୍ମା, କାହାର କୌଣସି ସନ୍ଧାନ ପାଇ ନାହିଁ । ଯାହା ସେମାନଙ୍କ ପାଖରେ ନାହିଁ, ତାହା ସେମାନେ ମଣିଷକୁ ଦେବାରେ ସମର୍ଥ ନୁହଁନ୍ତି ।

ସେଇ ପରମାତ୍ମାର ଅଧିକାରୀ ଯଦି କେହି ଥାଏ, ସେ ଅନ୍ୟକେହି ନୁହେଁ, ସେ ହେଉଛନ୍ତି ଏକମାତ୍ର ଜଗନ୍ନାଥ । ଜଗନ୍ନାଥଙ୍କ ଆଗରେ ସବୁ ଦେବାଦେବୀ, ଏପରିକି ଖୋଦ ଆଲ୍ଲା, ଈଶ୍ୱର ଓ ଭଗବାନଙ୍କର ଜନ୍ମ । ବିଶ୍ୱରେ ମାନବାତ୍ମା ସହିତ ସେଇ ପରମାତ୍ମାଙ୍କର ଆବିର୍ଭାବ । ଜଗନ୍ନାଥ କେବଳ ସର୍ବପ୍ରାଚୀନ ନୁହଁନ୍ତି, ମଣିଷର ସବା ଆଦିମ ସତ୍ତାର ଅଫୁରନ୍ତ ଅଭିବ୍ୟକ୍ତି । ଯେହେତୁ ଅନ୍ୟ ସମସ୍ତେ ଜଗନ୍ନାଥଙ୍କ ଆଗରେ ଅର୍ବାଚୀନ, ତେଣୁ ସେମାନେ ମଣିଷକୁ ତାର ଆଦ୍ୟ ଆଭିମୁଖ୍ୟ ଓ ଅନ୍ତିମ ଲକ୍ଷ୍ୟ ପ୍ରଦାନ କରିବାରେ ଅସମର୍ଥ । ଅନ୍ୟ ସମସ୍ତେ ବ୍ୟକ୍ତିବିଶେଷଙ୍କ ମତ, ବିଶ୍ୱାସ, ଯୁକ୍ତିତର୍କ, ବା ବିଚାରବିମର୍ଶକୁ ଆଶ୍ରା କରନ୍ତି । କିନ୍ତୁ ଜଗନ୍ନାଥ ପ୍ରତ୍ୟକ୍ଷରେ ବିଦ୍ୟମାନ । ତାଙ୍କର ଅସ୍ତିତ୍ୱ ଯେପରି ସନ୍ଦେହାତୀତ, ସେ ସେହିପରି ଇତିହାସର ଅଲିଭା ସ୍ୱାକ୍ଷର । ଅନ୍ୟ ସମସ୍ତେ ମଣିଷର କଳ୍ପନାରେ ଗଢ଼ା, ଏକମାତ୍ର ଜଗନ୍ନାଥ କିନ୍ତୁ ମଣିଷର ହାତରେ ତିଆରି । ଅନ୍ୟମାନଙ୍କ ଜୀବନକାଳ ଗୋଟିଏ ସ୍ଥାନରେ, ଗୋଟାଏ ସମୟରେ, ଏକ ଏକ ଶାସ୍ତ୍ରପୁରାଣ ମଧ୍ୟରେ ସୀମିତ । ଜଗନ୍ନାଥ କିନ୍ତୁ ସଦା ଭାସ୍ୱର, ଚିର ଶାଶ୍ୱତ ଆଉ ସନାତନ । ଜନ୍ମ ମରଣର ଅହରହ ପ୍ରକ୍ରିୟା ଭିତରେ ସେଇ କେବଳ ପୁନଃ ପୁନଃ ନବ କଳେବର ଗ୍ରହଣ କରନ୍ତି । ତେଣୁ ଅବିରାମ ପ୍ରବାହିତ ତାଙ୍କ ଜୀବନର ସ୍ରୋତ - ତା ଯେତେ ମନ୍ଥର ହେଲେ ବି ସେ ଅନ୍ୟମାନଙ୍କ ଭଳି ଜୀବନଶୂନ୍ୟ, ଗତିହୀନ ନୁହନ୍ତି । ଅନ୍ୟ ସମସ୍ତେ ସ୍ଥାଣୁ । ସେଇ କେବଳ ନିଜସ୍ୱ ଭାବର ପ୍ରତିଫଳନ । ସେହି ପ୍ରତିଫଳନର ପରିବର୍ତ୍ତନ ନାହିଁ । ଜଗନ୍ନାଥ କିନ୍ତୁ ସବୁ ଧର୍ମ ସବୁ ମତ ଓ ସବୁ ବିଶ୍ୱାସରେ ପ୍ରତିଫଳିତ, ଯେହେତୁ ସେ ଜଗତର ନାଥ । ବିଶ୍ୱରେ ଏମିତି କିଛି ଧ. :ଣା ନାହିଁ, ଯାହା ତାଙ୍କୁ ସ୍ପର୍ଶ ନ କରିଛି । ଏମିତି କିଛି ଭାବନା ନାହିଁ, ଯାହା ତାଙ୍କ ପ୍ରତି ଆରୋପିତ ନୁହେଁ । ତେଣୁ ଅନ୍ୟ ସମସ୍ତେ ସ୍ଥିର, ନିଶ୍ଚଳ, ନିର୍ବେଦ, ଯଥା ପୂର୍ବଂ ତଥା ପରଂ ଥିଲା ବେଳେ, ଇତିହାସର ପ୍ରବାହରେ ଗଡି ଚାଲି ଛନ୍ତି ଜଗନ୍ନାଥ । ଅତଏବ ଅନ୍ୟ ସମସ୍ତେ ଯେତେବେଳେ ଗତିହୀନ, ସେତେବେଳେ ସେମାନଙ୍କୁ—ପରମାତ୍ମା ପ୍ରାପ୍ତି ଦିଗରେ, ଅର୍ଥାତ୍ ବିକାଶର ଆଧାର କରି ଧରିବା କେବଳ ଆତ୍ମ- ପ୍ରତାରଣା ମାତ୍ର । ଯାହାଙ୍କୁ ଅଗତିର ଗତି ବୋଲି କୁହାଯାଏ, ପ୍ରକୃତରେ ସେଇମାନେ ଗତିର ଅଗତି । ତାହାହିଁ ଗତିର ସ୍ରୋତକୁ ରୁଦ୍ଧ

କରେ । ପରମାତ୍ମାର ପ୍ରାପ୍ତିକୁ ତାର ବିକଳ୍ପରେ ଅର୍ଥାତ୍ ପରମାତ୍ମାର, ପ୍ରତ୍ୟାଖ୍ୟାନରେ ପରିଣତ କରେ ।

ପୁଣି ପରମାତ୍ମାର ଯାହା ମୌଳିକ ଉପାଦାନ ଓ ପ୍ରକୃତ ଚରିତ୍ର, ତାହା ସେଇ ଜଗନ୍ନାଥଙ୍କ ଠାରେହିଁ ପ୍ରକାଶିତ । ସେଇ ଜଗନ୍ନାଥ ନାମ ହିଁ ତାର ନିଦର୍ଶନ । ଜଗନ୍ନାଥଙ୍କର ସେଇ ସ୍ୱତନ୍ତ୍ର ଚରିତ୍ର—ବୈଶିଷ୍ଟ୍ୟକୁ ସର୍ବତ ସାବ୍ୟସ୍ତ, ବିସ୍ତାରିତ ଓ ପ୍ରତିଷ୍ଠିତ କରିବାରେ କେବଳ ମଣିଷ ପରମାତ୍ମା ପ୍ରାପ୍ତି ଦିଗରେ ଅଗ୍ରସର ହୋଇପାରେ । ଜଗନ୍ନାଥଙ୍କୁ ଜଗତର ନାଥ କରିବାର ଏକମାତ୍ର ପଥ ହେଉଛି, ଜଗତର ସମସ୍ତ ମାନବଙ୍କୁ ଏକ ମାନବରେ ପରିଣତ କରିବା । ସଂସାରର ସକଳ ଆତ୍ମାକୁ ଏକ-ଅତ୍ମାର ଅଭିଷିକ୍ତ କରିବା ଏବଂ ବ୍ୟକ୍ତିର ଚରମ ବିକାଶକୁ ସମଷ୍ଟିର ସର୍ବୋଚ୍ଚ ପ୍ରକାଶ ସହ ସମନ୍ୱିତ କରିବା, ଯେଉଁଠିକି ତାହା ବିଶ୍ୱଆତ୍ମା ଭାବରେ ଉଦ୍‌ଭାସିତ ହେବ । ସେଇ ଅନନ୍ତ ପରିବର୍ତ୍ତନ ଭିତରେ ପ୍ରତ୍ୟକଟି ଆତ୍ମା ପରମାତ୍ମାରେ ଦୀପ୍ତିମନ୍ତ ହୋଇଉଠିବ ।

ଆତ୍ମା, ତାହା, ଯାହାଙ୍କର ହେଉ ପଛେ, କୌଣସି ଆତ୍ମା ପକ୍ଷରେ ଏକାକୀ ପରମ୍ଆ ପ୍ରାପ୍ତି ନାହିଁ । ଆତ୍ମା ମାତ୍ରେ ତାହା ସମଗ୍ରତାର ଅଂଶବିଶେଷ । ସେହି ସମଗ୍ରତାର ଅସୀମ ବିକାଶ ଭିତରେ କେବଳ ତାର ନିଜର ପରମତ୍ୱ ପ୍ରାପ୍ତି ସମ୍ଭବ । ସେଥିରେ କୌଣସି ଅଂଶର ବ୍ୟତିକ୍ରମରେ ତାହା ଯେପରି ପରିପୂର୍ଣ୍ଣ ନୁହେଁ, ସେହିପରି ତାହା ପରମତ୍ୱହୀନ । ତେବେ ସେଇ ପ୍ରାପ୍ତିର ପଥ ହେଲା, ସମଗ୍ର ବିଶ୍ୱଜଗତର ଆତ୍ମାର ମିଳନ, ସେହି ଜଗନ୍ନାଥଙ୍କ ଆତ୍ମାର ଅବିଷ୍କାର । ଅଥଚ ଠିକ୍ ସେଇ ଜିନିଷଟି ପ୍ରତି ମଣିଷ ଆଖି ବୁଜିଦିଏ, ତାକୁ ଆବିଷ୍କାର ନକରି ଆକ୍ରମଣ କରିବା ଦ୍ୱାରା ଆଜି ମଣିଷ ନିଜେ ଆକ୍ରାନ୍ତ । ଜଗତର ଆତ୍ମା—ଜଗନ୍ନାଥଙ୍କ ଆତ୍ମାକୁ ଆବିଷ୍କାର ନ କଲାଯାଏ ମଣିଷର ମୁକ୍ତି ନାହିଁ । ଅନ୍ୟ ଦେବତାଙ୍କୁ ଡାକିଲା ଭଳି ଡାକିବାରେ ଜଗନ୍ନାଥଙ୍କୁ ଧରି ହେବନାହିଁ । ଅନ୍ୟଙ୍କ ଭଳି ଭୋଗ ପ୍ରଲୋଭନରେ ତାଙ୍କୁ ପାଇହେବ ନାହିଁ, କି ଆଖିବୁଜି ଧ୍ୟାନଦ୍ୱାରା ତାଙ୍କୁ ଦେଖିହେବ ନାହିଁ । କୌଣଷି ପ୍ରକାର ପୂଜା, ମନ୍ତ୍ର ବା ତନ୍ତ୍ରଦ୍ୱାରା ତାଙ୍କୁ ବଶ କରି ହେବ ନାହିଁ । ଏ ପରି କି ଦୃଢ ବିଶ୍ୱାସ ଦ୍ୱାରା ମଧ୍ୟ ତାଙ୍କୁ ବୁଝିହେବ ନାହିଁ । କାରଣ ସେ ଅନ୍ୟ ସମସ୍ତଙ୍କଠାରୁ ସମ୍ପୂର୍ଣ୍ଣ ଭିନ୍ନ, ମୌଳିକ ଭାବେ ପୃଥକ୍ । ତେଣୁ ତାଙ୍କୁ ଲାଭ କରିବା, ତାଙ୍କ ପାଖରେ ପହଞ୍ଚିବାର ପଥ ମଧ୍ୟ ଗୁଣାତ୍ମକ ଭାବେ ସମ୍ପୂର୍ଣ୍ଣ ଫରକ୍ । ଯେହେତୁ ସିଏ ହିଁ ପରମାତ୍ମା ।

ସେଥିଲାଗି କାଳର ଅତଳ ସାଗର ତଳୁ, ଇତିହାସର ଗଭୀର ଅନ୍ଧକାରର ଗହ୍ୱରରୁ, ମାନବ ଜୀବନର ଆଦିମ କାମନାର ସୁପ୍ତ କନ୍ଦରରୁ ସେହି ଜଗତର ଆତ୍ମା, ଜଗନ୍ନାଥଙ୍କୁ ଜାଗ୍ରତ କରିବାକୁ ହେବ । ତାଙ୍କର ସେଇ ଆବିର୍ଭାବର ଆଭିମୁଖ୍ୟକୁ ଅନୁସରଣ କରିବାକୁ ପଡିବ—ବିଜ୍ଞାନର ସଦାବର୍ଦ୍ଧିଷ୍ଣୁ ଆଲୋକରେ ।

**ସୃଷ୍ଟିର ସଂକଟ :**

ଦରକାର ନ ପଡିଲେ ମଣିଷ କିଛି କରେ ନାହିଁ । ଦିନେ ଶ୍ରୀମନ୍ଦିର ଦେହରେ ଚୂନ ଦେବା ଦରକାର ପଡିଥିଲା । ତାର ସୌନ୍ଦର୍ଯ୍ୟ ପଛେ ଲୁଚୁ, କିନ୍ତୁ ମନ୍ଦିରଟା ଥାକି ଯାଉ । ଆଜି ଦରକାର, ଚୂନ ଛଡାଇବା । କାରଣ ବିନା ଚୂନରେ ବି ସେ ରହି, ତାର ପୂର୍ବର ଗୁପ୍ତ, ଶୋଭା-ସୌନ୍ଦର୍ଯ୍ୟକୁ ପ୍ରକାଶ କରିପାରେ । ତା ସମ୍ଭବ ହୋଇଛି ବିଜ୍ଞାନର ବିକାଶ ଯୋଗୁଁ ।

ଦିନେ ସେହିପରି ସମାଜକୁ ବାନ୍ଧି ରଖିବା, ତାକୁ ଚଳାଇବା ଲାଗି ଧର୍ମର ଆବଶ୍ୟକତା ଥିଲା । ତେଣୁ ଜଗନ୍ନାଥଙ୍କ ମୂଳ ମହତ୍ତ୍ୱ ପଛେ ଲୁଚୁ, କିନ୍ତୁ ସମାଜ ତିଷ୍ଠିରହୁ ଓ ଗତିକରୁ, ଏହାହିଁ ଥିଲା ସେତେବେଳର ଅବସ୍ଥା । ସେଇଥିଲାଗି ବିଭିନ୍ନ ସମୟରେ ଭାରତରେ ଯେତେ ପ୍ରକାର ଧର୍ମ ଦେଖାଦେଇଛି, ସେସବୁକୁ ପରସ୍ତ ପରସ୍ତ କରି ଜଗନ୍ନାଥଙ୍କ ଦେହରେ ବୋଳାଯାଇଛି, ଏଥିରେ ଜଗନ୍ନାଥଙ୍କୁ ଅଭିଷିକ୍ତ କରି ସମାଜକୁ ଆପଦହୀନ କରିବାର ଚେଷ୍ଟା ହୋଇଛି ।

ଅଥଚ ବର୍ତ୍ତମାନ, ବିନା ଧର୍ମରେ ବଞ୍ଚିହେବ । କିନ୍ତୁ ବିଜ୍ଞାନ ବିନା ମୂହୂର୍ତ୍ତେ ଚଳିହେବ ନାହିଁ । ତାହା ବିନା ସମାଜର ସ୍ଥିତି କି ଗତି ସମ୍ଭବନୁହେଁ, ସେଥିଲାଗି ଜଗନ୍ନାଥଙ୍କୁ ବୁଝିବାପାଇଁ ଧର୍ମ ନୁହେଁ, ବିଜ୍ଞାନର ଆବଶ୍ୟକତା ଅପରିହାର୍ଯ୍ୟ । ବିଜ୍ଞାନ ସ୍ପର୍ଶରେ କେବଳ ଜଗନ୍ନାଥଙ୍କର ପ୍ରକୃତ ରୂପ ପ୍ରକଟିତ ହୁଏ ନାହିଁ, ଆଉ ମଧ୍ୟ ତାଙ୍କର ପ୍ରକୃତ ମହତ୍ତ୍ୱର ବୈଜ୍ଞାନିକ ଉପଲବ୍ଧି ସୁନିଶ୍ଚିତ ହୁଏ; ଯାହାକି ଅନ୍ୟ କୌଣସି ଧର୍ମ, ମତ ବା ବିଶ୍ୱାସ ଦ୍ୱାରା କସ୍ମିନ୍‌କାଳେ ସମ୍ଭବ ନୁହେଁ । ଯେଉଁମାନେ ପ୍ରକୃତ ନିର୍ମଳ ରୂପର ଜଗନ୍ନାଥଙ୍କ ଦର୍ଶନ ଚାହାଁନ୍ତି, ଜଗନ୍ନାଥଙ୍କ ଅନାବିଳ ଭାବର ଆହରଣରେ ଆଗ୍ରହୀ, ତାଙ୍କର ଅଶେଷ ମହିମାର ନିତ୍ୟ ଆଶୀର୍ବାଦ ଯେଉଁମାନଙ୍କର କାମ୍ୟ, ସେମାନଙ୍କୁ ସେଥିଲାଗି କୌଣସି ଅନ୍ଧଧାରଣା ନୁହେଁ — ବିଜ୍ଞାନର, ସମାଜ-ବିଜ୍ଞାନର ଅବଦାନକୁ ହିଁ ଆଶ୍ରୟ କରିବାକୁ ହେବ ।

ଭାରତ ଭୂମିରେ ଯେତେ ଯେତେ ଧର୍ମଧାରଣା ଜନ୍ମ ନେଇଛି, ସେ ସମସ୍ତଙ୍କର ସ୍ପର୍ଶ ଲାଗିଛି ଜଗନ୍ନାଥଙ୍କ ଠାରେ । ପ୍ରତ୍ୟେକେ ଚାହିଁଛନ୍ତି, ନିଜ ଛାଞ୍ଚରେ ତାଙ୍କୁ ଗଢିବେ । ନିଜ ରଙ୍ଗରେ ତାଙ୍କୁ ରଞ୍ଜିତ କରିବେ । ତାଙ୍କ ଦେହରେ ନିଜର ଛାପ ମାରି ତାଙ୍କୁ ନିଜର କରି ଚଳାଇନେବେ । ସେଥିଲାଗି କେତେ ସାସ୍ତ୍ର ପୁରାଣ ଲେଖା ନ ହୋଇଛି ! କେତେ ଭକ୍ତ, ପଣ୍ଡିତ ତାଙ୍କ ମତ ପ୍ରଚାର ନ କରିଛନ୍ତି ! କେତେ ସାଧୁ ସାଧକ ନିଜର ମଠ ପ୍ରତିଷ୍ଠା କରି ଜଗନ୍ନାଥଙ୍କୁ ଚାରିଆଡୁ ଘେରାଉ କରିନାହାଁନ୍ତି ? କିନ୍ତୁ କେହି ଟଳାଇ ପାରିନାହାଁନ୍ତି ଜଗନ୍ନାଥଙ୍କୁ । ସମସ୍ତେ ହାର ମାନିଛନ୍ତି ତାଙ୍କ ପାଖରେ । ସେ ସେମିତି ତାଙ୍କର ଖଣ୍ଡିଆ ରୂପରେ ବିଦ୍ୟମାନ, କାଳିଆ ରଙ୍ଗରେ ଜାଜ୍ୱଲ୍ୟମାନ । ତାଙ୍କର ସେଇ ମୌଳିକ ଚରିତ୍ର ସାମ୍ୟ, ମୈତ୍ରୀ ଓ ପ୍ରୀତିର ଭାବ ସେହିପରି ଚିର ଅମଳିନ, ସଦା ପ୍ରତିଫଳିତ ।

ହିନ୍ଦୁ ଶାସ୍ତ୍ର ଓ ପୁରାଣକାରମାନେ ଅନାର୍ଯ୍ୟ ଦେବଦେବୀଙ୍କୁ ହିନ୍ଦୁ କରିବାରେ ବେଶ୍ ଧୁରନ୍ଧର, ଓ ଖୁବ୍ ପାରଦର୍ଶିତା ଦେଖାଇଛନ୍ତି । ନିଜର ଦେବତାଙ୍କୁ ସକଳ ସୌନ୍ଦର୍ଯ୍ୟ ଦେଇ କମନୀୟ କରି ଗଢ଼ିଛନ୍ତି, ସମସ୍ତ ଅଲୌକିକ ଶକ୍ତିରେ ମଣ୍ଡିତ କରି ତାଙ୍କୁ ଅପ୍ରତିହତ କରି ଥୋଇଛନ୍ତି । ତାଙ୍କ ଦ୍ୱାରା ନିଜର ସମସ୍ତ କାମନା ପୂରଣର ଉପାୟ ଖୋଜିଛନ୍ତି । ଶେଷରେ ସମାଜର ଅଧିକାଂଶ ଲୋକଙ୍କୁ ଅସ୍ପୃଶ୍ୟ, ଅମଣିଷ କରି ରଖି ନିଜ ଦେବତାଙ୍କୁ ପୂଜ୍ୟ ପବିତ୍ର ଆସନରେ ଅଧିଷ୍ଠିତ କରିଛନ୍ତି ଏବଂ ତା କରିବା ଦ୍ୱାରା ନିଜେ ହୋଇଛନ୍ତି ସମାଜରେ ସେଇ ଉଚ୍ଚ ଆସନର ଅଧିକାରୀ । ସେଥିଲାଗି କିମ୍ବଦନ୍ତୀଠାରୁ ବୌଦ୍ଧିକ ବିଚାର ପର୍ଯ୍ୟନ୍ତ ପ୍ରତ୍ୟେକଟି ବିଷୟକୁ ନିଜର ମତ, ବିଶ୍ୱାସ ଓ ପ୍ରଚାରର ଆୟୁଧ କରି ଧରିଛନ୍ତି । ଜଗନ୍ନାଥଙ୍କୁ ଯେକୌଣସି ମତେ ନିଜ ସ୍ୱାର୍ଥରେ ଗ୍ରାସ କରିବା ହେଉଛି ତାଙ୍କର ଉଦ୍ଦେଶ୍ୟ, ଜଗତ୍‌ର ସ୍ୱାର୍ଥରେ ନୁହେଁ । ସବୁ ଧର୍ମ ଓ ମତର ସମସ୍ତ ଉଦ୍ୟମ ସତ୍ତ୍ୱେ ଜଗନ୍ନାଥ ତାଙ୍କର ଖାସ ସେଇ ରୂପ, ଗୁଣ ଧରି ପ୍ରକଟିତ । ସେଇ ସ୍ୱତନ୍ତ୍ରତା ଜଗତରେ ତାଙ୍କର ଶ୍ରେଷ୍ଠତ୍ୱର ନିଦର୍ଶନ । ତା ଜଣାଇ ଦିଏ, ଜଗନ୍ନାଥ ସବୁ ଧର୍ମ, ଧାରଣା, ମତ ବିଶ୍ୱାସର ଉର୍ଦ୍ଧ୍ୱରେ । ତାଙ୍କୁ କୌଣସି ଏକ ଧର୍ମର କ୍ଷୁଦ୍ର ପରିସର ଭିତରେ ଆବଦ୍ଧ କରିବା - ଏକ ଚରମ ନିର୍ବୋଧତା ।

ଏକ ଦିଗରେ ତାଙ୍କୁ ଜଗତର ନାଥ ବୋଲି ଭାବିବା ଅନ୍ୟ ଦିଗରେ କାର୍ଯ୍ୟତଃ ସେଇ ଆସନରୁ ତାଙ୍କୁ ବିତାଡ଼ିତ କରିବା, ଏ କାମଟା ଏକ ସଙ୍ଗେ ଚାଲିଛି । ପ୍ରତ୍ୟେକ ଧର୍ମ ମତ ଓ ବିଶ୍ୱାସ, ତାଙ୍କୁ ନିଜ ନିଜ ସଂକୀର୍ଣ୍ଣ ଗଣ୍ଡି ଭିତରେ ବାନ୍ଧନ୍ତି । ଜଗନ୍ନାଥଙ୍କର ଅନ୍ତର୍ନିହିତ ଶକ୍ତି, ନୀତି ଓ ନିର୍ଦ୍ଦେଶର ବାହକ ହେବା ପରିବର୍ତ୍ତେ ତାଙ୍କୁ ଆପଣାର ନୀତି, ଇଚ୍ଛା ଓ ସ୍ୱାର୍ଥର ବାହନ କରାଯାଏ । ଜଗନ୍ନାଥଙ୍କୁ ନିଜର ଅଧୀନସ୍ଥ କରି ଜଗତକୁ ଆୟତ୍ତ କରିବାର ବାଟ ଖୋଜାଯାଏ । ଫଳରେ ଜଗନ୍ନାଥଙ୍କ ପ୍ରକୃତ ମର୍ମ ବିକୃତ, ପ୍ରକୃତ ଭାବ କଳୁଷିତ ଆଉ ତାଙ୍କର ପ୍ରକୃତ ପଥ ଓ ଇଙ୍ଗିତ ନୀତିଭ୍ରଷ୍ଟ ହୁଏ । କାରଣ ତା ହୁଏ ଆପଣାର ଆତ୍ମସ୍ୱାର୍ଥ ପ୍ରଣୋଦିତ ।

ନିଜର ମୁକ୍ତି, ସୁଖ ଓ କାମନା ପୂରଣ ଲାଗି ଜଗନ୍ନାଥଙ୍କୁ ଡ଼ାକିବା ମାନେ, ଆପଣାର ମତ ଓ ସ୍ୱାର୍ଥର ଦାସତ୍ୱ ଶୃଙ୍ଖଳରେ ତାଙ୍କୁ ବାନ୍ଧିବା । ପଦେ କଥାରେ ଭଗବାନଙ୍କୁ ଭକ୍ତର ଦାସ କରିବା ହେଲା ଭକ୍ତିର ଚରମ ନିଦର୍ଶନ । ସବୁ ଭକ୍ତଙ୍କର ସର୍ବଶ୍ରେଷ୍ଠ କାମନା । କାରଣ, ତାହାହିଁ ମଣିଷର ସକଳ ଇଚ୍ଛା, ସମସ୍ତ ବାସନା ପୂରଣର ପ୍ରଧାନ ଉପାୟ । ତେଣିକି ଅନୁରକ୍ତ ଭୃତ୍ୟଭଳି ଭଗବାନ ମଣିଷର ସବୁ ଆଦେଶ ତାମିଲ୍ କରିବେ । ଅନ୍ୟ ଭାଷାରେ, କାର୍ଯ୍ୟସିଦ୍ଧି ଲାଗି ଏହା ଗୁଣିଆର ବେତାଳ ପ୍ରୟୋଗ ଭଳି ଭଗବାନଙ୍କର ପ୍ରୟୋଗ । ଏ ଏକ ବିରୋଧାତ୍ମକ ପ୍ରକ୍ରିୟା । ଯାହାକୁ ମଣିଷ ପ୍ରଭୁ ବୋଲି ଡ଼ାକେ, ତାକୁ ନିଜର ଭୃତ୍ୟ ଭଳି ବ୍ୟବହାର କରେ । ତାହାହିଁ ହେଲା ଭକ୍ତର ପ୍ରକୃତ ଉଦ୍ଦେଶ୍ୟ । ସେହି ଦିଗରେ ତାର ଅବିଶ୍ରାନ୍ତ ଉଦ୍ୟମ । ତେଣୁ ତା ଫଳ ବିପରୀତ ହେବା ସ୍ୱାଭାବିକ ।

(୧) 'ଲୋକାୟତ', ଦେବୀପ୍ରସାଦ ଚଟ୍ଟୋପାଧ୍ୟାୟ, ପୃ-୧୧୪

ମଣିଷ ତେଣୁ ଦୁଃଖ, କଷ୍ଟ, ଯୁଦ୍ଧ, ହିଂସା, ନିର୍ଯ୍ୟାତନା ଆଦିର ବିଲୋପ ଦିଗରେ ଯେତେ ଉଦ୍ୟମ କରେ, ତାର ଫଳ ବିପରୀତ ହୁଏ । ଆଜିର ଧର୍ମସଂକଟ, ନୈତିକସଂକଟ, ରାଜନୈତିକ ଓ ମାନବିକ ସଂକଟ ଆଦି ପ୍ରତ୍ୟେକଟି ସଂକଟ ସେହି ବିରୋଧାତ୍ମକ ପ୍ରକ୍ରିୟାର ଫଳ । ସେଇଥିଯୋଗୁ ଈଶ୍ୱର, ଆଲ୍ଲା, ଭଗବାନଙ୍କର ନାମ ନେଇ ତାଙ୍କର ଯେତେ ଦୂତ, ପୁତ୍ର, ଅବତାର ମର୍ତ୍ତ୍ୟକୁ ଆସିଛନ୍ତି, ସେମାନଙ୍କର ସମସ୍ତଙ୍କର ମହନୀୟ ଉଦ୍ୟମ ସତ୍ତ୍ୱେ, ମଣିଷ ଆଜି ତାର ଧ୍ୱଂସର ଦ୍ୱାରଦେଶରେ । ଅଥଚ, ମଣିଷ ରକ୍ତରେ ହୋଲି ଖେଳୁଥିବା ଲୋକେ ଦାବୀ କରନ୍ତି ଯେ ସେମାନେ ସେହି ଦୂତ, ପୁତ୍ର ଓ ଅବତାରଙ୍କ ଇଚ୍ଛା ଓ ଆଦେଶକୁ କାର୍ଯ୍ୟକାରୀ କରନ୍ତି । ଯାହାର ପରିଣତି — ଏବର ପରମାଣୁ, ପରିବେଶ ଓ ସାମାଜିକ ସଂକଟ । ଯେଉଁଠିକି ସମସ୍ତ ସମାଜ ସହିତ ସମଗ୍ର ବିଶ୍ୱ ପ୍ରକୃତି ଏକ ସଙ୍ଗରେ ବିଲୋପର ସମ୍ମୁଖୀନ ।

**ସଙ୍କଟର ସହଜାତ ସିଦ୍ଧାନ୍ତ :**

ଅତଏବ ବିଶ୍ୱର ସକଳ ଆତ୍ମାର ସମୂହ ହତ୍ୟାର ଉଦ୍ୟମ ହେଉଛି, ଅହରହ ସେଇ ପରମାତ୍ମାର ହତ୍ୟାର ସ୍ୱାଭାବିକ ପରିଣତି । ଅନ୍ୟଦିଗରେ ବର୍ତ୍ତମାନ ତାର ବିକାଶର ଏପରି ଏକ ଅବସ୍ଥାରେ ଉପସ୍ଥିତ, ଯେଉଁଠି ଅନ୍ୟର ହତ୍ୟାରେ ନିଜର ହିତ ସାଧନର ମାର୍ଗ ଚିରଦିନ ଲାଗି ଅବରୁଦ୍ଧ ।

ଏଥିରୁ ଉଦ୍ଧରିବାର ପଥ ହେଲା ପରମାତ୍ମାଙ୍କ ହତ୍ୟା ପଥକୁ ରୁଦ୍ଧ କରିବା । ଜଗନ୍ନାଥଙ୍କୁ ତାଙ୍କ ନିଜସ୍ୱ ଆସନ — ଜଗତର ନାଥଙ୍କର ଆସନରେ ପ୍ରତିଷ୍ଠା କରିବା । ତାହା କେବଳ ଗୋଟାଏ ସାଧାରଣ କଥା, କି କୌଣସି ଜଣେ ଭକ୍ତର ଜଣାଣ ନୁହେଁ, ତା ସାରା ଜଗତର, —ପ୍ରାଣୀମାତ୍ରେ ସମସ୍ତଙ୍କର ଏକ ଅନିବାର୍ଯ୍ୟ ଆବଶ୍ୟକତା । ତା ବିନା ଏବେ କାହାରି ଅସ୍ତିତ୍ୱର ପ୍ରଶ୍ନ ନାହିଁ । ଜଗତ-ଜୀବନର ଜ୍ୟୋତିକୁ ଚିର ପ୍ରଜ୍ୱଳିତ କରି ରଖିବା, - ସେଇ ମହାନ୍ ଉତ୍କର୍ଷ, ଯେପରି ଜଗନ୍ନାଥଙ୍କର ସେହି ନାଥତ୍ୱର ନିଦର୍ଶନ, ସେହିପରି ମଣିଷ ପକ୍ଷରେ ତାର ମାନବତାର ଚରମ ଉପଲବ୍ଧି ।

ଯେ ପର୍ଯ୍ୟନ୍ତ ମଣିଷ ଏକାକୀ ବା ଏକ ନିର୍ଦ୍ଦିଷ୍ଟ ଜାତି, ଗୋଷ୍ଠୀ ଓ ଅଞ୍ଚଳର ଲୋକ ଭାବରେ, ଏକ ନିର୍ଦ୍ଦିଷ୍ଟ ଧର୍ମ, ମତ ଓ ବିଶ୍ୱାସ ଜରିଆରେ, ନିଜର କାମନା ପୂରଣର ମାର୍ଗ ଦେଖେ, ସେପର୍ଯ୍ୟନ୍ତ ଜଗନ୍ନାଥଙ୍କୁ ସିଏ ଲୋଡ଼େ ନିଜର ବ୍ୟକ୍ତିଗତ, ଜାତିଗତ ବା ଧର୍ମଗତ ସ୍ୱାର୍ଥରକ୍ଷକ ବା ତାର ତ୍ରାଣକର୍ତ୍ତା ଭାବରେ — ଅର୍ଥାତ୍, ଆପଣାର ନାଥ ଭାବରେ, ଜଗତର ନାଥ ଭାବରେ ନୁହେଁ; ସମସ୍ତ ମାନବଜାତି ଓ ବିଶ୍ୱର ରକ୍ଷା ଓ କଲ୍ୟାଣ ପାଇଁ ନୁହେଁ । ତେଣୁ ମଣିଷମାତ୍ରେ ସମସ୍ତେ ତାଙ୍କୁ କାର୍ଯ୍ୟତଃ ନିଜର ନାଥ କରି ରଖନ୍ତି, ଜଗତର ନାଥ ହେବାକୁ ଦିଅନ୍ତି ନାହିଁ । ଏପରିକି ମନ୍ଦିରରେ ଅଧିକାଂଶ ଜାତି, ଧର୍ମ, ଦେଶ ଓ ମତର ଲୋକଙ୍କ ପ୍ରବେଶ ନିଷିଦ୍ଧ । ଏଣୁ ଜଗତନାଥଙ୍କୁ ପାଇବାର ଚେଷ୍ଟା କରନ୍ତି କ୍ଷୁଦ୍ର, ଖଣ୍ଡିତ ଓ ଆଂଶିକ ଭାବରେ । ତାଙ୍କୁ

ଜଗତର ବୃହତ୍ତର ସ୍ୱାର୍ଥର ପ୍ରତୀକ ନ କରି ନିଜର କ୍ଷୁଦ୍ରସ୍ୱାର୍ଥର ବାହକ କରନ୍ତି । ସେହିହେତୁ, ଲୋକେ ସମୂହଭାବେ ପରସ୍ପର ଲାଗି ଜଗନ୍ନାଥଙ୍କ ଆର୍ଶୀବାଦ ଭିକ୍ଷା କରିବା ପରିବର୍ତ୍ତେ କାର୍ଯ୍ୟତଃ ପରସ୍ପର ବିରୋଧରେ ଅଭିଯୋଗ ବାଢ଼ି ତାଙ୍କ ଆଶୀର୍ବାଦ ଚାହାନ୍ତି । ତା ହେଉଛି ସବୁ ଦୁର୍ଦ୍ଦଶାର କାରଣ । ତାହାହିଁ ସମସ୍ତ ଭେଦାଭେଦ, ଜାତି, ଦେଶ ଓ ସଂଘର୍ଷକୁ କ୍ରମାଗତ ବୃଦ୍ଧି କରିବାରେ ଲାଗିଛି ।

ଏତେବେଳେ, ଜଗନ୍ନାଥଙ୍କୁ ତାଙ୍କ ଯଥାର୍ଥ ଆସନ ପ୍ରଦାନ କରିବାର ଅର୍ଥ ହୋଇଛି, ତାଙ୍କୁ ଜଣ-ଦେବତାରୁ ଗଣ-ଦେବତାରେ ପରିଣତ କରିବା । କେବଳ କଥାରେ ନୁହେଁ, ବାସ୍ତବ କାର୍ଯ୍ୟରେ । ସେଇ ଗତାନୁଗତିକ ପରମ୍ପରା ଦ୍ୱାରା ନୁହେଁ, କାଳର ପରିବର୍ତ୍ତିତ ଦାବୀର ପୂରଣ ଦ୍ୱାରା । କେବଳ ଧ୍ୟାନ ଦ୍ୱାରା ନୁହେଁ, ଜ୍ଞାନ ଦ୍ୱାରା । କେବଳ ମନ୍ତ୍ରର ଉଚ୍ଚାରଣରେ ନୁହେଁ, ଯନ୍ତ୍ରର ଚାଳନାରେ । ପଦେ କଥାରେ କହିଲେ '' ବିଶ୍ୱାସର ଭିତ୍ତିରେ ନୁହେଁ, ବିଜ୍ଞାନର ବିକାଶର ଭିତରେ ।

ତେଣୁ ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ଅର୍ଥନୈତିକ, ରାଜନୈତିକ ଓ ସାମାଜିକ — ସମସ୍ତ ପ୍ରକାର ଭେଦାଭେଦ ଓ ପାର୍ଥକ୍ୟର ବିଲୋପ ଦ୍ୱାରା, ସଦା ସାମ୍ୟ, ମୈତ୍ରୀ ଓ ପ୍ରୀତିର ନିରବଚ୍ଛିନ୍ନ ପ୍ରବାହର ତାଡ଼ନାରେ, ମଣିଷର ମାନବତ୍ୱର କ୍ରମାଗତ ପ୍ରକାଶନ ଭିତରେ ଜଗନ୍ନାଥଙ୍କର ସେଇ ପ୍ରକୃତ ଆତ୍ମାର ପ୍ରସ୍ଫୁଟନ ସମ୍ଭବ । ଜଗନ୍ନାଥ ଭାବର ଆଦ୍ୟ ଅଙ୍କୁର ଯେଉଁ ଆଦ୍ୟ ଭୂମିରେ ଉଦ୍ଭୁତ, ସେଇ ଆଦ୍ୟ ଭୂମିର ଚରମ ଉତ୍କର୍ଷ ସାଧନରେ ହିଁ ତାର ସେଇ ଅଙ୍କୁରର ଅନ୍ତିମ ପ୍ରସ୍ଫୁଟନ ସମ୍ଭବ ।

ଅନ୍ୟ ଦିଗରୁ ଦେଖିଲେ, ମଣିଷର ମାନବତ୍ୱ ଦିଗରେ ବିକାଶ ବିନା ଯେପରି ଜଗନ୍ନାଥଙ୍କର ପ୍ରକୃତ ନାଥତ୍ୱ ଲାଭ ନାହିଁ, ସେହିପରି ତାଙ୍କର ଜଗତର ନାଥଙ୍କ ନାଥତ୍ୱ ବିନା, ମଣିଷର ମାନବତ୍ୱ ସୁଦୂର ପରାହତ । ଜଗନ୍ନାଥଙ୍କର ନାଥତ୍ୱ ବିଚାର, ପ୍ରକୃତରେ ମଣିଷର ମାନବତ୍ୱର ବିଚାର । ଜଗନ୍ନାଥଙ୍କର ମାହାତ୍ମ୍ୟ, ସେଇ ମାନବିକ ମାହାତ୍ମ୍ୟର ଏକ ବିକଳ୍ପ ସଂସ୍କରଣ—ସାମ୍ୟ, ମୈତ୍ରୀ ଓ ପ୍ରୀତିର ପ୍ରତିଷ୍ଠା । ସେଇଠି ପଡ଼ିବ, ଆତ୍ମା ଓ ପରମାତ୍ମାର ପରିସମାପ୍ତିର ଭିତ୍ତି ।

**ମାନବତ୍ୱର ସନ୍ଧାନେ :**

ମାନବିକତାର ବିକାଶ କେବଳ ମାନବିକ ଉପାୟରେ ହିଁ ସମ୍ଭବ, ପାଶବିକ ଉପାୟରେ ନୁହେଁ । ଏହା କଣ ମଣିଷ ଜାଣେ ନାହିଁ ? ତାହା ସେ ଅନୁସରଣ ନ କରେ କାହିଁକି ? ମଣିଷ ଭିତରେ ମତର ପାର୍ଥକ୍ୟ ରହିଛି । କଳହ ଓ ବିବାଦ ଲାଗିଛି ସତ । ତେବେ ସେସବୁ ସମାଧାନର ଉପାୟ କ'ଣ ? ପଶୁ ଭିତରେ କଳହର ନିଷ୍ପତ୍ତି ହୁଏ ବଳଦ୍ୱାରା । ବଳଦ୍ୱାରା କଳହର ନିଷ୍ପତ୍ତି ପଶୁତ୍ୱର ଲକ୍ଷଣ । ପଶୁ ଅବସ୍ଥାରୁ ବର୍ବର ଅବସ୍ଥାକୁ ଉଠିବାବେଳେ ମଣିଷ ସେଇ ପ୍ରବୃତ୍ତିକୁ ସଙ୍ଗରେ ଧରି ଆସିଛି । ଏବେ ସଭ୍ୟତାର ଏକ ଚରମ ଅବସ୍ଥାରେ ପହଞ୍ଚିଲେ ବି ତାକୁ ଛାଡ଼ି ପାରିନାହିଁ ।

ତେଣୁ ଜ୍ଞାନ, ବୁଦ୍ଧି, ବିଚାର ଆଦି ଯେଉଁଠି ହାର ମାନେ, ପରିତ୍ୟକ୍ତ ହୁଏ, ସେଠି ନିଷ୍ପତ୍ତି ହୁଏ ବଳଦ୍ୱାରା, ସେଇ ବଳର ପ୍ରଭାବ ବା ତାର ପ୍ରଚ୍ଛନ୍ନ ଧମକରେ ।

ମନ ନ ମାନିଲେ ବି ଲୋକ ଅଦାଲତ ରାୟକୁ ମାନି ନିଏ । ନହେଲେ ଅଦାଲତ ତୁମକୁ ଜବରଦସ୍ତି ମନାଇନେବ । ଦେଶର ନିରାପତ୍ତାର ନିଶ୍ଚୟତା ଦିଏ ତା ପଛରେ ଥିବା ସାମରିକ ବଳ । ସବୁ ଆପତ୍ତି ଅଭିଯୋଗ ବିଫଳ ହେଲେ ଲୋକେ ମଧ୍ୟ ସରକାର ବିରୋଧରେ ବଳ ପ୍ରୟୋଗ କରନ୍ତି । ସରକାର ମଧ୍ୟ ଲୋକଙ୍କୁ ଜବତ କରେ ସେଇ ବଳର ପ୍ରୟୋଗ ଦ୍ୱାରା । ମଣିଷ ହିଂସ୍ର ପଶୁଙ୍କ ମୁହଁରୁ ତାର ଆଦ୍ୟ ଅସ୍ତିତ୍ୱ ରକ୍ଷା କଲାଭଳି, ଆଜି ତାର ନିଜର ହିଂସ୍ର ପ୍ରକୃତି ବିରୋଧରେ ଅନ୍ତିମ ଶକ୍ତିର ପରିଚୟ ଦିଏ ପଶୁତ୍ୱର ପରାକାଷ୍ଠା ଦ୍ୱାରା ।

ମଣିଷର ସେଇ ପାଶବିକ ତୃଷ୍ଣା, ପଶୁତ୍ୱର ସକଳ ନିର୍ଝରକୁ ନିଃଶେଷ କରି ଦେଲାଣି । ସେ ଦିଗରେ ଅଗ୍ରସର ହେବା, ବଳଦ୍ୱାରା ବିବାଦ ନିଷ୍ପତ୍ତିର ଅର୍ଥ, ସମୂହ ବିଲୋପକୁ ବରଣ କରିବା । ମଣିଷ ଦ୍ୱାରା ପଶୁତ୍ୱର ପଥ ବି ଚିରଦିନ ଲାଗି ରୁଦ୍ଧ ହେବାରେ ଲାଗିଛି । ଏବେ ତାକୁ ବଞ୍ଚିରହିବାକୁ ହେଲେ କେବଳ ମଣିଷ ହେବା ପଥରେହିଁ ସେ ବଞ୍ଚିପାରେ । ପଶୁତ୍ୱର ବାଟରେ ନୁହେଁ । ସେଥିଲାଗି ବଳର ପ୍ରୟୋଗ ନୁହେଁ - ମନର, ବନ୍ଧୁତ୍ୱର ପ୍ରୟୋଗ ଦରକାର । ଆଳାପ, ଆଲୋଚନା, କଥାବାର୍ତ୍ତା ହେଉଛି ସେଇ ପଥ । ତେଣୁ ଯୁଦ୍ଧ ଛାଡ଼ି ଶାନ୍ତି ଆଡ଼କୁ ମୁହାଁଇବାକୁ ହେବ । ଯେତେ ଦୁର୍ବଳ, ଦ୍ୱିଧାଗ୍ରସ୍ତ, ଦୁର୍ଗମ ହେଲେ ବି ତାହା ଇତିହାସର ଏକମାତ୍ର ଇଙ୍ଗିତ, ବିକଳ୍ପହୀନ ସେଇ ପଥ ।

ଏବେ ସେପରି ପରିବର୍ତ୍ତନ ଦିଗରେ ପଦକ୍ଷେପ କିନ୍ତୁ ମାନବିକତାର ଉପଲବ୍ଧିରୁ ଆସେନାହିଁ । ତା' ଆସେ ସେଇ ପଶୁତ୍ୱର ଭାବରୁ, ଆତ୍ମରକ୍ଷାର ସ୍ୱାଭାବିକ ପ୍ରବୃତ୍ତିରୁ । ମାନବିକ ଚେତନା ଅପେକ୍ଷା ବଞ୍ଚିବାର ତାଡ଼ନା ଅଧିକ କାର୍ଯ୍ୟ କରେ । ସେଇ ଅବସ୍ଥାର ତାଡ଼ନା, ଖୋଦ ଭଗବାନଙ୍କ ଅମରବାଣୀ 'ହତୋବା ପ୍ରାପ୍‌ସ୍ୟସି ସ୍ୱର୍ଗଂ, ଜିତ୍ୱା ବା ଭୋକ୍ଷ୍ୟସେ ମହୀମ୍'କୁ ଅସତ୍ୟରେ ପରିଣତ କରିଦିଏ । କାରଣ ଜିତିଲେ ରାଜ୍ୟପ୍ରାପ୍ତି, କି ମଲେ ସ୍ୱର୍ଗପ୍ରାପ୍ତି, ଆଜିର ଯୁଦ୍ଧରେ ସେଇ ଯଥାର୍ଥତାର ଅବକାଶ ନାହିଁ । ଯୁଦ୍ଧରେ ଜୟର ତ ପ୍ରଶ୍ନ ନାହିଁ । ସେଠି କି ମହୀ କି ମଣିଷ, ସମସ୍ତଙ୍କ ସତ୍ତା ସବୁଦିନ ପାଇଁ ନିଶ୍ଚିହ୍ନ ହେବ । ତେଣୁ ମର୍ତ୍ତ୍ୟବିନା ସ୍ୱର୍ଗ ତାର ଅସ୍ତିତ୍ୱ ହରାଇବ । ଅନ୍ୟକୁ ମାରି ନିଜର ମହୀଭୋଗ ବା ସ୍ୱର୍ଗଗମନର ଅବସ୍ଥା ଏବେ ଲୋପପାଇଛି । ଧ୍ୱଂସ ମୁହଁରୁ ରକ୍ଷା ପାଇବା ପାଇଁ ମଣିଷ ଚିନ୍ତିତ ଓ ବ୍ୟସ୍ତ । ପ୍ରାଣୀ ମାତ୍ରେ ଆତ୍ମରକ୍ଷା ସମସ୍ତଙ୍କର ସହଜାତ ପ୍ରବୃତ୍ତି । ଏକ ପ୍ରାଣୀଭାବେ ମଣିଷ ନିଜେ ଆତ୍ମରକ୍ଷା କରେ ସତ, କିନ୍ତୁ ଯେହେତୁ ସେ ମଣିଷ, ତା ପଶୁର ଆତ୍ମରକ୍ଷା ନୁହେଁ । ମାନବର ଆତ୍ମରକ୍ଷା, ମାନବତ୍ୱର ରକ୍ଷା । ସେଇ ମାନବତ୍ୱର ରକ୍ଷା ଏକ ସଙ୍ଗରେ ଅନ୍ୟ ମଣିଷର ରକ୍ଷା, ସମଗ୍ର ମାନବ ସମାଜର ରକ୍ଷା ଭିତରେହିଁ ପ୍ରକାଶ ପାଏ ।

ଏହା ଦର୍ଶାଇଦିଏ ଯେ ଭଗବାନଙ୍କ ବାଣୀ, ପୂର୍ବର ସେହି ପୁରୁଣା ଦୃଷ୍ଟିକୋଣ ଦ୍ୱାରା, କି ମହାଭୋଗ, କି ସ୍ୱର୍ଗପ୍ରାପ୍ତି - ସ୍ୱର୍ଗପ୍ରାପ୍ତି ବା ଆତ୍ମରକ୍ଷା କୌଣସିଟା ସମ୍ଭବ ନୁହେଁ । ଏତେବେଳେ ସେଇ·ବିକଳ୍ପ ପଥର ଇଙ୍ଗିତ ମିଳେ ଏକମାତ୍ର ଜଗନ୍ନାଥ ଠାରେ, ତାଙ୍କର ସେଇ 'ଆଦିମ' ଆତ୍ମାର ଉଦ୍‌ଘାଟନ ଦ୍ୱାରା ।

ଜନ୍ମରୁ ମଣିଷ ଅନ୍ୟ ମଣିଷ ସହିତ ଚଳି ଆସିଛି । ତାହାହିଁ ହୋଇଛି ତାର ବଞ୍ଚିବା, ବଢ଼ିବାର ସର୍ବପ୍ରଥମ ଅବସ୍ଥା । ବନ୍ୟଜନ୍ତୁ ଆକ୍ରମଣ, ପ୍ରକୃତିର ପ୍ରକୋପ, ନିଜର ଖାଦ୍ୟ ସଂଗ୍ରହ, - ଏ ସବୁର ମୁକାବିଲା କରିଛି ମଣିଷ ପରସ୍ପର ସହିତ ଏକାଠି ହେବାରେ । ଜୀବନ ସଂଗ୍ରାମରେ ସେ ଅନ୍ୟମାନଙ୍କ ସହିତ ମିଶିବାକୁ ବାଧ୍ୟ । ଅନ୍ୟମାନଙ୍କ ସହ ମିଶିବା ଅର୍ଥ, ସମାଜରେ ବାସ କରିବା । ପାଣି ବିନା ମାଛ ଭଳି ସମାଜ ବିନା ମଣିଷ ରହି ନ ପାରେ । ସେଇ ସମାଜ ଯେତେ ଉନ୍ନତ, ଯେତେ ବ୍ୟାପକ, ସେଇ ଅନୁସାରେ ମଣିଷର ଉନ୍ନତି, ଓ ତା'ର ସଭ୍ୟତାର ବ୍ୟାପ୍ତି । ଐକ୍ୟର ପ୍ରକ୍ରିୟା ମଧ୍ୟରେ ଗତି କରି ମଣିଷ ବିକାଶର ଏପରି ଅବସ୍ଥାରେ ପହଞ୍ଚିଛି ଯେଉଁଠି ପ୍ରତିଦିନ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ବିସ୍ଫୋରଣ ଘଟେ । ପ୍ରତିଦିନ ଅଭୂତପୂର୍ବ ନୂଆ ନୂଆ ଉଦ୍ଭାବନ ଚାଲେ । ତାହା ପ୍ରକାଶ କରେ ମଣିଷକୁ ଆଗକୁ ଯିବାକୁ ହେଲେ ସେଇ ଆଦିମ ଐକ୍ୟର ପ୍ରକ୍ରିୟାକୁ ବଳିଷ୍ଠ, ପ୍ରଖର ଓ ସର୍ବବ୍ୟାପୀ କରିବାକୁ ହେବ । ସେଇ ସାମାଜିକ ଐକ୍ୟ ଯେତେବେଳେ ମଣିଷ ଜୀବନର ଭିତ୍ତି, ତାର ଉନ୍ନତିର ସୋପାନ, ସେତେବେଳେ ତାର ସବୁ ସମସ୍ୟାର ସମାଧାନ ଏଇ ସାମାଜିକ ଐକ୍ୟର ଭିତରେ ହେବା ସ୍ୱାଭାବିକ । ତା ବିନା ଅନ୍ୟ ପନ୍ଥା ନାହିଁ ।

ଆଦ୍ୟାବସ୍ଥାରେ ବନ୍ୟଜନ୍ତୁଙ୍କ ବିପଦ, ପ୍ରକୃତିର ପ୍ରକୋପ ଆଉ ଖାଦ୍ୟସଂଗ୍ରହ ବା ଉତ୍ପାଦନର ତାଡ଼ନା ହେତୁ ସେଇ ଯେଉଁ ଐକ୍ୟର ଆବଶ୍ୟକତା ଥିଲା, ବର୍ତ୍ତମାନ ସମାଜର ଉନ୍ନତ ଅବସ୍ଥାରେ ତାହା ଅଧିକ ଜରୁରୀ ଓ ଆବଶ୍ୟକ ହୋଇ ପଡୁଛି । ବିଶ୍ୱଯୁଦ୍ଧ ମୁହଁରୁ ରକ୍ଷାପାଇବା ଲାଗି ସେହିପରି ଦରକାର ବିଶ୍ୱବ୍ୟାପୀ ମୈତ୍ରୀ ଓ ଐକ୍ୟ । ପରିବେଶ ସଂକଟ ମୁହଁରୁ ରକ୍ଷା ଲାଗି ସେହିପରି ଦରକାର ପ୍ରକୃତି ସହିତ ଐକ୍ୟ ଓ ମୈତ୍ରୀ । ସକଳ ସାମାଜିକ ବ୍ୟାଧି, ଦୁଃଖ, ଦୁର୍ଦ୍ଦଶା ଓ ଦୁର୍ବିପାକର ବିନାଶ ଲାଗି ଦରକାର ମଣିଷ ମଣିଷ ମଧ୍ୟରେ ଐକ୍ୟ, ମୈତ୍ରୀ ଓ ପ୍ରୀତିର ବନ୍ଧନ । ତା' ବିନା ମଣିଷ ନିଜେ ନିଜର ଧ୍ୱଂସାତ୍ମକ ସୃଷ୍ଟିର ଶିକାର ହେବ । ପରିବେଶର ପ୍ରତିଶୋଧ ଓ ସାମାଜିକ ଅସାମ୍ୟର ପ୍ରତିହିଂସାର ମୁହଁରୁ ତା'ର ନିସ୍ତାର ନାହିଁ । ତେଣୁ ମଣିଷକୁ ତା' ନିଜ ସହିତ, ପ୍ରକୃତି ସହିତ, ସମାଜ ସହିତ ସେହି ଐକ୍ୟ, ମୈତ୍ରୀ ଓ ପ୍ରୀତିର ସମ୍ପର୍କକୁ ଅଧିକ ଦୃଢ଼ ଓ ବଳିଷ୍ଠ କରିବାକୁ ପଡ଼ିବ । ସେଇ ଅଖଣ୍ଡ ଐକ୍ୟ ଓ ମୈତ୍ରୀ ଓ ପ୍ରୀତି କେବଳମାତ୍ର ସାମ୍ୟର ଭିତ୍ତି ଉପରେ ପ୍ରତିଷ୍ଠିତ ହୋଇପାରେ, —ଶତ୍ରୁତାର ସମ୍ପର୍କଦ୍ୱାରା ନୁହେଁ । ଆଉ ସେହି ସାମ୍ୟ, ମୈତ୍ରୀ, ପ୍ରୀତି ଓ ଐକ୍ୟର ପ୍ରତୀକ ହେଉଛନ୍ତି ଜଗନ୍ନାଥ । ମଣିଷର ସେଇ ଆଦିମ ଆକାଂକ୍ଷା ଓ ଅନ୍ତିମ ଲକ୍ଷ୍ୟର ମିଳନ ଦାବୀ କରେ ତାର ସେହି ପ୍ରତୀକର ପୁନଃ-ଆବିଷ୍କାର ।

ପଶୁରୁ ମଣିଷକୁ, ମଣିଷର ପ୍ରଥମ ଗୁଣାତ୍ମକ ପରିବର୍ତ୍ତନ । ତଦ୍ୱାରା ମଣିଷ ଯେ ତାର ପାଶବିକ ଗୁଣ ସମ୍ପୂର୍ଣ୍ଣ ପରିହାର କରି ମାନବତ୍ୱ ଲାଭ କଲା ତାହା ନୁହେଁ । ସେଇ ପାଶବିକ ପ୍ରବୃତ୍ତ ରହିଯାଇଥିବା ଯୋଗୁ ମଣିଷ କେତେ ହିଂସ୍ର, କିପରି ସାରା ପୃଥବୀକୁ ଧ୍ୱଂସ କରିବାକୁ ଉଦ୍ୟତ, ତାହା ଆମେ ଦେଖିଛେ । ତେବେ ପଶୁରୁ ମଣିଷ ହେବାର ଗୁଣାତ୍ମକ ପରିବର୍ତ୍ତନ ଦ୍ୱାରା ମଣିଷ ନିଜର ହୃଦୟର ଦ୍ୱାର ଉନ୍ମୁକ୍ତ କଲା ଓ ତାର ମାନବତ୍ୱ ଲାଭର ମୂଳଭିତ୍ତି ଦେଲା । ଏବେ ମଣିଷ ଲାଗି ପ୍ରକୃତିକ ଶକ୍ତି ଓ ନିୟମର ଆବିଷ୍କାର, ତାର ପ୍ରୟୋଗ ଯଥେଷ୍ଟ ନୁହେଁ, ତାର ମାନବିକ ଉପଲବ୍‌ଧି ଓ ଯଥାର୍ଥ ପ୍ରୟୋଗ ଦରକାର । ସେହିପରି ସାମାଜିକ ବିକାଶ ନିୟମର ଆବିଷ୍କାର ଓ ତାର ଅନୁସରଣ କେବଳ ଯଥେଷ୍ଟ ନୁହେଁ, ତାର ମାନବିକ ଉପଲବ୍‌ଧି ଓ ଯଥାର୍ଥ ପ୍ରୟୋଗ ଆବଶ୍ୟକ । ସେଇ ପ୍ରାକୃତିକ ଶକ୍ତି ଓ ସାମାଜିକ ନିୟମର ମାନବିକ ପ୍ରୟୋଗ ବିନା ଆଜି ଯେପରି ମଣିଷର ଅସ୍ତିତ୍ୱ ରକ୍ଷା ଅସମ୍ଭବ, ସେହିପରି ମଣିଷର ମାନବତ୍ୱର ବିକାଶ ଓ ତାର ନିଦର୍ଶନ — ତାର ସେଇ ମାନବିକ ପ୍ରୟୋଗ ଉପରେହିଁ ନିର୍ଭରଶୀଳ । ଏହା ଯେପରି ଏକ ଦିଗରେ ବସ୍ତୁନିଷ୍ଠ ଅବସ୍ଥାର ଅପରିହାର୍ଯ୍ୟ ଆବଶ୍ୟକତା, ସେହିପରି ଦିଗରେ ଆତ୍ମନିଷ୍ଠ ଭାବର ଅଲଘଂନୀୟ ଆହ୍ୱାନ ।

ଆଦ୍ୟାବସ୍ଥାରେ, ମଣିଷର ଆଦିମ ଆକାଂକ୍ଷାର ସ୍ୱତସ୍ଫୂର୍ତ୍ତ ପ୍ରତୀକ ଭାବରେ, ଦିନେ ଯେଉଁ ଜଗନ୍ନାଥଙ୍କର ଆବିର୍ଭାବ, ସେଇ ଅବସ୍ଥାର ବିକାଶର ପ୍ରକ୍ରିୟା ମଧ୍ୟରେ, ସେଇ ଆକାଂକ୍ଷା ପୂରଣର ସଚେତନ ଉଦ୍ୟମ ଭିତରଦେଇ ଜଗନ୍ନାଥ ତାଙ୍କ ନିଜର ପ୍ରକୃତ ରୂପରେ ପ୍ରକଟିତ ହେବେ । ସେ ଅତୀତର ମୂକ ପ୍ରତୀକ ନ ହୋଇ ହେବେ ଭବିଷ୍ୟତର ମହାନ ଇଙ୍ଗିତ । ସେଇ ଇଙ୍ଗିତ ଅନ୍ୟ କିଛି ନୁହେଁ, ମଣିଷର ଦ୍ୱିତୀୟ ଗୁଣାତ୍ମକ ପରିବର୍ତ୍ତନ । ପଶୁତ୍ୱରୁ ମାନବତ୍ୱକୁ ପଦକ୍ଷେପ ।

**ଜଗତରେ ନାଥତ୍ୱର ଭାବ :**

ଆଦିମ ଅବସ୍ଥାରେ ମଣିଷ ଥିଲା ଏକ କ୍ଷୁଦ୍ର ଅଞ୍ଚଳ ଭିତରେ ସୀମିତ । ଛୋଟ ଛୋଟ ଗୋଷ୍ଠୀରେ ଆବଦ୍ଧ । ଲକ୍ଷ୍ୟ ଥିଲା ଅତି ନଗଦ । ସଦ୍ୟ କିପରି ବଞ୍ଚିବ । ତା ଦୃଷ୍ଟି ଥିଲା ଅତି ସଂକୀର୍ଣ୍ଣ । ବର୍ତ୍ତମାନ ତାର ସମ୍ପର୍କ ବିଶ୍ୱବ୍ୟାପି, ଲକ୍ଷ୍ୟ ବହୁମୁଖୀ ଓ ତାର ଗତି ଅନ୍ତୀକ୍ଷକୁ ଅତିକ୍ରମ କରେ । ସେଇ ମାନବ ଶକ୍ତିର ବିକାଶର ପରିସର ଚିନ୍ତାତୀତ, ଆଉ କଳ୍ପନାତୀତ ମଣିଷର ସେହି ମାନବତ୍ୱ । କିନ୍ତୁ ଏସବୁ ନିର୍ଭର କରେ ତାର ବର୍ତ୍ତମାର ଭୌତିକ ସ୍ଥିତି ଉପରେ ।

ମାନବର ଆତ୍ମରକ୍ଷା ଓ ମାନବତ୍ୱର ବିକାଶ, ଏ ଦୁହେଁ ଆଜି ଅବିଚ୍ଛିନ୍ନ । ମଣିଷର ଅସ୍ତିତ୍ୱ (ଯେପରି ସେଇ) ମନୁଷ୍ୟତ୍ୱର ଉନ୍ମେଷ ବିନା ଅସମ୍ଭବ, ସେହିପରି ଅନ୍ୟ ଦିଗରେ ସେଇ ମନୁଷ୍ୟତାର ଉନ୍ମେଷ ମଧ୍ୟ ତାର ମାନବିକ ଅସ୍ତିତ୍ୱ ବିନା ସମ୍ଭବ ନୁହେଁ । ଆଗ ଦେହଧରି ବଞ୍ଚି ରହିଲେ ଯାଇ ପରେ ମାନବତ୍ୱ ଲାଭର ପ୍ରଶ୍ନ । ଆଜିର ଅବସ୍ଥାରେ ବଞ୍ଚି ରହିବାକୁ ହେଲେ, ପରିବେଶ ଓ ପରମାଣୁ ଧ୍ୱଂସର ଲୀଳା

ଆଉ ସାମାଜିକ ବିପର୍ଯ୍ୟୟର କବଳରୁ ଆଗ ନିଜକୁ ରକ୍ଷାକରିବାକୁ ହେବ । ଏଇ ଅବସ୍ଥାକୁ ମଣିଷ ତାର ପଶୁତ୍ୱର ଭାବ ଦ୍ୱାରା ଅର୍ଜ୍ଜନ କରିଛି । ତାକୁ ହିଁ ଅତିକ୍ରମ କରିବାରେ କେବଳ ନିଜର ଆତ୍ମରକ୍ଷା କରିପାରେ । ତାହା ଏକ ସଙ୍ଗରେ ମାନବତ୍ୱର ଅସୀମ ପଥକୁ ଉନ୍ମୁକ୍ତ କରେ । ମଣିଷର ଆତ୍ମରକ୍ଷା ଯେହେତୁ ଅନ୍ୟଦିଗରେ ମାନବତ୍ୱର ପ୍ରକାଶନ, ତେଣୁ ବ୍ୟକ୍ତିବିଶେଷ ଯେତେ ମହାନ ଓ ଐଶ୍ୱର୍ଯ୍ୟଶାଳୀ ହେଲେ ବି, ସେ ଏକାକୀ ସେ ପଥରେ ଯାତ୍ରା କରି ନ ପାରେ । ସମସ୍ତ ମଣିଷ ଜାତି ସହିତ ତାକୁ ଅଗ୍ରସର୍ ହେବାକୁ ପଡ଼ିବ, ତା ସହିତ ଜଣେ ହୋଇଯିବାକୁ ହେବ ।

ମଣିଷ ମାନବର ସ୍ପର୍ଶ ପାଏ ଅନ୍ୟ ମଣିଷ ସହିତ ମିଶିବାରେ । ସେହି ମିଳନ ବିନା, ଅନ୍ୟ ସହ ଏକ ନ ହୋଇ, ମାନବତ୍ୱ ନାହିଁ । ଅନ୍ୟର ମାନବିକ କାମନା ପୂରଣ କରିବାରେ ନିଜର ମାନବିକତା ରୂପ ନିଏ । ଅନ୍ୟ ଭିତରେ ମାନବତ୍ୱ ପ୍ରସ୍ଫୁଟିତ କରିବାରେ ନିଜର ମାନବତ୍ୱ ପ୍ରସ୍ଫୁଟିତ ହୁଏ । ତେଣୁ ଜାତି, ଧର୍ମ, ବର୍ଣ୍ଣ ଓ ସ୍ତ୍ରୀ - ପୁରୁଷ ନିର୍ବିଶେଷରେ ସବୁ ପ୍ରାଣର ସ୍ପର୍ଶ, ସବୁ ମର୍ମ୍ମର ମିଳନ ଆଉ ସବୁ ଜୀବନର ସ୍ପନ୍ଦନକୁ ମୁକ୍ତ, ବ୍ୟକ୍ତ, ସମନ୍ୱିତ କରିବା ହିଁ ସେଇ ମାନବିକତାର ଏକମାତ୍ର ଭିତ୍ତି, ଲକ୍ଷ୍ୟ ଆଉ ପଥ ।

ତେଣୁ ପଶୁତ୍ୱର ବିକଳ୍ପ ମାନବତ୍ୱ ହେଲାବେଳେ ବଳର ବିକଳ୍ପ ହୁଏ ବିଚାର । ରଣାଙ୍ଗନର ବିକଳ୍ପ ହୁଏ ଆଲୋଚନା ଗୃହ । ସେଇ ଆଲୋଚନାର ଆଭିମୁଖ୍ୟ ବିଭେଦ ନୁହେଁ, ହୁଏ ବନ୍ଧୁତ୍ୱ । ସେଇ ବନ୍ଧୁତ୍ୱର ଭିତ୍ତି ସଂକୀର୍ଣ୍ଣ ସ୍ୱାର୍ଥ ପ୍ରଣୋଦିତ ନୁହେଁ - ହୁଏ ସମୂହ ସ୍ୱାର୍ଥ ଦ୍ୱାରା ପରିପୁଷ୍ଟ ସମସ୍ତ ସମଗ୍ରତାର ବିଚାରରେ ଅନୁପ୍ରାଣିତ । ସେ କ୍ଷେତ୍ରରେ କାହାରି ଜୟ ବା ପରାଜୟ ନୁହେଁ, ବିଜୟ ସମସ୍ତଙ୍କର, ସମଗ୍ର ମାନବ ଜାତିର, ମାନବତ୍ୱର ।

ଯେତେ ସାମାନ୍ୟ, ଯେତେ ଅସ୍ଥାୟୀ ହେଲେ ମଧ୍ୟ ସେଇ ମାନବତା ଦିଗରେ ଇତିହାସର ପ୍ରଥମ ପଦକ୍ଷେପର ଆରମ୍ଭ ହୋଇଛି । ତା ହେଉଛି ବଳ ପରିବର୍ତ୍ତେ ବିଚାର ଦ୍ୱାରା ବିବାଦର ନିଷ୍ପତ୍ତି, ପରମାଣୁ ଅସ୍ତ୍ରଶସ୍ତ୍ର ପରିହାର ଏବଂ ଶାନ୍ତିପୂର୍ଣ୍ଣ ସହାବସ୍ଥାନ । ଏହି ଯେଉଁ ନୂତନ ଯୁଗ୍-ସୃଷ୍ଟିକାରୀ ପ୍ରତିୟାର ଉନ୍ମେଷ ହୋଇଛି, ତାହା ସେହି ମାନବିକତାର ପ୍ରତୀକର ଅନ୍ତର୍ନିହିତ ଇତିହାସକୁ ପ୍ରକାଶ କରେ । ଓଡ଼ିଶାର ଲୋକେ ନିଜେ କିନ୍ତୁ ସେଥିପ୍ରତି ସମ୍ପୂର୍ଣ୍ଣ ଅଚେତନ । ସେମାନେ ନିଜର ସେଇ ସୃଷ୍ଟିକୁ ଆଲୋକର ବର୍ତ୍ତିକା କରିବା ପରିବର୍ତ୍ତେ ତାକୁ ଅନ୍ଧାରର ଲିଭିଲା ପ୍ରଦୀପ କରି ଧରନ୍ତି । ତାର ସେହି ତାତ୍ପର୍ଯ୍ୟ ଆବିଷ୍କାର କରିବାକୁ ହେଲେ ମାର୍କସ୍‌ଙ୍କ ଭାଷାରେ - ଯାହା ସବୁଠାରୁ ପୁରୁଣା, ତା ଭିତରେ ସବୁଠୁ ଯାହା ନୂତନ, ତାକୁ ଖୋଜିବୁକୁ ହେବ । (To find what is newest, in what is oldest) ଓଡ଼ିଶାର ସେଇ ବିଷୟଟି ହେଇଛି ଅନ୍ୟ କେହି ନୁହେଁ - ଜଗନ୍ନାଥ - ସ୍ୱୟଂ ଜଗନ୍ନାଥ । ସର୍ବପ୍ରାଚୀନ ଭିତରେ ସର୍ବନୂତନ ।

ଜଗନ୍ନାଥ ଧାରଣା ଯେପରି ସବୁଠାରୁ ଅତି ପ୍ରାଚୀନ, ସେହିପରି ସବୁଠୁଁ ଅତି ନୂତନ। ତା ଯେପରି ଆଦିମ ସଭ୍ୟତାର ନିଦର୍ଶନ - ସେହିପରି ଅନ୍ତିମ ସଭ୍ୟତାର ଲକ୍ଷ୍ୟ । ଯେହେତୁ ତାହା ମାନବତାର ଆଦ୍ୟ ଅଭିବ୍ୟକ୍ତି, ସେହି ଅଭିବ୍ୟକ୍ତିର ପୂର୍ଣ୍ଣ ବିକାଶରେ କେବଳ ମାନବତ୍ୱର ପୂର୍ଣ୍ଣତା ପ୍ରାପ୍ତି । ଜଗନ୍ନାଥ ହେଲେ ସାମ୍ୟ, ମୈତ୍ରୀ ପ୍ରୀତିର ପ୍ରତୀକ । ସେହି ସମାଜ, ସେହିପରି ଧାରଣାର ଅନୁରୂପ ପ୍ରତିଫଳନ । ସେପରି ପ୍ରତୀକରେ କୌଣସି ସାନ, ବଡ଼, ଭେଦାଭେଦ, ତୋର ମୋର ପ୍ରଶ୍ନ ନାହିଁ । ସମସ୍ତେ ସମାନ । ଏକା ଗୋଷ୍ଠୀ ବା ପରିବାରର ଲୋକ । ସେହି ସମାଜ ହିଁ ସାର୍ବଭୌମ, ସର୍ବଶକ୍ତିମାନ । ସେହି ସାମାଜିକ ଧାରଣାର ବାସ୍ତବ ରୂପ ଭାବରେ ସର୍ବଶ୍ରେଷ୍ଠ, ସର୍ବୋଚ୍ଚ, 'ଦେବ' ହେଲେ ଜଗନ୍ନାଥ ।

ବ୍ୟକ୍ତିଗତ ସମ୍ପତ୍ତି ଓ ଶ୍ରେଣୀ ବିଭକ୍ତ ସମାଜର ଉଦ୍ଭବ ସହିତ ସେହି ସାମ୍ୟ ମୈତ୍ରୀ ପ୍ରୀତିର ପତନ ଘଟିଛି । ତାହାର ସ୍ମୃତି କେବଳ ରହିଛି ଲୋକ ମୁଖରେ । ଜଗନ୍ନାଥଙ୍କ ସେ ମହିମା ପ୍ରଚାରରେ, ତାଙ୍କର ମହାପ୍ରସାଦର ପବିତ୍ରତାରେ, ସେଇ ପ୍ରତୀକର ପ୍ରତିମା ପୂଜାରେ । ଏବେ ଜଗତର ନାଥ ଜୀଙ୍କ ରହିଛନ୍ତି କେବଳ ଏକ ହିନ୍ଦୁ ଜଗତର ନାଥ ଭାବରେ, କେବଳ ତାଙ୍କରି କେତେ ଭକ୍ତଙ୍କ ଜଣାଣ ଭିତରେ । ଜଗନ୍ନାଥ ମହତ୍ତ୍ୱର ଧ୍ୱଜା ଉଡାଯାଏ ତାଙ୍କର ସମାଧି 'କୋଇଲି ବୈକୁଣ୍ଠ' ଉପରେ । ବ୍ରିଟିଶ୍ ଲୋକେ ରଜାଙ୍କ ମୁଣ୍ଡକାଟି ସମ୍ରାଟ ଚିରଞ୍ଜୀବୀ ରୁହନ୍ତୁ (Long live the King) କି ନିଜର ଜାତୀୟ ଗୀତି କଲାଭଳି ।

ସର୍ବପ୍ରଥମ ମାନିବାକୁ ହେବ, ଏବେ ଜଗନ୍ନାଥ ପ୍ରକୃତରେ ଜଗତର ନାଥ ନୁହନ୍ତି, ସଂକ୍ଷେପରେ କେତେକ ହିନ୍ଦୁଙ୍କର ନାଥ। ସେହିମାନେ କେବଳ ତାଙ୍କୁ ମାନନ୍ତି, ପୂଜା କରନ୍ତି । ମନ୍ଦିରରେ ପଶିବାରେ ସେଇମାନେ କେବଳ ହକ୍‌ଦାର । ବହୁ ଆନ୍ଦୋଳନ ପରେ ହରିଜନ ମନ୍ଦିର ପ୍ରବେଶ ଅଧିକାର ପାଇଲେ ବି କାର୍ଯ୍ୟତଃ ସେମାନେ ଯାଆନ୍ତି ନାହିଁ । ଯିବାର ବାସ୍ତବିକତା ଅନୁଭବ କରନ୍ତି ନାହିଁ । ଯୁଗ ଯୁଗ ଧରି ଦଳିତ, ପତିତ ହୋଇ ରହିବାରେ ଜଗନ୍ନଥଙ୍କ ସହିତ ତାଙ୍କର ଡୋରି ଛିନ୍ନ ହୋଇଯାଇଛି । ମନ୍ଦିର ପ୍ରବେଶ ଅଧିକାର ମୁଖ୍ୟତଃ ଏକ ସାମାଜିକ ଅଧିକାର । ଜଗନ୍ନଥ କେବଳ ଏକ ମାଧମ ମାତ୍ର । ଏପରିକି ଭାରତର ପୂର୍ବତନ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ, ଯିଏ ଶିଖ ସାମ୍ପ୍ରଦାୟିକତାବାଦୀଙ୍କ ଗୁଳିର ଶିକାର ହେଲେ, ସେ ବି ହିନ୍ଦୁ ସାମ୍ପ୍ରଦାୟିକତାବାଦୀଙ୍କ ଦ୍ୱାରା ମନ୍ଦିର ପ୍ରବେଶରୁ ବଞ୍ଚିତ । ଜଗନ୍ନାଥ ଆଦିବାସୀଙ୍କ ଠାକୁର ହେଲେ ବି ତାହା ସେମାନଙ୍କ ସ୍ମୃତିପଟରୁ ବହୁଦିନ ହେଲା ଲିଭି ଗଲାଣି । ହରିଜନ ଆଦିବାସୀଙ୍କ ପାଇଁ ତାଙ୍କର ନିଜର ଗ୍ରାମଦେବତୀ ବଡ଼ । ସବୁ କାମନା, ପୂଜା-ଅର୍ଚ୍ଚନା ତାଙ୍କରି ପାଖରେ । ବୁଦ୍ଧଙ୍କୁ ଅବତାରର ଆଖ୍ୟାଦେଇ ବୌଦ୍ଧଙ୍କୁ ପ୍ରବେଶ ଅଧିକାର ଦେଲେ ମଧ ଜଗନ୍ନାଥ ତାଙ୍କର ନାଥ ନୁହନ୍ତି । ଆଉ ଯେତେକ ଧର୍ମର ଲୋକ ଅଛନ୍ତି, ସମସ୍ତଙ୍କ ଲାଗି ପ୍ରବେଶ ନିଷିଦ୍ଧ, କାରଣ ସେମାନଙ୍କର ପ୍ରବେଶରେ ଜଗନ୍ନଥଙ୍କର ପବିତ୍ରତା ମହତ୍ତ୍ୱ ଓ ଗୌରବ ନଷ୍ଟ ହୋଇଯାଏ । ପୃଥିବୀର ଛଅଶହ

କୋଟି ମଧ୍ୟରୁ ଶହେକେ ପାଞ୍ଚଜଣ ଲୋକ ମାତ୍ର ଜଗନ୍ନାଥଙ୍କ ସହିତ ସଂପୃକ୍ତ । ସେଇ ପାଞ୍ଚଭାଗ ଲୋକଙ୍କର ନାଥ କିପରି ବା ୯୫ ଭାଗ ଲୋକ-ଜଗତର ନାଥ ହେବେ ? ସେ ପୁଣି ବା ଜଗତ ଲୋକଙ୍କର ଦୁର୍ଦ୍ଦଶା ମୋଚନରେ କିପରି ବା ସମର୍ଥ ହେବେ ? ଏ ତ ଏକ ସାଧାରଣ ପ୍ରଶ୍ନ ।

ଭାରତରେ ନାଥଙ୍କର ଅଭାବ ନାହିଁ । ସୋମନାଥ, ବୈଦ୍ୟନାଥ, ଗୋଲକନାଥ ଆଦି ବହୁ ନାଥ ଅଛନ୍ତି । କୁହାଯାଏ ଜଗନ୍ନାଥ ସମସ୍ତଙ୍କ ଊର୍ଦ୍ଧ୍ୱରେ । କାରଣ ଅନ୍ୟ ସମସ୍ତେ ଏକ ନିର୍ଦ୍ଦିଷ୍ଟ ମତ, ବିଶ୍ୱାସ, ବ୍ୟବସ୍ଥା ବା ଅଞ୍ଚଳର ନାଥ । ସେମାନଙ୍କର ପରିସର ସୀମିତ । କିନ୍ତୁ ଜଗନ୍ନାଥ ସବୁ ସୀମାର ବାହାରେ । ସେ ସମସ୍ତଙ୍କୁ ଆଲିଙ୍ଗନ କରନ୍ତି, କିନ୍ତୁ କାହାରି ଆଲିଙ୍ଗନରେ ଆବଦ୍ଧ ନୁହନ୍ତି । ସବୁ ଦେବାଦେବୀ ଜଗନ୍ନାଥ ମନ୍ଦିରରେ ଠୁଳ । ସେମାନେ ପ୍ରତ୍ୟେକ ଭଗବାନଙ୍କର ଏକ ଅଂଶ ହେଲାବେଳେ ଜଗନ୍ନାଥ ସ୍ୱୟଂ ଭଗବାନ, ପରମାତ୍ମା । ତାଙ୍କୁ ନିରାକାର, ସାକାର, ସଗୁଣ, ନିର୍ଗୁଣ, ସବିଶେଷ, ନିର୍ବିଶେଷ ଆଦି ସବୁର ଅଧିକାରୀ ବୋଲି ଗଣାଯାଏ । ଶବର ସଭ୍ୟତାଠାରୁ ବୌଦ୍ଧ, ଜୈନ, ହିନ୍ଦୁ ଶୈବ, ଶାକ୍ତ, ବୈଷ୍ଣବ ଆଦି ବିଭିନ୍ନ ଧର୍ମ ଓ ମତରେ ସମନ୍ୱୟ ରୂପେ ଦେଖାଯାଏ ଏପରିକି ଏକ ସମୟରେ ଇସ୍‌ଲାମ ଓ ଈଶାଇକୁ ମଧ୍ୟ ଟାଣିବାର ଚେଷ୍ଟା ଯେ ନ ହୋଇଛି, ନୁହେଁ । ଜାତିଭେଦ ଓ ଭେଦାଭେଦ - ଶୂନ୍ୟତା ଉଭୟ ସେଠି ପ୍ରକଟିତ । ତାଙ୍କର ଦେହର ବର୍ଣ୍ଣ ଅନୁସାରେ ଶ୍ୱେତକୁ ବ୍ରାହ୍ମଣ, ଲୋହିତକୁ କ୍ଷତ୍ରିୟ, ହରିଦ୍ରାକୁ ବୈଶ୍ୟ ଓ କୃଷ୍ଣକୁ ଶୂଦ୍ରଙ୍କ ନିଦର୍ଶନ ବୋଲି ପ୍ରଚାର କରାଯାଏ । ପୃଥିବୀର ସବୁ ମୌଳିକ ଜାତିକୁ ଜଗନ୍ନାଥଙ୍କଠାରେ ଆବିଷ୍କାର କରାଯାଏ । କକେସୀୟ, ମଙ୍ଗୋଲଏଡ୍, ନିଗ୍ରୋ, ଆମେରିକାନ, ଭାରତୀୟ ଯଥାକ୍ରମେ ଜଗନ୍ନାଥଙ୍କର ଦେହର ଶ୍ୱେତ, ପୀତ, କୃଷ୍ଣ ଓ ଲୋହିତର ପ୍ରତିଫଳନ ରୂପେ ଗଣ୍ୟ ହୁଅନ୍ତି । ତେଣୁ ସେ କେବଳ ଭାରତର ବା କୌଣସି ଏକ ଯୁଗର ବା କୌଣସି ଏକ ଜାତି, ଧର୍ମ ବା ଗୋଷ୍ଠୀର ନୁହନ୍ତି; ସେ ସମଗ୍ର ଜଗତର, ସମଗ୍ର ମାନବ ଜାତିର, ସବୁ ଯୁଗର ସଙ୍କେତ ରୂପେ ବିରାଜିତ ବା କଳ୍ପିତ । ଏ ସବୁ ଦିନକରେ ଘଟିନାହିଁ । ମାନବ ସଭ୍ୟତାର ବିକାଶ ଭିତର ଦେଇ ଆସିଛି । ପ୍ରତ୍ୟେକେ ନିଜର ମତ, ବିଚାର, ବିଶ୍ୱାସ ଓ ଧାରଣା ଅନୁଯାୟୀ ବିଭିନ୍ନ ସମୟରେ ଜଗନ୍ନାଥଙ୍କୁ ନାନା ଭାବରେ ଚିତ୍ରଣ କରିବାରେ ଲାଗିଛନ୍ତି ।

ଅତଏବ, ଜଗନ୍ନାଥ ଏକ ବିଶ୍ୱଜନୀନ ବିଚାର, ଏକ ଐତିହାସିକ ଆବେଗ, ଏକ ସଂସ୍କୃତିକ ସମନ୍ୱୟ, ଏକ ସାମାଜିକ ସମଦର୍ଶିତା; ଆଉ ଏକନିଷ୍ଠ ମାନବିକ ଭାବନା ଭାବେ — ଇତିହାସର ଏକ ଅଖଣ୍ଡ ସଙ୍କେତ ରୂପେ ଦଣ୍ଡାୟମାନ । ସେହି ସବୁ ସମନ୍ୱୟର ସଂଙ୍କେତ ଇଙ୍ଗିତ ଶୂନ୍ୟ ନୁହେଁ । ବିଭିନ୍ନ ଧର୍ମ ବିଶ୍ୱାସ, ମତାନ୍ଧତା, ଓ କୁସଂସ୍କାର ଆଦି ଜଗନ୍ନାଥଙ୍କ ଠାରେ ଯୁଗ ଯୁଗ ଧରି, ପରସ୍ତକୁ ପରସ୍ତ ବୋଳା ହୋଇଆସିଛି । କିନ୍ତୁ ତାଙ୍କର ମୂଳସତ୍ତାକୁ କେହି ଢ଼ାଙ୍କି ପାରିନାହାନ୍ତି । ଜଗନ୍ନାଥଙ୍କୁ ଯିଏ ଯେତେ ଗ୍ରାସ କରିବାକୁ ବସିଲେ ବି ତାଙ୍କର ନିଜର ବୈଶିଷ୍ଟ୍ୟ ସଦା ଜାଗ୍ରତ ।

ତା ହୋଇ ନ ଥିଲେ ଜଗନ୍ନାଥ ତାଙ୍କ ନିଜର ସ୍ୱତନ୍ତ୍ରତା ହରାଇ କେଉଁଦିନୁ ଏକ ସାଧାରଣ ଠାକୁରରେ ପରିଣତ ହୋଇସାରନ୍ତେଣି ।

ଜଗନ୍ନାଥଙ୍କ ସମ୍ବନ୍ଧରେ ଆଲୋଚନାର ଅଭାବ ନାହିଁ । ସେଥିମଧ୍ୟରୁ ଅଳ୍ପ କିଛି ଛାଡ଼ିଦେଲେ ଅଧିକାଂଶ ଧର୍ମ, ପୁରାଣ, କାହାଣୀ, କିମ୍ବଦନ୍ତୀ ଆଧାରିତ । ଇତିହାସର ଗବେଷଣା ଗତାନୁଗତିକ ପଥ ଛାଡ଼ି ନାହିଁ । ମନ୍ଦିର ପରିକ୍ରମା ଭଳି ସମସ୍ତେ ତାଙ୍କର ସିଂହାସନ ଚାରିପାଖେ ଘୁରନ୍ତି, କିନ୍ତୁ ସେଇ ସିଂହାସନ କେଉଁ ସାମାଜିକ, ଅର୍ଥନୈତିକ, ଐତିହାସିକ ଓ ଦାର୍ଶନିକ ଧାରଣାର ଭିତ୍ତି ଉପରେ ପ୍ରତିଷ୍ଠିତ, ସେଥିପ୍ରତି ଦୃଷ୍ଟି ଦିଅନ୍ତି ନାହିଁ । ଜଗନ୍ନାଥ ମତ, ଧର୍ମ, ଧାରଣାକୁ ମୂଳରୁ ଚୂଳ ଯାଏ ଆଲୋଚନା କରନ୍ତି, କିନ୍ତୁ ତାହା ଯେଉଁ ଲୋକଙ୍କ ମୁଣ୍ଡରୁ ଉଠିଛି, ପ୍ରସାର ଲାଭ କରିଛି, ସେହି ଲୋକ କେଉଁମାନେ, ତାଙ୍କୁ କେହି ଲୋଡନ୍ତି ନାହିଁ । ଯେକୌଣସି ମତ, ଧର୍ମ-ଧାରଣା ଯେତେ ସତ୍ୟ ଶକ୍ତିଶାଳୀ ଏବଂ ଯେତେ ପ୍ରାଚୀନ ବା ଆଧୁନିକ ହେଉ ନା କାହିଁକି, ତା ଶୂନ୍ୟରେ ଝୁଲେ ନାହିଁ । ତା ଏକ ନିର୍ଦ୍ଦିଷ୍ଟ ଅବସ୍ଥାର, ଏକ ନିର୍ଦ୍ଦିଷ୍ଟ ପ୍ରକାର ଲୋକଙ୍କର ମତ ଓ ବିଶ୍ୱାସ । ସେହି ଲୋକ କିଏ, କେଉଁ ସମୟର, କିପରି ଚଳନ୍ତି, କଣ ଖାଆନ୍ତି, କି କାମ କରନ୍ତି, କିଭଳି ସେମାଙ୍କର ମଧ୍ୟରେ ପରସ୍ପରରେ ସମ୍ପର୍କ ଇତ୍ୟାଦି ବିଷୟ ନେଇ କେହି ପ୍ରଶ୍ନ କରନ୍ତି ନାହିଁ । ଭାବନ୍ତି ସେଗୁଡ଼ାକ ନିରର୍ଥକ, ଅବାନ୍ତର । ଫଳରେ ସେହିସବୁ ମତ, ବିଶ୍ୱାସ, ଧର୍ମ ଧାରଣା ମଣିଷ ମନର ସୃଷ୍ଟି ନ ହୋଇ ତାହା ହୁଏ ଆପେ ଆପଣାର ସୃଷ୍ଟି — ସ୍ୱୟମ୍ଭୂ ହୋଇ ଉଠେ, ତା ହୁଏ ଏକ ମାନବାତୀତ ଶକ୍ତି ।

ଆମର ବହୁ ବିଦ୍ୱାନ ପଣ୍ଡିତ ଏହି ପ୍ରକାର ମତପୋଷଣ କରିଥାନ୍ତି । ଦେଖାଯାଏ, ଏପରି ମତ ମୂଳତଃ ବେଦ ପ୍ରତି ସେମାନଙ୍କର ଦୃଷ୍ଟିକୋଣରୁ ଉଦ୍ଭବ । ସେମାନେ ଧରି ନିଅନ୍ତି ବେଦ ଅପୌରୁଷେୟ । ତାହା ମଣିଷକୃତ ନୁହେଁ । ଖୋଦ୍ ଭଗବାନଙ୍କର ସୃଷ୍ଟି । ସବୁ ଜ୍ଞାନର ବୀଜ ତାହାରି ଭିତର ନିହିତ । ଯାହା ଅପୌରୁଷେୟ, ତାହା ସ୍ୱତଃପ୍ରବୃତ୍ତ, ଅଲଙ୍ଘନୀୟ । ତାହା ପ୍ରଶ୍ନାତୀତ । ସେ ନେଇ ଆଉ କୌଣସି ପ୍ରଶ୍ନର ଅବକାଶ ନାହିଁ । ତେଣୁ ତାହା ନିଜେ ଆଉ ପରୀକ୍ଷା ନିରୀକ୍ଷାର ବସ୍ତୁ ନ ହୋଇ, ତାହା ହୁଏ ଜଗତର ଯାବତୀୟ ବିଷୟର ପରୀକ୍ଷାର ଆଧାର । ଥରେ ଜଗନ୍ନାଥଙ୍କୁ ସ୍ୱୟଂଭୂ କରିଦେଲେ ତେଣିକି ଜଗନ୍ନାଥ ମଣିଷର ସୃଷ୍ଟି ନ ହୋଇ, ମଣିଷ ହୁଏ ଜଗନ୍ନାଥଙ୍କ ସୃଷ୍ଟି । ଶେଷରେ ଜଗନ୍ନାଥଙ୍କ ସମ୍ବନ୍ଧରେ ଆଲୋଚନା ବା ଗବେଷଣା, ତାଙ୍କର ରହସ୍ୟ, ଐତିହାସିକ ବିକାଶର ତାତ୍ପର୍ଯ୍ୟ ଉଦ୍‌ଘାଟନ କରିବା ପରିବର୍ତ୍ତେ, ପତ୍ୟକ୍ଷରେ ହେଉ ବା ପରୋକ୍ଷରେ ହେଉ, ତାର ପରିଣତି ଜଗନ୍ନାଥଙ୍କ ମହିମା କିର୍ତ୍ତନରେହିଁ ପର୍ଯ୍ୟବସିତ ହୁଏ ।

ଜଗନ୍ନାଥଙ୍କୁ ବୁଝିବାକୁ ହେଲେ କେବଳ ଇତିହାସ ବକ୍ଷରେ ମାନବ ସମାଜର ବିକାଶ ଭିତରେହିଁ ତାଙ୍କୁ ଦେଖିବାକୁ ହେବ । ମାନବ ବ୍ୟତିରେକେ ଜଗନ୍ନାଥଙ୍କ ଅସ୍ତିତ୍ୱହିଁ ନାହିଁ ।

ହିନ୍ଦୁଶାସ୍ତ୍ର, ପୁରାଣ ସବୁ ଦେବଦେବୀଙ୍କୁ ଅତି ସୁନ୍ଦର କମନୀୟ କରି ଗଢ଼ିଛି । ତାଙ୍କର ରୂପ ଅନୁଯାୟୀ ସେମାନଙ୍କୁ ବିଭିନ୍ନ ଶୋଭାରେ ମଣ୍ଡିତ କରିଛି । କିନ୍ତୁ ଯିଏ ସର୍ବଶ୍ରେଷ୍ଠ ଦେବ ତାଙ୍କୁ ଥୋଇଛି ହାତ ଗୋଡ଼ହୀନ ଖଣ୍ଡିଆ ମାଦଳ କରି । ସେ ସବୁଠୁ କିମ୍ଭୂତକାର, କଦାକାର, ଅଥଚ ତାଙ୍କରିଠାରୁ ହିଁ ସେ ସବୁ କିଛି ଆଶା କରେ ଏବଂ ତାଙ୍କୁ ସର୍ବଶକ୍ତିମାନ୍ ବୋଲି ବିଚାରେ । ଏହି ବିପରୀତ ଦୃଷ୍ଟି କାହିଁକି ? ତାର ସେଇ ମୌଳିକ ପାର୍ଥକ୍ୟ କେଉଁଠି ?

ସେମିତି, ଭଗବାନ୍ ଶ୍ରୀକୃଷ୍ଣ ଘୋଷଣା କରନ୍ତି —'ଚାତୁର୍ବର୍ଣ୍ଣ୍ୟଂ ମୟା ସୃଷ୍ଟମ୍ ।' ଜାତି, ବର୍ଣ୍ଣର କାରଣ ନିଜେ ଭଗବାନ, ଅଥଚ ଜଗନ୍ନାଥଙ୍କ କ୍ଷେତ୍ରରେ ଜାତି, ବର୍ଣ୍ଣର ପ୍ରଶ୍ନ ନାହିଁ ।

ଠିକ୍ ତାର ଓଲଟା । ସେହିପରି ହିନ୍ଦୁଧର୍ମ ଅନୁସାରେ ଲୋକ ପୂର୍ବଜନ୍ମ ଅନୁଯାୟୀ ତାର କର୍ମଫଳ ଭୋଗ କରେ । ସାନ, ବଡ, ଧନୀ, ନିର୍ଦ୍ଧନ, ଛୁଆଁ ଅଛୁଆଁ ହୋଇ ଜନ୍ମ ହୁଏ । ଜନ୍ମ ହୋଇ ଜାତିଭେଦ ଅନୁସାରେ ସେହି କର୍ମ କରେ । ଅଥଚ ଜଗନ୍ନାଥ ସାମ୍ୟ ନୀତି ଉପରେ ପ୍ରତିଷ୍ଠିତ । ତାଙ୍କର ଜଗତରେ ବା ସମାଜରେ ସାନ ବଡର ଭେଦ ନାହିଁ । ସାମ୍ୟର ପ୍ରତିଷ୍ଠା ଯୋଗୁଁ ପୂର୍ବଜନ୍ମ ବା ପରଜନ୍ମରେ ଅସାମ୍ୟର ବା ଶୋଷଣ ନିର୍ଯ୍ୟାତନାରେ ଶିକାର ହେବାର ପ୍ରଶ୍ନ ନାହିଁ । ପୁଣି ଦେଖିଲେ, କୌଣସି ଦେବତାଙ୍କର ମୃତ୍ୟୁ ନାହିଁ । ସେମାନେ ଅମର । ଏକମାତ୍ର ମୃତ୍ୟୁ ରହିଛି କେବଳ ଜଗନ୍ନାଥଙ୍କର । ତେଣୁ ସର୍ବଶ୍ରେଷ୍ଠ ଦେବଦାଙ୍କର ମୃତ୍ୟୁ, ଏପରି ଏକ ଓଲଟା କଥା କାହିଁକି ? ସାଧାରଣ ଦେବପ୍ରତିମା ପଥରରେ ହେଲାବେଳେ ଜଗନ୍ନାଥ କାହିଁକି କାଠର ଗଢ଼ା ?

ପୁଣି ଯେତେ ଦେବ ଦେବୀ, ଧର୍ମବିଶ୍ୱାସ ସବୁ ଧାଇଁଛନ୍ତି ଜଗନ୍ନାଥଙ୍କ ପାଖକୁ । ତାଙ୍କ ସାନିଧ ଲାଭଲାଗି । କିନ୍ତୁ ଜଗନ୍ନାଥ ନିଜେ କୁଆଡ଼େ ଯିବା ବା କାହାସଙ୍ଗେ ମିଶିବା, କୌଣସି ଧର୍ମ-ଧାରଣାର ଭାଗୀଦାର ହେବାର ଦେଖାଯାଏ ନାହିଁ । ସେ ସେହିପରି ଅଚଳ ଓ ଅଟଳ । ସବୁ ଦେବତାଙ୍କ କ୍ଷେତ୍ରରେ ଶାପ, ଅଭିଶାପ, ପୂର୍ବଜନ୍ମ, ପରଜନ୍ମ, ରାଗ କ୍ରୋଧ, ଦୟା ନିର୍ଦ୍ଦୟତା, ଭଲବନ୍ଦ ଆଦି ବିଭିନ୍ନ ଗୁଣ ରହିଛି । ଏକମାତ୍ର ଜଗନ୍ନାଥ, ଯେକି ଏ ସବୁର ଉର୍ଦ୍ଧ୍ୱରେ । ସେଠି ମଙ୍ଗଳ ଛଡା ଅମଙ୍ଗଳର ପ୍ରଶ୍ନ ନାହିଁ । ତେଣୁ କୁହାଯାଏ ସେ ସର୍ବମଙ୍ଗଳ ଜଗନ୍ନାଥ ।

କାହିଁକି ଜଗନ୍ନାଥଙ୍କ କ୍ଷେତ୍ରରେ ବିପରୀତ ଗୁଣ ? ମଣିଷର ଏଇ ବିପରୀତ କଳ୍ପନା କଣ ଭିତ୍ତିହୀନ ?



# ଦ୍ୱିତୀୟ ପର୍ବ

## ଦୁଇ ଦୃଷ୍ଟିରେ ଦୁଇ ପଥ :

ସାଧାରଣତଃ ଦୁଇଟି ଦୃଷ୍ଟିକୋଣରୁ ଜଗନ୍ନାଥଙ୍କୁ ଦେଖିବାର ଚେଷ୍ଟା ହୋଇଆସିଛି । ଗୋଟିଏ ଆଧାତ୍ମିକ, ଅନ୍ୟଟି ଭୌତିକ । ସେ ପ୍ରତ୍ୟେକଙ୍କ ଭିତରେ ପୁଣି ଭିନ୍ନ ଭିନ୍ନ ମତ ଅବଶ୍ୟ ରହିଛି । ଆଧାତ୍ମିକତାର ଭିତ୍ତି ହେଲା— ଧର୍ମ, ସଂସ୍କୃତି, କାହାଣୀ, କିମ୍ବଦନ୍ତୀ । ଭୌତିକତାର ଭିତ୍ତି ହେଉଛି ବାସ୍ତବ ଅବସ୍ଥା, ସାମାଜିକ ଅର୍ଥନୈତିକ ବିକାଶ — ଇତିହାସ । ପ୍ରଥମ ବିଷୟଟି ଧର୍ମ— ତା ପୂରାପୂରି ବିଶ୍ୱାସ ଉପରେ ପ୍ରତିଷ୍ଠିତ । ସେଠି କ'ଣ କାହିଁକି ବା କିପରି — କୌଣସି ସାକ୍ଷ୍ୟ ପ୍ରମାଣର ପ୍ରଶ୍ନ ନାହିଁ । ଜଗନ୍ନାଥ ସଂସ୍କୃତି ବୋଲି ଯାହାକୁ କହାଯାଏ, ତାହା ମୁଖ୍ୟତଃ ହିନ୍ଦୁଶାସ୍ତ୍ର, ସାହିତ୍ୟ ବିଚାର ଉପରେ ଆଧାରିତ । ବହୁ କ୍ଷେତ୍ରରେ ତାହା ମଧ୍ୟ ପୁରାଣ, କିମ୍ବଦନ୍ତୀଙ୍କୁ ନିଜର ଭିତ୍ତି କରି ଧରେ । ମୁଖ୍ୟତଃ ଯେଉଁମାନେ ଭୌତିକ ଅବସ୍ଥାର ଅନୁସରଣ କରନ୍ତି, ସେମାନେ ଅନାର୍ଯ୍ୟ ଶବର ଜାତିର ଦାରୁଦେବତାଙ୍କୁ ଜଗନ୍ନାଥ ବୋଲି କହନ୍ତି । ଉଭୟ, ଆଧାତ୍ମିକବାଦୀ ଓ ଭୌତିକବାଦୀ କିନ୍ତୁ ଜଗନ୍ନାଥଙ୍କ ସାମ୍ୟ - ମୈତ୍ରୀ ଧର୍ମ ବିଷୟରେ ଏକମତ । ସେଇ ସାମ୍ୟ-ମୈତ୍ରୀର ଧାରଣା ଯେତେ ସଂକୀର୍ଣ୍ଣ, ଓ ତାର ଚରିତ୍ରକୁ ଯେତେ ବିକୃତ କରାହେଲେ ବି ବର୍ତ୍ତମାନ ସୁଦ୍ଧା ତାହା ପ୍ରଚଳିତ; ତାହାହିଁ ଜଗନ୍ନାଥଙ୍କର ପ୍ରଧାନ ବୈଶିଷ୍ଟ୍ୟ ।

ଓଡ଼ିଶାରେ ପ୍ରଥମଟିର ସବୁଠାରୁ ବଡ଼ ତାତ୍ତ୍ୱିକ ପ୍ରବକ୍ତା ହେଉଛନ୍ତି ପଣ୍ଡିତ ନୀଳକଣ୍ଠ ଦାସ । ସେ ଧର୍ମର ସାଧାରଣ ଅନ୍ଧବିଶ୍ୱାସକୁ ପ୍ରତ୍ୟାଖ୍ୟାନ କରନ୍ତି । ତାର ବହୁ କୁସଂସ୍କାର, ବିଧିବିଧାନକୁ କଠୋର ସମାଲୋଚନା କରିଛନ୍ତି । ହେଲେ ବି, ତାର ମୂଳଭିତ୍ତି ବିଶ୍ୱାସର କବଳରୁ ନିଜକୁ ମୁକ୍ତ କରିପାରି ନାହାନ୍ତି । ବରଂ ତାକୁ ଆତ୍ମନିଷ୍ଠ, ତାତ୍ତ୍ୱିକ ଆଚ୍ଛାଦନ ଦେଇ ଗୂଢ଼ ଦାର୍ଶନିକ ବ୍ୟାଖ୍ୟା ଦ୍ୱାରା ପରିପୁଷ୍ଟ ଓ ସାବ୍ୟସ୍ତ କରିବାର ଚେଷ୍ଟା କରିଛନ୍ତି । ଜଗନ୍ନାଥଙ୍କୁ ସ୍ଥାନ, କାଳ ପାତ୍ରର ଊର୍ଦ୍ଧ୍ୱରେ

ଥୋଇଛନ୍ତି । ସମାଜର ବାସ୍ତବତା ଇତିହାସର ସ୍ରୋତରୁ ଅପସରି ଯିବାଦ୍ୱାରା ନିଜେ ନିଜର ମତକୁ ପ୍ରତିପାଦିତ କରିବାରେ ସମର୍ଥ ହୋଇ ନାହାଁନ୍ତି ।

ପଣ୍ଡିତ ନୀଳକଣ୍ଠ ଜଗନ୍ନାଥ ଧର୍ମର ପ୍ରାଚୀନତା ଓ ତାର ମହାନ୍ ତାତ୍ପର୍ଯ୍ୟ ଦର୍ଶାଇବାକୁ ଯାଇ ବେଦରୁ ଆରମ୍ଭ କରି ଗୀତାରେ ପହଞ୍ଚିଛନ୍ତି । ଋଗ୍ ବେଦର ସୁପ୍ରସିଦ୍ଧ ନାସଦୀୟ ସୂତ୍ରରୁ ଉଦ୍ଧାର କରି ସେ କହିଛନ୍ତି - ''ଏ ସୂକ୍ତସମୂହରେ ଋଷି କୌଣସି ସିଦ୍ଧାନ୍ତରେ ପହଞ୍ଚି ପାରୁନାହାନ୍ତି, ଖାଲି କୌଣସି ପ୍ରତିଷ୍ଠିତ ଶୂନ୍ୟବାଦର ଅଲଙ୍ଘ୍ୟ ପ୍ରବାହରେ ପଡ଼ି ଯେପରି ଦରାଣ୍ଡି ହେଉଛନ୍ତି । ବିଶେଷ କରି ପୁଣି ଏଇ ସୂକ୍ତଟିରେ ଲକ୍ଷ୍ୟ କରିଅଛି (ତୃତୀୟ ଋକ୍) ଶୂନ୍ୟରୂପ, (ଆଭୂଃ) ତୁଚ୍ଛ (ମାୟା) ଘେରି ରହିବା । - (ଯୋଗରେ ରହିଥିବା ମାୟା ବା ଯୋଗମାୟା) ସେଥିରୁ ବହୁ ହେବାକୁ ବା ସୃଷ୍ଟିକରିବାକୁ ଚେଷ୍ଟା (ତପଃ) ଏହିତପ ସଙ୍ଗେ 'ବ୍ରହ୍ମ' ପ୍ରଜ୍ୱଳିତ ହେଇ ଉଠିଲା ଓଁ ତପ୍ତି ଉଠିଲା । - କଥା ଦି ଓଟି ତୁଳନୀୟ......(୧)......ଏକ ଦିଗରେ....ମହାଶୂନ୍ୟ, ଅନ୍ୟଆଡ଼େ ବି ମହାପ୍ରିୟ ।

''ଏହିପରି ଦ୍ୱନ୍ଦ୍ୱରେ ପଡ଼ି ସେ କ୍ରମେ ଏହି ତତ୍ତ୍ୱ ସମାଧାନ ଆଡ଼କୁ ଉଠିଛି ଏବଂ ପରେ ତାର ସମାଧାନ ହୋଇଛି । ଶେଷ ସମାଧାନ ପ୍ରକାଶ ପାଇଛି ଗୀତାରେ - ପୁରୁଷୋତ୍ତମରେ ।''

ଗୀତାର ପନ୍ଦର ଅଧ୍ୟାୟର ଅଠର ଶ୍ଳୋକ ଉଦ୍ଧାର କରି ପଣ୍ଡିତ ନୀଳକାଣ୍ଠ କହନ୍ତି - ''ଯେଣୁ ମୁଁ କ୍ଷର ବା ବ୍ୟକ୍ତ ପୁରୁଷରୁ ଅତୀତ ଓ ଅକ୍ଷର ବା ଅବ୍ୟକ୍ତ ପୁରୁଷରୁ ଉତ୍ତମ, ଏଣୁ ଲୋକରେ ସ ବେଦରେ ପରୁଷୋତ୍ତମ ବୋଲି ପ୍ରସିଦ୍ଧ ।''(୨)

ଏହାକୁ ଆଲୋଚନା କରି ନୀଳକଣ୍ଠ କହନ୍ତି, ''ଗୀତାରେ ପୁରୁଷୋତ୍ତମ ତତ୍ତ୍ୱରେ ଯେଉଁ ବ୍ୟାଖ୍ୟା ଦିଆଯାଇଛି, ଆଗରୁ ଲୋକରେ ପ୍ରଚଳିତ ଥିବା କୌଣସି ଉପାସ୍ୟ ଦେବ ପୁରୁଷୋତ୍ତମଙ୍କୁ ଦାର୍ଶନିକଭାବେ ବୁଝିବାପାଇଁ କୁହାଯାଇଛି ।.... ଏଇ ପୁରୁଷୋତ୍ତମ ତତ୍ତ୍ୱ, ଉପାସନା କେଉଁଠି ପ୍ରକାଶ ଓ ପ୍ରତିଷ୍ଠା ପାଇଥିଲା, ତା କିଏ କରିଥିଲା, ଏଥିରେ ସନ୍ଦେହ କରିବାର କିଛି ନାହିଁ । ଏହା କଳିଙ୍ଗରେ ହୋଇଥିଲା ଏବଂ ଓଡ଼ିଆଙ୍କ ପୂର୍ବସୂରୀମାନେ କରିଥିଲେ ।'' (୩) ''ଲୋକରେ ଉପାସ୍ୟ ଦେବ ରୂପେ ପୁରୁଷୋତ୍ତମ ହେଉଛନ୍ତି ପ୍ରାଚୀନ କଳିଙ୍ଗ ବା ଏବର ଓଡ଼ିଶାର ପୁରୁଷୋତ୍ତମ - ପୁରୀ, ବା ପୁରୀର ଜଗନ୍ନାଥ । ଗୀତା ବେଳକୁ ଆଉ କୁତ୍ରାପି ଭକ୍ତର ଉପାସ୍ୟ ଭକ୍ତର ଉପାସ୍ୟ ରୂପେ ପୁରୁଷୋତ୍ତମ ନାହାନ୍ତି ।'' (୪)

''ଅନନ୍ତ ବର୍ମ ଚୋଡ଼ଗଙ୍ଗ ଦେବ୍ ଏବଂ ତାଙ୍କ ପୁଅ, ନାତି, ବାରଶ ଖ୍ରୀଷ୍ଟାବ୍ଦ ଶତକରେ ଦେଉଳ ତୋଳାଇ ମଠ ପ୍ରତିଷ୍ଠା କରିଥିଲେ ।'' (୫)

---

(୧) 'ଓଡ଼ିଆ ସାହିତ୍ୟର କ୍ରମପରିଣାମ' ପଣ୍ଡିତ ନୀଳକଣ୍ଠ ଦାସ, ପୃଷ୍ଠା-୧୬୨

(୨) ଏଜନ, ପୃ -୧୬୩-୧୬୪ (୩) ଏଜନ, ୧୬୪ ପୃଷ୍ଠା

(୪) ଏଜନ, ୧୬୫ ପୃଷ୍ଠା (୫) ଏଜନ, ୧୬୯ ପୃଷ୍ଠା

ପଣ୍ଡିତ ନୀଳକଣ୍ଠ ଏହାଦ୍ୱାରା ପ୍ରମାଣ କରିବାକୁ ଚାହାନ୍ତି ଯେ ଗୀତାରେ ପୁରୁଷୋତ୍ତମଙ୍କ ଉଲ୍ଲେଖ ପୂର୍ବରୁ ସେ ଦେବତା ରୂପରେ ଓଡ଼ିଶାରେ ପୂଜିତ ହେଉଥିଲେ । ଆଉ ସେ ହେଲେ ଜଗନ୍ନାଥ । ଅନ୍ୟ ଦିଗରୁ ବିଚାରିଲେ, ସେ ହେଲେ ଋକ୍ ବେଦର ନାସଦୀୟ ସୂକ୍ତରେ ସୃଷ୍ଟିନେଇ ଉତ୍‌ଥାପିତ ପ୍ରଶ୍ନର ସମାଧାନ । ଅର୍ଥାତ୍, ଜଗନ୍ନାଥଙ୍କର ମୂଳ ସୂଚନା ଋକ୍ ବେଦରେ ପ୍ରକାଶ ପାଇ ଥିଲେ ହେଁ ତାହା କିନ୍ତୁ ରୂପ ନେଇଛି ଗୀତାର ରଚନା ପୂର୍ବରୁ ଓଡ଼ିଶାର ପୁରୁଷୋତ୍ତମରେ । ବର୍ତ୍ତମାନ ଗବେଷକମାନେ ଏହା ଦେଖନ୍ତି ନାହିଁ । ଏ ହେଲା ବେଦର ଗାର ଭଳି ! ଜଗନ୍ନାଥଙ୍କ ଜନ୍ମର ପ୍ରମାଣ । ଜଗନ୍ନାଥଙ୍କ ସଂମ୍ପର୍କରେ ଉପରୋକ୍ତ ଧାରଣା କେଉଁସମୟରେ, କେଉଁ ସମାଜରେ, କେଉଁ ଲୋକଙ୍କ ଭିତରେ କେବେ ଦେଖାଦେଇଛି, ଉକ୍ତ ଅସଲ ପ୍ରଶ୍ନଟିକୁ ସେ ଆଲୋଚନା କରିନାହାନ୍ତି । ସେ ଲୋକମାନେ କିଏ ? ସେମାନେ ସଭ୍ୟତାର କେଉଁ ସ୍ତରରେ ଥିଲେ ? ବେଦକୁ ମୂଳକରି ଧରିଲା ବେଳେ ଜଗନ୍ନାଥଙ୍କ ପ୍ରତି ବୈଦିକ ହିନ୍ଦୁଭାବେ ବା ଆର୍ଯ୍ୟ ସଭ୍ୟତାର ଭାବନା ତାଙ୍କ ପ୍ରତି ଆରୋପ କରାଯାଏ । ତାଙ୍କୁ ହିନ୍ଦୁ ଦେବତାରେ ପରିଣତ କରିବାର ଚେଷ୍ଟା ହୁଏ । ତା ପୂର୍ବରୁ ଜଗନ୍ନାଥଙ୍କର ଅସ୍ତିତ୍ୱକୁ ଅସ୍ୱୀକାର କରାଯାଏ । ତାହା ସ୍ୱୀକାର କରିବା ମାନେ ତାଙ୍କୁ ଏକ ଅଣଆର୍ଯ୍ୟ ବା ଅନାର୍ଯ୍ୟ ଦେବତା ବୋଲି ସ୍ୱୀକାର କରିବା । କାରଣ, ଆର୍ଯ୍ୟମାନେ ପ୍ରଥମେ ଭାରତରେ ପ୍ରବେଶ କରନ୍ତି ଖ୍ରୀ:ପୂ: ପ୍ରାୟ ସତର ଶହ ଶତାବ୍ଦୀରେ । ତାଙ୍କର ଦ୍ୱିତୀୟ ପ୍ରବେଶ ଘଟେ ତାର ଛଅଶହ ବର୍ଷ ପରେ, ଖ୍ରୀ:ପୂ: ୧୧ଶହ ବେଳକୁ । ଋକ୍‌ବେଦର ରଚନାକାଳ ହେଉଛି ୧୫ଶହରୁ ୧୦୦୦ ଖ୍ରୀ:ପୂ: ମଧ୍ୟରେ । ତାପରେ ଆସିଛି ବ୍ରାହ୍ମଣ, ଉପନିଷଦର ଯୁଗ । ତାର ସମୟ ହେଉଛି ଏକ ହଜାରରୁ ଛଅଶହ ଖ୍ରୀ:ପୂ: । ତା ପରବର୍ତ୍ତି ଯୁଗ ହେଲା ମଗଧ ଯୁଗ । ଛଅସହରୁ ଦୁଇଶହ ଖ୍ରୀ:ପୂ: ଯାଏ । ପ୍ରଥମ ଋକ୍‌ବେଦ ସମାଜରେ ପଶୁଚାରଣର ପ୍ରଧାନ୍ୟ । ଦ୍ୱିତୀୟ ଯୁଗରେ ପଶୁଚାରଣରୁ କୃଷିକୁ ଅଗ୍ରଗତି; ତାପରବର୍ତ୍ତୀ କାଳରେ କୃଷି ସହିତ ହସ୍ତଶିଳ୍ପ, ବାଣିଜ୍ୟ ଆଦିର ପ୍ରସାର ଓ ପଶୁଚାରଣ ଅବସ୍ଥାର ପୂର୍ଣ୍ଣ ଅବସାନ । ଇତି ମଧ୍ୟରେ ମହାବୀରଙ୍କର ମୃତ୍ୟୁ ଘଟିଛି ଖ୍ରୀ:ପୂ: ୪୬୮ରେ, ବୁଦ୍ଧଙ୍କ ନିର୍ବାଣ ଖ୍ରୀ:ପୂ: ୪୮୩ରେ । ଆଲେକ୍‌ଜାଣ୍ଡାରଙ୍କ ଭାରତ ଆକ୍ରମଣ ୩୨୫ ଖ୍ରୀ:ପୂ: —ଆଉ ମଧ୍ୟ ମଗଧ ସାମ୍ରାଜ୍ୟର ବିସ୍ତାର ।

ଆର୍ଯ୍ୟମାନେ ପ୍ରଥମେ ଆସି ସିନ୍ଧୁନଦୀ କୂଳେ ପଞ୍ଜାବରେ ରହିଛନ୍ତି । ଧୀରେ ଧୀରେ ଆର୍ଯ୍ୟବର୍ତ୍ତ, ଗଙ୍ଗା ଉପତ୍ୟକା ଧରି ଉତ୍ତର ପ୍ରଦେଶ ଓ ବିହାରରେ ପ୍ରବେଶ କରିଛନ୍ତି । ଓଡ଼ିଶାରେ ପହଞ୍ଚିଛନ୍ତି ବହୁତ ପରେ । ବେଦ ରଚିତ ହୋଇଛି ପଞ୍ଜାବରେ ପ୍ରଥମ ଅବସ୍ଥାରେ । ତା ସହିତ ପୁରୀ ଜଗନ୍ନାଥ ବା ପୁରୁଷୋତ୍ତମଙ୍କର କୌଣସି ପ୍ରକାର ସମ୍ପର୍କ ସମ୍ଭବ ନୁହେଁ । ଦ୍ୱିତୀୟରେ ଯେଉଁ ନାସଦୀୟ୍ ସୂକ୍ତରେ ପଣ୍ଡିତ ନୀଳକଣ୍ଠ ପୁରୁଷୋତ୍ତମ ବା ଜଗନ୍ନାଥଙ୍କର ପୂର୍ବାଭାସ ଦେଖନ୍ତି ଦେଖନ୍ତି ଠିକ୍ ସେଇ ଜିନିଷଟଇକୁ ଋକ୍ ବେଦର ଋଷିକବି ପ୍ରଶ୍ନକରି କହନ୍ତି, ''ଏ ସୃଷ୍ଟି ଯେ କେଉଁଠୁ ହେଲା ବା କାହାଠୁ ହେଲା, କିଏ ସୃଷ୍ଟି କରିଥିଲେ କି କରିନାହାନ୍ତି,'' ତାହା ସେଇହିଁ

ଜାଣନ୍ତି - ଯିଏ ପ୍ରଭୁସ୍ୱରୂପ, ପରମଧାମରେ ଅଛନ୍ତି ଅଥବା ସେ ମଧ ଜାଣିପାରି ନଥାନ୍ତି ।'' ଅର୍ଥାତ୍ ଯେଉଁ ପ୍ରଶ୍ନ ଋଷିମାନେ ଉପସ୍ଥାପନ କରିଛନ୍ତି, ତାର ଉତ୍ତର ଦେବାରେ ସେମାନେ ନିଜେ ଅସମର୍ଥ ବୋଲି ସ୍ପଷ୍ଟଭାବରେ ଦର୍ଶାଇଛନ୍ତି । ଏପରିକି ତାହା ଦେବତାମାନେ ନିଜେ ବି ଜାଣନ୍ତି ନାହିଁ । କାରଣ ତାହା ପରେ ଦେବତାମାନଙ୍କର ସୃଷ୍ଟି । ତେଣୁ ଏହି ପ୍ରକାର ସଂଶୟଭାବ ଓ ଅଜ୍ଞବାଦରେ (Agonsticism) ଯେଉଁ ସୂକ୍ତ ପହଞ୍ଚିଛି, ଠିକ୍ ତାକୁ ଭିତ୍ତି କରି ନୀଳକଣ୍ଠ ତାଙ୍କର ଗୂଢ଼ ଜ୍ଞାନ ଓ ଦୃଢ଼ ଯୁକ୍ତିକୁ ପ୍ରତିପାଦିତ କରନ୍ତି । ତାହା ଯୁଗଯୁଗ ଧରି ପ୍ରଚଳିତ ହିନ୍ଦୁ ଧର୍ମର ବଦ୍ଧମୂଳ ଧାରଣାଠାରୁ କୌଣସି ଅଂଶରେ ତିଳେମାତ୍ର ଫରକ୍ ନୁହେଁ । ତାହା ହେଲା ''ଜଗନ୍ନାଥହିଁ ସର୍ବୋଚ୍ଚ ଦେବ, ସବୁ ସୃଷ୍ଟିର ମୂଳ'' ମୋଟ୍‌ଉପରେ, ସେ ମଣିଷର ସୃଷ୍ଟି ନୁହନ୍ତି । କେବଳ ମଣିଷ ତାଙ୍କର ସୃଷ୍ଟି ନୁହେଁ, ସାରା ଜଗତ ତାଙ୍କରିଠାରୁ ଜାତ ।

ଅତଏବ, ଏହା ଜଗନ୍ନାଥଙ୍କ ପ୍ରକୃତ ଆଲୋଚନା ବା ଆବିଷ୍କାର ନୁହେଁ, ଜଗନ୍ନାଥଙ୍କ ମାହାତ୍ମ୍ୟର ପ୍ରଚାର ମାତ୍ର । ଯାହା ହିନ୍ଦୁଧର୍ମର ମୂଳମନ୍ତ୍ର ହୋଇଆସିଛି, ଶେଷରେ ନୀଳକଣ୍ଠ ସେଇଠି ପହଞ୍ଚିଛନ୍ତି ।

ଜଗନ୍ନାଥ ଏପରି ଏକ ସୃଷ୍ଟି, ଯାହାଙ୍କୁ ଦେଖିବାକୁ ଗଲେ କୌଣସି ଏକ ସଂକୀର୍ଣ୍ଣ ଗୋଷ୍ଠୀ ବା ଧର୍ମ ନୁହେଁ, ସମସ୍ତ ଜଗତର ସୃଷ୍ଟି ଭିତରେ ପ୍ରବେଶ କରିବାକୁ ହେବ । ସମସ୍ତ ମାନବ ସମାଜର ପରିବର୍ତ୍ତନ ଭିତରେ ଖୋଜିବାକୁ ପଡ଼ିବ ଏବଂ ତାଙ୍କୁ ଅନୁସରଣ କରିବାକୁ ହେବ ସମୟର ଗତି ଭିତରେ ।

**ଐତିହାସିକ ଆବଶ୍ୟକତା :**

ଜଗନ୍ନାଥଙ୍କ ସମ୍ବନ୍ଧରେ ପ୍ରକାଶିତ ସମସ୍ତ ବିଷୟ, ସାଧାରଣତଃ ଦୁଇ ଦୃଷ୍ଟିକୋଣରୁ ଆଲୋଚିତ । ଗୋଟିଏ ହେଲା ଧର୍ମୀୟ, ଭାବବାଦୀ ବିଚାର । ଏଇ ମତର ମୁଖ୍ୟ ପ୍ରତିନିଧି ଭାବେ ଆମେ ପଣ୍ଡିତ ନୀଳକଣ୍ଠଙ୍କୁ ଦେଖିଲେ । ଅନ୍ୟଟି ହେଉଛି ଐତିହାସିକ ବାସ୍ତବତାବାଦୀ ବିଚାର । ସେହି ମତର ମୁଖ୍ୟ ପ୍ରତିନିଧି ଓ ପ୍ରବକ୍ତାରୂପେ ଡକ୍ଟର ବେଣୀମାଧବ ପାଢ଼ୀ, ଆଉ କୁଲକେ ଓ ତ୍ରିପାଠୀ ଆଦିଙ୍କୁ ଧରିବାକୁ ହେବ ।

ବାସ୍ତବରେ ଏ.ଏସ୍‌ମାନ୍ ଓ ତ୍ରିପାଠୀ ଆଦିଙ୍କର ମିଳିତ ଗବେଷଣା- ''Jaganath Cult and Regional Tradition of Orissa. '' ଏକ ଅପୂର୍ବ ଗ୍ରନ୍ଥ । ଏକ ସମାଗ୍ରିକ ଚିତ୍ର ପାଇବା ଦିଗରୁ ଏହାର ଅନୁଶୀଳନ ଏକାନ୍ତ ଆବଶ୍ୟକ । ଜଗନ୍ନାଥଙ୍କୁ ଦେଖିବାକୁ ଯାଇ ସେମାନେ ଇତିହାସର ମୂଳକୁ ଯିବାର ଚେଷ୍ଟା କରିଛନ୍ତି । ଶବର ଜାତିର କାଠଗଣ୍ଡି ବା ଖୁମ୍ବଠାରୁ ଜଗନ୍ନାଥ ଜନ୍ମକୁ ଅକାଟ୍ୟ କରି ଥୋଇଛନ୍ତି । ବହୁ ଲୁକ୍‌କାୟିତ ତଥ୍ୟ ଉଦ୍‌ଘାଟନ କରିଛନ୍ତି । କିନ୍ତୁ ସେ ସବୁର ତାତ୍ପର୍ଯ୍ୟ ପ୍ରତି ଦୃଷ୍ଟି ଦେଇନାହାନ୍ତି । ସବୁ ଦେବଦେବୀଙ୍କ ପରି ଜଗନ୍ନାଥଙ୍କୁ ଏକ ଜୀବନଶୂନ୍ୟ

ଉଦ୍ଦେଶ୍ୟହୀନ ଦର୍ଶନୀୟ ବିଷୟ ଓ ପୂଜନୀୟ ଧାରଣାରେ ପରିଣତ କରିଛନ୍ତି । ତାଙ୍କୁ ଏକ ଅଭୀଷ୍ଟ ସାଧନକାରୀ ପ୍ରାର୍ଥନୀୟ ଶକ୍ତିଭାବେ କଳ୍ପନା କରିଛନ୍ତି । ତାଙ୍କୁ ଏକ ଅଭୀଷ୍ଟ ସାଧନକାରୀ ପ୍ରାର୍ଥନୀୟ ଶକ୍ତିଭାବେ କଳ୍ପନା କରିଛନ୍ତି । ଯେଉଁଠି କି ଅତୀତର ଭବିଷ୍ୟତ୍ ନାହିଁ, ଅର୍ଥାତ୍, ଭବିଷ୍ୟତ ଲାଗି ଅତୀତ ଅର୍ଥହୀନ ଏବଂ ଅତୀତ ଲାଗି ଭବିଷ୍ୟତ ବିକାଶ ଶୂନ୍ୟ । ଫଳରେ ଜଗନ୍ନାଥ ଇତିହାସର ଏକ ଉଦ୍ଦେଶ୍ୟହୀନ ଓ ନିର୍ଦ୍ଦେଶଶୂନ୍ୟ ସୃଷ୍ଟି । ଅଥଚ ଠିକ୍ ଏଇଠି ଜଗନ୍ନାଥଙ୍କ ବୈଶିଷ୍ଟ୍ୟ- ଅନ୍ୟ ଦେବତାଙ୍କ ଠାରୁ ତାଙ୍କର ଫରକ୍, ଅତି ମୌଳିକ, ଗୁଣାତ୍ମକ ପାର୍ଥକ୍ୟ । କାରଣ ଜଗନ୍ନାଥ ଅନ୍ୟମାନଙ୍କ ଭଳି ଶାସ୍ତ୍ର-ପୁରାଣର ଦେବତା ନୁହନ୍ତି । ସେ ଇତିହାସର 'ଠାକୁର' । ତାଙ୍କ ଜନ୍ମ ଓ ଜୀବନକାଳ ଅନ୍ୟମାନଙ୍କ ଭଳି ପୁରାଣ ଭିତରେ ନାହିଁ କି ସେଇଠି ସୀମିତ ନୁହେଁ । ତାହା ଇତିହାସ ବକ୍ଷରେ ବିସ୍ତାରିତ । ମାନବସମାଜ ବଞ୍ଚିରହିଥିବା ଯାଏ ଜଗନ୍ନାଥଙ୍କର ମୃତ୍ୟୁ ନାହିଁ । ସେ ମାନବସମାଜ ସହିତ ବଦଳି ବଦଳି ଚାଲିଛନ୍ତି । ସେଥିଲାଗି ଜଗନ୍ନାଥ ଅକ୍ଷୁର୍ଣ୍ଣ ରହି, ତାଙ୍କ ଚରିତ୍ର କ୍ରମାଗତ ବଦଳି ବଦଳି ଆସିଛି । ଜଗନ୍ନାଥଙ୍କର ମୃତ୍ୟୁ ନାହିଁ । ସେ ମାନବସମାଜ ସହିତ ବଦଳି ବଦଳି ଚାଲି ଛନ୍ତି । ସେଥିଲାଗି ଜଗନ୍ନାଥ ଅକ୍ଷୁର୍ଣ୍ଣ ରହି, ତାଙ୍କ ଚରିତ୍ର କ୍ରମାଗତ ବଦଳି ବଦଳି ଆସିଛି । ଜଗନ୍ନାଥଙ୍କ ଉପରେ ବୌଦ୍ଧ, ଶୈବ, ଶାକ୍ତ, ବୈଷ୍ଣବ ଆଦି ବିଭିନ୍ନ ବିଚାର, ବିଶ୍ବାସ ଓ ଧର୍ମର ବୋଳ ବୋଳା ହୋଇ ଆସିଛି । ଏହିପରି ଅନ୍ୟ କୌଣସି ଦେବତାଙ୍କୁ ବିଭିନ୍ନ ଧର୍ମରେ ଦିକ୍ଷିତ କରିବା ଅସମ୍ଭବ । କାରଣ ସେମାନେ ଏକ ନିର୍ଦ୍ଦିଷ୍ଟ ମତର ପୁରୋହିତ ପ୍ରଚାରକଙ୍କ ଦ୍ବାରା ଏକ ନିର୍ଦ୍ଦିଷ୍ଟ ଭାବ ଓ ଲକ୍ଷ୍ୟ ନେଇ ସୃଷ୍ଟି । କିନ୍ତୁ ଜଗନ୍ନାଥ ସମସ୍ତ ସମାଜ ଭିତରୁ ଉଦ୍ଭୂତ । ତେଣୁ ଅନ୍ୟ ଦେବତାମାନଙ୍କ ଚରିତ୍ର ପରିବର୍ତ୍ତନବିହୀନ ହେଲାବେଳେ ଜଗନ୍ନାଥଙ୍କ କ୍ଷେତ୍ରରେ ତାହା ସଦା ପରିବର୍ତ୍ତନଶୀଳ । ଜଗନ୍ନାଥ ଅନ୍ୟମାନଙ୍କ ବିପରୀତ । ସମାଜର ପରିବର୍ତ୍ତନ ଜଗନ୍ନାଙ୍କ ଠାରେ ପ୍ରତିଫଳିତ ହେବାକୁ ବାଧ ।

ଜଗନ୍ନାଥଙ୍କ ସେହି ଆବିର୍ଭାବ ଓ ବିଭିନ୍ନ କାଳରେ ତାଙ୍କ ଉପରେ ବିଭିନ୍ନ ଧାରଣାର ଆବରଣ, କୌଣସି ଏକ ଆକସ୍ମିକ ଘଟଣା ନୁହେଁ । ତାହା ଐତିହାସିକ ଆବଶ୍ୟକତାର ପ୍ରକାଶନ ମାତ୍ର । ଇତିହାସର ଆବଶ୍ୟକତା ଭିତରୁ ଜଗନ୍ନାଥଙ୍କର ଜନ୍ମ । ଜଗନ୍ନାଥ କୌଣସି ବ୍ୟକ୍ତିର ଅଲୌକିକ ଶକ୍ତି, କୌଣସି ମହାତ୍ମାଙ୍କ ଦିବ୍ୟଜ୍ଞାନ ଉପରେ ନିର୍ଭର କରନ୍ତି ନାହିଁ । ଇତିହାସର ସେହି ଆବଶ୍ୟକତା ବ୍ୟକ୍ତି ଓ ଗୋଷ୍ଠୀ ଭିତର ଦେଇ ଆତ୍ମପ୍ରକାଶ କରେ । ସେମାନେ ସେସବୁର ମାଧ୍ୟମ ମାତ୍ର । ସେହିପରି ଭାରତରେ ଅନ୍ୟତ୍ର ଜଗନ୍ନାଥଙ୍କର ଆବିର୍ଭାବ ନ ଘଟି ଓଡ଼ିଶାରେ ଘଟିବାର କାରଣ କ'ଣ ? ଏହା କ'ଣ ଭଗବାନଙ୍କର ଆଶୀର୍ବାଦର ଫଳ ? କିନ୍ତୁ କାହିଁକି ସେ ଆଶୀର୍ବାଦ, କେହି ଜଣେ ହେଲେ ଆଲୋଚକ ବା ଗବେଷକ ଏହି ମୌଳିକ ପ୍ରଶ୍ନ କରନ୍ତି ନାହିଁ ? ସେହି ଗୋଟିଏ ପ୍ରଶ୍ନର ଉତ୍ତର ଜଗନ୍ନାଥଙ୍କର ସମସ୍ତ ରହସ୍ୟ ଉଦ୍‌ଘାଟନ କରିଦିଏ । କାରଣ ତାହା କୌଣସି ଏକ ଅଦୃଶ୍ୟ ଶକ୍ତିର କାମନା ବା

କଳ୍ପନା ଉପରେ ନିର୍ଭର ନ କରି ତାହା ଜଗତ୍‌ର ଭୌତିକ ବାସ୍ତବତା ଭିତରକୁ ଘେନି ଆସେ ।

ଯେତେ ଯାହା କହିଲେ, ଯେତେ ମତ, ବିଶ୍ୱାସ ବା ଇତିହାସକୁ ଆରୋପ କଲେ ବି ଲୋକଚକ୍ଷୁରେ ଜଗନ୍ନାଥ ହିନ୍ଦୁଧର୍ମର ପ୍ରତୀକ, ସର୍ବଶ୍ରେଷ୍ଠ ଦେବତା । ତା ମଣିଷର ଅସ୍ଥି ମଜ୍ଜାଗତ । ତେଣୁ ଧର୍ମକୁ ଛାଡ଼ି ଜଗନ୍ନାଥଙ୍କୁ ଧରି ହେବ ନାହିଁ, ସେଇ ଧର୍ମ ଭିତରେ ଜଗନ୍ନାଥଙ୍କର ଦେବତ୍ୱର ପ୍ରକାଶ ।

ଜଗନ୍ନାଥ ଏପରି ଏକ ସୃଷ୍ଟି, ତାଙ୍କୁ ଦେଖିବାକୁ ହେଲେ ସମସ୍ତ ଜଗତ ଭିତରେ ପ୍ରବେଶ କରିବାକୁ ହେବ, ସମଗ୍ର ମାନବସମାଜର ଇତିହାସରେ ଖୋଜିବାକୁ ପଡ଼ିବ ଓ ଅନୁସରଣ କରିବାକୁ ହେବ ସମୟର ଗତିର ସ୍ରୋତକୁ । ଅନ୍ୟ ଦେବ ଦେବୀ ବା ଭଗବାନଙ୍କ ଭଳି ସେ ସ୍ୱର୍ଗ ବା ଆକାଶରୁ ଖସି ନାହାନ୍ତି, ମଣିଷ ମନରୁ ବାହାରି ନାହାନ୍ତି । କେବଳ ହିନ୍ଦୁ ଦେବତା ନୁହନ୍ତି, ସେ କେବଳ ଶବର ଦେବତା ବା ଏକ ବୈଦିକ ବିଚାର ବା ବିଭିନ୍ନ ବିଶ୍ୱାସର ଆଧାର ନୁହନ୍ତି । ତାଙ୍କ ଜୀବନର ଯଥାର୍ଥତା କେବଳ ଓଡ଼ିଶା ଇତିହାସର ଚଉହଦୀ ମଧ୍ୟରେ ଆବଦ୍ଧ ନୁହେଁ । ସର୍ବବ୍ୟାପୀ ତାଙ୍କର ବିସ୍ତାର — କେଉଁ ଆଦିମ ଯୁଗରୁ କେଉଁ ଅନାଗତ ଭବିଷ୍ୟତ ଯାଏଁ ତାଙ୍କର ବିସ୍ତୃତି । ଅନାର୍ଯ୍ୟ ସଭ୍ୟତା ନିମ୍ନ ସ୍ତରରୁ ଉନ୍ନତ ଆର୍ଯ୍ୟସମାଜର ଚରମସୀମା ଶିଖର ପର୍ଯ୍ୟନ୍ତ ତାଙ୍କର ପ୍ରାସାର । ତାଙ୍କର ବିକାଶ, ପୁଣି ପ୍ରାକ୍‌ଶ୍ରେଣୀ ସମାଜରୁ ସବୁ ଶ୍ରେଣୀ ବିଭକ୍ତ ସମାଜ ବ୍ୟାପୀ ଏବଂ ଶେଷରେ ଧର୍ମର ଆରମ୍ଭ ପୂର୍ବରୁ ଧର୍ମର ଅପରିହାର୍ଯ୍ୟ ଅଙ୍ଗ ଭାବରେ ତାଙ୍କର ପ୍ରକାଶ । ପଦେ କଥାରେ କହିଲେ, ମାନବ ଜାତିର ଜନ୍ମ ଓ ବିକାଶର ପ୍ରବାହ ଭିତରେ କେବଳ, ଜଗନ୍ନାଥଙ୍କ ଜନ୍ମ ଚରିତ୍ର ଓ ଜୀବନର ବୃତ୍ତାନ୍ତକୁ ଲକ୍ଷ୍ୟ କରିବାକୁ ହେବ । ତାହାହିଁ ଏକମାତ୍ର ନିର୍ଭୁଲ ପଦ୍ଧତି । ଅନ୍ୟ ଯେଉଁ କୌଣସି ପଦ୍ଧତି ଯେତେ ଗଭୀର ଓ ଗବେଷଣାମୂଳକ ହେଲେ ବି ତାହା ଜଗନ୍ନାଥଙ୍କ ସମ୍ବନ୍ଧରେ କେବଳ ଆଂଶିକ ସତ୍ୟର ସୂଚନା ଦେଇପାରେ । ସେଥିଲାଗି ପାପା ପୁଣ୍ୟ, ଧର୍ମ ଅଧର୍ମ, ପବିତ୍ର ଅପବିତ୍ର ଓ ଲୌକିକ ଅଲୌକିକ ଆଦି ଯେତେ ଯେତେ ଆତ୍ମଗତ ଭାବ ଜଗନ୍ନାଥଙ୍କ ପ୍ରତି ଆରୋପ କରାଯାଏ, ତାକୁ ଆଗ ମନରୁ ପୋଛିଦେବାକୁ ହେବ । ଜଗନ୍ନାଥଙ୍କ ଦେହରେ ଅଙ୍ଗୀଭୂତ ସମସ୍ତ ବାହ୍ୟ ଆବରଣକୁ ଦୂର କରିବାରେ ହିଁ କେବଳ ତାଙ୍କର ପ୍ରକୃତ ଶୁଦ୍ଧ ଆଉ ନିର୍ମଳ ଭାବରେ ସନ୍ଧାନ ମିଳିପାରେ, ତାହାହିଁ ତାର ପ୍ରକାଶର ମାଧ୍ୟମ ।

କୌଣସି ଧର୍ମ ଧାରଣା ଶୂନ୍ୟରେ ନାହିଁ । ତା ମଣିଷ ଭିତର ରହିଛି । ତେଣୁ ଧର୍ମକୁ ବୁଝିବାକୁ ହେଲେ ଆଗ ବୁଝିବାକୁ ହେବ ସେହି ମଣିଷଟିକୁ । ମଣିଷକୁ ବୁଝିବାମାନେ ସେ ମଣିଷ କିପରି ବଞ୍ଚୁଛି, କଣ କରୁଛି, କେମିତି ଜୀବନ ଧାରଣ କରୁଛି, ତାକୁ ଦେଖିବା । ପଶୁପାଳନ, କୃଷି, ଶିଳ୍ପ ଆଦି ଯେଉଁ କାର୍ଯ୍ୟ କରେ, ତାକୁ ଅନୁସରଣ କରିବା । କୃଷିବେଳେ ସେ ପୋଡୁ ଚାଷ କରେ କି କାଠ ବା ଲୁହା

ଲଙ୍ଗଳ ବ୍ୟବହାର କରେ ବା ଟ୍ରାକ୍ଟର ଚଳାଏ ତାକୁ ବିଚାରକୁ ନେବାକୁ ହେବ । ସେମିତି ଲୁଗା ବୁଣିଲାବେଳେ ସେ କେମିତି ଲୁଗା ବୁଣେ, ଥରକେ କେତେଟା ଲୁଗା ବୁଣିପାରୁଛି, ତାକୁ ମଧ ଦେଖିବାକୁ ହେବ । ମଣିଷ ପାଦରେ ଚାଲୁଛିକି ଶଗଡ଼, ସାଇକେଲ, ମଟର, ରେଳ, ବିମାନ ବା ରକେଟ୍, କେଉଁ ଯାନ ବ୍ୟବହାର କରୁଛି, ତା ବିଚାର କରିବା ଆବଶ୍ୟକ । ସେଇଥିରୁ ତାର ସଭ୍ୟତାର ସ୍ତର ମପା ଯାଇପାରେ । ସେହି ଅନୁସାରେ ତାର ଭାବନା ହେଉଛି ସେହି ମଣିଷର ଭାବନା । ତେଣୁ କାମ ହେଉଛି ମୂଳ, ତା ବିନା ମଣିଷର ଅସ୍ତିତ୍ୱ ନାହିଁ ।

ପ୍ରକୃତି ବିରୋଧରେ ସଂଗ୍ରାମ ଭିତର ଦେଇ ମଣିଷ ସଭ୍ୟତାର ବିକାଶ । ସେଇ ସଂଗ୍ରାମହିଁ ତା ଜୀବନଧାରଣର ଉପାୟ । ପ୍ରକୃତିକୁ ଆୟତ୍ତ କରି ସେ ସଦା ସର୍ବଦା ନିଜ କାମରେ ଲଗାଇବାରେ ଲାଗିଛି । ତାହାହିଁ ତାର କାମନା ପୂରଣର ଉପାୟ, ଅଭୀଷ୍ଟ ସାଧନର ମାର୍ଗ । ସେ ପ୍ରକୃତିଠାରୁ ଜିନିଷ ଆହରଣ କରିବା ସହିତ ଅନ୍ୟ ଦିଗରେ, ପ୍ରକୃତିର ଜ୍ଞାନ ମଧ ଆହରଣ କରେ । ଜ୍ଞାନ ଆହରଣ ଓ ଜିନିଷ ଆହରଣ ପ୍ରତ୍ୟେକ ପରସ୍ପର ପରିପୂରକ । ସେହି ଜ୍ଞାନକୁ ସେ ପ୍ରୟୋଗ କରେ ପ୍ରକୃତିକୁ ଅଧିକ ଆୟତ୍ତ କରିବାରେ । ତାହାଠାରୁ ଅଧିକ ଶକ୍ତି ଓ ସମ୍ପଦ ଆହରଣ କରିବାରେ । ସେହି ପ୍ରାକୃତିକ ସମ୍ପଦ ଓ ପ୍ରକୃତି ସମ୍ବନ୍ଧରେ ଜ୍ଞାନର ଆହରଣ ଏକ ଅଖଣ୍ଡ ଅବିଭକ୍ତ ଓ ଅବିଶ୍ରାନ୍ତ ପ୍ରକ୍ରିୟା । ସେମାନେ ପରସ୍ପରକୁ ଉନ୍ନତ ଆଉ ଅଗ୍ରସର କରାଇ ଚାଲିଛନ୍ତି । ସେହି ଅନୁସାରେ ମଣିଷର ଶିକ୍ଷା, ସଭ୍ୟତା, ସଂସ୍କୃତି, ଧ୍ୟାନଧାରଣା ଆଦି ଯାବତୀୟ ଜିନିଷ ରୂପ ନେଇଛି ଓ ପରିବର୍ତ୍ତିତ ହେବାରେ ଲାଗିଛି । ମଣିଷ ସମାଜର ଏହାହିଁ ହେଲା ମୂଳ ମନ୍ତ୍ର ।

ଆରମ୍ଭରେ ମଣିଷର ଏକମାତ୍ର ସମସ୍ୟା ଥିଲା ସେଇ ପ୍ରକୃତି !. ନିଜର ବଞ୍ଚିବାଲାଗି କିପରି ତାଠାରୁ ଜିନିଷ ଆହରଣ କରିବ । ତାର ସେଇ କାମର ସ୍ତର ଥିଲା ଅତି ଆଦିମ, ନିମ୍ନ ସ୍ତରରେ । ତାର ଉତ୍ପାଦନ ଥୀଲା ଅତି ନଗନ୍ୟ । ଯାହା ପାଉଥିଲା ତାହା ତାର ପେଟକୁ ଅଣ୍ଟୁନଥିଲା । କୌଣସି ବଳକା ଉଦ୍ ବୃତ୍ତ ରହିପାରୁ ନ ଥିଲା । ତେଣୁ ସଞ୍ଚୟ କରିବାର ପ୍ରଶ୍ନ ନଥିଲା । ତେଣୁ ଜଣେ ଅନ୍ୟକଚ ଶୋଷଣ କରି ଜିନିଷ ଘେନିଯିବା ଓ ଅପହରଣ କରିବା ଲାଗି ଯେଉଁ ବ୍ୟବସ୍ଥା ଦରକାର, ତାହା ସେପର୍ଯ୍ୟନ୍ତ ଦେଖା ନଥିଲା । ଏପରିକି ଅପହରଣ ବିଷୟଟା ମଣିଷ ମନକୁ ସୁଦ୍ଧା ସ୍ପର୍ଶ କରିନଥିଲା । ତାହା ଥିଲା ଚିନ୍ତାର ବାହାରେ । ସମସ୍ତେ ମିଶି ପ୍ରକୃତି ସହିତ ଏକାଠି ଲଢୁଥିଲେ । ଯାହା ପାଉଥିଲେ ଏକାଠି ଭୋଗ କରୁଥିଲେ । ତାହା ଥିଲା ଆଦିମ ଗୋଷ୍ଠୀ ସମାଜର କଥା ।

ଯେତେବେଳେ ଉତ୍ପାଦନ ବୃଦ୍ଧି ପାଇଲା, ଉଦ୍‌ବୃତ୍ତ ଦେଖାଦେଲା, ସଞ୍ଚୟର ସମ୍ଭାବନା ଫିଟିଗଲା, ସେତେବେଳେ ଏକ ନୂତନ ସମସ୍ୟା ଆସି ଉଭାହେଲା । ସେଇ ଉଦ୍‌ବୃତ୍ତ ଓ ତାହା ସହିତ ସଞ୍ଚିତ ସମ୍ପଦର ବଣ୍ଟନର ସମସ୍ୟା । ଉତ୍ପାଦନ ବୃଦ୍ଧି

ସହିତ ବଣ୍ଟନର ସମସ୍ୟା ମଧ୍ୟ ବୃଦ୍ଧି ପାଇବାକୁ ଲାଗିଲା । ସେ ବଣ୍ଟନର ସମସ୍ୟାଟି ହେଲା ସମାଜରେ, ଲୋକଙ୍କ ମଧ୍ୟରେ ସମ୍ପର୍କର ସମସ୍ୟା । ତାହା ମଣିଷ ମଣିଷ ମଧ୍ୟରେ ସମ୍ପର୍କରେ ପରିବର୍ତ୍ତନ ଆଣିଲା । ଗୋଟଇଏ କ୍ଷୁଦ୍ରଗୋଷ୍ଠୀ ବା ଅଳ୍ପ କେତେକ ଲୋକେ ସେ ସମ୍ପଦର ମାର୍‌ଫତ୍‌ଦାର ହେଲେ ଓ ପରେ ମାଲିକ ହୋଇ ଉଠିଲେ । ଅନ୍ୟର ଶ୍ରମର ଫଳକୁ ଆୟତ୍ତ କରି ନିଜକୁ ପ୍ରତିଷ୍ଠା କରିବାକୁ ଲାଗିଲେ । କ୍ରମଶଃ, ଏକ ଦିଗରେ ଗୋଟାଏ ବିଶେଷ ସୁବିଧା ବା ସମ୍ପଦଭୋଗୀ କ୍ଷୁଦ୍ରଗୋଷ୍ଠୀ, ଅନ୍ୟ ଦିଗରେ ସେଥିରୁ ବଞ୍ଚିତ ଏକ ସମ୍ପଦହୀନ ବୃହତ୍‌ଗୋଷ୍ଠୀର ଲୋକ ସୃଷ୍ଟି ହେଲେ । ସମାଜଟା ଦୁଇଭାଗରେ ଫାଟିଗଲା । ସେହି ସୁବିଧା ଭୋଗୀ ଲୋକେ ସମ୍ପଦର ମାଲଇକ ହେବା ସହିତ ଜ୍ଞାନ ଓ ଶକ୍ତିର—ଫଳରେ ସମସ୍ତ ସମାଜର ଅଧିକାରୀ ହେଲେ । ଏବେ ସମାଜରେ ସୃଷ୍ଟି ହେଉଥିବା ସମ୍ପଦ କିଏ କେତେ ଓ କିପରି ପାଇବ, ତାହା ଏକ ପ୍ରଧାନ ସମସ୍ୟା ହୋଇଉଠିଲା । ଏହା ହେଲା ମୁଖ୍ୟତଃ ମଣିଷ ମଣିଷ ଭିତରର ସମ୍ପର୍କର ସମସ୍ୟା । ଉତ୍ପାଦନ ଓ ଉଦ୍‌ବୃତ୍ତର ବୃଦ୍ଧି ସହିତ ସେହି ବଣ୍ଟନ, ଅର୍ଥାତ୍ ମଣିଷ ମଣିଷ ଭିତରେ ସମ୍ପର୍କ ବହୁମୁଖୀ ଓ ଅଧିକରୁ ଅଧିକ ଜଟିଳ ହେବାରେ ଲାଗିଲା । ଏବେ ମଧ୍ୟ ସେହି ସମ୍ପଦର ବଣ୍ଟନ ବା ସମ୍ପର୍କ ନିୟନ୍ତ୍ରଣ ଲାଗି କେତେ ସଂଗ୍ରାମ ନ ଚାଲୁଛି ? କେତେ ପ୍ରକାରର ଶାସନ, ଆଇନ୍‌କାନୁନ୍ ସେଥିଲାଗି ଗଢା ନହେଉଛି ? ଏବେବି ସେହି ପ୍ରଶ୍ନଟି ପ୍ରକୃତ ସମାଧାନର ଅପେକ୍ଷାରେ ।

ପ୍ରଥମେ ମଣିଷ ଏକାଠି ମିଶି ପ୍ରକୃତି ବିରୋଧରେ ସଂଗ୍ରାମ କରୁଥିଲା । ଏବେ ତା' ସହିତ ଦେଖାଦେଲା ଆଉ ଏକ ସଂଗ୍ରାମ । ମଣିଷର ନିଜ ନିଜ ମଧ୍ୟରେ ସଂଗ୍ରାମ, — ଶ୍ରେଣୀ ସଂଗ୍ରାମ । ସେଇ ଉଦ୍‌ବୃତ୍ତର ବଣ୍ଟାଆରା ନେଇ ସଂଗ୍ରାମ — ସାମାଜିକ ଉତ୍ପାଦନରେ କାର ଭାଗ କେତେ ? କିଏ କେତେ ପାଇବ ?

ଐତିହାସିକ ବିକାଶ ଦୃଷ୍ଟିରୁ ଅଳ୍ପ କେତେକ ଲୋକଙ୍କ ହାତରେ ଉଦ୍‌ବୃତ୍ତ ଠୁଳ ହେବାଟା ଏକ ଅପରିହାର୍ଯ୍ୟ ଆବଶ୍ୟକତା । ତାହା ବିନା ସମାଜର ବିକାଶ ଓ ଅଭିବୃଦ୍ଧି ନାହିଁ । ସମ୍ପଦ ଠୁଳ ହେବାଟା କେବଳ ପୁଞ୍ଜି ସୃଷ୍ଟି କରେନାହିଁ, ଯାହାକି ଉତ୍ତରୋତ୍ତର ବିକାଶକୁ ସହାଯ୍ୟ କରେ । ତାହା ଅନ୍ୟ ଦିଗରେ ପ୍ରତ୍ୟକ୍ଷ ଉତ୍ପାଦନ କର୍ମରୁ ନିବୃତ୍ତ ଗୋଟାଏ ସୁବିଧାଭୋଗୀ ଶ୍ରେଣୀ ସୃଷ୍ଟି କରେ । ଅର୍ଥାତ୍, ଉତ୍ପାଦନରେ ନ ଲାଗୁଥିବା ମଣିଷଙ୍କୁ ଅବସର ଯୋଗାଇଦିଏ । ଫଳରେ ଶାରୀରିକ କାର୍ଯ୍ୟରୁ ଅବ୍ୟାହତି ନେଇଥିବା ଲୋକଙ୍କୁ ମାନସିକ କାର୍ଯ୍ୟ କରିବାଲାଗି ସୁଯୋଗ ମିଳେ । ଫଳରେ ନୃତ୍ୟଗୀତ, ସାହିତ୍ୟ, ବିଜ୍ଞାନ, ବିଭିନ୍ନ ଦର୍ଶନ, ଧର୍ମଧାରଣା ଆଦି ସଭ୍ୟତାର ସମସ୍ତ ବିକାଶର ମାର୍ଗ ଉନ୍ମୁକ୍ତ ହୋଇଯାଏ । ଅବସର ସମୟ ବିନା ସଭ୍ୟତା ଆଉ ବିକାଶର ସୋପାନ ଆହରଣ କରିବାରେ ମଣିଷ କେବେହେଲେ ସମର୍ଥ ହୋଇ ନ ଥାନ୍ତା ।

ସେହି ଉଦ୍‌ବୃତ୍ତ ଉତ୍ପାଦନରୁ ସଞ୍ଚୟର ପ୍ରକ୍ରିୟା ହେଉଛି ଏକ ସଙ୍ଗରେ ସମାଜର ଅଧିକାଂଶ ଲୋକଙ୍କ ଲାଗି ଅପହରଣର ପ୍ରକ୍ରିୟା, ଯାହାକୁ ଶୋଷଣ

କୁହାଯାଏ । ସେଥି ସହ ସେମାନଙ୍କ ଲାଗି ଆଣେ ଘୋର ଦୁଃଖଦୈନ୍ୟ, ଯନ୍ତ୍ରଣାର ପ୍ରକ୍ରିୟା । ପ୍ରଶ୍ନ ହେଉଛି, ମଣିଷ ସେ ସବୁ ସହ୍ୟକଲା କିପରି ଓ କାହିଁକି ? କାହିଁକି ଏବେ ବି ତାକୁ ସହ୍ୟକରି ଚାଲିଛି ? କାହା ବଳରେ ? କେଉଁ ଆଶା, ଆବେଗ ଓ ଆତ୍ମବିଶ୍ୱାସର ଶକ୍ତି ନେଇ ? ସେହି ରହସ୍ୟର ଉଦ୍‌ଘାଟନ ଧର୍ମର ଜନ୍ମ । ଈଶ୍ୱରଙ୍କର ଆବିର୍ଭାବ ।

ଅପହରଣ ବା ଶୋଷଣର ଅର୍ଥ, ମୂଲ୍ୟ ନ ଦେଇ, ବା ସମାନ ମୂଲ୍ୟ ବିନା ଜିନିଷ ଘେନିଯିବା — ଏକ ହାତରୁ ଅନ୍ୟ ହାତକୁ ଜିନିଷର [illegible] । ଏ ହସ୍ତାନ୍ତର ବିକ୍ରି-ଖରିଦ ଦ୍ୱାରା ହୋଇପାରେ, ଯା'ହେବାର ପ୍ରଶ୍ନ ଆଦିମ ସମାଜରେ ନାହିଁ । ଆଉ ଗୋଟାଏ ହେଲା ଜମରଦସ୍ତି ବଳପୂର୍ବକ ଘେନିଯିବା, ଯାହାର ନାଁ ହେଲା ଲୁଣ୍ଠନ । ଆଉ ଗୋଟିଏ ଉପାୟ ହେଲା ଲୋକଙ୍କୁ ମନେଇକରି ନେବା — ତା ମନ ବା ମତକୁ ଏମିତି ମୋଡିବା ଯେ, ସେ ତମକୁ ଦେବାର ଆବଶ୍ୟକତା ତା'ଆଡୁ ନିଜେ ଅନୁଭବ କରିବ । ଯାହାକୁ କହନ୍ତି -ଲୋକଙ୍କର ମତ ଗଠନ । ଏକ ଆଦର୍ଶର ପଚାର, ଅନ୍ଧବିଶ୍ୱାସ ଓ କୁସଂସ୍କାରର ପ୍ରସାର । ଅର୍ଥାତ୍ ତଦ୍ୱାରା ଲୋକଙ୍କୁ ଏମିତି ମନେଇବା, ଯାହା ଫଳରେ ଲୋକ ସେଚ୍ଛାରେ ଜିନିଷ ପ୍ରଦାନ କରିବ । ତାକୁ ନିଜର ପରମ ମର୍ତ୍ତବ୍ୟ ବୋଲି ମନେ କରିବ । ତାକୁ ନିଜର ଦୁଃଖଦୈନ୍ୟର ଉପଶମ ଆଉ ନିଜର ମୁକ୍ତିର ପନ୍ଥା ବୋଲି ବିଶ୍ୱାସ କରିବ । ଏଇ ବିଶ୍ୱାସ ଯୋଗାଇଦିଏ ଧର୍ମ । ଧର୍ମର ମୂଳ ହେଲେ - ଭଗବାନ । ସେ ହେଲେ କରୁଣାର ସାଗର, ସତ୍ୟ, ନ୍ୟାୟର ରକ୍ଷକ, ସର୍ବ ଦୁଃଖ ହରଣକାରୀ । ତାହା ଯଦି ଏବେ ନ ହୋଇ ପାରୁଛି, ତେବେ ପରେ ହେବ । ଏ ଜନ୍ମରେ ନ ହେଲେ ନିଶ୍ଚୟ ପରଜନ୍ମରେ ହେବ । କାରଣ, ଧର୍ମହିଁ ଏକମାତ୍ର ରାସ୍ତା-ଈଶ୍ୱରହିଁ ଏକମାତ୍ର କର୍ତ୍ତା, ବିଶ୍ୱାସହିଁ ଏକମାତ୍ର ସୋପାନ ।

ଗୋଟାଏ ସମୟ ଥିଲା, ଯେତେବେଳେ ସମାଜରେ ଈଶ୍ୱର କି, ବର୍ତ୍ତମାନ ଅର୍ଥରେ ଧର୍ମ ବୋଲି କିଛି ନ ଥିଲା । ମଣିଷ ଜାଣିନଥିଲା ତାହା କଅଣ । ଯେଉଁ ଅପରିହାର୍ଯ୍ୟ କାରଣ ଓ ଆବଶ୍ୟକତା ଯୋଗୁଁ ଈଶ୍ୱର ଓ ଧର୍ମର ସୃଷ୍ଟି, ମଣିଷ ସମାଜର ସେଇ ଆବଶ୍ୟକତା ପୂରଣ ହୋଇଗଲେ, ସେଇ କାରଣ ଦୂର ହୋଇଗଲେ ଭଗବାନ ଓ ଧର୍ମର ଭିତ୍ତିର ସ୍ୱତଃ ଲୋପ ଘଟିବ । ସେମାନେ ଆପେ ଆପେ ଅପସରି ଯିବେ । ଭଗବାନ ସ୍ୱର୍ଗରେ କି ମଣିଷର ଅନ୍ତରରରେ ନାହାନ୍ତି -ସେ ଅଛନ୍ତି ସମାଜର ବାସ୍ତବ ଅବସ୍ଥା ଭିତରେ । ତେଣୁ ଧର୍ମ ଓ ଭଗବାନଙ୍କ ବିରୋଧରେ ଯେତେ ପ୍ରଚାର, ଆନ୍ଦୋଳନ ବା ଆକ୍ରମଣ କଲେ ବି ତାଙ୍କୁ ପ୍ରତିହତ କରିବା ଅସମ୍ଭବ । ନ୍ୟାୟ, ଯୁକ୍ତି ଓ ବିଜ୍ଞାନ ବଳରେ ଭଗବାନଙ୍କ ଧାରଣାକୁ ଯେତେ ଖଣ୍ଡନ କଲେ ବି ଭଗବାନ ଓ ଧର୍ମକୁ ଜନ୍ମ ଦେଇଥିବା ବାସ୍ତବ ଅବସ୍ଥା ରହିଥିଲା ପର୍ଯ୍ୟନ୍ତ ସେମାନେ ରହିଛନ୍ତି । ତାଙ୍କର ବିଲୋପ ନାହିଁ । ଏପରିକି ସେ ଅବସ୍ଥା ଲୁଚିଗଲା ପରେ ମଧ୍ୟ ସେଇ ବିଶ୍ୱାସ, ଧାରଣା ମନୁଷ୍ୟ ମନରେ ବହୁକାଳ ଧରି ନିଶ୍ଚୟ ଲାଗିରହିବ ।

ସେଇ ଈଶ୍ୱର ବିଶ୍ୱାସ, ଧର୍ମର ଭିତ୍ତି ଉପରେ ଜଗନ୍ନାଥ ପ୍ରତିଷ୍ଠିତ । ସେଇ ଭିତ୍ତିକୁ ଉନ୍ମୋଚନ ନକରି ଜଗନ୍ନାଥଙ୍କ ଆବିଷ୍କାର ଓ ତାଙ୍କର ପ୍ରକୃତ ଉପଲବ୍ଧି, କସ୍ମିନ୍‌କାଳେ ସମ୍ଭବ ନୁହେଁ । ଦୁଃଖର କଥା, ସେଥି ମଧ୍ୟରେ କୌଣସି ଗବେଷକ ପ୍ରବେଶ କରନ୍ତି ନାହିଁ । ଜଗନ୍ନାଥଙ୍କ ଜୀବନର ବାସ୍ତବ ଉତ୍ସ ଅନାବୃତ ରହିଯାଏ । ମାନବ ସମାଜ ଭିତରେ ପ୍ରବେଶ କରିବାରେ, ତାର ଆଦିମ ଅବସ୍ଥାକୁ ନିରୀକ୍ଷଣ କରିବାରେ ତାହା ସ୍ୱତଃ ପ୍ରକଟିତ ହୁଏ । ତାହା ହେଉଛି ଆଦିମ ଲୋକଙ୍କର ଜୀବନ ପ୍ରାଣାଳୀ, ଧ୍ୟାନଧାରଣା ଆଦି ବର୍ତ୍ତମାନ ରହିଥିବା ତା'ର ଅବଶେଷକୁ ଅନୁଧ୍ୟାନ କରିବ ।

**ଆବଶ୍ୟକତାର ଆବରଣରେ :**

ପୁଣି ଜଗନ୍ନାଥଙ୍କ ଦେହରେ ସବୁ ଧର୍ମର ଛିଟା ଲାଗିଛି । ସହଜେ ତ ସେ ସର୍ବୋଚ୍ଚ ଦେବତା । ତା ସାଙ୍ଗକୁ ପୁଣି ଓଡ଼ିଶାର ଇଷ୍ଟଦେବ । ସବୁ ସାଧାରଣ ସମାଜିକ କାର୍ଯ୍ୟରେ ଜଡ଼ିତ । ବିବାହ, ବ୍ରତରେ ତାଙ୍କୁ ଆଗ ଲୋଡ଼ା ପଡ଼େ । ନିମନ୍ତ୍ରଣ ହୁଏ ଜଗନ୍ନାଥଙ୍କୁ । ରାଜନୀତିରେ ଜଗନ୍ନାଥଙ୍କ ଭୂମିକାକୁ ସ୍ୱାଗତ କରାଯାଏ । ଆଗେ ରାଜା ଯେପରି ଜଗନ୍ନାଥଙ୍କ ରାଉତ ଭାବେ ରାଜ୍ୟ ଶାସନ କରୁଥିଲେ, ଏବେ ମନ୍ତ୍ରୀମାନେ ଜଗନ୍ନାଥଙ୍କ ଦର୍ଶନ ନ କରି ଶପଥ ଗ୍ରହଣ କରନ୍ତି ନାହିଁ । ଜଗନ୍ନାଥଙ୍କ ଆଲୋଚନା ଅତି ବିସ୍ତୃତ । ତାହା କେବଳ ଧର୍ମ ବିଶ୍ୱାସ ବା ସମାଜିକ, ଅର୍ଥନୈତିକ ଧାରଣର ଭିତରେ ନାହିଁ । ଆଦିମ ଯୁଗରୁ ଏ ପର୍ଯ୍ୟନ୍ତ, କହିବାକୁ ଗଲେ ପ୍ରତ୍ୟେକଟି ବିଷୟ ସହ ସିଏ ଜଡ଼ିତ । ତେଣୁ ଆଦିମ ପ୍ରାକ୍‌ଶ୍ରେଣୀ-ବିଭକ୍ତ ସମାଜ, ଓ ଭବିଷ୍ୟତର ଶ୍ରେଣୀହୀନ ସମାଜ ପର୍ଯ୍ୟନ୍ତ ସମସ୍ତ ବିଷୟ ଆମର ଆଲୋଚନାଭୁକ୍ତ । ଜଗନ୍ନାଥଙ୍କ ବିଶେଷତ୍ୱ ହେଲା ଯେ, ତାଙ୍କର ଭବିଷ୍ୟତ୍ ରହିଛି, ଯାହାକି ଅନ୍ୟ କାହାରି ନାହିଁ, କୌଣସି ଦେବତାଙ୍କର ଭବିଷ୍ୟତ୍ ନାହିଁ । ସେମାନେ ଭବିଷ୍ୟତ ହୀନ ।

ଭାରତିୟ ଜୀବନର କେତୋଟି ମୂଳ ବା ମୂଖ୍ୟ ବିଷୟ ରହିଛି, ଯାହାକୁ ଛାଡି ଏ ଦିଗରେ ଅଗ୍ରସର ହେବା ସମ୍ଭବ ନୁହେଁ । (୧) ବେଦ: ଭାରତୀୟ ଜୀବନର ଆଧାର ଓ ଉତ୍କର୍ଷ, ସବୁ ଜ୍ଞାନର ସର୍ବୋଚ୍ଚ ଶିଖର, ସବୁ ଜିନିଷର ଅକାଟ୍ୟ ପ୍ରମାଣ ସରୁପ । (୨) ଶାସ୍ତ୍ର ଓ ପୁରାଣ : ତାହା ଯେତେ କଳ୍ପନାମୂଳକ ହେଉପଛେ, କିନ୍ତୁ ତାହା ବାସ୍ତବ ବୋଲି ଲୋକଙ୍କ ମନରେ ବଦ୍ଧମୂଳ । (୩) ମନୁ ସଂହିତା : ହିନ୍ଦୁ ଧର୍ମର ନିୟମ, ବିଧାନ- ଯେଉଁ ନୀତି, ନିର୍ଦ୍ଦେଶ ଏବେ ବି ଅନୁସୃତ । (୪) କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର; ଯାହାଦ୍ୱାରା ଭାରତର ରାଜନୀତି, ଅର୍ଥନୀତି, ସାମାଜିକ ବ୍ୟବସ୍ଥା ପ୍ରଭାବିତ ଓ ନିୟନ୍ତ୍ରିତ । ଏସବୁ ପ୍ରତ୍ୟକ୍ଷରେ ହେଉ ବା ପରୋକ୍ଷ ଭାବେ ଜଗନ୍ନାଥଙ୍କ ଧର୍ମରେ ପ୍ରତିଫଳିତ । ଜଗନ୍ନାଥଙ୍କର ସେହି ପ୍ରତିଫଳନର ତାତ୍ପର୍ଯ୍ୟ ବୁଝିବାକୁ ହେଲେ ସମାଜର ବାସ୍ତବ ଜୀବନକୁ ନିରୀକ୍ଷଣ କରିବା ଦରକାର ।

ସେହି ଧର୍ମଧାରଣା କେଉଁଠୁ ଆସିଛି, କେଉଁ ଜଳବାୟୁ ଦ୍ୱାରା ପରିପୁଷ୍ଟ ହୁଏ, କେଉଁ ଅନୁକୂଳ ଅବସ୍ଥା ଯୋଗୁଁ ଏବେ ବି ତାହା ବଦ୍ଧମୂଳ ହୋଇ ରହିଛି, ତାକୁ ଅନୁଧ୍ୟାନ କରିବାକୁ ହେଲେ ଆମକୁ ମାନବସତ୍ତାର ବିକାଶକୁ ଲକ୍ଷ୍ୟ କରିବା ଆବଶ୍ୟକ । ତେଣୁ ମଣିଷର ଆଦିମ ସ୍ତରରେ ପହଞ୍ଚିବାକୁ ପଡ଼ିବ ଓ ତାର ସେହି ପରିପ୍ରେକ୍ଷୀରେ ଭାରତର ସଭ୍ୟତାର ନିର୍ଦ୍ଦିଷ୍ଟ ପର୍ଯ୍ୟାୟଗୁଡ଼ିକୁ ପର୍ଯ୍ୟାଲୋଚନା କରିବାକୁ ହେବ । କାରଣ ଆମର ଜଗନ୍ନାଥ ସେଥି ସହିତ କେବଳ ସମ୍ପୃକ୍ତ ନୁହନ୍ତି, ବରଂ ଓଡ଼ିଶାର ସେହି ନିର୍ଦ୍ଦିଷ୍ଟ ଅବସ୍ଥାର ଏକ ସୁନିର୍ଦ୍ଦିଷ୍ଟ ଅପରିହାର୍ଯ୍ୟ ପ୍ରକାଶ ।

ଆଦିମ ସମାଜରେ ସାମ୍ୟର ଭାବ ସର୍ବତ୍ର ପ୍ରକାଶ ପାଇଥାଏ । ସାମ୍ୟର ଭିତ୍ତି ଉପରେ ସେଇ ସମାଜ ପ୍ରତିଷ୍ଠିତ । ତାହା ଲୋକଙ୍କର ଉନ୍ନତ ଚେତନାର ଲକ୍ଷଣ ବା ତାର ଉପଲବ୍ଧି ନୁହେଁ । ଅପର ଦିଗରେ ତା' ସେଇ ଅନୁନ୍ନତ ଆଦିମ ସମାଜର ତାଡ଼ନାରୁ ଜାତ । କାରଣ ଉତ୍ପାଦନ ଶକ୍ତି ସେଠାରେ ଏତେ ଅନନ୍ନତ ଯେ ଏକାକୀ ନୁହେଁ, ମିଳିମିଶି ସମାନଭାବେ ନ ଚଳିଲେ ମଣିଷ ପକ୍ଷରେ ବଞ୍ଚି ରହିବା ଆଦୌ ସମ୍ଭବ ନୁହେଁ । ଯେଉଁ ଅବସ୍ଥାରେ ମଣିଷର ଶ୍ରମ ଉଦ୍‌ବୃତ ସୃଷ୍ଟି କରିବାର ସମର୍ଥ ନୁହେଁ ବା ତାହା କରି ଶିଖିନାହିଁ, ସେଠିସାମ୍ୟ ଛଡ଼ା ମଣିଷର ସ୍ଥିତି ଅସମ୍ଭବ । ଜଗନ୍ନାଥ ସେଇ ସାମ୍ୟ ସମାଜର ସୃଷ୍ଟି, ସେଇ ସମାଜର ବିସ୍ମୃତ ଅବସ୍ଥାର ଏକ ଆକୁଳ ସ୍ମୃତି ଭାବେ ବିଦ୍ୟମାନ ।

ବର୍ତ୍ତମାନ ଜଗନ୍ନାଥଙ୍କ ''ମୈତ୍ରୀ'' ଧର୍ମର ବଡ ତାରଫ କରାଯାଏ । କିନ୍ତୁ ସେ ମୈତ୍ରୀ କେବଳ ଦେଉଳ ଭିତରେ ଜଗନ୍ନାଥଙ୍କ ଆଗରେ ତାଙ୍କ ପ୍ରସାଦ ସେବନରେ ସୀମିତ, କେବଳ ସେଇଠାରେ ଜାତିଭେଦ ନାହିଁ । ହିନ୍ଦୁଧର୍ମର ପ୍ରଚଳିତ ବିଧାନ — ଜାତିଭେଦ — ସେଠଇ ଚଳେନାହିଁ । ହିନ୍ଦୁସମାଜ ପକ୍ଷରେ ତାହା ବଡ ଗୁରୁତ୍ୱପୂର୍ଣ୍ଣ । କିନ୍ତୁ ସମସ୍ତ ମଣିଷ ସମାଜ ପାଇଁ ତା ଗୁରୁତ୍ୱହୀନ । କାରଣ କେବଳ ହିନ୍ଦୁଙ୍କୁ ଛାଡ଼ିଦେଲେ ଜାତିଭେଦ ଅନ୍ୟ କୌଣସି ଧର୍ମରେ ନାହିଁ । ସେଇ ହିନ୍ଦୁଧର୍ମ ଯାହା ଜାତିଭେଦ ସୃଷ୍ଟି କରିଛି, ତାର ପ୍ରତିଷେଧକ ହୋଇଛି ଜଗନ୍ନାଥ ଧର୍ମ । ଏହା ସେହି ଏକା ହିନ୍ଦୁଧର୍ମର ପ୍ରକାଶନ, ସେହି ଏକାଧର୍ମର ପୁଣି ପରସ୍ପର ବିରୁଦ୍ଧାତ୍ମକ ନୀତି ଓ ଚିରତ୍ର, ଏହା କାହିଁକି, କିପରି ସମ୍ଭବ ? ଜଗନ୍ନାଥଙ୍କ ମୈତ୍ରୀ ଅନ୍ୟ ସବୁ ପୀଠରେ ପ୍ରଚଳିତ ନୁହେଁ କାହିଁକି ?

ଦ୍ୱିତୀୟରେ, ବିନା ସାମ୍ୟରେ କଣ ପ୍ରକୃତ ମୈତ୍ରୀ ସମ୍ଭବ ? କେବଳ ସମାନସ୍କନ୍ଧ ଲୋକଙ୍କ ଭିତରେ ସାମ୍ୟ ଆସିପାରେ । ଧନୀ, ଦରିଦ୍ର, ରାଜା, ପ୍ରଜା ଏମାନଙ୍କ ଭିତରେ ସାମ୍ୟର ପ୍ରଶ୍ନ ନାହିଁ । ଜାତିଗତ ବା ଶ୍ରେଣୀଗତ ମୈତ୍ରୀ କୁତ୍ରାପି ସମ୍ଭବ ନୁହେଁ । ବ୍ୟକ୍ତିଗତ ମୈତ୍ରୀ ଯଦିବା ଘଟେ, ତାହା ମଣିଷର ସ୍ୱାର୍ଥର ସୀମାକୁ ଅତିକ୍ରମ କରେ ନାହିଁ । ଅର୍ଥନୈତିକ ରାଜନୈତିକ ସମାଜିକ ସାମ୍ୟ ବିନା ସେଇ ମୈତ୍ରୀ କେବଳ ଏକ କୃତ୍ରିମ ମୈତ୍ରୀ ନୁହେଁ, ବରଂ ଅନ୍ୟ ଦିଗରେ ଅସାମ୍ୟକୁ

ଢ଼ାଙ୍କିବାର ଏକ ସୁଚିନ୍ତିତ ଆବରଣ । ଏହିପରି ମୈତ୍ରୀ ଦ୍ବାରା ଜାତି ଜାତି, ଶ୍ରେଣୀ ଶ୍ରେଣୀ ବା ମଣିଷ ମଣିଷ ଭିତରେ ଅସାମ୍ୟର ହ୍ରାସ ନାହିଁ କି ସାମ୍ୟର ବିକାଶରେ ଟିକେହେଲେ ବୃଦ୍ଧି ନାହିଁ । ଜଗନ୍ନାଥ ଭାବର ମର୍ମକୁ ଛାଡ଼ିବା ଦିନଠୁଁ ସେଇ ଅସାମ୍ୟ ବୃଦ୍ଧିହିଁ ସମାଜରେ ପ୍ରକଟିତ ।

ସେଇ ସାମ୍ୟ ଯେତେ ସୀମିତ ବା କୃତ୍ରିମ ହେଲେ ମଧ୍ୟ, ମୈତ୍ରୀର ମୌଳିକ ଧାରଣା ଜଗନ୍ନାଥଙ୍କ ଠାରେ ଏବେବି ପରିସ୍ଫୁଟ । ଅନ୍ୟ କୌଣସି ହିନ୍ଦୁ ଦେବ-ଦେବୀ ସେପରି ସାମ୍ୟ ଭାବର ଅଧିକାରୀ ନୁହନ୍ତି । ସେମାନଙ୍କର ମୌଳିକ ଚରିତ୍ର ନୁହେଁ, କାହିଁକି ? ବରଂ ଠିକ୍ ବିପରୀତ ଜିନିଷଟି ସେମାନଙ୍କ ଠାରେ ପ୍ରତୀୟମାନ । କହିବାକୁ ଗଲେ ଅସାମ୍ୟ, ଅସ୍ପୃଶ୍ୟତା, ଜାତିଭେଦ, ମାନବବିଦ୍ୱେଷ ଆଦି ଉପରେ ସେମାନେ ପ୍ରତିଷ୍ଠିତ । କେବଳ ବ୍ରାହ୍ମଣଙ୍କୁ ଛାଡ଼ିଦେଲେ ଏଇ ଦେବଦେବୀଙ୍କ ପାଖରେ ଅନ୍ୟମାନଙ୍କ ପ୍ରବେଶ ନିଷିଦ୍ଧ । କିନ୍ତୁ କାହିଁକି ? ତା'ହା କାହାରି ମସ୍ତିଷ୍କର ଭିଆଣ ନୁହେଁ, ତାର ମୂଳ ବୀଜ ରହିଛି ସମାଜର ବାସ୍ତବ ଅବସ୍ଥା ଭିତରେ । ଜଗନ୍ନାଥ ଓ ହିନ୍ଦୁ ଦେବବେ ଦବୀ ଦୁଇ ଭିନ୍ନ ଭିନ୍ନ ବାସ୍ତବ ଅବସ୍ଥା ମଧ୍ୟରୁ ସମ୍ଭୂତ ।

ଜଗନ୍ନାଥ, ଜଗତର ନାଥ, ମଣିଷ-ଜଗତ୍ ସହିତ ତାଙ୍କର ଆବିର୍ଭାବ । କିନ୍ତୁ ଅନ୍ୟ ଦେବା ଦେବୀ ଆସିଛନ୍ତି ମଣିଷ-ସମାଜ ବିକାଶର ବିଭିନ୍ନ ପର୍ଯ୍ୟାୟରେ । କହିବାକୁ ଗଲେ, ଦୁହେଁ ଦୁଇ ବିରୁଦ୍ଧାତ୍ମକ ସାମାଜିକ ପର୍ଯ୍ୟାୟର ସୃଷ୍ଟି । ଜଣେ ପ୍ରାକ୍ଶ୍ରେଣୀ ବିଭକ୍ତ ଆଦିମ ସାମ୍ୟ ସମାଜର ପ୍ରତୀକ ହେଲାବେଳେ, ଅନ୍ୟମାନେ ଶ୍ରେଣୀବିଭକ୍ତ ସମାଜର ଦେବତା । ତେଣୁ ଜଣେ ସମସ୍ତ ମାନବ ଜାତିର ଅନ୍ତର୍ନିହିତ ମାନବିକ ଆକାଂକ୍ଷାର ପ୍ରତିଭୂ ହେଲାବେଳେ ଅନ୍ୟମାନେ ହେଲେ ଆତ୍ମସ୍ୱାର୍ଥ ସାଧନର ପ୍ରତିଭୂ । ଫଳରେ ସେମାନେ ହେଲେ ସମାଜର ଏଇ କ୍ଷୁଦ୍ର ଗୋଷ୍ଠୀ ସ୍ୱାର୍ଥର ଅଦୃଶ୍ୟ ପ୍ରହରୀ । ଏପରିକି ବେଦ ଓ ପୁରାଣର ସେଇ ହିନ୍ଦୁ ଦେବତାମାନେ ଏକ ନୁହନ୍ତି, ଭିନ୍ନ ଭିନ୍ନ । ବେଦର ଦେବତାଙ୍କର ଶକ୍ତି ଓ ଗୁରୁତ୍ୱ ପୁରାଣଯୁଗରେ ହ୍ରାସ ପାଇଛି । କେତେକ ସମ୍ପୂର୍ଣ୍ଣ ଲୋପ ପାଇ ଯାଇଛନ୍ତି । ତାଙ୍କ ସ୍ଥାନରେ ନୂତନ ଗୁଣସମ୍ପନ୍ନ ଦେବତାଙ୍କର ଆବିର୍ଭାବ ଘଟିଛି । କିନ୍ତୁ କାହିଁକି ? କ'ଣ ସେଇ ପାର୍ଥକ୍ୟର କାରଣ ? ତା'ର ବାସ୍ତବ କାରଣ, ସାମାଜିକ ବିକାଶର ପ୍ରୟୋଜନ ଭିତରେ ନିହିତ । ସେ ବିଷୟଟି ପରେ ଆଲୋଚନା କରିବା । ଏବେ ଦେଖିବା ସାମାଜିକ ବିକାଶ ଭିତରେ ମାନବର ଧ୍ୟାନ-ଧାରଣା ରୂପ ନିଏ କିପରି ?

ସବୁ ଧ୍ୟାନଧାରଣା, ମତ ବିଶ୍ୱାସ ପ୍ରକାଶ ପାଏ ମନ ଭିତରେ । ସବୁ କାମ ରୂପ ନିଏ ମଣିଷ ହାତରେ, ତାର ଶ୍ରମଦ୍ୱାରା । ସେଇ ଦୁହିଁଙ୍କୁ ଘେନି ମଣିଷ, ସେ ଦୁହେଁ ପରସ୍ପର ସହିତ କିପରି ସଂପୃକ୍ତ, ତାଙ୍କ ଭିତ୍ରରେ ଏ କିଏ ଆଗ, କିଏ ପଛ ? କିଏ ମୁଖ୍ୟ କିଏ ଗୌଣ ? ଏହାର ବିଚାର ବିନା ମଣିଷ ଧ୍ୟାନଧାରଣାର ମୂଳ ରହସ୍ୟ ଉଦ୍‌ଘାଟନ ସମ୍ଭବ ନୁହେଁ ।

**ମଣିଷର ମୌଳିକ ବିବାଦ :**

ଏ ବିଷୟରେ ଆଲୋଚନାର ଅଭାବ ନାହିଁ । ତେବେ ଏଙ୍ଗେଲସଙ୍କର ନିମ୍ନଲିଖିତ ମତ ସେ ସମ୍ପର୍କରେ ସବୁଠୁ ସ୍ପଷ୍ଟ ଆଉ ମୌଳିକ । ସେ ଦର୍ଶାଇଛନ୍ତି -

''ବଂଶପରମ୍ପରାକ୍ରମେ ଖୋଦ ସେଇ ଶ୍ରମର ରୂପାନ୍ତର ଘଟିଲା । ତାହା ଅଧିକ ନିଖୁଣ, ଆହୁରି ପୂର୍ଣ୍ଣାଙ୍ଗ ହେଲା । ବହୁବିଧ ରୂପ ଧାରଣ କଲା । ଶିକାର ଓ ପଶୁପାଳନ ସାଙ୍ଗକୁ କୃଷିର ସଂଯୋଗ ଘଟିଲା । ତା ପଛକୁ ସୂତାକଟା, ଲୁଗାବୁଣା, ଧାତୁକାମ, ମାଟିଜିନିଷ ତିଆରି, ନୌଚାଳନା, ବାଣିଜ୍ୟ, ଶିଳ୍ପ ଏବଂ ସେ ସବୁ ସହିତ ଶେଷରେ ପ୍ରକାଶ ପାଇଲା କଳା ଓ ବିଜ୍ଞାନ । ଉପଜାତିରୁ (Tribe) ଜାତି ଓ ରାଷ୍ଟ୍ରର ଅଭ୍ୟୁଦୟ ହେଲା । ଆଇନ ଓ ରାଜନୀତିର ଆବିର୍ଭାବ ହେଲା । ସେଇ ସଙ୍ଗେସଙ୍ଗେ ଦେଖାଦେଲା ମଣିଷ ମନରେ ମଣିଷର ବ୍ୟାପାର ନେଇ ଉଦ୍‌ଭଟ କଳ୍ପନାର ପ୍ରତିଫଳନ ଧର୍ମ ।''

''ଯେଉଁ ସବୁ ସୃଷ୍ଟି,- ଯାହାକି ପ୍ରଥମେ ଦେଖିଲାକ୍ଷଣି ମୁଖ୍ୟତଃ ମନର ସୃଷ୍ଟି ବୋଲି ପ୍ରତୀୟମାନ ହେଉଥିଲା ଏବଂ ଯାହା ମାନବ ସମାଜକୁ ପ୍ରଭାବିତ ଓ ନିୟନ୍ତ୍ରଣ କଲାଭଳି ବୋଧ ହେଉଥିଲା, ତାହା ଆଗରେ ମଣିଷର କର୍ମଶୀଳ ହସ୍ତର ସରଳ କୃତିସବୁ ପଛକୁ ଅପସରିଯିବାକୁ ଲାଗିଲା । ତାହା ଯେତେ ଯେତେ ବେଶୀ ପଛକୁ ହଟିଲା, ସେତେ ବେଶୀ ମନର ସୃଷ୍ଟି ବୋଲି ପ୍ରତିୟମାନ ହେଲା । ଯେଉଁ ମନକି ଶ୍ରମର ଯୋଜନା କରେ, ସେହି ମନ ନିଜ ହାତ ଛାଡି ଅନ୍ୟ ହାତ ସାହାଯ୍ୟରେ ସେଇ ପରିକଳ୍ପିତ ଶ୍ରମକୁ କାର୍ଯ୍ୟକାରୀ କରିବାକୁ ଶିଖିଲା । ସମାଜ ବିକାଶର ଆରମ୍ଭରେ ଅତି ପ୍ରାଚୀନ ପର୍ଯ୍ୟାୟରୁ ଏହି ବ୍ୟବସ୍ଥାର ସୂତ୍ରପାତ ହୋଇଛି । ସଭ୍ୟତାର ଦ୍ରୁତ ଅଗ୍ରଗତିର ସମସ୍ତ କୃତିତ୍ୱ ମନ ପ୍ରତି, - ମସ୍ତିଷ୍କର ବିକାଶ ଓ ତାର କାର୍ଯ୍ୟ ପ୍ରତି ଆରୋପିତ ହେଲା । ପ୍ରୟୋଜନ ଦିଗରୁ ବ୍ୟାଖ୍ୟା କରିବା ପରିବର୍ତ୍ତେ ମଣିଷର ଧ୍ୟାନଧାରଣା ଦିଗରୁ ଚିନ୍ତାର ବ୍ୟାଖ୍ୟା କରିବାକୁ ଲାଗିଲା । (ଯଦିଓ ପ୍ରୟୋଜନ ଶେଷ ପର୍ଯ୍ୟନ୍ତ ମନରେ ପ୍ରତିଫଳିତ ହୁଏ ଓ ଚେତନା ଅଭାବରେ ଆସେ)... କାଳକ୍ରମେ ଏହି ଭାବରେ ପ୍ରକୃତ ସମ୍ବନ୍ଧରେ ଭାବବାଦୀ ଦୃଷ୍ଟିକୋଣର ଉଦ୍ଭବ । ବିଶେଷ କରି ପ୍ରାଚୀନଯୁଗ ଶେଷ ହେବା ପରଠାରୁ ସେଇ ଦୃଷ୍ଟିକୋଣ ମାନବ ମନକୁ ଅଧିକାର କରି ଆସିଛି ।''

ଉପରୋକ୍ତ ଉଦ୍ଧୃତିଟି ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ତାହା ଏପରି ଏକ ମୌଳିକ ପ୍ରଶ୍ନର ଉତ୍ତର ଦିଏ, ଯାହା ଉପରେ କି ମଣିଷର ସମସ୍ତ ବିଚାର ଓ ତାର ଦୃଷ୍ଟିକୋଣ ନିର୍ଭର କରେ। । ମଣିଷର ସୃଷ୍ଟିର ପ୍ରକ୍ରିୟା ଗୋଟାଏ ହେଲେବି, ତାହା ତାର ହାତ ଓ ମନ ଉଭୟଙ୍କର କ୍ରିୟାକୁ ନେଇ ଗଠିତ । ମନର ସୃଷ୍ଟି-ଚିନ୍ତା, ଭାବନା ଓ କଳ୍ପନାପ୍ରସୂତ ହେଲାବେଳେ ହାତର ସୃଷ୍ଟି ମଣିଷର କର୍ମ, ଶ୍ରମ ଓ ତାର ଶାରୀରିକ କ୍ରିୟାର ଫଳ । ଏମାନଙ୍କ ଭିତରେ କିଏ ଆଗ, କିଏ ପଛ, କିଏ ମୁଖ୍ୟ କିଏ ଗୌଣ, କିଏ କାହା

ଉପରେ ନିର୍ଭରଶୀଳ ? ସେମାନେ କିପରି ପରସ୍ପରକୁ ପ୍ରଭାବିତ କରନ୍ତି, ତାହା କାଳେକାଳେ ଚରମ ପ୍ରହେଳିକାର ବିଷୟ ହୋଇଆସିଛି । ଯେଉଁଠି ମନକୁ ମୁଖ୍ୟ ଓ ବଡ଼ କରି ଧରାଯାଏ, ସେଠି କୁହାଯାଏ ''ମନର ମୂଳେ ଏ ସଂସାର'', ମନରୁ ସବୁ ଜାତ, ସେହି ମୂଳକୁ ବୁଝିଲେ ସମସ୍ତ ସଂସାରକୁ ବୁଝିହେବ । ଯେଉଁଠି ହାତ ବା କାମକୁ ମୁଖ୍ୟ କରାଯାଏ, ସେଠାରେ ଉକ୍ତିହେଲା ''କର୍ମ ମୋହର ନିଜ ଗୁରୁ .........'' କର୍ମରୁ ସବୁ ଜ୍ଞାନର ଉଦ୍ଭବ । ତାକୁହିଁ ବିଚାର କର । ଶେଷ ବିଚାରରେ ମନବାଲା ଭାବ-ବାଦରେ ପହଞ୍ଚିଲାବେଳେ କର୍ମବାଲା ବସ୍ତୁବାଦରେ ପହଞ୍ଚନ୍ତି । ଏଠାରେ ତାହା ଆମର ଆଲୋଚ୍ୟ ବିଷୟ ନୁହେଁ । ମଣିଷର ଧାନଧାରଣା-ତାର ମାନସିକ କ୍ରିୟାର ଉତ୍ସ ଅନ୍ୱେଷଣହିଁ ହେଲା ଆମର ଉଦ୍ଦେଶ୍ୟ ।

ହାତ ମଣିଷର ସବୁ ସମ୍ପଦର ମୂଳ । ତାହା ମଣିଷକୁ ମଣିଷ କରିବାର ପ୍ରଧାନ ସର୍ତ୍ତ । ତାର ପ୍ରଥମ ସୂଚନା ମିଳେ ମହାଭାରତରେ । ଶାନ୍ତିପର୍ବରେ ୧୮୦ ଶ୍ଳୋକରେ ଭୀଷ୍ମଙ୍କ ବର୍ଣ୍ଣିତ କାହାଣୀରୁ ଜଣାଯାଏ, ଜଣେ ନିର୍ଦ୍ଧନ କଶ୍ୟପ-ବଂଶୀୟ ଋଷି ପ୍ରାଣତ୍ୟାଗ କରିବାକୁ ଉଦ୍ୟତ ହୁଅନ୍ତେ ଇନ୍ଦ୍ର ଏକ ଶୃଗାଳ ରୂପରେ ସେଠି ପହଞ୍ଚିଛନ୍ତି । ସେହି ଶୃଗାଳ ଋଷିଙ୍କୁ ବୁଝାଇ କହେ ଯେ ''ମଣିଷ ଜନ୍ମ ଶ୍ରେଷ୍ଠ ଜନ୍ମ । ଯାହାଙ୍କର ହାତ ଅଛି, ସେମାନେ କୃତାର୍ଥ । ତମର ଯେପରି ଧନଲାଗି ବାସନା, ମୋର ସେମିତି ହାତଲାଗି ନିୟତ ଅଭିଳାଷ । ଦେଖ, ହାତ ନ ଥିବାରୁ ମଶା କାମୁଡ଼ିଲେ ମୁଁ ତାକୁ ମାରିପାରେ ନାହିଁ । ଦେହ କୁଣ୍ଡାଇହେଲେ କୁଣ୍ଡାଇ ପାରେ ନାହିଁ । ହାତ ଅଛି ବୋଲି ମଣିଷ ଗବାଦି ପ୍ରାଣୀଙ୍କୁ ବଶୀଭୂତ କରୁଛି, ଧନ ସଞ୍ଚୟ କରୁଛି । ଖାଦ୍ୟ, ବସ୍ତ୍ର ଓ ବାସସ୍ଥାନ ନିର୍ମାଣ କରୁଛି ।'' ଏହାର ଏକମାତ୍ର ଅର୍ଥ ହେଉଛି ହାତଯୋଗୁହିଁ ମଣିଷ । ତାହାବିନା ସେ ମଣିଷ ହୋଇପାରନ୍ତା ନାହିଁ ।

ପ୍ରଥମ କଥା, ମଣିଷକୁ ବଞ୍ଚିବାକୁ ହେବ । ବଞ୍ଚିଲା ଉତ୍ତାରୁ ତାର ଧାନଧାରଣାର ପ୍ରଶ୍ନ । ବଞ୍ଚିବାକୁ ହେଲେ ପ୍ରକୃତି ବିରୁଦ୍ଧରେ ସଂଗ୍ରାମ କରିବାକୁ ହେବ । ସଂଗ୍ରାମ କରିବାକୁ ହେଲେ ସଂଗ୍ରାମର ଅସ୍ତ୍ରକୁ ଶାଣିତ ଓ ଉନ୍ନତ କରିବାକୁ ପଡ଼ିବ । ତା ନାମ ହେଉଛି ଉତ୍ପାଦନର ଉପାୟ, ଉତ୍ପାଦନ କୌଶଳରେ ଉନ୍ନତି । ଉତ୍ପାଦନ-କୌଶଳ ଉନ୍ନତିର ଅର୍ଥ ହେଲା ଉତ୍ପାଦନ ବୃଦ୍ଧି । ସେହି ବୃଦ୍ଧି ଯୋଗୁ ଉଦ୍‌ବୃତ୍ତ ଉତ୍ପାଦନ । ତେଣୁ ସେଥିଲାଗି ଶ୍ରମର ବିଭାଗ । କିଏ ଅନ୍ନ ଉତ୍ପାଦନ କଲା ତ କିଏ ଅନ୍ୟାନ୍ୟ ଜିନିଷ ଉତ୍ପାଦନ କରିବ । ଫଳରେ କାଳକ୍ରମେ କେତେକ ନିଜର ଖାଦ୍ୟଲାଗି ଅନ୍ନ ଉତ୍ପାଦନରୁ ମୁକ୍ତ ହୋଇଗଲେ । ନାନା ହାତହତିଆରର ଉନ୍ନତି ଓ ତାର ଉତ୍ପାଦନରେ ଲାଗିଲେ । ଶ୍ରମ ବିଭାଗ ଯୋଗୁ ଉତ୍ପାଦନରେ ଦ୍ରୁତ ବିକାଶ ଘଟିଲା । ତାହା ଅନ୍ୟଦିଗରେ ଶ୍ରମର ବିଭାଗକୁ ଆହୁରି ଆଗେଇ ନେଲା । ଶେଷରେ ସେଥିରେ ମୌଳିକ ପରିବର୍ତ୍ତନ ଦେଖାଦେଲା । ଉତ୍ପାଦନର ପ୍ରତ୍ୟକ୍ଷ ଦାୟିତ୍ୱରୁ ମୁକ୍ତ ହୋଇ କେତେକ ଉତ୍ପାଦନ ସଙ୍ଗଠନରେ ଲାଗିଲାବେଳେ, ଅନ୍ୟ ଦିଗରେ ଉତ୍ପାଦନ କରିବା କେତେ ଲୋକଙ୍କର ଖାସ୍ କାମ ହେଲା । ଏହି ସଙ୍ଗଠକମାନେ ଉତ୍ପାଦନରେ

ଆଉ ଅଂଶ ଗ୍ରହଣ କଲେ ନାହିଁ । ଉତ୍ପାଦନର ତଦାରଖ, ପରିଚାଳନା କଲେ । ଏମାନେ ପ୍ରଥମେ ମାଲିକ ହୋଇ ନାହାନ୍ତି, କିନ୍ତୁ ମୁଣ୍ଡ ଖଟାଇ ପରିଚାଳନା କରିବା ଫଳରେ କିଛିଟା କର୍ତ୍ତୃତ୍ୱର ଅଧିକାରୀ ହେଲେ । କାରଣ କୌଣସି କର୍ତ୍ତୃତ୍ୱ ବିନା ପରିଚାଳନା ସମ୍ଭବ ନୁହେଁ । ଶେଷକୁ କାଳକ୍ରମେ ଏମାନେ କେବଳ ରକ୍ଷକ, ସଙ୍ଗଠକ ବା ପରିଚାଳକ ନ ହୋଇ ମାଲିକରେ ପରିଣତ ହେଲେ ।

ଏବେ, ଶ୍ରମ ଏଇଠି ଦୁଇଭାଗ ହୋଇଗଲା । ଯିଏ ମୁଣ୍ଡ ଖଟାଇ ସଙ୍ଗଠନ କଲା, ସେ ଦେହ ଖଟାଇଲା ନାହିଁ । ତେଣେ ଯାହାର ଦେହ ଖଟିଲା, ତାର ମୁଣ୍ଡ ଖଟାଇବାର ସୁବିଧାସୁଯୋଗ ରହିଲା ନାହିଁ । ଶ୍ରେଣୀ ବିଭାଗ କେବଳ ଶ୍ରମିକ, ମାଲିକ ପାର୍ଥକ୍ୟ ସୃଷ୍ଟି କଲା ନାହିଁ, ତାର ଅପରିହାର୍ଯ୍ୟ ପରିଣତି ହେଲା ଶ୍ରମ ସହିତ ଚିନ୍ତାର ବିଚ୍ଛେଦ । କାୟିକ ଶ୍ରମ ସହିତ ମାନସିକ ଶ୍ରମର ବିଚ୍ଛେଦ— ଦେହ ସଙ୍ଗେ ମୁଣ୍ଡର ବିଚ୍ଛେଦ । ଯେଉଁ ମୁଣ୍ଡ ଶ୍ରମର ଚିନ୍ତା, ପରିକଳ୍ପନା, ପରିଚାଳନା ବା କଲା, ତାକୁ କାର୍ଯ୍ୟକାରୀ କଲା ଆଉ ଗୋଟାଏ ମୁଣ୍ଡର ହାତ । ତାର ଶେଷ ପରିଣତି ହେଲା କେବଳ ଚିନ୍ତା କରିବା ଦଳେ ଲୋକଙ୍କର କାମ ହେଲାବେଳେ ଆଉ ଦଳଙ୍କର କାମ ହେଲା କେବଳ ଶାରୀରିକ ଶ୍ରମ । ସେତେବେଳେ କୃଷିଥିଲା ଏକମାତ୍ର କାର୍ଯ୍ୟ, ତାହା ହେଲା ବ୍ରାହ୍ମଣଙ୍କ ଲାଗି ନିଷିଦ୍ଧ । ଅନ୍ୟଦିଗରେ ଏକମାତ୍ର ଶାରୀରିକ କାର୍ଯ୍ୟ ହେଲା ସମାଜର ଅଧିକାଂଶ ଲୋକ(ଶୂଦ୍ର)ଙ୍କର ଭାଗ୍ୟର ଲିଖନ । ମାନସିକ କାର୍ଯ୍ୟ, ଜ୍ଞାନ ଆହରଣ, ଶାସ୍ତ୍ର ଅଧ୍ୟୟନ ଆଦି ତାଙ୍କ(ଶୂଦ୍ର) ଲାଗି ଖାଲି ନିଷିଦ୍ଧ ହେଲା, ତାହାନୁହେଁ, ଘୋର ଦଣ୍ଡନୀୟ ହେଲା । ଶାରୀରିକ ଶ୍ରମର ମର୍ଯ୍ୟାଦା ହ୍ରାସ ପାଇବା ସହିତ ମଣିଷର ମନର ଚିନ୍ତା ସ୍ୱାଧୀନ ସ୍ୱତନ୍ତ୍ରତା ଲାଭକଲା । ଫଳରେ ବାସ୍ତବତାହୀନ ଚିନ୍ତା ସେତିକି ଜୋରରେ ଆତ୍ମପ୍ରକାଶ କଲା, ମଣିଷର ଧ୍ୟାନଧାରଣା ସେହି ଚିନ୍ତା ବା କଳ୍ପନାକୁ ସେତିକି ଆଶ୍ରା କଲା । କିନ୍ତୁ ଯେଉଁଠି ଉତ୍ପାଦନ କର୍ମ, — ଶ୍ରମ ସହିତ ସମସ୍ତ ମଣିଷ ବା ସମାଜର ଯୋଗାଯୋଗ ରହିଛି, ସେଇ ସମାଜର ଚିନ୍ତା, ତାର ଚେତନା ଯେତେ ଅସ୍ପଷ୍ଟ, ମୂକ ଏବଂ ଅମାର୍ଜିତ ହେଲେ ବି ତା ପ୍ରାକ୍ - ଆଧ୍ୟାତ୍ମିକବାଦୀ ବା ଆଧିଭୌତିକ । ସେଠି ଦେବ, ଦେବୀ, ଧର୍ମ ଆଦି କଳ୍ପନାର ପ୍ରଶ୍ନ ଆସିନାହିଁ ।

ଏ ସବୁ ଜଣେ କାହାର ମନର ଭିଆଣ ବା ଅଳୀକ କାହାଣୀ ନୁହେଁ । ମାନବଜାତି ପୃଥିବୀର ଯେକୌଣସି ଦେଶ, ବର୍ଣ୍ଣ, ଧର୍ମ,ଆଉ ଅଞ୍ଚଳର ହେଉ ପଛେ, ପ୍ରତ୍ୟେକଙ୍କୁ ସେଇ ଆଦିମ ସାମ୍ୟ-ମୈତ୍ରୀର ପଥ ଦେଇ ଅଗ୍ରସର ହେବାକୁ ହୋଇଛି । ପଶୁ ଜଗତରୁ ସଭ୍ୟ ସମାଜକୁ ଉଠିବାର ତାହାହିଁ ମଣିଷର ଆଦ୍ୟ ସୋପାନ । ବର୍ତ୍ତମାନର ସଭ୍ୟତାର ଯେତେ ଉଚ୍ଚ ଶିଖରକୁ ମଣିଷ ଉଠିଲେ ମଧ୍ୟ, ତାକୁ ହଜାର ହଜାର ବର୍ଷ ଧରି ସେଇ ଆଦିମ ସାମ୍ୟର ସ୍ତର ଦେଇ ଗତି କରିବାକୁ ପଡିଛି । ସେଇ ଶ୍ରେଣୀହୀନ ସମାଜର ତୁଳନାରେ ବର୍ତ୍ତମାନ ଶ୍ରେଣୀ ବିଭକ୍ତ ସମାଜର କାଳ କାଣିଚାଏ ସମୟ ମାତ୍ର । ବର୍ତ୍ତମାନ ବି ସେହିପରି ଆଦିମ ଅବସ୍ଥାରେ ରହିଥିବା ଲୋକଙ୍କ ମଧ୍ୟରେ ତାର ଅବଶେଷ ଦେଖାଯାଏ । ତାଙ୍କ ସେହି ସାମ୍ୟ ଜୀବନର

ସ୍ମାରକୀ ବିଭିନ୍ନ ଭାବରେ ବିଦ୍ୟମାନ । ଆଉ ମଧ୍ୟ ପ୍ରାଚୀନ ସଭ୍ୟ ଜାତିଙ୍କର କଳା, ସାହିତ୍ୟ, ସଂସ୍କୃତି ଓ ଆଚାର ବ୍ୟବହାର ଭିତରେ ଏବେ ବି ସେଇ ସାମ୍ୟ ଜୀବନର ଅଶେଷ ଦୃଷ୍ଟାନ୍ତର ପରିଚୟ ମିଳେ । କାଳର ଗତି ଯେତେ କଠୋର ନିର୍ଦ୍ଦୟ ହେଲେ ବି ମଣିଷ ସଭ୍ୟତାର ସ୍ମୃତିର ଚିହ୍ନକୁ ପୋଛି ଦେବାରେ ଅସମର୍ଥ । ତାର ସଦ୍ୟ ପ୍ରମାଣ ନିଜେ ସ୍ୱୟଂ ଜଗନ୍ନାଥ ।

## ସେହି ସଙ୍କେତ, ମାନବତ୍ୱର ପ୍ରତୀକ

ଜଗନ୍ନାଥ ଯେ ଆର୍ଯ୍ୟ ଦେବତା ନୁହନ୍ତି ଶବର ଦେବତା,— ତାହା ସର୍ବବାଦୀ ସମ୍ମତ । ଭାରତର ଆର୍ଯ୍ୟମାନଙ୍କ ପ୍ରବେଶ ପୂର୍ବରୁ ସେ ଶବର ଜାତି ରହି ଆସିଛନ୍ତି । ସେଇମାନେ ଭାରତର ଆଦିମ ଅଧିବାସୀ । ତେଣୁ ଜଗନ୍ନାଥଙ୍କ ଆଦ୍ୟ ବୃତ୍ତାନ୍ତ ପାଇବାକୁ ହେଲେ ତାଙ୍କୁ ସେଇ ଆଦିମ ସଭ୍ୟତା ଓ ତାର ବିକାଶ ଭିତରେ ଖୋଜିବାକୁ ହେବ । ନିଜର ବଦ୍ଧମୂଳ ଧାରଣା ନେଇ ତାଙ୍କ ଆଧୁନିକତାର ଚକ୍ଷୁରେ ଦେଖିଲେ ଚଳିବ ନାହିଁ । ପ୍ରାଚୀନକୁ ଆଧୁନିକ ରୂପରେ ଦେଖିବାର ଉଦ୍ୟମ ଜଗନ୍ନାଥଙ୍କୁ ବୁଝିବାରେ ପ୍ରଧାନ ଅନ୍ତରାୟ । ସେଠି ନିଜର ପୂର୍ବପରିକଳ୍ପନା ଭିତର ଦେଇ, ବାସ୍ତବତା ଏକ ବିକୃତ ରୂପରେ ପ୍ରତିଫଳିତ ହୁଏ । ତାର ସଦ୍ୟ ନିଦର୍ଶନ ହେଉଛି, 'ଜଗନ୍ନାଥଙ୍କୁ' ହିନ୍ଦୁ ଦେବତାଙ୍କ ସହିତ ସମାନ କରି ଦେଖିବା । ତାଙ୍କୁ ସେମାନଙ୍କ ଭଳି ନିର୍ଜ୍ଜୀବ, ମୃତ, ଭବିଷ୍ୟତ୍‌ହୀନ ବୋଲି ଘୋଷଣା କରିବା । ସେମାନଙ୍କ ସହିତ ତାଙ୍କୁ ଏକ କରିଦେବା । କିନ୍ତୁ ଜଗନ୍ନାଥ ହେଲେ 'ଐତିହାସିକ ସୃଷ୍ଟି' (ଇତିହାସର 'ଦେବତା') ଅନ୍ୟମାନଙ୍କ ଭଳି ପୌରାଣିକ ଦେବତା ନୁହନ୍ତି । ଜଗନ୍ନାଥ ସମାଜର ପ୍ରତୀକ ହେଲାବେଳେ ଅନ୍ୟସବୁ ଦେବତା ପୁରାଣର ଅବଦାନ । ସେମାନଙ୍କ ଜୀବନ ସେଇ ପୁରାଣ ଭିତରେ ସୀମାବଦ୍ଧ । ତାଙ୍କର ବିକାଶ ନାହିଁ । କିନ୍ତୁ ଜଗନ୍ନାଥଙ୍କୁ ପାଇବାକୁ ହେଲେ ସମାଜ, ଇତିହାସ ଓ ମାନବିକ ବିକାଶକୁ ଘାଣ୍ଟିବାକୁ ହେବ । ତେଣୁ ଯେତେ ମନ୍ଥର ହେଲେ ବି ଇତିହାସ ଭଳି ତାଙ୍କର ପରିବର୍ତ୍ତନ ରହିଛି । ସମାଜ ପରି ତାଙ୍କର ବିକାଶ ଓ ଭବିଷ୍ୟତ୍ ରହିଛି । ସମାଜର ଯେତେବେଳେ ଯେଉଁ ଧର୍ମଧାରଣା ବିକାଶ ପାଇଛି, ତାର ପ୍ରତିଫଳନ ଘଟିଛି ଜଗନ୍ନାଥଙ୍କଠାରେ । ତାଙ୍କ ଦେହରେ ସବୁର ସ୍ପର୍ଶ ଲାଗିଛି । ତାର ଚିହ୍ନ ଅତି ପରିଷ୍କାର । ଜୈନ, ବୌଦ୍ଧ, ଶୈବ, ଶାକ୍ତ, ବ୍ରାହ୍ମଣ, ବୈଷ୍ଣବ, ଏସବୁର ଚିହ୍ନ ଜଗନ୍ନାଥଙ୍କଠାରେ ବିଦ୍ୟମାନ । ଏପରିକି ଶେଷରେ ଇସ୍‌ଲାମ ଓ ଖ୍ରୀଷ୍ଟୟାନ୍ ଧାଣାର ଛିଟା ପଡ଼ିବାର ଉପକ୍ରମ ହେବାର ଦେଖାଯାଏ । ଅନ୍ୟାନ୍ୟ ଦେବଦେବୀଙ୍କଠାରେ ସେପରି ପରିବର୍ତ୍ତନ ନାହିଁ । ଅନ୍ୟ ଧର୍ମ ଧାରଣା ସାମାନ୍ୟ ଚିହ୍ନର ଟିକେ ହେଲେ ନିଦର୍ଶନ ନାହିଁ । ତାହା ଜଣାଇ ଦିଏ ଯେ ଅନ୍ୟସମସ୍ତ ଦେବାଦେବୀ ହେଲେ ନିର୍ଜ୍ଜୀବ, ବିକାଶହୀନ ଓ ଭବିଷତଶୂନ୍ୟ । ଏକମାତ୍ର ଜଗନ୍ନାଥ ହେଉଛନ୍ତି ଜୀବନ୍ତ, ବିକାଶଶୀଳ ଓ ଭବିଷ୍ୟତଯୁକ୍ତ । କାରଣ ମାନବ ସମାଜ ଭିତରେ ତାଙ୍କର ଜନ୍ମ । ତାର ବିକାଶର ଗତି ସହିତ ସେ ଜଡ଼ିତ ।

ଅଥଚ ଏଇ ସାଧାରଣ ଅତି ସରଳ ବଷୟଟି ବିଦ୍ୱାନ୍ ପଣ୍ଡିତ ଲୋକଙ୍କ ଦୃଷ୍ଟିରେ ଆସେ ନାହିଁ । ତାହା ତାଙ୍କ ଆକ୍ଷିରେ ନ ପଡ଼ିବାର କାରଣ କ'ଣ ? ତାହା ମାର୍କସ ଦର୍ଶାଇ ଦେଇ କହିଛନ୍ତି ''ଏକ ରକମ ଆଇନଗତ ଅନ୍ଧତ୍ୱ ଯୋଗୁଁ, ଏପରିକି ଶ୍ରେଷ୍ଠ ବୁଦ୍ଧିଜୀବୀଗଣ, ଏମିତିକି ଏକଦମ୍ ନାକ ଅଗରେ ଯାହା ରହିଛି ତାକୁ ଦେଖିପାରନ୍ତି ନାହିଁ । ଯେତେବେଳେ ସମୟ ଆସେ, ଯେଉଁସବୁ ଚିହ୍ନ ଆଗରୁ ଦେଖିପାରୁ ନଥିଲେ, ସେତେବେଳେ ସେସବୁକୁ ସର୍ବତ୍ର ଦେଖି ଆମେ ଅବାକ୍ ହୋଇଯାଉଛୁ । ଫରାସୀ ବିପ୍ଳବ ସମ୍ବନ୍ଧରେ ଓ ତାହା ସହିତ ନବଜାଗରଣ ଯୁଗ ସମ୍ବନ୍ଧରେ ଆମର ପ୍ରଥମ ପ୍ରତିକ୍ରିୟା ହେଲା ମଧ୍ୟଯୁଗୀୟ ସବୁ ଜିନିଷକୁ ସୁନ୍ଦର ମନେକରିବା । ଗ୍ରିନ୍‌ଙ୍କ ଭଳି ଲୋକ ମଧ୍ୟ ତା ପ୍ରଭାବରୁ ମୁକ୍ତ ନୁହନ୍ତି। ଦ୍ୱିତୀୟ ପ୍ରତିକ୍ରିୟା ହେଲା,— ମଧ୍ୟଯୁଗକୁ ପାର ହୋଇ ପ୍ରତ୍ୟେକ ଜାତିର ଆଦିମ ଯୁଗକୁ ଅନେଇବାରେ । ସେହି ଚେଷ୍ଟା ଆଜି ସମାଜବାଦୀଙ୍କ ପ୍ରଚେଷ୍ଟାର ଅନୁରୂପ ..... ଯଦିଓ ସେ ଦୁହିଁଙ୍କ ମଧ୍ୟରେ ଯେ ସମ୍ପର୍କ ରହିଛି, ସେ ସମ୍ବନ୍ଧରେ ସେଇସବୁ ବିଦ୍ୱାନ୍ ଲୋକଙ୍କର କୌଣସି ଧାରଣା ନାହିଁ । ସେଇ — ଯାହାକି ସବୁଠାରୁ ପ୍ରାଚୀନ, ତା ମଧ୍ୟରେ ଯାହା ସମୁଠାରୁ ନୂତନ , ତାକୁ ଦେଖିଦେଇ ସେମାନେ ଅବାକ୍ ହୋଇଯାଆନ୍ତି । ଏପରିକି ସମାଜବାଦୀମାନଙ୍କର ମଧ୍ୟ ସେଇ ଦଶା । ବିଷୟଟି ଏତେ ଦୂର ଭୟାନକ ଯେ ତାକୁ ଦେଖି ପ୍ରୋଧଁଙ୍କ ଭଳି ଲୋକଙ୍କର ମଧ୍ୟ ହୃଦକମ୍ପ ହୁଏ ।''

**ବିଚାରହୀନ ବିଶ୍ୱାସ**

ଆପଣାର ବଦ୍ଧମୂଳ ଧାରଣା ଓ ଆଧୁନିକତାର ଦୃଷ୍ଟିଭଙ୍ଗୀ ଯୋଗୁ ଶ୍ରେଷ୍ଠ ବିଦ୍ୱାନ ପଣ୍ଡିତଗଣ ଆକ୍ଷିଆଗରେ ଥିବା ଜିନିଷକୁ ଦେଖିପାରନ୍ତି ନାହିଁ । ତାର ଦୃଷ୍ଟାନ୍ତ ହେଲେ ଆମର ପଣ୍ଡିତ ନୀଳକଣ୍ଠ । ସେ ଜଗନ୍ନାଥଙ୍କର ଜନ୍ମକୁ ମଣିଷ ସମାଜର ଆଦିମ ଅବସ୍ଥା ଭିତରେ ଖୋଜି ନାହାନ୍ତି, ଖୋଜିଛନ୍ତି ବହୁକାଳ ପରେ ବେଦରେ ମଣିଷ ମନରେ ଜାଗ୍ରତ ନାସଦୀୟ ସୂକ୍ତରେ । ତା ଆଗରୁ ଆମେ ଦେଖିଛେ ।

ସେମିତି ସେ ତାଙ୍କ ରଚିତ 'ଓଡ଼ିଆ ସାହିତ୍ୟର କ୍ରମ ପରିଣାମରେ',— ଆଦିମ ସମାଜର ଯୌନ ବିଚାର, ବାମାଚାର, ପରକୀୟା ଓ ସହଜିୟା ଆଦିକୁ ଦେଖି ସ୍ତମ୍ଭିତ, କ୍ଷୁବ୍‌ଧ ଓ ଅବାକ୍ ହୋଇଯାଇଛନ୍ତି । ଶେଷକୁ ସେହି ପବିତ୍ର ମହାନ୍ ବୈଦିକ ସମାଜରେ ଅସ୍ଥିରତା, ବ୍ୟଭିଚାର କ'ଣ କେବେ ସମ୍ଭବ ? ସେହି ସମାଜ ତ ଶୁଦ୍ଧ ପୂତ ପବିତ୍ର ଐଶ୍ୱରିକ ଭାବରେ ପୂର୍ଣ୍ଣ । କିନ୍ତୁ ବୈଦିକ ସମାଜରେ ସେସବୁର ଯେପରି ବର୍ଣ୍ଣନା ହୋଇଛି, ବର୍ତ୍ତମାନର ଅଶ୍ଳୀଳତା ତା ପାସଙ୍ଗରେ ପଡ଼ିବ ନାହିଁ । ପ୍ରାଚୀନ ଓଡ଼ିଆ ସାହିତ୍ୟ ମଧ୍ୟ ତାର ପ୍ରଭାବରୁ ମୁକ୍ତ ନୁହେଁ । ନାସଦୀୟ ସୂକ୍ତର ବ୍ୟାଖ୍ୟା ଓ ବିସ୍ତାର ଦ୍ୱାରା ତାକୁ ଶେଷରେ ଓଡ଼ିଆ ସାହିତ୍ୟର ଶୂନ୍ୟବାଦ ଓ ମହିମା ଧର୍ମରେ ପହଞ୍ଚାଇ ଦେଇ ତାର ଗୌରବଗାନ କଲାବେଳେ ଅନ୍ୟଦିଗରେ ସେଇ ଯୌନ ବିଚାରର ବୀଭତ୍ସତାକୁ ବଙ୍ଗାଳୀଙ୍କ ମୁଣ୍ଡରେ ସେ ଲଦି ଦେଇଛନ୍ତି । ସେଇଠୁ ତାହା ଓଡ଼ିଆ ସାହିତ୍ୟକୁ ଆସିଛି ବୋଲି ଦର୍ଶାଇଛନ୍ତି । କିନ୍ତୁ ସଭ୍ୟତାର ଅଗ୍ରଗତି

ପଥରେ ତାହା ଯେ ମଣିଷର ଏକ ଅଭିବ୍ୟକ୍ତି, ତାର ବାସ୍ତବ ଅବସ୍ଥାର ଏକ ଅପରିହାର୍ଯ୍ୟ ପରିଣତି, ତାହା ତାଙ୍କ ମନକୁ ସ୍ପର୍ଶ କରିନାହିଁ ।

ନାସଦୀୟ ସୂକ୍ତ ବିଷୟରେ ଟିକିଏ ପରେ ଆଲୋଚନା କରିବା । ତେବେ ବୈଦିକ ସମାଜରେ ବାମାଚାର ନେଇ ଟିକେ ସୂଚାଇଦେବା ଦରକାର ।ସେ ଦିଗରେ ଦେବୀପ୍ରସାଦ ଚଟ୍ଟୋପାଧ୍ୟାୟଙ୍କର ଆଲୋଚନା ଦ୍ରଷ୍ଟବ୍ୟ । ସେ ବୈଦିକ ସାହିତ୍ୟକୁ ଖିନ୍ ଭିନ ଆଲୋଚନା କରି ତାର ଆଚାରବିଚାରକୁ ଗବେଷଣାମୂଳକ ଦୃଷ୍ଟିରେ ଦର୍ଶାଇଛନ୍ତି । ''ମାନବ ସମାଜର କ୍ରମୋନ୍ନତିର କୌଣସି ଏକ ପର୍ଯ୍ୟାୟରେ ସନ୍ତାନ ଉତ୍ପାଦନ ଓ ଧନ ଉତ୍ପାଦନକୁ ମଣିଷ ସ୍ୱତନ୍ତ୍ର ଦୁଇଟି କାର୍ଯ୍ୟ ବୋଲି ଚିହ୍ନି ନଥିଲା । ସେ ଯୁଗ ଯାହା ହେଉନା କାହିଁକି, — ସେଇ ପର୍ଯ୍ୟାୟ ଯାହା ହେଉ ନା କାହିଁକି, ବୈଦିକ ସତ୍ୟକୁ ଯଦି ଆପଣ ଗୁରୁତ୍ୱ ଦେବାକୁ ଚାହାନ୍ତି, ତେବେ ମାନିବାକୁ ପଡ଼ିବ ଯେ ଦୈନିକ ଲୋକମାନେ ଏକ କାଳରେ କ୍ରମୋନ୍ନତିର ଏଇପରି ଏକ ପର୍ଯ୍ୟାୟରେ ପହଞ୍ଚିଥିଲା । ତାର ଭୂରିଭୂରି ସ୍ମାରକୀ ରହିଛି ବୈଦିକ ସାହିତ୍ୟରେ । ତା ଯଦି ନ ମାନନ୍ତି, ତେବେ ଆପଣଙ୍କୁ କହିବାକୁ ପଡ଼ିବ ଯେ ମୈଥୁନର ସେଇ ପ୍ରଚଣ୍ଡ ଉତ୍ସାହ ବୈଦିକ ଋଷିମାନଙ୍କ କ୍ଷେତ୍ରରେ ଅତି କଦର୍ଯ୍ୟ କାମ ବିଚାରର ପରିଚୟ । ଏଥିରେ ଆମେ ଆପଣଙ୍କୁ ସମର୍ଥନ କରି ନ ପାରୁ । କାରଣ, ଆମେ ଦେଖିଛେ ଯେ ବୈଦିକ ରଚନାରେ ଯେଉଁ ବାମାଚାର କଥା ରହିଛି, ସେଠି ରସରସିଆ ଅଶ୍ଳୀଳତା ଉପଭୋଗର କୌଣସି ଲକ୍ଷଣ ନାହିଁ । ବରଂ ସେଇ ବାମାଚାର ସେମାନଙ୍କ ପକ୍ଷରେ କେତେ ଗୁରୁତ୍ୱପୂର୍ଣ୍ଣ ଓ ଲକ୍ଷ୍ୟ ସାଧନମୂଳକ, ତାର ପରିଚୟ ସେମାନେ ଦେଇଛନ୍ତି, ତାକୁ ନାକ ଅଗ ସଙ୍ଗରେ ସମଗାନ ସଙ୍ଗରେ ତୁଳନା କରି । ସମାଗାନ ନେଇ ଆମେ ଯେତେ ହାଲୁକା ଭାବେ ବିଚାର କରୁନା କାହିଁକି, ସେମାନଙ୍କ ପକ୍ଷରେ ସେସବୁ ଥିଲା ଜୀବନର ସର୍ବସ୍ୱ ।'' (୧)

ସେଇସବୁ ଆଲୋଚନା ଏଠାରେ ସମ୍ଭବ ନୁହେଁ । ତେବେ ଛନ୍ଦୋଗ୍ୟୋପନିଷଦର ଗୋଟିଏ ସ୍ତୋତ୍ରରେ ତାକୁ ପ୍ରକାଶ କରାଯାଇପାରେ । ''ମିଥୁନାନ୍ମିଥୁନାଂ ପ୍ରଜାୟତେ ସର୍ବାମାୟୁରେଚ ଯୋରା ଜୀବତି ମହାନ୍ ପର୍ଯ୍ୟାୟାଃ ପଶୁଭି ର୍ଭବତି, ମହାନ୍ କୀର୍ତ୍ତ୍ୟା ନ କାଞ୍ଚନ ପରିହରେତ୍ ତଦ୍ ବ୍ରତ (୨, ୧୩, ୨) । ଅର୍ଥାତ୍ ମିଥୁନରୁ କେବଳ ସନ୍ତାନ ନୁହେଁ, ପୁଣ୍ୟ ଜୀବନ ମିଳେ, ପଶୁ ମିଳେ, ମହାନ୍ କୀର୍ତ୍ତି ମିଳେ ।ତେଣୁ କୌଣସି ସ୍ତ୍ରୀ ଲୋକକୁ ପରିହାର କରିବ ନାହିଁ, ତାହାହିଁ ବ୍ରତ । ଏହା ହେଲା ମିଥୁନ ସମ୍ପର୍କରେ ବୈଦିକ ଲେକଙ୍କର ଧାରଣା । ଏହି ଧାରଣାଟା ଆମ ଯୁଗର ଲୋକଙ୍କ ଭଳି ନୁହେଁ । ତାହା କେବଳ ସନ୍ତାନ ଉତ୍ପାଦନର ଉପାୟ ନୁହେଁ, ଧନ ଉତ୍ପାଦନର ଉପାୟ ।ଯାହାକି ବର୍ତ୍ତମାନ ଲୋକଙ୍କର କଳ୍ପନାତୀତ । ଉପନିଷଦ ଯୁଗର ସମାଜ ହେଲା ପଶୁ ପାଳନ ସମାଜ । ପଶୁବୃଦ୍ଧିର ଅର୍ଥ ଧନର ବୃଦ୍ଧି ।

(୧) 'ଲୋକାୟତ', ଦେବୀପ୍ରସାଦ ଚଟ୍ଟୋପାଧ୍ୟୟ, ପୃ-୧୧୪

ବୈଦିକ ଋଷିଙ୍କ କ୍ଷେତ୍ରରେ ଅଶ୍ଳୀଳତାର ପ୍ରଶ୍ନ ନାହିଁ । ଜୀବନ ଧାରଣ ଲାଗି ତାହା ଏକ ଆବଶ୍ୟକତା । ସେମାନେ ଅଶ୍ଳୀଳ ସାହିତ୍ୟ ପ୍ରକାଶ କରି ନାହାନ୍ତି କି ଲାମ୍ପଟ୍ୟର ବର୍ଣ୍ଣନା କରିନାହାନ୍ତି । ତାଙ୍କର ଜ୍ଞାନ ଅନୁସାରେ ଯାହା ଲକ୍ଷ୍ୟ ସାଧନ ମନେ କରିଛନ୍ତି, ତାହାହିଁ ଲେଖି ଯାଇଛନ୍ତି । ତାଙ୍କ ଧାରଣାରେ ଯଜ୍ଞ ସହ ମୈଥୁନ ସମାନ , ସାମଗାନ ସହ ସମାନ, ଏକମାତ୍ର ବ୍ରତ ସମାନ । ତାଙ୍କର ସେଇ ଧାରଣା ନିର୍ଭର କରିଛି କେବଳ ସନ୍ତାନ ପାଇବା ପାଇଁ ନୁହେଁ । ସବୁକିଛି ଲାଭ କରିବା ଉଦ୍ଦେଶ୍ୟରେ ।

ଆକ୍ଷି ଆଗରେ ଥାଇ ପ୍ରକୃତ ଜିନିଷକୁ ଦେଖି ନ ପାରିବା ଏକ ପ୍ରକାର ଅନ୍ଧତ୍ୱ । ସେପରି ଅନ୍ଧତ୍ୱ ଜଗନ୍ନାଥଙ୍କ ଆଦର୍ଶକୁ ଦେଖିବାରେ ପ୍ରକାଶ ପାଏ । ଯେହେତୁ ତାଙ୍କ ପ୍ରତି ଯୁଗ ଯୁଗ ଧରି ଚାଲିଥିବା ଅନ୍ୟାୟ, ଅବିଚାର ଆଉ ଆକ୍ରୋଶର ଅବସାନ ନାହିଁ । ତାହାର ଅବସାନ ବିନା ଭକ୍ତଙ୍କ ପକ୍ଷରେ ଯେପରି ଜଗନ୍ନାଥଙ୍କର ପ୍ରକୃତ ମହତ୍ତ୍ୱ ଓ ତାତ୍ପର୍ଯ୍ୟର ଉପଲବ୍ଧି ନାହିଁ, ସେହିପରି ଜଗତ୍‌ର ନାଥ ହେବାଲାଗି ଜଗନ୍ନାଥଙ୍କ ପକ୍ଷରେ ପ୍ରଯୋଜନୀୟ ଶକ୍ତି, ପ୍ରକୃତି ଓ ପ୍ରେରଣା ଆହରଣର ଆଉ ବିକଳ୍ପ ପନ୍ଥା ନାହିଁ । ଲୋକଙ୍କର ପାଳକ, ରକ୍ଷକ ଓ ଚାଳକ ହେବା ଦ୍ୱାରାହିଁ କେବଳ ଜଣେ ନିଜର ଜଗତର ନାଥର ନାମ ସାର୍ଥକ କରିପାରେ । ସିଏହିଁ ଚାଳକ ହୋଇପାରେ ଯିଏ ନିଜେ ସଚଳ ଓ ଜନ୍ମଦିନୁ ଚାଲିବାରେ ଲାଗିଛି । ତାର ଅତୀତ ଯେତେ ଅସ୍ପଷ୍ଟ ହେଲେ ବି ମାନବଜାତିର ସମତା ଭିତରୁ ଉଦ୍ଭବ । ତାର ବର୍ତ୍ତମାନ ଯେତେ ଅମାର୍ଜିତ ହେଲେ ବି ଜଗତରେ ସମସ୍ତଙ୍କୁ ସେଇ ସମାନ ଭବିଷ୍ୟତର ସନ୍ଧାନ ଦିଏ । ତାଙ୍କୁ ଯେତେ ଅଲୌକିକ ଗୁଣରେ ଭୂଷିତ କଲେ ବି ତାଙ୍କ ଦୈନନ୍ଦିନ ଜୀବନଯାତ୍ରା ମାନବ ଜୀବନର ଅନୁରୂପ—ଅନ୍ୟ କଥାରେ ଯିଏ ଜଗତର ଜୀବନରୁ ଅବିଚ୍ଛିନ୍ନ । କେବଳ ଜଗନ୍ନାଥଙ୍କୁ ଛାଡିଦେଲେ ଅନ୍ୟ କୌଣସି ଦେବ, ଦେବୀ , ସ୍ୱୟଂ ଭଗବାନ ବି ଏହିପରି ଶକ୍ତି ଓ ଯୋଗ୍ୟତାର ଅଧିକାରୀ ନୁହନ୍ତି । ଅନ୍ୟ ସମସ୍ତଙ୍କର 'ବର୍ତ୍ତମାନ' ଆଦର୍ଶଶୂନ୍ୟ,— ଭବିଷ୍ୟତ ନିର୍ଦ୍ଦେଶହୀନ ଓ ଜୀବନର ଗତି ଜନ୍ମରୁ ଆବଦ୍ଧ । ତେଣୁ କାଳର ଗତିରେ କେତେ ଲିଭିଗଲେଣି, କେତେ ଲିଭିବାରେ ଲାଗିଛନ୍ତି ଏବଂ ଲିଭିଯିବାକୁ ବାଧ୍ୟ । କେବଳ ପ୍ରଜ୍ଜ୍ୱଳିତ ହୋଇ ଉଠିବ ଜଗନ୍ନାଥଙ୍କର ସେଇ ଚିର ସମୁଜ୍ଜ୍ୱଳ ସାମ୍ୟର-ଶିଖା । ସମସ୍ତେ ନିର୍ବାଣପ୍ରାପ୍ତ ହେଲାବେଳେ ଏକମାତ୍ର ଅନିର୍ବାଣ ହେଉଛି ଜଗନ୍ନାଥ-ଭାବ, ମାନବୀୟ ଆଦର୍ଶର ଅମର ଆକାଂକ୍ଷା ।

ଅଥଚ ଜଗନ୍ନାଥ-ଭାବର ସେଇ ଅନିର୍ବାଣ ଆଦର୍ଶକୁ ଆମେଯେ ଦଖିବାରେ ଅସମର୍ଥ, ତାର ଏକମାତ୍ର କାରଣ ଉପରୋକ୍ତ ଆଇନଗତ ଅନ୍ଧତ୍ୱ । ଏଥିପୂର୍ବରୁ ବୈଦିକ ସମାଜରେ ବାମାଚାରର ଦୃଷ୍ଟାନ୍ତ ଦ୍ୱାରା ତାହା ଦର୍ଶାଇ ଦିଆଯାଇଛି । ଆଧୁନିକ ଗଣିକାଳୟର ପ୍ରଚକ୍ଷୁରେ ତାକୁ ଦେଖୁଥିଲା ଯାଏ ଯେପରି ଆଦିମ ଜୀବନର ପ୍ରକୃତ ତାତ୍ପର୍ଯ୍ୟ ଧରିହେବ ନାହିଁ , ସେହିପରି ବର୍ତ୍ତମାନ ଶ୍ରେଣୀବିଭକ୍ତ ସମାଜର ଅବଦାନ, — ବ୍ୟକ୍ତିଗତ ସ୍ୱାର୍ଥ କାମନା ଓ ସମ୍ପତ୍ତିର

ଦୃଷ୍ଟିକାଣରୁ ସବୁ ବିଷୟ ବିଚାର କରୁଥିଲା ପର୍ଯ୍ୟନ୍ତ ଜଗନ୍ନାଥଙ୍କ ଭାବର ପ୍ରକୃତ ତାତ୍ପର୍ଯ୍ୟ ଉଦ୍‌ଘାଟନ କସ୍ମିନ୍‌କାଳେ ସମ୍ଭବ ନୁହେଁ । ଏ ପର୍ଯ୍ୟନ୍ତ ସେଇ ବ୍ୟକ୍ତିଗତ ଦୃଷ୍ଟିକୋଣରୁ ସବୁ ହୋଇଆସିଛି ।

**ଅତୀତର ସଂକେତରେ ଭବିଷ୍ୟତର ସନ୍ଧାନ**

ଶ୍ରେଣୀବିଭକ୍ତ ସମାଜରେ ଭୌତିକ ଅବସ୍ଥାଠାରୁ ମାନସିକ ଭାବନା ପର୍ଯ୍ୟନ୍ତ ପ୍ରତ୍ୟେକ କ୍ଷେତ୍ରରେ ବ୍ୟକ୍ତିଗତ ସମ୍ପତ୍ତିର ମୋହର ରାଜତ୍ୱ । ତାହାହିଁ ସବୁରି କାମ୍ୟ, ସବୁ ସାଧନାର ସିଦ୍ଧି, ସବୁ ପୁରୁଷାର୍ଥର ଚରମ ପରାକାଷ୍ଠା । ସବୁ ଦୃଷ୍ଟି କେବଳ ସେଇ ବ୍ୟକ୍ତିଗତ ସମ୍ପତ୍ତି ଉପରେ ନିବଦ୍ଧ ନୁହେଁ, ତଦ୍ୱାରା ମଧ୍ୟ ନିୟନ୍ତ୍ରିତ । ତାହାର ମୋହ ଏତେ ଟାଣ ଯେ, ନାକ ଅଗରୁ ଆଖିକୁ ଟାଣି ଧରେ । ମଣିଷ ଆଖିରେ ଦେଖୁଥିବା, ମୁହଁରେ କହୁଥିବା କଥାର ମର୍ମ ବୁଝେନାହିଁ । ସମସ୍ତେ ଜଗନ୍ନାଥଙ୍କ ସାମ୍ୟ ମୈତ୍ରୀ ଧର୍ମର ଗୌରବ ଗାନରେ ଶତମୁଖ, କିନ୍ତୁ ତାହା କଅଣ ? ତାହା କାହିଁକି, ଏପରିକି ଖୋଦ୍ ଭଗବାନ୍‌ଙ୍କ କ୍ଷେତ୍ରରେ ମଧ୍ୟ ପରିଦୃଷ୍ଟ ନୁହେଁ ? ହିନ୍ଦୁମାନଙ୍କର ଆଦର୍ଶ ରାମରାଜ୍ୟରେ ତାର ଅଭାବ କାହିଁକି ? କ'ଣ ସେଇ ମୈତ୍ରୀର ଭିତ୍ତି ? ବିନା ସାମ୍ୟରେ କ'ଣ ପ୍ରକୃତ ମୈତ୍ରୀ ସମ୍ଭବ ? ଏଇ ସରଳ, ପ୍ରଶ୍ନର ଉତ୍ତର କ'ଣ ମଣିଷ କେବେ ଖୋଜିଛି? ଯାକୁ ନ ଖୋଜିବାଯାଏ ସେ ଜଗନ୍ନାଥଙ୍କ ପ୍ରକୃତ ସନ୍ଧାନ ପାଇବ କିପରି ?

ମୈତ୍ରୀ କେବଳ ସମାନସ୍କନ୍ଧ ଲୋକଙ୍କ ଭିତରେ ସମ୍ଭବ । ଖାଦ୍ୟ ଓ ଖାଦକ ଭିତରେ ନୁହେଁ । ସାମ୍ୟ ବିନା ମୈତ୍ରୀ ହେଉଛି ଅସାମ୍ୟର ଆବରଣ । ଏହା ଧନୀ ଦରିଦ୍ର, ଖାଦ୍ୟ ଖାଦକ ଏମାନଙ୍କର ଅସମତାକୁ ଦୂର କରେ ନାହିଁ, ତାକୁ ଢାଙ୍କିଦିଏ । ତା'ଠାରୁ ଦୃଷ୍ଟି ଆଡେଇ ନେବା ଦ୍ୱାରା ତାଙ୍କୁ ସୁରକ୍ଷିତ କରେ । ବର୍ତ୍ତମାନ ଜଗନ୍ନାଥଙ୍କର ମୈତ୍ରୀ ହେଉଛି ସେଇ ସାମାଜିକ ଅସାମ୍ୟର ଢାଙ୍କୁଣୀ । ତାହା ଧନୀ ଦରିଦ୍ର , ଶୋଷକ ଶୋଷିତ, ଖାଦ୍ୟ ଖାଦକ ଭିତରେ ମୈତ୍ରୀ ର ପ୍ରଚାର କରେ । ତାହା କେବଳ ସେଇ ଆଦିମ ପ୍ରାକ୍-ଶ୍ରେଣୀ ସମାଜର ସ୍ମାରକ ରୂପେ ପ୍ରଚଳିତ । ଶ୍ରେଣୀବିଭକ୍ତ ସମାଜରେ ସେଇ ମୈତ୍ରୀ ଠିକ୍ ତାର ବିପରୀତରେ ପରିଣତ ହୋଇଛି । ଯେଉଁ ମୈତ୍ରୀ ଦିନେ ସମାଜରେ ସାମ୍ୟର ସଙ୍କେତ, ସ୍ୱାର୍ଥହୀନ ପ୍ରୀତି-ବନ୍ଧନର ଡୋରି ହୋଇଥିଲା , ତାହା ଏବେ ସକଳ ପ୍ରବଞ୍ଚନାର ଆଧେୟ, ଚରମ ସ୍ୱାର୍ଥପରତାର ପ୍ରଲେପ ରୂପେ ବ୍ୟବହୃତ । ତାହାହିଁ ସାମ୍ୟହୀନ ମୈତ୍ରୀର ଅପରିହାର୍ଯ୍ୟ ପରିଣତି । ଜଗନ୍ନାଥ ସେଇ ଶ୍ରେଣୀବିଭକ୍ତ ସମାଜରେ ତାରି ପ୍ରତିମୂର୍ତ୍ତି ରୂପେ ଏବେ ବିରାଜିତ । ଜଗନ୍ନାଥଙ୍କ ପୂଜା ହେଉଛି ପରୋକ୍ଷରେ, ଅସଲରେ ସେଇ ସାମ୍ୟବିହୀନ ବିକୃତ ମତଲବ୍‌ମୂଳକ ମୈତ୍ରୀର ଆରାଧନା ।

ଜଗନ୍ନାଥ ଙ୍କ ଆବିର୍ଭାବ ଏପରି ଏକ ସମାଜରେ, ମାନବ ବିକାଶର ଏପରି ଏକ କାଳରେ ଘଟିଛି, ଯେଉଁଠି କି ମଣିଷ ମଣିଷ ଭିତରେ କୌଣସି ଫାଙ୍କ ସୃଷ୍ଟି

ହୋଇନାହିଁ, କୌଣସି ପାର୍ଥକ୍ୟର ଚିହ୍ନ ନାହିଁ, ଯେଉଁଠି ଜାତି ଧର୍ମର ଭେଦ ନାହିଁ, ସମ୍ପଦ ଦିଗରୁ କୌଣସି ବିଭେଦ ନାହିଁ, ଏବଂ କ୍ଷମତା ଦୃଷ୍ଟିରୁ କୌଣସି ପ୍ରଭେଦ ନାହିଁ । ଏପରି ଏକ ଯୁଗରେ ଜଗନ୍ନାଥଙ୍କ ଜନ୍ମ, ଯେତେବେଳେ ବ୍ୟକ୍ତିଗତ ସମ୍ପତ୍ତି ନାହିଁ କି ରାଷ୍ଟ୍ର ନାହିଁ । ସେ ରାଷ୍ଟ୍ର ଓ ବ୍ୟକ୍ତିଗତ ସମ୍ପତ୍ତି ମାନବ ସମାଜର ସ୍ଥିତି ଲାଗି ଯେ ଅପରିହାର୍ଯ୍ୟ ନୁହେଁ, ତାହା, ଏହାର ପ୍ରମାଣ । ବ୍ୟକ୍ତିଗତ ସମ୍ପତ୍ତି ଓ ରାଷ୍ଟ ବିନା ସମାଜରେ ମଣିଷ ଜାତି ବହୁ ଯୁଗ ଧରି ରହି ଆସିଛି ଓ ଭବିଷ୍ୟତରେ ମଧ୍ୟ ରହିବ । ଏଥିରେ କୌଣସି ଶାଶ୍ୱତ ବା ପବିତ୍ରତାର ପ୍ରଶ୍ନ ନାହିଁ ।

ଏବେବି କେତେଠି ଅତି ଆଦିମ ଅବସ୍ଥାରେ ରହିଥିବା ଲୋକେ ବ୍ୟକ୍ତିଗତ ସମ୍ପତ୍ତିର ଊର୍ଦ୍ଧ୍ୱରେ, ତାହାର ଆବଶ୍ୟକତା ଅନୁଭବ କରନ୍ତି ନାହିଁ । ଅସଭ୍ୟ ଆଦିମ ଅଚେତନ ଅବସ୍ଥାରେ ଯଦି ବ୍ୟକ୍ତିଗତ ସମ୍ପତ୍ତି ବିନା ମଣିଷ ଚାଲିପାରେ, ତେବେ ଭବିଷ୍ୟତରେ ସଭ୍ୟତାର ଉନ୍ନତ ସ୍ତରରେ ସଚେତନଭାବେ ବ୍ୟକ୍ତିଗତ ସମ୍ପତ୍ତି ବିନା ମଣିଷ ପକ୍ଷରେ ଚାଲିବା ନିଶ୍ଚୟ ସମ୍ଭବ ।

ମଣିଷ ବିଭିନ୍ନ ପର୍ଯ୍ୟାୟ ଦେଇ ଆଗେଇ ଚାଲିଛି ଭବିଷ୍ୟତ ଦିଗରେ । ଅଗ୍ରଗତିର ଏକମାତ୍ର ନିୟମ ହେଲା ସମସ୍ତ ବାଧା, ଅବରୋଧକୁ ଦୂର କରିବା । ଯେଉଁ ନିୟମ ଅନୁସାରେ ମଣିଷ ଅତୀତର ସାମ୍ୟ ସମାଜକୁ ଧ୍ୱଂସ କରି ଅଗ୍ରସର ହେଉଛି, ସେହି ନିୟମ ତାଡନାରେ ତାକୁ ଅଗ୍ରସର ହେବାକୁ ହେଲେ, ତାକୁ ଏବର ଅସାମ୍ୟ ଓ ବ୍ୟକ୍ତିଗତ ସମ୍ପତ୍ତି ଉପରେ ପ୍ରତିଷ୍ଠିତ ସମାଜକୁ ଦୂର କରିବାକୁହିଁ ହେବ । ଜଗନ୍ନଥଙ୍କ ସେଇ ସାମ୍ୟ ମୈତ୍ରୀର ତାତ୍ପର୍ଯ୍ୟକୁ ଉଦ୍‌ଘାଟନ ଓ ପ୍ରକାଶ କରିବା ଅର୍ଥ ବର୍ତ୍ତମାନ ଅସାମ୍ୟ ସମାଜର ଅସାରତା, ତାର ବ୍ୟକ୍ତିଗତ ସମ୍ପତ୍ତିର ଅନାବଶ୍ୟକତା ଏବଂ ସେଥିରୁ ଜାତ କଳହ-ବିବାଦ ଓ ସଙ୍ଘର୍ଷର ଅନିର୍ବାର୍ଯ୍ୟତାକୁ ଦର୍ଶାଇବାକୁ ହେବ । ମାନବଜାତିର ବିକାଶ ଲାଗି, ଏ ସବୁର ବିଲୋପକୁ ସ୍ୱୀକାର କରିବାକୁ ପଡିବ । ତାହା କ'ଣ ବ୍ୟକ୍ତିଗତ ସମ୍ପତ୍ତି ଉପରେ ପ୍ରତିଷ୍ଠିତ ଏ ସମାଜ ମୂଳରେ କୁଠାରାଘାତ ନୁହେଁ ?

ଜଗନ୍ନାଥଙ୍କ ପ୍ରକୃତ ମର୍ମ୍ମର ଉଦ୍‌ଘାଟନ ହେଉଛି, ହିନ୍ଦୁ ଶାସ୍ତ୍ରୀୟ ଭାଷାରେ ତାଙ୍କପ୍ରତି ଆରୋପିତ ଧର୍ମ ଓ ପରମବ୍ରହ୍ମର ଭାବକୁ ଦୂର କରିବା ।

ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ମଣିଷଜାତି ମାତ୍ରେ ସମସ୍ତେ ସେଇ ରାସ୍ତା ଦେଇ ଅଗ୍ରସର ହେଉଛନ୍ତି । ଅବସ୍ଥା ଦୃଷ୍ଟି ରୁ ଯେତେ ତାରତମ୍ୟ ଥିଲେ ବି ଆଦିମ ଅବସ୍ଥାରୁ ବିଭିନ୍ନ ପର୍ଯ୍ୟାୟ ଦେଇ ସମସ୍ତେ ସଭ୍ୟତା ଦିଗକୁ ଗତି କରୁଛନ୍ତି । ଇତିହାସର ବସ୍ତୁବାଦୀ ବ୍ୟାଖ୍ୟାଦ୍ୱାରା ମାର୍କସ୍ ସେହି ପଥକୁ ଆବିଷ୍କାର କଲାବେଳେ ମର୍ଗାନ୍ ବର୍ବରତା ସହିତ ସଭ୍ୟତାକୁ ତୁଳନା କରି ଜୀବନର ବାସ୍ତବତା ଦ୍ୱାରା ତାକୁ ଦର୍ଶାଇଛନ୍ତି । ମାର୍କସ୍‌ଙ୍କ ତାତ୍ତ୍ୱିକ ଅଧ୍ୟୟନ , ମର୍ଗାନଙ୍କ ଆଦିମ ଜୀବନ-ପଦ୍ଧତିର ଅନୁଶୀଳନ, ଭିନ୍ନ ଭିନ୍ନ ଦିଗରୁ ଆସି ଏକାଠି ମିଳିତ ହୋଇଛନ୍ତି । ତେଣୁ ମର୍ଗାନ

ମାନବଜାତିର ଯେଉଁ ଭବିଷ୍ୟତ୍ ସ୍ୱପ୍ନ ଦେଖିଛନ୍ତି, ସେ ସମାଜରେ ବ୍ୟକ୍ତିଗତ ସମ୍ପତ୍ତିର ସ୍ଥାନ ନାହିଁ । ସମସ୍ତେ ସମାନ । ମଣିଷ ମଣିଷ ମଧ୍ୟରେ ଭାଇ ଭାଇ ସମ୍ପର୍କ । ନାହିଁ ସେଠି ଶୋଷଣ ବା ଶାସନର ଚିହ୍ନ, ନାହିଁ କୌଣସି ଭେଦାଭେଦର ଦାଗ । ସେ କହିଛନ୍ତି, '' ମନେହେବ ସତେ ଯେପରି ସେଇ ଆଦିମ ସମାଜ ପୁଣି ଥରେ ଫେରି ଆସିଛି । ତା ସେଇ ଆଦିମ ଅନୁନ୍ନତ ପର୍ଯ୍ୟାୟରେ ନୁହେଁ , ଫେରିଆସିଛି ନୂତନ ଉନ୍ନତ ପର୍ଯ୍ୟାୟରେ — ଦାରିଦ୍ର୍ୟ ପ୍ରକୋରପରେ ନୁହେଁ , ପ୍ରାଚୁର୍ଯ୍ୟର ଐଶ୍ୱର୍ଯ୍ୟରେ''— ଅତୀତ ଆଲୋଚନାର ଅପରିହାର୍ଯ୍ୟ ସିଦ୍ଧାନ୍ତ ।

ମଣିଷ ସମାଜର ବିକାଶର ଧାରାକୁ ଅନୁସନ୍ଧାନ କରି ମାର୍କସ୍ ଓ ମର୍ଗାନ ସାମାଜିକ ବିବର୍ତ୍ତନର ଯେଉଁ ରହସ୍ୟ ଉଦ୍‌ଘାଟନ କରନ୍ତି, ତାହା ପ୍ରତିଫଳିତ ହୁଏ ସେହି ଜଗନ୍ନାଥ-ଭାବର ମର୍ମ୍ମ ଓ ମହତ୍ତ୍ୱ ମଧ୍ୟରେ — ତାଙ୍କର ଅତୀତର ମହାନ୍ ତାତ୍ପର୍ଯ୍ୟରେ ଏବଂ ତାହା ଇଙ୍ଗିତ କରେ ପୁଣି ସେହି ଅନିର୍ବାର୍ଯ୍ୟ ଭବିଷ୍ୟତ୍‌କୁ ।



# ତୃତୀୟ ପର୍ବ

**ଆଦ୍ୟ ବୈଦିକ ସମାଜର ବୈଶିଷ୍ଟ୍ୟ —**

ଜଗନ୍ନାଥଙ୍କ ଆଲୋଚନା କରିବାକୁ ଯାଇ ପଣ୍ଡିତ ନୀଳକଣ୍ଠ ବେଦରେ ପହଞ୍ଚିଛନ୍ତି । କିନ୍ତୁ ଆଉ ଏକ ମତ, ଶବର ସଭ୍ୟତାକୁ ଜଗନ୍ନାଥଙ୍କ ଆବିର୍ଭାବର ଆଧାର କରିଛି । ବେଦ ହେଉଛି ଆର୍ଯ୍ୟ-ଉପଜାତି ବା ଏରିୟାନ ଟ୍ରାଇବ୍‌ର ଆଦ୍ୟ ଜୀବନର କାହାଣୀ । କିନ୍ତୁ ଭାରତରେ ଶବର ସଭ୍ୟତା ବା ସେହି ଆଦିମଜାତି ସମାଜ, ଆର୍ଯ୍ୟମାନଙ୍କ ପ୍ରବେଶର ବହୁ ପୂର୍ବରୁ ରହିଆସିଛି । ଜଗନ୍ନାଥଙ୍କୁ ସେଇ ସଭ୍ୟତାର ନିଦର୍ଶନ ରୂପେ ଦେଖିଲେ ବୁଝିବାକୁ ହେବ, ବେଦ ଜଗନ୍ନାଥ- ଭାବର ପରବର୍ତ୍ତୀ । ବେଦର ରଚନା ଅନ୍ୟ ଏକ କାଳରେ ଓ ଅନ୍ୟ ଏକ ସ୍ଥାନରେ (ଏବର ପଞ୍ଜାବ), । ଦୂରତ୍ୱ ଦିଗରୁ ଦୁଇ ହଜାର ମାଇଲ ଦୂରରେ, କାଳ ଦୃଷ୍ଟିରୁ ଜଗନ୍ନାଥ ଭାବର ଆବିର୍ଭାବ ବେଦର ରଚନାର ପ୍ରାୟ ଦୁଇ ହଜାର ବର୍ଷ ପୂର୍ବରୁ । ସେ ଦିଗରୁ ଦୁହିଁଙ୍କ ମଧ୍ୟରେ କୌଣସି ସାମଞ୍ଜସ୍ୟ ନାହିଁ । ଯେଉଁମାନେ ଜଗନ୍ନାଥଙ୍କ ଜନ୍ମ ଆଦିମ ସମାଜରେ ଶବର ଘରେ ବୋଲି ଗ୍ରହଣ କରନ୍ତି, ସେମାନେ ମଧ୍ୟ ପ୍ରକୃତରେ ଜଗନ୍ନାଥଙ୍କୁ ଆବିଷ୍କାର କରନ୍ତି ନାହିଁ । ସେହି ସମାଜର ଆଲୋଚନା ଓ ତାର ତାତ୍ପର୍ଯ୍ୟର ବିଚାର ବିନା ଜଗନ୍ନାଥଙ୍କର ପ୍ରକୃତ ମହତ୍ତ୍ୱ — ତାଙ୍କର ଆଦ୍ୟ ଉତ୍ସ ଆଉ ଅନ୍ତିମ ଲକ୍ଷ୍ୟ ସଦା ଲୁକ୍‌କାୟିତ ରହେ ।

ସେ କାଳ, ସେଇ ଆଦିମ ସମାଜ ସେମିତି ଅକ୍ଷତ ନିର୍ମଳ ରୂପରେ କେଉଁଠି ନାହିଁ । ତାର ସ୍ମାରକୀ କିନ୍ତୁ କେତେଠି ଆଦିବାସୀଙ୍କ ଭିତରେ ରହିଛି । ତାହା ସାଙ୍ଗକୁ ବୈଦିକ ସାହିତ୍ୟରେ ସେହି ପ୍ରାକ୍-ବୈଦିକ ସମାଜର ବହୁ ସୂଚନା ମିଳେ । ତାହା ଦର୍ଶାଇଦିଏ ଯେ ସେତେବେଳେ କୌଣସି ଧର୍ମ ବିଶ୍ୱାସ ନାହିଁ । ଧର୍ମର ଧାରଣା, ସମାଜ ବିକାଶର ଗୋଟାଏ ଅବସ୍ଥାରେ ଆସିଛି । ତାହା ଆଗରୁ ବହୁକାଳ ଧରି

ନଥିଲା । କାରଣ ସେପର୍ଯ୍ୟନ୍ତ ପ୍ରକୃତି ସହିତ ମଣିଷର ନାଭି-ନାଡ଼ୀ ଛିନ୍ନ ହୋଇନାହିଁ । ନିଜ ଗୋଡ଼ରେ ଛିଡ଼ା ହେବାକୁ ସେ ଶିଖିନାହିଁ । ସେଇ ଅନୁସାରେ ତାର ନିଜର ଖାସ୍ ଧାରଣାର ଉଦ୍ରେକ ଘଟିନାହିଁ । ପ୍ରକୃତିର ସ୍ୱଚ୍ଛ ନିର୍ମଳତା ତା ଜୀବନର ଆଧାର ହେଲା ଭଳି ପ୍ରକୃତିର ନିର୍ମଳ, ସରଳ ନୀତି ହୋଇଛି ତା ଜୀବନର ନୀତିବୋଧ । ଶିଶୁର ଜୀବନ ଭଳି ଆଦିମ ମାନବ ଜୀବନ ସରଳ ଓ ଅନାବିଳ ।

ସମାଜର ସେଇ ଆଦିମ ପର୍ଯ୍ୟାୟରେ ମଣିଷ ପ୍ରକୃତିକୁ ଓ ସମାଜକୁ ଯେମିତି ଦେଖୁଥିଲା, ସେମିତି ବୁଝୁଥିଲା । ତା ଥିଲା ଅତି ସିଧା ଓ ସରଳ । ତାଙ୍କ ମଧ୍ୟରେ କୌଣସି ମାଧ୍ୟମ ନ ଥିଲା । ତାର ଆଉ ଦ୍ୱିତୀୟ ଚିନ୍ତା ନ ଥିଲା । ପ୍ରକୃତି ଓ ସମାଜ, ଦୁହିଁଙ୍କ କାମ ଓ ଆଚରଣ ମଧ୍ୟରେ ସେ କିଛି ଫରଖ ଦେଖୁ ନଥିଲା । ଦୁହେଁ ଏକାଭଳି ଚାଲିଥିଲେ । ସେତେବେଳେ ତାହା ଥିଲା 'ଋତ' । ସବୁକିଛି ଋତର ପ୍ରତିଫଳନ । ନୈତିକ ଚେତନା ଦିଗରୁ ଋତର ମାନେ ହେଲା ସତ୍ୟ, ନ୍ୟାୟ, ସାମ୍ୟ, ମୈତ୍ରୀ ଓ ଯଜ୍ଞ ଆଦି — ପ୍ରକୃତିର ଅମୋଘ ନିୟମ, — ନୀତିବୋଧର ଅଲଙ୍ଘ୍ୟ ନିୟମ, ଅର୍ଥାତ୍ ନିୟମାନୁବର୍ତ୍ତିତା ।

ବିଶ୍ୱର ପ୍ରତ୍ୟେକେ ତାଙ୍କ ନିୟମ ଅନୁସାରେ ଚାଳିତ । ତାହାହିଁ ହେଲା ଋତ । ଋତ ହେଉଛି ତାଙ୍କର ସେହି ଶକ୍ତି, ଯାହାକି ତାଙ୍କର ଆଚରଣକୁ ନିୟନ୍ତ୍ରିତ କରେ । ତାରି ଯୋଗୁ ସୂର୍ଯ୍ୟ ତାର ନିର୍ଦ୍ଧାରିତ ଗତିପଥରୁ ବିଚ୍ୟୁତ ହୁଏ ନାହିଁ । ସ୍ୱୟଂ ଦେବତାଗଣ ଋତରୁ ଜାତ, ଋତ ସ୍ୱରୂପ । ଅଗ୍ନି ମଧ୍ୟ ଋତ ଜାତ । ଋତର ଜ୍ଞାତା ଓ ସତ୍ୟସ୍ୱରୂପ । ଦେବତାମାନେ କେବଳ ଋତଜାତ ନୁହନ୍ତି, ଋତରେ ଆଚରଣ କରନ୍ତି । ଗାଭୀମାନେ ମଧ୍ୟ ଋତ ଆଚରଣ କରନ୍ତି । ତା ଥିଲା ଜୀବନ ଧାରଣର ଉପାୟ । ଋତରୁ ବିଚ୍ୟୁତ ହେଲେ ଦେବତାମାନେ ବି ଶକ୍ତିହୀନ ହୋଇଥାନ୍ତି, ନିଜର କ୍ଷମତା ହରାନ୍ତି । ଋତ ଦେବତା ବରୁଣଙ୍କ ଦ୍ୱାରା ଦଣ୍ଡିତ ହୁଅନ୍ତି । ପରେ ତା' ଆଲୋଚିତ ହୋଇଛି ।

ଏହି ଋତ ସମାଜରେ ଉପଜାତି(tribe)ର ସମସ୍ତେ ଏକାଠି କାମ କରନ୍ତି । ସମୂହଭାବେ ଉତ୍ପାଦନ କରନ୍ତି, ସମଭାବେ ବଣ୍ଟନ ବା ଭାଗ ଗ୍ରହଣ କରନ୍ତି । ଧନୀ ଗରିବ ନାହିଁ; ଲୋଭ, ଲାଳସା, ସ୍ୱାର୍ଥପରତା ନାହିଁ । ସେ ସାମାଜିକ ଜୀବନର ନିୟମ ହେଲା, ଜଣେ ସମସ୍ତଙ୍କ ପାଇଁ ଏବଂ ସମସ୍ତେ ଜଣକ ପାଇଁ । ସାମ୍ୟ, ଭ୍ରାତୃତ୍ୱ, ମୈତ୍ରୀ ହେଲା ସେଇ ସମାଜର ପ୍ରକୃତି ।

ଆଧୁନିକ ସମାଜର ନୀତିବୋଧ ଓ ସେହି ଆଦିମ ନୀତିବୋଧ, ଏ ଦୁହିଁଙ୍କ ମଧ୍ୟରେ ଆକାଶ ପାତାଳ ପ୍ରଭେଦ । ଏବର ମଣିଷର ଚେତନା ସେଇ ପ୍ରାକୃତିକ ନିୟମଠାରୁ ବହୁ ଦୂରରେ । ମଣିଷର ଚେତନା ଭିତରେ ପ୍ରାକୃତିକ ନିୟମ, ଆଉ ତାର ଜୀବନ- ସଂଗ୍ରାମ ଭିତରେ କର୍ତ୍ତବ୍ୟ ଓ ଦାୟିତ୍ୱର ଧାରଣା, ଏମାନେ ପରସ୍ପର ଠାରୁ ଭିନ୍ନ ଓ ବିଚ୍ଛିନ୍ନ । କାହାର କାହା ସହିତ ସମ୍ପର୍କ ନାହିଁ । ଆଜି, ଜୀବନ - ସଂଗ୍ରାମରେ ଜୟଲାଭ ଲାଗି ସବୁ ନୀତି, ଦାୟିତ୍ୱ, କର୍ତ୍ତବ୍ୟକୁ ବଳି ଦିଆଯାଇପାରେ ।

'ପେଟ ପୋଷ, ନାହିଁ ଦୋଷ', ହେଲା ସର୍ମଶ୍ରେଷ୍ଠ ନୀତି । କିନ୍ତୁ ସେଇ ଋତ ସମାଜ-ଜୀବନର ନୈତିକ ନିୟମ ପ୍ରାକୃତିକ ନିୟମ ଭଳି ସ୍ୱାଭାବିକ ଓ ଅମୋଘ । ମାନବ-ଚେତନାର ଏକ ଅପରିହାର୍ଯ୍ୟ ଅଙ୍ଗ । ସେ ଅବସ୍ଥାରେ ପ୍ରକୃତିର ଚେତନା ଓ ନୈତିକ ନିୟମର ଚେତନା ଏକ ଅଖଣ୍ଡ ଚେତନାର ଅଙ୍ଗୀଭୂତ । ତେଣୁ ଋତ, ମଣିଷ ଓ ପ୍ରକୃତିର ସ୍ୱାଭାବିକ ନିୟମ, ଏକ ବିଶ୍ୱଜନୀନ ନିୟମ । ତାହା ସମସ୍ତ ଆଚରଣକୁ ନିୟନ୍ତ୍ରିତ କରେ ।

ପ୍ରକୃତି ଓ ସମାଜକୁ ଋତ ଚଳାଏ । ଏ ଏକ ଉଦ୍ଭଟ ଧାରଣା ହେଲେ ବି ତାହା ବାସ୍ତବତା ଭିତରୁ ଉଦ୍ଭବ । ସମାଜ ଯେତେବେଳେ ଶିଶୁ ଅବସ୍ଥାରେ, ଶିଶୁଭଳି ଯାହା ଆଖିରେ ଦେଖେ, ଅନୁଭବ କରେ, ତାକୁ ସତବୋଲି ଭାବେ, ସ୍ୱୀକାର କରେ । ତାର ଜ୍ଞାନ, ଇନ୍ଦ୍ରିୟଲବ୍ଧ ଜ୍ଞାନକୁଅସ୍ୱୀକାର କରିବା ଭିତରୁ ଆସେ ନାହିଁ । ତେଣୁ ପ୍ରକୃତି ଓ ସମାଜର ନିୟମରେ କୌଣସି ଅଦୃଶ୍ୟ ଶକ୍ତିର ଆଦେଶ ବା ଆଶୀର୍ବାଦକୁ ସେ ଦେଖେ ନାହିଁ । କୌଣସି ଅଦୃଶ୍ୟ ସତ୍ତାକୁ ମାନେ ନାହିଁ । ଏପରି ଏକ ଚିନ୍ତାର ଧାରା ଋତ-ମାନବ ମନକୁ ସ୍ପର୍ଶ କରିବାର ପ୍ରଶ୍ନ ନାହିଁ ।

ଋତ ସମ୍ବନ୍ଧରେ ବହୁ ଉଲ୍ଲେଖ ଋଗ୍‌ବେଦରେ ରହିଛି । ଲକ୍ଷ୍ୟ କରିବାର କଥା, ଗଣଗୋଷ୍ଠୀ, ସାମ୍ୟ ସମାଜର ପତନ ସହିତ ଋତର ପତନ ଘଟିଛି । ଋତ ଦେବତା ବରୁଣଙ୍କର ଅଧୋଗତି ହୋଇଛି । ସେଥିସହିତ ମୁଣ୍ଡ ଟେକିଛି ଲୋଭ ଓ (ବ୍ୟକ୍ତିଗତ) ସ୍ୱାର୍ଥ । ବରୁଣ, ଯିଏ ଦିନେ " ଅନୃତର ହନ୍ତା, ଋତର ପାଳକ, ଋତର ବର୍ଦ୍ଧକ ଏବଂ ଶ୍ରେଷ୍ଠ ଗୌରବର ଅଧିକାରୀ" ଥିଲେ, ସେ ତାଙ୍କର ମର୍ଯ୍ୟାଦା ହରାଇଛନ୍ତି । ଯାହାଙ୍କ ଯୋଗୁ ଦିନେ "ଗୋଶାଳାଗୁଡ଼ିକ ଘୃତସିକ୍ତ ଓ ବାସସ୍ଥାନ ସବୁ ମଧୁସିକ୍ତ" ହେଉଥିଲା (୧) ଏବଂ "ଜଳଯୁକ୍ତ ବୃଷ୍ଟି ମଣିଷ ଭିରେ ସଞ୍ଚରଣ କରୁଥିଲା" (୨) ସେ ବରୁଣ ଜଣେ ଅତ୍ୟାଚାରୀ ନିଷ୍ଠୁର ପିଆଦାରେ ପରିଣତ ହେଲେ । ବରୁଣଙ୍କର ଗୌରବ ହ୍ରାସ ପାଇବା ସହିତ ତେଣେ ସର୍ବସମ୍ମାନ, ଗୌରବର ଅଧିକାରୀ ହୋଇଛନ୍ତି ଇନ୍ଦ୍ର । ସେ ହେଲେ ନୂତନ ସମାଜର ନେତା ଓ ପଥ ପ୍ରଦର୍ଶକ । ହତ୍ୟା,ଲୁଣ୍ଠନ ଓ ପୁର ଧ୍ୱଂସ ଦ୍ୱାରା ଧନ ଆହରଣ ଓ ବଣ୍ଟନର କର୍ତ୍ତା । ସେତେବେଳେ ଗାଭୀ ଲୋଭରେ ପିତା ଯେପରି ନିଜ ପୁତ୍ରକୁ ବିକ୍ରୟ କରିଛି ଓ ବଧ କରିବାକୁ ଯାଇଛି, (୩)ତେଣେ ଇନ୍ଦ୍ର ମଧ୍ୟ ସେହିପରି ନିଜ ପିତାଙ୍କୁ ହତ୍ୟା କରିଛନ୍ତି । (୪) ଏକ ଦିଗରେ ଅନୃତ୍ୟହନ୍ତା ବରୁଣ ଭୟଙ୍କର କୁତ୍ସିତ ରୂପରେ ପ୍ରକାଶ ପାଇଲାବେଳେ ଏଣେ ଅଶେଷ ଗୁଣ ଗୌରବରେ ଜାଜ୍ୱଲ୍ୟମାନ ହୋଇ ଉଠିଛନ୍ତି ପିତୃହନ୍ତା ଇନ୍ଦ୍ର ।

---

(୧) ଋକବେଦ ୩.୬୨.୧୬ ।
(୨) ଏଜନ ୮. ୨୫. ୭ ।
(୩) ଐତ୍ରେୟ ବ୍ରାହ୍ମଣରେ ଶୁନଃଶେଷ ଉପାଖ୍ୟାନ,
(୪) ଋକ୍‌ବେଦ (୪. ୧୯. ୧୨)

ଏ ସାମାଜିକ ପରିବର୍ତ୍ତନ ଋଗ୍‌ବେଦ ରଚନାର ଦୀର୍ଘକାଳ ମଧ୍ୟରେ ଘଟିଛି । ଋଗ୍‌ବେଦର ଆରମ୍ଭ ଓ ଶେଷ ରଚନାକାଳ ମଧ୍ୟରେ ଏକହଜାରୁ ଊର୍ଦ୍ଧ୍ୱବର୍ଷ ଅତିବାହିତ ହୋଇଥିବ । ତାରି ମଧ୍ୟରେ ଦେଖା ଦେଇଛି ମଣିଷ ମଣିଷ ମଧ୍ୟରେ ପାର୍ଥକ୍ୟ, ଶ୍ରେଣୀ ବିଭାଜନର ଅନ୍ୟାନ୍ୟ ଉପକ୍ରମ । ସମାଜର ସେଇ ଦୁଇ ପର୍ଯ୍ୟାୟର ପାର୍ଥକ୍ୟ ମଧ୍ୟ ଋଗ୍‌ବେଦରେ ପ୍ରକାଶିତ ।

ସେ ଅବସ୍ଥାରେ ସମାଜରେ ପ୍ରଧାନ ଧନସମ୍ପତ୍ତି ଥିଲା ପଶୁ ବା ଗୋରୁଗାଈ । ଶେଷଆଡ଼କୁ ଏଇ ପଶୁ ମଧ୍ୟ ମୁଦ୍ରା ଭାବରେ ପ୍ରଚଳିତ ହୋଇଛି । ସେତେବେଳେ ଯୁଦ୍ଧ ସଙ୍ଘର୍ଷ, ରାଜ୍ୟ ଦଖଲ ଲାଗି ନୁହେଁ, ପଶୁ ପ୍ରାପ୍ତି, ଗାଈଗୋରୁଙ୍କ ଲୁଣ୍ଠନ ପାଇଁ ହେଉଥିଲା । ବୈଦିକ ସାହିତ୍ୟରେ "ଗବିଷ୍ଟି" ଶବ୍ଦଟି ତା'ର ଜ୍ୱଳନ୍ତ ଦୃଷ୍ଟାନ୍ତ । ତାହା ଗାଭୀ ପ୍ରାପ୍ତିର ଇଚ୍ଛା ଓ ଯୁଦ୍ଧ, ଉଭୟଙ୍କୁ ବୁଝାଏ । ଅର୍ଥ ଭିନ୍ନ ଭିନ୍ନ ହେଲେ ବି ଉଦ୍ଦେଶ୍ୟ ଅଭିନ୍ନ ଓ କାର୍ଯ୍ୟ ସମାନ । ବର୍ତ୍ତମାନ ଏହି ଅବସ୍ଥା ହେଲା ଋତ-ସମାଜର ଧ୍ୱଂସସ୍ତୂପ ଉପରେ ଏକ ନୂତନ ସମାଜର ଆବିର୍ଭାବ ପୂର୍ବର ଏବେ ସେଇ ପ୍ରାଚୀନ ନୀତିବୋଧ, ସାମ୍ୟ, ମୈତ୍ରୀ, ଭ୍ରାତୃତ୍ୱର କ୍ରମାଗତ ବିଲୋପ ଘଟିଲା । ତା ସ୍ଥାନରେ ଯାହା ଆଗରୁ ନଥିଲା, ସେଇ ଲୋଭ, ସ୍ୱାର୍ଥ, ଲୁଣ୍ଠନ ଓ ବ୍ୟକ୍ତିଗତ ଅଧିକାର କ୍ରମାଗତ ବିକାଶ ଲାଭ କଲା । ତାର ପରିଣାମ ହେଲା ଜଗନ୍ନାଥଙ୍କ ସେଇ ଅନ୍ତର୍ନିହିତ ଇଙ୍ଗିତ — ସାମ୍ୟ, ମୈତ୍ରୀ, ଭ୍ରାତୃତ୍ୱର ପ୍ରତ୍ୟାଖ୍ୟାନ । ସିଧାକଥାରେ ଜଗନ୍ନାଥଙ୍କ ଆତ୍ମା ଉପରେ ମରଣର ଆଘାତ ।

ସେଇଦିନୁ ଧନ, ସମ୍ପତ୍ତି, ରାଜ୍ୟ, ସିଂହାସନ ଲାଗି ଛୁଟିଛି ହତ୍ୟା, ହିଂସା ଯୁଦ୍ଧର ସ୍ରୋତ । ପିତା ପୁତ୍ରକୁ, ପୁତ୍ର ପିତାକୁ, ଭାଇ ଭାଇକୁ ହତ୍ୟା କଲା । ତା'ପୁଣି ପରମ କର୍ତ୍ତବ୍ୟ, ପବିତ୍ର ନୀତି ହୋଇ ପ୍ରଚାରିତ ହୁଏ । ସେଇ ହତ୍ୟା ଯେ ପାପଶୂନ୍ୟ, ପବିତ୍ର, ତାହ ପୁଣି ପ୍ରଚାରିତ ହୋଇଛି ଧର୍ମଦ୍ୱାରା । ପୂର୍ବ-ସମାଜର ନୀତିବୋଧକୁ ବଳି ଦିଆଯାଇଛି । ଗୀତାରେ ତାକୁ ପ୍ରଚାର କରନ୍ତି ଭଗବାନ ଶ୍ରୀକୃଷ୍ଣ । ରାଜ୍ୟପ୍ରାପ୍ତି ଲାଗି ଜ୍ଞାତିହତ୍ୟା ଓ ଯୁଦ୍ଧର ନିର୍ଦ୍ଦେଶ । ଶିଖଣ୍ଡୀକୁ ଥୋଇ ଭୀଷ୍ମଙ୍କ ହତ୍ୟା, ଯୁଧିଷ୍ଠିରଙ୍କ ମୁହଁରେ ମିଥ୍ୟା କୁହାଇ ଦ୍ରୋଣବଧ, ନିରସ୍ତ୍ର କର୍ଣ୍ଣଙ୍କ ମୁଣ୍ଡକାଟ ଲାଗି ସଂକେତ, ଦୁର୍ଯ୍ୟୋଧନଙ୍କ ଜାନୁଭଙ୍ଗ ଲାଗି ଇଙ୍ଗିତ, ଏ ସବୁର କର୍ମକର୍ତ୍ତା ସେଇ ଶ୍ରୀକୃଷ୍ଣ । ଏଣିକି ଅନୀତି, କୁନୀତି ଓ ଦୁର୍ନୀତି, ଶ୍ରେଣୀବିଭକ୍ତ ସମାଜରେ ଏକମାତ୍ର ନୀତି ହୋଇଉଠିଲା । ତାହା ଏବେ ଐଶ୍ୱରିକ ଆଜ୍ଞା ଓ ପବିତ୍ରତାର ଛାପ ବହନ କଲା । (ପରେ ଗୀତା ସମ୍ବନ୍ଧରେ ଆଲୋଚନା କରିବା) । ଏସବୁ ପୁରାଣରୁ ଇତିହାସକୁ ଆସିଛି । ଅଜାତଶତ୍ରୁ ସିଂହାସନ ଲାଗି ତାଙ୍କର ପିତା ମଗଧରାଜାଙ୍କୁ ବନ୍ଦୀ କରି ହତ୍ୟା କରିଛନ୍ତି । ଆଉ ସେଇ ଅଜାତଶତ୍ରୁଙ୍କୁ ଜଣେ ସୁବିଜ୍ଞ ରାଜା କହି ତାଙ୍କ ପ୍ରଶଂସା ଗାନ କରିଛନ୍ତି ବୌଦ୍ଧ, ଜୈନମାନେ, ଆଉ ବୃହଦାରଣ୍ୟକ ଉପନିଷଦ ।

ନିଜର ରାଜ୍ୟ, ସିଂହାସନ ଓ ଅଧିକାରର ରକ୍ଷା ଆଉ ବିସ୍ତାର ଦିଗରେ ରାଷ୍ଟ୍ରନୀତିର ସର୍ବଶ୍ରେଷ୍ଠ ଦୃଷ୍ଟାନ୍ତ କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର । ତାହା ଏବେ ନୀତିଗତ

ଭାବେ ଲିପିବଦ୍ଧ ହେଲା । ସିଂହାସନ ରକ୍ଷାଲାଗି କି କି ଉପାୟ ଅବଲମ୍ବନ କରିବ, ଶତ୍ରୁକୁ କିପରି ଆୟତ୍ତ ଓ ବିନାଶ କରିବ, ଗୁଜବ ପ୍ରଚାର କରି, ଷଡ଼ଯନ୍ତ୍ର ରଚନା କରିବ, ବିବାଦ ସୃଷ୍ଟିକରି କଳହ ଲଗାଇବ, କିପରି ବିଷ, ବେଶ୍ୟା, ଗୁପ୍ତଚର ଓ ବିଷକନ୍ୟା ଆଦି ପ୍ରୟୋଗ କରିବ — ଏସବୁ ବିଷୟ ବେଶ୍ ତନ୍ନ ତନ୍ନ କରି ଆଲୋଚନା କରିଛନ୍ତି କୌଟିଲ୍ୟ । ତାହା ହେଲା ସାଧାରଣ ରାଷ୍ଟ୍ରନୀତି ଭାବେ ସ୍ୱୀକୃତ । ଅବସ୍ଥା ଅନୁସାରେ ଊଣାଅଧିକେ ତା ପ୍ରୟୋଗ ମଧ୍ୟ ହୋଇ ଆସିଛି । ତା' ବିଶେଷକରି ପ୍ରକାଶ ପାଇଛି ରାଜ ପରିବାରରେ, ପିତାକୁ ବନ୍ଦୀ କରି ପୁତ୍ର ରାଜ ରାଜା ହେବା ଗୋଟାଏ ପରମ୍ପରା ହୋଇଉଠିଛି । ବର୍ତ୍ତମାନ ସଭ୍ୟତାର ଏକ ଅଙ୍ଗ ହୋଇଉଠିଛି ସେହି ଶଠତାର ମୂଲ୍ୟବୋଧ ।

ସେଇ ଗୁଣାତ୍ମକ ପରିବର୍ତ୍ତନ, ମାନବ ଓ ଦେବତା, ସମାଜରେ ଉଭୟଙ୍କୁ ଗ୍ରାସ କରିଛି । କେବଳ ଧନର ଅସମତା ନୁହେଁ, ତା' ସହିତ ଦେଖାଦେଇଛି ବର୍ଣ୍ଣାଶ୍ରମ (ହିନ୍ଦୁ) ଧର୍ମର ବୈଶିଷ୍ଟ୍ୟ; ଘୃଣ୍ୟ ଜାତିଭେଦ । ତାହା ଅନ୍ୟତ୍ର ଅନ୍ୟ ଦେଶରେ ନାହିଁ । ତାକୁ ବାଦ୍ ଦେଇ ଆମର ସମାଜ, ସଭ୍ୟତା, ଧର୍ମ, ସଂସ୍କୃତି ନାହିଁ । ତାହା ସମଗ୍ର ଜୀବନର ଏକ ଅବିଚ୍ଛେଦ୍ୟ ଅଙ୍ଗ । ତାର ସ୍ୱତନ୍ତ୍ର ଆଲୋଚନା ବିନା କୌଣସି ଆଲୋଚନା ସମ୍ପୂର୍ଣ୍ଣ ନୁହେଁ । ଧନର ଅସମ ବିଭାଗ ସାଙ୍ଗକୁ ଅକାଟ୍ୟ ଜାତିଭେଦ, ମଣିଷର ଦୁଇ ଗୋଡ଼ରେ ଦୁଇ ଦୃଢ଼ ଶୃଙ୍ଖଳ । ତାହା ଏପରି ଶକ୍ତ ଓ କଠୋର ଯେ ସମାଜର କୌଣସି ଶକ୍ତି ଏ ପର୍ଯ୍ୟନ୍ତ ତାକୁ ଛିନ୍ନ କରିବାର ସମର୍ଥ ହୋଇନାହାନ୍ତି । ତା, ସମାଜର ଅଗ୍ରଗତିକୁ ପ୍ରତି ପଦେ ପଦେ ପ୍ରତିହତ କରେ । ତା ଦେବତାମାନଙ୍କୁ କେବଳ ବାନ୍ଧି ଦେଇ ନାହିଁ, ସେମାନଙ୍କ ଚରିତ୍ରକୁ ମଧ୍ୟ ବଦଳାଇ ଦେଇଛି । କେତେ ଦେବତାଙ୍କୁ ଏକଦମ୍ ଲୋପ କରିଦେଇଛି । ଯୁଗ ଯୁଗ ଧରି ତାର ଘନ ଘନ ଆକ୍ରମଣର ମୁକାବିଲା କରି ଏକମାତ୍ର ଠିଆ ହୋଇଛନ୍ତି ଜଗନ୍ନାଥ । ସେ ସେହି ବିଭାଜନ, ଭେଦାଭେଦର ଊର୍ଦ୍ଧ୍ୱରେ । ସବୁ ଦେବତାଙ୍କ ମଧ୍ୟରେ ତାହା କଣ ଜଗନ୍ନାଥ ଶକ୍ତିର ପରିଚୟ ଓ ସତ୍ୟର ନିଦର୍ଶନ ନୁହେଁ ? କେଉଁଠି ତାଙ୍କର ସେହି ଶକ୍ତିର ଉତ୍ସ ? ତାହା ଯୁଗ ଯୁଗ ଧରି ଅଫୁରନ୍ତ ରହିଛି କିପରି ? ସେହି ଉତ୍ସର ଅନୁସନ୍ଧାନ ବିନା ମଣିଷ କଣ କେବେହେଲେ ନିଜର ସାମାଜିକ, ଅର୍ଥନୈତିକ ଶୃଙ୍ଖଳ ଦୂର କରିବାକୁ ସମର୍ଥ ହେବ ?

ସେଇ ଆତ୍ମଶକ୍ତିର ଉତ୍ସ ଆଧ୍ୟାତ୍ମିକତାରେ ଆବଦ୍ଧ ନୁହେଁ — ତାର ସେଇ ଉତ୍ସ ରହିଛି ପାର୍ଥିବ କାମନାରେ — ଅନ୍ନ, ଧନ, ପଶୁ, ସ୍ୱାସ୍ଥ୍ୟ, ପୁତ୍ର ଆଦି ପ୍ରାପ୍ତିର କାମନାରେ । ସେଇ ସମାଜର ସାମୂହିକ ଜୀବନରେ ଆତ୍ମା, ମୋକ୍ଷ, ପରଲୋକ ଓ ସଦ୍‌ଗତି ଆଦିର ପ୍ରଶ୍ନ ନାହିଁ । ସେପର୍ଯ୍ୟନ୍ତ ସେଥିଲାଗି ବାସ୍ତବ ଅବସ୍ଥା ସୃଷ୍ଟି ହୋଇ ନାହିଁ । କାରଣ, ବ୍ୟକ୍ତି ସମଷ୍ଟିଠାରୁ ବିଚ୍ଛିନ୍ନ ନୁହେଁ । ସବୁ କାମନା ସମଷ୍ଟିଗତ, କୌଣସିଟା ବ୍ୟକ୍ତିଗତ ନୁହେଁ । ବ୍ୟକ୍ତି ସମାଜଠାରୁ ବିଚ୍ଛିନ୍ନ ହେବାରେ କେବଳ ବ୍ୟକ୍ତିଗତ କାମନାର ପ୍ରକାଶ । ସେଇ ବ୍ୟକ୍ତିଗତ କାମନାର ମୂଳ ହେଲା ବ୍ୟକ୍ତିଗତ

ସ୍ୱାର୍ଥ । ସେଇ ସ୍ୱାର୍ଥ ଯେତେ କ୍ଷୀଣ, ଦୁର୍ବଳ ବା ଅସ୍ପଷ୍ଟ, ଅଦୃଶ୍ୟ ହେଲେ ବି ତାହାହିଁ ବ୍ୟକ୍ତିଗତ କାମନାର ଭିତ୍ତି । ସମଷ୍ଟିଠାରୁ ଅଲଗା ହେବାର ପ୍ରକ୍ରିୟା ଭିତରେହିଁ ବ୍ୟକ୍ତିଗତ ଆତ୍ମାର ପ୍ରକାଶ । ବ୍ୟକ୍ତିଗତ ଆତ୍ମାର ପ୍ରକାଶ ଅନ୍ୟ ଦିଗରେ ଆତ୍ମସ୍ୱାର୍ଥ, ଆତ୍ମାର ମୁକ୍ତି ବା ନିର୍ବାଣ ସହିତ ଜଡ଼ିତ । ସେଇ ଆତ୍ମାର ପ୍ରକାଶରେ କେବଳ ସେଇ ଆତ୍ମାର ମୋକ୍ଷ ନିର୍ବାଣ ବା ସଦ୍‌ଗତିର ପ୍ରଶ୍ନ ଉଦ୍‌ଭବ ହୁଏ । ଆତ୍ମା ଓ ମୋକ୍ଷ ଯେପରି ଅବିଚ୍ଛେଦ୍ୟ, ସେମିତି ତାହା ବ୍ୟକ୍ତିଗତ । ସମଷ୍ଟି ଓ ସାମ୍ୟ ଯେପରି ଘନିଷ୍ଠଭାବେ ଜଡ଼ିତ, ସେମିତି ତାହା ସାମୂହିକ । ସମଷ୍ଟି ଉପରେ ବ୍ୟକ୍ତି ସ୍ୱାର୍ଥର ପ୍ରତିଷ୍ଠା ଯୋଗୁ ସଙ୍ଘର୍ଷ ଯେପରି ସ୍ୱାଭାବିକ, ବ୍ୟକ୍ତିର ଉପେକ୍ଷାରେ ସମଷ୍ଟିର ମୈତ୍ରୀ ସେହିପରି ବିପନ୍ନ ।

ଆଗର ବୈଦିକ ସମାଜ ସମଷ୍ଟିଗତ, ସାମ୍ୟ ସମାଜ । ସେଠି କାମନା ସାମୂହିକ, ଯେହେତୁ ଜଣେ ଅନ୍ୟ ସଙ୍ଗେ ସମାନ । ମଣିଷ ଭିତରେ ଫରକ୍ ନାହିଁ କି ତାଙ୍କ କାମନାରେ ଫରକ୍ ନାହିଁ । ସେତେବେଳେ ଦେବତାଙ୍କ ଭିତରେ ବି ଫରକ୍ ନାହିଁ; ଯେହେତୁ ସେମାନେ ଫରକହୀନମାନଙ୍କ ଦେବତା । ଏପରିକି ଶେଷରେ ମାନବ ଓ ଦେବତାଙ୍କ ମଧ୍ୟରେ ବି ଫରକ ନାହିଁ, ଯେହେତୁ ସେପର୍ଯ୍ୟନ୍ତ ଆଧୁନିକ ଅର୍ଥରେ ଦେବତାଙ୍କ ଭିତରେ ଦେବତ୍ୱର ବିକାଶ ଘଟିନାହିଁ । ସମାଜରେ ବ୍ୟକ୍ତିଗତ ସମ୍ପତ୍ତିର ବିକାଶ ଏବଂ ଦେବତାଙ୍କ ଭିତରେ ସେଇ ଦେବତ୍ୱର ପ୍ରକାଶ, ଏମାନେ ଊଣାଅଧିକେ ସମ ପଦକ୍ଷେପରେ ଚାଲିଛନ୍ତି । ଆମର ବୈଦିକ ସାହିତ୍ୟରେ ତାହାର ବହୁଳ ଦୃଷ୍ଟାନ୍ତ ରହିଛି ।

ପ୍ରଥମ ଅବସ୍ଥାରେ ଋଗ୍‌ବେଦ ହେଲା ସେହି ଋଷି କବିଙ୍କ କାମନା ପୂରଣର ଏକ ଆହ୍ୱାନ । ସେଠି 'ମୋତେ' ବା 'ମୋର' ପ୍ରଶ୍ନ ନାହିଁ । ସବୁକିଛି ''ଆମକୁ ଓ ଆମ୍ଭମାନଙ୍କୁ ଦିଅ'', ସମସ୍ତଙ୍କୁ ସମାନ କରିଦିଅ, ସମସ୍ତଙ୍କ ପ୍ରତି ସମାନ ହୁଅ । ସୂର୍ଯ୍ୟ ଚନ୍ଦ୍ର ସମସ୍ତଙ୍କ ପ୍ରତି ସମାନ, ଇନ୍ଦ୍ର, ଅଗ୍ନି ସମାନ, ନାସଦୀୟ ଦେବ ଦେବୀ ସମାନ, ଉଷା ସମୂହ ସମାନ । ମରୁତଗଣ ଶୋଭାର୍ଥ ସମାନ ରୂପ, ଇନ୍ଦ୍ର ସମାନ ଧନାରୁଦ୍ରକ ଓ ବସ୍ତୁ ପ୍ରେରକ — (୧) ଏହିପରି ଉକ୍ତିର ଅଭାବ ନାହିଁ । ଦେବତାମାନେ ମଣିଷ ପ୍ରତି କେବଳ ସମାନ ନୁହନ୍ତି, ମଣିଷମାନେ ମଧ୍ୟ ଦେବତାଙ୍କ ପ୍ରତି ସମାନ । ସେ ସମାଜରେ ଉତ୍ତରଣ ବା ଜଣେ ଅନ୍ୟକୁ ଟପିଯିବାର ଶକ୍ତି ଆତିମାତ୍ରାରେ କ୍ଷୀଣ । ସମାଜରେ କୌଣସି ଉଦ୍‌ବୃତ୍ତ ନାହିଁ । ସେପରି ଉଦ୍‌ବୃତ୍ତଜୀବୀ କୌଣସି ବ୍ୟକ୍ତି ବା ଶ୍ରେଣୀ ନାହାନ୍ତି । ତେଣୁ ସେହି ଚେତନା ବା ଧାରଣାରେ ଗଢ଼ା କୌଣସି ଉଦ୍‌ବୃତ୍ତଜୀବୀ ଗୋଷ୍ଠୀ (ବ୍ରାହ୍ମଣ, ପୁରୋହିତ) ବା ନୈବେଦ୍ୟଭୋଗୀ ଦେବଦେବୀଙ୍କର ପ୍ରଶ୍ନ ନାହିଁ ।

---

(୧) ଋଗ୍‌ବେଦ (୭.୩୨.୧୨) ।

ଅତୀତର ସେଇ ସାମ୍ୟ ସମାଜ ଭାଙ୍ଗିଗଲା ପରେ ତାକୁ ଝୁରି ହୋଇଛନ୍ତି ସେଇ ଋଷି କବିଗଣ । ତାରି ଦୃଷ୍ଟାନ୍ତ ତାଙ୍କରି କଣ୍ଠରେ ପୁଣି ପ୍ରକାଶ ପାଇଛି । ତାକୁ ପୁଣି ଫେରାଇ ଆଣିବା ପାଇଁ ବ୍ୟାକୁଳ ହୋଇ ଡ଼ାକ ଛାଡ଼ିଛନ୍ତି ।

''ସଗଛ ଧ୍ୱଂ ସଂବଦ ଧ୍ୱଂ ସଂବୋ ମନାଂସି ଜାନତାମ୍

ଦେବାଭାଗାଃ ଯଥାପୂର୍ବେ ସଂଜନାନା ଉପାସତେ''

(ଋଗ୍‌ବେଦ ୧୦, ୧୯୧, ୨)

ତୁମେମାନେ ଏକତ୍ର ମିଳିତ ହୁଅ, ଏକକଣ୍ଠରେ ଘୋଷଣା କର, ଏକତ୍ର ମନ ବିନିମୟ କର, ଯେପରିକି ଅତୀତରେ ଦେବତାମାନେ ସଚେତନ ଭାବେ ଏକତ୍ର ତାଙ୍କର ଭାଗ ବହନ କରୁଥିଲେ ।

ଏଠାରେ ଏକତ୍ର ଓ ସମାନ ଉପରେ ଜୋର ଦେଇ ତାଙ୍କୁ ଅନୁପ୍ରାଣିତ କରିବାର ଚେଷ୍ଟା କରାଯାଇଛି ।

ଏହା ଦର୍ଶାଇ ଦିଏଯେ, ଦେବତାମାନେ ଦିନେ ସମାନ ଭାଗ ଗ୍ରହଣ କରୁଥିଲେ । ମଣିଷ ନିଜେ ସେ ଭାଗ ବଣ୍ଟନ କରୁଥିଲା ସତ, କିନ୍ତୁ ବଣ୍ଟନର ଦାୟିତ୍ୱ ମୁଖ୍ୟତଃ ଦେବତାମାନଙ୍କ ଉପରେ ଥିଲା । ସେଇ ବୈଦିକ ଦେବତାମାନେ ଥିଲେ ମଣିଷର ବନ୍ଧୁ, ସଖା ଓ ନରଶ୍ରେଷ୍ଠ । ସେମାନେ ଯଜ୍ଞରେ ଭାଗ ନେଉଥିଲେ । ଯଜ୍ଞ ଥିଲା ଅନ୍ନ ଉତ୍ପାଦନକ୍ରମ । ଯଜ୍ଞ ବିନା ଅନ୍ନ ସେମାନଙ୍କ ପାଖରୁ ଚାଲି ଯାଉଥିଲା । ଦେବତାମାନେ ଭୋଜିଭାତ ଓ ସଭାସମିତିରେ ଯୋଗ ଦେଉଥିଲେ । ସେ ସମାଜରେ ମଣିଷ କେବଳ ନିଜ ନିଜ ମଧ୍ୟରେ ସମାନ ନୁହନ୍ତି, ଦେବତାମାନେ ମଧ୍ୟ ପରସ୍ପର ସହିତ ସମାନ । ତାର ସେ ସ୍ମୃତି ବେଦ ରେ ଲିପିବଦ୍ଧ ।

ଦେଖିବାର କଥା, ମଣିଷ ଓ ଦେବତା ମଧ୍ୟରେ ସେହି ସମତା, ଘନିଷ୍ଠ ଆତ୍ମୀୟତା, କେବଳ ମାତ୍ର ଜଗନ୍ନାଥଙ୍କୁ ଛାଡ଼ିଦେଲେ ଅନ୍ୟ କୌଣସି ହିନ୍ଦୁ ଦେବଦେବୀଙ୍କଠାରେ ନାହିଁ । ଅନ୍ୟମାନେ କେବଳ ଅସମତା ନୁହନ୍ତି, ଅସ୍ପୃଶ୍ୟତା ଉପରେ ପ୍ରତିଷ୍ଠିତ । ଜଗନ୍ନାଥ କେବଳ ଅନ୍ୟ ଦେବଦେବୀଙ୍କୁ ସମାନ ସ୍ଥାନ ଦେଇ ତାଙ୍କୁ ଆବୋରି ନାହାନ୍ତି, ମଣିଷ ସହ ଜଗନ୍ନାଥଙ୍କ ସମ୍ପର୍କ ମଧ୍ୟ ଅତି ନିବିଡ଼ । ସକାଳେ ଉଠିଲା ମୁହୂର୍ତ୍ତରୁ ରାତିରେ ଶୋଇଲା ପର୍ଯ୍ୟନ୍ତ ସେ ଠିକ୍ ମଣିଷ ଭଳି ଚଳନ୍ତି, ନିତ୍ୟ କର୍ମ କରନ୍ତି । ଶୀତଦିନେ ତାଙ୍କୁ ଶୀତଲାଗେ — ଘୋଡ଼େଇ ହୁଅନ୍ତି । ଖରାଦିନେ ଗରମ ହୁଏ, ଚନ୍ଦନ ଯାତ୍ରା କରନ୍ତି । ସ୍ନାନ ପରେ ଜ୍ୱର ହୁଏ, ଅଣସର ଘରେ ରହି ପଥ୍ୟପାଚନ ଖାଆନ୍ତି । ଏପରିକି ଶେଷରେ ତାଙ୍କର ମୃତ୍ୟୁ ଘଟେ । ତାଙ୍କର ଜ୍ଞାତିଭାଇ ପୁଣି କୌଣସି ଦେବତା ନୁହନ୍ତି, ମଣିଷ । ସେମାନେ ତାଙ୍କରି ମଡ଼ାସାଙ୍ଗିଆ ଭାଇ, — ସେମାନେ ତାଙ୍କୁ ଶ୍ମଶାନକୁ ନିଅନ୍ତି । ନେଲାବେଳେ ତାଙ୍କଲାଗି ରୋଦନ କରନ୍ତି, ଘର ଲିପାପୋଛା କରି ଚୂନ ଦିଅନ୍ତି, ନଖ ବାଳ ଦେଇ ଶୁଦ୍ଧିହୁଅନ୍ତି, ବାରଦିନ

ଦେଉଳରେ ମୃତ୍ୟୁ ଭୋଜି ଦିଅନ୍ତି । ଶେଷରେ ଉତ୍ତରାଧିକାରୀ ଭାବରେ 'ମୃତ' ଜଗନ୍ନାଥଙ୍କ ସମ୍ପତ୍ତି ଉପରେ ସେଇ ଜ୍ଞାତିଭାଇଙ୍କର ଅଧିକାର । ଗତ ନବ କଳେବର କାଳରେ ତାଙ୍କର ସେଇ ଦଇତା ଭାଇମାନେ ସେ ବାବଦ୍‌ରେ ଦେଉଳ ପ୍ରଶାସନରୁ ପାଞ୍ଚହଜାର ଟଙ୍କା ପାଇଥିଲେ ଏବଂ ଜଗନ୍ନାଥଙ୍କ ନିତ୍ୟ ବ୍ୟବହାର୍ଯ୍ୟ ଜିନିଷ ନେଇଥିଲେ । ଏପରିକି ଓଡ଼ିଶାର ସାଧାରଣ ଲୋକ ଜଗନ୍ନାଥଙ୍କୁ ନିଜ ଘରର ଜଣେ ବୋଲି ମଣନ୍ତି । ତାଙ୍କୁ ଜଗା କାଳିଆ, ବଳିଆ ବିଭିନ୍ନ ନାମରେ ଡାକନ୍ତି । ବିବାହ ବ୍ରତରେ ଗୁଆ ଚଳାନ୍ତି । ସବୁଠି ନିମନ୍ତ୍ରଣର ପ୍ରଥମ ଅଧିକାରୀ ସେଇ ଜଗନ୍ନାଥ ।

ଜଣାଯାଏ, ଆଦିମ କାଳରୁ ଆଧୁନିକ ସମାଜ ପର୍ଯ୍ୟନ୍ତ, ସମସ୍ତ ଉତ୍‌ଥାନ ପତନ ଓ ପରିବର୍ତ୍ତନ ମଧ୍ୟରେ, ବୈଦିକ ଯୁଗରେ ମଣିଷ-ଦେବତାର ଯେଉଁ ଭାଇଚାରା ସମ୍ପର୍କ ଥିଲା, ସେହି ମୌଳିକ ସମ୍ପର୍କ ଏକମାତ୍ର ଜଗନ୍ନାଥଙ୍କ ଠାରେହିଁ ପ୍ରତିଫଳିତ । ଅନ୍ୟ କୌଣସି ଦେବତା ଏହିପରି ମଣିଷର ସଖା, ବନ୍ଧୁ, ଜ୍ଞାତିଭାଇ ନୁହେଁ ; କୁଟୁମ୍ବର ଜଣେ ଭାବେ ଗଣ୍ୟ ନୁହେଁ । ସେମାନେ କେଉଁ ଅଜଣା ରାଜ୍ୟରେ ସ୍ୱର୍ଗଲୋକରେ ଅବସ୍ଥାନ କରନ୍ତି । ମଣିଷ ତାଙ୍କୁ ଭୟ ବା ଭକ୍ତିରେ ଉପାସନା କରେ । ଜଗନ୍ନାଥଙ୍କ କ୍ଷେତ୍ରରେ ହେଲାଭଳି ଭାଇବନ୍ଧୁର ଆଦର, ଆପଦାରୀର ପ୍ରଶ୍ନ ନାହିଁ । ତାହାହିଁ ଜଗନ୍ନାଥ ଭାବ, ତାଙ୍କର ଶକ୍ତିର ଉତ୍ସ ।

ଅନ୍ୟସବୁ ଦେବତା ପୁରାଣରେ ଜନ୍ମ । ତାଙ୍କ ଜୀବନକାଳ ସେଇ ପୁରାଣ ଭିତରେହିଁ ସୀମାବଦ୍ଧ । କାଳକ୍ରମେ ପରିବର୍ତ୍ତନ ସହିତ ବହୁ ଦେବତା ମଣିଷର ସ୍ମୃତିପଥରୁ ଲିଭିଗଲେଣି ଓ ଭବିଷ୍ୟତରେ ମଧ୍ୟ ଲିଭିଯିବେ । ଏକମାତ୍ର ଜଗନ୍ନାଥ, ଯିଏ କି ମଣିଷର ମାନସ ପଟରେ, ତାର ଜୀବନ ଭିତରେ ସଦା ଜୀବନ୍ତ ରହିଥିବେ । କାରଣ ଆଦିମ ସମାଜରୁ, ମଣିଷ ଜୀବନର କାମନା ଓ ଆବଶ୍ୟକତା ସହିତ ଜଗନ୍ନାଥଙ୍କର ଜନ୍ମ । ମଣିଷର ଜୀବନର ସେଇ କାମନା, ଆବଶ୍ୟକତା ସହିତ ତାଙ୍କର ଜୀବନ ବନ୍ଧା । ତେଣୁ ଗତଆଗତ ସମସ୍ତ ମଣିଷଜାତିର ପୁଞ୍ଜୀଭୂତ ପରମାୟୁକୁ ଘେନି ଜଗନ୍ନାଥ ଚିରଜୀବୀଭାବେ ସଦା ପ୍ରତୀୟମାନ — ଲୌକିକ ଭାଷାରେ ଚିର ଅମର ।

ସେଇ ପ୍ରାଚୀନ ଅବସ୍ଥାର ବ୍ୟତିକ୍ରମ କିପରି ଆରମ୍ଭ ହୋଇଛି, ତାର ସାକ୍ଷୀ ସେଇ ଋକ୍‌ବେଦ । ଋଷିଙ୍କ କଣ୍ଠରେ ତାହା ଫୁଟିଉଠିଛି ।

''ଉଦିନସ୍ୟ ବିଚ୍ୟତେହଂ ସୋ ଧନଂ ଜିଗ୍ୟୁଷ୍ୟ'' (୧)

ଅର୍ଥାତ ଜିତିବା ଧନରେ (ଇନ୍ଦ୍ରଙ୍କ) ଅଂଶ ଅନ୍ୟମାନଙ୍କ ତୁଳନାରେ ଅଧିକ । ତା ମାନେ ଲୁଣ୍ଠନ ଦ୍ରବ୍ୟରେ ଇନ୍ଦ୍ରଙ୍କର ଭାଗ ଅଧିକ, ଯେହେତୁ ସେ ତାର କର୍ତ୍ତା । ବର୍ତ୍ତମାନ ବିଚାରରେ ତାହାହେଲା ବାସ୍ତବିକ କାମ ଅନୁସାରେ ଫଳ । ଯିଏ ବେଶୀ

---

(୧) ଋଗ୍‌ବେଦ, ୮,୯, ୯,୮ ।

କାମ କଲା ସେ ଅଧିକ ପାଇବାକୁ ହକ୍‌ଦାର । ତାହା ବିଚାର ଦୃଷ୍ଟିରୁ ନ୍ୟାୟସଙ୍ଗତ ହେଲେ ବି ବାସ୍ତବତା ଦିଗରୁ ଅସାମ୍ୟକୁ ଆହ୍ୱାନ କରେ । ତାହା ମଣିଷର ଆବଶ୍ୟକତା ଅନୁଯାୟୀ ତାର ପ୍ରାପ୍ୟ ନୁହେଁ । ସେ କ୍ଷେତ୍ରରେ ଯାହାର ପ୍ରୟୋଜନ ନାହିଁ, ସେ ବେଶୀ ପାଇପାରେ, ଅଥଚ ଯାହାର ପ୍ରୟୋଜନ ଅଛି ସେ କମ୍ ପାଇପାରେ । ଆଧୁନିକ ବ୍ୟାଖ୍ୟା ଅନୁସାରେ ତାହା କମ୍ୟୁନିଷ୍ଟ (ବା ସାମ୍ୟବାଦୀ) ସମାଜ କି ସୋସିଆଲିଷ୍ଟ (ବା ସମାଜବାଦୀ) ସମାଜ  ନୁହେଁ । ତାହା ସାମ୍ୟବାଦରୁ ସମାଜବାଦକୁ— ଆବଶ୍ୟକତା ଅନୁସାରେ ପ୍ରାପ୍ତି ପରିବର୍ତ୍ତେ, ଶ୍ରମ ଅନୁସାରେ ଫଳପ୍ରାପ୍ତିକୁ — ଏକ ଅଧୋଗତି । ଆଦିମ କମ୍ୟୁନିଷ୍ଟ ସମାଜ ଘୋର ଦୁଃଖ ଦାରିଦ୍ର୍ୟ ଅନାହାରରେ ପ୍ରପୀଡ଼ିତ । ସେତେବେଳେ ସମାଜର ବିକାଶ ଲାଗି ଉଦ୍‌ବୃତ୍ତ ବଣ୍ଟନରେ ଅସାମ୍ୟର ସୃଷ୍ଟି ଅପରିହାର୍ଯ୍ୟ ।

ମଣିଷ ଓ ଜଗନ୍ନାଥ - ଭାବର ସମ୍ପର୍କ ଯେତେବେଳେ ଏତେ ଘନିଷ୍ଠ, ସେଠି ମଣିଷର ପରିବର୍ତ୍ତନ ଜଗନ୍ନାଥଙ୍କଠାରେ ପ୍ରତିଫଳିତ ହେବା ଏବଂ ଜଗନ୍ନାଥଙ୍କ ପରିବର୍ତ୍ତନ ମଣିଷକୁ ପ୍ରଭାବିତ କରିବା ଅତି ସ୍ୱାଭାବିକ । ତେଣୁ ଜଗନ୍ନାଥଙ୍କୁ ଦେଖିବାକୁ ଗଲେ ମଣିଷ ଆଗ ନିଜର ପରିବର୍ତ୍ତନକୁ ଲକ୍ଷ୍ୟ କରିବା ଦରକାର । ଆଦିମ ବିଶ୍ୱାସଠାରୁ ଆଧୁନିକ ଧାରଣା ପର୍ଯ୍ୟନ୍ତ,  ସମସ୍ତ ବିଷୟ ସେଇ ପରିବର୍ତ୍ତନ ଅନ୍ତର୍ଗତ । ନାନା ମତ,  ବିଭିନ୍ନ ବିଶ୍ୱାସ, ଏପରିକି ବିରୁଦ୍ଧାତ୍ମକ ଧାରଣା ଆଦି ବହୁ ବିଚାରର ସମନ୍ୱୟଭାବେ ଜଗନ୍ନାଥ ଚିତ୍ରିତ । ସେସବୁ ବିଚାର ସ୍ୱତଃସ୍ଫୁର୍ତ୍ତ ନୁହେଁ । ତାହା ମଧ୍ୟ ଅତି ବିଜ୍ଞ, ବିଚାରବନ୍ତ ପଣ୍ଡିତ, ମହାପୁରୁଷଙ୍କ ଦ୍ୱାରା ପ୍ରଚାରିତ । ସମାଜର ଆବଶ୍ୟକତା ଭିତରୁ ସେଇସବୁ ମତର ଜନ୍ମ । ସେଇ ଆବଶ୍ୟକତା ହେତୁ ତାହା  ଏ ପର୍ଯ୍ୟନ୍ତ ତିଷ୍ଠି ରହିଛି, ତାର ଅଭାବରେ ସେ ସବୁର ହ୍ରାସ ଘଟିଛି ଓ କେତେ ଲୋପ ପାଇଛି । ସେସବୁ ଦେବତାଙ୍କର ରୂପାନ୍ତର, ତାଙ୍କର ଉପାସନା ଆରାଧନାରେ ପରିବର୍ତ୍ତନ, ଅସଲରେ ତାଙ୍କର ସେହି ଭକ୍ତ ଆରାଧନାକାରୀଙ୍କ ପରିବର୍ତ୍ତନ । ମଣିଷର ନିଜର ସେଇ ପରିବର୍ତ୍ତନ ଦେବତାଙ୍କ ଠାରେ ପ୍ରତିଫଳିତ ।  ଲୋକ ବଦଳିବା ଅନୁସାରେ ତାଙ୍କର ଉପାସ୍ୟ ଦେବତାମାନେ ବଦଳି ଆସିଛନ୍ତି; ତାଙ୍କର ଚରିତ୍ରରେ ପରିବର୍ତ୍ତନ ଘଟିଛି । ବିଭିନ୍ନ ଧର୍ମ ମଧ୍ୟରେ ସଂଘର୍ଷ ହେଉଛି ପ୍ରକୃତରେ ସେଇ ମତ ଓ ସ୍ୱାର୍ଥ ମଧ୍ୟରେ ସଂଘର୍ଷ । କୌଣସି ଦେବତାଙ୍କ ମଧ୍ୟରେ ନୁହେଁ । ଉପାସ୍ୟ, ଉପାସକଙ୍କ ଦ୍ୱାରା ନିୟନ୍ତ୍ରିତ । ଉପାସକ ନିଜର ଆବଶ୍ୟକତା ଅନୁସାରେ ତିଆରି କରେ ତାର ଉପାସ୍ୟ ।

ଦୈନ୍ୟ ଅବସ୍ଥାରେ ଖାଦ୍ୟ ସଂଗ୍ରହ, ସେଠୁ ପଶୁପାଳନ, ତାପରେ କୃଷି, ତହୁଁ କୃଷି ଓ କୁଟୀର ଶିଳ୍ପ, ଆଧୁନିକ ଶିଳ୍ପର ବିକାଶ ଏବଂ  ବର୍ତ୍ତମାନର ବିଜ୍ଞାନ ଯୁଗକୁ ଦେଖିଲେ ମଣିଷର ଚିନ୍ତାରାଜ୍ୟରେ ବି ଅଭୂତପୂର୍ବ ପରିବର୍ତ୍ତନ ନ ଆସିଛି । ତାହା କେତେ ପ୍ରକାରର ଧାରଣା, କେତେ ବିରୁଦ୍ଧାତ୍ମକ ଧାରଣା ସୃଷ୍ଟି ନ କରିଛି ! ସେହି ବିରୁଦ୍ଧାତ୍ମକ ଧାରଣାର ଲୋକଙ୍କ ମଧ୍ୟରେ କେତେ ସଂଘର୍ଷ ସୃଷ୍ଟି ନ କରିଛି !

ସେଇସବୁ ଧାରଣା, ବିଭିନ୍ନ ମତ, ତତ୍ତ୍ୱ ଓ ଧର୍ମ ଭାବରେ ରୂପାୟିତ ।ସେସବୁ ଯେ ଗୋଟାଏ ଲାଇନ ହୋଇ ଚାଲିଛନ୍ତି, ତାହାନୁହେଁ । ଦେଶ ଭିତରେ ପ୍ରାକୃତିକ ବିପଦ, ଲୋକସଂଖ୍ୟାର ବୃଦ୍ଧି, ଏଣେ ବାହ୍ୟଲୋକଙ୍କର ଅନୁପ୍ରବେଶ ଦ୍ୱାରା ସେଥିରେ ମୌଳିକ ପରିବର୍ତ୍ତନ ଆସିଛି, ତାହା ବିଶେଷଭାବେ ପ୍ରଭାବିତ ହୋଇଛି । ଜଗନ୍ନାଥ ସେଇ ବିକାଶ ଧାରାର ବ୍ୟତିକ୍ରମ ନୁହନ୍ତି । ଜଗନ୍ନାଥଙ୍କୁ ଅନୁସରଣକଲେ ଭାରତୀୟ ସମାଜ — ବିଶେଷକରି ହିନ୍ଦୁ ଧର୍ମଧାରଣା ଭିତରେ ଓଡ଼ିଶାର ସମଗ୍ର ସଭ୍ୟତାର ବିକାଶ ମଧ୍ୟରେ, ପ୍ରବେଶ କରିବାକୁ ହେବ ।

## ମୂର୍ତ୍ତି -ମନ୍ଦିର-ର -ମର୍ମ୍ମ ଓ ମହତ୍ତ୍ୱ—

ମୂର୍ତ୍ତି , ମନ୍ଦିର ମର୍ମ୍ମ ଆଉ ନିଜର ମହତ୍ତ୍ୱକୁ ଘେନି ଜଗନ୍ନାଥ । ସେଥିମଧ୍ୟରୁ ଗୋଟିକର ଅଭାବରେ ଜଗନ୍ନାଥ ଅପୂର୍ଣ୍ଣ । ସେ ପ୍ରତ୍ୟେକଟି ସ୍ୱତନ୍ତ୍ର ହେଲେ ବିଷୟ ବି ପରସ୍ପର ସହିତ ଏବଂ ଜଗନ୍ନାଥଙ୍କଠି ନିବିଡ଼ଭାବେ ସଂପୃକ୍ତ । ପ୍ରତ୍ୟେକ ଅନ୍ୟର ପରିପୂରକ । ସେହି ମୂର୍ତ୍ତି, ମନ୍ଦିର, ମର୍ମ୍ମ ଓ ମହତ୍ତ୍ୱ, ପ୍ରତ୍ୟେକଟି ଜିନିଷ ତାଙ୍କର ସ୍ୱାତନ୍ତ୍ର୍ୟରେ ଅଦ୍ୱିତୀୟ । ଜଗନ୍ନାଥଙ୍କ ମୂର୍ତ୍ତି ଭଳି ଅନ୍ୟ ମୂର୍ତ୍ତି ନାହିଁ । ତାଙ୍କ ମନ୍ଦିର ଭଳି ଅନ୍ୟ ମନ୍ଦିର ନାହିଁ । ତାଙ୍କର ମର୍ମ୍ମ ଆଉ ମହତ୍ତ୍ୱଭଳି କୌଣସି ଦେବତା — ଏପରିକି ଖୋଦ୍ ଭଗବାନଙ୍କର ମର୍ମ୍ମ ଓ ମହତ୍ତ୍ୱ ନାହିଁ । ସେଇ ସବୁକୁ ଅଦ୍ୱିତୀୟତାର ସମ୍ମିଶ୍ରଣରେ ଜଗନ୍ନାଥ ହୁଅନ୍ତି ଏକ ଅସାଧାରଣ ଭାବର ଚରମ ପ୍ରତୀକ । ଏକ ଆଲୌକିକ ଶକ୍ତିର ପ୍ରକାଶ, — ସମସ୍ତ ଇନ୍ଦ୍ରିୟାତୀତ ଭାବର ଆଧାର, ଯିଏକି ଅଦୃଶ୍ୟ, ଅବ୍ୟକ୍ତ ଓ ଅଚିନ୍ତ୍ୟ — ସ୍ୱୟଂ ଭଗବାନ ।

କିନ୍ତୁ ଯେହେତୁ ସିଏ ଜଗତର ନାଥ, ସିଏ ଏକ ଓ ଅଦ୍ୱିତୀୟ । ତାଙ୍କର ଅନ୍ୟାନ୍ୟ ସମସ୍ତ ସଂସ୍କରଣ, ଏକ ଏକ ଅନୁକରଣ ମାତ୍ର । ଅସଲରେ ଜଗନ୍ନାଥ ସମ୍ବନ୍ଧରେ ଆଲୋଚନା ହେଉଛି ତାଙ୍କର ସେଇ ମୂର୍ତ୍ତି, ମନ୍ଦିର, ମର୍ମ୍ମ ଓ ମହତ୍ତ୍ୱର ଏକ ସମନ୍ୱିତ ବିଚାର । ମୂର୍ତ୍ତି ଓ ମନ୍ଦିର ଘେନି ବିଶେଷ ଅସୁବିଧା ନାହିଁ, କାରଣ ସେସବୁର ବାସ୍ତବ ରୂପ ରହିଛି, ଯାହାକୁ ଆଖିରେ ଦେଖିହେବ, ହାତରେ ପରଖିହେବ; ଯାର ସ୍ମାରକକୁ ବିଭିନ୍ନ ସ୍ଥାନରେ ଚିହ୍ନିହେବ । ସେ ସମ୍ବନ୍ଧରେ ଗବେଷଣାର ଅଭାବ ନାହିଁ । ସବୁଠାରୁ କଷ୍ଟକର ବିଷୟ ହେଲା ଜଗନ୍ନାଥଙ୍କ ମର୍ମ୍ମ ଓ ମହତ୍ତ୍ୱ, ଯାର କୌଣସି ବାସ୍ତବ ରୂପ ନାହିଁ, ଅଥଚ ସବୁଠାରୁ ତାତ୍ପର୍ଯ୍ୟପୂର୍ଣ୍ଣ ।

ଜଗନ୍ନାଥଙ୍କ ଜନ୍ମ ଆବିଷ୍କାର କରିବାକୁ ଯାଇ ଗୋଟାଏ ମତ ବେଦରେ ପହଞ୍ଚିଲାବେଳେ, ଆଉ ଏକ ମତ ଶବର ସଭ୍ୟତାକୁ ତାର ଆଧାର କରିଛି । ଶବର ସଭ୍ୟତା ବା ଅଣଆର୍ଯ୍ୟ ସମାଜ ଭାରତରେ ଆର୍ଯ୍ୟମାନଙ୍କ ପ୍ରବେଶ ପୂର୍ବରୁ ରହି ଆସିଛି । ତା ବେଦ ଓ ଆର୍ଯ୍ୟସମାଜ ତୁଳନାରେ ଅଧିକ ପ୍ରାଚୀନ ।

କିନ୍ତୁ ଜଗନ୍ନାଥଙ୍କ ଆବିଷ୍କାର ତାଙ୍କ ରୂପ , ରଙ୍ଗ ବା ଶରୀରରେ ନାହିଁ । ଅସଲରେ ତାହା ଜଗନ୍ନାଥଙ୍କର ସେଇ ଅନ୍ତର୍ନିହିତ ମର୍ମ୍ମ, ତାତ୍ପର୍ଯ୍ୟ ଆଉ ମହତ୍ତ୍ୱର

ଆବିଷ୍କାର , ଯାହାକି ବାସ୍ତବରେ ମଣିଷର ଆଦ୍ୟ ଜୀବନର ଉତ୍ସ ଓ ତାର ଅନ୍ତିମ ଜୀବନର କାମନା । ଭ୍ରୂଣ ଭିତରେ ଦ୍ରୁମ ଲୁକ୍‌କାୟିତ ରହିଲାଭଳି ତା ଭିତରେ ଲୁଚି ରହିଛି ମାନବ ସମାଜର ଚରମ ବିକାଶ । ଚେତନାର ଆରମ୍ଭରେ ପ୍ରକୃତ ମଣିଷର ଆବିର୍ଭାବ, ମଣିଷର ବିକାଶ ସହିତ ସେଇ ଚେତନାର ବିକାଶ । ମଣିଷର ଚରମ ଉଦ୍ଦେଶ୍ୟ, ତାର ସେହି ମାନବିକ ଚେତନାର ଚରମତ୍ୱ ପ୍ରାପ୍ତି । ଜୀବନର ସେଇ ବିକାଶ- ପ୍ରକ୍ରିୟା ହେଉଛି ତାର ସେଇ ଚେତନାର ଉନ୍ମୁକ୍ତିର ପ୍ରକ୍ରିୟା । ସେଇ ଉନ୍ମୁକ୍ତିର ପ୍ରକ୍ରିୟା ଭିତରେ ଜଗନ୍ନାଥଙ୍କ ପ୍ରକାଶ ।

ଜଗନ୍ନାଥଙ୍କୁ ବେଦରେ ଆବିଷ୍କାର କରିବାରେ ପଣ୍ଡିତ ନୀଳକଣ୍ଠ ହେଲେ ସର୍ବପ୍ରଧାନ । ସେ ଋକ୍‌ବେଦର ଦଶମ ମଣ୍ଡଳ ୧୨୯ ନାସଦୀୟ ସୂକ୍ତ ଉଦ୍ଧାର କରି, ପରେ ଗୀତାର ଆଶ୍ରୟ ନେଇ, ଶେଷରେ ପୁରୁଷୋତ୍ତମଙ୍କୁ ପୁରୀର ପୁରୁଷୋତ୍ତମ କରିଆଣି ଥୋଇଛନ୍ତି ବୋଲି ଆଗରୁ ଦର୍ଶାଯାଇଛି । ସେହି ସୂକ୍ତଟିକୁ ବହୁ ପଣ୍ଡିତ ବିଭିନ୍ନ ଭାବରେ ବ୍ୟାଖ୍ୟା କରିଛନ୍ତି । ସେମାନଙ୍କର ମୌଳିକ ଫରକ ହେଲା — ସତ୍ ଅସତ୍‌ର ଅର୍ଥ ନେଇ । ବୈଦିକ ପଣ୍ଡିତମାନେ ସତ୍‌କୁ ସତ୍ୟ, ଇନ୍ଦ୍ରିୟଲବ୍‌ଧ ଭୌତିକ ଜଗତ ଏବଂ ଅସତ୍‌କୁ ଅସତ୍ୟ ଓ ଇନ୍ଦ୍ରିୟାତୀତ ଜଗତ୍ ବୋଲି ବିଚାରନ୍ତି । କିନ୍ତୁ ଉପନିଷଦ୍‌ର ପଣ୍ଡିତ ଓ ଉପାସକଙ୍କ କ୍ଷେତ୍ରରେ ବିଷୟଟି ପୂରାପୂରି ଓଲଟା । ତାହା ସଂପୂର୍ଣ୍ଣ ବଦଳିଯାଇଛି । ସେମାନଙ୍କ ନିକଟରେ ସତ୍‌ର ଅର୍ଥ ଇନ୍ଦ୍ରିୟାତୀତ ଗୂଢ ରହସ୍ୟମୟ ବିଷୟ, ବ୍ରହ୍ମ ଏବଂ ଅସତ୍ ହେଲା ଇନ୍ଦ୍ରିୟଲବ୍‌ଧ ଭୌତିକ ପ୍ରତ୍ୟକ୍ଷମାନ ଜଗତ୍ ।

ଏଇ ପାର୍ଥକ୍ୟର ପରିଣତି ସହିତ ଗୋଟିଏ ମତ ଭାବବାଦ, ବ୍ରହ୍ମ, ଭଗବାନଙ୍କ ପାଖରେ ପହଞ୍ଚିଲାବେଳେ ଅନ୍ୟଟି ଯାଇଛି ଇନ୍ଦ୍ରିୟଲବ୍‌ଧ ବାସ୍ତବତା ପ୍ରତି, ଭୌତିକ ଦିଗକୁ । ପଣ୍ଡିତ ନୀଳକଣ୍ଠ ଉପନିଷଦ ଓ ହିନ୍ଦୁ ରକ୍ଷଣଶୀଳତାକୁ ହିଁ ନିଜର ଆଧାର କରିଛନ୍ତି । ତଦ୍ଦ୍ୱାରା ସେ ନିଜେ ନିଜର ମତକୁ ଖଣ୍ଡନ କରିଛନ୍ତି, ଯାହାକି ତାଙ୍କ ଆଖିରେ ପଡ଼ିନାହିଁ । ବିଷୟଟିର ଗୁରୁତ୍ୱ ଦୃଷ୍ଟିରୁ ପ୍ରଥମେ ସୃଷ୍ଟି ସମ୍ବନ୍ଧୀୟ ତାଙ୍କର ସେହି ଆଲୋଚନା — ନାସଦୀୟ ସୂକ୍ତଟି କଣ, ତାହା ଦେଖାଯାଉ । ତାର ତର୍ଜମା ତଳେ ପ୍ରଦତ୍ତ ହେଲା—

‘‘ଆରମ୍ଭରେ ସତ୍ ନ ଥିଲା କି ଅସତ୍ ନଥିଲା । (ସତ୍ତା କି ବସ୍ତୁ ନ ଥିଲା, ବା ଅସତ୍ତା କି ଶୂନ୍ୟ ନ ଥିଲା) ବ୍ୟୋମ ନ ଥିଲା କି ତା ବାହାରେ ବ୍ୟାପ୍ତି ନ ଥିଲା । ସେ ଅବସ୍ଥାରେ କିଏ କାହାକୁ ଆବରଣ କରି ରହିଥିଲା, କାହାର ସ୍ଥାନ କେଉଁଠି ଥିଲା, କିଏ ବା କହିପାରେ ଅଥଳ ଗଭୀର ଜଳ କ'ଣ ସେତେବେଳେ ଥିଲା ?’’

‘‘ସେତେବେଳେ ମୃତ୍ୟୁ ନ ଥିଲା କି ଅମରତ୍ୱ ନ ଥିଲା । କୌଣସି ନଶ୍ୱର ବା ଅବିନଶ୍ୱର ନ ଥିଲା । ରାତ୍ରି ଦିନର କୌଣସି ଭେଦ ନ ଥିଲା । ଯାହା ଥିଲା

କେବଳ ଆପଣାଛାଏଁ ନିଶ୍ୱାସ - ପ୍ରଶ୍ୱାସଯୁକ୍ତ ଥିଲା, ଯଦିଚ୍ କୌଣସି ବାୟୁ ନ ଥିଲା । ତା ବାଦ୍ ବାହାରେ ଆଉ କିଛି ନ ଥିଲା ।

''ସବୁକିଛି କ'ଣ ଅନ୍ଧକାର ଦ୍ୱାରା ଆଚ୍ଛନ୍ନ ଥିଲା ? ସମସ୍ତଟା ଚିହ୍ନବର୍ଜିତ ଜଳମୟ ! ଚତୁର୍ଦ୍ଦିଗବ୍ୟାପୀ ଗୋଟାଏ ଉତ୍ସ, ଉଦ୍ଦେଶ୍ୟହୀନ ମାୟା ? ତପସ୍ୟା ଶକ୍ତି ଦ୍ୱାରା ସୃଷ୍ଟି !

''ମୂଳ ବୀଜ କଥା, ଯାହା ସତ୍ତା ଓ ସତ୍ତାର ବାହାରେ , ତା ସୃଷ୍ଟି କାମନା ସୃଷ୍ଟି କଲା, ତାହା ଅସତ୍ (ଅସତ୍‌- ଶୂନ୍ୟ - ଇନ୍ଦ୍ରିୟ - ଜଗତର ବାହାରେ) ସହିତ ସତ୍ (ସତ୍ତା-ଇନ୍ଦ୍ରିୟ - ଜଗତ୍)ର ସମ୍ପର୍କ ଜ୍ଞାନୀମାନେ, ଯେଉଁମାନେ ବୁଝନ୍ତି, ଗଭୀର ଚିନ୍ତା କରନ୍ତି, ତାହା ଦୃଢଭାବେ ଘୋଷଣା କରନ୍ତି ।

''ସୂତ୍ର, ସେଇ ରଶ୍ମି ଚାରିଆଡେ ବିସ୍ତାରିତ । ତାହା ଉପରେ ଥିଲା, ନିମ୍ନରେ ଥିଲା, ସେଇ ରଶ୍ମି କେତେ ଉତ୍ପାଦନଶୀଳ ହେଲା, ତାହା ବୃଦ୍ଧି ପାଇଲା । ସେମାନେ ବଡ (ବିରାଟ) ହେଲେ, ସେମାନଙ୍କ ଆତ୍ମ-ଅଙ୍କୁରିତ ଶକ୍ତି ଏଆଡେ, ସେଆଡେ,ସର୍ବତ୍ର ପରିବ୍ୟାପ୍ତ ହେଲା ।

''ଏଇ ସତ୍ (ବିଶ୍ୱର) ବିସ୍ତାର କାହାଠୁ ଆସିଲା, କେଉଁଠୁ ଆସିଲା, କିଏ କହିପାରେ ? କିଏ ବା ଠିକ୍‌କରି ଜାଣେ ? ଏପରିକି ଦେବତାମାନେ ସୃଷ୍ଟି ପରେ ଆସିଛନ୍ତି । ବିଶ୍ୱର ମୂଳ ଉତ୍ସ୍ କିଏବା ଜାଣିବ ?

ବିଶ୍ୱର ବିସ୍ତାର ଉପରେ, ପରିବ୍ୟାପ୍ତ ବ୍ୟୋମରେ ଯେଉଁ ଦେବ ଅଧିଷ୍ଠିତ, ସେ ସୃଷ୍ଟି ହୋଇ ପାରିଥାନ୍ତି ବା ନ ହୋଇ ପାରିଥାନ୍ତି । ସେ ମୂଳ ଉତ୍ସ ଜାଣିପାରି ଥାଆନ୍ତି ବା ତା ବି ନହୋଇପାରେ । ଏପରିକି ସେ ମଧ୍ୟ ଜାଣି ନପାରନ୍ତି''(୧)

ପ୍ରକୃତରେ ଯେଉଁସବୁ କାର୍ଯ୍ୟ ଓ ସୌନ୍ଦର୍ଯ୍ୟକୁ ଋଷିମାନେ ଦେବ ବୋଲି ପୂଜା କରୁଥିଲେ, ସେମାନେ ଆଜିର ଦେବତା ନୁହନ୍ତି । ସେମାନେ ନିଜେ ମଧ୍ୟ ଏକକ ସୃଷ୍ଟି — ଅର୍ଥାତ୍ ଏକ କାର୍ଯ୍ୟମାତ୍ର । ତେଣୁ କାରଣକୁ , କିଏ ଆଦି — ଏଇ ତାର ଉତ୍ତର — ଏଇ ଉତ୍ତର ଦେବା ମଣିଷର ମଧ୍ୟ ସାଧ ନାହିଁ । ତାହାହିଁ ଋଷିଙ୍କର ସ୍ୱୀକାରୋକ୍ତି ।

ଋଷିକବିଙ୍କର ମୂଳପ୍ରଶ୍ନ, 'ଏ ବିଶ୍ୱ କେଉଁଠୁ ଆସିଲା ? କିଏ କହିବ ? ଦେବତାମାନେ ଜାଣନ୍ତି ନାହିଁ । ସନ୍ଦେହ ପ୍ରକାଶ କରିଛନ୍ତି । ଅଥଚ ପଣ୍ଡିତ ନୀଳକଣ୍ଠ ନିଃସନ୍ଦେହରେ ଦୃଢଭାବେ କହନ୍ତି -

''ଅବ୍ୟକ୍ତ ବା ଅକ୍ଷର ପୁରୁଷ, ଅଣାକାର । ସୃଷ୍ଟି ହେଉଚି ବ୍ୟକ୍ତ ଓ 'କ୍ଷରପୁରୁଷ' ଠୂଳ ରୂପରେ ବିସ୍ତାର — ଏ ଦୁଇଟି ପୁରୁଷରୁ ଅତୀତ ବା 'ଉତ୍ତମ'

(୧) ଋକ୍‌ବେଦ, ଦଶମ ମଣ୍ଡଳ

ହେଉଛନ୍ତି 'ପୁରୁଷୋତ୍ତମ'। ଏ ହେଉଛନ୍ତି କ୍ଷରପୁରୁଷରୁ ଅତୀତ ବା ଖାଲି କ୍ଷରପୁରୁଷ ନୁହନ୍ତି । ତା ବୋଲି ଏ ଅକ୍ଷର ପୁରୁଷ ନୁହନ୍ତି — ଏ ଅକ୍ଷର ପୁରୁଷଠାରୁ ବି ଉତ୍ତମ । ପୁରୁଷୋତ୍ତମ ହେଉଛନ୍ତି ଦୁଇଟିର ସମନ୍ୱୟ । କୌଣସି ଗୋଟିକର ପୁରା ଧାରଣା ନୁହେଁ — କିନ୍ତୁ କୌଣସି ଗୋଟିଏ ଯେ ନୁହନ୍ତି, ଏ କଥା ବି ନୁହେଁ । ଏକଆଡୁ ବୁଝିଲେ କ୍ଷରପୁରୁଷ, ଅନ୍ୟଆଡୁ ବୁଝିଲେ ଅକ୍ଷର ପୁରୁଷ ହେଉଛନ୍ତି ପୁରୁଷୋତ୍ତମ ।'' (୧) (କ୍ଷରମାନେ ନିତ୍ୟବିନାଶୀ, ଅକ୍ଷର ହେଲା ଅବିନାଶୀ ବ୍ରହ୍ମ ।)

ପୁଣି ୧୬୪ ପୃଷ୍ଠାରେ ସେ କହନ୍ତି ''ଲୋକରେ ବୋଇଲେ ଜଗତଜନଙ୍କ ଉପାସନା ପାଇଁ ସେ ହେଉଛନ୍ତି ପୁରୁଷୋତ୍ତମ । ବେଦରେ ବୋଇଲେ, ଜ୍ଞାନରେ ବା ତତ୍ତ୍ୱଦର୍ଶନରେ ସେ ମଧ ହେଉଛନ୍ତି ସେଇ ପୁରୁଷୋତ୍ତମ । ଏଠାରେ ଲକ୍ଷ୍ୟ କରିବାର ଅଛି, ଗୀତାରେ ପୁରୁଷୋତ୍ତମ ତତ୍ତ୍ୱର ଯେଉଁ ବ୍ୟାଖ୍ୟା ଦିଆଯାଇଛି, ଆଗରୁ ଲୋକରେ ପ୍ରଚଳିତ ଥିବା କୌଣସି ଉପାସ୍ୟ ଦେବତା ପୁରୁଷୋତ୍ତମଙ୍କୁ ଦାର୍ଶନିକ ଭାବେ ବୁଝାଇବାପାଇଁ ତା କୁହାଯାଇଛି । ଗୀତାର ତତ୍ତ୍ୱଟି ପ୍ରକାଶିତ ଓ ପ୍ରଚାରିତ ହେଲାବେଳକୁ, ଏଇ ଦର୍ଶନର ସଂକେତ ପ୍ରକାଶ ହେଲାବେଳକୁ, ପୁରୁଷୋତ୍ତଙ୍କ ଉପାସନା ପ୍ରତିଷ୍ଠିତ ହୋଇସାରିଥିଲା । ମହାଭାରତର 'ସପ୍ତଶ୍ଳୋକୀ' ସେତେବେଳେ ରଚନା ହୋଇ ସାରିଥିଲା । ଗୀତାକୁ କୃଷ୍ଣ-ଶିଷ୍ୟମାନେ ଯେତେବେଳେ 'ସପ୍ତଶତୀ' କରି ସମ୍ପାଦନା କରିଥିଲେ, ସେତେବେଳେ ଲୋକରେ ଓ ଜ୍ଞାନରେ ପୁରୁଷୋତ୍ତମକୁଇ ଆର୍ଯ୍ୟ ସାହିତ୍ୟର ଶ୍ରେଷ୍ଠ ସମ୍ପଦ ରୂପେ ପ୍ରକାଶ କରିଥିଲେ ବୋଲି ଅନୁମାନ ...... ତାହା ଏହି କଳିଙ୍ଗରେ ହୋଇଥିଲା ଏବଂ ଓଡିଆଙ୍କ ପୂର୍ବସୂରୀମାନେ କରିଥିଲେ....'' ଓ ଲୋକରେ ଉପାସ୍ୟ ଦେବତା ରୂପେ ପୁରୁଷୋତ୍ତମ ହେଉଛନ୍ତି ପ୍ରାଚୀନ କଳିଙ୍ଗ ବା ଏବ ଓଡିଶାର ପୁରୁଷୋତ୍ତମ —ପୁରୀ ବା ପୁରୀର ଜଗନ୍ନାଥ ।''

ସେଇ ହିନ୍ଦୁତ୍ୱଭାବ ଜଗନ୍ନାଥଙ୍କୁ ଅଣଆର୍ଯ୍ୟ ଆଦିମ ଅଧିବାସୀଙ୍କ ଘରେ ଜନ୍ମ ହେବାକୁ ଛାଡିଦିଏ ନାହିଁ । ତେଣେ ଜଗନ୍ନାଥ ଯେ ସାମ୍ୟ ମୈତ୍ରୀ ଓ ପ୍ରୀତିକୁ ଘେନି ଜନ୍ମଲାଭ କରିଛନ୍ତି, ତାହା ମଧ ଏହାଦ୍ୱାରା ଅସ୍ୱୀକାର କରାଯାଏ । ଗୀତା ସମ୍ପର୍କରେ ବିଶଦ ଆଲୋଚନା ପରେ କରିବା ।

ଲକ୍ଷ୍ୟ କରିବା ବିଷୟ, କାହିଁକି ଓ କେତେବେଳେ ଋଷିକବିଙ୍କ ମନରେ ସେଇ ସୃଷ୍ଟିର ପ୍ରଶ୍ନ ଦେଖାଗଲା ? କ'ଣ ତାର କାରଣ ? ଏକମାତ୍ର କାରଣ ହେଉଛି ଋଷି କବିଗଣ ତାଙ୍କର ସେଇ ଆଦିମ ଧାରଣା, ପ୍ରାକୃତିକ ପ୍ରପଞ୍ଚ ଦ୍ୱାରା ଆଉ ସନ୍ତୁଷ୍ଟ ନୁହଁନ୍ତି । ଖୋଜିଛନ୍ତି ତାର ମୂଳ ଉତ୍ସ କେଉଁଠି ? ତା'ର ଆଦ୍ୟ କାରଣ କ'ଣ ? କ୍ଷିତି, ଅପ୍, ମରୁତ୍, ବ୍ୟୋମ, ତେଜସ୍ ଯାହାକୁ ଅନ୍ତିମ ବାସ୍ତବତା ବୋଲି ଧରାଯାଏ, — ତାହା ପୁଣି ଆସିଲା କୁଆଡୁ ? ସେ ପୁଣି କାହାର ସୃଷ୍ଟି ? ବିଶ୍ୱର ସେହି ଅଖଣ୍ଡ

---

(୧) ଓଡ଼ିଆ ସାହିତ୍ୟର କ୍ରମ ପରିଣାମ, ପଣ୍ଡିତ ନୀଳକଣ୍ଠ ଦାସ, ପୃ-୧୬୩ ।

ଐକ୍ୟର ମୌଳିକ ବିଷୟ ଆବିଷ୍କାର ହେଲା ତାଙ୍କର ପ୍ରଶ୍ନର ଉଦ୍ଦେଶ୍ୟ । ସେହି ପ୍ରଶ୍ନ ଉଠିଛି ବେଦର ଆଦିମ ଭୌତିକବାଦ ବା ଉପନିଷଦର ପ୍ରାକ୍-ଭାବବାଦର ମଧ୍ୟବର୍ତ୍ତୀ କାଳରେ । ତା ମାନେ, ଋକ୍‌ବେଦର ସୃଷ୍ଟି-ତତ୍ତ୍ୱ ଉପରେ ବିଶ୍ୱାସ ଲୋପପାଇଛି, ତେଣେ ସେପର୍ଯ୍ୟନ୍ତ ଉପନିଷଦର ସୃଷ୍ଟିତତ୍ତ୍ୱ — ଆତ୍ମା, ବ୍ରହ୍ମ, ପରମାତ୍ମା ଆଦିର ଆବିଷ୍କାର ସମ୍ଭବ ହୋଇନାହିଁ । ଋଷିମାନେ ସେଠି ପହଞ୍ଚିବାରେ ସମର୍ଥ ହୋଇ ପାରି ନାହାନ୍ତି । ତେଣୁ ସେମାନେ ନିଜର ଉତ୍‌ଥାପିତ ପ୍ରଶ୍ନର ଉତ୍ତର ଦେବାରେ ସମର୍ଥ ନୁହନ୍ତି । ପରିଣତି ସ୍ୱରୂପ ଘୋର ସଂଶୟ ଭିତରେ ପଡିଛନ୍ତି । ଏଥିରେ କୌଣସି ଗୂଢ ଜ୍ଞାନ ବା ଗୋଟାଏ କିଛି ବିରାଟ ରହସ୍ୟର ପ୍ରଶ୍ନ ନାହିଁ । ତାହା ଶିଶୁସୁଲଭ ସରଳତା । ଅନୁସନ୍ଧିତ୍ସୁ ମନର ଏକ ଅପୂର୍ବ କଳ୍ପନା । ମାନବ ଚିନ୍ତାର ସାମାଜିକ ଐତିହାସିକ ପ୍ରକ୍ରିୟା ମଧ୍ୟରେ ବିଚାର କଲେ ସେଇ ପ୍ରଶ୍ନର ରହସ୍ୟ, ଆଉ ତାର ଅବୋଧତା ସ୍ୱତଃ ପରିଷ୍କାର ହୋଇଥାଏ । କିନ୍ତୁ ହିନ୍ଦୁଧର୍ମ ଓ ବିଦଗ୍ଧ ପଣ୍ଡିତଗଣ ତାକୁ ନିଜର ପୂର୍ବକଳ୍ପିତ ବଦ୍ଧମୂଳ ଦୃଷ୍ଟିରେ ଦେଖନ୍ତି । ତାଙ୍କଲାଗି ଉକ୍ତ ସୂକ୍ତର ସଂଶୟଯୁକ୍ତ ଅନୁସନ୍ଧିତ୍ସା, ବିଭ୍ରାନ୍ତିକର ଚିନ୍ତା ହୁଏ ଏକ ମହାନ୍ ଗୂଢଜ୍ଞାନ । ମାନବ ଚିନ୍ତାର ସର୍ବୋଚ୍ଚ ଶିଖର ।

ଜଗନ୍ନାଥ ଏକ ପୌରାଣିକ କଳ୍ପନା ନୁହନ୍ତି । ସିଏ ଇତିହାସର ଏକ କଠୋର ବାସ୍ତବତା । ଇତିହାସର ଚିହ୍ନ ତାଙ୍କ ଦେହରେ ପରିସ୍ଫୁଟ । ପ୍ରତ୍ନତତ୍ତ୍ୱ, ନୃତତ୍ତ୍ୱ, ସମାଜ ତତ୍ତ୍ୱ, ଧର୍ମ, ଦର୍ଶନ, ଅର୍ଥନୀତି ଓ ରାଜନୀତି ଆଦି ଯେତେଗୁଡିଏ ବିଷୟକୁ ନେଇ ଇତିହାସ ଗଢା — ଯାହାର ବିକାଶ ଭିତରେ ଦେଇ ମଣିଷର ବିକାଶ — ସେହିପରି ପ୍ରତ୍ୟେକଟି ବିଷୟର ଦାଗ ପ୍ରତ୍ୟକ୍ଷରେ ହେଉ ବା ପରୋକ୍ଷରେ ହେଉ, ସୁସ୍ପଷ୍ଟ ବା ଅସ୍ପଷ୍ଟ ଭାବରେ ହେଉ, ସେଗୁଡିକୁ ଧାରଣ କରିଛନ୍ତି ଜଗନ୍ନାଥ । ସେହି ଚିହ୍ନଗୁଡିକର ନିର୍ଣ୍ଣୟ ଓ ନିରୀକ୍ଷଣ, ତାର ବ୍ୟାଖ୍ୟା ଆଉ ବିଶ୍ଳେଷଣ — ହେଉଛି ଜଗନ୍ନାଥଙ୍କର ଆବିଷ୍କାର । ତେଣୁ କେବଳ ମାତ୍ର ଧର୍ମ ବିଶ୍ୱାସ, କାହାଣୀ କିମ୍ବଦନ୍ତୀ ବା ଆଧ୍ୟାତ୍ମିକତାର ଆଖିରେ ଜଗନ୍ନାଥଙ୍କୁ ଧରିବାକୁ ଯିବା ହେବ ଏକଦେଶଦର୍ଶିତା — ଖଣ୍ଡିତ, ତେଣୁ ପ୍ରାସଙ୍ଗିକତା-ବିହୀନ । କାରଣ ସେହି ଧର୍ମ, କିମ୍ବଦନ୍ତୀ ବା ଆଧ୍ୟାତ୍ମିକତାର ସୃଷ୍ଟି ପୂର୍ବରୁ ଜଗନ୍ନାଥଙ୍କର ଜନ୍ମ । ବିଚାରିଲେ, ଜଗନ୍ନାଥଙ୍କ ସୃଷ୍ଟିକୁ ଧରି ସେସବୁର ସୃଷ୍ଟି । ତେଣୁ ସେସବୁର ବିଲୋପ ପରେ ମଧ୍ୟ ଜଗନ୍ନାଥ ସେହିପରି ରହିଥିବେ । ଯେଉଁଠି ଧର୍ମ ବିନା ଈଶ୍ୱର ନାହାନ୍ତି, ସେଠି ଧର୍ମର ବିଲୋପରେ ଈଶ୍ୱରଙ୍କ ବିଲୁପ୍ତି ସ୍ୱାଭାବିକ । କିନ୍ତୁ ଧର୍ମ ଆଉ ଈଶ୍ୱରଙ୍କ ପୂର୍ବରୁ ଜଗନ୍ନାଥ ରହିଛନ୍ତି, ପରେ ମଧ୍ୟ ରହିଥିବେ, ଯେହେତୁ ସିଏ, ସମସ୍ତଙ୍କ ଊର୍ଦ୍ଧ୍ୱରେ । ମଣିଷ ସହ ସିଏ ସମ୍ପୃକ୍ତ ଓ ସେହି ମଣିଷର ସୃଷ୍ଟି ଓ ସେହି ମାନବତାର ଅଭିବ୍ୟକ୍ତି, — ଭାବନାରାଜ୍ୟରେ ନୁହେଁ, ମଣିଷର କାର୍ଯ୍ୟକ୍ଷେତ୍ରରେ, ତାଙ୍କ ସହ ସମ୍ବନ୍ଧରେ ସେ ଆବଦ୍ଧ । ସେହି ମଣିଷର ମର୍ମ୍ମ, ତାର ମାନବିକତା ଲାଭର ମାର୍ଗ ହେଉଛି ଅସଲରେ ଜଗନ୍ନାଥଙ୍କୁ ଲାଭ କରିବାର ଏକମାତ୍ର ମାର୍ଗ । ବିନା ମାନବତାର ପ୍ରାପ୍ତିରେ ଜଗନ୍ନାଥଙ୍କ ପ୍ରାପ୍ତି ନାହିଁ ।

ପ୍ରଥମେ, ମଣିଷକୁ ଦେଖିବାକୁ ହେଲେ ଆଗ ବୃକ୍ଷମୂଳକୁ ଅନାଇବାକୁ ହେବ । ବୃକ୍ଷହିଁ ମଣିଷର ଜୀବନ୍ । ଆରମ୍ଭରେ ସିଏ ବୃକ୍ଷମୂଳରେ ରହିଛି । ଖରା ବର୍ଷାରେ ତାକୁହିଁ ଆଶ୍ରା କରିଛି । ତାର ଡାଳପତ୍ରରେ କୁଟୀର ବାନ୍ଧିଛି । ପ୍ରଥମେ ତାରି ବକଳା ପିନ୍ଧି ନିଜର ଲଜ୍ଜା ନିବାରଣ କରିଛି । ତାକୁହିଁ ଜାଳି ଥଣ୍ଡାରୁ ଓ ବନ୍ୟଜନ୍ତୁଙ୍କ ଆକ୍ରମଣରୁ ନିଜକୁ ରକ୍ଷାକରିଛି । ତାରି ଡାଳକୁ ପ୍ରଥମେ ନିଜର ଆୟୁଧଭାବେ ବ୍ୟବହାର କରିଛି, ଶେଷରେ ତାରି ଫଳ ଖାଇ ବଞ୍ଚିଛି । ବୃକ୍ଷ ହୋଇଛି ତାର ଜୀବନର ଏକ ଅପରିହାର୍ଯ୍ୟ ଅଙ୍ଗ । ଯାହାବିନା ସେ ତିଷ୍ଠି ନ ପାରେ । ତେଣୁ ପ୍ରଥମେ ସେ ପୂଜା କରିଛି ବୃକ୍ଷକୁ । ସେ ପୂଜା ଏବେବି ପ୍ରଚଳିତ । କାଳକ୍ରମେ ଏଇ ବୃକ୍ଷପୂଜାରୁ ଦାରୁଦେବତାର ପହଞ୍ଚିଛି । ଶେଷରେ ଦାରୁଦେବତାଙ୍କର ପ୍ରକାଶ ଘଟିଛି ପରମ ଦେବ ଭାବରେ — ଜଗନ୍ନାଥ ରୂପରେ ।

ଜଗନ୍ନାଥଙ୍କ ବର୍ତ୍ତମାନ ରୂପରେ ପହଞ୍ଚିବାକୁ ନିଶ୍ଚୟ ବହୁ ବର୍ଷ ବିତି ଯାଇଛି । ତାହା ହୋଇଛି ବୃକ୍ଷ, ଦାରୁ, ସ୍ତମ୍ଭ ଓ ମୂର୍ତ୍ତିରୂପକୁ ରୂପାନ୍ତର । ''ବୃକ୍ଷ ଶୁଷ୍କ ହୋଇଗଲେ ମଧ୍ୟ ତାକୁ ଦାରୁରୂପେ ପୂଜା କରିଛି । ଏବେ ମଧ୍ୟ କେତେକ ଖାଣ୍ଟି ଶବରଙ୍କ ଭିତରେ ମାଦଳା ପୂଜା ପ୍ରଚଳିତ ।'' (ବେଣୀମାଧବ ପାଢ଼ୀ)

ସେଇ ରୂପାନ୍ତର ପଛରେ ଏକ ବିରାଟ ସାମାଜିକ, ଅର୍ଥନୈତିକ ରୂପାନ୍ତର — ସଭ୍ୟତା ସଂସ୍କୃତିର ଏକ ମୌଳିକ ପରିବର୍ତ୍ତନ ନିହିତ । ତାହା ହେଉଛି ଅଣଆର୍ଯ୍ୟ ସଭ୍ୟତାରୁ ଆର୍ଯ୍ୟ ସଭ୍ୟତାକୁ, ଆଦିମ ଅଧିବାସୀଙ୍କ ସଂସ୍କୃତିରୁ ହିନ୍ଦୁ ସଂସ୍କୃତିକୁ ଏବଂ ପ୍ରାଚୀନ ଯୁଗରୁ ମଧ୍ୟଯୁଗକୁ ଅଗ୍ରଗତି । ପଦେ କଥାରେ କହିଲେ, ଜଗନ୍ନାଥ ହେଲେ ଅଣ-ଆର୍ଯ୍ୟ ଓ ଆର୍ଯ୍ୟ, ଶବର-ଦ୍ରାବିଡ ଓ ହିନ୍ଦୁ ଧର୍ମଧାରଣାର ଏକ ଅପୂର୍ବ ମିଳନ । ସେଇ ମିଳନର ସ୍ରୋତ ଜଗନ୍ନାଥଙ୍କ ଜୀବନରେ ପ୍ରତ୍ୟେକ କ୍ଷେତ୍ରରେ ବୋହିବାରେ ଲାଗିଛି । ଏପରିକି ଜଗନ୍ନାଥ ମରିଗଲେ(ନବ କଳେବରରେ) ସେ ବ୍ରାହ୍ମଣ ନୁହନ୍ତି — ଦଇତାମାନଙ୍କ କାନ୍ଧରେ ଶ୍ମଶାନକୁ (କୋଇଲି ବୈକୁଣ୍ଠକୁ) ଯାଆନ୍ତି ।

ମୂର୍ତ୍ତିପୂଜା କୌଣସି ଅଣଆର୍ଯ୍ୟ ବା ଆଦିବାସୀଙ୍କ ଭିତରେ ନାହିଁ । ସେଇପରି ଆଦିମ ଅବସ୍ଥାରେ ଆର୍ଯ୍ୟମାନଙ୍କ ଭିତରେ ବି ନ ଥିଲା । ବେଦରେ ମଧ୍ୟ ମୂର୍ତ୍ତିପୂଜାର କୌଣସି ସୂଚନା ନାହିଁ । ବୈଦିକ ଦେବତାଙ୍କର କୌଣସି ରୂପ ବା ମୂର୍ତ୍ତି ନାହିଁ । ପୁରାଣ ଯୁଗରେ ଦେବତାଙ୍କର ରୂପର କଳ୍ପନା ଓ ବର୍ଣ୍ଣନା ସହିତ ମୂର୍ତ୍ତିର ଆରମ୍ଭ ଘଟିଛି । ରୂପର ବର୍ଣ୍ଣନା ଅନୁଯାୟୀ ତାଙ୍କ ମୂର୍ତ୍ତିର କଳ୍ପନା । ପ୍ରଥମେ ଆରମ୍ଭ ହୋଇଛି ମୁହଁ । ମୁହଁ ହିଁ ପ୍ରଥମ ପରିଚୟର ସ୍ଥଳୀ । ମୂର୍ତ୍ତିପରେ ଆସିଛି ମନ୍ଦିର ନିର୍ମାଣ, ତା ସହିତ ଭୋଗରାଗ — ପୂଜାପାଠ ଇତ୍ୟାଦି । ସେଥିଲାଗି ଜମିବାଡ଼ି ଖଞ୍ଜା, ପୂଜକ ନିଯୁକ୍ତି ଓ ଦେବଦେବୀଙ୍କର ମାହାତ୍ମ୍ୟର ପ୍ରଚାର ଏବଂ ସେସବୁ ଲାଗି ରାଜା, ସାମନ୍ତ, ଧନୀ ଲୋକଙ୍କର ପ୍ରଚୁର ଦାନ । ପ୍ରଚ୍ଛନ୍ନରେ ତା ହେଉଛି ତାଙ୍କ ସ୍ୱାର୍ଥ ପ୍ରସାରର ଆୟୁଧ । ସେଇ ମୂର୍ତ୍ତି ପୂଜାର ବିକାଶ ଅବଶ୍ୟ ଦିନକରେ ଘଟିନାହିଁ ।

ଆଦିବାସୀ ଲୋକେ ବୃକ୍ଷ, କାଷ୍ଠ, ପାଷାଣ ପୂଜା କରିଥାଆନ୍ତି । ସେ ଦେବତାଙ୍କର ହାତଗୋଡ, ମୁହଁ, ଆଖିକାନ ନ ଥାଏ । ସେମାନେ ଗାଁ ମୁଣ୍ଡ ଗଛମୂଳରେ ରହିଥା'ନ୍ତି । ହିନ୍ଦୁମାନଙ୍କ ଗ୍ରାମଦେବତୀ ସେହି ପ୍ରଥାର ଅନୁସୃତି । ଏବେ ସେମାନେ ହିନ୍ଦୁ ଦେବଦେବୀ ଭାବେ ପରିଚିତ । ସେଇହିଁ ଗ୍ରାମର ରକ୍ଷକ । ବସନ୍ତ ମହାମାରୀ ହେଲେ ତାଙ୍କର ମାଜଣା ହୁଏ । ଭଲ ମନ୍ଦ ଲାଗି ତାଙ୍କୁ ଡକାପଡ଼େ । ମାନସିକ କରି ବଳି ଦିଆଯାଏ । ସେଇ କାଠ ଓ ପଥରମୁଣ୍ଡା ଦେବତାଙ୍କଠି କେତେ ଜାଗାରେ ସିନ୍ଦୂର ବୋଳି, ଆଖି ଲଗାଇ ତାଙ୍କୁ ଗୋଟାଏ ମୁଣ୍ଡାକୃତି ରୂପ ଦିଆଯାଇଥାଏ । କେତେଠି ଲୋକେ ମାନସିକ କରି ତାଙ୍କୁ ଚକ୍ଷୁଦାନ କରନ୍ତି । ''ଗଞ୍ଜାମର ମାଳ ଅଞ୍ଚଳରେ ଶବର ଜାତି ଅଦ୍ୟାପି ମୁଖ ଓ ଚକ୍ଷୁ ବିଶିଷ୍ଟ କାଠସ୍ତମ୍ଭ ପୂଜା କରନ୍ତି ।'' (ବେଣୀମାଧବ ପାଢ଼ୀ) ବିଚାର କଲେ ଜଣାଯାଏ, ଦାରୁ ଓ ଶିଳାପୂଜାରୁ ମୂର୍ତ୍ତିପୂଜା ଉଦ୍ଭବ । ସେ ଦିଗରେ ଏହାହିଁ ତା'ର ମଧ୍ୟବର୍ତ୍ତୀ ସ୍ତର ।

ଏହି ସ୍ତରରେ ପୂର୍ବର ସଙ୍କେତଗୁଡ଼ିକ ମୂର୍ତ୍ତିରେ ପରିଣତ ହେଲା । ସେମାନେ କାଠ, ପାଷାଣର ସଙ୍କେତ ମୂର୍ତ୍ତି ଛାଡି ମାନବାକୃତି ଧାରଣ କଲେ — ସେ ଦିଗକୁ ଗତିକଲେ । ପ୍ରତ୍ୟେକ ଦେବଦେବୀ ସେଇ ମୂର୍ତ୍ତି ମାଧ୍ୟମରେ ତାଙ୍କ 'ନିଜସ୍ୱ' ରୂପରେ ପ୍ରକଟିତ ହେଲେ । ଶେଷରେ ଏମିତିକି ଦେବତାଙ୍କ ସଂଖ୍ୟା ଲୋକସଂଖ୍ୟାଠାରୁ ବଳିଗଲା । ହିନ୍ଦୁ ମତରେ ଏମାନଙ୍କ ସଂଖ୍ୟା — ତେତିଶକୋଟି ହେଲାବେଳେ ଷୋଡ଼ଶ ଶତାବ୍ଦୀରେ ଭାରତର ଲୋକସଂଖ୍ୟା ଥିଲା ମାତ୍ର ଦଶକୋଟି । ଏପରିକି ଊନବିଂଶ ଶତାବ୍ଦୀ ଶେଷକୁ ଜନଗଣନା ବେଳେ ସେହି ସଂଖ୍ୟା ପଚିଶ କୋଟିରୁ ସାମାନ୍ୟ ଅଧିକ ଥିଲା ।

ମୂର୍ତ୍ତିପୂଜା ଅଣଆର୍ଯ୍ୟ ଆଦିବାସୀଙ୍କ ମଧ୍ୟରେ ପ୍ରବେଶ କଲାବେଳେ ବୃକ୍ଷପୂଜା ଆର୍ଯ୍ୟ ବା ହିନ୍ଦୁମାନଙ୍କ ମଧ୍ୟରେ ଅନୁପ୍ରବେଶ କରିଛି । ଏଇ ବୃକ୍ଷ କହିଲେ ସାଧାରଣତଃ ଅଶ୍ୱତ୍‌ଥ ଗଛକୁ ବୁଝାଏ । ଆଦିମ କାଳରେ ପ୍ରୋଟୋ ଅଷ୍ଟ୍ରେଲିଆନ୍-ମାନେ ଅଶ୍ୱତ୍‌ଥ ବୃକ୍ଷକୁ ପୂଜା କରୁଥିଲେ । ଅଥର୍ବବେଦ ଅନୁସାରେ ଅଶ୍ୱତ୍‌ଥ ବୃକ୍ଷ ଦେବତାଙ୍କର ବାସ-ସ୍ଥଳୀ । ଜୈନମାନଙ୍କ ପାଇଁ ଅଶ୍ୱତ୍‌ଥ ବୃକ୍ଷ ମଧ୍ୟ ଧର୍ମ । ବୁଦ୍ଧଙ୍କ ବୁଦ୍ଧତ୍ୱ ପ୍ରାପ୍ତି ମଧ୍ୟ ସେଇ ବୃକ୍ଷତଳେ । କୃଷ୍ଣଙ୍କର ମୃତ୍ୟୁ କେବଳ ସେଇ ବୃକ୍ଷମୂଳେ ଘଟିନାହିଁ — ବିଷ୍ଣୁଙ୍କର ଅନ୍ୟନାମ ମଧ୍ୟ ଅଶ୍ୱତ୍‌ଥ ''ନ୍ୟଗ୍ରୋଧୋଦୁମ୍ବରୋଽଶ୍ୱତ୍ଥ...'' (ବିଷ୍ଣୁ ସହସ୍ରନାମ) । ଏହା ଜଣାଇଦିଏ, ଶବର ସଭ୍ୟତାର ବୃକ୍ଷପୂଜାର ବଳିଷ୍ଠ ପ୍ରଭାବରେ ସମସ୍ତ ଭାରତୀୟ ଧର୍ମ ଯେପରି ପ୍ରଭାବିତ ।

ଅନାର୍ଯ୍ୟ ଓ ଆର୍ଯ୍ୟ, ଆଦିବାସୀ ଓ ହିନ୍ଦୁ ଏଇ ଦୁଇ ସଭ୍ୟତାର ସମନ୍ୱୟର ରୂପ ହେଲେ ଜଗନ୍ନାଥ । ଜଗନ୍ନାଥଙ୍କ ମୂର୍ତ୍ତିଠାରୁ ଆରମ୍ଭ କରି ତାଙ୍କର ଅନ୍ତରର ମର୍ମ ପର୍ଯ୍ୟନ୍ତ ସର୍ବତ୍ର ସେଇ ମିଳନର ଧାରା ପ୍ରବାହିତ — ସେଇ ସମନ୍ୱୟର ଭାବ ପ୍ରକଟିତ । ସେଇ ଦୁହିଁଙ୍କ ମିଳନହିଁ ଓଡ଼ିଶାର ସଭ୍ୟତା, ଭାଷା ଓ ସଂସ୍କୃତିର ଭିତ୍ତି । ତାହାହିଁ ତାର ଚରିତ୍ରର ସ୍ୱତନ୍ତ୍ରତା, ଜୀବନର ବୈଶିଷ୍ଟ୍ୟ । ସେଇ ବୈଶିଷ୍ଟ୍ୟକୁ

ବାଦଦେଇ ଓଡ଼ିଶାର ଅତୀତକୁ ଯେପରି କଳ୍ପନା କରାଯାଇ ପାରେନା— ଭବିଷ୍ୟତକୁ କଳ୍ପନା କରିବା ସେପରି ଅସମ୍ଭବ । ସେହି ମିଳନ ଏପରି ନିବିଡ ଓ ଅଭିନ୍ନ ଯେ, ସେଥିରୁ ଗୋଟିକୁ ଧରି ଓଡିଶାକୁ ବୁଝିବାକୁ ଯିବା ଅର୍ଥ ବାସ୍ତବତାକୁ ବିକୃତ କରି ଦେଖିବା । ସେଇ ମିଳନରେ ସାମାନ୍ୟ ବ୍ୟତିକ୍ରମକୁ ପ୍ରଶ୍ରୟ ଦେବାଟା, ଯେତେ କ୍ଷୀଣ ଓ ଅନିଚ୍ଛାକୃତ ହେଲେ ବି ଓଡ଼ିଶା ପକ୍ଷରେ ଘୋର ବିପର୍ଯ୍ୟୟର କାରଣ । ଓଡ଼ିଶାର ସର୍ବାଙ୍ଗୀଣ ଉନ୍ନତି ନିର୍ଭର କରେ ସେଇ ମିଳନର ଉତ୍ତରୋତ୍ତର ବିକାଶ ଉପରେ । ସେଇ ମିଳନର ବିକାଶର ଏକମାତ୍ର ଆଧାର ହେଉଛି ଯୁଗ ଯୁଗର ସେଇ ଅକାଟ୍ୟ ଅଭିଜ୍ଞତା — ସାମ୍ୟ ମୈତ୍ରୀ, ପ୍ରୀତିର ଆହ୍ୱାନ — ଯାହା ଜଗନ୍ନାଥଙ୍କଠାରେ ପ୍ରତିଫଳିତ । ତାକୁ ସମଗ୍ର ରାଜ୍ୟ, ଦେଶ, ସାରା ବିଶ୍ୱରେ ବିସ୍ତାରିତ କରିବାକୁ ହେବ । ମଣିଷ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ତାକୁ ପଲ୍ଲବିତ କରିବାକୁ ହେବ । ତାହାହିଁ ଜଗନ୍ନଥଙ୍କର ଯଥାର୍ଥ ଉପଲବ୍‌ଧି ।

ସେଇ ଦୁଇ ସଭ୍ୟତା ଓ ସଂସ୍କୃତିର ମିଳନର ଧାରା ଜଗନ୍ନାଥଙ୍କ ଶରୀର, ତାଙ୍କର ସେବା ପୂଜା, ବିଧି ବିଧନଠୁ ଆରମ୍ଭ କରି ତାଙ୍କର ଶ୍ମଶାନକୁ ଯିବାଯାଏ ସର୍ବତ୍ର ବହିବାରେ ଲାଗିଛି । କାଳର ଗତି ଭିତରେ ତାର ସେଇ ଅଲିଭା ସ୍ୱାକ୍ଷର ଏବେ ବି ଜାଜ୍ୱାଲ୍ୟମାନ । ଜଗନ୍ନାଥଙ୍କ ମୂର୍ତ୍ତି ହେଉଛି ଶବର ଜାତିର ଦାରୁ ଦେବତା ବା କାଠ ସ୍ତମ୍ଭ ଉପରେ ଆର୍ଯ୍ୟ ଦେବତାଙ୍କ ମୁଣ୍ଡର ଆପନା । କୌଣସି ହିନ୍ଦୁ ଦେବତା ଆଦିବାସୀ ଦେବତାଙ୍କ ପରି ମାଦଳ ନୁହନ୍ତି, କି କୌଣସି ଆଦିବାସୀ ଦେବତା ହିନ୍ଦୁ ଦେବତାଙ୍କ ଭଳି ମସ୍ତକଧାରୀ ନୁହଁନ୍ତି । ସେଇ ଦୁହିଁଙ୍କ ମିଳନ ହେତୁ ଜଗନ୍ନାଥ କେବଳ ମାଦଳ ନୁହନ୍ତି — ମାନବାକୃତି । କିନ୍ତୁ ପୂର୍ଣ୍ଣ ମାନବ ମୂର୍ତ୍ତି ନୁହନ୍ତି ମାଦଳ ମଧ ।

ଜଗନ୍ନାଥ ଆଦିବାସୀ ସମାଜରୁ ଜାତ । କିନ୍ତୁ ସେ କେବଳ ସେଇ ସମାଜରେ ଆବଦ୍ଧ ନୁହନ୍ତି । ସେ ହିନ୍ଦୁ ଧର୍ମରେ ଦୀକ୍ଷିତ, ତାର ବିଧାନରେ ଚାଳିତ । ତାହାହେଲେ ମଧ, ଆଦିବାସୀ ଆଚାର ଜଗନ୍ନାଥଙ୍କର ଅସ୍ଥି ମଜ୍ଜାଗତ । ହିନ୍ଦୁତ୍ୱ ତାଙ୍କୁ ଗ୍ରାସ କରିବାରେ ସମର୍ଥ ହୋଇନାହିଁ । ଭାରତରେ ଯେତେ ଯେତେ ମତ ଓ ବିଶ୍ୱାସ, ଧର୍ମ ଓ ଧାରଣା ଦେଖାଦେଇଛି, ସେ ସମସ୍ତ ତୁହାକୁ ତୁହା ଜଗନ୍ନାଥଙ୍କୁ ଆକ୍ରମଣ କରିଛନ୍ତି । ଆପ୍ରାଣ ଉଦ୍ୟମ କରିଛନ୍ତି ତାଙ୍କୁ ଅଧିକାର କରିବାଲାଗି । ତାଙ୍କର ସେଇ ଆକ୍ରମଣର ଚିହ୍ନ ଏବେବି ଜଗନ୍ନଥଙ୍କ ଦେହରେ ସ୍ମାରକୀ ଭାବରେ ରହିଛି । ହେଲେ, ସେ ସମସ୍ତେ ପ୍ରତିହତ । ଜଗନ୍ନାଥ ସେହିପରି ବିଦ୍ୟମାନ । ତାହା କଣ ଜଗନ୍ନାଥଙ୍କର ନିଜସ୍ୱ ଅନ୍ତର୍ନିହିତ ଶକ୍ତିର ପରିଚୟ ନୁହେଁ ? ସେ ଶକ୍ତି ଅନ୍ୟ କିଛି ନୂହେଁ — ସେହି ସାମ୍ୟ, ମୈତ୍ରୀ ଆଉ ପ୍ରୀତି ।

ସର୍ବପ୍ରାଚୀନ ଧାରଣା ହେଉଛନ୍ତି ଜଗନ୍ନାଥ । ମଣିଷର ଜନ୍ମକାଳ ଭଳି ଜଗନ୍ନାଥଙ୍କ ସଠିକ କାଳ ନିରୂପଣ ସମ୍ଭବ ନୁହେଁ, ଯେହେତୁ ସେ ମଣିଷ ସହିତ ପ୍ରାୟ ଯୋଡ଼ିହୋଇ ରହିଛନ୍ତି । ସେହିକାଳରେ ଜଗନ୍ନାଥ କେଉଁ ନାମରେ କେଉଁ ରୂପରେ କେଉଁ ସ୍ଥାନରେ କିପରି ଭାବରେ ରହିଥିଲେ, ତାହା ଜାଣିବା ସମ୍ଭବ ନ

ହେଲେ ମଧ୍ୟ ଜଗନ୍ନାଥ- ଧାରଣାର ଯେ ଇଙ୍ଗୀତ ରହିଥିଲା, ସେଥିରେ ସନ୍ଦେହ ନାହିଁ । କାରଣ ସେହି ଧାରଣାର ଇଙ୍ଗିତ ମଣିଷର ନିଜସ୍ୱ ଅବସ୍ଥା ଓ ଆକାଂକ୍ଷାର ଧାରଣାଠାରୁ ଅଭିନ୍ନ । ଏହା ସତ୍ତ୍ୱେ ଜଗନ୍ନାଥ ଆର୍ଯ୍ୟଦେବତା ନୁହଁନ୍ତି । ଆର୍ଯ୍ୟମାନେ ଭାରତକୁ ଆସିଲାବେଳେ ଯେତେ ଯାହା ଆଣିଥାନ୍ତୁ ନା କାହିଁକି, ଜଗନ୍ନାଥଙ୍କୁ ସଙ୍ଗରେ ଘେନି ଆସିନାହାନ୍ତି । ଅନ୍ୟ ହିନ୍ଦୁ ଦେବତାଙ୍କ ଭଳି ମଧ୍ୟ ତାଙ୍କର ଆବିର୍ଭାବ ଘଟିନାହିଁ । ସେମାନେ ମଧ୍ୟ ସେତେବେଳେ କୌଣସି ଦାରୁ-ଦେବତାର ଉପାସକ ନ ଥିଲେ । ବେଦରେ ବର୍ଣ୍ଣିତ ଇନ୍ଦ୍ର, ବରୁଣ, ମରୁତ ଆଦି ଦେବତା ଅର୍ଥରେ ଆଦୌ ଦେବତା ନୁହନ୍ତି । ସେମାନଙ୍କୁ ପାର୍ଥିବ କାମନା ପୂରଣ ଲାଗି ପୂଜା ପ୍ରାର୍ଥନା କରାଯାଉ ନ ଥିଲା । 'ପୂଜା' ଶବ୍ଦଟି ଦ୍ରାବିଡ଼ ଶବ୍ଦ । ସେକାଳ ଆର୍ଯ୍ୟଙ୍କୁ ତାହା ଜଣା ନଥିଲା । ପୂଜାର ମୂଳ ହେଉଛି ପୂଜକ, ମନ୍ତ୍ରପାଠ, ଭୋଗରାଗ ଇତ୍ୟାଦି । ବୈଦିକ ଦେବତା କ୍ଷେତ୍ରରେ ସେସବୁର ପ୍ରଶ୍ନ ଉଠେନାହିଁ । ସେ ଦେବତାମାନେ ମଣିଷଙ୍କ ପାଖକୁ ଆସୁଥିଲେ, ତାଙ୍କ ସଭା ସମିତିରେ ବସୁଥିଲେ; ତାଙ୍କ ସହିତ ଭୋଜିଭାତରେ ଯୋଗ ଦେଉଥିଲେ । ପରବର୍ତ୍ତୀ କାଳରେ ଆର୍ଯ୍ୟମାନଙ୍କ ଭିତରେ ବର୍ଣ୍ଣାଶ୍ରମ ଧର୍ମ, ଚାତୁର୍ବର୍ଣ୍ଣ୍ୟ, ଜାତିଭେଦ ଦେଖା ଦେଇଛି । ଅଥଚ ଅଣ-ଆର୍ଯ୍ୟଙ୍କ ଦାରୁପୂଜାର ମୂଳ ହେଉଛି ଜାତିଶୂନ୍ୟତା, ଜାତିହୀନତା, ସାମ୍ୟ ଆଉ ମୈତ୍ରୀ ଓ ପ୍ରୀତି ।

ଏପରିକି ଖୋଦ୍ ଜଗନ୍ନାଥ ଶବ୍ଦଟି ମଧ୍ୟ ବୈଦିକ ନୁହେଁ । ତାହା ପାଲିମୂଳକ କି ସଂସ୍କୃତମୂଳକ ବି ନୁହେଁ । ତାକୁ ଶବରମୂଳକ କହିବା ଯୁକ୍ତିଯୁକ୍ତ ହେବ । ମନେହୁଏ, ତାହା ଶବର ଭାଷାରେ ବ୍ୟବହୃତ ଜଗନ୍ତ ଶବ୍ଦରୁ ଆସିଛି, ସଂସ୍କୃତରୁ ନୁହେଁ । 'ଜଗନ୍ତ' ହେଉଛି ଶବର ଦେବତା । (ଦାରୁଦେବତା ....ପୃ ୫୨) ଯେଉଁ ବୃକ୍ଷକୁ ସେମାନେ (ଜଗନ୍ତ) ବୋଲି କହନ୍ତି, ତାକୁ କାଟନ୍ତି ନାହିଁ । ତାଙ୍କର ବିଶ୍ୱାସ ଯେ 'କିତୁଙ୍ଗ' (ଦେବତା) ସେଥିରେ ଅଛି । *

ସେମାନେ ଯେଉଁ ବୃକ୍ଷକୁ ବା ଦାରୁକୁ 'ଜଗନ୍ତ' ଆଖ୍ୟାରେ ପୂଜା କରୁଥିଲେ ତାହା ଜଗନ୍ନାଥ ଶବ୍ଦର ମୂଳ ।'' ତେଣୁ ଜଗନ୍ନାଥ ହେଲେ ଦାରୁଦେବତା । ଦାରୁ ହେଉଛି ପ୍ରୋଟୋ - ଅଷ୍ଟ୍ରେଲିଅଡ୍ ବୃକ୍ଷଉପାସନାର ସ୍ମାରକ । ବୃକ୍ଷପୂଜା, ଦାରୁପୂଜା ଓ ଶିଳା ଉପାସନା ଏସବୁ ଶାବରୀ ପ୍ରଥା । ଏବେସୁଦ୍ଧା ଶବର ଅନ୍ୟ କାହାକୁ ଦେବତା ବୋଲି ସ୍ୱୀକାର କରେନାହିଁ । ତା ଦୃଷ୍ଟିରେ ଦାରୁହିଁ ପୂଜ୍ୟଦେବତା, ସୃଷ୍ଟିକର୍ତ୍ତା ଓ ଶୁଭାଶୁଭ ପ୍ରଦାତା ।

---

*('କିତୁଙ୍ଗ'ର ଦଶଟି ରୂପ ଅଛି — ଜଗନ୍ତ- ତୋଡ- ତୁମନ - ଭୀମ୍ - ରଂରଂ, ଗର୍ସିଦ୍- ରାମନ୍ - ଯାଜପାନ- ମଉ- ତିତି- । ଏ ଦଶଟି ରୂପ କୌଣସି ଉତ୍ସବ କାଳରେ ଘର କାନ୍ଥରେ ଲେଖାଯାଏ । କେତେକ ଏହାକୁ ଜଗନ୍ନାଥଙ୍କ ଦଶ ଅବତାରର ମୂଳ ବୋଲି ଅନୁମାନ କରନ୍ତି । କୋହ୍ଲ ଓ ମୁଣ୍ଡା ପ୍ରଭୃତି ଶବରମାନେ ହେଉଛନ୍ତି ପ୍ରୋଟୋଅଷ୍ଟ୍ରେଲିୟଡ୍ । ଆର୍ଯ୍ୟମାନେ ଆସିବାର ବହୁପୂର୍ବରୁ ସେମାନେ ଏଠି ବାସ କରୁଥିଲେ । ତାଙ୍କର ବହୁ ଅଷ୍ଟ୍ରିକ ଶବ୍ଦ ସଂସ୍କୃତ ଭାଷାରେ ମିଶିଯାଇ ପରେ ଓଡ଼ିଆ ଭାଷାକୁ ଆସିଛି ।

ଓଡ଼ିଶାରେ ମନ୍ଦିରର ଅଭାବ ନାହିଁ । କିନ୍ତୁ ଏକମାତ୍ର ଜଗନ୍ନାଥ ମନ୍ଦିରହିଁ ଶ୍ରୀମନ୍ଦିର । ଶ୍ରୀ ' କହିଲେ ସୁନ୍ଦର, ମଙ୍ଗଳକର ଓ ଐଶ୍ୱର୍ଯ୍ୟଶାଳୀ । ଜଗନ୍ନାଥ ମନ୍ଦିରର ସୌନ୍ଦର୍ଯ୍ୟ କେବଳ ତାର ଶିଳ୍ପସ୍ଥାପତ୍ୟରେ ନାହିଁ । ତାହା ରହିଛି ତାର ପ୍ରତ୍ୟେକଟି ବ୍ୟବସ୍ଥା ଓ ବିଧାନ ଭିତରେ । ତାର ସମ୍ମାନ ଓ ମର୍ଯ୍ୟାଦା ମଧ୍ୟରେ — ଯାହା ପ୍ରକାଶ କରେ 'ସର୍ବମଙ୍ଗଳ' ଜଗନ୍ନାଥ ।

ଜଗନ୍ନାଥଙ୍କ ପ୍ରଥମ ମନ୍ଦିର ନିର୍ମାଣ ନେଇ ମତଭେଦ ଥାଇପାରେ । କିନ୍ତୁ ବର୍ତ୍ତମାନର ମନ୍ଦିର ଯେ ଦ୍ୱାଦଶ ଶତାବ୍ଦୀରେ ଅନନ୍ତ ବର୍ମନ୍ ଚୋଡ଼ଗଙ୍ଗ ଦେବଙ୍କ ଦ୍ୱାରା ୧୦୭୮-୧୧୪୭ରେ ନିର୍ମିତ, ସେଥିରେ ସନ୍ଦେହ ନାହିଁ । କୁହାଯାଏ, ତା ପୂର୍ବରୁ ଅଷ୍ଟମ ଶତାବ୍ଦୀରେ ଭୌମକର ଆଗ ଏକ ମନ୍ଦିର ଆରମ୍ଭ କରିଥିଲେ । ତା' ପରେ ପ୍ରଥମ ଯଯାତି ( ୯୦୨-୯୫୫)ଙ୍କ ଦ୍ୱାରା ସେଉଁ ମନ୍ଦିର ନିର୍ମିତ ହୋଇଥିଲା, ତାର ଅବଶେଷ ମିଳିନାହିଁ । ଜଗନ୍ନାଥ ମନ୍ଦିର ନିର୍ମାଣ ଦିଗରେ ଏହି ଆବଶ୍ୟକତା କେଉଁଠି ? — ତାର କାରଣ କ'ଣ ? ଶହ ଶହ ବର୍ଷ ଧରି ଜଗନ୍ନାଥଙ୍କ ଅଭାବ ନିଶ୍ଚୟ ଅନୁଭୂତ ହେଉଥିଲା । ସେଥିଲାଗି ଜଣକ ପରେ ଜଣେ ତାଙ୍କ ମନ୍ଦିର ନିର୍ମାଣ ଉଦ୍ୟମରେ ଲାଗିଥିଲେ । ଭୌମକର ଆସିଥିଲେ ଆସାମରୁ —ଉତ୍ତରରୁ । ଯଯାତି ଆସିଥିଲେ ପଶ୍ଚିମରୁ, ଆଉ ଚୋଡ଼ଗଙ୍ଗଙ୍କ ଆଗମନ ଦକ୍ଷିଣରୁ । ଏମାନେ କେହି ନିୟମ ଅନୁଯାୟୀ ଉତ୍କଳ ରାଜସିଂହାସନର ବିଧିବଦ୍ଧ ଅଧିକାରୀ ନୁହନ୍ତି । ତେଣୁ ତାଙ୍କୁ ନିଜର ହକ୍ ପ୍ରତିଷ୍ଠା କରିବାକୁ ହେବ । ସେମାନେ ସମସ୍ତେ ଅନୁଭବ କରିଥିଲେ ଯେ — ନିଜର ଶାସନ ପ୍ରତିଷ୍ଠା କରିବାକୁ ହେଲେ ଜଗନ୍ନାଥଙ୍କ ଆଶ୍ରୟ ଆବଶ୍ୟମ୍ଭାବୀ । ତା'ମାନେ ସେତେବେଳେ ଜଗନ୍ନାଥଙ୍କ ପ୍ରଭାବ ଏପରି ହୋଇଛି, ଯାହାର ସୁଯୋଗ ନେବାକୁ ହେବ ଓ ତାକୁ ପ୍ରୟୋଗ କରିବା ଦ୍ୱାରା ନିଜର ଶାସନକୁ ସୁଦୃଢ଼ ଓ ପ୍ରସାରିତ କରିବାକୁ ପଡ଼ିବ । ମନ୍ଦିର ନିର୍ମାଣ ଯେ ଏକ ରାଜନୈତିକ ଆବଶ୍ୟକତା — ତାହା ମଧ୍ୟ ପରବର୍ତ୍ତୀ ଘଟଣାବଳୀ ଦ୍ୱାରା ପ୍ରମାଣିତ । ବୌଦ୍ଧଧର୍ମ ସାହାଯ୍ୟରେ ଅଶୋକଙ୍କ ସାମ୍ରାଜ୍ୟ ବିସ୍ତାର ସହିତ ଏହାକୁ ସହଜରେ ତୁଳନା କରାଯାଇପାରେ । ଏବର ଅଯୋଧ୍ୟା ରାମମନ୍ଦିର ନିର୍ମାଣ ବି.ଜେ.ପି ଆନ୍ଦୋଳନ ଓ ସରକାରଗଠନ ତାର ସଦ୍ୟ ଦୃଷ୍ଟାନ୍ତ ।

ଏଥିପୂର୍ବରୁ ପୁରୁଷୋତ୍ତମ, ନରସିଂହ ଆଦି ଯେଉଁ ନାମରେ ହେଉନା କାହିଁକି, ଜଗନ୍ନାଥ ଧାରଣା ପ୍ରଚଳିତ ଥିଲା । ତାହା ଲୋକଙ୍କ ଭିତରେ ନିଶ୍ଚୟ ନିଜର ପ୍ରଭାବ ବିସ୍ତାର କରିଥିଲା । ସେହି ଜଗନ୍ନାଥଙ୍କ ଧର୍ମବିଶ୍ୱାସ ଆବରଣ ତଳେ ନିଜକୁ ଆଇନସଙ୍ଗତ ଓ ପ୍ରତିଷ୍ଠିତ କରିବା ଥିଲା ସେହି ରାଜାମାନଙ୍କ ଉଦ୍ଦେଶ୍ୟ । ଓଡ଼ିଶାର ଆଦିମ ଅଧିବାସୀଙ୍କୁ ଆୟତ୍ତ ଓ ଅଧିକାର କରିବାକୁ ହେଲେ ଆଗ ତାଙ୍କର ଦେବତାଙ୍କୁ ଅଧିକାର କରିବାକୁ ପଡ଼ିବ । ତାଙ୍କୁ ଆପଣାର କରିନେବାକୁ ହେବ । ତା ବିନା ଏଇ ବିରାଟ ଅଣଆର୍ଯ୍ୟ ଅଧ୍ୟୁଷିତ ଅଞ୍ଚଳ ଦଖଲ ସମ୍ଭବ ନୁହେଁ ।

ଜଗନ୍ନାଥଙ୍କଠାରେ ହିନ୍ଦୁ ମତ ଓ ଧାରଣାର ଯେତେ ଅନୁପ୍ରବେଶ ଘଟିଲେ ବି ଆଦିବାସୀ ଧାରଣାର ପ୍ରାଧାନ୍ୟ ରହିଛି — ଏବେ ବି ତାହା ପରିସ୍ଫୁଟ । ମଗଧ

ସାମ୍ରାଜ୍ୟର ଶାସନ ସହିତ ଓଡ଼ିଶାର ସମ୍ବନ୍ଧ, ବୌଦ୍ଧଧର୍ମର ପ୍ରସାର, ପରବର୍ତ୍ତୀ କାଳରେ ବ୍ରାହ୍ମଣ ଧର୍ମର ଅଭ୍ୟୁତ୍ଥାନ ଆଦି ଓଡ଼ିଶାକୁ ବିଶେଷ ଭାବେ ପ୍ରଭାବିତ କରିଛି । କିନ୍ତୁ ଯେତେହେଲେ ବି ସେହି ଆଦିବାସୀ ଧାରଣାର ପ୍ରାଧାନ୍ୟକୁ ଲୋପ କରିପାରି ନାହିଁ । ତାର ମୂଳରେ ରହିଛି ଓଡ଼ିଶାର ସାମାଜିକ, ଅର୍ଥନୈତିକ ଅବସ୍ଥା । ସେହି ଅନୁନ୍ନତ ସାମାଜିକ, ଅର୍ଥନୈତିକ ଅବସ୍ଥା ବଳବତ୍ତର ଥିବାଯାଏ ସେଥିରୁ ଜାତ ଧାରଣାର ଅବସାନ ନାହିଁ । ଏପରିକି ତାର ସେହି ବାସ୍ତବ ଭୌତିକ ଅବସ୍ଥା ଅପସରି ଗଲେ ବି ତାର ସେ ଚିନ୍ତା ଧାରା ବହୁକାଳ ଧରି ଜନସମାଜରେ ବଦ୍ଧମୂଳ ହୋଇ ରହିଥିବ ।

ଅନ୍ୟଦିଗରେ ସେହି ଅବସ୍ଥା ଭିତରେ ଓଡ଼ିଶାରେ କୃଷିର ଉନ୍ନତି ଘଟିଛି । କୁଟୀର ଶିଳ୍ପ, ଧାତୁକାର୍ଯ୍ୟ, ଯୋଗାଯୋଗ ଆଦିର ବିକାଶ ହୋଇଛି । ସେହି ଭିତ୍ତିଭୂମି ବିନା ବିରାଟ ମନ୍ଦିର ନିର୍ମାଣ ସମ୍ଭବ ହୋଇ ନଥାନ୍ତା । ତା' ସାଙ୍ଗକୁ ହିନ୍ଦୁଧର୍ମର ଗୋଟାଏ ଖାସଗୁଣ ରହିଛି — ସମସ୍ତଙ୍କୁ ସଙ୍ଗରେ ଘେନିଯିବା । ତାର ମୂଳ ହେଉଛି— ବ୍ରହ୍ମ ଗୋଟାଏ । ତାହା ସମସ୍ତଙ୍କ ଭିତରେ — ପ୍ରତ୍ୟେକ ମଣିଷ ଭିତରେ ରହିଛି । ଫଳରେ ଜଗନ୍ନାଥଙ୍କ ଦେହରେ ସେହି ବ୍ରହ୍ମ ପ୍ରବେଶ ସହଜ ଓ ସୁଗମ ହୋଇ ଯାଇଛି । ସେହି ଦୁଇ ଧାରଣାର ମିଳନର ପ୍ରକ୍ରିୟା ଦ୍ୱାରା ଆଦିବାସୀଙ୍କ ଉପାସ୍ୟ ଦେବ, ହିନ୍ଦୁଙ୍କର ପରମ ଦେବତାରେ ପରିଣତ ହୋଇଛନ୍ତି । ଏକ ସ୍ଥାନୀୟ ଦେବତା, ଏକ ମହାନ୍ ଜାତୀୟ ଦେବତାର ରୂପ ଗ୍ରହଣ କରିଛନ୍ତି । ତାଙ୍କର ସେହି ଅଜ୍ଞାତ ବାସସ୍ଥଳୀ ଏକ ସୁବିଖ୍ୟାତ ପୁଣ୍ୟପୀଠ ହୋଇ ଉଠିଛି । ବିଭିନ୍ନ ଅଞ୍ଚଳରେ ବିକ୍ଷିପ୍ତ ହୋଇ ପଡ଼ିରହିଥିବା ଦେବଦେବୀଙ୍କ ମଧ୍ୟରେ ଜଗନ୍ନାଥ ସର୍ବୋଚ୍ଚ ଆସନ ଅଧିକାର କରିଛନ୍ତି । ଚତୁର୍ଦିଗରେ ବିକ୍ଷିପ୍ତ ହୋଇ ରହିଥିବା ନରପତିମାନଙ୍କ ମଧ୍ୟରେ ଜଗନ୍ନାଥଙ୍କ ସୁବିଖ୍ୟାତ ଭକ୍ତ ବା ସେବକ — ଅନୁରୂପ ସର୍ବୋଚ୍ଚ ଶ୍ରେଷ୍ଠ ଆସନର ଅଧିକାରୀ ହୋଇଛନ୍ତି । ତେଣୁ ଉତ୍କଳର ଗଜପତି ହୋଇଛନ୍ତି ଜଗନ୍ନାଥଙ୍କର ପ୍ରଥମ ସେବକ ।

ବିକାଶର ଏହି ପ୍ରକ୍ରିୟା ରାଜ୍ୟ ଭିତରେ ଗଜପତିଙ୍କ ଆସନକୁ ଯେପରି ସୁଦୃଢ଼ କରିଛି, ବାହାରେ ତାଙ୍କର ଶାସନର ପ୍ରସାରକୁ ସେହିପରି ସୁଗମ କରିଛି । ସମସ୍ତ ସାମ୍ରାଜ୍ୟ ଜଗନ୍ନାଥଙ୍କୁ ଅର୍ପଣ କରି ରାଜା ହୋଇଛନ୍ତି ଜଗନ୍ନାଥଙ୍କର 'ରାଉତ' — ତାଙ୍କର ପ୍ରତିନିଧି । ସମାନ୍ତବାଦ, ଜଗନ୍ନାଥ ମନ୍ଦିରର ନିର୍ମାଣ, ଧର୍ମର ପ୍ରଚାର ଦ୍ୱାରା ଯେପରି ନିଜକୁ ଅଧିଷ୍ଠିତ କଲା, ଜଗନ୍ନାଥ ସେହିପରି ତାଙ୍କର ବାହୁ ଛାୟାତଳେ ସମାନ୍ତବାଦକୁ ଆଶ୍ରୟ ଦେଲେ । ଓଡ଼ିଶାର ଛୋଟ, ବଡ଼, ପ୍ରତ୍ୟେକ ରାଜା ଏହି ନୀତି ଅନୁସରଣ କଲେ । ସବୁଠି ଜଗନ୍ନାଥ ମନ୍ଦିର ନିର୍ମାଣ ସହ ଆନୁଷଙ୍ଗିକ ବିଧାନମାନ ଗଢ଼ିଉଠିଲା । ଆଦିମ ପ୍ରାକ୍‌ଶ୍ରେଣୀ - ସମାଜର ସେହି ସାମ୍ୟ, ମୈତ୍ରୀ, ପ୍ରୀତିର ଦେବତା ଏବେ ଶ୍ରେଣୀବିଭକ୍ତ ସମାଜରେ, ଠିକ୍ ତାର ବିପରୀତ ଶକ୍ତିରେ ପରିଣତ ହେଲେ । ଶୋଷଣ, ଶାସନ, ସାମ୍ରାଜ୍ୟ ବିସ୍ତାରର ଆୟୁଧ ଭାବେ ବ୍ୟବହୃତ ହେଲେ । ଏପରି କୌଣସି ଘୃଣ୍ୟ, ଜଘନ୍ୟ କାର୍ଯ୍ୟ ନାହିଁ —

ଯାହାକି ଜଗନ୍ନାଥଙ୍କ ନାମରେ ନ କରାଗଲା । ସେଇ ଆଦିବାସୀମାନେ କେବଳ ଯେ ସେମାନଙ୍କର ପ୍ରାକୃତିକ ସମ୍ପଦରୁ ଉତ୍‌ଖାତ ହେଲେ ନୁହେଁ, ସାମାଜିକ ଅଧିକାରରୁ ବଞ୍ଚିତ ହେଲେ ନୁହେଁ, ଅର୍ଥନୈତିକ ଓ ରାଜନୈତିକ ଦିଗରେ ଦାସତ୍ୱର ଶିକାର ହେଲେ ନୁହେଁ — ସେମାନେ ତାଙ୍କର ନିଜସ୍ୱ ଦେବତାର ଆରାଧନାରୁ ମଧ୍ୟ ବିତାଡ଼ିତ ହେଲେ । ମନ୍ଦିର ପ୍ରବେଶ ସେମାନଙ୍କ ଲାଗି ନିଷିଦ୍ଧ ହେଲା । ସେ ଧାରଣା ଆଜି ଏତେଦୂର ବଦ୍ଧମୂଳ, ପରମ୍ପରାଗତ ଯେ, ଏବେ ଆଇନତଃ ନିଷେଧାଜ୍ଞା ଉଠିଥିଲେ ବି ସେମାନେ ସାଧାରଣତଃ କେହି ମନ୍ଦିର ପ୍ରବେଶର ଆବଶ୍ୟକତା ଅନୁଭବ କରନ୍ତି ନାହିଁ ।

ହିନ୍ଦୁତ୍ୱର ପ୍ରଭାବରେ ଆଦିବାସୀ ଦେବତାଙ୍କ ସହ ତାଙ୍କର ଧ୍ୟାନ ଧାରଣା ଆଚାର ବ୍ୟବହାର ଆଦିରେ ପରିବର୍ତ୍ତନ ଆସିଛି ଏବଂ ତାହା ମଧ୍ୟ ଅନ୍ୟଦିଗରେ ହିନ୍ଦୁତ୍ୱର ପରିବର୍ତ୍ତନ ଓ ରୂପାନ୍ତରର କାରଣ ହୋଇଛି । ସେ ଆଲୋଚନା ଏକ ସ୍ୱତନ୍ତ୍ର ବିଷୟ । ମୂର୍ତ୍ତି, ମନ୍ଦିର, ଶିଳା ପୂଜା ବିଧିବିଧାନ ଆଦିର ମୂଳହେଲା ଠାକୁରଙ୍କ ପ୍ରତି ଭକ୍ତି । ସେହି ଭକ୍ତିର ନିଦର୍ଶନ ସ୍ୱରୂପ ନୀତିମାନ ଖଞ୍ଜାହେଲା । ତାହା କରିବା ଖାସ୍ ଏକ ଗୋଷ୍ଠୀ ବ୍ରାହ୍ମଣଙ୍କ ଏକଚାଟିଆ କାର୍ଯ୍ୟହେଲା । ବାହାରୁ ଆଣି ତାଙ୍କୁ ଜମିବାଡ଼ି ଦାନ ଦ୍ୱାରା ପ୍ରତିଷ୍ଠା କରାଗଲା । ସେଇମାନଙ୍କ ପାଇଁ ଶାସନମାନ ବସାଗଲା । ସେମାନେ ଠାକୁରଙ୍କ ସେବକ ହେବା ସହିତ ହେଲେ ରାଜାଙ୍କ ଦୃଢ଼ ସମର୍ଥକ । ରାଜା, ସାମନ୍ତ ଓ ବ୍ରାହ୍ମଣମାନେ ହେଲେ ପରସ୍ପରର ରକ୍ଷକ । ଅବଶ୍ୟ ପରବର୍ତ୍ତୀ କାଳରେ କେତେଠି ସେଇ ବ୍ରାହ୍ମଣ ଓ ରାଜାଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ଦେଖାଦେଇଛି । ତାହା ହୋଇଛି —କିଏ ଜଗନ୍ନାଥଙ୍କୁ ଅଧିକ କଣ୍ଟ୍ରୋଲ କରିବ । କଣ୍ଟ୍ରୋଲ କରିବାଟା ହେଉଛି ଲୋକଙ୍କ ଉପରେ ନିଜର କର୍ତ୍ତୃତ୍ୱ କାଏମ କରିବାର ଉତ୍କୃଷ୍ଟ ଉପାୟ । ଶେଷରେ ରାଜା ଠାକୁରରାଜା ହେଲାବେଳେ ଜଗନ୍ନାଥଙ୍କ ପ୍ରତି ଭକ୍ତି, ରାଜଭକ୍ତିରେ ପରିଣତ ହେଲା । ଥରେ ଭକ୍ତିରେ ବିହ୍ୱଳ ହୋଇଗଲେ ତେଣିକି ଲୋକ ଆତ୍ମହରା ହୁଏ । ସେଇ ବିଶ୍ୱାସ ପଛରେ ମୋହାନ୍ଧ ଭାବରେ ଧାଏଁ, ତାର ଜ୍ଞାନ ରହେନାହିଁ । ତେଣିକି ସବୁକିଛି ତା ଉପରେ ନିର୍ବିଘ୍ନରେ ଚଳାଇ ନିଆଯାଇପାରେ ।

ଏଇ ହେଲା ଆଦିବାସୀ ଦେବତାଙ୍କ ରୂପାନ୍ତର । ଆଦିବାସୀ ଦେବତାଙ୍କ ଠାରେ ଠିକ୍ ଏଇସବୁ ଜିନିଷର ଅଭାବ ରହିଛି । ତାଙ୍କର ମୂର୍ତ୍ତି ନାହିଁ କି ମନ୍ଦିର ନାହିଁ । ସେ ଗାଁ ମୁଣ୍ଡରେ ପଡ଼ିଥାନ୍ତି । ଖଣ୍ଡେ ଉଚ୍ଚଜାଗା ଉପରେ ଖଣ୍ଡେ କାଠ, ପଥର, ଏପରିକି ଖାଲି ପାତ୍ରଟିଏ ମଧ୍ୟ ତାଙ୍କ ଠାକୁର । ତାଙ୍କ ପୂଜା ପାଇଁ କୌଣସି ଜମିବାଡ଼ି ଖଞ୍ଜା ନାହିଁ । ସ୍ୱତନ୍ତ୍ର ପୂଜକ ଜାତି ନାହାନ୍ତି, ଯିଏ ନିଜର ପୂଜାକର୍ମ ଲାଗି ନିଜକୁ ଉଚ୍ଚ ମନେକରି ଅନ୍ୟମାନଙ୍କୁ ହେୟ ମନେକରିବ । ସେ ଠାକୁରଙ୍କ ଲାଗି କୌଣସି ନୀତି ନାହିଁ କି ଭକ୍ତିନାହିଁ । ଦରକାର ପଡ଼ିଲେ ଆପଦ ବିପଦବେଳେ ତାଙ୍କୁ ଡକାଯାଏ । ସେ ମଧ୍ୟ ଡାକଶୁଣି ଆସନ୍ତି । ମଣିଷ ଦେହରେ ପ୍ରବେଶ କରି ଦେଖାଯାଆନ୍ତି । କାଳସୀ ଲାଗନ୍ତି । ପ୍ରତ୍ୟକ୍ଷଭାବେ ଯାହାକୁ ଯାହା କହିବା କଥା କହନ୍ତି, ପ୍ରଶ୍ନର ଉତ୍ତରମାନ ଦିଅନ୍ତି । ଆଦିବାସୀର ସେଇ ଧର୍ମ ଓ ଦେବତା ମଣିଷ

ଭିତରେ ଦେଇ ପ୍ରକାଶ ପାଇଲାବେଳେ ହିନ୍ଦୁଧର୍ମ ଓ ଦେବତା ମୂର୍ତ୍ତିଭିତରେ ତାଙ୍କର ବିଧିବିଧାନରେ ଆବାହନ ଦ୍ୱାରା ଆସନ୍ତି ବୋଲି ବିଶ୍ୱାସ କରାଯାଏ । ବୈଦିକ ଯୁଗରେ ଆଦିମ ଅବସ୍ଥାର ଦେବତାସବୁ ଲୋକଙ୍କ ସଭାକୁ ଆସୁଥିଲେ, ଏକସାଙ୍ଗରେ ଭୋଜନ କରୁଥିଲେ ଏବଂ ତାଙ୍କପାଇଁ ଲଢୁଥିଲେ ମଧ୍ୟ । ଆଦିବାସୀ ଦେବତା ଉଭାହେବା ବା କାଳସୀ ଲାଗିବାଟା ତାରି ଏକ (କୃତ୍ରିମ) ପରମ୍ପରା ମାତ୍ର । ବ୍ୟକ୍ତିଗତ ସମ୍ପତ୍ତିର ଉଦ୍ଭବ ଓ ଶ୍ରେଣୀବିଭାଗ ପରେ, ଏବେ ପୂଜାବିଧି ଦେବତା ଓ ମଣିଷଙ୍କ ମଝିରେ,ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀର ଖାସ କାର୍ଯ୍ୟ ହୋଇଛି, ଯେଉଁମାନଙ୍କ ଲାଗିକି ଶାରୀରିକ କାର୍ଯ୍ୟ ନିଷେଧ - ଏକ ପରାନ୍ନଭୋଜୀ ଶ୍ରେଣୀ ।

ଆଗରୁ କହିଚୁ, ଏବେ ଶ୍ରୀମନ୍ଦିର କେବଳ ଜଗନ୍ନାଥଙ୍କ ନିବାସ ନୁହେଁ - ତାଙ୍କ ସହିତ ହିନ୍ଦୁଧର୍ମର ସମସ୍ତ ଦେବାଦେବୀ - ଶାଳଗ୍ରାମଠାରୁ ବ୍ରହ୍ମାଙ୍କ ପର୍ଯ୍ୟନ୍ତ, ବାଲିଗରଡାଠାରୁ ନିରାକାରଙ୍କ ଯାଏ, ଦୃଷ୍ଟ, ଅଦୃଷ୍ଟ, ସବୁମତ, ବିଶ୍ୱାସର ସୁପବିତ୍ର ସମନ୍ୱିତ ପୀଠ । ତାହା ମଧ୍ୟ ବହୁ ଆଦିବାସୀ ଆଚାର, ବିଚାର, ବିଧି ବ୍ୟବସ୍ଥାକୁ ଅକ୍ଷତ ଭାବେ ଅନୁସରଣ କରେ । ଅନ୍ୟସବୁ ଦେବମନ୍ଦିରର ସୂପକାର ହେଲେ ବ୍ରାହ୍ମଣ । ହିନ୍ଦୁଦେବତା ବ୍ରାହ୍ମଣ ଛଡ଼ା ଅନ୍ୟ କାହା ହାତରେ ଜଳସ୍ପର୍ଶ କରନ୍ତି ନାହିଁ । କିନ୍ତୁ ଏ ପ୍ରକାରର ବ୍ୟତିକ୍ରମ ଜଗନ୍ନାଥ । ଏହାଙ୍କ ପାଚକ ଶ୍ରେଣୀ ହେଲେ ସୁଆର, ଶବର - ବ୍ରାହ୍ମଣଙ୍କ ମିଳିତ ବଂଶଧର (କିମ୍ବଦନ୍ତୀ ଅନୁସାରେ ଏମାନେ ଶବରକନ୍ୟା ଲଳିତା ଏବଂ ବ୍ରାହ୍ମଣ ବିଦ୍ୟାପତିଙ୍କ ଔରସରୁ ଜାତ) । ସେହିପରି ଅନ୍ୟ ଦେବତାଙ୍କ ଭଳି ଜଗନ୍ନାଥଙ୍କ ପୂଜା ବ୍ରାହ୍ମଣଙ୍କ ଏକଚାଟିଆ ନୁହେଁ । ସ୍ନାନଯାତଠାରୁ ବାହୁଡ଼ାଯାତ ପର୍ଯ୍ୟନ୍ତ ପୂଜାର ଅଧିକାରୀ ଦଇତାପତି । ଏମାନେ ଖୋଦ୍ ଶବର ବିଶ୍ୱାବସୁଙ୍କ ବଂଶଧର । ଜଗନ୍ନାଥଙ୍କ ଭୋଗ ପବିତ୍ର ମହାପ୍ରସାଦ - ସେଇ ଶବର ପରମ୍ପରାର ପ୍ରଚଳିତ ପଦ୍ଧତି । ମହାପ୍ରସାଦ ସବୁ କାର୍ଯ୍ୟରେ ଆଗ ଲୋଡ଼ା - ତଦ୍ୱାରା ସବୁ ଅପବିତ୍ର ପବିତ୍ର ହୁଏ । ସେଥିରେ ଜାତି ଅଜାତି ନାହିଁ - ବ୍ରାହ୍ମଣ, ଚଣ୍ଡାଳ ଏକତ୍ର ଭୋଜନ କରନ୍ତି । ଜଣେ ହାତ ପତାଇଲେ ଅନ୍ୟଜଣେ ନାହିଁ କରିଦେବା ପ୍ରଶ୍ନ ନାହିଁ । କେବଳ ଜଗନ୍ନାଥଙ୍କୁ ଛାଡ଼ିଦେଲେ ଅନ୍ୟସବୁ ମନ୍ଦିରର ବିଧାନ ଓଲଟା । ସେଠି ଜାତିଭେଦ ଏତେ ପ୍ରବଳ ଯେ ଅଛବଙ୍କ ଛାଇପଡ଼ିଲେ ସବୁ ଅଶୁଦ୍ଧ ହୋଇଯାଏ । ହିନ୍ଦୁଧର୍ମରେ ଜଣେ ଈଶ୍ୱରଙ୍କୁ ଅସ୍ୱୀକାର କରି ଚଳିଯାଇପାରେ, କିନ୍ତୁ ଜାତି ବିନା ସେ ତିଷ୍ଠି ନପାରେ । ସେ ନିଜର ଜାତିକୁ ତାର ମା ପେଟରୁ ଧରି ଜନ୍ମହୁଏ । *

* ସେଇଭାବ ଆଜି ଏତେ ବଳବତ୍ତର ଯେ, ମଣ୍ଡଳ କମିଶନ ଆନ୍ଦୋଳନ ତାର ଏକ ସଦ୍ୟ ଦୃଷ୍ଟାନ୍ତ । ମଥୁରା ନିକଟସ୍ଥ ମେହେଣ୍ଡା ଗ୍ରାମର ମଇ ୨୬ତାରିଖରେ ୧୯୯୧ଦିନର ଘଟଣାରୁ ଜଣାଯାଏ ଯେ, ଏକ ପ୍ରେମ ବ୍ୟାପାରରେ ଜଣେ ଉଚ୍ଚଜାତିର ଝିଅ ନୀଚଜାତିର ପୁଅସାଙ୍ଗେ ଯିବାରେ ସେ ଦୁହିଁଙ୍କ ସହିତ ତାଙ୍କର ସାହାଯ୍ୟକାରୀଙ୍କୁ ନିସ୍ତୁକ ମାଡ଼ଦେଇ, ଗାଁ ମୁଣ୍ଡରେ ସମସ୍ତଙ୍କ ଆଗରେ ଫାଶୀରେ ଝୁଲାଇ ସେମାନଙ୍କୁ ଜୀବନ୍ତ ଦଗ୍ଧ କରାଯାଇଛି । ଏପରି ଦୃଷ୍ଟାନ୍ତ ଅନେକ—ଉଣାଅଧିକେ ଭାରତର ପ୍ରତି ରାଜ୍ୟରେ । ଏପରି ପ୍ରେମ-ବିବାହ ଘଟିଲେ ଦଙ୍ଗା, ହତ୍ୟା, ଗୃହଦାହ ।

ସେହି ଘୃଣ୍ୟ ଜଘନ୍ୟ ବର୍ବରୋଚିତ ଜାତିଭେଦ ପ୍ରଥା ବିରୋଧରେ ସାମ୍ୟ, ମୈତ୍ରୀ,ପ୍ରୀତିର ଯଦି କିଏ ଡାକ ଦେଉଥାଏ — ସେ ହେଉଛନ୍ତି ଏକମାତ୍ର ଜଗନ୍ନାଥ । ଜଗନ୍ନାଥ ନାମରେ କୌଣସି ଜାତିଗତ, ବର୍ଣ୍ଣଗତ, ଧର୍ମଗତ ବିଦ୍ୱେଷର ସୃଷ୍ଟି ବା ଦଙ୍ଗା ସଂଘର୍ଷର ସୂତ୍ରପାତ କରାଯାଇ ନପାରେ । ଅନ୍ୟସବୁ ଧର୍ମ, ମତ , ଧାରଣା ଓ ବିଶ୍ୱାସ ମାନବକୁ ସଂକୀର୍ଣ୍ଣ ଗଣ୍ଡିଭିତରେ ବାନ୍ଧିଦେଇ ତାକୁ ବିଦୀର୍ଣ୍ଣ, ଖଣ୍ଡ ଖଣ୍ଡ, ବିଦ୍ୱେଷାସିକ୍ତ କଲାବେଳେ, ସେମାନଙ୍କୁ ଐକ୍ୟବଦ୍ଧ ଓ ସମନ୍ୱିତ କରେ ସେଇ ଜଗନ୍ନାଥଙ୍କର ମହାନ୍ ତାତ୍ପର୍ଯ୍ୟ ।

ଜଗନ୍ନାଥ ଭାବ ଏକ ବିଶ୍ୱଜନୀନ ଭାବନା । ଏକ ଐତିହାସିକ ଆବେଗ । ଏକ ସାଂସ୍କୃତିକ ସମନ୍ୱୟ ଏବଂ ବିଶ୍ୱମାନବିକତାର ଏକ ଅଖଣ୍ଡ ଇଙ୍ଗିତରୂପେ ବିଦ୍ୟମାନ । କିନ୍ତୁ ତାହା ସଂଘର୍ଷଶୂନ୍ୟ ନୁହେଁ । ଏପରିକି ଆଧୁନିକ ଯୁଗରେ ଭାରତର ହିନ୍ଦୁ ପ୍ରଧାନମନ୍ତ୍ରୀଙ୍କ ଭଳି ଲୋକଙ୍କ ପାଇଁ ମଧ୍ୟ ମନ୍ଦିର ପ୍ରବେଶ ସାମ୍ପ୍ରଦାୟିକତା-ବାଦୀମାନଙ୍କ ଦ୍ୱାର ନିଷିଦ୍ଧ । *

**ମହତ୍ତ୍ୱର ପରିଣତି ମହିମାରେ-**

ଜଗନ୍ନାଥ ଏତେ ସ୍ୱଚ୍ଛ, ନିର୍ମଳ ଓ ଉନ୍ମୁକ୍ତ ଯେ, ଅନବରତ ଚେଷ୍ଟା ହୋଇଆସିଛି ତାଙ୍କୁ ରହସ୍ୟାବୃତ କରି ରଖିବାରେ । ଅତି ପରିଷ୍କାର ତାଙ୍କର ସେଇ ଆଦିବାସୀ ଚେହେରା, ଚରିତ୍ର ଆଉ ଚଳଣି । ତାହା ଏମିତି ସ୍ପଷ୍ଟ ଓ ଅକାଟ୍ୟ ଯେ ତାଙ୍କର ଆଦିବାସୀ ଉତ୍ପତ୍ତି ସର୍ବତ୍ର ସ୍ୱୀକୃତ । ଅଥଚ ତେଣେ ତାକୁ ଢାଙ୍କିବା ଦିଗରେ ଉଦ୍ୟମରେ ତିଳେହେଲେ ତ୍ରୁଟି ନାହିଁ । ନରସିଂହ, ନାରାୟଣ, କୃଷ୍ଣ, ବିଷ୍ଣୁ, ବୁଦ୍ଧ, ବ୍ରହ୍ମା ଆଦି ହିନ୍ଦୁଧର୍ମର ଯାବତୀୟ ସର୍ବଶ୍ରେଷ୍ଠ ଦେବତା ଓ ସମସ୍ତ ପ୍ରକାର ପରମ୍ପରା ଦ୍ୱାରା ସେ ରୂପାୟିତ । ତାଙ୍କପ୍ରତି ଇନ୍ଦ୍ରିୟାତୀତ ଭାବ, ଐଶ୍ୱରିକ ବିକାଶ, ଜ୍ଞାନାତୀତ ଦର୍ଶନ ଏବଂ ଅବ୍ୟକ୍ତ ସତ୍ତାର ଅଚିନ୍ତ୍ୟ ଶକ୍ତି ଆରୋପ କରାଯାଇଥାଏ । କୁହାଯାଏ, ଜଗନ୍ନାଥ ହେଲେ ସାକାର ଭିତରେ ନିରାକାରଙ୍କ ଆବିର୍ଭାବ । ଏଇପରି ଉକ୍ତି ଓ କିମ୍ବଦନ୍ତୀର ଅଭାବ ନାହିଁ ।

ଅଥଚ, ତାଙ୍କଠାରେ ରହସ୍ୟ ବୋଲି କିଛି ନାହିଁ । ଜଗନ୍ନାଥ ଆଦିମ ମାନବ ସମାଜର ଅକପଟ ପ୍ରତିଫଳନ । ସମାଜ ଜଟିଳ ହେବା ସହିତ ଜଗନ୍ନାଥ ହୋଇ ଉଠିଛନ୍ତି ଦୁର୍ବୋଧ । ସମାଜର ପ୍ରକୃତ ମର୍ମ୍ମ ଆବୃତ ହୋଇଗଲାବେଳେ ସେ ହୋଇଛନ୍ତି ଅଜ୍ଞେୟ । ସମାଜ ଯେତେବେଳେ ନିଜେ ଦୁର୍ଭେଦ୍ୟ, ସେତେବେଳେ ଜଗନ୍ନାଥ ହେଲେ ଗୂଢ଼ ରହସ୍ୟମୟ । ଜି.ଡ଼ି. ତ୍ରିପାଠୀଙ୍କ ଭାଷାରେ "ବିଭିନ୍ନ ସମୟରେ ଲୋକେ ତାଙ୍କୁ

---

* ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ମନ୍ଦିର ପ୍ରବେଶ କରିପାରି ନାହାନ୍ତି ।

(୧) Jagannath Cult and Regional Tradittition of Orissa. G.D. Tripathy,

ଯେପରି ଗଢ଼ିଛନ୍ତି, ସେ ସେହିପରି''(He is only that what people have made to be from time to time) (୧) ତେଣୁ ରହସ୍ୟଶୂନ୍ୟ ତାର ରହସ୍ୟ ଉଦ୍‌ଘାଟନ ତାଙ୍କୁ ସକଳ ରହସ୍ୟର ଆକର କରି ଥୋଇଛି ।

ଯାହା ଆଦିମ ମାନବ ସମାଜର ମୂଳ କଢି ତାହାହିଁ ମାନବିକତାର ଆଦ୍ୟ ଅଙ୍କୁର । ଯାହା ସ୍ୱତଃସ୍ଫୂର୍ତ୍ତ, ତାହାହିଁ ସ୍ୱଭାବତଃ ପ୍ରାକୃତିକ । ଯାହା ତାର ସହଜାତ, ତା ସେଇ ପ୍ରକୃତି ଭଳି ଅନାବିଳ । ସେଥିରେ କୌଣସି ବାହ୍ୟଭାବର ମିଶ୍ରଣ ନାହିଁ । ତା ପକ୍ଷରେ କୌଣସି ନିଜସ୍ୱ ଭାବକୁ ବାଦଦେବାର ପ୍ରୟୋଜନ ନାହିଁ । ତା ହେଉଛି ଜଗନ୍ନାଥଭାବର ଆଦ୍ୟ ଧାରଣା । ମାନବର ବିକାଶ ସହିତ ସମାଜ ଜଟିଳ ହେବାରେ ଜଗନ୍ନାଥଙ୍କ ପ୍ରତି ବିଭିନ୍ନ ଧାରଣା ଓ ବିଶ୍ୱାସ ଆରୋପ କରାଯାଇଛି । ଯୁଗ ଯୁଗର ସେଇ ସମସ୍ତ ଭାବ, ବିଶ୍ୱାସ, ଧର୍ମଧାରଣା ଭିତରେ ଆଉଟା ହୋଇ ଜଗନ୍ନାଥ ହୋଇ ଉଠିଛନ୍ତି ଅବୋଧ — ଏକ ଅପୂର୍ବ ଧାରଣା । ରହସ୍ୟଶୂନ୍ୟତା ଭିତରେ ରହସ୍ୟର ଅନ୍ୱେଷଣ ଦ୍ୱାରା ମଣିଷର ଚିନ୍ତାର ସ୍ରୋତ ବାଧାପ୍ରାପ୍ତ । ତା'ଭିତରେ ସେ ନିଜର ଅନ୍ଧଧାରଣା ଓ ଅଜ୍ଞତାର ଶୃଙ୍ଖଳକୁ ଶକ୍ତ କରିଆସୁଛି ।

ଅତଏବ, ଜଗନ୍ନାଥଙ୍କ ରହସ୍ୟ ଉଦ୍‌ଘାଟନ ହେଉଛି ଅସଲରେ ତାଙ୍କୁ ଗଢିଥିବା ଲୋକଙ୍କର ରହସ୍ୟ ଉଦ୍‌ଘାଟନ । ସେହି ଲୋକଙ୍କର କାର୍ଯ୍ୟକଳାପ, ଧ୍ୟାନଧାରଣା, ଜୀବନର ତାତ୍ପର୍ଯ୍ୟ ଓ ତାର ଉଦ୍ଦେଶ୍ୟ, ଆଭିମୁଖ୍ୟର ଉଦ୍‌ଘାଟନ । ପଦେ କଥାରେ କହିଲେ — ମନୁଷ୍ୟ ସମାଜର ସାମାଜିକ ବିକାଶର ରହସ୍ୟ ଉଦ୍‌ଘାଟନ । ସେଇ ମାନବ ସମାଜର ଉପଲବ୍‌ଧି ବିନା ଜଗନ୍ନାଥଙ୍କ ଉପଲବ୍‌ଧି ନାହିଁ । ଜଗନ୍ନାଥଙ୍କର ପ୍ରକୃତ ମର୍ମ, ତାଙ୍କର ମହତ୍ତ୍ୱ ଓ ଜୀବନର ମାର୍ଗକୁ ଅନୁସରଣ କରିବାକୁ ହେଲେ ଆମକୁ ସମାଜ ବିକାଶର ମାର୍ଗ, ତାର ପରିବର୍ତ୍ତନର ନିୟମ, ତାର ଆଭିମୁଖ୍ୟକୁ ଅନୁସରଣ କରିବାକୁହେବ ; ଦେଖିବାକୁ ହେବ ତାର ପରିଣତି କ'ଣ ? ଯେଉଁ ଦେଶର ଜାତି ଓ ଲୋକଙ୍କ ଭିତରେ ଜଗନ୍ନାଥଙ୍କ ଜନ୍ମ ଓ ତାଙ୍କର ବିକାଶ, ଅନୁସରଣ କରିବାକୁ ହେବ ସେହି ଦେଶ, ଜାତି ଓ ସମାଜର ନିର୍ଦ୍ଦିଷ୍ଟ ବାସ୍ତବତା ଭିତରେ ।

ଜଗନ୍ନାଥଙ୍କ ମହିମା, ମନ୍ଦିର ଆଉ ମୂର୍ତ୍ତି ନେଇ ଗବେଷଣା — ଆଲୋଚନାର ଅଭାବ ନାହିଁ । ଅଥଚ ଜଗନ୍ନାଥଙ୍କ ଅସଲ ମର୍ମ — ଯାଲାଗି ଜଗନ୍ନାଥ ପ୍ରକୃତରେ ଜଗନ୍ନାଥ, ତାଙ୍କର ସେଇ ବୈଶିଷ୍ଟ୍ୟ ଭିତରକୁ ପ୍ରବେଶ କରାଯାଉନାହିଁ । ଜଗନ୍ନାଥଙ୍କ ସେଇ ଭାବ ବା ଆତ୍ମାପ୍ରତି ଦୃଷ୍ଟି ପକାଯାଇନାହିଁ । ଗବେଷକମାନେ ତାଙ୍କ ନିଜସ୍ୱ ମତ ଓ ବିଶ୍ୱାସ ଦ୍ୱାରା ଜଗନ୍ନାଥଙ୍କୁ ଦେଖିବାକୁ , ବୁଝିବାକୁ ଓ ବୁଝାଇବାକୁ ଚାହାନ୍ତି । ଫଳରେ ଜଗନ୍ନାଥଙ୍କ ମର୍ମର ସନ୍ଧାନ ମିଳେନାହିଁ । ତେଣୁ ଯୁଗଯୁଗ ଧରି ସେ ଚରମ ପ୍ରହେଳିକା ହୋଇ ରହିଆସିଛନ୍ତି ।

ଜଗନ୍ନାଥ ସର୍ବୋଚ୍ଚ ହିନ୍ଦୁଦେବତା ହେଲେ ବି ଅନ୍ୟସବୁ ଦେବତାଙ୍କଠାରୁ ସମ୍ପୂର୍ଣ୍ଣ ଫରକ୍ । ଗୁଣାତ୍ମକ ଭାବେ ଭିନ୍ନ । ଯେଉଁ ସବୁ ଦୃଷ୍ଟି ଓ ବିଚାର ଦ୍ୱାରା ଅନ୍ୟସବୁ

ଦେବତାଙ୍କୁ ଦେଖାଯାଏ ଓ ବିଚାର କରାଯାଏ, ତାହା ଜଗନ୍ନାଥଙ୍କ ପ୍ରତି ପ୍ରଯୁଜ୍ୟ ହୋଇ ନ ପାରେ । ରାମ, କୃଷ୍ଣ, ବ୍ରହ୍ମା, ବିଷ୍ଣୁ ଆଦି କୌଣସି ଐତିହାସିକ ଶକ୍ତି ବା ଇତିହାସର ଚରିତ୍ର ନୁହନ୍ତି । ସେମାନେ ସମସ୍ତେ ପୌରାଣିକ । କଳ୍ପନା ବା କିମ୍ବଦନ୍ତୀ ଉପରେ ଗଠିତ । ଜଗନ୍ନାଥ କିନ୍ତୁ ଏକ କଠୋର ସତ୍ୟ, ବାସ୍ତବତା, ଇତିହାସର ଅନିର୍ବାଣ ସତ୍ତା । କଳ୍ପନା ଓ ବାସ୍ତବତା ଭଳି ପୂରାଣ ଓ ଇତିହାସ ପରସ୍ପରର ବିପରୀତ ହେବାରେ ଜଗନ୍ନାଥ ଓ ଅନ୍ୟ ସମସ୍ତ ଦେବଦେବୀ ସେହିପରି ପରସ୍ପରର ବିପରୀତ ଭିତ୍ତି ଉପରେ ପ୍ରତିଷ୍ଠିତ ।

ତେବେ ଗୋଟାଏ ଦିଗରୁ ପୁରାଣରେ ବି ବାସ୍ତବତା ରହିଛି । ପୁରାଣର ଚରିତ୍ରମାନଙ୍କ କାର୍ଯ୍ୟ, ବାଣୀ ଓ ଉପଦେଶରୁ ଗୋଟାଏ ବାସ୍ତବତାର ସୂଚନା ମିଳେ । ତାହା ସେହି କାଳର, ସେହି ସମାଜର ଚିତ୍ର । ସେହି ସମାଜର ଆଚାର, ବ୍ୟବହାର, ଚିନ୍ତା, ଚେତନା ଓ ଦାବୀ, ଆବଶ୍ୟକତାକୁ ପ୍ରକାଶ କରନ୍ତି । ନୂତନ ଯୁଗ ଯେପରି ତାର ଯୁଗସ୍ରଷ୍ଟାଙ୍କ ମାଧ୍ୟମରେ ତାର ନିଜର ସନ୍ଧାନ ଦିଏ, ସେମିତି ଯେଉଁଠି ତା' ଯୁଗସଷ୍ଟାଙ୍କୁ ଜନ୍ମଦେବାରେ ସମର୍ଥ ନୁହେଁ, ସେଠି ତା ନିଜର ସନ୍ଧାନ ଦିଏ ପୁରାଣ-ସୃଷ୍ଟ ଚରିତ୍ରମାନଙ୍କ ଜରିଆରେ । ପ୍ରତ୍ୟେକ ଯୁଗସ୍ରଷ୍ଟା ଏକ ନୂତନ ଯୁଗସୃଷ୍ଟିର କାରଣ ହେଲାବେଳେ ସେଇସବୁ ପୌରାଣିକ ଚରିତ୍ରର ପ୍ରଭାବ ଏକ ନୂତନ ଯୁଗ ପରିବର୍ତ୍ତନର ସୂଚନା ଦିଏ ବା ସୂତ୍ରପାତ କରିଥାଏ । ସେଇ ଶାସ୍ତ୍ର,ପୁରାଣ କାଳ୍ପନିକ ହେଲେ ବି, ତାହା ଭାରତୀୟ ଜୀବନରେ ବିରାଟ ପରିବର୍ତ୍ତନ ଆଣିଛି । ତାର ସେଇ ପ୍ରଭାବ ଏବେ ବି ସମାଜରେ ବଳବତ୍ତର, ଭାରତୀୟ ଜୀବନରୁ ଅବିଚ୍ଛେଦ୍ୟ । ସେଇ ଚରିତ୍ରଙ୍କ ନାମ ନେଇ ଏବେ ବି ଭୋଟ ଲଢାଯାଏ, ତାଙ୍କରି ଆଦର୍ଶରେ ରାଷ୍ଟ୍ରଗଠନର ଆହ୍ୱାନ ପଡ଼େ । ଜଗନ୍ନାଥ କିନ୍ତୁ ଐତିହାସିକ ଓ ପୌରାଣିକ — ଉଭୟ ବାସ୍ତବତାର ପ୍ରତିମୂର୍ତ୍ତି । ସେ ଯେପରି ଇତିହାସର ସୃଷ୍ଟି — ସେହିପରି ପୂରାଣ ଦ୍ୱାରା ପରିପୁଷ୍ଟ ଓ ପରିବ୍ୟାପ୍ତ ।

ଜଗନ୍ନାଥ ସେଇ ସାମ୍ୟ, ମୈତ୍ରୀ ଓ ପ୍ରୀତିରୁ ଉଦ୍‌ଭବ । ତାହାହିଁ ତାଙ୍କର ଆତ୍ମା, ସେଇ ଆତ୍ମା ସେହି ସାମ୍ୟ, ମୈତ୍ରୀ, ପ୍ରୀତି ଭଳି ମୃତ୍ୟୁହୀନ । ତାହା ମୂର୍ତ୍ତି, ମନ୍ଦିରରେ ନାହିଁ । ତା'ପୂର୍ବରୁ ରହିଛି ଓ ଭବିଷ୍ୟତରେ ମଧ୍ୟ ରହିଥିବ ।



ଯାହା ଜଣାଯାଏ ଅଷ୍ଟମ ଶତାବ୍ଦୀ ବେଳକୁ ମୂର୍ତ୍ତି ମନ୍ଦିରରେ ଜଗନ୍ନାଥଙ୍କ ଆବିର୍ଭାବ । ସେହି ସମୟଟା ହେଉଛି ଦୁଇଶହରୁ ନଅଶହ ଶତାବ୍ଦୀ ଭିତରେ । ତାହା ଗୀତା ଓ ଶଙ୍କରଙ୍କ ମଧ୍ୟର ମଧ୍ୟବର୍ତ୍ତୀ ସମୟ । ଗୀତା ମଗଧଯୁଗ ପରେ ପ୍ରଥମରୁ ଦୁଇଶହ ପଚାଶ ଖ୍ରୀଷ୍ଟାବ୍ଦ ମଧ୍ୟରେ ଲିଖିତ । ସେତେବେଳକୁ ହିନ୍ଦୁଧର୍ମ ବହୁତ ଦୂର ଆଗେଇ ଗଲାଣି । ମନୁଙ୍କ (ଦୁଇଶହ ଖ୍ରୀଷ୍ଟପୂର୍ବରୁ ଖ୍ରୀଷ୍ଟପର ଦୁଇଶହ) ଜାତିଭେଦ ବେଶ ଜମିଗଲାଣି । ଗୁପ୍ତଯୁଗ (୩ଶହରୁ ୫ଶହ) ରେ ସାମନ୍ତମାନଙ୍କ ଆବିର୍ଭାବ ।

ସାନ୍ତବାଦର ପ୍ରତିଷ୍ଠା । ବ୍ରାହ୍ମଣବାଦର ଅଭ୍ୟୁତ୍‌ଥାନ । କୌଟିଲ୍ୟଙ୍କ ରାଷ୍ଟ୍ରନୀତି ତତ୍ତ୍ୱ, ତା ସହିତ ଏକ ବିରାଟ କେନ୍ଦ୍ରୀଭୂତ ଶାସନ ବ୍ୟବସ୍ଥା ଆସିଯାଇଛି । ଏସବୁ ହେଲା ଜଗନ୍ନାଥଙ୍କ ସାମ୍ୟ-ମୈତ୍ରୀ ଓ ପ୍ରୀତିର ପରିପନ୍ଥୀ । କହିବାକୁ ଗଲେ ତା ବିରୋଧରେ ଗୋଟିଏ ବିରାଟ ଅଭିଯାନ । ସେହିଦିନୁ ଜଗନ୍ନାଥଙ୍କ ଆତ୍ମା ବା ଭାବକୁ ହତ୍ୟା କରିବା ଦିଗରେ ଅନବରତ ଉଦ୍ୟମ ଅବ୍ୟାହତ ରହିଛି । ତାଙ୍କର ସେହି ଭାବ ଉପରେ ବିଭିନ୍ନ ମତ, ତତ୍ତ୍ୱ, ଧର୍ମ ଓ ବିଶ୍ୱାସର ପ୍ରଲେପ ବୋଲି ତାକୁ ଶ୍ରୀହୀନ କଲାବେଳେ ଅନ୍ୟ ଦିଗରେ ତାରି ଭିତ୍ତିରେ ନିଜକୁ ଦୀପ୍ତିମାନ କରିବାର ଚେଷ୍ଟା ହୋଇଆସିଛି । ଜଗନ୍ନାଥଙ୍କ ସେଇ ମୌଳିକ ତାତ୍ପର୍ଯ୍ୟ ଯେତେ କ୍ଷୁର୍ଣ୍ଣ ଓ ମଳିନ ହେଲେ ମଧ୍ୟ ତାଙ୍କର ସହଜାତ ଚରିତ୍ର— ସାମ୍ୟ, ମୈତ୍ରୀ, ପ୍ରୀତି ଏବେ ବି ଜାଜ୍ୱଲ୍ୟମାନ । କିନ୍ତୁ ନିରୀଶ୍ୱରବାଦୀ ବୁଦ୍ଧଙ୍କୁ ଈଶ୍ୱରଙ୍କ ଅବତାର କରିଦେଲା ଭଳି ସମାଜରେ ସାମ୍ୟ ମୈତ୍ରୀ-ପ୍ରୀତି ସମସ୍ତ ପ୍ରକାର ଶୋଷଣ, ଶାସନ, ଦୁଃଖ, ନିର୍ଯ୍ୟାତନା, କୁସଂସ୍କାର ଆଉ ଅନ୍ଧବିଶ୍ୱାସର ଆଧାର ହୋଇଛି । ସେହି ଆବରଣ ଏପରି ଶକ୍ତ ଓ ଟାଣ ଯେ, ଯୁଗ ଯୁଗ ହେଲା ସବୁ ରାଜନୀତି, ଅର୍ଥନୀତି, ଧର୍ମ, ଦର୍ଶନ ଆଦି ତାରି ଭିତରେ ଘୂରିବୁଲନ୍ତି । ଜଗନ୍ନାଥଙ୍କୁ ସେଇ ଶୋଷକ ଶ୍ରେଣୀଙ୍କ ସ୍ୱାର୍ଥର ରକ୍ଷାକବଚ କରା ହୋଇ ଆସିଛି । ଆଦିମ ସମାଜର ପତନ ପରେ ମଣିଷ ଜଗନ୍ନାଥଙ୍କୁ ଓଲଟାଇ ଦେଇଛି । ଜଗନ୍ନାଥ ନିଜେ ନିଜର ବିପରୀତରେ ପରିଣତ ହୋଇଛନ୍ତି ।

କିନ୍ତୁ ମୂର୍ତ୍ତିଭାବରେ ଜଗନ୍ନାଥଙ୍କର ଆବିର୍ଭାବ ବହୁପୂର୍ବରୁ ତାଙ୍କର ସେଇ ମର୍ମ୍ମ ବା ଭାବ — ସାମ୍ୟ, ମୈତ୍ରୀ, ପ୍ରୀତି ରହିଆସିଛି । ସେସବୁ ପରସ୍ପର ସହିତ ଘନିଷ୍ଠଭାବେ ସଂଯୁକ୍ତ । ଏକକୁ ଅନେକଠାରୁ ଅଲଗା କରାଯାଇ ନ ପାରେ । ତାହାସବୁ ଏକ ଓ ଅଭିନ୍ନ । ଏପରି ଏକ ସମାଜ କିନ୍ତୁ ଥିଲାବୋଲି ବିଶ୍ୱାସ ହୁଏ ନାହିଁ — ମଣିଷ ଦ୍ୱାରା ମଣିଷର ଶୋଷଣ ନାହିଁ — ସାନ ବଡ ନାହିଁ, ତୋର ମୋର ନାହିଁ । ସେପରି ଏକ ସମାଜର ସ୍ମୃତିର ଅବଶେଷ ଏବେ ବି ଅନୁନ୍ନତ ଆଦିମ ଲୋକଙ୍କ ମଧ୍ୟରେ ଦେଖାଯାଏ । ସେପରି ସ୍ମୃତିର ବହୁଳ ଦୃଷ୍ଟାନ୍ତ ଆମର ସଭ୍ୟତାର ପ୍ରାଚୀନ ସାହିତ୍ୟ ଇତିହାସ ମଧ୍ୟରେ ଲିପିବଦ୍ଧ ।

ପତ୍ନତତ୍ତ୍ୱ ଖନନରୁ ଜଣାଯାଏ, ଆର୍ଯ୍ୟମାନଙ୍କର ଆଗମନ ପୂର୍ବରୁ ଭାରତରେ ଆଉ ଏକ ଉନ୍ନତ ସଭ୍ୟତା ରହିଛି । ତାହା ସିନ୍ଧୁନଦୀ କୂଳରେ ବ୍ୟାପିଥିବାରୁ ତାକୁ ସିନ୍ଧୁସଭ୍ୟତା କୁହନ୍ତି । ହରପ୍ପା, ମହେଞ୍ଜୋଦାରୋର ମାଟିତଳୁ ମିଳିଥିବା ସେହି ସଭ୍ୟତାର ଅଞ୍ଚଳ ଏବେ ପାକିସ୍ଥାନରେ । ଏବେ ସେହିପରି ସଭ୍ୟତାର ନିଦର୍ଶନ ମଧ୍ୟ ନିକଟବର୍ତ୍ତୀ ଭାରତୀୟ ଅଞ୍ଚଳରୁ ବାହାରୁଛି ।

ସେଠୁ ମିଳୁଥିବା ପ୍ରମାଣରୁ ଜଣାଯାଏ ଯେ ଉକ୍ତ ସଭ୍ୟତା ନଗରଭିତ୍ତିକ ଥିଲା । ଲୋକେ ଯୋଜନାମୂଳକ ଭାବେ ଘର, ଦ୍ୱାର, ରାସ୍ତାଘାଟ, ସ୍ନାନାଗାର, ଶସ୍ୟଭଣ୍ଡାର ଆଦି ନିର୍ମାଣ କରୁଥିଲେ । ତାଙ୍କର ମଧ୍ୟ ଗୋଟାଏ ପ୍ରକାରର ମୁଦ୍ରା ପ୍ରଚଳିତ ଥିଲା । ସମାନ ଧରଣର ମାପ, ଓଜନ ଚଳୁଥିଲା । ସେମାନେ ଉଚ୍ଚମାନର

ନଗର ନିର୍ମାଣ କୌଶଳ ଜାଣିଥିଲେ । ସେମାନଙ୍କ ଭିତରେ ସ୍ଥପତି, ଇଞ୍ଜିନିୟର, କୁମ୍ଭକାର, ଇଟାପକାଳି, ପୁରୋହିତ, ଗାୟକ ଓ ନର୍ତ୍ତକୀ ଆଦି ବିଭିନ୍ନ ବୃତ୍ତିର ଲୋକ ରହିଥିଲେ । ଉତ୍ପାଦନ ପ୍ରଣାଳୀରେ ଉନ୍ନତି ଯୋଗୁ ଉଦବୃତ୍ତ ଉତ୍ପାଦନ ସମ୍ଭବ ହେଉଥିଲା । ବାଣିଜ୍ୟର ପ୍ରସାର ଘଟିଥିଲା । ସେ ଉଦ୍‌ବୃତ୍ତ ସହରକୁ ଆସିବାରେ ଲୋକେ ସେଠି ଚଳୁଥିଲେ ଏବଂ ତାଙ୍କ ପକ୍ଷରେ ଅନ୍ୟାନ୍ୟ କାର୍ଯ୍ୟ କରିବା ସମ୍ଭବ ହେଉଥିଲା । ସେହି ଉଦ୍‌ବୃତ୍ତ ସହରକୁ ଆଣିବା ଦିଗରେ କୌଣସି ଦମନମୂଳକ ବ୍ୟବସ୍ଥା ବା ଜୋର ଜବରଦସ୍ତି ହେଉ ନ ଥିଲା । ବଳର ପ୍ରୟୋଗ କରିବାକୁ ପଡୁ ନ ଥିଲା । ସେମାନେ ଲୁହା ବ୍ୟବହାର ଜାଣି ନ ଥିଲେ । ଧନୁ, ତୀରର ଫଳକସବୁ ପଥର ତମ୍ବାରେ ହେଉଥିଲା । ଖଣ୍ଡାଭଳି ହିଂସାତ୍ମକ ଦମନମୂଳକ ଜିନିଷର ପ୍ରଚଳନ ନ ଥିଲା ।

ତେଣୁ ଲୋକଙ୍କୁ ଆୟତ୍ତ କରିବା, ଶାସନ ଚଳାଇବା, ତାଙ୍କଠୁ ଉଦ୍‌ବୃତ୍ତ ଆଣିବାଲାଗି ଯେତେବେଳେ ବଳ ଓ ସାମରିକ ଶକ୍ତିର ଅଭାବ, ସେତେବେଳେ ନିଶ୍ଚୟ ଆଉ ଗୋଟାଏ କିଛି ବଳିଷ୍ଠ ଉପାୟ ରହିଥିବ । ସେହି ଉପାୟଟି ହେଉଛି ଧର୍ମ, ଧାରଣା ଓ ମତାଦର୍ଶର ପ୍ରୟୋଗ । ଯଦ୍ଵାରା ଏମାନେ ଲୋକଙ୍କୁ ମନେଇକରି ନେଇଆଣି ପାରୁଥିଲେ । ତା ମାନେ ଲୋକେ ଏପରି ଏକ ଧାରଣାର ବଶବର୍ତ୍ତୀ ହୋଇଥିଲେ ଯେ ସେମାନେ ତାଙ୍କ ନିଜଆଡୁ ସ୍ଵତଃ ପ୍ରବୃତ୍ତ ହୋଇ ଉଦ୍‌ବୃତ୍ତ ଜିନିଷ ଅର୍ପଣ କରୁଥିଲେ । ପ୍ରଶାସନକୁ ମାନି ଚଳୁଥିଲେ । ଯେହେତୁ ସେଠି ଗୋଟାଏ ଧର୍ମ ବିଶ୍ଵାସ ଥିଲା । ତେଣୁ ତାସହିତ ଏକ କୁସଂସ୍କାର ରହିଥିବା ସ୍ଵାଭାବିକ ।

ତେଣୁ ତାଙ୍କର ଦେବଦେବୀ ରହିଥିଲେ । ଶିବଙ୍କ ଭଳି ଏକ ଦେବତା ଓ ମାତୃଦେବୀ ବୋଲି ଏକ ଦେବୀ ଥିଲେ । ଗୋଟାଏ ମତ କହେ ଯେ ହିନ୍ଦୁ ଦେବଦେବୀ ସେଇଠୁ ଆସିଛି, ସେଇ ଢାଞ୍ଚାରେ ସୃଷ୍ଟି । ସେ ସମ୍ବନ୍ଧରେ ମତପାର୍ଥକ୍ୟ ରହିଛି । ସେ ସଭ୍ୟତାର କିପରି ଧ୍ଵଂସ ଘଟିଲା, ସେ ନେଇ ଦ୍ଵୈମତ୍ୟ ଦେଖାଯାଏ । ଗୋଟାଏ ମତ କହେ ଘନ ଘନ ବନ୍ୟାଫଳରେ ତାହା ଧ୍ଵଂସ ପାଇଯାଇଛି । ଅନ୍ୟ ମତଟି ହେଲା ଆର୍ଯ୍ୟମାନଙ୍କ ଆକ୍ରମଣ ଫଳରେ ତାହାର ଧ୍ଵଂସ ଘଟିଛି ।

ଲକ୍ଷ୍ୟ କରିବା କଥା, ଆର୍ଯ୍ୟମାନଙ୍କ ପୂର୍ବରୁ ଏଇ ସଭ୍ୟତା ଅଧିକ ପ୍ରାଚୀନ ଓ ଉନ୍ନତ । ଭାରତର ସେତେବେଳେ ଦକ୍ଷିଣାଞ୍ଚଳରେ କ'ଣ ଥିଲା ଜଣାନାହିଁ । ତେବେ ଉତ୍ତରାଞ୍ଚଳର ସେଇ ସିନ୍ଧୁସଭ୍ୟତା ଯାହା ହେଲେ ବି ସାମ୍ୟ, ମୈତ୍ରୀ, ପ୍ରୀତି ଉପରେ ପ୍ରତିଷ୍ଠିତ ନୁହେଁ । ସେତେବେଳେ ସମାଜ କୋଉ ଦୂରକୁ ଆଗେଇଲାଣି । ଶୋଷଣ ଶାସନ ଉତ୍କଟ ନ ହେଲେ ବି ଅର୍ଥନୈତିକ ଓ ସାମାଜିକ କ୍ଷେତ୍ରରେ ପାର୍ଥକ୍ୟ, ତାରତମ୍ୟ ଦେଖାଦେଲାଣି । ଉଦ୍‌ବୃତ୍ତର ଅପହରଣ ଆରମ୍ଭ ହୋଇଗଲାଣି । ସମାଜରେ ବିଶେଷ ସୁବିଧା ଓ ଅବସର ପାଇବା ଲୋକଙ୍କର ଆବିର୍ଭାବ ଘଟିଲାଣି । ଶ୍ରମର ବିଭାଜନ, ଶାରୀରିକ - ମାନସିକ କାର୍ଯ୍ୟର ଫରକ ସହର - ମଫସଲର ପାର୍ଥକ୍ୟ ସୂତ୍ରପାତ ହେଲାଣି । ସାମ୍ୟର ବିଲୋପ ସହିତ ସମାଜରେ ମୈତ୍ରୀ, ପ୍ରୀତିର ବିଲୁପ୍ତି ସ୍ଵାଭାବିକ ।

ସାମାଜିକ ବିକାଶର ନିୟମ ଅନୁଯାୟୀ ସାମ୍ୟ, ମୈତ୍ରୀ, ପ୍ରୀତିର ସହଜାତ ଧାରଣା, ତା ପୂର୍ବତନ ସମାଜର ଧାରଣା — ଯେଉଁଠିକି ବ୍ୟକ୍ତିଗତ ସମ୍ପତ୍ତିର ଆବିର୍ଭାବ ଘଟିନାହିଁ। ସେତେବେଳେ ସେହିପରି ସମାଜ ଓ ତା ଅନୁରୂପ ଧାରଣା ଯଦି କେଉଁଠି ଥାଏ, ତେବେ ତାହା ଭାରତର ଦକ୍ଷିଣରେ — ସେଇ ଅନୁନ୍ନତ ଲୋକଙ୍କ ମଧ୍ୟରେ ନିଶ୍ଚୟ ଥିବ। ସେଇ ସମାଜର ପ୍ରତିଫଳନ, ସେଇ ଧାରଣାର ସଙ୍କେତ ଓ ତାର ସେଇ ଦୃଷ୍ଟିର ନିଦର୍ଶନ ବର୍ତ୍ତମାନ ଜଗନ୍ନାଥଙ୍କ ଛଡ଼ା ଅନ୍ୟ କେହି ହୋଇ ନ ପାରନ୍ତି । ସେତେବେଳେ ସେଇ ଅଞ୍ଚଳ କଳିଙ୍ଗଛଡା ଅନ୍ୟ କୁତ୍ରାପି ହୋଇ ନ ପାରେ । ସେଇ ସମାଜର ଭାବ ଓ ଧାରଣା କାଷ୍ଠ, ପାଷାଣ, ତରୁ, ତୃଣ ଯେକୌଣସି ମାଧ୍ୟମରେ ଯେପରି ରୂପାୟିତ ବା ପ୍ରତିଫଳିତ ହେଉନା କାହିଁକି, ତାହା ଯେ ଜଗନ୍ନାଥଙ୍କର ଆଦ୍ୟରୂପ ଏଥିରେ ସନ୍ଦେହ ନାହିଁ । କାରଣ, ତାହାହିଁ ହେଉଛି ଜଗନ୍ନାଥ ଭାବ, ତାହାର ମର୍ମ୍ମ - ସେଇ ସାମ୍ୟ, ମୈତ୍ରୀ, ପ୍ରୀତିର ଆଧାର । ତେଣୁ ଭାରତରେ ସର୍ବପ୍ରାଚୀନ ଧ୍ୟାନଧାରଣା ଓ ଦର୍ଶନ ବୋଲି ଯାହାକୁ କୁହାଯାଏ, ତାହା ଆର୍ଯ୍ୟସଭ୍ୟତା- ସିନ୍ଧୁ ସଭ୍ୟତାର ଅବଦାନ ନୁହେଁ — ତାହା ସେଇ ଆଣ ଆର୍ଯ୍ୟ ସଭ୍ୟତାର ଅବଦାନ। ତାହା ଏତେ ଦୃଢ, ବାସ୍ତବ, ମୌଳିକ, ଅର୍ଥାତ ମାନବବାଦୀ ଯେ, ଆର୍ଯ୍ୟମାନେ ତାକୁ ଦଖଲ କରି ମଧ୍ୟ ତାଙ୍କୁ ଭାଙ୍ଗି ପାରିନାହାନ୍ତି । ତା ଉପରେ ଆପଣାର ଛାପ ମାରି ଚଳାଇବାରେ ଲାଗିଛନ୍ତି । ବିଭିନ୍ନ ଧର୍ମ, ବିଶ୍ୱାସର ପ୍ରଚାରକଗଣ ବିଭିନ୍ନ ଭାବରେ ଜଗନ୍ନାଥଙ୍କୁ ଚିତ୍ରିତ କରି ଚଳାଇବା ଦିଗରେ ଯେଉଁ ଆପ୍ରାଣ ଉଦ୍ୟମ କରି ଆସିଛନ୍ତି ଏହାହିଁ ତାହାର ଜ୍ୱଳନ୍ତ ପ୍ରମାଣ । ତାସତ୍ତ୍ୱେ ଜଗନ୍ନାଥଙ୍କ ଭିତରେ ସେଇ ଆଦିମ ଯୁଗର ସୃଷ୍ଟି ଏବେ ବି ଜାଗ୍ରତ, ଯଦିଚ ଜନମାନସରୁ ତାର ପକୃତ ତାତ୍ପର୍ଯ୍ୟ କେଉଁଦିନୁଁ ଲିଭିଗଲାଣି ।

ମହାପ୍ରସାଦରେ ଜାତିଭେଦ ନାହିଁ । ଆଚାଣ୍ଡାଳ ସମସ୍ତେ ଏକାସାଙ୍ଗେ ଭୋଜନ କରିପାରନ୍ତି । ଜଣେ ଚାହିଁଲେ , ହାତ ପତେଇଲେ ଅନ୍ୟ ଜଣେ ନାସ୍ତି କରିଦେବା ପ୍ରଶ୍ନ ନାହିଁ । ତା କୌଣସି ଆଇନ ବା ନିୟମ ଦ୍ୱାରା ନିୟନ୍ତ୍ରିତ ନୁହେଁ, ସମ୍ପୂର୍ଣ୍ଣ ସ୍ୱେଚ୍ଛାକୃତ । କିନ୍ତୁ ଯେକୌଣସି ଆଇନଠାରୁ ଅତି କଠୋର ଭାବେ ପାଳିତ । ତାର ଲଙ୍ଘନ ଚିନ୍ତାର ବହିର୍ଭୂତ । ଏହା ହେଉଛି ସେହି ସାମ୍ୟ ସମାଜର ପ୍ରଚଳିତ ପ୍ରଥାର ଗୋଟାଏ ଅବଶେଷ । ତାର ଏକ କ୍ଷୁଦ୍ର ସୂଚନା ମାତ୍ର । ଏହା କେବଳ ମହାପ୍ରସାଦ ସେବନରେ ଜାତିଭେଦ ନଥିବାର କଥା ନୁହେଁ । ତାହା ଜଣାଇଦିଏ ସାମ୍ୟ ସମାଜରେ କୌଣସି ଆହାରୀ ଅନାହାରୀର ପ୍ରଶ୍ନ ନଥିଲା । ସମସ୍ତେ ସମାନ ଓ ଗୋଟାଏ । ଜଣେ ଖାଇଲାବେଳେ ଅନ୍ୟଜଣେ ଉପାସ ରହି ନପାରେ । ଅନ୍ୟଜଣକୁ ଖାଇବାକୁ ନ ଦେଇ ଆଉ ଜଣେ ଖାଇ ନ ପାରେ । ତାହା ସେହି ଗୋଷ୍ଠୀ ସମାଜର ଅଲିଖିତ ନିୟମ — ପ୍ରାକୃତିକ ନିୟମ ଭଳି ଅଲଙ୍ଘନୀୟ । ତାର ବିରୁଦ୍ଧାଚରଣ ମଣିଷର କଳ୍ପନାର ବାହାରେ । ତାର ମୂଳ ହେଉଛି, ସେ ପର୍ଯ୍ୟନ୍ତ ସମାଜରେ ମଣିଷ ଦ୍ୱାରା ମଣିଷର ଶୋଷଣ ଆସିନାହିଁ । ଐକ୍ୟହିଁ ହୋଇଛି ତାର ମୂଳଭିତ୍ତି । ଯେଉଁଠି ଜଣେ ସମସ୍ତଙ୍କ ପାଇଁ, ସମସ୍ତେ ଜଣକ ପାଇଁ ।

ସେବର ସାମ୍ୟ, ଏବର ସାମ୍ୟବାଦୀ ଧାରଣା ସମାନ ନୁହେଁ । ସମ୍ପୂର୍ଣ୍ଣ ଭିନ୍ନ । ସେତେବେଳେ ବିକାଶ ଥିଲା ସାମ୍ୟରୁ ଅସାମ୍ୟକୁ, ବର୍ତ୍ତମାନ ବିକାଶ ଅସାମ୍ୟରୁ ସାମ୍ୟକୁ । ସେ ସାମ୍ୟର ଭିତ୍ତିଥିଲା ଅତି ଅନୁନ୍ନତ ଅବସ୍ଥା ଓ ଘୋର ଦାରିଦ୍ର୍ୟ । ବର୍ତ୍ତମାନର ଭିତ୍ତି ହେବ ଚରମ ଉନ୍ନତି ଓ ବିପୁଳ ପ୍ରାଚୁର୍ଯ୍ୟ । ସେଦିନର ଗତି ଥିଲା ବ୍ୟକ୍ତିଗତ ସମ୍ପତ୍ତିର ବିକାଶ । ବର୍ତ୍ତମାନ ଗତିହେବ ସେହି ସମ୍ପତ୍ତିର ରୂପାନ୍ତର ବିନାଶ । ସେତେବେଳେ ଶ୍ରେଣୀଭେଦ, ବର୍ଣ୍ଣଭେଦ, ଜାତିଭେଦର ପ୍ରଶ୍ନ ନ ଥିଲା । ବର୍ତ୍ତମାନର ସମାଜ ଠିକ୍ ଏଗୁଡ଼ିକ ଉପରେହିଁ ପ୍ରତିଷ୍ଠିତ । ସେହି ଅବସ୍ଥାକୁ ଧରି ଯେଉଁ ସବୁ ସାମାଜିକ ପ୍ରଥା, ପ୍ରଚଳନ, ଧ୍ୟାନ, ଧାରଣାର ଉତ୍ପତ୍ତି, ସେହି ଅବସ୍ଥାର ପରବର୍ତ୍ତନରେ ସେହି ସବୁର ମୌଳିକ ପରିବର୍ତ୍ତନ ଅବଶ୍ୟମ୍ଭାବୀ । କେତେକ କ୍ଷେତ୍ରରେ ତାହାର ସମ୍ପୂର୍ଣ୍ଣ ଅବସାନ ସ୍ୱାଭାବିକ । ଜଗନ୍ନାଥଙ୍କ ଜୀବନ ଠିକ୍ ସେହି ପ୍ରକ୍ରିୟା ମଧ୍ୟରେ ରୂପ ନେଇଛି । ତାଙ୍କର ମୂର୍ତ୍ତି, ମନ୍ଦିର ସହିତ ଗଢ଼ିଉଠିଛି ତାଙ୍କର ନୂତନ ମହତ୍ତ୍ୱ, ନୂତନ ଚରିତ୍ର ଆଉ ତା'ର ଅନୁରୂପ ଧାରଣା । ଯେଉଁ ପ୍ରୟୋଜନୀୟତା ଭିତରେ ନୂତନ ପରିବର୍ତ୍ତିତ ଜଗନ୍ନାଥଙ୍କର ଜନ୍ମ, ସେହି ପ୍ରୟୋଜନୀୟତାର ପ୍ରକ୍ରିୟା ଆଜି ଦାବୀ କରେ ତାର ମୌଳିକ ପରିବର୍ତ୍ତନ ।

ସମସ୍ତେ ଜାଣନ୍ତି, ଜଗନ୍ନାଥଙ୍କ ସ୍ତ୍ରୀ ହେଲେ ଲକ୍ଷ୍ମୀ । ସେ କେବେ ତାଙ୍କର ସ୍ତ୍ରୀ ହେଲେ ? ଶବର ପଲ୍ଲୀର ଜଗନ୍ନାଥ, ବୃକ୍ଷ, ସ୍ତମ୍ଭ, କାଷ୍ଠ ଆକାରରେ ପୂଜିତ ଜଗନ୍ନାଥ ଏବଂ ଅସଂଖ୍ୟ ସ୍ଥାନରେ ପ୍ରତିଷ୍ଠିତ ଜଗନ୍ନାଥ — ଏମାନେ ସବୁ ଏକାକୀ, ସ୍ତ୍ରୀ ହୀନ । ଲକ୍ଷ୍ମୀ ଜଗନ୍ନାଥଙ୍କ ସାଙ୍ଗରେ ରହିବାଟା ରାଧାକୃଷ୍ଣ ଭଳି ଅବିଚ୍ଛେଦ୍ୟ ନୁହେଁ । ଆଦିବାସୀଙ୍କ ଦେବୀ ରହିଛି । କିନ୍ତୁ ସେମାନେ କୌଣସି ଦେବତାଙ୍କ ସ୍ତ୍ରୀ ନୁହଁନ୍ତି । ଆଦିମ ଯୁଗରେ ହିନ୍ଦୁ ଦେବତାଙ୍କର ମଧ୍ୟ ସ୍ତ୍ରୀ ନ ଥିଲା । ପୁରାଣ ଯୁଗରେ ତାହା ଦେଖାଦେଇଛି । ଜଗନ୍ନାଥଙ୍କୁ ବିଷ୍ଣୁ ରୂପରେ କଳ୍ପନା କଲାବେଳେ, ତାଙ୍କ ସାଙ୍ଗରେ ଲକ୍ଷ୍ମୀ ଓ ସରସ୍ୱତୀ ଆସିଛନ୍ତି । ତାଙ୍କୁ କୃଷ୍ଣ ବୋଲି କଳ୍ପନା କଲାବେଳେ ତାଙ୍କର ସବୁ ଲୀଳା ମନ୍ଦିରରେ ପାଳିତ ହେଉଛି । ପୁରାଣରେ ବିଷ୍ଣୁଙ୍କ ଅବତାର ଭାବରେ ରାମ, କୃଷ୍ଣଙ୍କ ସ୍ତ୍ରୀ ରହିଥିଲାବେଳେ ତାଙ୍କର ଆଉ ଏକ ରୂପ — ଜଗନ୍ନାଥ ସେଥିରୁ ବାଦ ପଡ଼ନ୍ତେ ବା କିପରି ? ତାଙ୍କପାଇଁ ଲକ୍ଷ୍ମୀ ଆସିବା ଅତି ସ୍ୱାଭାବିକ । ପୁରାଣରେ ସ୍ତ୍ରୀ ଚରିତ୍ର ସୃଷ୍ଟି, ଅନ୍ୟଦିଗରେ ସମାଜରେ ନାରୀ ଦାସତ୍ୱର ସୂଚନା, ଯାହାକି ପୂର୍ବେ ଆଦିମ ସମାଜରେ ଅଜଣା ଥିଲା । ବ୍ୟକ୍ତିଗତ ସମ୍ପତ୍ତି ସହିତ ନାରୀ ହେଲା ପୁରୁଷର ସମ୍ପତ୍ତି । ସେ ତାକୁ ନିଜର ସମ୍ପତ୍ତି ଭଳି ଇଚ୍ଛା ଅନୁସାରେ ବ୍ୟବହାର କରିପାରେ । ସେଇ ଦୃଷ୍ଟିରୁ ରାମ ସୀତାଙ୍କୁ ନିଆଁରେ ପକାଇ ପାରନ୍ତି । କୃଷ୍ଣ ଅସଂଖ୍ୟ ନାରୀ ହରଣ କରି ପାରନ୍ତି । ଦ୍ରୌପଦୀଙ୍କୁ ଜୁଆଖେଳରେ ପଣ ରଖାଯାଇପାରେ, ଆଉ ଶେଷକୁ ଲକ୍ଷୀ ମଧ୍ୟ ସେହି ଜଗନ୍ନାଥଙ୍କ ଦ୍ୱାରା ଘରୁ ବିତାଡ଼ିତ ହୁଅନ୍ତି । କିନ୍ତୁ ଯେହେତୁ ବୁଦ୍ଧ ଏକ ଐତିହାସିକ ପୁରୁଷ, ତାଙ୍କୁ ଅବତାର ଆଖ୍ୟା ଦେଲେ ବି ସେ ନିଜର ସ୍ତ୍ରୀ ଯଶୋଧାରାଙ୍କୁ ତ୍ୟାଗ କଲାବେଳେ ପୌରାଣିକ ଦୃଷ୍ଟିରୁ ତାଙ୍କ ସହିତ

ଖାସକରି ଅନ୍ୟ ସ୍ତ୍ରୀଙ୍କୁ ଯୋଡ଼ିବା ସମ୍ଭବ ହୋଇନାହିଁ । ପୁଣି ଜଣେ ଜଣେ ପୌରାଣିକ ଦେବତାଙ୍କର ଜଣେ ନୁହେଁ, ଏକାଧିକ ସ୍ତ୍ରୀ ଅଛନ୍ତି । ସେମାନେ ମଧ୍ୟ ଅନ୍ୟ ସ୍ତ୍ରୀଙ୍କ ପାଖକୁ ଗମନ କରନ୍ତି । ନାନା ଲୀଳା ରଚନା କରନ୍ତି । ସ୍ତ୍ରୀ, ପୁତ୍ର ନେଇ ମଧ୍ୟ ଘରସଂସାର କରନ୍ତି । ତାହା ସେହି ସମାଜର ପ୍ରତିଫଳନ ।

ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଜଗନ୍ନାଥଙ୍କର ସେଇ ବୈଶିଷ୍ଟ୍ୟ— ପରିବାର-ହୀନତାର ମୂଳରେ ରହିଛି ସେଇ ଆଦିବାସୀ ସମାଜର ବିଶେଷତ୍ୱ । ତାର ସ୍ମାରକୀ ଏବେ ଖୋଜି ପାଇବା କଷ୍ଟକର । ତେବେ ତାର କିଛିଟା ଦୃଷ୍ଟାନ୍ତ ରହିଛି, ଯଦିଚ ସମାଜ ସେତେବେଳକୁ କେତେଦୂର ଆଗେଇଗଲାଣି । ଏବର ଅତି ଅନୁନ୍ନତ ଅବସ୍ଥାରେ ଥିବା ଲୋକଙ୍କ ଭିତରେ, ଯଦିଚ ସେପରି ସ୍ପଷ୍ଟ ଭାବରେ ନୁହେଁ, ତେବେ କିଛିଟା ରହିଛି । ସେଇ ଆଦିମ ଗୋଷ୍ଠୀ-ସମାଜ ସମ୍ପର୍କରେ ମାଉଣ୍ଟ ମର୍ଗାନଙ୍କ ଆଲୋଚନା ବିଶ୍ୱପ୍ରସିଦ୍ଧ । ତା ଗୋଟାଏ ବୈଜ୍ଞାନିକ ଆବିଷ୍କାର । ତାରି ଭିତ୍ତିରେ ଲିଖିତ ଫ୍ରେଡରିକ ଏଙ୍ଗେଲସଙ୍କ ପୁସ୍ତକ "ପରିବାର, ବ୍ୟକ୍ତିଗତ ସମ୍ପତ୍ତି ଓ ରାଷ୍ଟ୍ରର ଉତ୍ପତ୍ତି" (Origin of Family, Private Property and State)—ଏକ ଅଦ୍ଭୁତ ଯୁଗାନ୍ତକାରୀ ଆଲୋଚନା । ତାହା ଅତୀତର ଗଭୀର ଅନ୍ଧକାର ମଧ୍ୟରେ ଲୁକ୍‌କାୟିତ ସମାଜର ଅଜ୍ଞାତ ଦ୍ୱାରକୁ ଉଦ୍‌ଘାଟନ କରିଦିଏ । ମଣିଷର ନିଜ ପରିବାର, ତା'ର ବ୍ୟକ୍ତିଗତ ସମ୍ପତ୍ତି, ରାଷ୍ଟ୍ରର ଉତ୍ପତ୍ତି ଓ ବିକାଶ ତା ଆଗରେ ଉନ୍ମୁକ୍ତ ହୋଇଯାଏ ।

ବେଦରେ ଦେବତାଙ୍କ ସ୍ତ୍ରୀ ନାହିଁ, ଅଥଚ ପୁରାଣରେ କୌଣସି ସ୍ତ୍ରୀ ବିନା ଦେବତା ନାହାନ୍ତି, ଏହା କାହିଁକି ? ଅବଶ୍ୟ ବେଦରେ 'ଦେବପତ୍ନୀ'ଙ୍କ ଉଲ୍ଲେଖ ରହିଛି । କିନ୍ତୁ ସେମାନେ ନାମହୀନ । ଇନ୍ଦ୍ରାଣୀ, ବରୁଣାନୀ ଇତ୍ୟାଦି । ଠିକ୍ ଆମର ବ୍ରାହ୍ମଣୀ, ମହାନ୍ତିଆଣୀ, କେଉଟୁଣୀଙ୍କ ଭଳି — ସର୍ବନାମ । ଆଉ ମଧ୍ୟ ସନ୍ଧିସମାସରୁ ତାର ସନ୍ଧାନ ମିଳେ । ଯଥା ଶଚୀପତି । ଶଚୀ ମାନେ ହେଲା ଯଜ୍ଞ — ଯଜ୍ଞର ପତିଭାବରେ ଇନ୍ଦ୍ରହେଲେ ଶଚୀପତି । କିନ୍ତୁ ଶଚୀ ନାମ୍ନୀ ସ୍ତ୍ରୀର ପତିବୋଲି ଯେପରି ଗଣ୍ୟ ନୁହନ୍ତି, ସେମିତି "ଅଗ୍ନୟେ ସ୍ୱାହା" ସେହି ହିସାବରେ "ସ୍ୱାହା" ହେଲେ ଅଗ୍ନିଙ୍କର ସ୍ତ୍ରୀ । ସେହିପରି 'ଦେବ ସେନାପତି" । କାର୍ତ୍ତିକ ହେଲେ 'ଦେବସେନା' ର ପତି ବା ସ୍ୱାମୀ । ଏହା ଦର୍ଶାଇଦିଏ ଯେ ପୁରାଣରେ ଦେବତାଙ୍କ ପରିବାର ଭଳି ବେଦରେ ଦେବତାଙ୍କର ପରିବାର ନାହିଁ । ତାର ଏକ ମାତ୍ର କାରଣ, ସେତେବେଳେ ସେଇ ଆଦିମ ସମାଜରେ ପରିବାର ରୂପ ନେଇ ନାହିଁ ।

ଦେବତା ମଣିଷକୁ ସୃଷ୍ଟି କରନ୍ତୁ ବା ନ କରନ୍ତୁ, ମଣିଷ ଯେ ଦେବତାଙ୍କୁ ସୃଷ୍ଟି କରିଛି ଏଥିରେ ସନ୍ଦେହ ନାହିଁ । ସେ ତାହା କରିଛି ତାର ଅନୁରୂପରେ । ତାଙ୍କୁ ଗଢ଼ିଛି ନିଜର କଳ୍ପନା ବଳରେ । ତାଙ୍କୁ ମଣ୍ଡିତ କରିଛି ତାର ପରିକଳ୍ପିତ ସର୍ବଶ୍ରେଷ୍ଠ

ଗୁଣ, ଶକ୍ତି ଓ ଚରିତ୍ର ଦ୍ୱାରା ଅତିମାନବ ଭାବରେ । ବିବେକାନନ୍ଦଙ୍କ ଭାଷାରେ ଗୋରୁ ଯଦି ଦେବତାଙ୍କ କଳ୍ପନା କରିଥାନ୍ତା, ତେବେ ଦେବତାସବୁ 'ଅତିଗୋରୁ' ହୋଇଥାନ୍ତେ । ଯେତେବେଳେ ମଣିଷଙ୍କ ଭିତରେ ପରିବାରର ବିକାଶ ଘଟିନାହିଁ, ସେତେବେଳେ ତାହା ଦେବତାଙ୍କ ଭିତରେ ପ୍ରତିଫଳିତ ହେବ ବା କିପରି ?

ପରିବାର ଅପରିବର୍ତ୍ତନୀୟ ନୁହେଁ । ମଣିଷ ଜନ୍ମଦିନୁଁ, ଆଦିମ କାଳରୁ ଏପର୍ଯ୍ୟନ୍ତ ଗୋଟାଏ ପ୍ରକାର ପରିବାରରେ ଗତିକରି ଆସିନାହିଁ । ତାହା କ୍ରମାଗତ ବଦଳିବାରେ ଲାଗିଛି । ମର୍ଗାନଙ୍କ ଭାଷାରେ ପରିବାର ଏକ ଶକ୍ତି ଓ ନୀତିର ପ୍ରତୀକ । ତାହା କେବେହେଲେ ସ୍ଥାଣୁ ନୁହେଁ । ସମାଜ ନିମ୍ନସ୍ତରରୁ ଉଚ୍ଚସ୍ତରକୁ ଗତି କଲାବେଳେ ତାହା ନିମ୍ନ ରୂପରୁ ଉଚ୍ଚତର ରୂପକୁ ଅଗ୍ରଗତି କରିଥାଏ । ଅନ୍ୟଦିଗରେ ରକ୍ତ ସମ୍ପର୍କ ପ୍ରଥା ହେଉଛି ନିଷ୍କ୍ରିୟ । ଦୀର୍ଘ ସମୟ ଅନ୍ତରାଳରେ ପରିବାରର ରୂପରେ ଯେଉଁ ପରିବର୍ତ୍ତନ ଘଟେ, ତାକୁଇ ରକ୍ତ - ସମ୍ପର୍କ ପ୍ରଥା ଲିପିବଦ୍ଧ କରେ । ପରିବାରର ମୌଳିକ ପରିବର୍ତ୍ତନ ଘଟିଲାବେଳେ ତା'ର ମୌଳିକ ପରିବର୍ତ୍ତନ ସାଧିତ ହୁଏ ।

**ପରିବାର ପ୍ରଥା ବଦଳି ବଦଳି ଚାଲିଛି । ଯେହେତୁ ମଣିଷ ସେହି ପରିବର୍ତ୍ତନର ଅଧୀନ, ଜଗନ୍ନାଥ ସେଥିରୁ ମୁକ୍ତ ନୁହନ୍ତି । ଜଗନ୍ନାଥଙ୍କ କ୍ଷେତ୍ରରେ ତାହା ବେଶ୍ ପରିସ୍ଫୁଟ । ପରିବାର କରିବାରେ ସେ ଏକପତ୍ନୀକ ନୁହନ୍ତି, ଏକାଧିକ । ତାହା ବର୍ତ୍ତମାନ ଆଇନ ବିରୋଧୀ ହେଲେ ବି, ସେ କାଳରେ ତାହା ଦୋଷାବହ ନ ଥିଲା । ଓଲଟି ସାମାଜିକ ଆଭିଜାତ୍ୟର ଚିହ୍ନ, ସାମନ୍ତ ଶ୍ରେଣୀର ପଦମର୍ଯ୍ୟାଦାର ଲକ୍ଷଣ, ସବୁ ରାଜା, ସମ୍ରାଟଙ୍କର ସ୍ୱାଭାବିକ ଚରିତ୍ର । ତାହା ସମାଜରେ ପୁରୁଷର ପ୍ରାଧାନ୍ୟ ଘୋଷଣା କରେ । ସେ ପ୍ରାଧାନ୍ୟ** ଏପରି ନିରଙ୍କୁଶ ଯେ ପୁରୁଷ ଯେକୌଣସି ମୁହୂର୍ତ୍ତରେ ସ୍ତ୍ରୀକୁ ତଡିଦେଇପାରେ ବା ନିଜ ଖୁସି ଅନୁସାରେ ବ୍ୟବହାର କରିପାରେ । ଏପରିକି ଜଗନ୍ନାଥ ମଧ୍ୟ ଲକ୍ଷ୍ମୀକୁ ଘରୁ ତଡିଦିଅନ୍ତି । କାରଣ ଲକ୍ଷ୍ମୀ ନାରୀ ସ୍ୱାଧୀନତା ଜାହିର କଲେ । ସେ ଜାତିଭେଦ ନ ମାନି ନିଜର ଇଚ୍ଛାରେ ଆଚାଣ୍ଡାଳ ସମସ୍ତଙ୍କ ଘରକୁ ଯିବାର ଦାବୀ କଲେ । ସମାଜର ନିୟାମକ ବ୍ରାହ୍ମଣତ୍ୱ କଣ ଏହାକୁ ସହ୍ୟ କରିପାରେ ? ତେଣୁ ସାମ୍ୟଭାବ, ଜାତିଭେଦହୀନତା ଯେଉଁ ଜଗନ୍ନାଥଙ୍କ ଆତ୍ମା, ତାକୁ ହଟାଇ ତାଙ୍କ ଭିତରେ ଜାତିଆଣ ଭାବ ଭର୍ତ୍ତି କରାଗଲା । ମଣିଷ ନିଜ ଆବଶ୍ୟକତା ଅନୁସାରେ ଠାକୁର ଗଢେ ଓ ତାଙ୍କୁ ନିୟନ୍ତ୍ରଣ କରେ, ଏ ତାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ । ଶେଷରେ ଅବଶ୍ୟ ଲକ୍ଷ୍ମୀଙ୍କର ଜୟ ହୁଏ । ତାହା କିନ୍ତୁ ସାମାଜିକ ନ୍ୟାୟ, ନାରୀ ସ୍ୱାଧୀନତା, ନାରୀର ସମାନ ଅଧିକାର ବା ମାନବିକ ମହତ୍ତ୍ୱର ବିଜୟ ନୁହେଁ । ତାହା 'ଲକ୍ଷ୍ମୀ'ଙ୍କର ନିଜସ୍ୱ ବିଜୟ । ଧନ ମାହାତ୍ମ୍ୟର ବିଜୟ । ସାମ୍ୟର ସମାଧି ଉପରେ ତାହା ନୂତନ ସମାଜରେ ଧନର ବିଜୟକୁ ଘୋଷଣା କରେ ।

ଏବେ ଏଠି ଜଗନ୍ନାଥ ତାଙ୍କ ବିପରୀତରେ ପରିଣତ ହୁଅନ୍ତି । ତାଙ୍କର ପୂର୍ବ ସମାଜର ବିଲୋପ ଘଟିଛି । ତାହା କେଉଁ ପ୍ରକାର ସମାଜର ସୂଚନା ଦିଏ ? ତାହା ହେଉଛି ସମାଜରେ ଏଇ ପୁରୁଷର ପ୍ରାଧାନ୍ୟ, ଧନସମ୍ପତ୍ତିର ପ୍ରାଧାନ୍ୟ , ସାମାଜିକ ଭେଦାଭେଦର ପ୍ରାଧାନ୍ୟ ଯାହାକି ଆଜି ସ୍ୱୀକୃତ ଓ ପ୍ରଚଳିତ । ତାହା ଯେ ପୂର୍ବର ସେଇ ସାମ୍ୟ, ମୈତ୍ରୀ, ପ୍ରୀତିର ସମାଜ ନୁହେଁ, ଏଥିରେ ସନ୍ଦେହ ନାହିଁ ।

ସେହି ସାମ୍ୟ ସମାଜର ଅବସାନ ସହିତ ଅବସାନ ଘଟିଛି ଜଗନ୍ନାଥଙ୍କର ଅସଲ ମହତ୍ତ୍ୱର । ମହତ୍ତ୍ୱ ବଦଳେ ପ୍ରକାଶ ପାଇଛି ଏବେ ତାଙ୍କର ମହିମା । ତାଙ୍କର ଅନ୍ତର୍ନିହିତ ଭାବକୁ ଆଡେଇଦେଇ ମଣିଷ ତାଙ୍କ ପ୍ରତି ଆରୋପ କରିଛି ନିଜର ପ୍ରୟୋଜନ ଅନୁଯାୟୀ ନୂତନ ସମାଜର ମନର ଭାବକୁ । ତେଣୁ ଜଗନ୍ନାଥ ମହତ୍ତ୍ୱ କୁ ବଳି ଦେଇଲାଗିଛି ତାଙ୍କର ମହିମାର କୀର୍ତ୍ତନରେ, ଯାହା ତାହାର ବ୍ୟକ୍ତି ସ୍ୱାର୍ଥକୁ ପୂରଣ କରେ ।



# ଚତୁର୍ଥ ପର୍ବ

## ସମାଜର ପଦକ୍ଷେପ

ମଣିଷକୁ ଘେନି ସମାଜ । ମଣିଷ ବଞ୍ଚିଛି ଓ ବଢ଼ିଛି ସେହି ସମାଜ ଭିତରେ, ତାର ସେଇ ଉତ୍ପାଦନ କାର୍ଯ୍ୟ ଦ୍ୱାରା । ଅର୍ଥାତ୍, ଯାହା ଆଗରୁ ନାହିଁ, ତାକୁ ଆଣିବା ଦ୍ୱାରା । ନିଜର ସେଇ ସୃଷ୍ଟିର ଭିତର ଦେଇ ସେଇ ଭାବରେ ନିଜେ ମଧ୍ୟ ଆତ୍ମପ୍ରକାଶ କରିଛି । ସୃଷ୍ଟିହିଁ ମଣିଷର ସ୍ୱଭାବ । ବିନା ସୃଷ୍ଟିରେ ଯେପରି ମଣିଷ ନାହିଁ, ସେହିପରି ମଣଷ ବିନା ସୃଷ୍ଟି ନାହିଁ । କେବଳ ମଣିଷକୁ ଛାଡ଼ିଦେଲେ ଜଗତରେ ଅନ୍ୟ କୌଣସି ପ୍ରାଣୀ ସୃଷ୍ଟି କରିବାରେ ସମର୍ଥ ନୁହନ୍ତି । ସେଇ ସୃଷ୍ଟି ଯେପରି ମଣିଷକୁ ଇତର ପ୍ରାଣୀଙ୍କଠାରୁ ଅଲଗା କରିଦିଏ, ତାକୁ ସେହିପରି ମାନବିକତାର ବିକାଶ ଦିଗରେ ଘେନି ଯାଏ । ମଣିଷ ସୃଷ୍ଟି ଯେଉଁଠି ଯେତେ ବଡ, ସେଠି ସଭ୍ୟତାର ବିକାଶ ସେତେ ଉଚ୍ଚରେ । ମଣିଷର ଚିନ୍ତା ଓ ଚେତନା, ମଣିଷରେ ଭାବନା ଓ ଆଦର୍ଶ ଯେତେ ମହନୀୟ ହେଲେ ମଧ୍ୟ, ସୃଷ୍ଟି ଯଦି ତାର ଅନୁରୂପ ନ ହୁଏ, ମଣିଷ କଦାପି ତାହା ଲାଭ କରିବାରେ ସମର୍ଥ ହେବ ନାହିଁ । ମଣିଷର ମାର୍ଗ ଯେତେ ସତ୍ ହେଉ, ତାର ଚିନ୍ତା ଯେତେ ମହତ ହେଉ, ତାର ବିଶ୍ୱାସ ଯେତେ ଦୃଢ଼ ହେଉ, — ସେ ଯେତେ ଯାହା ଭାବୁ, କହୁ, କରୁନା କାହିଁକି,— ସେ ଯଦି ସୃଷ୍ଟିର ନିୟମକୁ ଅନୁସରଣ ନ କରେ, — ତାର ଭାବନା ସହିତ କର୍ମର ବିଚ୍ୟୁତି ଘଟେ, ତେବେ ବିଫଳତା ଅନିବାର୍ଯ୍ୟ ।

ସେଇ ଯୋଗୁଁ ''ସର୍ବେ ଭବନ୍ତୁ ସୁଖିନଃ'' ଭଳି ମହତ ଭାବନାକୁ ମଣିଷ କେବଳ ଘୋଷି ହେଉଛି । ସେଇ ଯୋଗୁଁ ମାନବିକତାର ଶ୍ରେଷ୍ଠ ଅଭିବ୍ୟକ୍ତି ''ସାମ୍ୟ, ମୈତ୍ରୀ, ପ୍ରୀତିର'' ଧାରଣାକୁ କେବଳ ଝୁରି ହେବାରେ ଲାଗିଛି । ତାହାରି ମର୍ମ୍ମ ବର୍ତ୍ତମାନର ସାମ୍ୟବାଦକୁ ମଧ୍ୟ ସମସ୍ତେ ଚାହାନ୍ତି । ତାକୁ ବାସ୍ତବ ରୂପ ଦେବାକୁ ଯାଇ ମଣିଷ କି ବିରାଟ ବିସ୍ମୟ ସୃଷ୍ଟି ନ କରିଛି ?

ମଣିଷ କେବଳ ନିଜର ପ୍ରୟୋଜନୀୟ ପଦାର୍ଥ ସୃଷ୍ଟି କରେ ନାହିଁ, ତା ସହିତ ଖୋଦ୍ ମଣିଷକୁ ମଧ୍ୟ ଉତ୍ପାଦନ କରେ । ଅର୍ଥାତ୍ ନିଜର ବଂଶବୃଦ୍ଧି କରେ । ତାହା ହିଁ ସବୁ ସମାଜର ମୂଳ ବିଷୟବସ୍ତୁ । ସମାଜର ଉନ୍ନତିର ସ୍ତର ନିର୍ଦ୍ଧାରିତ ହୁଏ, ସେଇ ଉଭୟଙ୍କର ଉତ୍ପାଦନର ବିକାଶରେ । ଅର୍ଥାତ, ଶ୍ରମ ଓ ପରିବାରର ବିକାଶର ସ୍ତର ଦ୍ଵାରା । ମଣିଷ କେତେବେଳେ କେଉଁ ଅବସ୍ଥାରେ ଏବଂ କେଉଁ ସାମାଜିକ ଅନୁଷ୍ଠାନ ଭିତରେ ରହିଛି, ତାହା ତଦ୍ଵାରା ପ୍ରକାଶ ପାଇଥାଏ । ଶ୍ରମ ଓ ପରିବାର ଏ ଦୁହେଁ ପରସ୍ପରରୁ ବିଚ୍ଛିନ୍ନ ନୁହନ୍ତି । ଶ୍ରମର ବିକାଶ ଯେତେ ସ୍ୱଳ୍ପ, ତାର ଉତ୍ପାଦନ ମାତ୍ରା ସେତେ ଅଧିକ ସୀମିତ । ସେହିପରି ସୀମାବଦ୍ଧ ସମ୍ପଦ ସମାଜର । ସେ କ୍ଷେତ୍ରରେ ସେତେବେଳେ ସାମାଜିକ ବ୍ୟବସ୍ଥା ସେତେ ଅଧିକ ଯୌନ ସମ୍ପର୍କର ବନ୍ଧନ ଦ୍ଵାରା ପ୍ରଭାବିତ ହୁଏ । ତାମାନେ ସାମାଜିକ ଗଠନ, ପ୍ରଥମ ଅବସ୍ଥାରେ ଯୌନ-ସମ୍ପର୍କ ଗୋଷ୍ଠୀଜୀବନ ଉପରେ ପ୍ରତିଷ୍ଠିତ । ତାହାରି ଭିତ୍ତିରେ ଶ୍ରମର ଉତ୍ପାଦନ ଶକ୍ତି ବୃଦ୍ଧିପାଏ । ଉତ୍ପାଦନର ବିକାଶ ସହିତ ବ୍ୟକ୍ତିଗତ ସମ୍ପତ୍ତି ଓ ବିନିମୟ ସମ୍ପଦରେ ବୈଷମ୍ୟ ଆଣି ଦିଏ । ଅନ୍ୟମାନଙ୍କର ଶ୍ରମକୁ ବ୍ୟବହାର କରିବାର ସମ୍ଭାବନା ପ୍ରକାଶ ପାଏ । ସମାଜରେ ତାର ବ୍ୟବହାର ଓ ପ୍ରସାର ଶ୍ରେଣୀ-ବିଭେଦ ଆଣେ । ତାହାହିଁ ହୁଏ ଶ୍ରେଣି ଶତ୍ରୁତାର ଭିତ୍ତି । ସମାଜର ସେଇ ପୁରାତନ ଗଠନ ବ୍ୟବସ୍ଥା ସହିତ ନୂତନ ସାମାଜିକ ଶକ୍ତି ଆପଣାକୁ ଖାପ ଖୁଆଇ ନେବାର ଉଦ୍ୟମ କରୁଥାଏ । ଯେତେବେଳେ ତାହା ନ ହୁଏ, ଦୁହିଁଙ୍କ ମଧ୍ୟରେ ଅସାମଞ୍ଜସ୍ୟ, ଅସଙ୍ଗତି ଓ ବିରୋଧିତା ଦେଖାଦିଏ । ସେତେବେଳେ ତାହା ସମ୍ପୂର୍ଣ୍ଣ ବିପରିତ ଆଡକୁ ଗତି କରେ । ତେବେ ସଗୋତ୍ର, ଯୌନ-ସମ୍ପର୍କ ଗୋଷ୍ଠୀମାନଙ୍କ ଉପରେ ପ୍ରତିଷ୍ଠିତ ସମାଜ ନୂତନ ବିକାଶପ୍ରାପ୍ତ ସାମାଜିକ ଶ୍ରେଣୀ ସହିତ ସଂଘାତରେ ଆସି ଭାଜିପଡେ । ତା ସ୍ଥାନରେ ନୂତନ ସମାଜ ଉଦ୍ଭବ ହୁଏ । ତାହା କ୍ରମଶଃ ରାଷ୍ଟ୍ରରେ ସଙ୍ଗଠିତ ହୁଏ । ସେହି ରାଷ୍ଟ୍ରର ସର୍ବନିମ୍ନ ୟୁନିଟ ବା ଏକକ ଗୁଡିକ ଆଉ ସଗୋତ୍ର, ଯୌନ ସମ୍ପର୍କୀୟ ଗୋଷ୍ଠୀ ହୋଇ ରହନ୍ତି ନାହିଁ । ଆଞ୍ଚଳିକ ଗୋଷ୍ଠୀରେ ପରିଣତ ହୁଅନ୍ତି । ସେଠି ଏପରି ଏକ ସମାଜ ଆସେ, ଯେଉଁଠି ପରିବାର ବ୍ୟବସ୍ଥା ଧନସମ୍ପଦ ଦ୍ଵାରା ପୂରାପୂରି ନିୟନ୍ତ୍ରିତ ଓ ଶାସିତ । ଏପର୍ଯ୍ୟନ୍ତ ସମସ୍ତ ଲିଖିତ ଇତିହାସର ବିଷୟବସ୍ତୁ—ସେହି ଶ୍ରେଣୀ ଶତ୍ରୁତା, ଶ୍ରେଣୀ ସଂଗ୍ରାମ, ସେହି ସମାଜର ପରିସର ଭିତରେ ଅବାଧରେ ବିକାଶ ଲାଭ କରେ ।

ଏହି ହେଲା ସଂକ୍ଷେପରେ ସଗୋତ୍ର ଯୌନ ସମ୍ପର୍କ ଭିତ୍ତିରେ ତାହାର କ୍ରମଶଃ ପରିବର୍ତ୍ତନ— ପରିବାର, ବ୍ୟକ୍ତିଗତ ସମ୍ପତ୍ତି ଓ ଶେଷରେ ରାଷ୍ଟ୍ରର ଉଦ୍ଭବର କାହାଣୀ । ସେହି ଆଦିମ ସାମ୍ୟ ସମାଜର ଅବଶ୍ୟମ୍ଭାବୀ ପରିଣତି ହେଉଛି — ଅସାମ୍ୟ ଦିଗରେ ତାର ଅନିବାର୍ଯ୍ୟ ବିକାଶ । ସେସବୁର ଅକାଟ୍ୟ ପ୍ରମାଣର ସୂଚନା ମିଳେ ମାନବ ସମାଜର ସର୍ବ ପ୍ରାଚୀନ ଗ୍ରନ୍ଥ ବେଦରୁ । ସେହି ଗ୍ରନ୍ଥ ବେଦକୁ ଯଦି କେବଳ ଅପୌରୁଷେୟ ଭଗବାନଙ୍କ ସୃଷ୍ଟି ନ କହି ମାନବକୃତ ବୋଲି ଧରାଯାଏ, ଯଦି ତାକୁ ଅନ୍ଧବିଶ୍ୱାସ ଓ ବଦ୍ଧମୂଳ ଧାରଣାର ଅଯୌକ୍ତିକ ଆୟୁଧ କରାନଯାଏ,

ଯଦି ତାକୁ ବାସ୍ତବତାର ପ୍ରତିଫଳନ ଭାବରେ ସାମାଜିକ ବିଜ୍ଞାନର ବିଷୟବସ୍ତୁ କରାଯାଏ ଏବଂ ତାକୁ ଚରମ ସତ୍ୟ, ଅନ୍ତିମ ପ୍ରମାଣ ଅର୍ଥାତ୍ 'ବେଦରଗାର' ଭାବେ ବିଚାର ନକରି ଘଟଣାବଳୀର ନିରବଚ୍ଛିନ୍ନ ପ୍ରବାହ ଓ ଅବିରାମ ପରିବର୍ତ୍ତନ ଭିତରେ ସତ୍ୟ ଅନ୍ୱେଷଣର ଆଧାର କରାଯାଏ, ତେବେ ମଣିଷ ଆଗରେ ତାର ସେଇ ଲୁପ୍ତ ସୁଦୂର ଅତୀତର ଧ୍ୱଂସପ୍ରାପ୍ତ ଛବି ସ୍ୱତଃ ପ୍ରକଟିତ ହେବ । କାର୍ଲ ମାର୍କସ୍‌ଙ୍କ ଭାଷାରେ ବେଦ ଅଧ୍ୟୟନକୁ ନିଜର ଏକଚାଟିଆ କରି ସେଥିରୁ ଅନ୍ୟମାନଙ୍କୁ ନିଷେଧ କରିବା ଦ୍ୱାରା ବ୍ରାହ୍ମଣବାଦ, ତାକୁ ପବିତ୍ର, ଅଲଘନୀୟ କରି ରଖିଛି । କିନ୍ତୁ ତାର ପ୍ରକୃତ ତାତ୍ପର୍ଯ୍ୟ ଉପଲବ୍‌ଧି ଦ୍ୱାରା ମଣିଷକୁ ତାର ସାମାଜିକ ଜୀବନର ଉତ୍ପତ୍ତି ଓ ଗତି ଘେନି ସଚେତନ ହେବାକୁ ହେବ । ସେ ଦିଗରେ ବେଦରେ ଅଧ୍ୟୟନ —ଆଲୋଚନା ଏକ ଅପରିହାର୍ଯ୍ୟ ଆବଶ୍ୟକତା ।

ଜଗନ୍ନାଥଙ୍କୁ ବୁଝିବା ଲାଗି ବେଦର ଆଲୋଚନା ମଧ୍ୟ ନିହାତି ଦରକାର । ଜଗନ୍ନାଥଙ୍କର ସେହି ଆତ୍ମା — ସାମ୍ୟ, ମୈତ୍ରୀ ଓ ପ୍ରୀତିର କାହାଣୀ ଯେପରି ଲିପିବଦ୍ଧ, ତାର ବିକାଶ ସହିତ ବିନାଶର ପ୍ରକ୍ରିୟା ମଧ୍ୟ ସେହିପରି ପ୍ରକଟିତ । ସେଥିସହିତ ଆମକୁ ଉପନିଷଦ, ଗୀତା, ମହାଭାରତ, ରାମାୟଣ ପ୍ରତି ମଧ୍ୟ ଦୃଷ୍ଟି ଦେବାକୁ ହେବ । ଯୁଗ ଯୁଗ ଧରି ଯେଉଁ ବିଶ୍ୱାସର ପରଳ ଆଖିରେ ଜମାଟ ବାନ୍ଧିଛି, ତାକୁ ଦୂର ନ କରିବାଯାଏ ଜଗନ୍ନାଥଙ୍କ ପ୍ରକୃତ ଦର୍ଶନ ସମ୍ଭବ ନୁହେଁ । ସେହିପରି ଦୂର କରିବାକୁ ହେବ ଶ୍ରେଣୀ ବିଭକ୍ତ ସମାଜର ସ୍ୱାର୍ଥ-ପ୍ରଣୋଦିତ ବିକୃତ ଧାରଣାଗୁଡିକୁ, ଯାହାକି ଜଗନ୍ନାଥଙ୍କୁ କଳଙ୍କିତ କରି ଦେଇଛି ।

ମଣିଷ ନିଜର ଅମାନବିକ କାର୍ଯ୍ୟ ଲାଗି ବିଭିନ୍ନ କାଳରେ ଜଗନ୍ନାଥଙ୍କୁ କେତେପ୍ରକାର ମାନବିକ ଗୁଣରେ ଭୂଷିତ କରିଆସିଛି । ତାଙ୍କ ପ୍ରତି ଯେତେ ଅମାନୁଷିକ ଚରିତ୍ର ଆରୋପ କରିଛି, ସେ ସବୁକୁ ନ ପୋଛିବା ଯାଏ, ତାଙ୍କର ପ୍ରକୃତ ସ୍ୱରୂପର ସନ୍ଧାନ ଅସମ୍ଭବ । ଜଗନ୍ନାଥଙ୍କ ଦେହରୁ ସେଇ କାଳିମାର ବିଲୋପର ପ୍ରୟାସହେଉଛି ପ୍ରଥମତଃ ନିଜକୁ ମାନବିକତା—ବିରୋଧୀ ଦୃଷ୍ଟିକୋଣରୁ ମୁକ୍ତ କରିବା । ଜଗନ୍ନାଥଙ୍କ ଅତୀତ ଯେପରି ମଣିଷର ଅତୀତରୁ ଯେ ଅଭିନ୍ନ, ତାଙ୍କର ବର୍ତ୍ତମାନ ଯେପରି ମଣିଷର ବର୍ତ୍ତମାନର ଅନୁରୂପ, ତାଙ୍କର ଭବିଷ୍ୟତ ମଧ୍ୟ ସେହିପରି ମଣିଷର ଭବିଷ୍ୟତକୁ ଅନୁସରଣ କରିବ । ଜଗନ୍ନାଥଙ୍କ ସନ୍ଧାନ ଲାଗି ତାହା ଭିତରେ ପ୍ରବେଶ କରିବାକୁ ହେବ ।

ଆମର ମାନବର ଆଦ୍ୟ ଆଧାର ବେଦକୁ ଆଗ ଦେଖିବା । ବେଦକୁ ବୁଝିବାରେ ଏକ ମାତ୍ର ଚାବିକାଠି ହେଉଛି ସମାଜ -ବିଜ୍ଞାନ । ତା ବିନା ହୁଏତ ତାହା ଏକ ଅପୌରୁଷେୟ ଗୂଢ ଜ୍ଞାନ, — ନାହିଁତ ବ୍ରାହ୍ମଣ୍ୟବାଦର ଏକ ନିଛକ ଅନ୍ଧବିଶ୍ୱାସ ହେବ । ଗୂଢଜ୍ଞାନ ଓ ବ୍ରାହ୍ମଣ୍ୟବାଦ ଦୁହିଁଙ୍କର ଭିତ୍ତି ସମାନ । ତାଙ୍କ ଭିତରୁ କେହି ବାସ୍ତବତା ଓ ତାର ବିକାଶକୁ ଧରନ୍ତି ନାହିଁ । ଦେଖନ୍ତି ନାହିଁ କେଉଁ ବାସ୍ତବତାର ଭିତ୍ତି ଓ ଗତି ଉପରେ ବେଦ ଗଠିତ; କେଉଁ ଅବସ୍ଥାରୁ ତାହା ଜାତ; କେଉଁ ଆବଶ୍ୟକତା

ପୂରଣ ଲାଗି ତାହା ଉଦ୍ଦିଷ୍ଟ । ମଣିଷ ବିକାଶର ଏକ ନିର୍ଦ୍ଦିଷ୍ଟ ସ୍ତରରେ ବେଦ ଦେଖାଦେଇଛି ଓ ଦୀର୍ଘ ଦିନ ଧରି ତାହା ରଚିତ ହୋଇଛି । ବେଦ ରଚନାର ଆରମ୍ଭ ଓ ଶେଷ ଏକହଜାର ବର୍ଷରୁ ଉର୍ଦ୍ଧକାଳ ଧରି ଚାଲିଛି । ସେହି ଦୀର୍ଘ ଦିନ ଭିତରେ ସମାଜରେ ଗୋଟାଏ ମୌଳିକ ପରିବର୍ତ୍ତନ ଆସିଯାଇଛି । ତାହା ପଶୁଚାରଣ, ଯାଯାବର ଜୀବନରୁ କୃଷି କାର୍ଯ୍ୟ ଓ ବସତି ସ୍ଥାପନ ଦିଗକୁ ଗତି କରିଛି । ଉତ୍ପାଦନ ବୃଦ୍ଧି ପାଇଛି । ବ୍ୟକ୍ତିଗତ ସମ୍ପତ୍ତିର ଆବିର୍ଭାବ ଘଟିଛି । ଉତ୍ପାଦନ-ଶ୍ରମ ସ୍ତରରେ ବିକାଶ ହେତୁ ଶ୍ରମରେ ବିଭାଜନ ଆସିଛି । ଶ୍ରେଣୀ ସମାଜର ସୂତ୍ରପାତ ହୋଇଛି । ବେଦର ଆଦ୍ୟ ଓ ଶେଷଭାଗରେ ସେଇ ପାର୍ଥକ୍ୟର ଚିତ୍ର ବେଶ୍ ପ୍ରତିଫଳିତ । ବେଦାନ୍ତ, ଉପନିଷଦ ବେଳକୁ ତାହା ଆହୁରି ଫୁଟି ଉଠିଛି । ତଦନୁଯାୟୀ ଧ୍ୟାନଧାରଣା ଆଦି ରୂପ ନେଇଛି । ପରବର୍ତ୍ତୀ କାଳରେ ବିଭିନ୍ନ ଶାସ୍ତ୍ର ତୁଳନାରେ ତାହା ଉତ୍ତରୋତ୍ତର ବୃଦ୍ଧି ପାଇଆସିଛି । ମଞ୍ଜିରୁ ଯେପରି ବୃକ୍ଷକୁ ବୁଝିହୁଏ , ସେହିପରି ମଣିଷ ସମାଜର ସେଇ ଆଦ୍ୟ ଅଙ୍କୁର—ତାର ବିକାଶର ପ୍ରାଥମିକ ଅବସ୍ଥାର ଉପଲବ୍ଧି କେବଳ ମଣିଷକୁ ତାର ଅନ୍ତିମ ବିକାଶ ପଥର ନିର୍ଭୁଲ ସନ୍ଧାନ ଯୋଗାଇଦେଇପାରେ । ଏହା ବେଦର ନିନ୍ଦା, ପ୍ରଶଂସା ବା ତାକୁ ମାନିବା, ନ ମାନିବା, କିମ୍ବା ତାର ସପକ୍ଷ, ବିପକ୍ଷର ପ୍ରଶ୍ନ ନୁହେଁ । ତାର ଆଲୋଚନା ମାନବ ସମାଜପାଇଁ ବିଶେଷ କରି ଭାରତୀୟ ଲୋକଙ୍କ ପାଇଁ ନିତାନ୍ତ ଆବଶ୍ୟକ । ଜଗନ୍ନାଥଙ୍କ କ୍ଷେତ୍ରରେ ଯାହାକୁ ମୋଟେ ଏଡ଼ି ଦିଆଯାଇ ନ ପାରେ ।

କାମ ବିନା ଯେପରି ମଣିଷ ବଞ୍ଚିପାରେ ନା, ସେହିପରି ବିନା ଧାରଣାରେ ସେ ରହିପାରେ ନାହିଁ । ସେହି ଧାରଣାରେ କେବଳ ଧର୍ମ ବିଶ୍ୱାସ ବା ଆଦର୍ଶ ଆଦି ନାହିଁ, କାରଣ ସବୁର ମୂଳରେ ରହିଛି ଭାଷା । ଭାଷା ବିନା କୌଣସି ବିଷୟ ବା ବିଶ୍ୱାସ ପ୍ରକାଶ ପାଏ ନାହିଁ । ତା କାମ ଭଳି ଏକ ଅପରିହାର୍ଯ୍ୟ ଆବଶ୍ୟକତା ।

ବଞ୍ଚିବା ପାଇଁ ପ୍ରକୃତି ବିରୋଧରେ ଲଢେଇ । ସେ ଲଢେଇ ପାଇଁ ଦରକାର ହାତ ହତିଆର—ଉତ୍ପାଦନ ଯନ୍ତ୍ର ଓ କୌଶଳ । ତାକୁ ପ୍ରୟୋଗ କରିବାକୁ ଦରକାର ମଣିଷମାନଙ୍କ ମଧ୍ୟରେ ମିଳିତ ଉଦ୍ୟମ—ପରସ୍ପର ସମ୍ପର୍କ । ଯେହେତୁ ଉତ୍ପାଦନ ସଦା ସାମୂହିକ କାର୍ଯ୍ୟ, ସେଇ ସାମୁହିକ କାର୍ଯ୍ୟ ଦରକାର କରେ ମଣିଷ ଭିତରେ ଭାବର ଆଦାନ ପ୍ରଦାନ । ତାକୁ ପ୍ରଥମେ ମଣିଷ ଅଙ୍ଗଭଙ୍ଗୀ, ଠାରଠୂର ଦ୍ୱାରା ପ୍ରକାଶ କରୁଥିଲା । ପରେ କଣ୍ଠ ଦ୍ୱାରା ପ୍ରକାଶ କଲା । ପଶୁଭଳି ହୁଙ୍କାର ନ କରି ସେ କଥା କହି ଶିଖିଲା । ଭାଷା ଏବେ ମଣିଷକୁ ଅଧିକ ଏକତାବଦ୍ଧ କରି ଦେଲା । ତାର କାର୍ଯ୍ୟକୁ ଅଧିକ ଉନ୍ନତ ଓ ଶୃଙ୍ଖଳିତ କରିବାରେ ସାହାଯ୍ୟ କଲା । ଏଣିକି ଶ୍ରମ, ଐକ୍ୟ ଓ ଭାଷା ପରସ୍ପରକୁ ପରିପୁଷ୍ଟ କରିବାରେ ଲାଗିଲେ ।

ହାତର କାମ ସହିତ ଫୁଟି ଉଠିଛି ମୁହଁର ଭାଷା — ମନର ଭାବ । କାମ ସହିତ କଣ୍ଠର ସ୍ୱର ଅଙ୍ଗାଙ୍ଗିଭାବେ ଜଡ଼ିତ । ତାହା ଏବେ ବି ଧାନକଟା, ସବାରୀ ବୁହା, କୋବାବାଡ଼ିଆ, ହଳଯୋଚା ପ୍ରଭୃତି ବହୁ କ୍ଷେତ୍ରରେ ଦେଖାଯାଏ । ହାତର

କାମ ସହିତ କଣ୍ଠର ସ୍ୱର ପ୍ରକାଶ ପାଏ -ଶ୍ରମ ଗାନ ଆକାରରେ । ତାହା ପୁଣି ସ୍ୱତଃ-ସ୍ଫୂର୍ତ୍ତ ଭାବରେ — ଆପେଆପେ । ସେହି ଗାନ କାମର ଭାରକୁ ଲାଘବ କରିବା ସହିତ ଯୋଗାଇଦିଏ ଉତ୍ସାହ ଓ ପ୍ରେରଣା ।

ତେବେ, ମଣିଷର କାମ କେବଳ ଶ୍ରମ ଉପରେ ନୁହେଁ, ତାହା ସେଥିସହିତ ତାର କଣ୍ଠର ସ୍ୱର, ଭାଷା ଉପରେ ନିର୍ଭର କରେ । ସେଇ ଶ୍ରମଗାନ ପ୍ରକାଶ ପାଏ ସୁର୍ ଦ୍ୱାରା, ଛନ୍ଦର ମାଧ୍ୟମରେ । ତା' ସହିତ ଆସେ ନାଚ । କାମର ତାଳ ଭିତରୁହିଁ ମଣିଷର ଭାଷା ଓ ଛନ୍ଦଆଦିର ବିକାଶ । ସେହି ଶ୍ରମଗାନ ଓ ନାଚର ଗୁରୁତ୍ୱ ଏବଂ ତାର ଆବଶ୍ୟକତା ଆଦିମ ମଣିଷଙ୍କ ପକ୍ଷରେ କେତେ ବେଶୀ, କିପରି ଅପରିହାର୍ଯ୍ୟ, ତାହା ବର୍ତ୍ତମାନ ଲୋକଙ୍କ ପକ୍ଷରେ ଭାବିବା କଷ୍ଟକର ।

**ମାନବଭାବର ସ୍ଫୁରଣ —**

ଆଦିମ ସମାଜରେ କାମ ସହିତ ଯେପରି ଗାନର ସମ୍ପର୍କ, ସେହିପରି ଗାନ ସହିତ ସମ୍ପର୍କ ନାଚର, ଏବଂ ନାଚ ସହିତ ଘନିଷ୍ଠ ଭାବେ ସମ୍ପୃକ୍ତ ମଣିଷର କାମନା । ସେହି କାମନାର କାଳ୍ପନିକ ସଫଳତାର ଭାବନା ଭିତରୁ ଯାଦୁର ଜନ୍ମ । କଳ୍ପନା ଭିତରେ କାମନାକୁ ସଫଳ କରି ମଣିଷ ବାସ୍ତବରେ ତାହା ପାଇବାର ଉଦ୍ୟମ କରେ । ବାସ୍ତବତାକୁ ଲାଭ ଓ ନିୟନ୍ତ୍ରଣ କରୁଛି ବୋଲି ବିଚାର କରେ । ସେଇ ଯାଦୁ ଭିତରୁ ଜନ୍ମ ନେଇଛି ବିଭିନ୍ନ ବିଶ୍ୱାସ ଓ ଧ୍ୟାନ ଧାରଣା, ତାହାହିଁ ସୃଷ୍ଟି କରିଛି ପ୍ରତିଷ୍ଠିତ ଧର୍ମର ଭିତ୍ତିକୁ ।

ଆଜିକାଲି ଭଳି ଆଦିମ ସମାଜରେ ଇଚ୍ଛା ଓ କାମନାର ସମ୍ପର୍କ ନ ଥାଇ ଖାଲି କୌଣସି ଗୀତ କି ନାଚର ପ୍ରଶ୍ନ ନ ଥିଲା । ଏ ସମସ୍ତ ବିଷୟଟା ଥିଲା ଗୋଷ୍ଠୀ ଜୀବନର ପରିପ୍ରକାଶ । ସମସ୍ତେ ଏକାଠି କାମ କରନ୍ତି, ଏକାଠି ଗୀତ ଗାଇ ନାଚନ୍ତି — ସେଇ କାମନାର ପୂରଣଲାଗି । ସେ ଅବସ୍ଥାର ମଣିଷ, କାମର ମଣିଷ, କୌଣସି କଳ୍ପନାର ମଣିଷ ନୁହେଁ । ସେଠି କାମ ଓ କଳ୍ପନା ଭିତରେ ଭେଦ ଆସିନାହିଁ । ସେ ଯାହା କରିବାକୁ ଚାହେଁ ସେଥିଲାଗି କୌଣସି ଦେବତାକୁ ଡାକେ ନାହିଁ । ଅନ୍ୟ କାହାକୁ କରିବାକୁ କୁହେ ନାହିଁ । ଆଉ କାହାଦ୍ୱାରା କରାଇନେବା ପରିବର୍ତ୍ତେ ତାହା ସେ ନିଜେ କରେ । ସେ ଯଦି ପାଣି, ପବନ, ଖରା, ବର୍ଷା ଚାହେଁ, ସେଥିଲାଗି କୌଣସି ଦେବତା ବା ଭଗବାନଙ୍କୁ ଲୋଡ଼େ ନାହିଁ । ସେ ଡାକେ ନିଜର ଗୋଷ୍ଠୀର ଭାଇଙ୍କୁ । ସମସ୍ତ ଟ୍ରାଇବ୍ (Tribe) ବା ଉପଜାତି, ସୂର୍ଯ୍ୟ-ନାଚ, ବର୍ଷା-ନାଚ, ପବନ-ନାଚ, ଶିକାର-ନାଚ ଆଦି ବିଭିନ୍ନ ପ୍ରକାର ନାଚ କରନ୍ତି । ସେ ନିର୍ଦ୍ଦିଷ୍ଟ ପ୍ରକାରର ନାଚ ଦ୍ୱାରା ନିର୍ଦ୍ଦିଷ୍ଟ ପ୍ରକାରର କାମନା ପୂରଣ କରାଏ । ତା ହୁଏ ଈପ୍‌ସିତ କାମନା ପୂରଣର ଉପାୟ—ବାସ୍ତବତାକୁ ନିୟନ୍ତ୍ରଣ କରୁଛି ବୋଲି ମୋହ ସୃଷ୍ଟି କରିବା — ଯାହାକି ବାସ୍ତବତାକୁ ନିୟନ୍ତ୍ରଣ କରିପାରେ । ବର୍ଷା ଚାହିଁଲେ ନାଚ-ଗାନ ଦ୍ୱାରା ମେଘ ଘୋଟିବା, ପବନ ବୋହିବା, ବିଜୁଳି ମାରିବା, ପାଣି ପଡିବା ଆଦି କାର୍ଯ୍ୟ

ଦର୍ଶାଯାଏ । ବା ଅନୁକରଣ କରାଯାଇଥାଏ । ଅର୍ଥାତ୍ ନିଜର କାମନାକୁ କଳ୍ପନାରେ ସଫଳ କରି ଆଦିମ ମଣିଷ ବିଚାରେ ଯେ, ବୋଧହୁଏ ବାସ୍ତବରେ ସେ ସଫଳ ହେବାରେ ଲାଗିଲା — ବା ସଫଳ ହୋଇପାରେ । ଠିକ୍ ପିଲାମାନେ 'ମିଛିମିଛିକା' ଖେଳିଲା ଭଳି । ସେମାନେ ଯେପରି ଚଉକିକୁ ରେଳଗାଡ଼ି କରି, ରେଳଗାଡ଼ି ଚାଲିଲା ଭଳି ଶବ୍ଦ କରି ମନେକରନ୍ତି ଯେ ବିଭିନ୍ନ ସ୍ଥାନ ବୁଲି ଆସୁଛନ୍ତି । ମଣିଷର ପିଲାଦିନ ଭଳି ମାନବ ସମାଜର ସେଇ ଆଦ୍ୟ ଜୀବନର ସ୍ମାରକୀ ଆଜି ବି ବିଦ୍ୟମାନ ।

''ତସ୍ମାଦି ହୈବଂ ବିଦ୍ୟୁଦଗାତା ବ୍ରୟାତ୍ ।

କଂତେ କାମ ମାଗାୟାନୀତ୍ୟଷ ହ୍ୟେ କାମଗାନସ୍ୟେଷ୍ଟେ

ଯ ଏବଂ ବିଦ୍ୱାନ୍ ସାମ ଗାୟତି, ସାମ ଗାୟତି''

ସେଥିପାଇଁ ଏ ପ୍ରକାର ଜ୍ଞାନ ସମ୍ପନ୍ନ ଉଦ୍‌ଗାତା କହିଲେ—''ତମର କେଉଁ କଥାବସ୍ତୁ ଗାନ୍ କରିବି ? କାରଣ ଯିଏ ଏହିଭଳି ଜାଣି ସାମଗାନ କରିପାରେ, ସେ କାମନାକୁ ଶାସନ କରେ । (୧.୭.୯ ଋକ୍‌ବେଦ)

ତେଣୁ ସେତେବେଳେ କାମନା ଛଡା ନାଚ ଗାନ ନାହିଁ । ତାହାହିଁ ପ୍ରାଚୀନ ସମାଜର ପ୍ରାଣବସ୍ତୁ । ଏବେ ମଧ ଆଦିବାସୀ ସମାଜରେ ସେ ନାଚ ଗାନ ସେମାନଙ୍କର ଏକ ଅବିଚ୍ଛେଦ୍ୟ ଅଙ୍ଗ । ଅନ୍ୟଦିଗରୁ ଦେଖିଲେ ତାହାହିଁ ମଣିଷର ଆନନ୍ଦ, ନିଜ ଜୀବନର ଉପଭୋଗ । ତାହା ସାଂସ୍କୃତିକ ଭାବର ଆଦ୍ୟ ଅଙ୍କୁର ।

ପ୍ରକୃତି ସହିତ ମଣିଷର ନାଭିନାଡ ବିଚ୍ଛିନ୍ନ ନ ହେବାଯାଏ, ସେ ଏକ ସ୍ୱାଧୀନ ସ୍ୱତନ୍ତ୍ର ଶକ୍ତି ହୋଇ ଠିଆ ନ ହେଲା ପର୍ଯ୍ୟନ୍ତ, ମଣିଷର ପ୍ରାକୃତିକ ଗୁଣଗୁଡିକ ପରିସ୍ଫୁଟ ହେବା ଏବଂ ସେଗୁଡିକ ପରସ୍ପରଠାରୁ ଅଲଗା ହୋଇ - ସ୍ୱାଧୀନ, ସ୍ୱତନ୍ତ୍ର ଭାବେ ଆତ୍ମପ୍ରକାଶ କରିବା ସମ୍ଭବ ନୁହେଁ । ପୁଷ୍ପ ପତ୍ରରେ ମଣ୍ଡିତ ହେବାପାଇଁ ଆଗ ବୃକ୍ଷର ବିକାଶ ଦରକାର ।

ନାଚ, ଗାନ ସହିତ ଛନ୍ଦ ଜଡିତ । ବିନା ଛନ୍ଦରେ ନାଚ, ଗାନ ନାହିଁ । ସେ ଏକ ଅପୂର୍ବ ମିଳନ, ସ୍ୱତଃ ପ୍ରକାଶ ପାଏ । ସବୁଛନ୍ଦ ଶେଷରେ ସେହି ଉତ୍ପାଦନ କର୍ମକୁ ଆଶ୍ରା କରିଛି । ସମୂହ ଉତ୍ପାଦନ ଭିତରୁ ତାର ଉଦ୍ଭବ । କୋବା ବାଡିଆଠାରୁ ସବାରି ବୁହାଯାଏ, ପ୍ରତ୍ୟେକଟି ସମୂହ କାମବେଳେ ଲୋକ ତାଳଦେଇ ଗୀତ ବୋଲେ । ପ୍ରତ୍ୟେକ କାମର ବିଭିନ୍ନ ତାଳ ରହିଛି । ସେହି ତାଳ ଓ ଛନ୍ଦର ବିକାଶ ଘଟିଛି ବେଦରେ । ତାହା ଗାନ ଉପରେ ଗୁରୁତ୍ୱ ଦିଏ । ବୈଦିକ ବିଧିବିଧାନ ଓ ଯଜ୍ଞ ଆଦିରେ ଶ୍ଳୋକ ଓ ମନ୍ତ୍ରଗୁଡିକୁ ନିର୍ଭୁଲ ଭାବେ ଠିକ୍ ଠିକ୍ ଉଚ୍ଚାରଣକରି ନିର୍ଦ୍ଧାରିତ ଛନ୍ଦରେ ଗାନ କରି ପାରିଲେହିଁ ତାହା ଫଳଦାୟକ ହୋଇଥାଏ ।

ଅସଲ ବିଷୟ ହେଉଛି ଏ ସମସ୍ତ ଜିନିଷ ଉତ୍ପାଦନ କର୍ମ ସହିତ ଅବିଚ୍ଛେଦ୍ୟ ଭାବେ ଜଡ଼ିତ । ମୂଳ ବୈଦିକ ଛନ୍ଦ ହେଉଛି—ମାତ୍ର ୭ଟି । ଗାୟତ୍ରୀ, ବୃହତୀ, ଜଗତୀ, ଉଷ୍ଣିକ୍; ପଙ୍କ୍ତି (ପଙ୍କ୍ତି), ଅନୁଷ୍ଟୁପ୍ । ଏ ପ୍ରତ୍ୟେକଟି ଉତ୍ପାଦନ କର୍ମ ସହିତ ସମ୍ପୃକ୍ତ ଓ ସେଇଥିରୁ ଜାତ, ଯାହାକି ମଣିଷ ଜୀବନ ଧାରଣ ଲାଗି ଏକାନ୍ତ ଆବଶ୍ୟକ । ବୃହତୀ ବୋଇଲେ ଏକ ପ୍ରକାର ଶସ୍ୟ । ପଙ୍କ୍ତି ହିଡ଼ା ହେଉଛି ଜମିର ହିଡ଼ ଉଷ୍ଣିକ୍ ହେଲା ବିଆଳି ଧାନ ଓ ରବି ଫସଲ । ତ୍ରିଷ୍ଟୁପ୍ ହେଲା ଧାନକଟା, ଜଗତୀମାନେ ଗୋରୁ ଗାଈ, ଗାୟତ୍ରୀ ଅର୍ଥ ପ୍ରାଣରକ୍ଷାର ଉପାୟ । ଅନୁଷ୍ଟୁପ୍ ଛନ୍ଦଟି ଆସିଛି ଏ ସବୁର ପରେ ।

ନାଚ, ଗାନ ଓ ଛନ୍ଦ ଏସବୁ ପରସ୍ପର ସହ ସଂଯୁକ୍ତ ଏବଂ ପ୍ରକାଶ ପାଏ ଭାଷାର ମାଧ୍ୟମରେ । ଆଉ ଛନ୍ଦମୟ ଭାଷାହିଁ କବିତା । ନାଚ, ଗାନ ଓ ଗୀତ ବା କବିତା—ଏସବୁ ବସ୍ତୁତଃ ଗୋଟିଏ ମୂଳରୁ ଜାତ । ତାହା ହେଉଛି ସାମୂହିକ ଶ୍ରମ । ସେହି ନାଚ, ଗାନ, କବିତା ହେଉଛି ସାମୂହିକ ଶ୍ରମର ମୂଳଭିତ୍ତି । ତାକୁ ଛାଡ଼ି ବେଦ ନାହିଁ । ସମାଜର ବିକାଶର ଜ୍ଞାନ ଅନୁଶରଣ ଲାଗି ଯେପରି ବେଦର ଉପଲବ୍ଧି ଆବଶ୍ୟକ, ସେହିପରି ବେଦର ଜ୍ଞାନ ଦରକାର କରେ ମଣିଷ ସମାଜର ଆଦିମ ବିକାଶକୁ ନର୍ଭୂଲ ଭାବରେ ବୁଝିବାରେ, ଭବିଷ୍ୟତର ପଥକୁ ଅନୁମାନ କରିବାରେ ।

ବେଦର ଅଧ୍ୟୟନ, ତାର ବାସ୍ତବ ଉପଲବ୍ଧି, କୌଣସି ଗୂଢ଼ ଜ୍ଞାନ ଦ୍ୱାରା ସମ୍ଭବ ନୁହେଁ । କାରଣ ଗୂଢ଼ ଜ୍ଞାନ ନିଜେ ରହସ୍ୟାବୃତ ହୋଇଥିବା ହେତୁ ତାହା ବେଦକୁ ଅଧିକ ଅବୋଧ, ଅଲୌକିକ ଓ ଅପୌରୁଷେୟ କରିଦିଏ । ତାହା ଜ୍ଞାନ ପରିବର୍ତ୍ତେ ଅଲଘଂନୀୟ ପବିତ୍ର ବିଶ୍ୱାସରେ ପହଞ୍ଚେ । ଅଳ୍ପ କେତେକ ମୁଷ୍ଟିମେୟ ଲୋକେ ଆପଣାକୁ ଏଇ ଗୁଢ଼ ଜ୍ଞାନର ଏକମାତ୍ର ଅଧିକାରୀ ବୋଲି ଦାବୀ କରନ୍ତି । ଶୂଦ୍ର ଭଳି ସାଧାରଣ ଲୋକଙ୍କ ପାଇଁ କେବଳ ବେଦ ଅଧ୍ୟୟନ ନୁହେଁ, ଶ୍ରବଣ ମଧ୍ୟ ନିଷିଦ୍ଧ । ତେଣୁ ସେଇ ମୁଷ୍ଟିମେୟଙ୍କ ମୁଖର ନିଃସୃତ ବାଣୀ ହୁଏ ଅକାଟ୍ୟ ଓ ଅଖଣ୍ଡନୀୟ, ତାହାହିଁ ଜ୍ଞାନର ଶେଷ ସୀମା । ତାହାକୁ ପ୍ରଶ୍ନ କରାଯାଇ ନ ପାରେ । ଶେଷରେ ଅନ୍ଧ ଧାରଣା ହୁଏ ତାର ଯୁକ୍ତିଯୁକ୍ତ ପରିଣତି ।

ଗୂଢ଼ ଜ୍ଞାନର ବିପରୀତ ହେଉଛି ବିଚାର ଜ୍ଞାନ । ସେହି ବିଚାର ଜ୍ଞାନହିଁ ପ୍ରତ୍ୟେକ ଜିନିଷ ଓ ଘଟଣା ପଛରେ ଲୁକ୍କାୟିତ କାର୍ଯ୍ୟକାରଣ ସମ୍ପର୍କକୁ ଉଦ୍‌ଘାଟିତ କରେ । ତାର ମୂଳ ନିୟମର ଆବିଷ୍କାର—ତାର ଅପରିହାର୍ଯ୍ୟତାର ଅବଧାରଣା, ଅର୍ଥାତ୍ ତାର ଉତ୍ପତ୍ତି, ଗତି, ପରିସମାପ୍ତିକୁ ଅନ୍ୱେଷଣ କରେ । ସେହି ପ୍ରକ୍ରିୟାର ସଚେତନ ଉପଲବ୍ଧି ଦ୍ୱାରା ମଣିଷ ପ୍ରକୃତିକୁ ବୁଝିବା ଓ ତାକୁ ନିୟନ୍ତ୍ରଣ କରିବାରେ ସମର୍ଥ ହୁଏ ।

ତାହା ନ ହେଲାଯାଏ, ମଣିଷ ପ୍ରକୃତି ଆଗରେ ଅସହାୟ ହୋଇ ପଡ଼ି ରହିଥାଏ । ତାକୁ ଆୟତ୍ତ ନ କରି ଉପାସନା କରିବାରେ ଲାଗେ । ଅନ୍ଧଭାବେ ସେହି

'' ଗୂଢଜ୍ଞାନକୁ'' ଅନୁସରଣ କରେ । ତାହା ମଣିଷର ସ୍ୱାଧୀନ ଚେତନାକୁ ଖର୍ବ କରିବା ଦ୍ୱାରା ସମାଜର ଅଗ୍ରଗତି ରେ ପ୍ରତିବନ୍ଧକ ହୁଏ । ଅନ୍ୟ ଦିଗରେ ସେଇ ଅନ୍ଧ ଧାରଣା କେତେକ ଲୋକଙ୍କ ଲାଗି ନିହାତି ଦରକାର, କାରଣ ତାହା ତାଙ୍କ ଲାଗି ଜୀବିକା ନିର୍ବାହର ଉପାୟ । ତେଣୁ ସେମାନେ ତାକୁ ସବୁମତେ ପ୍ରଚଳିତ, ଦୃଢୀଭୂତ କରିବାକୁ ଚାହାନ୍ତି ।

ଆଦିମ କାଳର ଯାଦୁ ବିଶ୍ୱାସ —ବ୍ରାହ୍ମଣ ପୁରୋହିତ ବିଧି ବିଧାନ ଓ ମନ୍ତ୍ରତନ୍ତ୍ର—ଯାହା ଆଧୁନିକ ଯୁଗରେ ଗୋଟିଏ କୁସଂସ୍କାର ଓ ଅନ୍ଧଧାରଣା ବୋଲି ବିଚାର କରାଯାଏ —ଏକ ସମୟରେ ତାହା ଥିଲା ଏକ ଅପରିହାର୍ଯ୍ୟ ଆବଶ୍ୟକତା । ସେହି ଅବଶ୍ୟକତା ହେତୁହିଁ ସମାଜରେ ତାର ଉଦ୍‌ଭବ । ଯାହା ଆଜି କୁସଂସ୍କାର ଭାବେ ସମାଜକୁ ପଛେଇ ରଖେ, ତାହା ଦିନେ ସଂସ୍କାର ଭାବେ ତାକୁ ଆଗେଇ ନେବାରେ ସହାୟକ ହୋଇଥିଲା । ସେହି ସହାୟକ ଭୂମିକାର ଅବସାନରେ ସେ ତାର ବିପରୀତରେ ପରିଣତ ହେଲା । ଅଗ୍ରଗତିର ପ୍ରତିବନ୍ଧକ ହୋଇ ଉଠିଲା । ଅନ୍ଧଗଳି ଭଳି ତାହା ଅନ୍ଧବିଶ୍ୱାସର ରୂପ ନେଲା ।

ବିଚାର କଲେ, ବ୍ରାହ୍ମଣ ପୁରୋହିତ ହେଲେ ସେ କାଳର ବୁଦ୍ଧିଜୀବୀ ଶ୍ରେଣୀ । ତାଙ୍କର ବିଧିବିଧାନ କୁସଂସ୍କାର ହେଲେ ବି ତାହା ଦିନେ ଥିଲା ଅଗ୍ରଗତିର ଆଧାର । ବିନା ଆବଶ୍ୟକତାରେ ମଣିଷ କିଛି ସୃଷ୍ଟିକରେ ନାହିଁକି ଗ୍ରହଣ କରିବାକୁ ବି ଯାଏ ନାହିଁ । ପ୍ରତ୍ୟକ୍ଷ ଭାବେ ବା ପରୋକ୍ଷ ଭାବେ ପ୍ରତ୍ୟେକଟି ଅଗ୍ରଗତି ଉତ୍ପାଦନର ବିକାଶ ସହିତ ସମ୍ପୃକ୍ତ । କାରଣ, ତାହାହିଁ ମଣିଷର ବଞ୍ଚିବା ଓ ବଢିବାର ଉପାୟ । ବ୍ରାହ୍ମଣ ପୁରୋହିତଙ୍କର ସେଇ ବିଧିବିଧାନ ସେତେବେଳେ ଦିନେ ସେଇ ଆବଶ୍ୟକତା ପୂରଣ କରୁଥିଲା, ସେଇଥିଯୋଗୁଁ ସମାଜରେ ସେଇସବୁ ଧାରଣାର ପ୍ରଭାବ ଏବଂ ତାର ପ୍ରବକ୍ତାମାନଙ୍କର ଏତେ ପ୍ରାଧାନ୍ୟ । ତା ନ ହେଲେ ସେମାନଙ୍କ ପକ୍ଷରେ ଏତେକାଳ ବଞ୍ଚିରହିବା କଦାପି ସମ୍ଭବ ହୋଇ ନ ଥାନ୍ତା । ବହୁଦିନ ହେଲା ସେସବୁ ଧାରଣା ତାଙ୍କର ଆବଶ୍ୟକତା ହରାଇ କୁସଂସ୍କାର, ଅନ୍ଧ ଧାରଣାରେ ପରିଣତ ହୋଇଥିଲେ ମଧ ତାଙ୍କର ପୂର୍ବର ସେହି ସ୍ୱାଭାବିକ ଗତାନୁଗତିକ ଶକ୍ତି ବଳରେ ଏବେ ବି ଗଡିଚାଲିଛନ୍ତି ।

ଆଜିର ଜାତିପ୍ରଥା ଯାହା ଏତେ ଘୃଣ୍ୟ, — ଦିନେ ତାହା ସେଠି ଉତ୍ପାଦନ ଭିତ୍ତି ଉପରେ ପ୍ରତିଷ୍ଠିତ ଓ ତା ସହିତ ଘନିଷ୍ଠ ଭାବେ ଜଡିତ । ପ୍ରଥମେ ଋଗ୍ ବେଦ ସମାଜରେ ବ୍ରାହ୍ମଣ, କ୍ଷତ୍ରୀୟ ଦୁଇ ଶ୍ରେଣୀ (ଜାତି ଭାବେ ନୁହନ୍ତି) ଦେଖା ଦେଇଥିଲେ । ତାହା ଆର୍ଯ୍ୟମାନଙ୍କୁ ସିନ୍ଧୁ ଉପତ୍ୟକା ଛାଡି ବାହାରକୁ ବିସ୍ତାର ଲାଭ କରିବାରେ ସାହାଯ୍ୟକାରୀ ହେଉଥିଲା । ଆଜିର ଜାତିଭେଦ ପ୍ରଥମେ ଚାତୁର୍ବର୍ଣ୍ଣ୍ୟ ଭାବେ ପ୍ରକାଶ ପାଇଲା । ଯଜୁର୍ବେଦର ଉପଜାତି (tribe)ଙ୍କ ମଧ୍ୟରେ ପରେ ତାହା ଶ୍ରେଣୀସମାଜର ଭିତ୍ତି ସୃଷ୍ଟି କଲା । ସେତେବେଳେ ଯେଉଁ ଉପଜାତିମାନେ ପରସ୍ପର

ମଧ୍ୟରେ ଲଢୁଥିଲେ — ସଦା ସଂଗ୍ରାମରତ ଥିଲେ, ଏହା ଦ୍ୱାରା ତାହା ବନ୍ଦହେଲା । ସେମାନେ ଗୋଟାଏ ଚାତୁର୍ବର୍ଣ୍ଣ୍ୟ ଶୃଙ୍ଖଳା ଭିତରକୁ ଆସିଗଲେ ।

ଏଇ ଦେଖ ଧାନ ବୁଣା, ଧାନକଟା ବା ଅମଳ— ଯେ କୌଣସି କାମ ଲାଗି ଗୋଟିଏ ଶୁଭ ମୁହୂର୍ତ୍ତ ଦରକାର । ସେହି ମୁହୂର୍ତ୍ତ ଧରିବା ଓ ତାର ବିଧିବିଧାନ ଆଦି ସେଇ ବ୍ରାହ୍ମଣ ପୁରୋହିତଙ୍କ ଦ୍ୱାରା ନିର୍ଦ୍ଧାରିତ । ଏବେ ତାର କୌଣସି ଆବଶ୍ୟକତା ନ ଥିଲାବେଳେ ବି ତାହା ଅନୁସୃତ ହୁଏ । ଏହି ପ୍ରଚଳିତ ରୀତି ବା ଅନ୍ଧବିଶ୍ୱାସ ଯୋଗୁଁ ହେଉ, ଏବେ ବି ଏପରିକି କୌଣସି ବୈଜ୍ଞାନିକ ଅନୁଷ୍ଠାନର ଉନ୍ମୋଚନ ଉତ୍ସବ ଲାଗି ବ୍ରାହ୍ମଣ ଡାକି ହୋମ ଓ ନଡିଆ ଭଙ୍ଗାହୋଇଥାଏ । ବିଜ୍ଞାନ ଯୁଗରେ ସେଇ ହୋମ, ମନ୍ତ୍ରପାଠ ଏକ ଅନ୍ଧଧାରଣା ଭାବେ ସ୍ୱୀକୃତ ହେଲେ ବି ସାମାଜିକ ରୀତି ଭାବେ ପ୍ରଚଳିତ । ଏକ ସମୟରେ ଅଗ୍ନିର ଆବିଷ୍କାର ମଣିଷ ଜୀବନରେ ଏକ ନାହିଁ ନଥିବା ବିପ୍ଲବ ଆଣିଛି । କହିବାକୁ ଗଲେ ଅଗ୍ନିର ବ୍ୟବହାର ପଶୁକୁ ମଣିଷ କରିଛି । ତେଣୁ ସବୁ କାର୍ଯ୍ୟରେ ପ୍ରଥମ ଆବାହନ ଅଗ୍ନିଙ୍କୁ । ତାଙ୍କୁ ସନ୍ତୁଷ୍ଟ କରିବା, ସାକ୍ଷୀ ମାନିବା ଓ ତାଙ୍କର ଆଶୀର୍ବାଦ କାମନା ଏକ ବଦ୍ଧମୂଳ ଧାରଣା ହୋଇ ରହିଛି ।

ଖାଦ୍ୟ ଆହରଣ ଓ ଖାଦ୍ୟ ଉତ୍ପାଦନ, ଏ ଦୁଇଟି ସ୍ତର ଆଦିମ ମାନବ ଅତିକ୍ରମ କରିଆସିଛି । ପ୍ରଥମ ପର୍ଯ୍ୟାୟରେ ସେ ନିର୍ଭର କରିଛି ବୃକ୍ଷ, ଲତା ଓ ପଶୁପକ୍ଷୀଙ୍କ ଉପରେ । ସେ ଲକ୍ଷ୍ୟ କରିଛି ଚ଼ନ୍ଦ୍ରର ହ୍ରାସ ଓ ବୃଦ୍ଧିକୁ — ପୂର୍ଣ୍ଣିମା, ଅମାବାସ୍ୟାକୁ । ତେଣୁ ସେଇ ଚନ୍ଦ୍ରକୁ ଭିତ୍ତିକରି ତାର ସେଇ ବିଧିବିଧାନ, ଉତ୍ସବ ଅନୁଷ୍ଠାନ ଆଦି । ସେମିତି କେଉଁ ପଶୁ, ପକ୍ଷୀ, କେବେ ଦେଖା ଦିଅନ୍ତି, କେଉଁ ବୃକ୍ଷ ଲତା କେବେ ଫୁଲ ଫଳ ଧରେ, ତାକୁ ଧରି ଖାଦ୍ୟ ସଂଗ୍ରହକାରୀ ତାର କାର୍ଯ୍ୟ ନିୟନ୍ତ୍ରଣ କରେ । ତାହା ହୋଇଛି ଚାନ୍ଦ୍ରାୟଣ ମାସର ଭିତ୍ତି । କିନ୍ତୁ ସୌର ମାସ ହେଉଛି ଖାଦ୍ୟ ଉତ୍ପାଦନକାରୀଙ୍କ ମାସ । ସୂର୍ଯ୍ୟଙ୍କୁ ଧରି ଋତୁ ମାନଙ୍କର ଆଗମନ । ସେଇ ଋତୁ ଅନୁଯାୟୀ କୃଷିକର୍ମ । ତାହା ପାଣିପାଗ ସମ୍ପର୍କରେ ପୂର୍ବ ସୂଚନା ଦିଏ, ସେଇପରି ଜ୍ଞାନର ଭିତ୍ତି ପକାଏ । ମେଘରେ ଚନ୍ଦ୍ର ସୂର୍ଯ୍ୟ ଲୁଚିଗଲେ ବି ସେଥିରେ ବ୍ୟତିକ୍ରମ ଘଟେ ନାହିଁ । ସୌରମାସ ସହିତ ଚାନ୍ଦ୍ରମାସ ସମାନ କରିବା ପାଇଁ ଦିନ ହିସାବ କରାଯାଏ । ସେଇ ଉତ୍ପାଦନ କର୍ମର ସମୟ ନିରୂପଣ କରିବାର ଉଦ୍ୟମ ଭିତରୁ ପାଞ୍ଜିର ଆବଶ୍ୟକତାର ଉଦ୍ଭବ । ଆଉ ପାଞ୍ଜି ତିଆରି ହେଉଛି ଜ୍ୟୋତିଷ, ବୀଜଗଣିତ ଓ ସଂଖ୍ୟାତତ୍ତ୍ୱର ଭିତ୍ତିରେ । ଆକାଶ, ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ, ନକ୍ଷତ୍ରଙ୍କଠୁଁ ଋତୁ ସମ୍ବନ୍ଧରେ ଆଦିମାନବ ସୂଚନା ପାଇବା ହେତୁ ସେ ଭାବେ ସେଇମାନେହିଁ ଋତୁଗୁଡିକୁ ସୃଷ୍ଟି କରନ୍ତି । ସେଇମାନେ ମଣିଷ ଭାଗ୍ୟକୁ ଆଚ୍ଛନ୍ନ କରି ରହିଛନ୍ତି ଓ ତାକୁ ନିୟନ୍ତ୍ରଣ କରିନ୍ତି । ସେଥିପାଇଁ ଏବେ ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ପ୍ରତ୍ୟେକ କାମଲାଗି ଲୋଡାହୁଏ ପାଞ୍ଜି, ଅର୍ଥାତ୍ ପ୍ରକୃତିର ସଙ୍କେତ ଦ୍ୱାରା ଶୁଭାଶୁଭ ମୁହୂର୍ତ୍ତ ନିର୍ଣ୍ଣୟ ହେଲା ତାର ବିଧାନ । ଯେତେବେଳେ କୃଷି ଉତ୍ପାଦନ ନିର୍ଭର କରିଛି ବର୍ଷା ଉପରେ, ତାହାହିଁ

ହେଉଛି ବର୍ଷ । ବର୍ଷ ବୋଇଲେ ବର୍ଷ ଓ ବର୍ଷାକୁ ଉଭୟକୁ ବୁଝାଏ । ସେଇଥିରୁ ଜାତକର ଜନ୍ମ । ସେଥିଯୋଗୁଁ ଗ୍ରହ, ନକ୍ଷତ୍ରଙ୍କୁ ସନ୍ତୁଷ୍ଟ କରିବାପାଇଁ ମନ୍ତ୍ରପାଠ ଓ ଗ୍ରହପୂଜା ଆଦି । ସେଇ ପାଞ୍ଜି ତିଆରି ଯେପରି ବ୍ରାହ୍ମଣଙ୍କ କୃତିତ୍ୱ, ସେହିପରି ଗ୍ରହଶାନ୍ତି, ପୂଜାପାଠ ଆଦି ତାଙ୍କରି ଦାୟିତ୍ୱ । ଦେଶରେ ତିନୋଟି ଭିନ୍ନ ଭିନ୍ନ ପାଞ୍ଜି ପ୍ରଚଳିତ । କିନ୍ତୁ ସମସ୍ତଙ୍କର ତାତ୍ତ୍ୱିକ ଭିତ୍ତି ସମାନ । ସେମାନଙ୍କ ଭିତରେ ଫରକଟା ଶେଷରେ ନିର୍ଭର କରେ ବିଭିନ୍ନ ଅଞ୍ଚଳ ପାଣିପାଗ ଓ ମୌସୁମୀ ବର୍ଷାର ଫରକ ଉପରେ— ଯାହାକି ସେଇ ଉତ୍ପାଦନ କର୍ମସହିତ ଜଡିତ । ଠିକ୍ ଏହିପରି ଉତ୍ପାଦନ ଅବସ୍ଥା ଭିତରୁ ଜାତ ହୋଇଛି ପ୍ରାଚୀନ ମିଶର ଦେଶରେ ୟୁକ୍ଲିଡ୍‌ଙ୍କ ଜ୍ୟାମିତି ବିଦ୍ୟା । ନୀଳନଦୀର ବନ୍ୟାରେ ପଟୁ ମାଟି ଦ୍ୱାରା ହିଡ, ବାଡ ସବୁ ଲୁଚିଯାଏ । ତେଣୁ ସମାନ ଉର୍ବରତାକୁ ଧରି ସଠୀକ ଭାବେ ଜମିର ପରିମାଣ ପୁନର୍ବାର ସ୍ଥିର କରିବାର ଉଦ୍ୟମରୁ ସେଇ ଜ୍ୟାମିତି ବିଦ୍ୟାର ଉଦ୍ଭବ ।

ଭାରତୀୟ ସଭ୍ୟତାର ବିକାଶ ଦିଗରେ ବ୍ରାହ୍ମଣ ଶ୍ରେଣୀର ଅବଦାନ ଅସୀମ । କିନ୍ତୁ ତାଠାରୁ ବହୁଗୁଣ ଅଧିକ ହେଉଛି ତାକୁ ଅନ୍ଧବିଶ୍ୱାସର ଶୃଙ୍ଖଳ ଭିତରେ ବାନ୍ଧିରଖିବାର ଆପ୍ରାଣ ଉଦ୍ୟମ ।

ଭାରତର ସ୍ୱାଧୀନ ଚିନ୍ତା, ଅବାଧ ଭାବନା ଓ ଅଗ୍ରଗତିର ଆଭିମୁଖ୍ୟକୁ ଯଦି କିଏ ସୁଚିନ୍ତିତ ଭାବେ କ୍ରମାଗତ ଖର୍ବ ଓ ପ୍ରତିହତ କରି ଆସିଛି, ତେବେ ସେ ସେଇ ବ୍ରାହ୍ମଣ୍ୟବାଦ, ଏବେ ବି ବ୍ରାହ୍ମଣ୍ୟବାଦର ସେଇ ନୀତିର ଶାସନରୁ ସମାଜ ମୁକ୍ତ ନୁହେଁ । ବ୍ରାହ୍ମଣ୍ୟବାଦର ଉକ୍ତି ଗୋଟିଏ ମତବାଦ, ବ୍ରାହ୍ମଣ ମାତ୍ରେ ସମସ୍ତେ ତାର ଅଧୀନ ନୁହନ୍ତି କି ଅନ୍ୟ ଜାତି ମାତ୍ରେ ସମସ୍ତେ ସେଥିରୁ ମୁକ୍ତ ନୁହନ୍ତି; ତାହା ମୁଖ୍ୟତଃ କୁସଂସ୍କାର ଓ ଅନ୍ଧବିଶ୍ୱାସ । ତା ହାହିଁ ବ୍ରାହ୍ମଣ-ପୁରୋହିତଙ୍କର ମୁଖ୍ୟ ପେସା ହୋଇ ଆସିଛି ।

ପ୍ରାକୃତିକ ଅପରିହାର୍ଯ୍ୟତାର ଅବଧାରଣା ଓ ତାର ଉପଲବ୍ଧି ହେଉଛି ବିଜ୍ଞାନ । ପ୍ରକୃତିର ଅପରିହାର୍ଯ୍ୟତାର ନିୟମ—ତାର ଗତି, ପ୍ରକୃତି ଜାଣିବା ଦ୍ୱାରା ମଣିଷ ଆଗକୁ ଯାଏ, ନିଜର ସ୍ୱାଧୀନତାକୁ ସାବ୍ୟସ୍ତ କରେ । କିନ୍ତୁ ନିଜକୁ ଜାଣିବା ଲାଗି ଧ୍ୟାନ କରି ବସିବାରେ ଅତୀତର ମୁନି ଋଷି ଓ ବିଜ୍ଞଲୋକେ ତାରି ଭିତରେ ଧନ୍ଦି ହୋଇଛନ୍ତି, ସେଥି ଭିତରେ ନିଜକୁ ବାନ୍ଧି ରଖିଥିଲେ । ବ୍ରାହ୍ମଣ୍ୟବାଦ ତାକୁ ଧରି ବସି ସମାଜ ଉପରେ ନିଜର କର୍ତ୍ତୃତ୍ୱ ଜାହିର ରଖିଛି । ତାକୁ ହିଁ ଆଧାର କରି ଶାସ୍ତ୍ର ପୁରାଣ ରଚିତ ହୋଇଛି । ନିଜ ଭିତରେ ଆବଦ୍ଧ ହୋଇ ପ୍ରକୃତି ଆଗରେ ଅସହାୟ ହୋଇ ରହିବାରେ ଭାରତର ଅଗ୍ରଗତି ବ୍ୟାହତ ହୋଇ ଆସିଛି । ଏହାର ମୂଳରେ ରହିଛି ସେଇ ଆଦିମ ଯୁଗରୁ ଅନୁସୃତ ଉତ୍ପାଦନ ପ୍ରଣାଳୀ । କାଠ ଲଙ୍ଗଳରେ ମାଟି ତାଡି ଉତ୍ପାଦନ ଏବଂ ବ୍ରାହ୍ମଣ୍ୟବାଦର ଉକ୍ତି ଭିତରେ ମୁକ୍ତିର ଅନ୍ୱେଷଣ, ଏ ଦୁହେଁ ଏକା ସାଙ୍ଗରେ ଚାଲିଛନ୍ତି ।

ଅତଏବ, କେବଳ ନିଜ ଭିତରେ ଆବଦ୍ଧ ରହି ଧ୍ୟାନ ଦ୍ୱାରା ଆତ୍ମଜ୍ଞାନ ଲାଭ କରିବା, ନିଜ ଗାଁ ଭିତରେ ଆବଦ୍ଧ ରହି ଅଚଳ ଅର୍ଥନୀତି ଭିତରେ ଆତ୍ମନିର୍ଭରଶୀଳତାକୁ ଧ୍ୟେୟ କରିବା, ନିଜକୁ ଅତୀତରେ ବାନ୍ଧିରଖି ଭବିଷ୍ୟତର ଆହ୍ୱାନକୁ ଆତ୍ମଘାତୀ କହି ପ୍ରତ୍ୟାଖ୍ୟାନ କରିବା ଏବଂ ଶେଷରେ ଆଧ୍ୟାତ୍ମିକତା ବଳରେ ଆପଣାକୁ ବଳୀୟାନ ବୋଲି ଦାବି କରି ଭୌତିକ ଶକ୍ତିକୁ ଅସ୍ୱୀକାର କରିବା, ଏସବୁ ସମାନ ସେଇ ଗୋଟିଏ ଦୃଷ୍ଟିକୋଣରୁ ଉଦ୍ଭବ ।

ତେଣୁ ଏ ବିଶ୍ୱଜଗତ ଯାହାର ଆଦି-ଅନ୍ତ ନାହିଁ, ସେହିପରି ଏକ ଜଗତର ନାଥଙ୍କୁ ମଣିଷ ଦେଖିବାକୁ ଚାହେଁ ନିଜର କ୍ଷୁଦ୍ର ଆତ୍ମଜ୍ଞାନ ଦ୍ୱାରା, ଧରିବାକୁ ଚାହେଁ ନିଜ ଗାଁ ବା ରାଜ୍ୟର ସଂକୀର୍ଣ୍ଣ ପରିସର ଭିତରେ, ବୁଝିବାକୁ ଚାହେଁ ନିଜର ସେଇ ଅତୀତର ଅନ୍ଧ, ପଙ୍ଗୁ ଓ ଅବୋଧ ଧାରଣା ଜରିଆରେ । ତାର ସେଇ ବ୍ୟର୍ଥତା ମଣିଷର ଅତୀତର ଅଭିଜ୍ଞତା ଦ୍ୱାରା ପ୍ରମାଣିତ । କାରଣ, ଜଗନ୍ନାଥଙ୍କୁ ବୁଝିବାରେ ମଣିଷ ଆରମ୍ଭରେ ଯେଉଁଠି ଥିଲା, ବର୍ତ୍ତମାନ ବି ସେଇଠି ।

କାରଣ ଜଗତର ନାଥକୁ ବୁଝିବାକୁ ହେଲେ ଆବଶ୍ୟକ ସେଇଭଳି ଜଗତତୁଲ୍ୟ ଏକ ବିଶ୍ୱ ଦୃଷ୍ଟିକୋଣ, ଯାହାର ଆଦି ଅନ୍ତ ଓ ବ୍ୟାପ୍ତି ସେଇ ଜଗତକୁହିଁ ଆଶ୍ରା କଲେ । ଯାହା ଜଗତ ସହିତ ସମାନ, ତାରି ଅନୁରୂପ—ତାଠାରୁ ଅଭିନ୍ନ । ତାହା ସେଇ ଜଗତର ଉତ୍ପତ୍ତି, ସ୍ଥିତି ଓ ଗତିର ନିୟମ ବା ଚରିତ୍ରକୁ ପ୍ରକାଶ କରେ । ତାହାରି ଭିତରେ କେବଳ ଜଗନ୍ନାଥଙ୍କର ପ୍ରକୃତ ମହତ୍ତ୍ୱ, ତାତ୍ପର୍ଯ୍ୟ, ଶକ୍ତି ଓ ଇଙ୍ଗିତ ପ୍ରକଟିତ ହୋଇପାରେ ।

ଯିଏ ସେଇ ଜଗତର, ଅର୍ଥାତ୍ ବିଶ୍ୱ-ପ୍ରକୃତିର ନିୟମକୁ ପ୍ରକାଶ କରେ, ତାହା ହେଉଛି ସେଇ ପ୍ରକୃତିର ନିୟମ । ଜଗତ ଯେପରି ପ୍ରକୃତିରୁ ଅଭିନ୍ନ, ସେଇପରି ପ୍ରକୃତିର ନିୟମ (law of Nature) ହେଉଛି ଜଗତର ନିୟମ । ତାହାହିଁ ଯଦି ସୃଷ୍ଟି, ସ୍ଥିତି ଓ ଗତିର ପ୍ରକାଶ ହୁଏ, ସେହି ସ୍ୱାଭାବିକ ସଂକେତହିଁ — ଜଗତର ନାଥ-ଜଗନ୍ନାଥ । (ଏହା ପରେ ଆଲୋଚିତ ହେବ)

**ଜଗନ୍ନାଥଙ୍କ ଜନ୍ମ**

ଗୋଟାଏ ମତରେ ଜଗନ୍ନାଥଙ୍କ ପୂର୍ବାଭାସ ହେଉଛନ୍ତି ନରସିଂହ । ନରସିଂହ ପ୍ରଥମେ ଲିଙ୍ଗଭାବରେ ପୂଜିତ ହୋଇ ପରେ ଜଗନ୍ନାଥରେ ରୂପାନ୍ତରିତ ହୋଇଛନ୍ତି । ଏହାକୁ "Jagannath cult and regional tradition of Orissa"ରେ ଦୃଢଭାବରେ ଉପସ୍ଥାପିତ କରାଯାଇଛି । ସେହି ରୂପାନ୍ତର ଚତୁର୍ଥ ଶତାବ୍ଦୀର ପ୍ରାରମ୍ଭ କାଳରେ ବୋଲି ସେଥିରୁ ସୂଚିତ ହୁଏ । ଜଣାଯାଏ ଯେ, ନରସିଂହ ଧାରଣା ପ୍ରଥମେ ଶୈବ ବିଶ୍ୱାସ ଭିତର ଦେଇ ବୈଷ୍ଣବ ବିଶ୍ୱାସରେ ପହଞ୍ଚିଛି । ନରସିଂହ ସମ୍ବନ୍ଧରେ ଦୁଇଟି ଧାରଣ ରହିଛି । ''ଗିରିଜା ନରସିଂହ'' — ସେ ଗିରି ଗୁହାରୁ ଜାତ । ଅନ୍ୟଟି ହିରଣ୍ୟକଶିପୁ ନରସିଂହ — ସେ ପ୍ରସାଦର ଖମ୍ବ ଭିତରୁ ଉଦ୍ଭବ । ପାହାଡରୁ ପ୍ରାସାଦ

ଏ ଦୁଇ ସଭ୍ୟତା ମଧ୍ୟରେ ଆକାଶ ପାତାଳ ପ୍ରଭେଦ । ଏକ ଆଦିମ ଅବସ୍ଥାର ବିଷୟ ହେଲାବେଳେ ଅନ୍ୟଟି ଉନ୍ନତ ସଭ୍ୟ ଅବସ୍ଥାର ପରିଚୟ, — ଯେଉଁଠି କି ରାଜଶାସନ ପ୍ରତିଷ୍ଠିତ । ତେବେ ନରସିଂହ ଯେ ମୂଳତଃ ପଥର ଓ କାଠଗଣ୍ଡିରୁ—ଅତି ଆଦିମ ଜିନିଷରୁ ବାହାରିଛନ୍ତି, ଏଥିରେ ସନ୍ଦେହ ନାହିଁ । ତାହା ସେହି କାଠ ଗଣ୍ଡି, ଖମ୍ବ, ଦାରୁ ଦେବତାଙ୍କ ପୂର୍ବଜ, ଜଗନ୍ନାଥ ଯେ ପ୍ରଥମେ କାଠସ୍ତମ୍ଭ ଭାବେ ପୂଜିତ ହୁଅନ୍ତି, ସେପରି ପ୍ରମାଣର ଅଭାବ ନାହିଁ । ତାର ସ୍ମାରକ ଏବେ ବି ବହୁ ସ୍ଥାନରେ, ବହୁ ମନ୍ଦିରରେ ବିଦ୍ୟମାନ । ବିଶେଷକରି ଆଦିବାସୀ ଅଞ୍ଚଳରେ ଦେଖାଯାଏ । ମୂଳତଃ ସେ ଆଦିବାସୀ ଦେବତା । ପରବର୍ତ୍ତୀ କାଳରେ ତାଙ୍କ ପ୍ରତି ହିନ୍ଦୁତ୍ୱର ଭାବ କେବଳ ଆରୋପ କରାଯାଇ ନାହିଁ, ହିନ୍ଦୁ ଧର୍ମ-ବିଶ୍ୱାସ ତାକୁ ସମ୍ପୂର୍ଣ୍ଣ ଗ୍ରାସ କରି ନିଜର ସର୍ବୋଚ୍ଚ ଦେବତାରେ ପରିଣତ କରିଛି । ପୂଜକଗଣ ମୂଳତଃ ସେହି ଆଦିବାସୀ । ଜଗନ୍ନାଥଙ୍କ ଦେଉଳର ଦଇତା, ସୁଆର, ଲିଙ୍ଗରାଜ ମନ୍ଦିରର ଗରାବଡୁ, ଆସ୍କାର ସ୍ତମ୍ଭେଶ୍ୱରୀଙ୍କର ମୁନି, ପଦ୍ମପୁରର ପ୍ରାଚୀନ ନରସିଂହଙ୍କ କନ୍ଧ ପୂଜକ—ଆରଣ୍ୟକ ବ୍ରାହ୍ମଣ, — ଏ ସମସ୍ତେ ଆଦିବାସୀଙ୍କ ବଂଶଧର । ଗ୍ରାମ ଦେବତାଙ୍କଠାରୁ ଜଗନ୍ନାଥଙ୍କ ଯାଏ ଓଡିଶାର ଅଧିକାଂଶ ପୂଜକ ପ୍ରକୃତ ଆର୍ଯ୍ୟ ବ୍ରାହ୍ମଣ ନୁହନ୍ତି । ଓଡିଶାର ଆଦିବାସୀ ପ୍ରାଧାନ୍ୟହିଁ ତାର କାରଣ । ଆଦିବାସୀ ଦେବତା ହିନ୍ଦୁଦେବତା ହେଲା ଭିତରେ, ସେମାନେ ମଧ୍ୟ ବିଭିନ୍ନ ପ୍ରକାର ବ୍ରାହ୍ମଣ ଆଖ୍ୟା ଗ୍ରହଣ କରନ୍ତି ।

ଆଦିବାସୀ ଦେବତା, ହିନ୍ଦୁ ଦେବତା ଓ ତାଙ୍କ ପୂଜକ ହିନ୍ଦୁ ପୂଜାରୀ ହେବାରେ ସେଇ ଆଦିବାସୀ ଧାରଣା, ହିନ୍ଦୁ ଧର୍ମ ବିଶ୍ୱାସ ଭିତରେ ପ୍ରବେଶ କରିଛି । ସେହି ବିଶ୍ୱାସର ପ୍ରକ୍ରିୟା ହେଉଛି ଓଡିଶାର ନିର୍ଦ୍ଦିଷ୍ଟ ସାମାଜିକ, ଅର୍ଥନୈତିକ ବିକାଶର ପ୍ରକ୍ରିୟା, ଜଗନ୍ନାଥଙ୍କୁ ପ୍ରଦକ୍ଷିଣ କରିବାର ପ୍ରକ୍ରିୟା । ବିକାଶର ସେହି ପ୍ରକ୍ରିୟା ଭିତରେ ଆଦିମ ଅଧିବାସୀ ଯେପରି ତାଙ୍କର ଜମି ବା ସମ୍ପତ୍ତିରୁ ଉଚ୍ଛିନ୍ନ ନିଜର ଅଧିକାରରୁ ବଞ୍ଚିତ, ସେହିପରି ସେମାନେ ତାଙ୍କର ଦେବତାର ଅଧିକାରରୁ ବିତାଡିତ, — ସେହି ପରିବର୍ତ୍ତନର ପ୍ରକ୍ରିୟା ଜଗନ୍ନାଥଙ୍କଠାରେ ପ୍ରତିଫଳିତ ।

ନରସିଂହ ଓ ଜଗନ୍ନାଥଙ୍କ ସମ୍ପର୍କ କେବଳ ନିବିଡ ନୁହେଁ । ସେମାନେ ମଧ୍ୟ ଅଭିନ୍ନ । ଲକ୍ଷ୍ମୀ ନରସିଂହଙ୍କ ଭୋଗକୁ ଜଗନ୍ନାଥଙ୍କ ଭୋଗ ଭାବେ ଗ୍ରହଣ କରାଯାଏ । ଜଗନ୍ନାଥଙ୍କଠାରେ ଭୋଗ ନ ହେବାବେଳେ ତାହା ନରସିଂହଙ୍କ ଭୋଗ ହୋଇଥାଏ । ନବକଳେବର କାଳର ବିଧାନ ନରସିଂହ ମନ୍ତ୍ର ଦ୍ୱାରାହିଁ କରାଯାଇ ଥାଏ । ଏ ନେଇ ଗବେଷକମାନେ ବହୁ ତଥ୍ୟ, ପ୍ରମାଣ ବାଢିଛନ୍ତି । ତାହା କ'ଣ, କାହିଁକି ଓ କେଉଁଠୁ ଆସିଲା, ତାର ଉତ୍ତର ଖୋଜିଛନ୍ତି, କିନ୍ତୁ ପାଇ ନାହାନ୍ତି । କାରଣ, ସେସବୁର ଉତ୍ତର ଓଡିଶାର ସୀମା, କି ହିନ୍ଦୁ ଧର୍ମର ସରହଦ ମଧ୍ୟରେ ନାହିଁ । ଯେହେତୁ ଜଗନ୍ନାଥ କେବଳ ଓଡିଶାର ହିନ୍ଦୁଜାତିର ଦେବତା ନୁହନ୍ତି, ଜଗତର ସେ ନାଥ, ତେଣୁ ଏକମାତ୍ର ମାନବ ସମାଜର ବିକାଶର ପ୍ରକ୍ରିୟା ମଧ୍ୟରେ ହିଁ ତାଙ୍କର ଭେଟ ମିଳିପାରେ ।

ନରସିଂହ ହେଲେ ଦଶ ଅବତାର ମଧ୍ୟରେ ଏକ ଅବତାର । ମତ୍ସ୍ୟ, କଚ୍ଛପ ଓ ବରାହ ପରେ ନରସିଂହଙ୍କ ଆଗମନ । ଅର୍ଥାତ୍ ଜୀବନ ଜଳରୁ ବାହାରି ସ୍ଥଳରେ ପହଞ୍ଚିଲା ଉତ୍ତାରୁ ସେ ଆସିଛନ୍ତି । ସେ ହେଲେ ପଶୁ ଓ ମାନବ ଦୁହିଁଙ୍କର ସଂମିଶ୍ରଣ । ଏକ ଦୋମିଶା ରୂପ । ସେଇ ମିଶ୍ରିତ ରୂପ ପରେ ବିକାଶ ପାଇଛି ପୂର୍ଣ୍ଣ ମାନବ ରୂପରେ । ସେମାନଙ୍କ ଭିତରେ ବାମନ, ପର୍ଶୁରାମ, କୃଷ୍ଣ ଆଦି ପୌରାଣିକ ପୁରୁଷ ହେଲାବେଳେ ଏକମାତ୍ର ବୁଦ୍ଧ ହେଉଛନ୍ତି ଐତିହାସିକ ପୁରୁଷ । ବୁଦ୍ଧଙ୍କର ଅବତାର ସନ୍ଦେହାତୀତ । ଏଠାରେ ବିକାଶର ଦୁଇଟି ସ୍ତର ପ୍ରକାଶିତ । ଗୋଟିଏ ପଶୁରୁ ମଣିଷକୁ, ଦ୍ୱିତୀୟଟି ପୁରାଣରୁ ଇତିହାସକୁ ।

ପଶୁ ଓ ମଣିଷର ସେଇ ମିଶ୍ରଣ ରୂପ ନରସିଂହଙ୍କ ପରିକଳ୍ପନା ଆର୍ଯ୍ୟମାନଙ୍କ ଭାରତ ଆଗମନର ବହୁ ପୂର୍ବର । ତାର ଦୃଷ୍ଟାନ୍ତ ସିନ୍ଧୁସଭ୍ୟତାରେ ମିଳେ । ହରପ୍ପା, ମହେଞ୍ଜୋଦାରୋରେ ମିଳିଥିବା ମୋହରରେ ନର-ବାଘର ରୂପ ଦେଖାଯାଏ—ମଣିଷର ମସ୍ତକ ସହ ବାଘର ଶରୀର । ସେମିତି କେତେଠି ଗଜ-ସିଂହ ମଧ୍ୟ ରହିଛି । ସିନ୍ଧୁସଭ୍ୟତା ପରି ପ୍ରାଚୀନ ମେସୋପଟେମିଆ ସଭ୍ୟତାରେ ସେମିତି "ଗଜ-ବୃଷ" ଦୋମିଶା ରୂପ ଦେଖାଯାଏ । ମନେହୁଏ ସେତେବେଳେ ଦୁଇ ପ୍ରାଚୀନ ସଭ୍ୟତା ମଧ୍ୟରେ କିଛି ଗୋଟାଏ ଯୋଗାଯୋଗ ଥିଲା । ପରବର୍ତ୍ତୀ କାଳରେ ତାହା କେତେକ ହିନ୍ଦୁ ଦେବଦେବୀ, ଗଣେଶ ଓ ଅର୍ଦ୍ଧ-ନାରୀଶ୍ୱରଙ୍କଠାରେ ପ୍ରକଟିତ ହୁଏ । ଏହା ସଭ୍ୟତାର ଗୋଟାଏ ସ୍ତରକୁ ପ୍ରକାଶ କରେ । ଅର୍ଦ୍ଧନାରୀଶ୍ୱରଙ୍କର କଳ୍ପନା କେବଳ ସମାଜରେ ଯୁଗଳ ବିବାହ ସ୍ତରରେ ସମ୍ଭବ । ଦଳଗତ ବା ବହୁ ବିବାହ କାଳରେ ନୁହେଁ । ହିନ୍ଦୁ ମତରେ ନରସିଂହ ଅବତାର ହେଲେ ମଧ୍ୟ ତା ପ୍ରକୃତରେ ହିନ୍ଦୁ ଧର୍ମରୁ ଉଦ୍ଭବ ନୁହେଁ । କାରଣ ଆର୍ଯ୍ୟମାନଙ୍କର ଆଗମନର ପୂର୍ବରୁ ସେହିପରି ପଶୁ ଓ ମାନବଙ୍କ ମିଶ୍ରଣରୂପର ନିଦର୍ଶନ ସିନ୍ଧୁ ସଭ୍ୟତାରେ ରହିଛି । ଏହା କୁହେ ଯେ ଜଗନ୍ନାଥ ଆର୍ଯ୍ୟମାନଙ୍କର ପୂର୍ବରୁ ରହି ଆସିଛନ୍ତି ।

ଅନାର୍ଯ୍ୟଙ୍କ ଜଗନ୍ନାଥ ଓ ଆର୍ଯ୍ୟଙ୍କର ଯଜ୍ଞ, ଏ ଦୁହେଁ ସମ୍ପର୍କ ହୀନ, କିନ୍ତୁ ସାମଞ୍ଜସ୍ୟ-ଶୂନ୍ୟ ନୁହନ୍ତି । ଗୋଟିଏ ଅନାର୍ଯ୍ୟ ସଭ୍ୟତାର ସଙ୍କେତ ହେଲାବେଳେ ଅନ୍ୟଟି ଆର୍ଯ୍ୟ ସଭ୍ୟତାର ନିଦର୍ଶନ । ଦୁହେଁ କିନ୍ତୁ ସମାନ ସାମାଜିକ ବ୍ୟବସ୍ଥାର ଜ୍ୱଳନ୍ତ ପ୍ରତୀକ । ଉଭୟ ସେଇ ଆଦିମ ସାମ୍ୟବାଦୀ ସମାଜର ଅଭ୍ରାନ୍ତ ପ୍ରକାଶ, ଆଦିମ ଗଣଗୋଷ୍ଠୀର ସମୂହ ଜୀବନର ଚିହ୍ନ । ତାର ସାମାଜିକ କାର୍ଯ୍ୟ ଓ କାମନା । ତାର ସାମଗ୍ରିକ ଭାବ ଓ ଧାରଣା, ଏବଂ ତାହାର ଅଖଣ୍ଡ ସାମାଜିକ ସମ୍ପର୍କର ଅବିସ୍ମୃତ ସ୍ମୃତି । ଆଦିମ ମାନବ ତାର ନାଚ, ଗାନ ଓ ଜାଦୁ ଦ୍ୱାରା ପ୍ରକୃତିକୁ ନିୟନ୍ତ୍ରିଣ କରୁଥିଲା ଭଳି ଆର୍ଯ୍ୟମାନେ ଠିକ୍ ତାହାହିଁ କରଥାନ୍ତି ତାଙ୍କର ଯଜ୍ଞର ଜରିଆରେ । ଉଭୟଙ୍କ କ୍ଷେତ୍ରରେ ବ୍ୟକ୍ତି ନୁହେଁ, ବ୍ୟଷ୍ଟି ହେଉଛି ଏକମାତ୍ର ଲକ୍ଷ୍ୟ । ସମୂହ ସ୍ୱାର୍ଥର ପୂରଣ ହେଉଛି ଦୁହିଁଙ୍କର ଉଦ୍ଦେଶ୍ୟ । ଶେଷରେ ଯଜ୍ଞ ଓ ଜଗନ୍ନାଥ ଉଭୟ ତାଙ୍କ ବିପରୀତରେ ପରିଣତ ହୋଇଛନ୍ତି । ଯଜ୍ଞ ଶେଷକୁ ରାଜପ୍ରାସାଦରେ ପହଞ୍ଚିଲାବେଳକୁ ଜଗନ୍ନାଥ

ପହଞ୍ଚିଛନ୍ତି ରାଜ-ନିର୍ମିତ ମନ୍ଦିରରେ । ଦୁହେଁ ସମୂହଙ୍କ ସାନିଧ ପରିତ୍ୟାଗ କରି ବ୍ୟକ୍ତିଗତ ଅଭିଷ୍ଟ ସାଧନର ଉପାୟ ହୋଇଛନ୍ତି । ଉଭୟଙ୍କ ପ୍ରତି ଆରୋପିତ ହୋଇଛି ଅଲୌକିକ ଭାବର ବିଶ୍ୱାସ । ଯଜ୍ଞ ଅଭିଷ୍ଟ ଫଳଦାୟକ ହେଲାବେଳେ ଜଗନ୍ନାଥ ଜଣାଣ ହୋଇଛି ସକଳ ମନସ୍କାମନା ପୂରଣର ମାର୍ଗ । ଫଳରେ ଦୁହେଁ ଆବୃତ ହୋଇଛନ୍ତି ଧର୍ମର ଆବରଣରେ । ଶେଷରେ ଦୁହିଁଙ୍କ ପାଖକୁ ଯିବାକୁ ହେଲେ ଫଳପ୍ରାପ୍ତି ଲାଗି ଗୋଟିଏ ମାତ୍ର ପଥ, ଏକ ମାତ୍ର ମଧ୍ୟସ୍ଥି ବା ଏକଚାଟିଆ ମାଧ୍ୟମ ସେଇ ବ୍ରାହ୍ମଣ ପୁରୋହିତଙ୍କ ବାଟ ଦେଇ ଯିବାକୁ ହେବ । ଏବେ ଯଜ୍ଞ ବିଷୟଟିକୁ ଟିକେ ଦେଖାଯାଉ ।

ସାଧାରଣ ହିନ୍ଦୁ ମତରେ ଯଜ୍ଞର ସ୍ଥାନ ଅତି ଉଚ୍ଚରେ । ତାହା ଏକ ମହାନ୍, ପବିତ୍ର, ଆଲୌକିକ ଶକ୍ତିର ଆଧାର । ତାହା ସବୁ କାମନା ପୂରଣ କରେ । ନିର୍ଦ୍ଧିଷ୍ଟ କାମନା ପୂରଣ ଲାଗି ନିର୍ଦ୍ଧିଷ୍ଟ ପ୍ରକାର ଯଜ୍ଞର ବିଧାନ ହୋଇଛି । ସେହି ବିଧାନକୁ ଠିକ୍ ଠିକ୍ ଅନୁସରଣ କରି ନିର୍ଭୁଲ ଭାବେ ଠିକ୍ ସ୍ୱର ଓ ଛନ୍ଦରେ ମନ୍ତ୍ର ଗାନ କଲେ ତାହା ଈପ୍‌ସିତ ଫଳ ପ୍ରଦାନ କରେ । ତାହା ଋକ୍‌ବେଦ ସମାଜର କଥା । ସେତେବେଳେ ସେଇ କାମନା ଥିଲା —ଅନ୍ନ, ପୁତ୍ର, ସ୍ୱାସ୍ଥ୍ୟ, ଧନ, ପଶୁ ଇତ୍ୟାଦିର କାମନା । ତାହାହିଁ ଥିଲା ସେତେବେଳର ସମ୍ପଦ ।

ଯଜ୍ଞ ଥିଲା ସର୍ବଶକ୍ତିମାନ୍ । ନଥିଲା ସେତେବେଳେ ଈଶ୍ୱର ବା ଭଗବାନଙ୍କ ଧାରଣା । ସେତେବେଳେ ଦେବତା ହେଲେ ଇନ୍ଦ୍ର, ବରୁଣ , ମିତ୍ର ଇତ୍ୟାଦି । ଦେବତାମାନେ ମଧ୍ୟ ସେଇ ଯଜ୍ଞର ଅଧୀନ ଓ ତଦ୍ୱାରା ନିୟନ୍ତ୍ରିତ । ଯଜ୍ଞ ବିଧାନ ଲଘନ କଲେ ସେମାନେ ମଧ୍ୟ ଦଣ୍ଡିତ ହୁଅନ୍ତି, ଶାସ୍ତି ଭୋଗନ୍ତି, କ୍ଷମତାହୀନ, ଶକ୍ତିହୀନ ହୋଇଥାଆନ୍ତି । ତାଙ୍କର ସବୁ ଶକ୍ତି ସେଇ ଯଜ୍ଞରୁ ଆହୃତ । ଯଜ୍ଞହିଁ ସବୁର ସୃଷ୍ଟିକର୍ତ୍ତା ।

ଯଜ୍ଞର ସେଇ ଫଳଦାନ ଶକ୍ତି, ତାର ଅନ୍ତର୍ନିହିତ ଗୁଣ । ଯଜ୍ଞଦ୍ୱାରା କାମନା ଛାଏଁ ପୂରଣ ହୁଏ । ସେଇ ସ୍ୱତଃ ଫଳପ୍ରାପ୍ତିରେ କୌଣସି ଐଶ୍ୱରିକ ଆଶୀର୍ବାଦ ବା ଦୈବୀଶକ୍ତିର ହସ୍ତକ୍ଷେପ ନାହିଁ । ସେଥିରେ କୌଣସି ପ୍ରକାର ଆଧ୍ୟତ୍ମିକତା ଓ ଇନ୍ଦ୍ରିୟାତୀତ ବିଷୟର ପରିକଳ୍ପନା ନାହିଁ । ସବୁକିଛି ପାର୍ଥିବ । 'ବ୍ରାହ୍ମଣ-ଗ୍ରନ୍ଥ' କହେ, ଯଜ୍ଞହେଲା ଦେବତାଙ୍କ ପକ୍ଷରେ ଅନ୍ନଲାଭର ଉପାୟ । ସେଇ ବୈଦିକ ସମାଜରେ ଆତ୍ମା, ବ୍ରହ୍ମ, ମୋକ୍ଷ, ମୂର୍ତ୍ତିପୂଜା ଆଦି ସେତେବେଳେ ଆସିନାହିଁ । ସେସବୁ ପରବର୍ତ୍ତୀ କାଳର କଥା ।

ସଂସ୍କୃତରେ ଯଜ୍ଞର ବିଧାନ ହେଲା ଯାଦୁ । ବର୍ତ୍ତମାନ ଅର୍ଥରେ ମ୍ୟାଜିକ୍ । ଯଥା — ଶୂନ୍ୟରୁ ଆମ୍ବ ସୃଷ୍ଟି କରିବା , ମୁଠାଭିତରୁ ଜିନିଷକୁ ଉଡ଼ାଇନେବା— ଇତ୍ୟାଦି । ଅର୍ଥାତ ପ୍ରକୃତି ନିୟମ ବିରୁଦ୍ଧ କାର୍ଯ୍ୟ ବା ତାକୁ ଆୟତ୍ତ କରି ନିଜର କାମରେ ଲଗାଇବା । ତାକୁ ନିଜର ଅକ୍ତିଆରକୁ ଏମିତି ଆଣିବା ଯଦ୍ୱାରା ମଣିଷ

ତାର କାମନା ପୂରଣରେ ସମର୍ଥ ହେବ । ଏହା ହେଲା ମଣିଷର ବଞ୍ଚିବାର ପ୍ରଧାନ ସର୍ତ୍ତ ।

ମଣିଷ କେବଳ ବଞ୍ଚିପାରେ ନିଜ ଇଚ୍ଛା ଅନୁସାରେ ପ୍ରକୃତିକୁ ପରିବର୍ତ୍ତନ ଓ ନିୟନ୍ତ୍ରଣ କରିବା ଦ୍ୱାରା—ଅର୍ଥାତ୍ ଉତ୍ପାଦନ କାର୍ଯ୍ୟଦ୍ୱାରା । ମଣିଷ ସେଇ ଉତ୍ପାଦନ କ୍ରିୟା କରେ ପ୍ରକୃତିର କାମକୁ ଅନୁସରଣ କରି । ତାଛଡ଼ା ଆଦିମ ମଣିଷ ଆଗରେ ଅନ୍ୟ କୌଣସି ଦୃଷ୍ଟାନ୍ତ ବା ବିକଳ୍ପ ନାହିଁ । ତେଣୁ ନାଚ, ଗୀତ ଓ ନାନାଦି ବିଧାନ ଦ୍ୱାରା ସେ ପ୍ରକୃତିର କାର୍ଯ୍ୟକୁ ଅନୁକରଣ କରେ । ଗୋଟାଏ ମୋହ ସୃଷ୍ଟିକରେ ଯେ, ସେ ପ୍ରକୃତରେ ବାସ୍ତବତାକୁ ପରିବର୍ତ୍ତନ କରୁଛି । ଯାଦୁ ବିଶ୍ୱାସ ହେଲା ସେହିପରି ଏକ ପ୍ରତୀକ କାର୍ଯ୍ୟ, ଯେଉଁଠି ମଣିଷ ତାର ଈପ୍‌ସିତ କାମନାର ପୂରଣ ଖୋଜେ ।

ମ୍ୟାଜିକ୍ ଭଳି ତାହା ଗୋଟାଏ ମୋହ । ଯେହେତୁ ତାହା କାର୍ଯ୍ୟ କାରଣ ସମ୍ପର୍କହୀନ । ନାଚ ଗୀତର ବିଧାନ ସହିତ ବର୍ଷାର କୌଣସି ସମ୍ପର୍କ ନାହିଁ । ଅଥଚ, ବର୍ଷାପାଇଁ ବର୍ଷାନାଚ କରାଯାଇଥାଏ । ତେବେ ଯାଦୁ ଭିତରେ ବିଜ୍ଞାନର ଭ୍ରୁଣ ରହିଛି । ତାହାହେଲା — ପ୍ରକୃତି ଓ ସମାଜ, ଦୁହେଁ ତାଙ୍କର ଅନ୍ତର୍ନିହିତ ନିୟମ ଦ୍ୱାରା ଚାଳିତ । ସେମାନେ ବାହାରର କୌଣସି ଐଶ୍ୱରିକ ଶକ୍ତିର ଅପେକ୍ଷା ରଖନ୍ତି ନାହିଁ । ତେଣୁ ତାକୁ ସ୍ୱୀକାର କରନ୍ତି ନାହିଁ । ନିର୍ଦ୍ଦିଷ୍ଟ ପ୍ରକାର ଯଜ୍ଞର ନିର୍ଦ୍ଦିଷ୍ଟ ପ୍ରକାରର ଫଳ ମିଳେ, ଏ ପ୍ରକାର ଦୃଷ୍ଟି ପରବର୍ତ୍ତୀ କାଳରେ ଗବେଷଣାତ୍ମକ ଚିନ୍ତାର ବିକାଶକୁ ସାହାଯ୍ୟ କରେ ।

ଅତଏବ, ଯଜ୍ଞ ଏକ ଯାଦୁ ବିଶ୍ୱାସଗତ ଅନୁଷ୍ଠାନ ହେଲେ ବି ଆଦିମ ମଣିଷ ପକ୍ଷରେ ଜୀବନସଂଗ୍ରାମର ଉପାଦାନ, ସାମୂହିକ ଉତ୍ପାଦନ, ସାମୂହିକ ଉପଭୋଗ, ସାମୂହିକ ଆମୋଦନ କ୍ରିୟା । ଯଜ୍ଞ ହେଲା, ''ଭକ୍ଷ ଅନ୍ନ'' ଲାଭର ଉପାୟ । ତାହା ଚାଲିଗଲେ 'ଭକ୍ଷ୍ୟ ଅନ୍ନ' ଚାଲିଯାଏ । ଅର୍ଥାତ୍ ଅନ୍ନ ଉତ୍ପାଦନ ପଦ୍ଧତି । ଯଜ୍ଞହିଁ ଆଦିମ ମାନବର ସାମୂହିକ ଗୋଷ୍ଠୀ ଜୀବନ । ଏସ. ଏ. ଡାଙ୍ଗେ ଏହାକୁ ଅତି ଚମତ୍କାର ଭାବରେ ବର୍ଣ୍ଣନା କରି କହିଛନ୍ତି, ''ବ୍ୟକ୍ତିଗତ ସମ୍ପତ୍ତି, ଶ୍ରେଣୀ ବିଭାଗ ଓ ରାଷ୍ଟ୍ରଶକ୍ତିର ଆବିର୍ଭାବର ଆଗପର୍ଯ୍ୟନ୍ତ ଆଦିମ ଅବସ୍ଥାର ସମୂହ ଉତ୍ପାଦନ ପଦ୍ଧତିର ନାମ ହେଲା ଯଜ୍ଞ ।''

ଋକ୍‌ବେଦ ସମାଜର ପରବର୍ତ୍ତୀ କାଳରେ ସେଇ ଯଜ୍ଞର ରୂପ ଓ ଲକ୍ଷ୍ୟ ବଦଳିଯାଇଛି । ଯଜ୍ଞ, ଯଜୁର୍ବେଦ ବ୍ରାହ୍ମଣ ଆଦି କାଳରେ ଭିନ୍ନରୂପ ଧାରଣ କରିଛି । ଠିକ୍ ତାହା ନିଜର ବିପରୀତରେ ପରିଣତ ହୋଇଛି । ଯଜ୍ଞ ଆଗଭଳି ଆଦିମ ଗୋଷ୍ଠୀ-ଜୀବନର ଏକ ସାମୂହିକ ଅନୁଷ୍ଠାନ ହୋଇ ରହିନାହିଁ । ତାହା ଶ୍ରେଣୀବିଶେଷଙ୍କର ଏକ ଗୋପନ ବିଦ୍ୟାରେ ପରିଣତ ହୋଇଛି । ତାହା ଆଉ

ସାମୂହିକ ସମୃଦ୍ଧି ଲାଗି ନିୟୋଜିତ ନ ହୋଇ ନିୟୋଜିତ ହୋଇଛି ବ୍ୟକ୍ତି ବିଶେଷଙ୍କ ପରିକଳ୍ପିତ ସ୍ୱାର୍ଥ ଓ କାମନା ପୂରଣ ଉଦ୍ଦେଶ୍ୟରେ । ତେଣୁ ଯଜ୍ଞ ଆଉ ସାମୂହିକ ଭାବେ ଅନୁଷ୍ଠିତ ହେଲା ନାହିଁ ବା ସେଥିରେ ସମସ୍ତେ ଭାଗ ନେଲେ ନାହିଁ । ସମ୍ପୃକ୍ତ ବ୍ୟକ୍ତିବିଶେଷ ଶେଷରେ ଲୋକ ନିଯୁକ୍ତି କରି ଯଜ୍ଞ କଲେ । ତାହା ବାସ୍ତବ ଜୀବନର ସଂଗ୍ରାମ; ଉପଭୋଗ ଓ ଆମୋଦର ବିଧାନ ନ ହୋଇ — ପରାନ୍ନଭୋଜୀ ବା ଉଦ୍‌ବୃତ୍ତଜୀବୀଙ୍କର ଏକ ଗୋପନ ବିଦ୍ୟାରେ ପରିଣତ ହେଲା । ଗୋଷ୍ଠୀସ୍ୱାର୍ଥ ଓ ଅନୁଷ୍ଠାନ, ଏବେ ବ୍ୟକ୍ତି ସ୍ୱାର୍ଥର ପରିପୂରକ ହୋଇଉଠିଲା । ସେହି ଅନୁଷ୍ଠାନ ହେଲା - ଯେମିତିକି ପୁତ୍ରେଷ୍ଟିଯଜ୍ଞ, ରାଜସୂୟଯଜ୍ଞ,ସର୍ପଯଜ୍ଞ, ଅଶ୍ୱମେଧଯଜ୍ଞ ଇତ୍ୟାଦି । ବ୍ୟକ୍ତିଗତ ସମ୍ପତ୍ତିର ଆବିର୍ଭାବ ଫଳରେ ସାମୂହିକ ଜୀବନର ଅବସାନ ସେଠି ପ୍ରତିଫଳିତ ହେଲା । ସେଇ ପ୍ରତିଫଳନରେ ମଧ୍ୟ ଫାଟ ସୃଷ୍ଟି ହେଲା । ଯଜ୍ଞର ଉଦ୍ଦେଶ୍ୟ ଓ ମୌଳିକ ଚରିତ୍ର ବଦଳିଗଲା । ଏବେ ବ୍ୟକ୍ତିଗତ ସମ୍ପତ୍ତି ଯୋଗୁଁ ତାହା କ୍ରମଶଃ ଅଳ୍ପ କେତେ ଲୋକଙ୍କଠାରେ ଆସି ଠୁଳ ହେଲା । ସେମାନେ ସର୍ବଶକ୍ତିମାନ ହୋଇ ଉଠିବା ସହିତ ଯଜ୍ଞର ବିଧାନ ଅଳ୍ପ କେତକଙ୍କ ଖାସ ବିଦ୍ୟାରେ ପରିଣତ ହେଲା । ବ୍ୟକ୍ତିଗତ ସମ୍ପତ୍ତିର ବିକାଶ ସହିତ ଯଜ୍ଞର ପଦ୍ଧତି ଅଧିକ ଜଟିଳ ହେବାକୁ ଲାଗିଲା । ଯଜ୍ଞର ଚରିତ୍ର ପରିବର୍ତ୍ତନରେ ଯଜମାନଙ୍କର ପରିବର୍ତ୍ତନ ମଧ୍ୟ ଘଟିଛି । ଆଗେ ଯଜ୍ଞ ଥିଲା ଉତ୍ପାଦନକ୍ରିୟା । ଯଜ୍ଞକର୍ମରେ ସ୍ୱୟଂ ଯଜମାନ ଭାଗ ନେଉଥିଲା । ହବିଃପ୍ରଦାନ ଓ ସୋମସେବନ କରୁଥିଲା । ସେହି ସମ୍ପୃକ୍ତ ଗୋଷ୍ଠୀର ସବୁଲୋକ ଥିଲେ ଯଜ୍ଞ ଫଳର ଅଧିକାରୀ । ଏବେ ଯଜମାନ ନିଜର ଉଦ୍ଦେଶ୍ୟ ସିଦ୍ଧିଲାଗି ଯଜ୍ଞ କରେ । ସେ ନିଜେ ଯଜ୍ଞରେ ଭାଗ ନିଏନାହିଁ । ତା ବଦଳରେ ଦାନଦକ୍ଷିଣା ଦେଇ ଋତ୍ୱିକ୍ ବା ପୁରୋହିତ ନିଯୁକ୍ତ କରେ । ଅର୍ଥ ଦେଇ ଫଳ ଆଶାକରେ । ଶେଷକୁ ନିଜେ ଅଜ୍ଞ ଓ ନିଷ୍କ୍ରିୟ ହୋଇଯାଏ । ଶେଷକୁ କାମନା ପୂରଣ ଲାଗି ଧନୀ, ବିତ୍ତଶାଳୀ ଲୋକହିଁ କେବଳ ଲୋକ ଲଗାଇ ଯଜ୍ଞ କରନ୍ତି ।

ବ୍ୟକ୍ତିଗତ ସମ୍ପତ୍ତି ଓ ରାଷ୍ଟ୍ରଶକ୍ତିର ଆବିର୍ଭାବରେ ଯଜ୍ଞର ଉଦ୍ଦେଶ୍ୟ ଓ ଚରିତ୍ରରେ ରୂପାନ୍ତର ଘଟିଛି । ମାନବ ଜୀବନରେ ଏହିପରି ପରିବର୍ତ୍ତନ ପରସ୍ପର ସହ ଜଡିତ । ''ଐତରେୟ ବ୍ରାହ୍ମଣ'' ଉପନିଷଦରେ ଏହାର ସ୍ପଷ୍ଟ ସୂଚନା ମିଳେ । ''ମୁଁ ତମର ଅନ୍ନ ହେବି ନାହିଁ '' କହି ଦେବତାଙ୍କ ପାଖରୁ ଯଜ୍ଞ ଚାଲିଯାଏ ।

ପରବର୍ତ୍ତୀ କାଳରେ ଯଜ୍ଞରେ ପୂର୍ବର ଲୁକ୍‌କାୟିତ କାମନା, ସାମୂହିକ ସ୍ୱାର୍ଥ, ଅନ୍ନଲାଭ, ସାମୂହିକ ଉତ୍ପାଦନ ପଦ୍ଧତି — ଏ ସମସ୍ତଙ୍କର ଅବସାନ ଘଟିଛି ।

ବ୍ୟକ୍ତିଗତ ସମ୍ପତ୍ତିର ଉଦ୍ଭବ ସହ ଯଜ୍ଞର ଚରିତ୍ରରେ ପୁନର୍ଗଠନ ଓ ଶ୍ରେଣୀ ବିଭାଗ, ରାଷ୍ଟ୍ରଶକ୍ତିର ଅଭ୍ୟୁତ୍‌ଥାନ ଘଟିଛି । ତାହା ଘଟିଛି ପ୍ରାକ୍ ବିଭକ୍ତ ଆଦିମ ସମାଜର ଧ୍ୱଂସସ୍ତୂପ ଉପରେ ।

ଋକ୍‌ବେଦର ସେହି ଆଦିମ ଅବସ୍ଥାର ଯଜ୍ଞରୁ ଜଣାଯାଏ — ବୈଦିକ ମଣିଷ ଦିନେ ଶ୍ରେଣୀହୀନ ଆଦିମ ସାମ୍ୟ ଅବସ୍ଥା ମଧ୍ୟରେ ବାସ କରୁଥିଲା ।

ସେତେବେଳେ ସେ ଲେଖା ଅକ୍ଷରକୁ, ହରଫ ବା ଲିପିକୁ ଆବିଷ୍କାର କରିନାହିଁ । ମୁଖରେ ଶ୍ଳୋକ ବା ଗୀତରଚନା କରୁଥିଲା । ସେହି ଗୀତର ମୁଖ୍ୟ କାମନା ଥିଲା —ସୁଖ , ସମ୍ପଦ ଓ ପାର୍ଥିବ ବିଷୟବସ୍ତୁ । ସେହି ସମ୍ପଦ କିନ୍ତୁ ନିଜ ପାଇଁ ନୁହେଁ-- ସମସ୍ତଙ୍କ ପାଇଁ । ସେଥିରେ ସମସ୍ତଙ୍କର ସମାନ ଅଧିକାର ଓ ସମାନ ଭାଗ । ସେ କ୍ଷେତ୍ରରେ ସମବଣ୍ଟନ ଅତି ସ୍ୱାଭାବିକ କଥା । ମଣିଷମାନେ ନିଜେ ବଣ୍ଟନ କରୁଥିଲେ ବି ସେହି ବଣ୍ଟନ ଭାର ମୁଖ୍ୟତଃ ଦେବତାମାନଙ୍କର ଦାୟିତ୍ୱ ଥିଲା । ବୈଦିକ ଦେବତାମାନଙ୍କର ଆଧୁନିକ ଅର୍ଥରେ କୌଣସି ଦେବତ୍ୱ ନାହିଁ । ମଣିଷ ତାଙ୍କୁ ନିଜର ସଖା,ବନ୍ଧୁ ବୋଲି ସମ୍ବୋଧନ କରୁଥିଲା । ନରମାନଙ୍କ ମଧ୍ୟରେ ତାଙ୍କୁ ଶ୍ରେଷ୍ଠନର ବୋଲି ଉଲ୍ଲେଖ କରାଯାଇଛି । ସେତେବେଳେ କେବଳ ମଣିଷ ନୁହନ୍ତି, ସେବତାମାନେ ମଧ୍ୟ ପରସ୍ପର ସହ ସମାନ । ଏମିତିକି ମଣିଷ ଓ ଦେବତାମାନେ ମଧ୍ୟ ପରସ୍ପର ସହିତ ସମାନ ହୋଇ ରହିଥିଲେ । ସେହି ସମାନତାର ସ୍ମୃତି ଏବେବି ଋକ୍‌ବେଦରୁ ଲୁଚିଯାଇନାହିଁ । ତାହା କହେ ଯେ — ଦେବତାମାନେ ସଚେତନ ଭାବେ ସଭାକୁ ଆସି ତାଙ୍କର ଭାଗ ଗ୍ରହଣ କରୁଥିଲେ ।

ଋକ୍‌ବେଦର ପ୍ରଥମ ପ୍ରାଚୀନତମ ଅଂଶଗୁଡିକରେ କୌଣସି ରାଷ୍ଟ୍ର ଶାସନର ଉଲ୍ଲେଖ ନାହିଁ । ସେ ସମୟରେ ତାହା ସମ୍ଭବପର ନୁହେଁ । ତେବେ, ସମାଜରେ ଶାସନ, ଶୃଙ୍ଖଳା ସମ୍ଭବ ହେଲା କିପରି ? ସେ ପର୍ଯ୍ୟାୟରେ ବୈଦିକ ସମାଜରେ , ଉପଜାତି (Tribal) ସମାଜରେ ହେଲାଭଳି ବ୍ୟବସ୍ଥା ପ୍ରଚଳିତ ଥିଲା । ଅର୍ଥାତ୍, ସବୁ ସଭାସମିତି ଉପରେ ନିର୍ଭର କରୁଥିଲା ।

ଋକ୍‌ବେଦ ସଭା ସମିତି ବିଦଥର ଗୌରବ ଗାନରେ ମୁଖର । ସେସବୁ ସମ୍ବନ୍ଧରେ ବହୁ ଉଲ୍ଲେଖ ରହିଛି । କିନ୍ତୁ ପୁରାଣ ଯୁଗରେ ସେଇ ସଭା ସମିତିର ଆଉ ଗୌରବ ନାହିଁ । ରାମାୟଣ, ମହାଭାରତ ଓ ସ୍ମୃତିଶାସ୍ତ୍ର ବେଳରେ ତାହା ପୂରା ଲୋପ ପାଇଯାଇଛି । ସେଠି ଗଣସଭାର ନିଷ୍ପତ୍ତି ନାହିଁ । ରାଜାଜ୍ଞା ହେଉଛି ଶିରୋଧାର୍ଯ୍ୟ । ପ୍ରାକ୍ ବିଭକ୍ତ ସମାଜରେ ବୈଦିକ ଆର୍ଯ୍ୟଙ୍କର ସେଇ ସାମ୍ୟଜୀବନର କାହାଣୀ କେବଳ ଏକ ଅଲୋଡା ସ୍ମୃତି ହୋଇ ରହିଯାଇଛି, ତାର କେତେକ ଦୃଷ୍ଟାନ୍ତ ହେଉଛି—

''ତ୍ୱମଗ୍ନେ ବର୍ଦ୍ଧନି ନରଂ ପାପ୍ମାନମପି ବିଦଥେ ବିସ୍ୱକର୍ଷଣେ''

''ହେ ବିଶିଷ୍ଟ ଜ୍ଞାନଯୁକ୍ତ ଅଗ୍ନି, ତମେ ବିପଥଗାମୀ ନରଙ୍କୁ ସମବେତ କର୍ମରେ ଉପଯୋଗୀ ସଭାରେ (ବିଦଥରେ) ସଂଶୋଧନ କରିଥାଅ ।'' (ଋ ୧.୩୧,୧.୬)

''ସେ ଦୁଇଜଣ ପରସ୍ପର ଅତ୍ୟନ୍ତ ହିଂସାଯୁକ୍ତ ଏବଂ ସ୍ପର୍ଦ୍ଧିତ ହୋଇ ଶାରୀରିକ ବଳ ଓ ଶୌର୍ଯ୍ୟ ପରିଦର୍ଶନ କରି ହିଂସା କରିବାରେ ଚେଷ୍ଟିତ । ସୋମ ସେବନକାରୀ ଦେବତାଙ୍କ ଅନୁମୋଦନକ୍ରମେ ଲୋକମାନଙ୍କ ଦ୍ୱାରା ସେଇ ଦେବତାବିହୀନ ନରଗଣ ସଭାରେ ନିହତ ହେଲେ ।'' (ଋ ୭.୯୩.୫)

''ହେ ଅସୁର (ଅଗ୍ନି) ଆମର ଏହି ଯଜ୍ଞ ଗୋଯୁକ୍ତ, ଅଶ୍ୱଯୁକ୍ତ, ଅନ୍ନଯୁକ୍ତ ପ୍ରଜାଯୁକ୍ତ, ପ୍ରଚୁର ଧନଯୁକ୍ତ ଏବଂ ପ୍ରଭୂତ ଧନ ଉତ୍ପାଦନ କାରଣଯୁକ୍ତ କର । ତମେ ମଣିଷମାନଙ୍କ ଭଳି ଆମ୍ଭମାନଙ୍କର ସଖା ଏବଂ ସଭାର ସଦସ୍ୟ ।'' (ଋ ୪.୨.୫)

ଏଇଥିରୁ ଜଣାଯାଏ, ଦିନେ ଦେବତାମାନେ ବି ସଭାରେ ଯୋଗ ଦେଉଥିଲେ । ସଭାରେ ଧନବଣ୍ଟନ, ନୀତିନିର୍ଣ୍ଣୟ, ଆଚରଣ ନିର୍ଦ୍ଧାରଣ ହେଉଥିଲା । ବିପଥଗାମୀ ସଂଶୋଧିତ ହେଉଥିଲା । ''ହିଂସାଯୁକ୍ତ ବ୍ୟକ୍ତି'' ସେଇ ଗଣସମାଜରେ ନିହତ ହେଉଥିଲା । ମଣିଷ ଅତି ସହଜ ସରଳ ଭାବେ ସିଧାସଳଖ ତାର ଭାଗ୍ୟ ସ୍ଥିର କରୁଥିଲା । ସେଠି କୌଣସି ଲୋକପ୍ରତିନିଧି କି ରାଜା, କି ପୁରୋହିତ ନ ଥିଲେ । ପଦେ କଥାରେ ନ ଥିଲେ କୌଣସି ହାକିମ (ରାଜା), ନା କୌଣସି ମାଧ୍ୟମ (ପୁରୋହିତ) ।

ଯେତେ ଯେତେ ଧ୍ୟାନଧାରଣା ରହିଛି, ସବୁକିଛି ସେଇ ମଣିଷର ଧାରଣା । ସିଏ ଯେତେବେଳେ ଯେଉଁ ଅବସ୍ଥାରେ, ତାର ଧାରଣା ଠିକ୍ ସେଇ ଅନୁରୂପ । ମଣିଷ ଭଳି ତାହା ମଧ୍ୟ ସେହିପରି ଆଗୁଆ, ପଛୁଆ, ଉନ୍ନତ, ଅନୁନ୍ନତ, ଏବଂ ବୈଦିକ, ଅବୈଦିକ ଆଦି । ମଣିଷ ସହିତ ତାହା ମଧ୍ୟ ସେହିପରି ତଳୁ ଉପରକୁ ଉଠିଛି । ଯେଉଁମାନେ ଏବେ ସଭ୍ୟତାର ଶୀର୍ଷଦେଶରେ, ସେମାନେ ମଧ୍ୟ ଦିନେ ଅସଭ୍ୟତାର ତଳେ ପଡିଥିଲେ । ତେବେ ଲୋକ ଅଛନ୍ତି, ଯେଉଁମାନେ ଭାରତର ବୈଦିକ ସମାଜର ଗୌରବ ଗାନ କରି ଅନ୍ୟକୁ ହେୟ ଜ୍ଞାନ କରନ୍ତି ଏବଂ ନିଜର ଅତୀତ, ଅସଭ୍ୟ, ଅନୁନ୍ନତ ଅବସ୍ଥାକୁ ଅସ୍ୱୀକାର କରିଥାଆନ୍ତି, — ଠିକ୍ ନବଶିକ୍ଷିତ ପୁତ୍ର ତାର ମୂର୍ଖ ବାପାକୁ ଅସ୍ୱୀକାର କଲାଭଳି । ବୈଦିକପ୍ରେମୀମାନେ ସବୁ ଅବୈଦିକ ପ୍ରଥା ଓ ପରମ୍ପରାକୁ ଯେତେ ଘୃଣାଚକ୍ଷୁରେ ଦେଖିଲେ ବି ସେହି ଘୃଣ୍ୟ ପଥ ଦେଇ ତାଙ୍କର ବିକାଶ । ସବୁଠି ବିକଚ ରାଜୀବର ଜନ୍ମ ସେଇ ବୀଭତ୍ସ ପଙ୍କ ଭିତରୁ । ଆଦିମ ଅବସ୍ଥା ଯେତେ ଉଲଗ୍ନ, ଅଶ୍ଳୀଳ ଓ ଆଧୁନିକ ରୁଚି ବହିର୍ଭୂତ ହେଲେ ବି ତାରି ଭିତରେ ଜଗନ୍ନାଥଭାବର ଉନ୍ମେଷ । ସେଇ ଉନ୍ମେଷକାରୀ ମଣିଷର ଆଗମନ ହେଉଛି ଏକ ଚେତନାଶୀଳ ଭ୍ରୁଣର ଆବିର୍ଭାବ — ଏଇ ଅଚେତନ ବିଶ୍ୱପ୍ରକୃତି ଭିତରେ ଗୋଟାଏ ଅକଳନ ଶକ୍ତି, ଏକ ଅସୀମ ଚିନ୍ତା ଏବଂ ଅନନ୍ତ କାମନାର ସଞ୍ଚାର ।

ମଣିଷର ଆଦିମ ଐକ୍ୟ ଯେତେ ନିବିଡ ଓ ବଳିଷ୍ଠ ହେଲେ ବି ପ୍ରକୃତି ଆଗରେ ତାହା ଅତି ଦୁର୍ବଳ । ଆଦିମ ମଣିଷର ସାମୂହିକ ସଂଗ୍ରାମର ଶକ୍ତି ଅତ୍ୟନ୍ତ କ୍ଷୀଣ । ଅର୍ଥାତ୍ ସେପର୍ଯ୍ୟନ୍ତ ତାର ପ୍ରକୃତ ଉତ୍ପାଦନ-ଶକ୍ତିର ସ୍ଫୁରଣ ଘଟିନାହିଁ । ତେଣୁ ପ୍ରକୃତିକୁ ପରିବର୍ତ୍ତନ କରିବାରେ ସେ ଅକ୍ଷମ । ପ୍ରକୃତି ଉପରେ କୌଣସି ପ୍ରଭାବ ପକାଇପାରେ ନାହିଁ । ବର୍ଷା କାମନା କରି ଯେଉଁ ନାଚ, ଗାନ କରେ ତଦ୍ୱାରା ବର୍ଷା ହେବାର ପ୍ରଶ୍ନ ନାହିଁ କି ଖରାର ପ୍ରକୋପ କମେ ନାହିଁ । କିନ୍ତୁ ସେଇ ନାଚ, ଗାନର ପ୍ରଭାବ ପଡେ ତା ନିଜ ଉପରେ । ତଦ୍ୱାରା ସେ ନିଜକୁହିଁ କେବଳ ଅନୁପ୍ରାଣିତ କରେ । ତାର ବିଶ୍ୱାସ ତା ଫଳରେ ଭଲ ଫସଲ ସମ୍ଭବ ହେବ । ତେଣୁ ଦୃଢ ବିଶ୍ୱାସ ନେଇ

ଅଧିକ ଉତ୍ସାହରେ କାମରେ ଲାଗିପଡେ । ସେଇ ଅଧିକ ଉତ୍ସାହ ତାର ଉତ୍ପାଦନବୃଦ୍ଧିକୁ ସାହାଯ୍ୟ କରେ । ତେଣୁ ତଦ୍ୱାରା ପ୍ରକୃତିକୁ ଆୟତ୍ତ କରି ଅଧିକ ଆହରଣ କରିପାରୁଛି ବୋଲି ଗୋଟାଏ ମୋହ ସୃଷ୍ଟି ହୁଏ । ସେଇ ମୋହ ମଧ ନିରର୍ଥକ ନୁହେଁ । ତାହା ଅନ୍ୟ ଦିଗରେ ପ୍ରକୃତ କାର୍ଯ୍ୟ ବା ଉତ୍ପାଦନ କୌଶଳର ପରିପୂରକ । କାରଣ ତା ବାସ୍ତବରେ ମଣିଷର ମନୋଗତ ଦୃଷ୍ଟିକୋଣରେ ପରିବର୍ତ୍ତନ ଆଣେ । ଫଳରେ ପରୋକ୍ଷରେ ବାସ୍ତବତାକୁ ପରିବର୍ତ୍ତନ କରିବାରେ ସାହାଯ୍ୟ କରେ । ଏ ହେଲା ଆଦିମ ଯାଦୁର ମୂଳମନ୍ତ୍ର ।

ପ୍ରତ୍ୟେକଟି କାମନା ପୂରଣ ଲାଗି ଶେଷକୁ ନିର୍ଦ୍ଦିଷ୍ଟ ପ୍ରକାର ନାଚ, ଗୀତ ନିର୍ଦ୍ଦିଷ୍ଟ ହୋଇଗଲା । ଛନ୍ଦୋଗ୍ୟ ଉପନିଷଦରେ କୁହାଯାଇଛି ''ସେଥିଲାଗି ଜ୍ଞାନସମ୍ପନ୍ନ ଉଦ୍‌ଗାତା କହିଲେ ତମର କେଉଁ କାମ୍ୟ ବସ୍ତୁକୁ ଗାନ କରିବି ? କାହିଁକି ନା ଯିଏ ତାହା ଜାଣି ସାମଗାନ କରେ, ସିଏ କାମନାକୁ ଶାସନ କରେ ।'' (୧.୭.୮.- ୧.୭.୯. ଋକ୍‌ବେଦ)

ଜ୍ଞାନ ସହିତ ଯାଦୁର ନିବିଡ ସମ୍ପର୍କ ସେଇ ଉପନିଷଦରେ ପରିସ୍ଫୁଟ । ସେଥିରେ କୁହାଯାଇଛି — ''ବୃଷ୍ଟିପାଇଁ ପାଞ୍ଚପ୍ରକାର ସାମକୁ ଉପାସନା କରିବ । ବୃଷ୍ଟିର ପୂର୍ବରୁ ଯେ ବାୟୁ ଉଠେ, ତାହାହିଁ 'ହିଙ୍କାର'; ମେଘ ଉତ୍ପନ୍ନ ହୁଏ ତାହାହିଁ 'ପ୍ରସବ'; ବୃଷ୍ଟି ପଡେ ତାହାହିଁ 'ଉଦ୍‌ଗୀଥ' ବିଦ୍ୟୁତ୍ ଚମକେ ଓ ଗର୍ଜ୍ଜନ କରେ, ତାହାହିଁ 'ପ୍ରତିହାର' । ବୃଷ୍ଟିପାତରେ ଶେଷ ହୁଏ, ତାହାହିଁ 'ନିଧନ' । ଯିଏ ଏହାକୁ ଏହିପରି ଜାଣି ବୃଷ୍ଟିର ପାଞ୍ଚପ୍ରକାର ସାମର ଉପାସନା କରେ, ମେଘ ତା'ଲାଗି ବର୍ଷଣ କରେ ଏବଂ ସେ ବର୍ଷଣ କରିପାରେ । (୨.୩.୨ ଋକ୍‌ବେଦ)

ଗାନ ସାହାଯ୍ୟରେ ଅନ୍ନଲାଭ ଉଦାହରଣ ମଧ ରହିଛି । ତା ମାନେ ଅନ୍ନଲାଭ ଲାଗି ଗାନର କାର୍ଯ୍ୟକାରିତା ରହିଛି । ''ଅନନ୍ତର ନିଜଲାଗି, ଅନ୍ନପାଇଁ ଗାନକରି ଲାଭ କରିଥାଏ । ଯାହାକିଛି ଭୁକ୍ତ ହୁଏ, ତାହା ଏହାରି ଦ୍ୱାରାହିଁ ଭୁକ୍ତ ହୁଏ । (ବୃହଦାରଣ୍ୟକ ଉପନିଷଦ ୧.୩.୧୭) । ପୁଣି କୁହାଯାଇଛି — ''ସେଇ ଦେବତାମାନେ କହିଲେ — ଏ ପର୍ଯ୍ୟନ୍ତ ଏଇ ଯେ ଅନ୍ନ, ସେଇ ଅନ୍ନକୁ ନିଜଲାଗି ଗାନ କରି ଲାଭ କରିଛୁ'' । (୧.୩.୧୮ ଏଜନ) ଅତଏବ ସେଇ କାଳର ଗାନ ବର୍ତ୍ତମାନ ଭଳି ଫୂର୍ତ୍ତି କରିବା ବା ଅବସର ବିନୋଦନ ପାଇଁ ନୁହେଁ । କେବଳ ଗାନଲାଗି ଗାନ ବା କଳାଲାଗି କଳାର ଉପାସନା ନୁହେଁ । ତାହାର ଉଦ୍ଦେଶ୍ୟ ରସଭୋଗ ନେଇ ଅନ୍ନଭୋଗ । ''ଅନ୍ନଂନୋ ଭଗବାନ୍ ଆସୟତୁ'' ଭୋକ ହେଉଛି, ଅନ୍ନ ଦରକାର, ଅତଏବ ଗାନ କର । (ଏଜନ)

ଆଦିମ ସମାଜରେ କାମନା ଛଡା ଗାନ ନାହିଁ । ''ସାମଗାନ''ଟି କାମନା ପୂରଣ କରିବାର ଗୋଟାଏ ଗାନ । ଗାନର ଲକ୍ଷ୍ୟ ହେଲା କାମନାର ସଫଳତା । ସେ କାମନା ପୁଣି ସମଷ୍ଟିଗତ । ଆଦାମ ଓଁ ଇବାମ୍, ''ଆମ୍ଭେମାନେ ଭୋଜନ କରୁ, ଆମ୍ଭେମାନେ ଗାନକରୁ ।''

ସେଇ ସମଷ୍ଟିଗତ କାମନା ଓ କାର୍ଯ୍ୟର ଚିହ୍ନ କିପରି ଋକ୍‌ବେଦରେ ପ୍ରକାଶ ପାଏ, ତାହା ଏଥିପୂର୍ବରୁ ଆଲୋଚିତ ହୋଇଛି । ସେଇ ସମଷ୍ଟିଗତ ଜୀବନର ଧ୍ୱଂସସ୍ତୂପ ଉପରେ ବ୍ୟକ୍ତି ସ୍ୱାର୍ଥ କାମନାର ଅଶେଷ ଦୃଷ୍ଟାନ୍ତ ମଧ୍ୟ ସେଇ ଋକ୍‌ବେଦରେ ଲିପିବଦ୍ଧ । ସେଇ ଲକ୍ଷ୍ୟ ଲାଭର ଏକମାତ୍ର ଉଦ୍ୟମ ହୋଇଛି ଅନ୍ୟକୁ ମାରିଦଳି, ନିଧନ କରି ସମସ୍ତଙ୍କ ଉପରକୁ ଉଠିବା । ତାହା କହେ, ''ଯୋଗକ୍ଷେମଂ ଆଦାୟାହଂ ଭୂୟା ସାମୁତ୍ତମଂ ଆବୋ ମୂର୍ଧାନକ୍ରମମୀମ୍ ଅତେଽସ୍ମାଦାନ୍ମ ଉଦବିଦତ ମଣ୍ଡୂକାଇବୋ ଦକାନ୍ମଣ୍ଡୂକା ଉଦକାଦିବ''(ଋ ୧୦.୧୬୬.)

''ତମମାନଙ୍କ ଶତ୍ରୁଙ୍କ ପ୍ରାପ୍ତଧନରେ ଅଧିକାରୀ ହୋଇ ଓ ଆତ୍ମସାତ୍ କରି ମୁଁ ଶ୍ରେଷ୍ଠ ହୋଇଛି । ତମମାନଙ୍କ ମସ୍ତକ ଉପରକୁ ଉଠିଛି । ପଦତଳୁ ତମେ ଚିତ୍କାର ଛାଡ଼ିଛ ବେଙ୍ଗଭଳି ।''

ଏବେ ନୂତନ ସମାଜର କ୍ରମବିକାଶରେ ପୂର୍ବର ସାମ୍ୟ ସମାଜ ଭାଙ୍ଗିପଡ଼ିଛି । ସେଇ ସାମ୍ୟଭାବର ପ୍ରତୀକ ଜଗନ୍ନାଥ ଯେତେବେଳେ ଅନାର୍ଯ୍ୟ ସଭ୍ୟତାରୁ ଆର୍ଯ୍ୟ ସଭ୍ୟତାକୁ ଆସିଛନ୍ତି, ସେତେବେଳେ ତାଙ୍କ ଆଗରେ ସମସ୍ତେ ଯେପରି ସମାନ, ସେମିତି ତାଙ୍କୁ ସମସ୍ତେ ନିଜର ବୋଲି ମନେ କରିଛନ୍ତି । ତେଣୁ ଶ୍ରେଣୀବିଭକ୍ତ ସମାଜରେ ସମସ୍ତଙ୍କ ''ମସ୍ତକ ଉପରେ ଚଢ଼ିଥିବା ଲୋକ'' ଜଗନ୍ନାଥଙ୍କୁ ଲୋଡ଼ିଛି ଆହୁରି ଅଧିକ ମସ୍ତକ ଉପରେ ଚଢ଼ିବାକୁ । ଆଉ ସେ ଲୋକଙ୍କ ପଦତଳେ ଦଳିହୋଇ ବେଙ୍ଗଭଳି ଚିତ୍କାର ଛାଡ଼ିଥିବା ଲୋକ ଇହଜନ୍ମରେ ସେଥିରୁ ସୁଧୁରିବାର ଆଶା ନ ଦେଖି ଜଗନ୍ନାଥଙ୍କୁ ଲୋଡ଼ିଛି ପରଜନ୍ମରେ ମୁକ୍ତିଲାଗି — ଯେପରି ଆଉଥରେ ଦୁଃଖମୟ ଏ ସଂସାରକୁ ନ ଆସେ । ଆଉ ମଧ୍ୟ ଯେଉଁଲୋକ ଅନ୍ୟକୁ ଗ୍ରାସକରେ, ସେ ତାର ପାପରୁ ରକ୍ଷାଲାଗି ଜଗନ୍ନାଥଙ୍କୁ ଲୋଡେ ନିଜର ମୁକ୍ତିପାଇଁ । ଏହାହିଁ ଜନ୍ମ ଦେଇଛି ବର୍ତ୍ତମାନର ଜଗନ୍ନାଥଙ୍କୁ । ପୂର୍ବର ଜଗନ୍ନାଥ (ଭାବ) ଯେଉଁ ଅନ୍ତର୍ନିହିତ ପ୍ରତୀକଭାବେ ପ୍ରକାଶ ପାଇଥିଲା, ତାହା ଏବେ ଅସାମ୍ୟ ସମାଜରେ ଏକ ଅନିବାର୍ଯ୍ୟ ପ୍ରୟୋଜନରେ ପରିଣତ ହେଲା । ଧନୀ, ଦରିଦ୍ର, ଶୋଷକ, ଶୋଷିତ, ଶାସକ, ଶାସିତ, ସମସ୍ତଙ୍କ ଲାଗି ଜଗନ୍ନାଥ ହେଲେ ଅପରିହାର୍ଯ୍ୟ ।



# ପଞ୍ଚମ ପର୍ବ

**ସାମ୍ୟରୁ ଅସାମ୍ୟକୁ —**

ମାନବ ସମାଜର ଆଦ୍ୟ ବିକାଶର ଏକ ଅଲିଭା ସ୍ମୃତି ହେଲା ବେଦ, ସେହି ସାମଜିକ ବିକାଶ - ପ୍ରକ୍ରିୟାର ଅକାଟ୍ୟ ପ୍ରମାଣ । ତେଣୁ ତାହା ନିଶ୍ଚିତ ଭାବେ ଧାରଣା କରେ ଭବିଷ୍ୟତର ବୀଜକୁ । ଖଣିଜ ସମ୍ପଦ ଭଳି ଇତିହାସର ଅଜ୍ଞାତ ଗର୍ଭରୁ ସେଇ ଅମୂଲ୍ୟ ସମ୍ପଦକୁ ଉତ୍ତୋଳନ କରିବାକୁ ହେବ । ତାକୁ ବିଶୋଧନ କରିବାକୁ ପଡ଼ିବ । ଯଦ୍ଵାରା କେବଳ ତାର ପ୍ରକୃତ ଗୁଣ, ଶକ୍ତି, ମହତ୍ଵର ଆହରଣ ସମ୍ଭବ । ସେ ଦିଗରେ ଏକମାତ୍ର ଉପାୟ ହେଉଛି, ସେଥିପ୍ରତି ବିଜ୍ଞାନର ପ୍ରୟୋଗ । ଅନ୍ୟଥା ସୁନାରେଣୁ ମଧ୍ୟ ପଥରର ମୁଣ୍ଡା ହୋଇ ଗଡୁଥିବ ।

ପୁରାତନର ପ୍ରତ୍ୟାଖ୍ୟାନରେ ନୂତନର ପ୍ରତିଷ୍ଠା ହେଉଛି ବେଦର ମର୍ମ୍ମ ଓ ବୈଶିଷ୍ଟ୍ୟ । ତାହାର କାର୍ଯ୍ୟକାଳ ହେଲା ସାମ୍ୟରୁ ଅସାମ୍ୟକୁ ପ୍ରଥମ ପଦକ୍ଷେପ । ଅନୁନ୍ନତ ଉତ୍ପାଦନ ପ୍ରଣାଳୀ ଉପରେ ଉନ୍ନତ ଉତ୍ପାଦନ ପ୍ରଣାଳୀର ବିଜୟର ସୂଚନା, ଏବଂ ତାହା ସେଥି ସହିତ ତାର ଆନୁଷଙ୍ଗିକ ଧାରଣାକୁ ପ୍ରକାଶ କରେ ।

ବେଦ ଶାଶ୍ଵତ ନୁହେଁ, କି ସେଥିରେ ପବିତ୍ରତା ବୋଲି କିଛି ନାହିଁ । ତାକୁ ସକଳ ଜ୍ଞାନର ଭଣ୍ଡାର, ବିଜ୍ଞାନର ଚୂଡ଼ାନ୍ତ ବିକାଶ, ସମସ୍ତ ମାନବ ଚିନ୍ତାର ସର୍ବୋଚ୍ଚ ଶିଖର, ତଥା ଚିରନ୍ତନ ସତ୍ୟର ଚରମ ପ୍ରକାଶନ ବୋଲି ମଣିବାର କୌଣସି କାରଣ ନାହିଁ । ତାହା କେବଳ ଅବାସ୍ତବ ନୁହେଁ, ତାହା ମଣିଷର ସ୍ଵାଧୀନ ଚିନ୍ତାକୁ ଖର୍ବ କରେ, ମଣିଷର ସ୍ଵତଃସ୍ଫୂର୍ତ୍ତ ଉଦ୍ୟମକୁ ପ୍ରତିହତ କରେ । ସର୍ବୋପରି ସେହି ମୂଳ ମାନବିକ ଦୃଷ୍ଟିକୁ ସଂକୀର୍ଣ୍ଣ, ସ୍ଥାଣୁ ଓ ଗତିହୀନ କରିଦିଏ । ତାହା ଆଗକୁ ନେବାର ପରିବର୍ତ୍ତେ ମେରିଆ ବଳଦ ଭଳି ସେଇ ବେଦ ଚାରିପଟେ ଘୂରୁଥାଏ । ଭାରତୀୟ ଅନୁନ୍ନତ ଅବସ୍ଥାର ତାହା ଏକ ପ୍ରଧାନ କାରଣ ।

ମାନବ ସମାଜରେ ସାମ୍ୟର ଅବସାନ, ଅସାମ୍ୟର ଆବିର୍ଭାବ, ଆଉ ତାର ଅଗ୍ରଗତି, — ଏ ସବୁର ଏପରି ସୁସ୍ପଷ୍ଟ ଚିତ୍ର ଓ ତାର ଜ୍ୱଳନ୍ତ ପ୍ରମାଣ ବେଦକୁ ଛାଡ଼ିଦେଲେ ବିଶ୍ୱସାହିତ୍ୟରେ ହୁଏତ କ୍ୱଚିତ ମିଳିପାରେ। ବେଦର ମୌଳିକ ବିଷୟ, ସାମ୍ୟରୁ ଅସାମ୍ୟକୁ ଗତିର ତାତ୍ପର୍ଯ୍ୟ ବୁଝିବାଦ୍ୱାରା, ଅନ୍ୟଦିଗରେ ସେହି ଅସାମ୍ୟରୁ ପୁଣି ଆହୁରି ଅତି ଅଧିକ ସାମ୍ୟ ଦିଗରେ ଅଗ୍ରଗତିକୁ ବୁଝିବାର ବାଟ ଫିଟିପାରେ। ବେଦର ପ୍ରକୃତ ମହତ୍ତ୍ୱ ଉଦ୍‌ଘାଟିତ ହୋଇପାରେ।

ସାମ୍ୟରୁ ଅସାମ୍ୟକୁ ଅଗ୍ରଗତି ମାନବିକ ବିକାଶର ପ୍ରଥମ ସୋପାନ ହେଲାବେଳେ ସେହି ସୋପାନ ହୁଏ ସାମ୍ୟର ମାନବିକତା ଉପରେ ଅସାମ୍ୟର ପ୍ରଥମ ଆଘାତ; ତାହାହିଁ ସାମ୍ୟର ଭାବନା ଉପରେ ପ୍ରଥମ ଆକ୍ରମଣ। ତେଣୁ ଅସାମ୍ୟର ବୃଦ୍ଧିଦ୍ୱାରା ସମାଜରେ ଯେଉଁ ଶ୍ରେଣୀ ଓ ସ୍ୱାର୍ଥ ଦେଖାଦେଇଛି ଏବଂ ସେଥିରେ ଯେଉଁମାନେ ଉପକୃତ, ସେଇମାନେ ଏପର୍ଯ୍ୟନ୍ତ ନିଜ ନିଜ ଦୃଷ୍ଟିରୁ ବେଦକୁ ଦେଖିଛନ୍ତି, ତାର ବ୍ୟାଖ୍ୟା ଓ ଭାଷ୍ୟଦ୍ୱାରା ତାକୁ ପ୍ରଚାର ଓ ପ୍ରୟୋଗ କରି ଆସିଛନ୍ତି। ତାହା ଅସାମ୍ୟର ଧାରଣାକୁହିଁ ସୁଦୃଢ଼ କରିଆସିଛି।

ଅନ୍ୟ ଦିଗରେ ବେଦ ସେଇ ସାମ୍ୟନୀତି ଓ ସାମ୍ୟସମାଜର ଜୟଗାନରେ ଭରା। ତାହାର ପୁନଃପ୍ରତିଷ୍ଠା ଲାଗି ଆକୁଳ ଆବେଦନ ଜଣାଏ। ପ୍ରତିକ୍ଷେତ୍ରରେ ସେଇ ସାମ୍ୟର ଆକାଂକ୍ଷାକୁ ପ୍ରକାଶ କରେ। ସାଧାରଣତଃ ସେ କଥାଟି ତାଙ୍କ ଦୃଷ୍ଟିରେ ପଡ଼େନାହିଁ। ଯୁଗ ଯୁଗ ଧରି ସେଇ ସାମ୍ୟର ଭାବକୁ ଯେତେ ନିଶ୍ଚିହ୍ନ କରିବାର ଉଦ୍ୟମ କଲେ ବି ତାହାର ଅନିର୍ବାଣ ଶିଖା ଏବେ ମଧ୍ୟ ଖୋଦ ଜଗନ୍ନାଥଭାବ ଭାବେ ବିଦ୍ୟମାନ।

ଜଗନ୍ନାଥ ବେଦର ଦେବତା ନୁହନ୍ତି। କିନ୍ତୁ ସେଇ ଆଦିମ ସମାଜର ମୌଳିକ ସାମ୍ୟଭାବର ପ୍ରତୀକ। ତାହା ଅଣଆର୍ଯ୍ୟ ଗଣଗୋଷ୍ଠୀ ସମାଜର ପ୍ରତିଫଳନ। ଏବେ ପୁଞ୍ଜିବାଦୀ ସମାଜର ଚରିତ୍ର ସବୁଠି ସମାନ ହେଲାଭଳି ସାମ୍ୟ ବ୍ୟବସ୍ଥାର ଚରିତ୍ର ଆର୍ଯ୍ୟ ଅନାର୍ଯ୍ୟ ସମସ୍ତଙ୍କ ପାଇଁ ସମାନ। ସେଇ ସମାନ ଚରିତ୍ର ଯୋଗୁଁ ଦୁଇ ସଭ୍ୟତାର ମିଳନ ସ୍ଥଳ ହେଉଛନ୍ତି ଜଗନ୍ନାଥ। ପରବର୍ତ୍ତୀ କାଳରେ ଆର୍ଯ୍ୟମାନେ ଯେତେ ଦେବତା ସୃଷ୍ଟି କଲେ ବି ସର୍ବପ୍ରାଚୀନ, ସର୍ବପ୍ରଧାନ ଏବଂ ସର୍ବସାଧାରଣ ଦେବ ହୋଇଛନ୍ତି ଜଗନ୍ନାଥ।

ଭାରତ ରତ୍ନଗର୍ଭା। ପ୍ରକୃତି ତାକୁ ଏତେ ସମ୍ପଦ, ଏପରି ସୌନ୍ଦର୍ଯ୍ୟରେ ମଣ୍ଡିତ କରିଛି ଯେ, ତାହା ଯୁଗ ଯୁଗ ଧରି ସମସ୍ତଙ୍କୁ ଆକର୍ଷଣ କରିବାରେ ଲାଗିଛି। ଆର୍ଯ୍ୟଙ୍କଠାରୁ ଇଂରେଜ ପର୍ଯ୍ୟନ୍ତ କେତେ ଜାତି, କେତେ ଦେଶରୁ ଧାଇଁ ଆସିନାହାନ୍ତି ! ସେ ସମସ୍ତଙ୍କ ମଧ୍ୟରେ ଆର୍ଯ୍ୟମାନଙ୍କ ଅଭିଯାନ ସବୁଠାରୁ ଦୁର୍ଦ୍ଧର୍ଷ ଓ ଭୟଙ୍କର। ହାଣ, ମାର, କାଟ, ପୁର ନଗର ଧ୍ୱଂସ କରିବାରେ ସେମାନେ ଥିଲେ ଧୁରନ୍ଧର। ବେଦ ସେଇ ଆର୍ଯ୍ୟ ଜାତିଙ୍କର ସାମାଜିକ ଜୀବନର କାହାଣୀ। କିନ୍ତୁ

ଭାରତର ଇତିହାସ ବେଦଠାରୁ ଆହୁରି ପ୍ରାଚୀନ । ଭାରତର ଇତିହାସକୁ ଇଂରେଜମାନେ ତାଙ୍କର ଆଗମନଠାରୁ ଧରିଲା ଭଳି , ହିନ୍ଦୁମାନେ ସେହିପରି ତାକୁ ଆର୍ଯ୍ୟମାନଙ୍କର ଆଗମନରୁ ଆରମ୍ଭ କରନ୍ତି । ତା' ପୂର୍ବରୁ କିନ୍ତୁ ହରପ୍ପା, ମହେଞ୍ଜୋଦାରୋ ଭଳି ଅଣ-ଆର୍ଯ୍ୟ ସଭ୍ୟତା ରହିଛି । ଆର୍ଯ୍ୟମାନେ ହେଲେ ଶ୍ୱେତକାୟ । ଆଦିମ ଅଧିବାସୀମାନେ କୃଷ୍ଣକାୟ । ଏହା ବର୍ଣ୍ଣଭେଦ, ଜାତିଭେଦ ନୁହେଁ । ଋଗ୍‌ବେଦର ପ୍ରଥମ ପର୍ଯ୍ୟାୟରେ କୌଣସି ଭେଦାଭେଦ — ଏପରିକି ଧନ-ସମ୍ପଦର ଭେଦ ମଧ୍ୟ ନ ଥିଲା । ଏକମାତ୍ର ଥିଲା ଆର୍ଯ୍ୟମାନଙ୍କର ସେଇ ଅଣଆର୍ଯ୍ୟ ଆଦିମ ଅଧିବାସୀଙ୍କ ଉପରେ ଚଢ଼ାଉ ।

ତାର ଏକମାତ୍ର କାରଣ ଅନାର୍ଯ୍ୟମାନଙ୍କର ଧନସମ୍ପଦ ଲୁଣ୍ଠନ କରିବା । ସେଇ ଲୁଣ୍ଠିତ ଦ୍ରବ୍ୟରେ ସମସ୍ତଙ୍କ ଭାଗ ସମାନ । ସମସ୍ତେ ସମଅଧିକାରୀ । ଅନାର୍ଯ୍ୟଙ୍କ ବିରୋଧରେ ସେଇ ଅଭିଯାନର ନେତା ହେଲେ ଇନ୍ଦ୍ର । ସେ ସେମାନଙ୍କୁ ହାଣି, ମାରି, ତାଙ୍କ ଧନ ସମ୍ପଦ ବାଣ୍ଟୁଥିବାରୁ ଇନ୍ଦ୍ରଙ୍କର ବେଦରେ ଏତେ ଖାତିର ଓ ଗୌରବ । ଇନ୍ଦ୍ର ଜଣେ ବୈଦିକ ପୁରୁଷ । ଅନାର୍ଯ୍ୟଙ୍କ ବିରୋଧରେ ତାଙ୍କର ଅଭିଯାନ ହେତୁ ସେ ଦେବତା ଆଖ୍ୟା ଲାଭ କରିଛନ୍ତି । ତାଙ୍କ ପାଖରେ ପ୍ରାର୍ଥନା ଯେ, ସେ ଯେପରି ନଗର ପରେ ନଗର ଧ୍ୱଂସ କରି ଦସ୍ୟୁଙ୍କୁ ଦମନ କରନ୍ତି, ଧନବଣ୍ଟନ କରନ୍ତି । ସେ ଶତ ନଗର ଭେଦ କରିଥିଲେ । (ଋଗ୍‌ବେଦ ୧.୫୩) ସେ ଦସ୍ୟୁଙ୍କୁ ନିକୃଷ୍ଟ ସ୍ଥାନ ଦେଇଥିଲେ । (ଋଗ୍‌ବେଦ ୧.୧୨.୪) ସେ ଦସ୍ୟୁଙ୍କୁ ବଧ କରି ଆର୍ଯ୍ୟମାନଙ୍କୁ ରକ୍ଷା କରିଥିଲେ । ପଞ୍ଚସହସ୍ର କୃଷ୍ଣବର୍ଣ୍ଣ ଶତ୍ରୁଙ୍କୁ ବିନାଶ କରି ଶମ୍ବର ନଗରକୁ ଧ୍ୱଂସ କରିଥିଲେ । ଏହିପରି ପୁର ଓ ନଗର ଧ୍ୱଂସର ବହୁ ଘଟଣା ରହିଛି । କୁହାଯାଇଛି, ଶତ୍ରୁ ଆର୍ଯ୍ୟ ହେଉ ବା ଦାସ ହେଉ, ତାକୁ ବିନାଶ କରିବାକୁ ହେବ। (୧୦.୧୦୨.୩ ଋଗ୍‌ବେଦ)

ତାଙ୍କ ପ୍ରଶଂସା ଗାନରେ ଋଷିକବିଗଣ ଶତମୁଖ । ''ହେ ଇନ୍ଦ୍ର, ଆଦିମ ଲୋକେ ଯେପରି ଲତା, ଡାଳକୁ ଛେଦନ କରନ୍ତି, ତମେ ସେହିପରି ଶତ୍ରୁମାନଙ୍କୁ ଛେଦନ କର । ଦାସଙ୍କର ବଳ ନାଶ କର । ଆମେ ଇନ୍ଦ୍ରଙ୍କ ଅନୁଗ୍ରହରୁ ସେଇ ଦାସ-ସଂଗୃହୀତ ଧନ ଭାଗ କରିନେବୁ । (୮.୪୦.୬ ଋଗ୍‌ବେଦ), ''ଇନ୍ଦ୍ର ତାଙ୍କର ଶ୍ୱେତବର୍ଣ୍ଣ ମିତ୍ରମାନଙ୍କ ସହ କ୍ଷେତ୍ର ଭାଗ କରି ନେଲେ । '' (୧.୫୫.୮ ଋଗ୍‌ବେଦ) ''ତମେ ସଂଗ୍ରାମରେ ଶତ୍ରୁ ବିଜୟୀ । ବିଜିତ ଧନ ଅବରୁଦ୍ଧ କରି ରଖନାହିଁ ।''(୧୦୨) ଏହିପରି ଦୃଷ୍ଟାନ୍ତର ଅଭାବ ନାହିଁ । ପୁଣି କୁହାଯାଇଛି, ''ସେ ଗାଭୀ ଓ ଅଶ୍ୱ ଲାଭ କରିଛନ୍ତି । ସେ ଶସ୍ୟସମୂହ, ଜଳସମୂହ, ଅଶ୍ୱସମୂହ ଲାଭ କରିଛନ୍ତି । ଇନ୍ଦ୍ର ଯଜ୍ଞବିହୀନ ଲୋକଙ୍କଠାରୁ ଧନ ନେଇ ଯଜ୍ଞକର୍ତ୍ତାଙ୍କ ମଧ୍ୟରେ ବାଣ୍ଟିଛନ୍ତି।'' (୧୦୦ଋଗ୍‌ବେଦ)

ଏଠି ଲକ୍ଷ୍ୟ କରିବା କଥା, ଲୁଣ୍ଠିତ ଧନର ଅଧିକାରୀ ଇନ୍ଦ୍ର ନୁହନ୍ତି । ସେ ତାକୁ ନିଜଲାଗି ''ଅବରୁଦ୍ଧ'' କରି ରଖନ୍ତି ନାହିଁ । ସେ ଧନରେ ସମସ୍ତେ ଭାଗୀଦାର ।

ତାହା ସାମ୍ୟସମାଜର ରୀତି । ଦ୍ୱିତୀୟରେ, ଇନ୍ଦ୍ର କୌଣସି ଦେବତା ନୁହନ୍ତି, ସେ ଲୋକଙ୍କର ନେତା । ଜଣେ ସାଧାରଣ ମଣିଷ । ତାହା ବେଦର ସବୁ ଦେବତାଙ୍କ ପ୍ରତି ପ୍ରଯୁଜ୍ୟ । କିନ୍ତୁ ପୁରାଣର ଇନ୍ଦ୍ର ହେଲେ ଦେବରାଜ । ପୁରାଣ ବେଳକୁ ସମାଜ ବହୁ ଦୂର ଆଗେଇ ଗଲାଣି । ମର୍ତ୍ତ୍ୟରେ ହେଲାଭଳି ସ୍ୱର୍ଗରେ ରାଜା, ରାଣୀ ଆଦି ସୃଷ୍ଟି ହେଲେଣି । ବେଦର ଇନ୍ଦ୍ର କୌଣିସି ରାଜା ବା ନରପତି ନୁହନ୍ତି, ସେ ଗୋଷ୍ଠୀପତି, ନିର୍ବାଚିତ ମୁଖ୍ୟ, ନରଶ୍ରେଷ୍ଠ । ନେତାଙ୍କ ମଧ୍ୟରେ ଉତ୍କୃଷ୍ଟ । ସବୁ ଲୋକଙ୍କର ବନ୍ଧୁ, ସଖା, ମିତ୍ର ଇତ୍ୟାଦି । ତୃତୀୟରେ ସେମାନେ ଅନାର୍ଯ୍ୟମାନଙ୍କୁ ଦାସ ବା ଦସ୍ୟୁର ଆଖ୍ୟା ଦେଇଥିଲେ । ଉତ୍ପାଦନ ଦିଗରୁ କିନ୍ତୁ ଅନାର୍ଯ୍ୟମାନେ ଅପେକ୍ଷାକୃତ ଉନ୍ନତ ଅବସ୍ଥାରେ ଥିଲେ । ପୁର ନଗରରେ ବାସ କରୁଥିଲେ । ତେଣୁ ଆର୍ଯ୍ୟମାନେ ସେମାନଙ୍କର ଧନ-ସଂପଦ , ଲୁଣ୍ଠନ କରୁଥିଲେ । ପୁର ଧ୍ୱଂସ କରୁଥିଲେ ଅର୍ଥାତ୍ ଦାସ-ଶ୍ରମର ବ୍ୟବହାର କରି ଉଦ୍‌ବୃତ୍ତ ଆଦାୟ କରିବା ଆର୍ଯ୍ୟଙ୍କୁ ଜଣା ନଥିଲା । ସେତେବେଳେ ସେମାନେ ସେହିପରି ଉତ୍ପାଦନ-ବୃଦ୍ଧି ଅବସ୍ଥାରେ ପହଞ୍ଚି ନ ଥିଲେ । ତେଣୁ ଯେଉଁ ଅଞ୍ଚଳ ଆର୍ଯ୍ୟମାନେ ଦଖଲ କରୁଥିଲେ, ସେଠି ଦାସଙ୍କୁ ଲଗାଇ ଉତ୍ପାଦନ କରିବା ବା ପୁରପଲ୍ଲୀର ନିର୍ମାଣ ଆଦିର ବର୍ଣ୍ଣନା ନାହିଁ । କାରଣ ଦାସ ସେ ପର୍ଯ୍ୟନ୍ତ ଧନ- ସମ୍ପଦ ସୃଷ୍ଟିର ଆୟୁଧ ବା ଉପାୟ ହୋଇ ନାହିଁ । କାରଣ ଦାସ- ଶ୍ରମ ଦ୍ୱାରା ଉତ୍ପାଦନ-ବୃଦ୍ଧି ଓ ତାର ଶୋଷଣ ଅପେକ୍ଷାକୃତ ଉନ୍ନତ ଉତ୍ପାଦନ ଅବସ୍ଥାର ପରିଚୟ ଦିଏ । ଯାହାକି ପରବର୍ତ୍ତୀ କାଳରେ କଳିଙ୍ଗ ଯୁଦ୍ଧରେ ସ୍ପଷ୍ଟ ହୋଇଉଠୁଛି । ଅଶୋକ କେବଳ ଲକ୍ଷେ ଲୋକଙ୍କୁ ହତ୍ୟା କରିନାହାନ୍ତି, ଦେଢ଼ଲକ୍ଷ ଲୋକଙ୍କୁ ବନ୍ଦୀ କରି ଘେନି ଯାଇଛନ୍ତି, — ଜମି ଆବାଦ ଲାଗି ବା ଉତ୍ପାଦନ କାର୍ଯ୍ୟରେ ନିୟୋଗ କରିବା ଉଦ୍ଦେଶ୍ୟରେ ।

ଉତ୍ପାଦନ-ବୃଦ୍ଧି ସହିତ ବ୍ୟକ୍ତିଗତ ସମ୍ପତ୍ତି ଏବଂ ତା ସହିତ ଆସିଛି ଲୋଭ, ଈର୍ଷ୍ୟା, ଧନଲିପ୍‌ସା ଇତ୍ୟାଦି । ମୃତ୍ୟୁପରେ ସେଇ ଧନର ଉତ୍ତରାଧିକାରୀ ହେବାର ପ୍ରଶ୍ନ । ସେଇ ପ୍ରକିୟା ଭିତରେ ଦେଖା ଦେଇଛନ୍ତି ଧନୀ, ଦରିଦ୍ର । ତା ସହିତ ପ୍ରକାଶ ପାଇଛି ଦାନ, ଧର୍ମର ଆବଶ୍ୟକତା ଆଦି । ଏଇସବୁ ସେତେବେଳେ ଆଜି ଭଳି ଏତେ ସ୍ପଷ୍ଟ ଓ ବ୍ୟାପକ ରୂପ ନେଇ ନଥିଲା । ସେହି ଆସାର ଭ୍ରୁଣ ଆଜି ମହାଦ୍ରୁମ ରୂପେ ବିଦ୍ୟମାନ । ସେ ବ୍ୟବସ୍ଥା ଏକ ଦିଗରେ ଅସାମ୍ୟକୁ ଯେପରି ସାବ୍ୟସ୍ତ କରେ, ଅନ୍ୟ ଦିଗରେ ସେହିପରି ତେଣେ ଦାନର ପ୍ରଶଂସା ଓ ଦାତାର ଗୌରବ ଗାନ କରେ । ଶ୍ରେଣୀବିଭକ୍ତ ସମାଜରେ ତାହା ଏକ ସହଜାତ ଧର୍ମ । ଦାନ ଶୋଷଣକୁ ଢାଙ୍କେ, ଶୋଷଣକୁ ରକ୍ଷା ଓ ବୃଦ୍ଧିକରେ । ବର୍ତ୍ତମାନର ପୁଞ୍ଜିପତିଗଣ ତାର ଜ୍ୱଳନ୍ତ ଦୃଷ୍ଟାନ୍ତ । ସେ ସମ୍ବନ୍ଧରେ ଋଗ୍‌ବେଦର ଦଶମ ମଣ୍ଡଳର ୧୧୭ ସୂକ୍ତ ବଡ଼ ତାତ୍ପର୍ଯ୍ୟପୂର୍ଣ୍ଣ । ତା କହେ, ‘‘ଯାର ଏକ ଅଂଶ ସମ୍ପତ୍ତି ଅଛି, ସେ ଦୁଇ ଅଂଶ ପାଇବା ପାଇଁ ପ୍ରାର୍ଥନା କରେ । ଯାର ଦୁଇ ଅଂଶ ଅଛି, ସେ ତିନି ଅଂଶର ଭାଗୀଦାର ହେବାକୁ ଚାହେଁ । ଚତୁର୍ଥ ଅଂଶ ଚାହେଁ , ସେ ପୁଣି ତାର ଉପସ୍ଥାନ ଗ୍ରହଣ କରିବ । ଏପରି ଅଗ୍ରପଶ୍ଚାତ୍‌ଭାବେ ଶ୍ରେଣୀ ରହିଛି । ଅଳ୍ପ ଧନୀ, ଅଧିକ ଧନର ଉପାସନା କରେ ।’’

ଏହା କଣ ଦର୍ଶାଏ ? ଏହା ଦର୍ଶାଇ ଦିଏ ଯେ, ଏବେ ବ୍ୟକ୍ତିଗତ ଧନ ସମ୍ପଦ ଆହରଣରେ ପ୍ରତିଦନ୍ଦ୍ୱିତା ଆରମ୍ଭ ହୋଇଛି । ପ୍ରତ୍ୟେକ ଅନ୍ୟଠାରୁ ଅଧିକ ନେବାରେ ତତ୍ପର । ସେହି ଅସାମ୍ୟର ପ୍ରତିଷ୍ଠାକୁ ପ୍ରତିପାଦିତ କରି ପୁଣି ସେଇ ସୂକ୍ତ କହେ , ''ଆମର ହାତର ଆକାର ସମାନ, କିନ୍ତୁ ଧାରଣ କ୍ଷମତା ସମାନ ନୁହେଁ । ଦୁଇଟି ଗାଈ ଏକ ମାଆ ପେଟରୁ ଜନ୍ମିଥିଲେ ବି ସମାନ ଦୁଧ ଦିଅନ୍ତି ନାହିଁ । ଦୁଇ ଯମଜ ଭ୍ରାତାଙ୍କ ପରାକ୍ରମ ସମାନ ନୁହେଁ । ଦୁହେଁ ଏକ ବଂଶର ସନ୍ତାନ ହେଲେ ବି ସମାନ ଦାତା ହୁଅନ୍ତି ନାହିଁ । ତେଣୁ ସମାଜର ଅସମତା ନ ହେବାର କିଛି କାରଣ ନାହିଁ । ଅସମତା ଅତି ସ୍ୱାଭାବିକ , ତାକୁ ମାନିବକୁ ହେବ । ତାକୁ ବିରୋଧ କରିବାର କୌଣସି ଯଥାର୍ଥତା ନାହିଁ । ''

ଏଇ ପ୍ରକ୍ରିୟା ତେଣେ ଧନୀଙ୍କ ସହିତ ସୃଷ୍ଟି କରିଛି ଏକ କ୍ଷୁଧାର୍ତ୍ତ ଭିକ୍ଷୁକ ଶ୍ରେଣୀ । ତାହା ସହିତ ସୃଷ୍ଟି କରିଛି ଏକ ନୂତନ ପ୍ରକାରର ଗୁଣ....ଦାତା, ଯାହାକି ପୂର୍ବେ ସମ୍ପୂର୍ଣ୍ଣ ଅଜଣା ଥିଲା । ଦାନ ଓ ଭିକ୍ଷାର ପ୍ରଶ୍ନ ନ ଥିଲା । ସେଇ ଅସମତାକୁ ବୃଦ୍ଧି କରିବା ସହିତ କୁହାଗଲା ''ଯିଏ କେବଳ ନିଜେ ଭୋଜନ କରେ, ସେ ପାପ ଭୋଜନ କରେ । ଦାତା ବ୍ୟକ୍ତି ଅଦାତାର ଉପରେ । '' (ଋଗ୍‌ବେଦ)

ଉତ୍ପାଦନ-ବୃଦ୍ଧି ସହିତ ଆସିଛି ଶ୍ରମର ବିଭାଜନ । ସେ କାଳର ବାସ୍ତବ ଚିତ୍ର ନବମ ମଣ୍ଡଳ ୧୧୨ସୂକ୍ତରେ ବର୍ଣ୍ଣିତ । ସକଳ ବ୍ୟକ୍ତିର କାର୍ଯ୍ୟ ଏକପ୍ରକାର ନୁହେଁ, ଭିନ୍ନ ଭିନ୍ନ ଲୋକଙ୍କ କାମ ଭିନ୍ନ ଭିନ୍ନ । ଦେଖ, ତକ୍ଷ କାଷ୍ଠ ତକ୍ଷଣ କରେ, ବୈଦ୍ୟ ରୋଗର ପ୍ରାର୍ଥନା କରେ, ସ୍ତୋତା ଯଜ୍ଞକର୍ତ୍ତାକୁ ଚାହେଁ — ତମେ ଇନ୍ଦ୍ରଙ୍କ ଲାଗି କ୍ଷରିତ ହୁଅ । ଦେଖ କର୍ମକାର ବାଣ ପ୍ରସ୍ତୁତ କରେ । ସେ ବାଣ କିଣିବା ଲାଗି ଧନୀ ବ୍ୟକ୍ତିକୁ ଖୋଜେ । ......ଦେଖ, ମୁଁ ସ୍ତୋତ୍ରକାରର ପୁତ୍ର ଚିକିତ୍ସକ ଓ କନ୍ୟା ପ୍ରସ୍ତର ଉପରେ ଯବ-ଭର୍ଜନକାରିଣୀ । ଆମେ ସମସ୍ତେ ଭିନ୍ନ ଭିନ୍ନ ଧର୍ମ କରୁ । ଗାଭୀ ଯେପରି ଗୋଷ୍ଠରେ ବୁଲନ୍ତି, ଆମେ ସେମିତି ଧନ କାମନାରେ ତୁମର ପରିଚର୍ଯ୍ୟା କରୁ । .....ସୁନ୍ଦର ଘୋଟକ ଭଲ ରଥରେ ଯୋଗ ହେବାକୁ ଇଚ୍ଛା କରେ । ନର୍ମ ସଚିବ, କ୍ରୀଡ଼ା ସଚିବ ହାସ୍ୟ ପରିହାସ କାମନା କରେ । ଅତଏବ ହେ ସୋମ, ଇନ୍ଦ୍ରଙ୍କ ଲାଗି କ୍ଷରିତ ହୁଅ । ''

ଆଦିମ ଗୋଷ୍ଠୀ ସମାଜରେ କାମ ଥିଲା ସମୂହ କାମ ଏବଂ ସେଥିରେ ସବୁରି ସମାନ ଭାଗ ବା ସମାନ ଅଧିକାର । ବର୍ତ୍ତମାନ ପ୍ରତ୍ୟେକ ଲୋକ ନିଜ ନିଜ ଲାଗି କାମ କରନ୍ତି । ତାକୁ ବିକିବା ଲାଗି କିଣିଲାବାଲା,ଥିଲାବାଲା ବା ଧନୀକୁ ଖୋଜନ୍ତି । ଜୀବିକା — ନିର୍ବାହ ଲାଗି ଭିନ୍ନ ଭିନ୍ନ ବୃତ୍ତି ଅନୁସରଣ କରନ୍ତି । ଏପରିକି ଯଜ୍ଞକାରୀ ପୁରୋହିତ ତାର ଯଜ୍ଞକର୍ତ୍ତା ଧନୀକୁ ଅନୁସରଣ କରେ । ଏହା ଶ୍ରେଣୀ ଭେଦର ଆରମ୍ଭ ମାତ୍ର । ତେଣେ କିନ୍ତୁ ଜାତିଭେଦ ସେ ପର୍ଯ୍ୟନ୍ତ ଆସିନାହିଁ । କାରଣ ସ୍ତୋତ୍ରକାରର ପୁତ୍ର, ବୈଦ୍ୟ ଓ କନ୍ୟା ଯବ ଭର୍ଜନକାରିଣୀ । ବ୍ରାହ୍ମଣ, ବୈଦ୍ୟ ଓ ଶୂଦ୍ର ମଧ୍ୟରେ କୌଣସି ପ୍ରଭେଦ ନାହିଁ । ଶୂଦ୍ରଠାରୁ ପୁରୋହିତଙ୍କ ପର୍ଯ୍ୟନ୍ତ, ପ୍ରତ୍ୟେକେ

ତାଙ୍କର ପଣ୍ୟ ବିକ୍ରୟ ଲାଗି ଧନୀକୁ ଅନୁସରଣ କରନ୍ତି । ଏବେ ସମାଜରେ ଧନର ପ୍ରତିଷ୍ଠା, ଧନୀଙ୍କର ଆଧିପତ୍ୟ । ନର୍ମ ଓ କ୍ରିଡ଼ା ସଚିବଙ୍କ ସୃଷ୍ଟିରୁ ଜଣାଯାଏ ଯେ ସମାଜରେ ଏକ ଅବସର ଭୋଗୀ-ଶ୍ରେଣୀ ବା ବିଳାସପ୍ରିୟ ଲୋକଙ୍କର ଉଦ୍ଭବ ହେଲାଣି ।

(ଏଠି ସୋମ କଥାଟା ଟିକେ ପରିଷ୍କାର କରିଦିଏଁ । ସୋମ ଏକପ୍ରକାର ଲତାବିଶେଷ । ସେଇ ପତ୍ରର ରସ ସୋମରସ । ତାହା ଦେବତାଙ୍କ ପ୍ରିୟ ପାନୀୟ । ସୋମରସ ପାନରେ ଇନ୍ଦ୍ରଙ୍କ ଶକ୍ତି ବର୍ଦ୍ଧିତ ହୁଏ । ମଣିଷ ପିଇକରି ମଧ୍ୟ ଖୁବ୍ ଉନ୍ମତ୍ତ ଓ ଉତ୍‌ଫୁଲ୍ଲ ହୁଅନ୍ତି । ତାକୁ କିପରି ତିଆରି କରିବ, ତାର ବର୍ଣ୍ଣନା ମଧ୍ୟ ରହିଛି । ସୋମରସ ଅତି ପ୍ରିୟ ହୋଇଥିବା ଯୋଗୁଁ ତାକୁ ଦେବତାର ଆସନ ଦିଆଯାଇଛି । ସରସ୍ୱତୀ ନଦୀ ଭଳି ତାହା ଆଜି ବିଲୁପ୍ତ । ଏଠି ଋଗ୍‌ବେଦ କାଳର ସ୍ମୃତିଟି ରହିଛି ମାତ୍ର । ଏହା ସେଇ ସୋମଦେବତାଙ୍କୁ ସ୍ତୁତି, ସେ କ୍ଷରିତ ହୋଇ ଇନ୍ଦ୍ରଙ୍କୁ ତୁଷ୍ଟ କରନ୍ତୁ ।)

ଏବେ ଯେତେବେଳେ ଶ୍ରମର ବିଭାଜନ ଘଟିଲା, ଶୋଷଣର ଭିତ୍ତି ପଡିଲା, ଧନୀ ଦରିଦ୍ର ସୃଷ୍ଟି ହେଲେ, ସେଇ ପ୍ରକ୍ରିୟା ହେଲା ବ୍ୟକ୍ତିଗତ ସମ୍ପତ୍ତିର ବିକାଶ । ତାହା ଲୋଭ, ଈର୍ଷ୍ୟା, ଧନଲିପ୍‌ସାକୁ ଅଧିକ ପ୍ରବଳ କରିବାରେ ଲାଗିଲା । ତାକୁ ଚରିତାର୍ଥ କରିବାର ଏକମାତ୍ର ଉପାୟ ହେଲା ଅନ୍ୟର ଧନ, ଶ୍ରମ ଓ ସମ୍ପତ୍ତିର ଅପହରଣ । ସେଥିଲାଗି ଦରକାର ବଳର ପ୍ରୟୋଗ । ତା ଜନ୍ମ ଦେଲା ଯୁଦ୍ଧ ସଂଘର୍ଷର ଭ୍ରୁଣକୁ । ଯାହା ଆଜି ସାରା ବିଶ୍ୱରେ ଏକ ମହାଦ୍ରୁମରେ ପରିଣତ । ଯୁଦ୍ଧର ସେଇ ସାମୟିକ ନେତା ଓ କର୍ତ୍ତାଙ୍କ ସହିତ ଦେଖା ଦେଲେ ତାର ପ୍ରଚାରକ ଓ ପ୍ରେରଣାଦାତାଗଣ । ସେମାନେ ଯୁଦ୍ଧର ଯଥାର୍ଥତାକୁ ପ୍ରତିପାଦିତ କରିବା ସହିତ ତାଙ୍କୁ ଦେଲେ ବିଜୟର ଆଶୀର୍ବାଦ । ଗୀତା ହେଉଛି ତାର ଜ୍ୱଳନ୍ତ ନିଦର୍ଶନ । ରାଜ୍ୟଲାଭ ଲାଗି ତାହା ବିଭିନ୍ନ ଦିଗରୁ ଯୁଦ୍ଧକୁ କେବଳ ପ୍ରତିପାଦିତ କରି ନାହିଁ, ଜ୍ଞାତି ହତ୍ୟା — ଯାହା ଆଦିମ ସମାଜର ଚିନ୍ତାର ବହିର୍ଭୂତ, ଆଉ ଠିକ୍ ଯେଉଁଥିଲାଗି ଅର୍ଜୁନ ଧନୁଛାଡି ବସିପଡିଛନ୍ତି, ଠିକ୍ ତାକୁହିଁ ନ୍ୟାୟସଙ୍ଗତ, ଯଥାର୍ଥ କହି ଏକ ପବିତ୍ର କର୍ତ୍ତବ୍ୟରେ ପରିଣତ କରିଛନ୍ତି ଶ୍ରୀକୃଷ୍ଣ, ମାନବରୂପୀ ଖୋଦ୍ ଭଗବାନ ।

ଅସାମ୍ୟ ଓ ଲୋଭରୁ ଯୁଦ୍ଧର ଉତ୍ପତ୍ତି — ସେଇ ଭାବର ଉନ୍ମେଷ ଘଟିଛି ସେଇ ଋଗ୍‌ବେଦ କାଳରେ । ପୁରାଣରେ ବର୍ଣ୍ଣିତ ଋଷି ବିଶ୍ୱାମିତ୍ର ଓ ବଶିଷ୍ଠଙ୍କର କ୍ରମାଗତ କଳହ ଓ ଶତ୍ରୁତାର ମୂଳ ରହିଛି ସେଇଠି । ଋଗ୍‌ବେଦର ତୃତୀୟ ମଣ୍ଡଳର ରଚୟିତା ହେଲେ ବିଶ୍ୱାମିତ୍ର ଓ ତାଙ୍କର ବଂଶଧରଗଣ । ସପ୍ତମ ମଣ୍ଡଳଟି ବଶିଷ୍ଠ ଓ ତାଙ୍କର ବଂଶଧର ଦ୍ୱାରା ପ୍ରଣିତ । ଏଇ ଦୁଇ ଋଷି ଯଥାକ୍ରମେ ଦୁଇ ରାଜବଂଶ — ଭରତ ଓ ସରଦାସ ରାଜବଂଶର ପୁରୋହିତ । ଭରତ, ଯଦୁ, ମତ୍ସ୍ୟ ଆଦି ଦଶୋଟି ରାଜ୍ୟ ଗୋଷ୍ଠୀଙ୍କର ସରଦାସଙ୍କ ବିରୋଧରେ ଯୁଦ୍ଧ ଅଭିଯାନ । ବିଶ୍ୱାମିତ୍ର ତାଙ୍କର ଯଜମାନ ଭରତବଂଶକୁ ଏବଂ ବଶିଷ୍ଠ ତାଙ୍କର ଯଜମାନ ସରଦାସଙ୍କୁ ଜିତେଇବାରେ

ଲାଗିଥିଲେ । ଯାଗ, ଯଜ୍ଞ ଓ ମନ୍ତ୍ର ଉଚ୍ଚାରଣ ଦ୍ୱାରା ଅନେକ ଅଦ୍ଭୁତ କାର୍ଯ୍ୟମାନ କରୁଥିଲେ । (୭. ୧୮. ୨୨ ଋଗ୍‌ବେଦ) ତାର ପୁରସ୍କାର ସ୍ୱରୂପ ଭରତ ବଶିଷ୍ଠ — ଙ୍କୁ ଦୁଇଶତ ଗୋରୁ , ଦୁଇଟି ରଥ ଓ ଚାରୋଟି ଅଶ୍ୱ ପ୍ରଦାନ କରିଥିଲେ । କାଳକ୍ରମେ ଏମାନେ କ୍ଷତ୍ରିୟ ବ୍ରାହ୍ମଣରୂପେ ପ୍ରକାଶ ପାଇଛନ୍ତି ।

ପ୍ରତ୍ୟକ୍ଷରେ ହେଉ ବା ପରୋକ୍ଷରେ ହେଉ, ଏଇମାନେ (ବ୍ରାହ୍ମଣ, କ୍ଷତ୍ରିୟ) ନିର୍ଭର କରିଛନ୍ତି ଅନ୍ୟର ଶ୍ରମର ଅପହରଣ ଉପରେ । ତାହା ଶେଷରେ ତାଙ୍କର ବୃତ୍ତିରେ ପରିଣତ ହୋଇଛି । ବ୍ରାହ୍ମଣଙ୍କ ଲାଗି ଶାରୀରିକ ଶ୍ରମ ହୋଇଛି ନିଷିଦ୍ଧ । କ୍ଷତ୍ରିୟଙ୍କ ଲାଗି ଯୁଦ୍ଧ ବିଦ୍ୟା ହୋଇଛି କୁଳ ଧର୍ମ ।

## ବେଦ, ବୁଦ୍ଧ, ଜଗନ୍ନାଥ

କୁହାଯାଏ, ବୁଦ୍ଧ-ଦନ୍ତ ହେଉଛି ଜଗନ୍ନାଥଙ୍କ ଆତ୍ମା । ତାହା କେବେ କାହାଦ୍ୱାରା ଜଗନ୍ନାଥଙ୍କ ଦେହରେ ପ୍ରବେଶ କଲା ଓ ଆତ୍ମାଭାବରେ ପ୍ରକାଶ ପାଇଲା, — ଜଣାନାହିଁ । ସେହିପରି କୁହାଯାଏ, କୃଷ୍ଣଙ୍କ ଶରୀରର ଏକ ଅପୋଡା ଅଂଶକୁ ନେଇ ଜଗନ୍ନାଥଙ୍କ ଶରୀର ଗଢା । ବୁଦ୍ଧ ଏକ ଐତିହାସିକ ପୁରୁଷ ହେଲାବେଳେ, କୃଷ୍ଣ ଏକ ପୌରାଣିକ ଚରିତ୍ର । ଗୋଟିଏ ବାସ୍ତବ ପ୍ରତ୍ୟକ୍ଷ ଘଟଣା ହେଲାବେଳେ ଅନ୍ୟଟି କିମ୍ବଦନ୍ତୀ, ଅତିକଥା । ନବକଳେବର ସମୟରେ ସେହି ଦନ୍ତ ପୁରୁଣା ଘଟରୁ ନୂଆ ଘଟକୁ ଯାଇ ଜଗନ୍ନାଥଙ୍କୁ ପୁନର୍ଜନ୍ମ ଦେଇଥାଏ । ଏପରି ପରମ୍ପରା ଅନ୍ୟଠି ନାହିଁ । ଗୋଟିଏ ମତ, ଇତିହାସ ବକ୍ଷରେ ଦନ୍ତରୂପରେ ଏକ ବସ୍ତୁ ଭାବରେ ବିଦ୍ୟମାନ ଏବଂ ଆତ୍ମାପରେ ପ୍ରଚଳିତ ହେଲାବେଳେ ଅନ୍ୟ ମତଟି ପୁରାଣର କିମ୍ବଦନ୍ତୀ, ଅତିକଥା ଭାବେ ପ୍ରଚଳିତ ଏବଂ ଏକମାତ୍ର ବିଶ୍ୱାସ ଉପରେ ପ୍ରତିଷ୍ଠିତ ।

ଆତ୍ମାକୁ ଯେପରି କେହି ଜାଣନ୍ତି ନାହିଁ, ସେହିପରି ଭକ୍ତ "ଦାନ୍ତ"କୁ କେହି ନ ଜାଣିବା ପାଇଁ ଆଖିରେ ଅନ୍ଧପୁଟୁଳି ବାନ୍ଧ ଏବଂ ହାତରେ ପାଟକନା ଗୁଡାଇ ଏକ ଘଟରୁ ଅନ୍ୟ ଘଟକୁ ନିର୍ଜନ ମନ୍ଦିର ଭିତରେ ନିଆଯାଏ । ତାହା ମଧ ଜଣାଇଦିଏ ଯେ ଜଗନ୍ନାଥ ନଶ୍ୱର । ତାଙ୍କର ଶରୀର ନଷ୍ଟ ହେଲେ ବି ତାଙ୍କର ଆତ୍ମା ଅବିନଶ୍ୱର । ସେଇ ଆତ୍ମାର ପ୍ରବେଶ ଦ୍ୱାରାହିଁ ଜଗନ୍ନାଥ, ଜଗନ୍ନାଥ ହୁଅନ୍ତି । ଏହିପରି ରୀତି ଅନ୍ୟ କୌଣସି ହିନ୍ଦୁ ଦେବଦେବୀଙ୍କ କ୍ଷେତ୍ରରେ ଦେଖାଯାଏ ନାହିଁ — କାହିଁକି ? ସେମାନେ କ'ଣ ଆତ୍ମାହୀନ ? ନ ହେଲେ, ଜଗନ୍ନାଥଙ୍କ କ୍ଷେତ୍ରରେ ଏ ବିଶେଷତ୍ୱ କାହିଁକି ? କ'ଣ ତାର ତାତ୍ପର୍ଯ୍ୟ ?

ଆହୁରି ଆଶ୍ଚର୍ଯ୍ୟର କଥା, — ପୁଣି ବୁଦ୍ଧ, ଯିଏ ତମ ଆମ ଭଳି ଜଣେ ଲୋକ, ସେହି ମଣିଷର ଅସ୍ଥି ପୁଣି ଖୋଦ୍ ପରମାତ୍ମା, ଜଗନ୍ନାଥଙ୍କ ଆତ୍ମା ? ତାହା ହେଲା କିପରି ? ତାହା ପୁଣି ଏମିତି ଏକ ଲୋକର ଅସ୍ଥି, ଯେ ନିଜେ ଆତ୍ମାକୁ ସ୍ୱୀକାର କରେ ନାହିଁ, ଈଶ୍ୱର ମାନେ ନାହିଁ । ଯିଏ ନିଜେ ଜଣେ ନିରୀଶ୍ୱରବାଦୀ ।

ସେଇ ପୁଣି ହୁଅନ୍ତି ଈଶ୍ୱରଙ୍କ ଅବତାର — ଜଗନ୍ନାଥ । ଅଥଚ ଆତ୍ମା ଓ ଈଶ୍ୱର ମାନୁଥିବା ଅନ୍ୟ ଐତିହାସିକ ବ୍ୟକ୍ତି ଅବତାର ନୁହନ୍ତି କାହିଁକି ?

କାହିଁକି ? କଣ ଏହାର ତାତ୍ପର୍ଯ୍ୟ ? ଏ ବିଷୟ ନେଇ କେହି ପ୍ରଶ୍ନ କରନ୍ତି ନାହିଁ । ଅନାତ୍ମବାଦର ପ୍ରତୀକ ହେଲା ଆତ୍ମା । ନିରୀଶ୍ୱରବାଦୀ ହେଲେ ଖୋଦ୍ ଈଶ୍ୱର । ସେଇ ଏକ ବିରୁଦ୍ଧାତ୍ମକ ବୈଶିଷ୍ଟ୍ୟ, — ଯାର ପ୍ରତିଫଳନ ଜଗନ୍ନାଥ । ସେହି ରହସ୍ୟର ଉଦ୍‌ଘାଟନ ହେଉଛି ଜଗନ୍ନାଥଙ୍କର ଉପଲବ୍ଧି । ସେଇ ଉପଲବ୍ଧି ଦିଗରେ ନିର୍ଭୁଲ୍ ପଦକ୍ଷେପ ହେଲା ଶରୀର ଓ ଆତ୍ମା, ଜଗନ୍ନାଥ ଓ ବୁଦ୍ଧ, ଦୁହିଁଙ୍କର ବୈଶିଷ୍ଟ୍ୟ ଭିତରେ ତାଙ୍କର ଦ୍ୱନ୍ଦ୍ୱ ଓ ମିଳନର ଇତିହାସକୁ ଅନୁସରଣ କରିବା ।

ପ୍ରଶ୍ନ ହେଉଛି, ଜଗନ୍ନାଥ ଅନ୍ୟ କୌଣସି ଐତିହାସିକ ପୁରୁଷକୁ ନ ନେଇ ବୁଦ୍ଧଙ୍କୁ ନିଜର ଆତ୍ମା କଲେ କାହିଁକି ? ବୁଦ୍ଧ ପୁଣି ଅନ୍ୟ କୌଣସି ଦେବତାଙ୍କ ଭିତରକୁ ନ ଯାଇ ଜଗନ୍ନାଥଙ୍କ ଭିତରେ ପ୍ରବେଶ କରିବାର କାରଣ କ'ଣ ?

ଏହାର ଏକମାତ୍ର ଉତ୍ତର, ଦୁହିଁଙ୍କ ଭିତରେ ନିଶ୍ଚୟ କିଛି ଗୋଟାଏ ବଡ ସାମଞ୍ଜସ୍ୟ ରହିଛି । ତା ଫଳରେ ସେହି ମିଳନ ସମ୍ଭବ ହୋଇଛି । ଦୁହିଁଙ୍କ ଆବିର୍ଭାବ ଓ ଉଦ୍ଦେଶ୍ୟ ସମାନ । ଦୁହେଁ ଇତିହାସର ସୃଷ୍ଟି । ସେଇ ଇତିହାସ ଭିତରେ ଦୁହିଁଙ୍କର ବିକାଶ । ଦୁହେଁ ସମାଜ ସହିତ ଘନିଷ୍ଠ ଭାବେ ଜଡିତ । ଦୁହେଁ ମଧ୍ୟ ଜନ୍ମ ମୃତ୍ୟୁର ଅଧୀନ । ଦୁହେଁ ପୁଣି ଜାତି, ବର୍ଣ୍ଣ, ଧର୍ମ ଓ ସାନବଡ ଭେଦାଭେଦର ଊର୍ଦ୍ଧ୍ୱରେ । ଧର୍ମର ଗତାନୁଗତିକ ଅର୍ଥରେ ଦୁହେଁ କେହି ଧର୍ମ ନୁହନ୍ତି । ବୁଦ୍ଧଙ୍କ ତତ୍ତ୍ୱ ଗୋଟାଏ ସାମାଜିକ ବିଦ୍ୟା ଓ ସମାଜ ଗଠନର ଶିକ୍ଷା ହେଲେ, ଜଗନ୍ନାଥଙ୍କ ଭାବ ଏକ ସାମାଜିକ ନୀତିବୋଧ, ମଣିଷର ପରସ୍ପର ମଧ୍ୟରେ ସମ୍ବନ୍ଧରେ ବିଧାନ । ଶେଷରେ ଦୁହିଁଙ୍କର ସ୍ଖଳନ ମଧ୍ୟ ଘଟିଛି ସେହି ଗତାନୁଗତିକ ଧର୍ମରେ — ତାର କୁସଂସ୍କାର ଓ ଅନ୍ଧଧାରଣାକୁ ଧରି ।

ଦୁହେଁ ଇତିହାସର ସୃଷ୍ଟି ଭାବରେ ସେଇ ଇତିହାସର ପରିସର ମଧ୍ୟରେ ଆବଦ୍ଧ । ଜଗନ୍ନାଥ ସାମ୍ୟ ସମାଜର ପ୍ରତୀକ । ସେଠି ଅସାମ୍ୟ, ତାର ଆନୁଷଙ୍ଗିକ ଧାରଣା — ସାନ ବଡ, ସୁଖ ଦୁଃଖ ଇତ୍ୟାଦି ପାର୍ଥକ୍ୟ ପ୍ରକାଶ ପାଇ ନାହିଁ । ତା ସହିତ ଆସି ନାହିଁ ଲୋଭ, ହିଂସା, ଈର୍ଷା ଆଦି ପରସ୍ପରକୁ ଶୋଷିବାର, ଲୁଟିବାର ଅଭିପ୍ରାୟ । କାରଣ ନାହିଁ ସେଠି ବ୍ୟକ୍ତିଗତ ସମ୍ପତ୍ତି ଓ ବିଷୟର ଲାଳସା ।

କିନ୍ତୁ ବୁଦ୍ଧଙ୍କ ବେଳକୁ ବ୍ୟକ୍ତିଗତ ସମ୍ପତ୍ତିର ଆବିର୍ଭାବ ହେଲାଣି । ତାର ଆନୁଷଙ୍ଗିକ ପରିଣାମ ମଧ୍ୟ ପ୍ରକାଶ ପାଉଛି । ଶୋଷଣ, ଅତ୍ୟାଚାର, ରାଷ୍ଟ୍ର ଓ ସାମ୍ରାଜ୍ୟର ବିସ୍ତାର ସହିତ ଅନ୍ୟ ଦିଗରେ ମଣିଷର ଦୁଃଖ, ନିର୍ଯ୍ୟାତନା ଏବଂ ସାମ୍ୟ ପରିବର୍ତ୍ତେ ଅସାମ୍ୟ, ହିଂସା ଓ ସଂଘର୍ଷ ହୋଇଛି ସେହି ସମାଜର ବ୍ୟବସ୍ଥା । ପୂଜାପାଠ ବା କୌଣସି ଦେବତାଙ୍କର ଆଶୀର୍ବାଦ ଦ୍ୱାରା ସେହି ଦୁଃଖ ନିର୍ଯ୍ୟାତନାର ଅବସାନ ନାହିଁ । ତେଣୁ ତାର ମୂଳ କାରଣ ଖୋଜିବା ହେଉଛି ବୁଦ୍ଧଙ୍କର ଲକ୍ଷ୍ୟ । ସେହି ଅନ୍ୱେଷଣ ଭିତରୁ ବୌଦ୍ଧ ମତର ଉତ୍ପତ୍ତି ।

ବୁଦ୍ଧ ଓ ଜଗନ୍ନାଥ, କିନ୍ତୁ ପ୍ରତ୍ୟେକ ନିଜ ନିଜର ବିପରୀତରେ ପରିଣତ ହୋଇଛନ୍ତି । ଦୁହେଁ ଶେଷକୁ ସବୁପ୍ରକାର ଅସାମ୍ୟର ଆବରଣ, ବିଦ୍ୱେଷ, ସଂଘର୍ଷର ରକ୍ଷକ ଓ ଶୋଷଣର ସୂକ୍ଷ୍ମ ଆୟୁଧଭାବେ ବ୍ୟବହୃତ ହୋଇଛନ୍ତି । ମୂଳତଃ ଦୁହିଁଙ୍କର ଏଇ ସମାନ ଭିତ୍ତି, ଗତି ଓ ପ୍ରକୃତିର ମିଳନ ହେତୁ ଦୁହେଁ ଏପରି ଅବିଚ୍ଛେଦ୍ୟ । ଜଣେ ଶରୀର ହେଲେ ଆନ୍ୟ ଜଣେ ଆତ୍ମା ।

ଆମେ ପୂର୍ବରୁ ଜଗନ୍ନାଥଙ୍କ ଆବିର୍ଭାବ ସମ୍ବନ୍ଧରେ ଆଲୋଚନା କରିଛେ । ଏବେ ବୁଦ୍ଧଙ୍କ ପ୍ରତି ଦୃଷ୍ଟି ଦେବାକୁ ହେବ । ସେ ଦୁହିଁଙ୍କ ସମ୍ପର୍କର ତାତ୍ପର୍ଯ୍ୟ ଦେଖିବାକୁ ପଡ଼ିବ ।

ଜଗନ୍ନାଥ ହେଲେ ଅଣ-ଆର୍ଯ୍ୟ, ଆଦିମ ଅଧିବାସୀ ଶବରଙ୍କ ସୃଷ୍ଟି । କିନ୍ତୁ ତାଙ୍କ ଆତ୍ମାଟା ହେଉଛି ଆର୍ଯ୍ୟଙ୍କ (ବୁଦ୍ଧ) ଅବଦାନ । ଅର୍ଥାତ୍ ଅନାର୍ଯ୍ୟ ଶରୀରରେ ଆର୍ଯ୍ୟ-ପ୍ରାଣର ପ୍ରବେଶ । ଅଣ-ଆର୍ଯ୍ୟ ସାମ୍ୟ ସମାଜର ପ୍ରତୀକ ଭିତରେ ଆର୍ଯ୍ୟ-ଅସାମ୍ୟ ସମାଜର ମର୍ମ୍ମର ପ୍ରତିଫଳନ । ଏହା ହେଲା ଜଗନ୍ନାଥଙ୍କଠାରେ ଆତ୍ମାର ଆରୋପ ।

ଆଦିମ ସମାଜରେ ଆତ୍ମାର ଧାରଣା ନାହିଁ । ତାହା ବୈଦିକ ସମାଜରେ ମଧ୍ୟ ନ ଥିଲା । ଆର୍ଯ୍ୟମାନଙ୍କର ଋଗ୍‌ବେଦ ବେଳକୁ ମଧ୍ୟ ଆସିନାହିଁ । ଆତ୍ମାର ଧାରଣା ଜନ୍ମ ନେଇଛି ଉପନିଷଦ ବେଦାନ୍ତ ଯୁଗରେ । ତା ହୋଇଛି ଉପନିଷଦ ବେଦାନ୍ତର ଏକ ପ୍ରଧାନ ଅବଦାନ ।

ବୁଦ୍ଧଦନ୍ତକୁ ଆତ୍ମାର ରୂପ ଦେଇ ତାକୁ ଜଗନ୍ନାଥଙ୍କୁ ପ୍ରଦାନ କରିବା ଯେପରି ଉପନିଷଦବାଦର ଏକ ବିରାଟ ବିଜୟ, ସେହିପରି ଉପନିଷଦର ଏକ ବିରାଟ ପରାଜୟ ମଧ୍ୟ । କାରଣ ଉପନିଷଦର ଚାତୁର୍ବର୍ଣ୍ଣ୍ୟ, ଅସାମ୍ୟ, ଅମୈତ୍ରୀ ଓ ଅପ୍ରୀତିର କଠୋର ନିର୍ଦ୍ଦେଶ ସତ୍ତ୍ୱେ ଏବେ ସେହି ସାମ୍ୟ, ମୈତ୍ରୀ, ପ୍ରୀତିର ଭାବ ପ୍ରଚାରିତ । କିନ୍ତୁ ବର୍ତ୍ତମାନର ସାମାଜିକ ଅବସ୍ଥାରେ ତାହା ଏପରି ପ୍ରଚାରିତ ଯେ, ତାହା ବ୍ରାହ୍ମଣ୍ୟବାଦର ଆଧିପତ୍ୟକୁ କ୍ଷୁର୍ଣ୍ଣ କରିବା ପରିବର୍ତ୍ତେ ତାକୁ ଅଧିକ ପ୍ରତିଷ୍ଠିତ କରିଥାଏ ।

ଜଗନ୍ନାଥ-ଭାବ, ସାମ୍ୟ ମୈତ୍ରୀ ପ୍ରୀତି ଭିତରେ ଈଶ୍ୱର ଧାରଣର ପ୍ରଶ୍ନ ନାହିଁ, ତେଣେ ବୌଦ୍ଧ ମତ ଈଶ୍ୱର ଧାରଣାର ବିରୋଧୀ । ତେଣୁ ଜଗନ୍ନାଥ ବୁଦ୍ଧଙ୍କ ମିଳନରେ କୌଣସି ଅସୁବିଧା ନାହିଁ, ତା' ଅତି ସ୍ୱାଭାବିକ । ଈଶ୍ୱର ଘେନି ବୁଦ୍ଧଙ୍କର ଅନାଥ ପିଣ୍ଡିକଙ୍କ ସହିତ ଆଲୋଚନାରୁ ଜଣଯାଏ —

''ଯଦି ବିଶ୍ୱ ଈଶ୍ୱରଙ୍କ ଦ୍ୱାରା ତିଆରି, ତେବେ ପରିବର୍ତ୍ତନ କିମ୍ବା ବିନାଶ ହେବା ଉଚିତ ନୁହେଁ । ଦୁଃଖ ଦୁର୍ଦ୍ଦଶା ଭଳି, ବା ଭୁଲ ଠିକ୍ ଭଳି କିଛି ରହିବା ଉଚିତନୁହେଁ । ଦେଖିଲେ, ଭଲ ଓ ଖରାପ ସବୁଜିନିଷ ତାଙ୍କରିଠାରୁ ନିଶ୍ଚୟ ଆସେ । ଯଦି ସୁଖ, ଦୁଃଖ, ପ୍ରେମ ଓ ଘୃଣା ଆଦି ଯାହାସବୁ ଚେତନଶୀନ ସତ୍ତା ଭିତରେ

ପ୍ରକାଶ ପାଏ, ତାହା ଈଶ୍ୱରଙ୍କ କାମ ହୁଏ, ତେବେ ସୁଖ, ଦୁଃଖ, ପ୍ରେମ, ଘୃଣାର ସାମର୍ଥ୍ୟ ନିଶ୍ଚୟ ଈଶ୍ୱରଙ୍କର ରହିଛି । ଯଦି ତାଙ୍କର ସେ ସବୁ ରହିଥାଏ । ତେବେ ତାଙ୍କୁ ପରିପୂର୍ଣ୍ଣ କୁହାଯାଇ ନ ପାରେ । ଯଦି ଈଶ୍ୱର ସୃଷ୍ଟିକର୍ତ୍ତା ଏବଂ ସମସ୍ତଙ୍କୁ ନିରବରେ ତାଙ୍କ ନିକଟରେ ନିଜକୁ ସମର୍ପିବାକୁ ହୁଏ, ତାହାହେଲେ ଆଉ ଉତ୍କର୍ଷ ସାଧନର ଆବଶ୍ୟକତା କେଉଁଠି ? ଦୁଃଖ ଯନ୍ତ୍ରଣା ପ୍ରତି ଯଦି ଅନ୍ୟ କାରଣ ଆରୋପ କରାଯାଏ, ତେବେ ଜାଣିବାକୁ ହେବ କେତେକ ଜିନିଷ ରହିଛି, ଯାହାର କାରଣ ଈଶ୍ୱର ନୁହନ୍ତି । ତେଣୁ ଯାହାସବୁ ବିଦ୍ୟମାନ ରହିଛି, ସେସବୁ ମଧ୍ୟ କାହିଁକି ଅ-କାରଣ ପ୍ରସ୍ତୁତ ନ ହେବେ ? ଈଶ୍ୱର ଯଦି ସୃଷ୍ଟିକର୍ତ୍ତା ହୁଅନ୍ତି-ହୁଏତ ସେ ଉଦ୍ଦେଶ୍ୟ ଘେନି ବା ବିନା ଉଦ୍ଦେଶ୍ୟରେ କାର୍ଯ୍ୟ କରିବେ । ଯଦି ସେ ଉଦ୍ଦେଶ୍ୟ ଘେନି କାର୍ଯ୍ୟ କରିନ୍ତ ତେବେ ତାଙ୍କୁ ପରିପୂର୍ଣ୍ଣ କୁହାଯାଇ ନ ପାରେ । କାରଣ ଉଦ୍ଦେଶ୍ୟ ନିଶ୍ଚିତଭାବେ ଏକ ଅଭାବ ପୂରଣ ସୂଚନା ଦିଏ । ଯଦି ସେ ବିନା ଉଦ୍ଦେଶ୍ୟରେ କାମ କରନ୍ତି, ଜାଣିବାକୁ ହେବ ସେ ନିଶ୍ଚୟ ଏକ ବଦ୍ଧ ପାଗଳ ବା ଦୁଧଖିଆ ପିଲାଭଳି ଚପଳ । ତା' ଛଡା ଯଦି ଈଶ୍ୱର ସୃଷ୍ଟିକର୍ତ୍ତା ହୁଅନ୍ତି, ତେବେ ସେ ତାଙ୍କ ନିକଟରେ ଶ୍ରଦ୍ଧାର ସହ ନିଜେ ବଶ ନ କରାନ୍ତି କାହିଁକି ? ଅଭାବରେ ପକାଇ ଦୀନହୀନଭାବେ ନିଜ ପାଖରେ ବିନୀତ ନିବେଦନ ଅର୍ପଣ କରାନ୍ତି କାହିଁକି ? ଜଣକ ଛଡା ସବୁ ଦେବତାଙ୍କୁ ଭକ୍ତି କରିବାର କାରଣ କ'ଣ ? ଈଶ୍ୱର ଧାରଣା ଯୁକ୍ତିଯୁକ୍ତ ଜ୍ଞାନଦ୍ୱାରା ମିଥ୍ୟା ପ୍ରମାଣିତ । ଏହିପରି ସମସ୍ତ ବିରୁଦ୍ଧାତ୍ମକ ଦାବୀର ମୁଖା ଖୋଲିଦେବା ଉଚିତ ।

କଥାଟା ଆଜି ଯେତେ ସହଜ ମନେହୁଏ, ସେତେବେଳେ ତାହା କଦାପି ସେପରି ସହଜ ହୋଇନଥିବ । କାରଣ ଏକ ଦିଗରେ ଉପନିଷଦର ଆତ୍ମା, ଅନ୍ୟ ଦିଗରେ ଜଗନ୍ନାଥ-ଭାବ, ଏ ଦୁହେଁ ପରସ୍ପର-ବିରୋଧୀ । ତାହା ସାମାଜିକ କ୍ଷେତ୍ରରେ ସେହି ସାମ୍ୟ ଓ ଆସାମ୍ୟ ମଧ୍ୟରେ ବିରୋଧିତାର ପ୍ରତିଫଳନ । ଜଗନ୍ନାଥଙ୍କ ଭିତରେ ତାର ପ୍ରବେଶ ଉକ୍ତ ସଂଘର୍ଷ ମିଳନକୁ ପ୍ରକାଶ କରେ । ତେଣୁ ଜଗନ୍ନାଥଙ୍କ ମହତ୍ତ୍ୱର ନିର୍ଣ୍ଣୟ କରିବାକୁ ହେଲେ ଉପନିଷଦ ଓ ବୌଦ୍ଧମତର ସେଇ ଦ୍ୱନ୍ଦ୍ୱର ମିଳନକୁ ଦେଖିବାକୁ ହେବ ।

ସେ କାଳରୁ ଏପର୍ଯ୍ୟନ୍ତ ଯେତେ ଧର୍ମଧାରଣା, ମତ ଓ ବିଶ୍ୱାସ ହିନ୍ଦୁଙ୍କର ଅଙ୍ଗ ହୋଇଆସିଛି, ସେସବୁର ଭିତ୍ତି ହେଉଛି ସେଇ ବେଦ ଓ ଉପନିଷଦ । ଏ ବୈଜ୍ଞାନିକ ଯୁଗରେ ଏବେ ବି ହିନ୍ଦୁ ବୁଦ୍ଧିଜୀବୀଙ୍କ ମଧ୍ୟରେ ତାର ପ୍ରଭାବ କମ୍ ନୁହେଁ । କିନ୍ତୁ ଯୁଗ ଯୁଗ ଧରି ମଣିଷ ଭାବନାରେ ଯେତେ ବିଭ୍ରାନ୍ତି, ଆବିଳତା ଆସିଲେ, ଯେତେ ଅସ୍ୱଚ୍ଛତା ପ୍ରକାଶ ପାଇଲେ ମଧ୍ୟ ସେହି ସାମ୍ୟ ମୈତ୍ରୀ ପ୍ରୀତି ମଣିଷର ଆକାଂକ୍ଷିତ ଲକ୍ଷ୍ୟ ହୋଇରହିଛି । ମଣିଷ ସବୁବେଳେ ଚାହିଁଛି ଦୁଃଖର କାରଣର ବିନାଶ ।

ଜଗନ୍ନାଥଙ୍କ ଭଳି, ଜଗନ୍ନାଥଙ୍କ 'ଆତ୍ମାର' ଆବିର୍ଭାବ ଆକାଶରୁ ଖସି ନାହିଁ । ଏଇ ମାନବ ସମାଜର ଏକ ନିର୍ଦ୍ଦିଷ୍ଟ ଅବସ୍ଥା ଭିତରୁ ତାହାର ଉଦ୍ଭବ । ଜଗନ୍ନାଥଙ୍କ

ସେଇ 'ଆତ୍ମାର' ଆଲୋଚନାକୁ ବାଦ୍‌ଦେଇ କଣ ତାଙ୍କୁ କେବେ ବୁଝିହେବ ? — ଏହାହିଁ ଏପର୍ଯ୍ୟନ୍ତ ହୋଇଆସିଛି ।

ବେଦ ପରେ ଆସିଲା ଉପନିଷଦ, ତାପରେ ବୁଦ୍ଧ ଓ ବୌଦ୍ଧମତର ଜନ୍ମ । ବେଦର କାଳ ଖ୍ରୀ:ପୂ ୧୫,୦୦ରୁ ୧୦୦୦ ମଧ୍ୟରେ । ତା ପରେ ୧୦୦୦ ରୁ ୬୦୦ ହେଲା ଉପନିଷଦର — 'ବ୍ରାହ୍ମଣ'ର ସମୟ । ବୁଦ୍ଧ ହେଲେ ଖ୍ରୀଷ୍ଟପୂର୍ବ ୫୬୪ ରୁ ୪୮୦ ମଧ୍ୟରେ ।

**ଉପନିଷଦର ସାକ୍ଷିସହୀନ ଆହ୍ବାନ —**

ଲକ୍ଷ୍ୟ କରିବାର କଥା — ଜଗନ୍ନାଥଭାବର ସେଇ ମୂଳନୀତି, — ସାମ୍ୟ, ମୈତ୍ରୀ, ପ୍ରୀତିର ନାମ କୌଣସି ହିନ୍ଦୁ ଶାସ୍ତ୍ର, ପୁରାଣ, ବା ଦର୍ଶନ ଧରେ ନାହିଁ । ସେସବୁରେ ଜଗନ୍ନାଥ ଭାବରେ ଖାଲି ଯେ ଅଭାବ ରହିଛି, ତା ନୁହେଁ — ସେମାନେ ତାର ଘୋର ବିରୋଧୀ । ଏକମାତ୍ର ବ୍ୟତିକ୍ରମ ହେଉଛନ୍ତି ଲୋକାୟତ, ଚାର୍ବାକ୍ , ବୁଦ୍ଧ, ସାଂଖ୍ୟ ଓ ଭୌତିକତାବାଦୀ ଦର୍ଶନ । ଏମାନଙ୍କୁ ଛାଡିଦେଲେ ଅନ୍ୟ ସମସ୍ତେ ସେହି ବେଦାନ୍ତ ଉପନିଷଦକୁ ଭିତ୍ତି କରନ୍ତି । ସାଧାରଣ ଭାରତୀୟ ଚିନ୍ତାଧାରା ତାକୁଇ ଧରି ଘୂରୁଛି । ତାହା ଏବେ ବି ଭାରତୀୟ ଜୀବନକୁ ପ୍ରଭାବିତ କରେ । ଏବେ ତାକୁ ଛାଡି ହିନ୍ଦୁଧର୍ମ ନାହିଁ ।

ସ୍ମରଣ ରଖିବାକୁ ହେବ — ଅଷ୍ଟମ, ନବମ ଶତାବ୍ଦୀ ପର୍ଯ୍ୟନ୍ତ ହିନ୍ଦୁ ବୋଲି କୌଣସି ଶବ୍ଦ ନାହିଁ । ବୈଦିକ କାଳରୁ ଶଙ୍କରଙ୍କ ପର୍ଯ୍ୟନ୍ତ ଦୀର୍ଘ ଅଢେଇ ହଜାର ବର୍ଷ ଧରି ହିନ୍ଦୁ କଥାଟା ଆସିନାହିଁ । ଯାହା ଥିଲା ତାହା ହେଲା ବୈଦିକ ଧର୍ମ । ପାରସ୍ୟରୁ ମୁସଲମାନମାନେ ଆସିଲା ପରେହିଁ ହିନ୍ଦୁ ଶବ୍ଦର ସୃଷ୍ଟି । ସେମାନେ 'ସ' କୁ 'ହ' ଭାବେ ଉଚ୍ଚାରଣ କରୁଥିଲେ । ଫଳରେ ସିନ୍ଧୁ ସଭ୍ୟତା, ହିନ୍ଦୁରନାମନେଇ ହିନ୍ଦୁସ୍ଥାନ ହେଲା । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସେଠାରେ ବାସ କରୁଥିବା ସମସ୍ତେ ହେଲେ ହିନ୍ଦୁସ୍ଥାନୀ । ତେଣୁ ମୂଳତଃ ହିନ୍ଦୁ ଶବ୍ଦ ସହିତ ସେଇ ଧର୍ମର କୌଣସି ସମ୍ବନ୍ଧ ନାହିଁ, ଯାହାକି ବର୍ତ୍ତମାନ ଧରାଯାଏ । ସେଇ ଚାରି ବେଦ, ଶାସ୍ତ୍ର, ପୁରାଣରେ ମଧ୍ୟ କେଉଁଠି ହିନ୍ଦୁଧର୍ମର ଦୃଷ୍ଟାନ୍ତ ନାହିଁ । ଅଥଚ ଏବେ ସେଇ ହିନ୍ଦୁ ଶବ୍ଦ ସାମ୍ପ୍ରଦାୟିକତା ରୂପ ନେଇ ରାଜନୀତିର ଆୟୁଧରେ ପରିଣତ ।

ତେଣୁ ଉପନିଷଦ ଯୁଗରେ ହିନ୍ଦୁ ବୋଲି କିଛି ନାହିଁ । କିନ୍ତୁ ଉପନିଷଦ ଏବେ କେବଳ ହିନ୍ଦୁଧର୍ମର ଭିତ୍ତି ନୁହେଁ, ମାନବଚିନ୍ତାର ଏକ ଗୁଣାତ୍ମକ ପରିବର୍ତ୍ତନ । ତାର ଏକ ବିରାଟ ବିକାଶ । ତାହା ସେହିପରି ଏକ ଗୁଣାତ୍ମକ ସାମାଜିକ ପରିବର୍ତ୍ତନ ଭିତରୁ ଉଦ୍ଭବ । ସେହି ସମାଜର ଧାରଣା ପୂର୍ବରୁ ପ୍ରଚଳିତ ଧାରଣାଠାରୁ ସମ୍ପୂର୍ଣ୍ଣ ଫରକ । ଅର୍ଥାତ୍ ସାମ୍ୟ, ମୈତ୍ରୀ, ପ୍ରୀତିର ଧାରଣାଠାରୁ ଗୁଣାତ୍ମକ ଭାବେ ଫରକ । ତାର ବିରୋଧୀ ଭାବକୁ ପ୍ରକାଶ କରେ । ଉପନିଷଦ, ବେଦାନ୍ତ ହେଲା ସେଇ ଭାବର

ବାହକ । ତାହା ହେଉଛି ଆତ୍ମା, ବ୍ରହ୍ମ, ମୋକ୍ଷ, କର୍ମ ପୁନର୍ଜନ୍ମ ଓ ଚାତୁର୍ବର୍ଣ୍ଣ୍ୟ ଧାରଣା ଯାହାକି ପୂର୍ବରୁ କେବେ ଦେଖା ନଥିଲା କି ବେଦରେ ନାହିଁ ।

ଉପନିଶଦ ବେଳକୁ ସମାଜ ବେଶ ଆଗେଇଗଲାଣି । ଆର୍ଯ୍ୟ ଓ ଅନାର୍ଯ୍ୟଙ୍କର ମିଶ୍ରଣ ଘଟିଲାଣି । ଏଣିକି ତାକୁ ଅଲଗା କରିବା ସମ୍ଭବ ନୁହେଁ । ସେମିତି ଆର୍ଯ୍ୟମାନେ ମଧ୍ୟ ଏଣେ ଉପଜାତି ବା ଟ୍ରାଇବାଲ ଜୀବନକୁ ପ୍ରଭାବିତ କରୁଛନ୍ତି । ସେସବୁ ଆଲୋଚନା ଏକ ସ୍ୱତନ୍ତ୍ର ବିଷୟ । ତେବେ ଉପନିଷଦ ଯେ ପୂରାପୂରି ବୈଦିକ ସୃଷ୍ଟି ତାହା ମଧ୍ୟ ସନ୍ଦେହଜନକ । ଐତରେୟ ଉପନିଷଦ ଜଣାଇଦିଏ ଯେ, ତାହା ଇତର ବା ନୀଚଶ୍ରେଣୀର ସ୍ତ୍ରୀଲୋକଙ୍କଠାରୁ ଜାତ ସନ୍ତାନର ସୃଷ୍ଟି । ଏମିତି ଘଟଣାର ଅଭାବ ନାହିଁ । ତେବେ ଉତ୍ପାଦନ ବୃଦ୍ଧି ସହିତ ସମାଜରେ ଶ୍ରମ ବିଭାଜନ ଘଟିଲାଣି । ତା ସହିତ ଦେଖାଦେଲାଣି ଶ୍ରେଣୀ-ବିଭାଜନ । ମାନସିକ ଶ୍ରମ ଓ ଶାରୀରିକ ଶ୍ରମ ଭିତରେ ବ୍ୟବଧାନ ବଢ଼ିବଢ଼ି ଚାଲିଛି । ଏ ସମସ୍ତ ବିଭାଜନ ପ୍ରକାଶ ପାଇଛି ଚାତୁର୍ବର୍ଣ୍ଣ୍ୟ ବ୍ୟବସ୍ଥା ଭିତରେ । ଶେଷରେ ବେଦ କର୍ମକାଣ୍ଡ ହେଲାବେଳେ ଉପନିଷଦ ହୋଇଛି ଜ୍ଞାନକାଣ୍ଡ ।

ଏଇ ବିଭାଜନ ଅଦ୍ୟଦିଗରେ ଉତ୍ପାଦନ-ବୃଦ୍ଧିକୁ ତ୍ୱରାନ୍ୱିତ କରିଛି । ତା ସହିତ ବୃଦ୍ଧି ପାଇବାରେ ଲାଗିଛି ବ୍ୟକ୍ତିଗତ ସମ୍ପତ୍ତି । ତାହା ଶ୍ରମ ଓ ଶ୍ରେଣୀ ବିଭାଜନକୁ ଆହୁରି ଆଗେଇ ନେଇଛି । ତା ସହିତ ସୁଦୃଢ଼ ଓ ପ୍ରସାରିତ ହୋଇଛି ସେହି ଚାତୁର୍ବର୍ଣ୍ଣ୍ୟ ବ୍ୟବସ୍ଥା ।

ଯେଉଁଠି ବ୍ୟକ୍ତିଗତ ସମ୍ପତ୍ତି, ସେଠି ଲୋଭ, ଈର୍ଷା, ଆସକ୍ତି ଓ ପରଧନ ଆତ୍ମସାତ କରିବାରେ ପ୍ରବୃତ୍ତି ଆସିବା ସ୍ୱାଭାବିକ । ଆଉ ତା ସହିତ ଅବିଚ୍ଛେଦ୍ୟଭାବେ ଜଡ଼ିତ 'ମୁଁ' ଓ 'ମୋର' ଧାରଣା । ମୋର ସମ୍ପତ୍ତି ସହ ମୋର ପରିବାର, ମୋର ଆତ୍ମା, ମୋର ମୁକ୍ତିର ପୂର୍ବଭାବନା ଆସିଛି । ପୂର୍ବର ସମଷ୍ଟି ଓ ସମୁଦାୟ ବଦଳରେ ମଣିଷ ଖୋଜିଛି —ମୋର - କୁ । ତାହା କେବଳ ମର୍ତ୍ତ୍ୟରେ ଇହଲୋକରେ, ଜୀବିତାବସ୍ଥାରେ ନୁହେଁ ; ମୃତ୍ୟୁ ଉତ୍ତାରୁ ସ୍ୱର୍ଗଲୋକରେ ନିଜର ମୋକ୍ଷକୁ ମଧ୍ୟ । ତାହା ଆହ୍ୱାନ କରି ଆଣିଛି ତଦ୍ରୁପ ଧର୍ମର ଧାରଣାକୁ ।

ଋଗବେଦ ସମାଜରେ ନାହିଁ ବ୍ୟକ୍ତିଗତ ସମ୍ପତ୍ତି କି 'ମୋର' 'ତୋର' ଭାବନା । ଋତ ଓ ଋଗ୍‌ବେଦ ଯୁଗରେ ଭାବନା ଓ କାର୍ଯ୍ୟ ମଧ୍ୟରେ ବିଭାଜନ ନାହିଁ । ଭାବିବା ଅର୍ଥ କରିବା, କରିବା ଅର୍ଥ ଭାବିବା । ଋଗ୍‌ବେଦରେ 'ଧୀ' ବୋଇଲେ ମାନସିକ ବୁଦ୍ଧି, ଜ୍ଞାନ ଓ ଶାରୀରିକ ସାମର୍ଥ୍ୟ, ଉଭୟକୁ ବୁଝାଏ । ସେ ଉଭୟ 'ଧୀ' ଶବ୍ଦଭୁକ୍ତ । ସେହିପରି ରଥ ତିଆରି ଓ ଶ୍ଳୋକ ରଚନା ସମାନ କାର୍ଯ୍ୟ । ଭାବୁକ ଓ ଶ୍ରମିକ ମଧ୍ୟରେ ଫରକ ନାହିଁ । ପରବର୍ତ୍ତୀ କାଳଭଳି ଋଗବେଦ ଯୁଗରେ ଶ୍ରମ ଘୃଣ୍ୟ ନୁହେଁ । ତାହା ସମ୍ମାନଜନକ । ତ୍ୱାଶତ୍ରୀ ରଥନିର୍ମାଣକାରୀ ଓ ବିଶ୍ୱକର୍ମକାର ଖୋଦ୍ ବିଶ୍ୱର କର୍ତ୍ତା ଜଗତରେ ନିର୍ମାଣକାରୀଙ୍କ ଗୁରୁ । ସରଳ ଆଦିମ କର୍ମକାରୀ ଲୋକ

ଲାଗି ଈଶ୍ୱର ଜଣେ କାରିଗର ନ ହୋଇ ଆଉ କଅଣ ହୁଅନ୍ତେ ? ସେଠି ଉପନିଷଦର ଇନ୍ଦ୍ରିୟାତୀତ ଗୂଢ଼ଜ୍ଞାନ-ଆତ୍ମା, ବ୍ରହ୍ମ ଓ ମୋକ୍ଷ, ଏବଂ ତାର ପ୍ରାପ୍ତି ଲାଗି କର୍ମଫଳ, ପୁନର୍ଜନ୍ମ ଓ ଚାତୁର୍ବର୍ଣ୍ଣ୍ୟ ର ପ୍ରଶ୍ନ ନାହିଁ । ଗୋଟିଏ ହେଲା, ବେଦକୁ ଭିତ୍ତିକରି ଦ୍ୱନ୍ଦ୍ୱ । ଅନ୍ୟଟି ହେଲା, ବେଦକୁ ପ୍ରତ୍ୟାଖ୍ୟାନ କରି ଦ୍ୱନ୍ଦ୍ୱ । ପ୍ରଥମଟି ପ୍ରକାଶ ପାଇଛି ପୂର୍ବ ମୀମାଂସା ଉତ୍ତର ମୀମାଂସା (ଉପନିଷଦ) ମଧ୍ୟରେ, ଅର୍ଥାତ୍ ବେଦ ଓ ଉପନିଷଦର ଋଷିଙ୍କ ଭିତରେ । ଦ୍ୱିତୀୟଟି ହେଲା ବେଦ ଓ ଉପନିଷଦ ସହିତ ଲୋକାୟତ, ଚାର୍ବାକ୍, ସାଂଖ୍ୟ, ବୁଦ୍ଧି, ନ୍ୟାୟ, ବୈଶେଷିକ ଆଦି ମତରେ ସଂଘର୍ଷ, ଅଧିଭୌତିକତା ଦୃଷ୍ଟିରୁ ।

ଅନେକ ମନେକରିବେ ଜଗନ୍ନାଥ ଆଲୋଚନାରେ ଏଗୁଡ଼ାକ ଅନାବଶ୍ୟକ, ନିରର୍ଥକ । ଠିକ୍ ଏହିପରି ଆଲୋଚନାର ଅଭାବରୁ ରୂପରେ ଜଗନ୍ନାଥଙ୍କୁ ମାଦଳ ଦେଖି ଚିନ୍ତାରେ ମଧ୍ୟ ତାଙ୍କୁ ସେହିପାରି ମାଦଳ କରି ଦିଆଯାଇଛି । ଜଗନ୍ନାଥ-ଭାବକୁ ସ୍ଥାଣୁ, ପଙ୍ଗୁ ଓ ଅଥର୍ବ କରି ବାନ୍ଧିଦିଆଯାଇଛି । ତଦ୍ୱାରା ମଣିଷ ନିଜେ ଗତି ନ କରି ବନ୍ଧା ହୋଇପଡ଼ିଛି । ସାମ୍ୟ, ମୈତ୍ରୀ, ପ୍ରୀତିର ପ୍ରତୀକଙ୍କ ମର୍ମକୁ ହତ୍ୟା କରିବାରେ ନିଜେ ସମସ୍ତ ପ୍ରକାର ଅସାମ୍ୟ, ଅପ୍ରୀତି ଓ ଅନ୍ଧ ଧାରଣାର ଶିକାର ହୋଇଛି । ଦୁଇ ମୀମାଂସା (ପୂର୍ବ ଓ ଉତ୍ତର) ବେଦକୁ ଆପଣାର ମୂଳ କରି ଧରିଛନ୍ତି । ପୂର୍ବ ମୀମାଂସା ବେଦର କର୍ମକାଣ୍ଡ , ବିଧିବିଧାନ ଉପରେ ଜୋରଦେଇ ଈଶ୍ୱରଙ୍କୁ ସମ୍ପୂର୍ଣ୍ଣ ଅସ୍ୱୀକାର କରେ । ଉତ୍ତର ମୀମାଂସା ବା ଉପନିଷଦ ସେହି ବେଦକୁ ଅନୁସରଣ କରି ଆତ୍ମା, ବ୍ରହ୍ମ ଆଦିରେ ପହଞ୍ଚିଥାଏ । ବେଦରେ ହେଲାଭଳି ପୂର୍ବ ମୀମାଂସା ଯଜ୍ଞଦ୍ୱାରା ଉତ୍ତମ ସ୍ୱାସ୍ଥ୍ୟ, ଖାଦ୍ୟ ଗୋରୁଗାଈ ସନ୍ତାନ ସନ୍ତତି ଆଦି ପାର୍ଥିବ କାମନା ଦିଗରେ ଅଗ୍ରସର । ସେହି ମୀମାଂସା-ଋଷିମାନଙ୍କର ମତ ହେଲା ବେଦ ବିଧିବିଧାନ ଅନୁଯାୟୀ ଠିକ୍ ଠିକ୍ ମନ୍ତ୍ର ଉଚ୍ଚାରଣ କରି ଯଜ୍ଞ କଲେ ତାହା ସ୍ୱତଃ ଫଳ ପ୍ରଦାନ କରେ । ତାହାହିଁ ସବୁ ଫଳପ୍ରାପ୍ତିର ପନ୍ଥା । ଉପନିଷଦ ବା ଉତ୍ତର ମୀମାଂସା ଋଷିଙ୍କର ବକ୍ତବ୍ୟ ହେଲା — ନିଜ ଆତ୍ମା ଓ ବ୍ରହ୍ମକୁ ଜାଣିବା ସବୁଠୁ ଗୁରୁତ୍ୱପୂର୍ଣ୍ଣ । ବ୍ରହ୍ମରେ ଆତ୍ମାର ବିଲୀନ ହେବାରେ କେବଳ ଚିରମୁକ୍ତି , ମୋକ୍ଷପ୍ରାପ୍ତି ସମ୍ଭବ । ତାହା କେବଳ ଚାତୁର୍ବର୍ଣ୍ଣ ବିଧାନ ଦ୍ୱାରାହିଁ ସମ୍ଭବ ।

ସେହି ବ୍ରହ୍ମ ଏକ ବିରୁଦ୍ଧାତ୍ମକ ଧାରଣା । ତାହା ଏକ ଦିଗରେ ରୂପହୀନ, ଗତିଶୂନ୍ୟ, ଅଚିନ୍ତ୍ୟ, ଅବ୍ୟକ୍ତ, ନିର୍ଗୁଣ ବାସ୍ତବତା । ଅନ୍ୟ ଦିଗରେ ସେହି ବ୍ରହ୍ମ ପୁଣି ହେଉଛି ସୃଷ୍ଟି କର୍ତ୍ତା, — ଚାତୁର୍ବର୍ଣ୍ଣ୍ୟ ବ୍ୟବସ୍ଥାର ଜନ୍ମଦାତା ଓ ନିୟନ୍ତା । ଜାତି ଅନୁଯାୟୀ କର୍ମଦ୍ୱାରା ସମାଜରେ ଉଚ୍ଚବର୍ଣ୍ଣଙ୍କ ଆଧିପତ୍ୟର ପ୍ରତିଷ୍ଠାତା ବ୍ରହ୍ମ — ଯାହାଙ୍କ ନିଜର ସ୍ଥିତି ନାହିଁ କି ଗତି ନାହିଁ କି ରୂପ ନାହିଁ , ସେ ହେଲେ ସମସ୍ତଙ୍କ ସୃଷ୍ଟିର କାରଣ, ଜଗତର ନିୟନ୍ତା । ଯା'ର ଏକମାତ୍ର ପାର୍ଥିବ ପରିଣାମ ଉଚ୍ଚବର୍ଣ୍ଣଙ୍କ ନିକଟରେ ନୀଚବର୍ଣ୍ଣଙ୍କର ଆଜୀବନ ଦାସତ୍ୱ ।

ପଶୁଚାରଣରୁ କୃଷିକୁ ଗତି ହେଉଛି ଆଉ ଏକ ଦୃଷ୍ଟିରୁ ସାମ୍ୟରୁ ଅସାମ୍ୟ ଦିଗକୁ ପ୍ରଥମ ପଦକ୍ଷେପ । ତାହା ଯେତେ କ୍ଷୀଣ ଅସ୍ପଷ୍ଟ ହେଲେ ବି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ, ଏକ ଗୁଣାତ୍ମକ ପରିବର୍ତ୍ତନ । ଅସାମ୍ୟର ସେହି ନିର୍ଝର ଯେତେ ଶୀର୍ଣ୍ଣ ଓ ଦୁର୍ବଳ ହେଲେ ବି ପରବର୍ତ୍ତୀ କାଳରେ ତାହାହିଁ ସମସ୍ତ ଭାରତୀୟ ସମାଜ, ସଭ୍ୟତା, ଧର୍ମ, ଆତ୍ମ-ବୈଷମ୍ୟର ମୂଳ ଉତ୍ସ ହୋଇଆସିଛି । ସେହି ଅସାମ୍ୟ ବ୍ୟବସ୍ଥା ନିଜକୁ ବଳିଷ୍ଠ ଆଉ ସାବ୍ୟସ୍ତ କରିବାରେ ପ୍ରାୟ ଏକହଜାର ବର୍ଷରୁ ଊର୍ଦ୍ଧ ସମୟ ଲାଗିଛି ଉପନିଷଦର ଆରମ୍ଭରୁ ଗୁପ୍ତଯୁଗ ପର୍ଯ୍ୟନ୍ତ ।

ଜଗନ୍ନାଥଭାବ ଈଶ୍ୱର ଧାରଣା ପୂର୍ବର ଓ ବୌଦ୍ଧମତ ଈଶ୍ୱର ଧାରଣା ପରର ଆବିର୍ଭାବ । ଦୁହେଁ ଈଶ୍ୱର ଧାରଣା ଶୂନ୍ୟ, ଅଥଚ ଜଗନ୍ନାଥ ବୁଦ୍ଧ ଦୁହେଁ ଭଗବାନଙ୍କର ଅବତାର । କାରଣ ଜଗନ୍ନାଥ-ଭାବର ଜନ୍ମ ପ୍ରୟୋଗ ଓ ପ୍ରତିଷ୍ଠାରେ କୌଣସି ଆବଶ୍ୟକତା ନାହିଁ ଈଶ୍ୱରଙ୍କର । ବୁଦ୍ଧ ତାଙ୍କର ଜ୍ଞାନପ୍ରାପ୍ତି ମତପ୍ରଚାରରେ ଯେମିତି ଈଶ୍ୱରଙ୍କର କୌଣସି ଆବଶ୍ୟକତା ଅନୁଭବ କରନ୍ତି ନାହିଁ । ଓଲଟି ତାକୁ ଦୃଢ଼ଭାବେ ଖଣ୍ଡନ କରିଥାଆନ୍ତି । ତାଙ୍କର କଥା ହେଲା, ''ଯଥା ଭୂତ ଜ୍ଞାନ ଦର୍ଶନ ।'' ବସ୍ତୁ ବା ଦେହ ସମସ୍ତ ଜ୍ଞାନର ଦର୍ଶନସ୍ଥାନ ।

ବୈଦିକ ଯୁଗରେ ଯଜ୍ଞ ଥିଲା ଗୋଷ୍ଠୀର ଜୀବନ — ସାମୁହିକ ଜୀବନ ପ୍ରଣାଳୀ, ସମୂହ କର୍ମ, ସମୂହ କାମନା , ସମୂହ ଉପଭୋଗ ଏବଂ ସମୂହ ଆନନ୍ଦର ଆଧାର । କାଳକ୍ରମେ ବ୍ୟକ୍ତିଗତ ସମ୍ପତ୍ତିର ବିକାଶ ସହିତ ଯଜ୍ଞ ଅଳ୍ପକେତେକଙ୍କ ଖାସ୍ ବୃତ୍ତିରେ ପରିଣତ ହେଲା । ଦଳପତି ବା ଗୋଷ୍ଠୀମୁଖ୍ୟ ସାମୁହିକ ଯଜ୍ଞକୁ ସଙ୍କୁଚିତ କରି ଦୁଇପ୍ରକାର ଯଜ୍ଞ କଲେ । ଗୋଟିଏ ସମୂହଙ୍କ ପକ୍ଷରୁ ଯଜ୍ଞ ଓ ଅନ୍ୟଟି ନିଜସ୍ୱାର୍ଥ ପାଇଁ ଯଜ୍ଞ । ପରବର୍ତ୍ତୀ କାଳରେ ମୁଖ୍ୟତଃ ନିଜ ପାଇଁ ଯଜ୍ଞ କରାଗଲା । ନିର୍ଦ୍ଦିଷ୍ଟ କାମନା ପୂରଣ ଲାଗି ନିର୍ଦ୍ଦିଷ୍ଟ ପ୍ରକାର ଯଜ୍ଞର ବିଧାନ ସୃଷ୍ଟି ହେଲା । ରାଜସୂୟ ଯଜ୍ଞ, ଅଶ୍ୱମେଧ ଯଜ୍ଞ, ପୁତ୍ରେଷ୍ଟି ଯଜ୍ଞ ଆଦି । ଯଜ୍ଞ ସହିତ ଅବଚ୍ଛେଦ୍ୟ ହୋଇଉଠିଲା ଦକ୍ଷିଣା । ଦକ୍ଷିଣା ସ୍ୱରୂପ ଗୋରୁ ଗାଈ ଓ ସୁବର୍ଣ୍ଣ ଦାନ କରାଯାଉଥିଲା । ଦକ୍ଷିଣା ପାଇବା ଲୋକେ ଯଜ୍ଞକୁ ଉତ୍ସାହିତ କରୁଥିଲେ । ସେପର୍ଯ୍ୟନ୍ତ ଜମିଦାନର କଥା ଉଠିନାହିଁ । ବୈଦିକ ଯୁଗରେ ସେ ପର୍ଯ୍ୟନ୍ତ ଜମି ସମ୍ପତ୍ତିରେ ପରିଣତ ହୋଇନାହିଁ । ତାହା ପ୍ରକୃତରେ ଅଯାଚିତ ଦାନ ଭାବେ ପଡ଼ିରହିଛି ।

ମୀମାଂସକମାନେ ଈଶ୍ୱରଙ୍କୁ ବିଶ୍ୱାସ ତ କରନ୍ତି ନାହିଁ , ସେ ଦିଗରେ ଦୃଢ଼ ଯୁକ୍ତି ମଧ୍ୟ ବାଢ଼ିଥାଆନ୍ତି ।' ସେମାନଙ୍କର ସେଇ ଯୁକ୍ତି, ପ୍ରମାଣ ଅକାଟ୍ୟ । ସେମାନେ ଈଶ୍ୱର ଧାରଣାକୁ ହସରେ ଉଡ଼ାଇଦେଇ କହନ୍ତି, ତାହା ଗୋଟାଏ କିମ୍ବଦନ୍ତୀ । ଦେବତାମାନେ କେବଳ ଗୋଟାଏ ଗୋଟାଏ ଶବ୍ଦ ବା ଧ୍ୱନି ମାତ୍ର । ମଣିଷର ଭାଗ୍ୟରେ ବୈଦିକ ଦେବଙ୍କର କୌଣସି ସ୍ଥାନ ନାହିଁ । ତାଙ୍କର ହସ୍ତକ୍ଷେପର ପ୍ରଶ୍ନ ନାହିଁ । ସେହି ବୈଦିକ ଋଷି-ବ୍ରାହ୍ମଣ, ପୁରୋହିତଗଣ ଈଶ୍ୱର ଧାରଣାକୁ ଏକଦମ୍ ମୂଳରୁ ପୋଛି ଦେଇଛନ୍ତି । ସେମାନେ ତାହା କରିଛନ୍ତି ସେଇ ବେଦର ଭିତ୍ତିରେ — ତାର ବିଧାନ

ଉପରେ ଜୋର୍‌ଦେଇ । ଏଣୁ ଈଶ୍ୱର ଅସ୍ୱୀକୃତି ଯେ ଅବୈଦିକ, ନିରୀଶ୍ୱରବାଦ ଯେ ବେଦବିରୋଧୀ, ତାହା କୁହାଯାଇ ନ ପାରେ । ପରବର୍ତ୍ତୀ କାଳରେ ଅବଶ୍ୟ ମୀମାଂସକଙ୍କ ଭିତରେ ଈଶ୍ୱରଙ୍କୁ ଢୁକାଇଦେବାର ଚେଷ୍ଟା ହୋଇଛି ।

ବର୍ତ୍ତମାନର ଧର୍ମ ଅର୍ଥରେ ବୈଦିକ ଦୃଷ୍ଟିରୁ ଧର୍ମ ବୋଲି କିଛି ନାହିଁ । ଯଜ୍ଞ କୌଣସି ଧର୍ମ ନୁହେଁ । ତାହା ପୂର୍ବ ଯାଦୁ -ବିଶ୍ୱାସର ଏକ ଉନ୍ନତ ସଂସ୍କରଣ ମାତ୍ର । ଯେଉଁଠି କି ନିର୍ଦ୍ଦିଷ୍ଟ ମନ୍ତ୍ର ଉଚ୍ଚାରଣ ଦ୍ୱାରା କାମନା ଲାଭ ହୁଏ । ସେଠି କୌଣସି ଈଶ୍ୱର ବା ଦେବଦେବୀଙ୍କର ପ୍ରଶ୍ନ ନାହିଁ । ଯେଉଁଠି ସେମାନେ ନାହାନ୍ତି, ସେଠି ଧର୍ମର ସ୍ଥାନ ନାହିଁ । ସେଇ ବୈଦିକ ଋଷି ଓ ପୁରୋହିତଗଣ ସେଠି ଈଶ୍ୱରଙ୍କୁ ପୂରାଇ ଦେଇନାହାନ୍ତି । ଆଉ ସେଇ ଋଷିଗଣ ମଧ୍ୟ ବାବାଜୀ ସନ୍ୟାସୀ ନୁହନ୍ତି । ସେମାନେ ମୁଖ୍ୟତଃ କବି ବା ପୁରୋହିତ ବା ଏକାସାଙ୍ଗରେ ଦୁଇଟିଯାକ ।

ଈଶ୍ୱର ଧାରଣ ସବୁ ଦେଶରେ ଓ ସମାଜରେ ରହିଛି । ତାହା ଭାରତ ଚିନ୍ତାର ବୈଶିଷ୍ଟ୍ୟ ନୁହେଁ । ବୈଶିଷ୍ଟ୍ୟ ହେଉଛି ଆତ୍ମା, ବ୍ରହ୍ମ ଆଉ ମୋକ୍ଷ । ତାକୁ ଲାଭ କରିବାର ମାର୍ଗ — କର୍ମ, ପୂର୍ବଜନ୍ମ ଆଉ ଚାତୁର୍ବର୍ଣ୍ଣ୍ୟ ବ୍ୟବସ୍ଥା । ତାହାହିଁ ହିନ୍ଦୁଧର୍ମ, ଦର୍ଶନ, ବିଚାର ବିଶ୍ୱାସର ମେରୁ । ତାକୁଇ ଧରି ଭାରତୀୟ ସମାଜ ଘୂରିବାରେ ଲାଗିଛି । ପ୍ରତ୍ୟକ୍ଷରେ ହେଉ ବା ପରୋକ୍ଷରେ ହେଉ, ଆଂଶିକ ବା ପୂର୍ଣ୍ଣଭାବରେ ହେଉ, ସମସ୍ତେ ତାକୁଇ ଅନୁସରଣ କରନ୍ତି ଜନ୍ମ ହେଲାଦିନୁ, ଏପରିକି ମୃତ୍ୟୁ ପରେ ମଧ୍ୟ ତାକୁ କେହି ଛାଡ଼ିନାହିଁ । ତେଣୁ ତାହା ଜଗନ୍ନାଥଙ୍କଠାରେ ମୂର୍ତ୍ତିମନ୍ତ ମଧ୍ୟ । ଯେହେତୁ ମୋକ୍ଷପ୍ରାପ୍ତି ଲାଗି ଜଗନ୍ନାଥଙ୍କ ଆଶ୍ରା ଲୋଡ଼ା, ତେଣୁ ଜଗନ୍ନାଥଙ୍କୁ ଜାଣିବାକୁ ହେଲେ ଉପନିଷଦର ସେଇ ମୌଳିକ ବିଷୟର ଆଲୋଚନା ଅବଶ୍ୟମ୍ଭାବୀ । ସମସ୍ତ ପରିବର୍ତ୍ତନ ଭିତରେ ତାହା ସଦା ଅପରିବର୍ତ୍ତନୀୟ । ତାକୁ ଏଡ଼େଇ ଦେଇ ଜଗନ୍ନାଥ ଦର୍ଶନ କେବେ ସମ୍ଭବ ନୁହେଁ ।

ସେହି ପ୍ରଚଳିତ ଧାରଣା ହେଲା ଏ ସଂସାରରେ ସବୁ ଅନିତ୍ୟ, କ୍ଷଣିକ ଓ ଅଳୀକ । ତେଣୁ ଜୀବନକୁ ବୁଝିବାକୁ ହେଲେ ସେହି ଅନିତ୍ୟ, ଅଳୀକ ପାର୍ଥିବ ବିଚାରର ଊର୍ଦ୍ଧ୍ୱରେ କେବଳ ବୁଝିବାକୁ ହେବ । ଅର୍ଥାତ୍ ଭୌତିକ ଜଗତ ପ୍ରତି ସମ୍ପୂର୍ଣ୍ଣ ଅନାସକ୍ତ ରହିବାରେ କେବଳ ନିଜ ଆତ୍ମାର ପ୍ରକୃତ ପ୍ରକୃତିକୁ ଉପଲବ୍ଧ କରାଯାଇପାରେ । ଅର୍ଥାତ୍, ସମସ୍ତ ପ୍ରକାର ପାର୍ଥିବ ବନ୍ଧନ ଆସକ୍ତିରୁ ନିଜକୁ ମୁକ୍ତ କରିବାକୁ ହେବ । ତଦ୍ୱାରା ହିଁ ଆତ୍ମାର ବ୍ରହ୍ମରେ ହିଁ ମିଳନ — ମୋକ୍ଷ ପ୍ରାପ୍ତି । ତାପରେ ଆଉ ଜନ୍ମ ନାହିଁ । ମଣିଷ ସାଂସାରିକ ଜଞ୍ଜାଳରୁ ଚିରମୁକ୍ତ ।

ଆତ୍ମା ହେଉଛି ପ୍ରତ୍ୟେକଙ୍କର ଅନ୍ତିମ ପରମ ବାସ୍ତବତା । ବ୍ରହ୍ମ ହେଉଛି ଜଗତର ଅନ୍ତିମ ପରମ ବାସ୍ତବତା । ଉଭୟ କିନ୍ତୁ ସମ୍ପୂର୍ଣ୍ଣ ବିମୂର୍ତ୍ତ, ରୂପହୀନ ଓ ଗୁଣହୀନ । ନିର୍ଗୁଣ ଓ ଗତିଶୂନ୍ୟ ଏବଂ ଇନ୍ଦ୍ରିୟାତୀତ । ତେଣୁ ଅନିର୍ବଚନୀୟ ଆଉ

ଅଚିନ୍ତ୍ୟ । ଶେଷ ବିଚାରରେ ସେ ଦୁହେଁ ଏକ ଓ ଅଭିନ୍ନ । ତେଣୁ ମୋକ୍ଷ ହେଲା ଆତ୍ମାର ଚରମ ବିଶ୍ୱାସ, ପରମ ଲକ୍ଷ୍ୟ ଓ ଅନ୍ତିମ ଗତି । ବ୍ରହ୍ମ ହେଲା ଚିର ଶାନ୍ତି, ସ୍ପନ୍ଦନ ଶୂନ୍ୟ, ଅପରିବର୍ତ୍ତନୀୟ । ବ୍ରହ୍ମ ବ୍ୟାଖ୍ୟାର ଅଭାବ ନାହିଁ । କିଏ ତାକୁ ସତ୍ୟ ଶିବ ସୁନ୍ଦର, କିଏ ବା ସତ୍-ଚିତ୍-ଆନନ୍ଦ ଆଦି ଏହିପରି ବହୁପ୍ରକାର ବ୍ୟାଖ୍ୟା କରିଥାଆନ୍ତି ।

ଯେହେତୁ ବ୍ୟକ୍ତିର ଆତ୍ମା ହେଉଛି ଚରମ ବାସ୍ତବତା, ତେଣୁ ଆତ୍ମାର ଉପଲବ୍ଧି, ଅର୍ଥାତ୍ ଆତ୍ମଜ୍ଞାନ ହେଉଛି ସର୍ବଶ୍ରେଷ୍ଠ ଜ୍ଞାନ । ଆଉସବୁ ଜ୍ଞାନ ହେଲା ଅଣଜ୍ଞାନ — ଅଜ୍ଞାନ, ମାୟା, ଅଳୀକ, ପ୍ରବଞ୍ଚନା ମାତ୍ର । ସେଥିପାଇଁ ପ୍ରକୃତ ଜ୍ଞାନ ହେଉଛି ଇନ୍ଦ୍ରିୟାତୀତ ଜ୍ଞାନ । ଏହାହିଁ ଉପନିଷଦ-ବେଦାନ୍ତର ବିଚାର ।

ଆତ୍ମାର ସେଇ ମୋକ୍ଷକୁ ଯିବାର ବାଟ ହେଲା କର୍ମ ଓ ପୁନର୍ଜନ୍ମ । ମଣିଷ ପୂର୍ବଜନ୍ମର କର୍ମ ଅନୁଯାୟୀ ଜନ୍ମଲାଭ କରେ । ଗଲା ଜନ୍ମର ଭଲ ମନ୍ଦ କର୍ମର ଫଳକୁ ଏ ଯୁଗରେ ମଣିଷ ସୁଖ ଦୁଃଖ ଭାବେ ଭୋଗ କରେ । ଉଚ୍ଚକୁଳ, ନୀଚ କୁଳରେ ଜନ୍ମ ନିଏ । ସେହିପରି ଏ ଜନ୍ମର କର୍ମ ସେ ଆସନ୍ତା ଜନ୍ମରେ ଭୋଗିବ । ତେଣୁ ଏହିପରି ଭଲ କର୍ମ କରିବା ଦ୍ୱାରା ପୂର୍ବଜନ୍ମ ନିଶୁଣିରେ ଉପରକୁ ଉଠି ଉଠି ଶେଷରେ ସେ ମୋକ୍ଷରେ ପହଞ୍ଚିପାରେ । ଏହା ମଧ୍ୟରେ ଖରାପ କାମ କଲେ ପୁଣି ତଳକୁ ଖସି ପଡିବାର ବିପଦ ଲାଗି ରହିଛି । ସେହି ଭଲକାମ ହେଉଛି ଚାତୁର୍ବର୍ଣ୍ଣ୍ୟ ନିର୍ଦ୍ଧାରିତ କର୍ତ୍ତବ୍ୟକୁ ନିଷ୍କାମ ଚିତ୍ତରେ ପାଳନ କରିବା । ତାକୁ ଯେତେ ଭଲ କରି ଅକୁଣ୍ଠିତ ଚିତ୍ତରେ ବିଶ୍ୱସ୍ତଭାବେ ସମ୍ପାଦନ କରିବ, ସେତେ ଉପରକୁ ଉଠି ଉଠି ଯିବ । ସେଇ ଚାତୁର୍ବର୍ଣ୍ଣ୍ୟ କର୍ତ୍ତବ୍ୟ ହେଉଛି ନିଜର କୁଳଧର୍ମ ପାଳନ କରିବା । ନୀଚ ବର୍ଣ୍ଣର ଲୋକ ବୈଶ୍ୟ ଶୂଦ୍ରଙ୍କ ପକ୍ଷରେ, ବିନା ଦ୍ୱିଧାରେ ଉଚ୍ଚ ବର୍ଣ୍ଣର ଲୋକ ବ୍ରାହ୍ମଣ, କ୍ଷତ୍ରିୟଙ୍କ ସେବା କରିବା । ଯେତେ ଭଲକରି ସେବା କରିବ, ମୋକ୍ଷ ଦିଗକୁ ସେତେ ଶୀଘ୍ର ଅଗ୍ରସର ହେବ । ନିଜର ବନ୍ଧନକୁ ସୁଦୃଢ କରିବା ଦ୍ୱାରା ମୁକ୍ତିଲାଭର ଏପରି ଏକ ତତ୍ତ୍ୱ ଜଗତରେ ଆଉ କେଉଁଠି ଅଛି ?

ସାମ୍ୟରୁ ଅସାମ୍ୟକୁ ଆସିବା ସହିତ ଜାତିଭେଦ, ଶ୍ରେଣୀବିଭାଜନ, ଏଇ ଯେଉଁ ତତ୍ତ୍ୱ-ସୃଷ୍ଟି ନିର୍ବିଘ୍ନରେ ହଜାର ହଜାର ବର୍ଷ ଧରି ଚାଲିଆସୁଛି, ସେଇ ଚାତୁର୍ବର୍ଣ୍ଣ୍ୟ ବ୍ୟବସ୍ଥା ଉପରେ ପ୍ରତିଷ୍ଠିତ ସମାଜ ସେମିତି ଅକ୍ଷୁର୍ଣ୍ଣ ରହିଛି, ତାହାହିଁ ହେଉଛି ପ୍ରକୃତରେ ଧର୍ମ । ତାହାହିଁ ସମାଜକୁ ଧରି ରଖିଛି । ''ଧାରଯେତ୍ ଇତି ଧର୍ମ୍ମ ।'' ଏହି ନିୟମ ଏବେ ବି ସମାଜରେ ବଳବତ୍ତର । କିନ୍ତୁ କାହିଁକି ?

ଯେହେତୁ, ''ଧର୍ମୋ ରକ୍ଷତି ରକ୍ଷିତଃ'', ଧର୍ମ୍ମ ତାକୁ ରକ୍ଷା କରେ, ଯିଏ ଧର୍ମ୍ମକୁ ରକ୍ଷା କରେ । ଚାତୁର୍ବର୍ଣ୍ଣ୍ୟ ଧର୍ମ୍ମକୁ ଯିଏ ରକ୍ଷାକରେ, ସେହି ଧର୍ମ୍ମ ତାହାକୁ ରକ୍ଷାକରି ଆସିଛି । ସେ ଦିଗରେ ସାମାନ୍ୟ ଆଞ୍ଚ ଆସିଲେ ବିରାଟ ଆନ୍ଦୋଳନ ସୃଷ୍ଟି ହୁଏ । ମଣ୍ଡଳ କମିଶନ ତାର ଦୃଷ୍ଟାନ୍ତ ।

ଅତଏବ ଅସାମ୍ୟ, ଚାତୁର୍ବର୍ଣ୍ଣ୍ୟ, ଜାତିଭେଦ, ମୋକ୍ଷ, ପୁନର୍ଜନ୍ମ — ଆଦିର ସାମୂହିକ ବ୍ୟାବହାରିକ ପ୍ରୟୋଗ ହେଲା, ଜଗନ୍ନାଥ-ଭାବ ବିରୋଧରେ ଉନିଷଦର ଏକ ସାଲିସହୀନ ଆହ୍ୱାନ ।

**ଜଗନ୍ନାଥଙ୍କ ସାମ୍ୟ**

ସାମ୍ୟରୁ ଅସାମ୍ୟକୁ ଗତି— ଗଣ ସମାଜରେ ବ୍ୟକ୍ତିଗତ ସମ୍ପତ୍ତିର ଉତ୍ପତ୍ତି ଓ ତାର ଅଗ୍ରଗତି, ଏ ହେଉଛି ସାଧାରଣ ସାମାଜିକ ବିକାଶର ନିୟମ । ତା ସବୁଠି ସବୁଦେଶରେ ପ୍ରାଚୀନ ସମାଜରେ ଚାଲିଆସିଛି । ତା ମଧ୍ୟରେ ଜାତିଭେଦ, ଅସ୍ପୃଶ୍ୟତା, ବର୍ଣ୍ଣବୈଷମ୍ୟ କିନ୍ତୁ ଭାରତର ବୈଶିଷ୍ଟ୍ୟ । ତଳେ ଅତି ସାଧାରଣ ଲୋକଙ୍କଠାରୁ ଆରମ୍ଭ କରି ଉପରେ ରାଜା, ମହାରାଜା, ମହାବିଦ୍ୱାନ୍ ପଣ୍ଡିତ, ଏପରିକି ମହାତ୍ମା, ମହାପୁରୁଷ କାହାକୁ ତାହା ଛାଡି ନାହିଁ । ଅତୀତରେ ଲୋକାୟତ ଓ ଚାର୍ବାକ୍‌କୁ ଛାଡିଦେଲେ ଅନ୍ୟ ସମସ୍ତେ ତା' ପାଖରେ ଆତ୍ମସମର୍ପଣ କରି ଆସିଛନ୍ତି । ହିନ୍ଦୁ ଜଗତରେ ଆଦ୍ୟରୁ କାଳ କାଳ ଧରି ଯଦି କିଏ ସେହି ଜାତିଭେଦକୁ ପ୍ରତ୍ୟାଖ୍ୟାନ କରିଆସିଛି, ସିଏ ଏକମାତ୍ର ଜଗନ୍ନାଥ । ବର୍ଣ୍ଣ-ବୈଷମ୍ୟର ଉତ୍ତାଳ ପାରାବାର ଭିତରେ ଜଗନ୍ନାଥ ହିଁ ସାମ୍ୟମୈତ୍ରୀର ଏକମାତ୍ର ଦିଗବାରିଣୀ ସ୍ତମ୍ଭ ବା ନିର୍ଭୁଲ ଦିଗର ସଂକେତ ।

ବର୍ଣ୍ଣହୀନତା, ଜାତିଶୂନ୍ୟତା ଜଗନ୍ନାଥଙ୍କ ବଂଶଗତ । ଆଦିମ ଗୋଷ୍ଠୀ ସାମ୍ୟ ସମାଜରେ ତାଙ୍କର ଜନ୍ମ । ସେ ସମାଜରେ କୌଣସି ଛୁଆଁ ଅଛୁଆଁ ଜାତିଭେଦର ପ୍ରଶ୍ନ ନାହିଁ । ମଣିଷ ମାତ୍ରେ ସମସ୍ତେ ସମାନ ଓ ଗୋଟାଏ । ତାଙ୍କୁ ଛାଡିଦେଲେ ଅନ୍ୟ ସବୁ ଦେବଦେବୀଙ୍କର ଜନ୍ମ ବର୍ଣ୍ଣଭେଦ, ଜାତିଭେଦ ଓ ଧନଭେଦ ଭିତରେ । ସ୍ପୃଶ୍ୟତା ଓ ଅସ୍ପୃଶ୍ୟତା ଧରି ତାଙ୍କର ଜନ୍ମ । ତାହାହିଁ ତାଙ୍କ ଚାରିତ୍ରିକ ଗୁଣ ଓ ବଂଶର ବୈଶିଷ୍ଟ୍ୟ । ତାହା ଯେପରି ସେମାନଙ୍କର ପବିତ୍ରତା ଓ ଆଧ୍ୟାତ୍ମିକତାର ପରିଚୟ, ସେହିପରି ଅନ୍ୟଦିଗରେ ସମାଜରେ ତାକୁ କାର୍ଯ୍ୟକାରୀ କରୁଥିବା ଲୋକଙ୍କର ସାମାଜିକ ଆଧିପତ୍ୟ ଓ ପଦମର୍ଯ୍ୟାଦାର ନିଦର୍ଶନ । ସେହି ଜାତିଭେଦ ଓ ବର୍ଣ୍ଣବୈଷମ୍ୟକୁ ଅଲଘଂନୀୟ କରିବା ଉଦ୍ଦେଶ୍ୟରେ ତାକୁ ଏକଦମ୍ ବିଶ୍ୱର ଜନ୍ମ, ସୃଷ୍ଟିକର୍ତ୍ତାଙ୍କ ସୃଷ୍ଟି— ଅର୍ଥାତ୍ ସୃଷ୍ଟିର ଐଶ୍ୱରିକ ନିୟମ ଭାବରେ ପ୍ରକାଶ କରାଯାଏ ।

ତାକୁ ପ୍ରମାଣ କରିବାକୁ ଯାଇ ସେ ଦିଗରେ ବେଦର ପୁରୁଷ ସୁକ୍ତ (ଋକ୍‌ବେଦ, ୧୦.୯୦.୧୨) ଉଦ୍ଧାର କରାଯାଏ । କୁହାଯାଇଛି, 'ପୁରୁଷ' ତାଙ୍କ ନିଜ ମୁଖରୁ ବ୍ରାହ୍ମଣ, ବାହୁରୁ କ୍ଷତ୍ରିୟ, ଉରୁରୁ ବୈଶ୍ୟ ଓ ଚରଣରୁ ଶୂଦ୍ରଙ୍କୁ ସୃଷ୍ଟି କରିଛନ୍ତି । ଦ୍ୱିତୀୟ ପ୍ରମାଣ ହେଲା — ଗୀତାରେ ଖୋଦ୍ ଭଗବାନ ଶ୍ରୀକୃଷ୍ଣଙ୍କ ଉକ୍ତି । "ଚାତୁର୍ବର୍ଣ୍ଣ୍ୟଂ ମୟା ସୃଷ୍ଟଂ ।" ଏହାକୁ ଧରି ସବୁ ଶାସ୍ତ୍ର, ପୁରାଣ ଓ ସାମାଜିକ ପ୍ରଥା । ଗୌତମ, ବଶିଷ୍ଠ, ଆପସ୍ତମ୍ଭ, ମନୁଙ୍କ ଭଳି ନିୟାମକମାନଙ୍କର ସୂତ୍ର, ସ୍ମୃତି ଓ ସଂହିତା ଆଦି ।

ବେଦ ହେଉ ବା ଗୀତା ହେଉ, କେଉଁଟା ଭଗବାନଙ୍କ ସୃଷ୍ଟି ନୁହେଁ । ସବୁ ମଣିଷକୃତ । ଏକ ନିର୍ଦ୍ଦିଷ୍ଟ ଅବସ୍ଥାରୁ ଜାତ । ବେଦ କାଳରେ ଜାତିର ପ୍ରଶ୍ନ ନାହିଁ । ତେଣୁ ଆର୍ଯ୍ୟ, ଆର୍ଯ୍ୟଙ୍କ (ଦାସ)ଙ୍କ ପରୋକ୍ଷ ଉଲ୍ଲେଖ ରହିଛି । (ଋ ୧୦.୧୦୨.୩) ସେମାନେ ବର୍ତ୍ତମାନ ଅର୍ଥରେ ଜାତି ନୁହନ୍ତି । ଗୀତା ଏହାର ବହୁକାଳ ପରେ ଲିଖିତ । ସେତେବେଳକୁ ଜାତିପ୍ରଥା ବହୁ ଦୂରକୁ ଗତି କରିଛି । ତା ବିରୋଧରେ ତୀବ୍ର ବିରୋଧ ପ୍ରକାଶ ପାଇବାରୁ ତାକୁ ସାବ୍ୟସ୍ତ କରିବା ଲାଗି ଗୀତାର ବାଣୀ, ଉକ୍ତିର ସୃଷ୍ଟି ।

ବେଦରେ ସେଇ ପୁରୁଷସୂକ୍ତ ପରବର୍ତ୍ତୀ କାଳରେ ଲିଖିତ । ବେଦର ଅନ୍ୟାନ୍ୟ ସୂକ୍ତ ସହିତ ଲେଖାରେ ତାର କୌଣସି ମେଳ ନାହିଁ କି ଭାବରେ ନାହିଁ । ଗୀତାକୁ ମଧ୍ୟ ସେହିପରି ପରେ ମହାଭାରତରେ ଭୁକାଇ ଦିଆଯାଇଛି । ଅର୍ଥଶାସ୍ତ୍ର ଓ ମନୁସ୍ମୃତିରେ ଏମିତି କେତେ ବିଷୟ ତାକୁ ଆହୁରି କଠୋର କରିବା ଲାଗି ଭର୍ତ୍ତି କରାଯାଇଛି । ଏକମାତ୍ର ଉଦ୍ଦେଶ୍ୟ ଜାତିଭେଦକୁ ଅଧିକ ଶକ୍ତ, ଦୃଢ଼ ଓ ଅଲଘଂନୀୟ କରିବା । କାରଣ ପୁରାଣ ଶାସ୍ତ୍ର ସେ ଦିଗରେ ଯଥେଷ୍ଟ ହେଲା ନାହିଁ । ଏହାର କର୍ତ୍ତା ଓ ନିୟାମକଗଣ ହେଲେ ବ୍ରାହ୍ମଣ—ସମାଜର ଅଧିପତି, ରାଜା ଓ ରାଜନୀତିର ମୁଖପାତ୍ର । ଯେତେ ରାଜା ଓ ଶାସନନୀତି ବଦଳିଲେ ବି ତାଙ୍କର ସମାଜନୀତି ସେହିପରି ଅପରିବର୍ତ୍ତିତ ରହିଛି । କୌଣସି ଶାସକ ଶ୍ରେଣୀ ତାକୁ ସ୍ପର୍ଶ କରନ୍ତି ନାହିଁ । ବରଂ ବ୍ରାହ୍ମଣକୁ ସନ୍ତୁଷ୍ଟ କରି ସେହି ବ୍ୟବସ୍ଥାକୁ ଦୃଢ଼ୀଭୂତ କରିବା ତାଙ୍କର ନୀତି ହୋଇଆସିଛି । କ'ଣ ତାର କାରଣ ? ମଣ୍ଡଳ କମିଶନ ବିରୋଧୀ ଆନ୍ଦୋଳନ, ସେଥିଲାଗି ଆତ୍ମାହୁତି ଓ ଶାସନକୁ ଅଚଳ କରିବା ଏବଂ ଶେଷରେ ସରକାରଙ୍କ ପତନ, ଏସବୁ କ'ଣ ତାର ଉତ୍ତର ନୁହେଁ ? ଯଦି ଏସବୁ ବର୍ତ୍ତମାନ ଯୁଗରେ ଘଟିପାରେ, ତେବେ ହଜାରେ ବା ଦୁଇହଜାର ବର୍ଷ ତଳେ କ'ଣ ହେଉ ନ ଥିବ ?

ତେଣୁ ଚାତୁର୍ବର୍ଣ୍ଣ୍ୟ, ଜାତିଭେଦ ଏକ ଛୋଟିଆ ସାମାନ୍ୟ ଜିନିଷ ନୁହେଁ । ତାହା ସମସ୍ତ ଭାରତୀୟ ସମାଜର ମୂଳଭିତ୍ତି । ତା'ର ଅଚ୍ଛେଦ୍ୟ ବନ୍ଧନର ସମ୍ପର୍କ, ଜୀବନର ଏକ ଅଦୃଶ୍ୟ ଅଙ୍ଗ ।

ଜାତିପ୍ରଥାକୁ ମଣିଷ ଯୁଗ ଯୁଗ ହେଲା ଏମିତି ଜାବୁଡି ଧରିଛି କାହିଁକି ? ସେଥିରୁ ସେ କ'ଣ ପାଏ ? ପ୍ରଥମତଃ ତାକୁ ରଖିବା ଅର୍ଥ ସମାଜର ପ୍ରଚଳିତ ବ୍ୟବସ୍ଥା ଓ ତାର ଗଠନ-ପ୍ରଣାଳୀକୁ ଅକ୍ଷୁର୍ଣ୍ଣ ରଖିବା । ପ୍ରତ୍ୟେକ ଜାତି ତାଙ୍କ ନିଜ ନିଜ କାମ କରୁଥିବାଯାଏ ସମାଜ ନିରାପଦରେ ରହିଥିବ । ସେଠି କାହାଆଡୁ କୌଣସି ବିପଦ ବା ବିଶୃଙ୍ଖଳା ସମ୍ଭାବନା ରହିବ ନାହିଁ । କାରଣ ମଣିଷ ଜନ୍ମ ହେଲାବେଳେ ମା ପେଟରୁ ତା ଜାତିକୁ ଧରି ଜନ୍ମ ନିଏ ଏବଂ ମୃତ୍ୟୁ ପର୍ଯ୍ୟନ୍ତ ସେ ଜାତି-କର୍ମ ଆଚରଣ କରି ଚାଲେ । ତେଣୁ ସମାଜରେ କାହା ପକ୍ଷରେ ଅବାଟରେ ଯିବାର ଆଉ ପ୍ରଶ୍ନ ନାହିଁ । ଏଇ ଯେଉଁ ସାମାଜିକ ବିଧାନ, ମଣିଷ ପକ୍ଷରେ ଜନ୍ମରୁ ଅବାଟକୁ ଯିବାର ଅବସ୍ଥାକୁ ଲୋପ କରି ଦିଏ, ସେଇ ଆଦର୍ଶ-ସାମାଜିକ ବ୍ୟବସ୍ଥାର ନାମ ହେଲା ''ବର୍ଣ୍ଣାଶ୍ରମ

ଧର୍ମ''। ସେଠି ପ୍ରତ୍ୟେକ ଲୋକର ଜୀବନ ପ୍ରତ୍ୟେକ କ୍ଷେତ୍ରରେ ତାର ଜାତିର ବିଧାନ ଦ୍ୱାରା ନିୟନ୍ତ୍ରିତ। ଅନ୍ୟ ଦିଗରୁ ଦେଖିଲେ ତାହାହିଁ ହେଲା ସମାଜର ବିଧାନ। ସେହି ବିଧାନର ଏକମାତ୍ର ନିର୍ଦ୍ଦିଷ୍ଟ ଫଳ ହେଉଛି-ଯେଉଁମାନେ ସାମନ୍ତ, ସମ୍ଭ୍ରାନ୍ତ, ବ୍ରାହ୍ମଣ, ପୁରୋହିତ ବା ବଣିକଙ୍କ କୁଳରେ ଜାତ-ସମାଜର ଅଳ୍ପସଂଖ୍ୟକ ଲୋକ—ସେମାନେ ହେଲେ ସମାଜର ସକଳ ସୁବିଧା ସୁଯୋଗର ଅଧିକାରୀ। ଅବଶ୍ୟ ଜାତି ଅନୁସାରେ ସେଥିରେ ପାର୍ଥକ୍ୟ ରହିଛି । ଏ ସମସ୍ତେ ହେଲେ ଦ୍ୱିଜ । ଆଉ ଯେଉଁମାନେ ରହିଗଲେ—ସମାଜର ବହୁସଂଖ୍ୟକ, ଅଧିକାଂଶ ଲୋକ—ସେମାନେ ହେଲେ ପ୍ରତ୍ୟକ୍ଷ ଉତ୍ପାଦନକାରୀ ଶୂଦ୍ର । ସେମାନଙ୍କ ଉଦ୍‌ବୃତ୍ତ ଉତ୍ପାଦନ ଦ୍ୱାରା ସମାଜର ସବୁ ଧନ ସମ୍ପଦର ସୃଷ୍ଟିକର୍ତ୍ତା ହେଲେ ଶୂଦ୍ର । ଶୂଦ୍ରମାନଙ୍କ ଜନ୍ମ ହେଲା କେବଳ ସମାଜରେ ଦ୍ୱିଜମାନଙ୍କର ସେବା କରିବା ପାଇଁ — ସେମାନଙ୍କୁ ସୁଖ ସମ୍ଭୋଗ ଯୋଗଇବା ଲାଗି । ସେହି ଉଦ୍ଦେଶ୍ୟରେ ହିଁ ସୃଷ୍ଟିକର୍ତ୍ତା ଭଗବାନ ସେମାନଙ୍କୁ ଜନ୍ମ ଦେଇଛନ୍ତି । ତେଣୁ ସେହି ବ୍ୟବସ୍ଥାକୁ ରକ୍ଷା କରିବାକୁ ହେବ । ଏହାହିଁ ହେଲା ଚାତୁର୍ବର୍ଣ୍ଣ୍ୟ ଅନୁଯାୟୀ ସମାଜର ବିଧାନ।

ମନୁଙ୍କର ସର୍ବପ୍ରଥମ ଘୋଷଣା ହେଉଛି — ଦାସ ହୋଇ ରହିବା ଶୂଦ୍ରର ଭାଗ୍ୟର ଲିଖନ, ସେ କିଣା ହୋଇ ଆସୁ ବା ନ ଆସୁ। ବ୍ରାହ୍ମଣଙ୍କ ସେବାଲାଗି ବ୍ରହ୍ମା ତାକୁ ସୃଷ୍ଟି କରିଛନ୍ତି । (୮/୪.୧୩ ମନୁସଂହିତା) ଦାସତ୍ୱରୁ ତାର ମୁକ୍ତି ନାହିଁ। କାରଣ ତାହାହିଁ ତାର ସ୍ୱାଭାବିକ ଧର୍ମ । କିଏ ତାକୁ ସେଥିରୁ ମୁକ୍ତ କରିପାରେ ? (୮.୪୧୪ ମନୁସଂହିତା) ପୁଣି ବ୍ରାହ୍ମଣ ଅବିଚଳିତ ଚିତ୍ତରେ ଶୂଦ୍ରର ଧନ ଆତ୍ମସାତ୍ କରିପାରେ । କାରଣ ଶୂଦ୍ରର ନିଜସ୍ୱ କିଛି ନାହିଁ। (୮.୧୬ ଏଜନ) ଶୂଦ୍ର ସମର୍ଥ ହେଲେ ସୁଦ୍ଧା ଧନ ସମ୍ପତ୍ତି କରିବ ନାହିଁ । ତା ହେଲେ ସେ ମତ୍ତ ହୋଇ ବ୍ରାହ୍ମଣକୁ ଉତ୍ପୀଡନ କରିପାରେ (ମ ୧୦.୧୧୯ ଏଜନ୍) ଶୂଦ୍ରଙ୍କୁ ଅଇଁଠା, ପୁରୁଣା ଲୁଗା— ଅସାର ଧାନ..ଦେବ । ଏପରିକି ଜାତି ଅନୁସାରେ ମଧ୍ୟ ଡାକିବ । ସେହି ବିଧାନ ଅନୁସାରେ ନ୍ୟାୟନୀତି ଓ ଶୁଦ୍ଧିକ୍ରିୟା ଇତ୍ୟାଦି ନିୟନ୍ତ୍ରିତ । ମନୁଙ୍କ ପୂର୍ବରୁ ତାହା ଧର୍ମଶାସ୍ତ୍ରରେ ପ୍ରଚଳିତ ଥିଲା । ମନୁ ତାକୁ ଆହୁରି କଠୋରଭାବେ ବିଧିବଦ୍ଧ କରିଦେଲେ ।

ଧର୍ମସୂତ୍ର କହେ, ଶୂଦ୍ର ଆର୍ଯ୍ୟଙ୍କୁ ଗାଳି ଦେଲେ ତାର ଜିଭ କାଟିଦେବ । ବେଦ ଅଧ୍ୟୟନ କଲେ ମଧ୍ୟ ଜିଭ କାଟିବ । ବେଦକୁ ଯଦି ମନେ ରଖିଲା, ତେବେ ତାକୁ ଦୁଇଫାଳ କରି ଫାଡିଦେବ। ଶୂଦ୍ରର ଛାଇ ବା ନିଶ୍ୱାସ ବ୍ରାହ୍ମଣ ଉପରେ ପଡିବ ନାହିଁ । ନ୍ୟାୟ ବିଚାରରେ ଶୂଦ୍ରଙ୍କ ପ୍ରତି ଅନ୍ୟାୟ ବିଚାର ହେଉଛି ନ୍ୟାୟ । ସେଇ ଏକା ଦୋଷ ଯୋଗୁଁ ଜାତି ଅନୁଯାୟୀ ଭିନ୍ନ ଭିନ୍ନ ଦଣ୍ଡର ବ୍ୟବସ୍ଥା ରଖିବ । ଜାତି ଅନୁସାରେ ମଧ୍ୟ କ୍ଷତିପୂରଣର ନିୟମ। ନମସ୍କାରପଦ୍ଧତି ମଧ୍ୟ ସେହି ଜାତି ଅନୁଯାୟୀ ନିୟନ୍ତ୍ରିତ। ଧର୍ମସୂତ୍ର କହେ, ବ୍ରାହ୍ମଣ ହେଲେ ଦକ୍ଷିଣ ହସ୍ତ କର୍ଣ୍ଣଯାଏ ନେବ, କ୍ଷତ୍ରିୟ

ଛାଡିଯାଏ, ବୈଶ୍ୟ ଅଣ୍ଟାଯାଏ ଆଉ ଶୂଦ୍ର ପାଦପର୍ଯ୍ୟନ୍ତ ନେବ । ସ୍ୱାସ୍ଥ୍ୟ ବିଷୟରେ ପ୍ରଶ୍ନ କଲେ କ୍ଷତ୍ରିୟକୁ ''ଅନାମୟ'' କହିବା ବେଳେ ଶୂଦ୍ରକୁ କହିବ ''ଆରୋଗ୍ୟ'' । ଯଦି ଶୂଦ୍ର ଅତିଥି ହୁଏ, ସେ କାମ କଲାପରେ ତାକୁ ଖାଇବାକୁ ଦେବ । ବିବାହ ମଧ ଜାତି ଅନୁଯାୟୀ । ବୈଶ୍ୟ ଶୂଦ୍ରଙ୍କ ଲାଗି ଗାନ୍ଧର୍ବ ଓ ପୈଶାଚ ବିବାହର ବ୍ୟବସ୍ଥା । ସେଥିରେ ନିଜ ମତ ଅନୁସାରେ ଘେନିଯିବ ବିବାହ କରିବ, ଆଉ ତାହା ଏକକ ବିବାହ । କାରଣ ସ୍ତ୍ରୀଲୋକମାନେ କାମ କରନ୍ତି । ଜୀବିକାର୍ଜନରେ ସେମାନେ ସ୍ୱାଧୀନ । ଉଚ୍ଚବର୍ଣ୍ଣ ସ୍ତ୍ରୀମାନେ ସ୍ୱାମୀ ଉପରେ ନିର୍ଭରଶୀଳ । ବଶିଷ୍ଠଙ୍କ ମତରେ ବ୍ରାହ୍ମଣର ତିନି ସ୍ତ୍ରୀ, କ୍ଷତ୍ରୀୟର ଦୁଇ ସ୍ତ୍ରୀ ଓ ଅନ୍ୟମାନେ ଏକ ବିବାହ କରିବେ । ଉଚ୍ଚବର୍ଣ୍ଣଙ୍କ ଲାଗି ବହୁବିବାହ, ନୀଚବର୍ଣ୍ଣଙ୍କ ଲାଗି ଏକକ ବିବାହ ।

ବର୍ଣ୍ଣ ଅନୁସାରେ ବିଚାର । ପତିତ, ଚାଣ୍ଡାଳ, ଛୋଟ ଜାତି ଲୋକେ ସାକ୍ଷୀ ହୋଇ ପାରିବେ ନାହିଁ (କେବଳ ତାଙ୍କ ଗୋଷ୍ଠୀଙ୍କୁ ଛାଡି) । ଚାକର ମାଲିକ ବିରୋଧରେ ସାକ୍ଷ୍ୟ ହୋଇ ନ ପାରେ । ମିଥ୍ୟା ସାକ୍ଷ୍ୟ ଦେଲେ ଶୂଦ୍ରଙ୍କ ପ୍ରତି କଠୋର ଦଣ୍ଡ — ଅନ୍ୟମାନଙ୍କୁ ମାଫ୍ । ନାଗରିକ କ୍ଷେତ୍ରରେ ଧର୍ମସୂତ୍ର କହେ, ''ଆର୍ଯ୍ୟ କସ୍ମିନ୍‌କାଳେ ଦାସ ହୋଇ ନପାରେ ।'' ଏପରିକି ଶୂଦ୍ରସ୍ତ୍ରୀ ଗର୍ଭରୁ ଜାତ ଉଚ୍ଚବର୍ଣ୍ଣର ପିଲା ମଧ ଦାସ ହୋଇ ନ ପାରେ । ସୁଧର ହାର ବର୍ଣ୍ଣ ଅନୁସାରେ । ବ୍ରାହ୍ମଣଙ୍କ ପାଇଁ ଅଳ୍ପ ହେଲେ ଶୂଦ୍ରଙ୍କ ପାଇଁ ଅତିବେଶୀ । ଶୂଦ୍ର ଧନସମ୍ପତ୍ତି ରଖିପାରିବ ନାହିଁ । ରଖିଲେ ବ୍ରାହ୍ମଣଙ୍କ ପାଖରେ ରଖିବ । ବ୍ରାହ୍ମଣକୁ ଗାଳିଦେଲେ କ୍ଷତ୍ରିୟ ଶହେପଣ, ବୈଶ୍ୟ ଦେଢଶପଣ ଜୋରିମାନା ଦେବ । ଶୂଦ୍ରଙ୍କ ପାଇଁ ବେତ୍ରାଘାତ (୮.୨.୬୭ ଏଜନ୍) । ଯଦି ବ୍ରାହ୍ମଣ ତିରସ୍କାର କରେ, ସେ କ୍ଷତ୍ରିୟକୁ ୫୦, ବୈଶ୍ୟକୁ ୨୫ ଓ ଶୂଦ୍ରଙ୍କୁ ୧୨ ପଣ ଦେବ । (୮.୨.୬୮ ଏଜନ) ଦ୍ୱିଜଙ୍କ ପ୍ରତି ଦାରୁଣ ବାକ୍ୟ ପ୍ରୟୋଗ କଲେ ଶୂଦ୍ରଙ୍କର ଜିଭ କଟାଯିବ (୮.୨.୭୦ ଏଜନ୍) । ନାଁ ଧରି ଶୂଦ୍ର ବ୍ରାହ୍ମଣକୁ ଡାକିଲେ, ତେବେ ଦଶ ଆଙ୍ଗୁଳିର ଲୁହା ତତେଇ ତା ମୁହଁରେ ମାଡିଦେବ । (୮.୨.୭୧ ଏଜନ୍) ଯଦି ଅହଙ୍କାର କରି ଧର୍ମୋପଦେଶ ଦିଏ, ତେବେ ମୁହଁ, କାନରେ ଗରମ ତେଲ ଢାଳିବ । (୮.୨.୭୨ଏଜନ୍) ହାତରେ ବା ଗୋଡରେ ମାରିଲେ ହାତ ଗୋଡ କାଟିଦେବ (୮.୨.୮୦ଏଜନ୍) । ଉଚ୍ଚବର୍ଣ୍ଣ ଉପରେ ଛେପ ପକାଇଲେ ତାର ଓଠ, ମୂତ୍ର ପକାଇଲେ ମେଢ୍ ଏବଂ ବାୟୁତ୍ୟାଗ କଲେ ଗୁହ୍ୟଦେଶ କାଟିଦେବ । ତେଣେ ବ୍ରାହ୍ମଣ ସମସ୍ତ କଦର୍ଯ୍ୟ କାର୍ଯ୍ୟରେ ଲିପ୍ତ ରହିଲେ ସୁଦ୍ଧା ତାକୁ ହତ୍ୟା କରିବ ନାହିଁ । ଧନସମ୍ପତ୍ତି ଦେଇ ଅକ୍ଷତ ଶରୀରରେ ତାକୁ ରାଜ୍ୟ ବାହାରକୁ ବିଦା କରିଦେବ । (୮.୩୮୦ ଏଜନ) ବ୍ରାହ୍ମଣବଧ ମନରେ ସୁଦ୍ଧା ଧରିବ ନାହିଁ । ଗୁରୁ ବାଳକ, ବୃଦ୍ଧ ଓ ବ୍ରାହ୍ମଣଙ୍କୁ ମାରିବ ନାହିଁ । ବ୍ରାହ୍ମଣର ଯିଏ ହତ୍ୟାକାରୀ, କିଛି ନ ବିଚାରି ତାକୁ ହାଣିବ (୮.୩୫୦ଏଜନ) ।

ଜାତି ଅନୁସାରେ ମୂଲ, ମଜୁରୀ, ଭାଗ, ଦେଣନେଣ ଆଦି ଅନ୍ୟସବୁ ନିର୍ଦ୍ଧାରିତ । ଅର୍ଥନୀତି ରାଜନୀତିର ଆବଶ୍ୟକତା ଦୃଷ୍ଟିରୁ ଯେତେ ପରିବର୍ତ୍ତନ ଘଟିଲେ ବି ତାର ମୂଳ ଉଦ୍ଦେଶ୍ୟ ଏହିପରି ଅକ୍ଷତ ଓ ଅପରିବର୍ତ୍ତନୀୟ ହୋଇ ରହିଛି ।

ସମାଜର ଏଇ ଜାତିଭେଦ ମୂଳରେ ରହିଛି ବର୍ଣ୍ଣାଶ୍ରମ ଧର୍ମ । ବର୍ଣ୍ଣ ଅନୁସାରେ ଧର୍ମର ଆଚରଣ, ଯେଉଁଠି ବ୍ରାହ୍ମଣ ସର୍ବଶ୍ରେଷ୍ଠ ଓ ପବିତ୍ର ହେଲାବେଳେ ଶୂଦ୍ର ସର୍ବନୀଚ ଓ ଘୃଣ୍ୟ । ଜଣକ ପାଇଁ ଜ୍ଞାନ ଆହରଣ—ମସ୍ତିଷ୍କ କାର୍ଯ୍ୟ, ଏକମାତ୍ର ବୃତ୍ତି ଓ ଶାରୀରିକ କାର୍ଯ୍ୟ ନିଷିଦ୍ଧ ଅନ୍ୟ ଜଣକ ପାଇଁ ଜ୍ଞାନ ଆହରଣ — ମସ୍ତିଷ୍କ କାର୍ଯ୍ୟ ଦଣ୍ଡନୀୟ ଆଉ ଶାରୀରିକ କାର୍ଯ୍ୟ ବାଧ୍ୟତାମୂଳକ । ଏଇ ହେଲା ହସ୍ତ ଓ ମସ୍ତିଷ୍କ କର୍ମ ଭିତରେ ପାର୍ଥକ୍ୟ ସହିତ ଜାତିଭେଦ ଦ୍ୱନ୍ଦ୍ୱର ସଙ୍ଘର୍ଷ । ଏହାର ଭିତ୍ତି ପଡିଛି ସେଇ ବୈଦିକ ସମାଜରେ ।

ଋଗ୍‌ବେଦରେ ବର୍ଣ୍ଣର ଉଲ୍ଲେଖ ଅଛି, କିନ୍ତୁ ତାହା ଶ୍ରମର ବିଭାଗ ନୁହେଁ । ନାହିଁ ସେଠି କୌଣସି ଜାତି । ସେଠି ବ୍ରାହ୍ମଣ ଶବ୍ଦର ବାରଥର ଓ କ୍ଷତ୍ରିୟ ଶବ୍ଦ ନଅଥର ଉଲ୍ଲେଖ ଦେଖିବାକୁ ମିଳେ । ଆର୍ଯ୍ୟ ଶବ୍ଦର ୩୬ ଥର ଉଲ୍ଲେଖ ମଧ୍ୟରୁ ନଅଥର ଆର୍ଯ୍ୟମାନଙ୍କ ଭିତରେ ନିଜର ଲଢେଇ ନେଇ । ସେଠି ଅନାର୍ଯ୍ୟ, ଦାସ, ଦସ୍ୟୁଙ୍କ ଭିତରେ ଯୁଦ୍ଧ, ସଂଘର୍ଷ ହୋଇଛି । ଗୋଟିଏ ସ୍ଥାନରେ ଇନ୍ଦ୍ର ପାଞ୍ଚହଜାର ରାକ୍ଷସଙ୍କୁ ହତ୍ୟା କରିବାର ଉଲ୍ଲେଖ ରହିଛି । ଏମାନେ ହେଲେ ଅସୁର , କଳାକାୟ ଓ କୃଷ୍ଣ ଲୋକ । ଆଉ ମଧ୍ୟ ଦେଖାଯାଏ — ସେହି ବ୍ରାହ୍ମଣ୍ୟବାଦ ଏକ ପ୍ରାକ- ଆର୍ଯ୍ୟ ଅନୁଷ୍ଠାନ । ଇନ୍ଦ୍ର ମଧ୍ୟ ଜଣେ ବ୍ରାହ୍ମଣ— ହତ୍ୟାକାରୀ । ତାଙ୍କର ମୁଖ୍ୟ ଶତ୍ରୁ ବୃତ୍ର ହେଉଛି ଜଣେ ବ୍ରାହ୍ମଣ । ଆର୍ଯ୍ୟମାନେ ଅନାର୍ଯ୍ୟଙ୍କୁ ଅଧିକାର କରିବାରେ ପ୍ରାକ୍-ଆର୍ଯ୍ୟ ପୁରୋହିତ ମଧ୍ୟ ନୂତନ ସମାଜରେ ପ୍ରବେଶ କଲେ । ପୂର୍ବର ଆର୍ଯ୍ୟ ଓ ଦାସ ଓ ଦସ୍ୟୁଙ୍କ ମଧ୍ୟରେ ଶତ୍ରୁତା ଏବେ ନୂତନ ସମାଜରେ ଆର୍ଯ୍ୟ ଓ ଶୂଦ୍ରଙ୍କ ମଧ୍ୟରେ ରୂପାନ୍ତରିତ ହୋଇଛି ।

ଆରମ୍ଭରେ ଅଥର୍ବ ବେଦରେ ଶୂଦ୍ରବର୍ଣ୍ଣ ହୀନ ଓ ନୀଚ୍ ନୁହେଁ । ତାଙ୍କ ସହ ଭୋଜନ ବିବାହ ନିଷିଦ୍ଧ ନୁହେଁ । ଆର୍ଯ୍ୟ ଓ ଦାସଙ୍କ ଭିତରେ ଭୋଜନ ଓ ବିବାହରେ ମଧ୍ୟ ନିଷେଧ ନାହିଁ । ଅସ୍ପୃଶ୍ୟ ବା ଅପବିତ୍ର ବୋଲି କୌଣସି ବିଚାର ନ ଥିଲା । ସାମାଜିକ ଓ ଅର୍ଥନୈତିକ କ୍ଷେତ୍ରରେ ଅସମତାର ବୃଦ୍ଧି ଯୋଗୁଁ ସେମାନେ ତଳକୁ ତଳକୁ ଖସିବାରେ ଲାଗିଲେ ।

ବ୍ରାହ୍ମଣ ଜ୍ଞାନର ଅଧିକାରୀ ହେତୁ ଶାରୀରିକ କର୍ମ୍ମ କରୁଥିବା ଲୋକଙ୍କୁ ନ୍ୟୁନ କରି ଦେଖିଲେ । ଏହାର ଭ୍ରୁଣ ମଧ୍ୟ ସେହି ବେଦରେ ରହିଛି । ଦଶମ ମଣ୍ଡଳର ଏକସ୍ତରୀ ସୂତ୍ରରେ କୁହାଯାଇଛି —''ଚାଲୁଣି ଦ୍ୱାରା ଯେପରି ଖୁଦକୁ ପରିଷ୍କାର କରାଯାଏ, ସେହିପରି ବୁଦ୍ଧିମାନ୍ ବୁଦ୍ଧିବଳରେ ପରିଷ୍କୃତ ଭାଷା ପ୍ରସ୍ତୁତ କରିଛନ୍ତି । ସେଇ ଭାଷାଦ୍ୱାରା ବିଶେଷ ଉପକାର ପ୍ରାପ୍ତହୁଏ । ...କେହି କେହି ସ୍ତୋତ୍ରଙ୍କ ଭଳି ପରିଚିତ ହୋଇ ସର୍ବତ୍ର ବିଚରଣ କରନ୍ତି । ଯେଉଁମାନେ ଇହକାଳ ପରକାଳ ନେଇ କିଛି ଆଲୋଚନା କରିନ୍ତି ନାହିଁ, ଯେଉଁମାନେ ଶ୍ରୁତି ପ୍ରୟୋଗ ବା ହୋମ ଯାଗ କିଛି କରନ୍ତି ନାହିଁ ସେମାନେ ପାପଯୁକ୍ତ । ଅର୍ଥାତ୍ ଦୋଷ ମିଶ୍ରିତ ଭାଷା ଶିକ୍ଷା କରି ନିର୍ବୋଧ ବ୍ୟକ୍ତି ଭଳି କେବଳ ଲଙ୍ଗଳ ଚଳାନ୍ତି । ଅଥବା ତନ୍ତୁବାୟର କାମ ଲାଗି ଉପଯୁକ୍ତ

ଅଟନ୍ତି । ସ୍ତୋତ୍ରଜ୍ଞର ଯଶ ମିତ୍ର ଭଳି କାମ କରେ । ସଭାରେ ପ୍ରାଧାନ୍ୟ ଲାଭକରେ । ....... ଯଶଦ୍ୱାରା ଦୁର୍ନାମ ଦୂର ହୁଏ, ଅନ୍ନ ଲାଭ ହୁଏ, ବଳପ୍ରାପ୍ତ ହୁଏ ଇତ୍ୟାଦି .......'' ।

ଏଇଟି ହେଲା ବ୍ରହ୍ମାଙ୍କର ସ୍ତୋତ୍ର । ଏଥିରେ ଶୁଦ୍ଧଭାଷା, ଶିକ୍ଷା ସ୍ତୋତ୍ର ରଚନା ଓ ସ୍ତୋତ୍ରଜ୍ଞ ହେବା ପ୍ରତି ଉଚ୍ଚ ପ୍ରଶଂସା । ଅନ୍ୟ ଦିଗରେ ହଳ କାମ ଓ ଲୁଗାବୁଣାର କାମ ପ୍ରତି ଘୋର ଅଶ୍ରଦ୍ଧା । ତା କରିବା ଲୋକ ହେଲେ ମୂର୍ଖ, ନିର୍ବୋଧ, ଅପରିଷ୍କୃତ । ସଂସ୍କୃତ ଭାଷାରେ କଥା କହିପାରନ୍ତି ନାହିଁ । ତେଣୁ ତାଙ୍କର ଯଶଲାଭ ନାହିଁ କି ଅନ୍ନଲାଭ ନାହିଁ । ଏହା ଦର୍ଶାଇ ଦିଏ ଯେ, ସ୍ତୋତ୍ରଜ୍ଞ କବି ସବୁକିଛି ପାଏ ଓ ତାର ଦୁର୍ନାମ ଦୂର ହୁଏ । ଅର୍ଥାତ୍ ଯିଏ ଯେତେ ଅପକର୍ମ କଲେ ବି ତାର ଦୁର୍ନାମ ନାହିଁ । ଆଉ ଯିଏ ନିଜେ ଅନ୍ନ, ବସ୍ତ୍ର, ଉତ୍ପାଦନ କରେ, ତା'ପକ୍ଷରେ ଖାଇବା, ପିନ୍ଧିବା, ବଞ୍ଚିରହିବା କଷ୍ଟକର ।

ତେଣୁ ଏବେ ''ବିଶୁଦ୍ଧ ଜ୍ଞାନ'' ଆଉ ଏକମାତ୍ର ଖାଲି ତୁଚ୍ଛାକାମ — ଏ ଦୁଇଭାଗ ହୋଇଯାଇଛି । ତା ସହିତ ଦେଖା ଦେଇଛନ୍ତି ଗୋଟିଏ ଦଳ, ଜ୍ଞାନ ସେମାନଙ୍କର ଏକମାତ୍ର ପେସା । ସମାଜରେ ପ୍ରାଧାନ୍ୟ ବିସ୍ତାର ଏକମାତ୍ର ଲକ୍ଷ୍ୟ । ଅନ୍ୟ ଏକ ଦିଗରେ କାମ କରିବାଟା ହୋଇଛି ଆଉ ଦଳଙ୍କର ଏକମାତ୍ର ପେସା । ସବୁ ସୃଷ୍ଟି କରି ସେମାନେ ସଦା ଦୁର୍ବଳ ଓ ପତିତ, କାରଣ ସେମାନେ ଜ୍ଞାନରହିତ । ଜ୍ଞାନର ମାର୍ଗ ସେମାନଙ୍କ ପାଇଁ ନିଷିଦ୍ଧ ।

ମନୁଙ୍କର ଜାତିନୀତି ଓ ସାମାଜିକ ବ୍ୟବସ୍ଥାର ଶେଷ କଥା ହେଉଛି, ଦଣ୍ଡନୀତିର ପ୍ରୟୋଗ । ତଦ୍ୱାରା ନିଜର ବ୍ୟବସ୍ଥାକୁ ସାବ୍ୟସ୍ତ କରିବାକୁ ହେବ । ମନୁ ସ୍ମୃତିକହେ ''ରାଜାର ପ୍ରୟୋଜନ ସିଦ୍ଧିଲାଗି .... ଦଣ୍ଡ ଧର୍ମକୁ ଈଶ୍ୱର ଆଗରୁ ସୃଷ୍ଟି କରିଛନ୍ତି । (୭.୧୫ ଏଜନ) ''ଦଣ୍ଡ ପ୍ରଜାସମୂହଙ୍କୁ ଶାସନ କରେ । ସମସ୍ତେ ଶୋଇଲେ ସୁଦ୍ଧା ଦଣ୍ଡ ଜାଗ୍ରତ ଥାଏ । ବିଦ୍ୱାନମାନେ ଦଣ୍ଡକୁ ଧର୍ମ କହନ୍ତି । (୭.୧୮ ଏଜନ) ରାଜା ଦଣ୍ଡ ନ ଦେଲେ .... ଆଉ କାହାର କିଛି ଅଧିକାର ରହିବ ନାହିଁ ଏବଂ ନୀଚ୍, ଉଚ୍ଚକୁ ଅପମାନିତ କରିବ ।'' (୭.୨୧ ଏଜନ) ଦଣ୍ଡଦ୍ୱାରା କିପରି ସଂସାର ଚାଲିଛି, ତାକୁ ଦର୍ଶାଇ କୁହାଯାଇଛି, '' ଦେବ, ଦାନବ , ଗନ୍ଧର୍ବ, ରାକ୍ଷସ, ପକ୍ଷୀ, ସର୍ପ ..... ଏମାନେ ସୁଦ୍ଧା ଦଣ୍ଡ ଭୟରେ ପୀଡିତ ହୋଇ ଜଗତର ଉପକାର ସାଧନାରେ ପ୍ରବୃତ୍ତ ହୋଇଛନ୍ତି ।' '(୭.୨୩ ଏଜନ) ସେଥିଲାଗି ଦଣ୍ଡ ବିନା ବର୍ଣ୍ଣସବୁ ବିରୁଦ୍ଧାଚରଣରେ ପ୍ରବୃତ୍ତ ହୋଇ ଚାତୁର୍ବର୍ଣ୍ଣ୍ୟ ରୂପ ''ସେତୁ ସମୂହ ଭାଙ୍ଗି ପକାଇଲେ ଲୋକରେ ଉପଦ୍ରବ ଜାତ ହେବ ''(୧୮.୨୪ ଏଜନ) ଅତଏବ ଚାତୁର୍ବର୍ଣ୍ଣ୍ୟ ବା ଜାତିଭେଦକୁ ଯେପରି ଭାବରେ ହେଉ, ଶେଷକୁ ଦଣ୍ଡର ଜୋରରେ ରକ୍ଷା କରିବାକୁ ହେବ ।

ତେବେ ଏ କ୍ଷେତ୍ରରେ କୌଟିଲ୍ୟଙ୍କ ସହ ମନୁଙ୍କର ଗୋଟାଏ ଫରକ ରହିଛି । କୌଟିଲ୍ୟଙ୍କ ଭଳି ଦଣ୍ଡନୀତି କେବଳ ରାଜନୀତି କ୍ଷେତ୍ରରେ ସୀମିତ ନୁହେଁ,

ତାହା ସମସ୍ତ ସମାଜକୁ ବ୍ୟାପିଛି । ତାହା କେବଳ ରାଜତନ୍ତ୍ରର ସ୍ୱାର୍ଥ ଓ ରାଜାଙ୍କ ନିରାପତ୍ତା ଲାଗି ନୁହେଁ, ତାହା ସମାଜରେ ଉଚ୍ଚଶ୍ରେଣୀ, ବିଶେଷକରି ବ୍ରାହ୍ମଣ, କ୍ଷତ୍ରିୟଙ୍କ ଆଧିପତ୍ୟ ତାଙ୍କର ଅର୍ଥନୈତିକ ଶୋଷଣକୁ ରକ୍ଷା କରିବାରେ ଉଦ୍ଦିଷ୍ଟ । କୌଟିଲ୍ୟଙ୍କ ନୀତି ରାଷ୍ଟ୍ରୀୟ ସ୍ୱାର୍ଥ ଓ ନ୍ୟାୟର ଆବରଣ ନେଲାବେଳେ , ମନୁଙ୍କ ବ୍ୟବସ୍ଥା ଧର୍ମର ଧାରଣା ଦ୍ୱାରା ଆବୃତ । ଈଶ୍ୱରଙ୍କ ଆଶୀର୍ବାଦ ଦ୍ୱାରା ବଳିଷ୍ଠ । ତାହା କେବଳ ହିନ୍ଦୁଧର୍ମ ସହ ଜଡିତ ନୁହେଁ , ତାହାଠାରୁ ଅଭିନ୍ନ ଓ ଅଧିକ ଶକ୍ତିଶାଳୀ ଓ ତାକୁ ନିୟନ୍ତ୍ରିତ କରେ । ଏପରିକି ଅନ୍ୟ ଧର୍ମକୁ ଯିବା ଲୋକ ସେହି ଜାତିଭେଦ ଭାବକୁ ସେଠାରେ ସହଜେ ଛାଡିପାରେ ନାହିଁ । ଠିକ୍ ସେହି ଭାବ ଯୋଗୁଁ ହିଁ ଅନ୍ୟ ଧର୍ମରୁ ଆସିବା ଲୋକ ହିନ୍ଦୁଧର୍ମକୁ ସହଜେ ଆସିପାରନ୍ତି ନାହିଁ ।

କୌଟିଲ୍ୟ ଓ ମନୁଙ୍କ ମଧ୍ୟରେ ଏକ ବଡ ଗୁଣାତ୍ମକ ପାର୍ଥକ୍ୟ ରହିଛି । କୌଟିଲ୍ୟଙ୍କ ନୀତି ହେଲା ଉତ୍ପାଦନ ବୃଦ୍ଧି, ଅର୍ଥନୈତିକ ଉନ୍ନତି, ପ୍ରଶାସନର ବ୍ୟବସ୍ଥା ଓ ସାମ୍ରାଜ୍ୟର ବିସ୍ତାର ଭିତରେ ସଭ୍ୟତାର ପ୍ରସାର । ଉପଜାତି ବା ଟ୍ରାଇବ୍‌କୁ ତାର ପରିସରଭୁକ୍ତ କରିବା ଓ ବାହାର ସହିତ ଯୋଗାଯୋଗର ପ୍ରସାର ଇତ୍ୟାଦି । ସେ ହେଲେ ପ୍ରଗତିର ବାର୍ତ୍ତାବହ । ମନୁ ହେଲେ ସବୁପ୍ରକାର ପ୍ରତିକ୍ରିୟା ସଂକୀର୍ଣ୍ଣତା ରୂପକ ସ୍ଥାଣୁତା, କୁସଂସ୍କାର ଓ ଅନ୍ଧବିଶ୍ୱାସର ପୃଷ୍ଠପୋଷକ । ତାଙ୍କ କ୍ଷେତ୍ରରେ ଉତ୍ପାଦନ ବୃଦ୍ଧି ଓ ସମାଜର ଅଗ୍ରଗତିର ପ୍ରଶ୍ନ ନାହିଁ । ଅସମ ବଣ୍ଟନକୁ—ଉତ୍ପାଦନକାରୀ ପାଖରୁ ଅଣଉତ୍ପାଦନକାରୀ ପରାଙ୍ଗପୁଷ୍ଟଙ୍କ ହାତକୁ ଯିବାର ଅବସ୍ଥାକୁ ଚିରସ୍ଥାୟୀ କରିବା ଦିଗରେ ଉଦ୍ଦିଷ୍ଟ । ଜଣେ ସମାଜ ଉପରେ ରାଷ୍ଟ୍ରର ଆଧିପତ୍ୟ କାଏମ କଲାବେଳେ ଅନ୍ୟ ଜଣେ କାଏମ କରେ ଉଚ୍ଚବର୍ଣ୍ଣଙ୍କର ବିଶେଷକରି ବ୍ରାହ୍ମଣଙ୍କର ଆଧିପତ୍ୟକୁ । ଏହାହିଁ ମନୁ ଓ କୌଟିଲ୍ୟଙ୍କ ମଧ୍ୟରେ ବିରାଟ ପାର୍ଥକ୍ୟ ।

ସବୁ ଦେଶରେ ଅର୍ଥନୈତିକ ଶୋଷଣ ଓ ରାଜନୈତିକ ଆଧିପତ୍ୟ ରହିଛି । କିନ୍ତୁ ଭାରତ ଭଳି ଜାତିଗତ ବିଦ୍ୱେଷ ଓ ସାମାଜିକ ନିର୍ଯ୍ୟାତନା ଅନ୍ୟ କେଉଁଠି ନାହିଁ । ତାହା ହେଉଛି ହିନ୍ଦୁଧର୍ମର ବିଶେଷ ଅବଦାନ । ଭାରତର ମୂଳ ଉତ୍ପାଦନକାରୀ ଲୋକଙ୍କର ଦୁଇଗୋଡରେ ବେଡି ଲାଗିଛି । ଶ୍ରେଣୀ-ସମାଜର ବେଡିକୁ ଛିନ୍ନ କରିବାରେ ଜାତିନୀତିର ବେଡି ହେଉଛି ପ୍ରଧାନ ପ୍ରତିବନ୍ଧକ । ଅନ୍ୟ ଦିଗରେ ଶ୍ରେଣୀଚେତନା ହିଁ କେବଳ ସେହି ଜାତିନୀତିର ବଦ୍ଧମୂଳ ଶୃଙ୍ଖଳାକୁ ଚିରଦିନଲାଗି ଛିନ୍ନ କରିପାରେ । ହିନ୍ଦୁର ସେଇ ବର୍ଣ୍ଣାଶ୍ରମ ଧର୍ମ — ଜାତିଭେଦ ଚାତୁର୍ବର୍ଣ୍ଣ୍ୟ ନୀତିର ସମସ୍ତ ଆକ୍ରମଣକୁ ଯୁଗ ଯୁଗ ଧରି ପ୍ରତିହତ କରି ଯଦି କିଏ ଠିଆ ହୋଇଛି, ସେ ହେଉଛନ୍ତି ଏକମାତ୍ର ଜଗନ୍ନାଥ । ତାହା ତାଙ୍କର ସେଇ ଅନ୍ତର୍ନିହିତ ଶକ୍ତିର ପରିଚୟ । ଭାରତର ସବୁ ଦେବ, ମାନବ, ସାଧୁ, ସନ୍ନ୍ୟାସୀ, ବିଦ୍ୱାନ, ପଣ୍ଡିତ, ମଠ, ମନ୍ଦିର ଆଦି ସେଇ ବର୍ଣ୍ଣାଶ୍ରମ ନିକଟରେ ଆତ୍ମସମର୍ପଣ କଲାବେଳେ ଜଗନ୍ନାଥ ହିଁ ସେହିପରି ଉନ୍ନତ ଓ ଅଟଳ । ତାର ଏକମାତ୍ର କାରଣ, ତାଙ୍କର ସାମ୍ୟ, ମୈତ୍ରୀ, ପ୍ରୀତିର ଭାବ, ଯାହା ବ୍ୟତିରେକେ ଜଗନ୍ନାଥ ନିଜେ ଅସ୍ତିତ୍ୱହୀନ ଓ ଜୀବନଶୂନ୍ୟ ।

ଅନ୍ୟ ଧର୍ମର ଜାତିଭେଦ ନାହିଁ କି ବର୍ଣ୍ଣାଶ୍ରମ ଅନୁଯାୟୀ ମୋକ୍ଷ ପ୍ରାପ୍ତିର ବ୍ୟବସ୍ଥା ନାହିଁ ସତ, କିନ୍ତୁ ପାପ ପୁଣ୍ୟ ରହିଛି । ଭଗବାନଙ୍କ ପାଖରେ ପହଞ୍ଚିବା ଲାଗି ସ୍ୱର୍ଗପ୍ରାପ୍ତି, ବା ନିର୍ବାଣ ଭଳି ଗୋଟିଏ ଧାରଣା ରହିଛି । କେବଳ ଜାତିଭେଦକୁ ଛାଡିଦେଲେ ପ୍ରାୟ ଅନ୍ୟ ସବୁ ଦିଗରୁ ସମାନ । ଧନସମ୍ପଦ, ସାମାଜିକ ପଦମର୍ଯ୍ୟାଦା ଆଦି ପ୍ରତ୍ୟେକ କ୍ଷେତ୍ରରେ ମଣିଷ ଭିତରେ ଉଚ୍ଚ ନୀଚର ପାର୍ଥକ୍ୟ ରହିଛି । କୌଣସି ଧର୍ମରେ ତାହା ଅକରଣୀୟ ନୁହେଁ । ଧନ ଦିଗରୁ ତାହା ଆକାଙ୍‌କ୍ଷିତ, ସାମାଜିକ ନୀତି ଦୃଷ୍ଟିରୁ ତାହା ନ୍ୟାୟୋଚିତ । କେବଳ ଭଗବାନ ଏକ, ତାଙ୍କ ଆଗରେ ସମସ୍ତେ ସମାନ, ସେଇ ''ସାମ୍ୟର'' ତତ୍ତ୍ୱ ଉପରେ ଯାବତୀୟ ଅସାମ୍ୟ ଓ ଅମାନୁଷିକ ବିଷୟରେ ସୃଷ୍ଟି ଓ ବିକାଶ ।

ଜଗନ୍ନାଥଧର୍ମ କିନ୍ତୁ ବିଶ୍ୱର ଏସବୁ ଧର୍ମଠାରୁ ସମ୍ପୂର୍ଣ୍ଣ ଫରକ । ତାର ପୂରାପୂରି ବିପରୀତ । ତାର ସାମ୍ୟ କେବଳ ଜଗନ୍ନାଥଙ୍କ ସମ୍ମୁଖରେ ସୀମିତ ନୁହେଁ, ତାର ପରିସର ମଧ୍ୟରେ ଆବଦ୍ଧ ନୁହେଁ । ତାହା ସାରା ସମାଜରେ ପ୍ରତ୍ୟେକ କାଳରେ, ପ୍ରତ୍ୟେକ କ୍ଷେତ୍ରରେ ତାକୁ ପ୍ରଚାର କରେ ଓ ତାର ପ୍ରତିଷ୍ଠା ଚାହେଁ । କାରଣ ତାହା ଜଗନ୍ନାଥଙ୍କଠାରୁ ଅଭିନ୍ନ । ସେହି ସାମ୍ୟ, ମୈତ୍ରୀ, ପ୍ରୀତିର ଭାବହିଁ ଜଗନ୍ନାଥ । ତାହା ମାନବ ସମାଜ ସହିତ ସୟଂଭୂ । ଆକାଶରୁ ପଡୁଥିବା ଶୁଦ୍ଧ ସ୍ୱଚ୍ଛ ନିର୍ମଳ ଜଳ ଯେପରି କ୍ଷେତ୍ରଗୁଣରେ ତାର ରୂପ, ବର୍ଣ୍ଣ, ଗନ୍ଧ ଓ ସ୍ୱାଦ ଧାରଣ କରେ ସେହିପରି ମାନବ-ପ୍ରାଣର ସ୍ୱତଃସ୍ଫୁର୍ତ୍ତ ମାନବିକ ଭାବ—ଜଗନ୍ନାଥ ଧର୍ମ ଭାବରେ ବିଭିନ୍ନ ଦେଶ, କାଳ, ପାତ୍ରର ସ୍ୱାର୍ଥ ଓ ସମାଜ ଅନୁଯାୟୀ ତାର ଆତ୍ମପ୍ରକାଶ କରିଛି । ଜଳର କୁପ ଭଳି, ତାର ମୌଳିକ ଉପାଦାନ (ସାମ୍ୟ, ମୈତ୍ରୀ, ପ୍ରୀତି) ସବୁ ଅବସ୍ଥାରେ ପ୍ରଚାରିତ । ତାହା ରହି ଆସିଛି ଓ ରହିଥିବ ।

କାରଣ ସାମ୍ୟର ଭାବ ଯେଉଁ ଦିଗରେ ଯେତେ ଦୂରକୁ ଗତି କଲେବି ତାର ଶେଷ ନାହିଁ । ସାମ୍ୟ—ମୈତ୍ରୀ—ପ୍ରୀତିର ପୂର୍ଣ୍ଣତା ନାହିଁ । ମଣିଷ ବିକାଶର ପ୍ରକ୍ରିୟା ସଦା ବର୍ଦ୍ଧନଶୀଳ । ତେଣୁ ତାହା ଯେତେ ଗଭୀର ପ୍ରସାର ଲଭୁଥିବ ମଣିଷ ତାର ଅଭାବ ସେତିକି ଅଧିକ ଅନୁଭବ କରୁଥିବ । ଅର୍ଥାତ୍ ତାର ଜୀବନରେ, ତାର ସମସ୍ୟାର ସମାଧାନରେ ସାମ୍ୟ, ମୈତ୍ରୀ, ପ୍ରୀତି ସେତିକି ଅପରିହାର୍ଯ୍ୟଭାବେ ଦେଖାଦେବ । ତେଣୁ ତାହା ଯେତେ ପରିବ୍ୟାପ୍ତ, ପରିପୂର୍ଣ୍ଣ, ପ୍ରତିଷ୍ଠିତ ହେଲେ ବି ଜଗନ୍ନାଥ ଭାବ ସେତେ ଅପୂର୍ଣ୍ଣ । ସଦା ପୂର୍ଣ୍ଣତାର ଅପେକ୍ଷାରେ, ଯେହେତୁ ଅସରନ୍ତି ବିକାଶର ପ୍ରକ୍ରିୟା, ଅସୀମ ମଣିଷର କାମନା, —ଅନନ୍ତ ସେଇ ଜଗନ୍ନାଥ ଭାବର ସାମ୍ୟ, ମୈତ୍ରୀ, ପ୍ରୀତିର ପ୍ରକାଶ — ଯାହାକି ଚିର ବର୍ଦ୍ଧିଷ୍ଣୁ , ତାହା ବିମୂର୍ତ୍ତ ଅନ୍ତହୀନ ମାନବିକ-ମର୍ମ ଛଡା ଅନ୍ୟ କିଛି ନୁହେଁ ।



# ଷଷ୍ଠ ପର୍ବ

## ବେଦର ଗାର-

ମଣିଷ ନିଜର ଆବଶ୍ୟକତା ଅନୁଯାୟୀ ସମାଜ ଗଠନ କରେ । ବୈଦିକ ସମାଜର ଗଠନ ତାର ସେତେବେଳର ସେଇ ଆବଶ୍ୟକତା ଭିତରୁ ଉଦ୍ଭବ । ସେଇ ସମାଜର ଆଚାର, ବ୍ୟବହାର, ବିଧିବିଧାନ, ଚିନ୍ତା ଓ ଧାରଣା ଆଦି ପ୍ରକାଶ ପାଏ ବେଦରେ । ବେଦରେ ଲିପିବଦ୍ଧ ସେଇ ବିଷୟଗୁଡ଼ିକ ପରମ ସତ୍ୟ, ଚରମ ଜ୍ଞାନ ଓ ପବିତ୍ର ନିର୍ଦ୍ଦେଶ ବୋଲି ଧରାଯାଏ । ତାହା ହେଲା ବେଦର ଗାର । ତାର ପ୍ରତ୍ୟେକଟି କମା, ପୂର୍ଣ୍ଣଚ୍ଛେଦକୁ ବିନାବାକ୍ୟରେ ମାନିବାକୁ ହେବ । ତା' ଅଲଘଂନୀୟ । ବେଦର ବିରୋଧିତା ଘୋର ପାପ । ଏକମାତ୍ର ଉଦ୍ଦେଶ୍ୟ ହେଲା ସେଇ ଆଦିମ ସମାଜର ବିଚାର ଡୋରିରେ ମଣିଷର ଭବିଷ୍ୟ ଜୀବନକୁ ବାନ୍ଧି ରଖିବା । ତାର ବିକାଶ ଓ ପରିବର୍ତ୍ତନକୁ ପ୍ରତ୍ୟାଖ୍ୟାନ କରିବା, ଭବିଷ୍ୟତ ଅଗ୍ରଗତିର ଦ୍ୱାରକୁ ଚିରଦିନ ଲାଗି ରୁଦ୍ଧ କରିଦେବା, ଫଳରେ ସବୁଦିନ ପାଇଁ ତାକୁ ପଙ୍ଗୁ, ଅଚଳନ୍ତି ଓ ନିର୍ଜୀବ କରିଦେବା । ଏହା କରନ୍ତି ସେଇମାନେ, ଯେଉଁମାନେ ସେହି ଅଚଳନ୍ତି ସମାଜ ଦ୍ୱାରା ପ୍ରତ୍ୟକ୍ଷ ବା ପରୋକ୍ଷରେ ଉପକୃତ । ମଣିଷର ସ୍ୱାଧୀନ ଚିନ୍ତା ଓ ତାର ଅଗ୍ରଗତିକୁ ହତ୍ୟା କରିବାରେ ଯେଉଁମାନଙ୍କ ଜୀବନ ଓ ଜୀବିକା ନିର୍ଭର କରେ, ଆଉ ସେଇମାନେ ସେହି ଧାରଣାର ଶିକାର ହୁଅନ୍ତି, ଯେଉଁମାନେ ସେଇ ଅନ୍ଧ ବଦ୍ଧମୂଳ ବିଶ୍ୱାସକୁ କାଟିବାରେ ଅସମର୍ଥ । ମଣିଷ ଭାବେ ବେଦ ଗୋଟାଏ ମାଷ୍ଟର କିୟି ବା କୁହୁକ ଚାବି, ତଦ୍ୱାରା ମଣିଷର ସମସ୍ତ ଜ୍ଞାନ, କର୍ମ ଓ ଭାବନାର ପ୍ରତ୍ୟେକଟି ପ୍ରକୋଷ୍ଠର ଦ୍ୱାରକୁ ଉନ୍ମୁକ୍ତ କରାଯାଇ ପାରେ । ଏହି ଉଦ୍ଦେଶ୍ୟମୂଳକ ଆତ୍ମସ୍ୱାର୍ଥନ୍ୱେଷୀ ଦୃଷ୍ଟି, ବେଦର ପ୍ରକୃତ ତାତ୍ପର୍ଯ୍ୟକୁ ପଦେ ପଦେ ପ୍ରତିହତ କରିବାରେ ଲାଗିଛି । ବେଦ ଯଦି ଆଦିମ ମାନବ ଜୀବନର କାହାଣୀ ହୁଏ, ତେବେ ତାହା ମୁଖ୍ୟତଃ ତିନୋଟି ବିଷୟକୁ ଅତି ସ୍ପଷ୍ଟ ଓ ଦୃଢ଼ଭାବେ ପ୍ରକାଶ କରିଥାଏ । ପ୍ରଥମତଃ ପ୍ରକାଶ କରେ ସେଇ ଆଦିମ ଗଣଗୋଷ୍ଠୀର ଜୀବନ, — ଅତି ସରଳ ସାମ୍ୟ ସମାଜର ଭିତ୍ତି ଓ ଚରିତ୍ରକୁ । ଦ୍ୱିତୀୟରେ ସନ୍ଧାନ ଦିଏ — ମଣିଷ ଭିତରେ ଅନ୍ତର୍ନିହିତ ତାର ଅଫୁରନ୍ତ ଚିର

ପ୍ରବାହମାନ ମାନବିକ ଭାବର, ଉତ୍ସର । ତୃତୀୟରେ ତାହା ବହନ କରେ— ଭବିଷ୍ୟତର ସକଳ ଅସାମ୍ୟ ଓ ତାର ଆନୁଷଙ୍ଗିକ ସକଳ ଦୁଃଖ, ଦୈନ୍ୟ, ନିର୍ଯ୍ୟାତନା ଓ ବୀଭତ୍ସତାର ଭୟାବହ ଭ୍ରୂଣକୁ ।

ଆଦିମ ସାମ୍ୟ ସମାଜ ସମ୍ବନ୍ଧରେ ଆମେ ଆଲୋଚନା କରିଛେ । ଦେଖିଛେ, ମାନବ ସହିତ ମାନବତ୍ୱର ଜନ୍ମ । ବିନା ମାନବରେ ମାନବତ୍ୱ ନାହିଁ । ବିମୂର୍ତ୍ତ ମାନବିକତାର ସୃଷ୍ଟି ମୂର୍ତ୍ତ ମାନବର ସହଜାତ । ସେହି ଆଦ୍ୟ ସମାଜରେ ସାମ୍ୟ ମୈତ୍ରୀ, ପ୍ରୀତିର ଭିତରେ ମାନବତ୍ୱର ଆଦ୍ୟ ଅଙ୍କୁରର ଉଦ୍‌ଗମ୍ ସହ ବେଦରେ ପ୍ରତିଧ୍ୱନିତ ହୋଇଛି — ତାର ନିତ୍ୟ ଉନ୍ମେଷର କ୍ରମାଗତ ଆହ୍ୱାନ । ସେହି ଆହ୍ୱାନର ଧ୍ୱନିକୁ ମନ୍ତ୍ରର ପବିତ୍ରତା ପ୍ରଦାନ କରି ତାର ମୂଳ ମହତ୍ତ୍ୱକୁ ପ୍ରତ୍ୟାଖ୍ୟାନ କରାଯାଇଥାଏ । କାରଣ, ବେଦର ପ୍ରଚାରକଗଣ ହେଲେ ତାର ପରବର୍ତ୍ତୀ ଅସାମ୍ୟ ସମାଜର ସୃଷ୍ଟି - ସେଇ ଅସାମ୍ୟ ସ୍ୱାର୍ଥର ସମର୍ଥକ । ତେଣୁ ବେଦର ସମସ୍ତ ବିଚାର, ପ୍ରଚାର, ବ୍ୟାଖ୍ୟା ଓ ବିଶ୍ଳେଷଣ ହୋଇ ଆସଛି ସେହି ଦୃଷ୍ଟିରୁ ।

ଏ ପର୍ଯ୍ୟନ୍ତ ସେହି ଅସାମ୍ୟ ସମାଜର ବିକାଶ ଅବ୍ୟାହତ ରହିଛି । ତେଣୁ ବର୍ତ୍ତମାନ ଚିନ୍ତା ସେହି ଅସାମ୍ୟ ଭିତରୁ କେବଳ ଉଦ୍ଭବ ନୁହେଁ, ସେହି ଅସାମ୍ୟର ଆଭିମୁଖ୍ୟରେ ଆକ୍ରାନ୍ତ । ସେହି ସ୍ୱାର୍ଥର ଅବଦାନ ଦ୍ୱାରା ପ୍ରତିଷ୍ଠିତ । ତେଣୁ ବେଦର ପ୍ରଥମ ରଚନା — ତାର ସାମ୍ୟଭାବର ସ୍ୱତଃସ୍ଫୂର୍ତ୍ତ ସ୍ଫୁରଣ ପ୍ରତି ଦୃଷ୍ଟି ନ ଦେଇ, ଗୁରୁତ୍ୱ ଦିଆଯାଏ ପରିବର୍ତ୍ତୀ କାଳରେ ସେ ଅସାମ୍ୟ ଭାବର ନିର୍ଦ୍ଦେଶକୁ । ତାକୁ ହିଁ କେବଳ ବେଦ ବୋଲି ପ୍ରଚାର କରାଯାଏ । ଏଇ ଅସାମ୍ୟ ସମାଜକୁ ବେଦର ପବିତ୍ରତା ପ୍ରଦାନ କରି ତାକୁ ଧରିରଖିବା ହୁଏ ଏକମାତ୍ର ଲକ୍ଷ୍ୟ । ତେଣୁ ବେଦର ଗାର ହୁଏ ଅଲଘଂନୀୟ ।

ବେଦରେ ସାମ୍ୟ ଓ ଅସାମ୍ୟ ସେଇ ଦୁଇ ଧାରଣାର ପ୍ରତିଫଳନ ଘଟିଲା ଭଳି ସେଇ ସାମ୍ୟ ଅସାମ୍ୟର ସେଇ ଦୁଇଟି ଯାକ ମତ ଜଗନ୍ନାଥଙ୍କଠାରେ ପ୍ରତିଫଳିତ । ଉଭୟଙ୍କ କ୍ଷେତ୍ରରେ ପ୍ରଥମେ ସାମ୍ୟ ଓ ଶେଷକୁ ଅସାମ୍ୟର ଭାବ ପ୍ରକଟିତ । ଉଭୟଙ୍କର ସୃଷ୍ଟି ମାନବିକତାର ଗୌରବଗାନ କଲାବେଳେ ଉଭୟଙ୍କର ଶେଷାନ୍ତ ପ୍ରଚାର କରେ ମାନବିକତା-ବିରୋଧୀ ଭାବକୁ, ସମଷ୍ଟି ବିରୁଦ୍ଧରେ ବ୍ୟକ୍ତିର ମହତ୍ତ୍ୱକୁ, ମାନବ ସମାଜ ବିରୁଦ୍ଧରେ ଆତ୍ମସ୍ୱାର୍ଥର ଆକାଙ୍‌କ୍ଷାକୁ; ତାକୁ ଘୋଷଣା କରେ ନ୍ୟାୟୋଚିତ, ଧର୍ମସଙ୍ଗତ ଓ ବିଧିର ବିଧାନ ବୋଲି ।

ବେଦର ସେହି ପବିତ୍ରତା ପାଇଁ ବ୍ରାହ୍ମଣଙ୍କୁ ଛାଡିଦେଲେ ଅନ୍ୟମାନଙ୍କ ପାଇଁ ବେଦ ଅଧ୍ୟୟନ ନିଷିଦ୍ଧ ଆଉ କେତେକଙ୍କ ଲାଗି ଶ୍ରବଣ ମଧ୍ୟ ନିଷିଦ୍ଧ ହେଲା । ତେଣେ ନିଜର କଥିତ କଥାକୁ ''ବେଦର ଗାର'' କହି ସାଧାରଣ ଲୋକଙ୍କ ଉପରେ ତାକୁ ଲଦି ଦିଆହେଲା ତାହା ହେଲା ନାନାଦି ମିଥ୍ୟା ଓ ଅପପ୍ରଚାରର ଉତ୍କୃଷ୍ଟ ଉପାୟ ।

ବେଦ ନାମରେ ଯାବତୀୟ ଅପପ୍ରଚାର ଏବେ ବି ଅବ୍ୟାହତ ରହିଛି । ଏଇ ଦେଖ, ଗୋମାଂସ ଭକ୍ଷଣ । ସେଥିପାଇଁ ଭାରତରେ କେତେ ଆନ୍ଦୋଳନ ଓ ଦଙ୍ଗା ହେଉନାହିଁ ? କେତେ ପ୍ରାଣହାନି ନ ଘଟୁଛି ? ତା ମଧ ନିର୍ବାଚନର ସ୍ଲୋଗାନ ଓ ସରକାର ଗଠନର ଆୟୁଧ ହୁଏ । ଅଥଚ, ବୈଦିକ ସମାଜରେ ଗୋମାଂସ ଭକ୍ଷଣ ଓ ସୋମରସ (ମଦ୍ୟ) ପାନ, ଏକ ସାଧାରଣ ଘଟଣା । ମୁନି ଋଷି, ବିଶେଷକରି ଦେବତାମାନେ ଗୋମାଂସ ଭକ୍ଷଣ ଓ ସୋମରସ ସୁରାପାନରେ ଧୁରନ୍ଧର । ବୃଷ, ମହିଷ, ଅଶ୍ୱ, ଅଜଙ୍କ ହନନ ବିନା କୌଣସି ଅତିଥି ସତ୍କାର ଓ ସାମାଜିକ ଉତ୍ସବ ସମ୍ଭବ ନୁହେଁ । ଋଷି କବିମାନେ ସେ ସମ୍ବନ୍ଧରେ ବହୁ ଗାନ ରଚନା କରିଛନ୍ତି । ଋଗ୍ ବେଦହିଁ ତାର ଦୃଷ୍ଟାନ୍ତ । ବିଷୟଟିର ଗୁରୁତ୍ୱ ଦୃଷ୍ଟିରୁ ସେହି କେତେକ ସୂକ୍ତର ଅନୁବାଦ ନିଆଯାଉ ।

ଋଗ୍‌ବେଦର ପ୍ରଥମ ମଣ୍ଡଳର ୧୬୨ ସୂକ୍ତରେ ୧୧ ଋକ୍‌ରେ ରହିଛି— ''ହେ ଅଶ୍ୱ ! ଅଗ୍ନିରେ ପାକ ହେବା ସମୟରେ ତମ ଦେହର ଯେଉଁ ଅଂଶ ନିର୍ଗତ ହୁଏ ଏବଂ ଯେଉଁ ଅଂଶ ଶୂଳରେ ଆବଦ୍ଧ ହୋଇ ରହିଥାଏ, ତାହା ଯେପରି ଭୂମିରେ ନ ପଡେ ଓ ତୃଣ ସହିତ ମିଶି ନ ଯାଏ । ଦେବତାମାନେ ଲାଳାୟିତ ହୋଇ ଚାହିଁ ରହିଛନ୍ତି, ସମସ୍ତଟା ତାଙ୍କୁ ପ୍ରଦାନ କରାଯାଉ ।''

କେଉଁମାନେ ସେ ମାଂସ ପ୍ରସ୍ତୁତ କରନ୍ତି ତାହାର ବର୍ଣ୍ଣନା କରି କୁହାଯାଇଛି ''ଯେଉଁ କାଷ୍ଠ ଖଣ୍ଡକୁ ମାଂସ ପରୀକ୍ଷା ଲାଗି ଭାଣ୍ଡରେ ଦିଆଯାଏ, ଯେଉଁ ପାତ୍ରରେ ରସ (ଝୋଳ) ରହେ, ଯେଉଁ ଆବରଣ ଦ୍ୱାରା ଉଷ୍ଣତା ରଖାଯାଏ, ଯେଉଁ ବେତବାଡି ଦ୍ୱାରା ଅଶ୍ୱର ଅଙ୍ଗପ୍ରତ୍ୟଙ୍ଗ ପ୍ରଥମେ ଚିହ୍ନିତ ହୁଏ, ଯେଉଁ ଛୁରୀ ଦ୍ୱାରା ସେଇ ଚିହ୍ନ ଅନୁଯାୟୀ କଟାଯାଏ — ସେମାନେ ସମସ୍ତେ ଅଶ୍ୱର ମାଂସ ପ୍ରସ୍ତୁତ କରନ୍ତି ।''

ସେମିତି ପୁଣି ରହିଛି ''ଋତିକ୍‌ଗଣ ଉତ୍ସର୍ଗାର୍ଥେ ଛାଗ ଧରି ନେଉଛନ୍ତି । ବିବିଧ ବର୍ଣ୍ଣର ଛାଗସବୁ ଶବ୍ଦ କରି ତଦ୍ ଅଭିମୁଖେ ଗମନ କରନ୍ତି । ତା ଇନ୍ଦ୍ର ଓ ପୂଷାର ପ୍ରିୟ ଅନ୍ନ ହେଉ । ..... ତ୍ୱଷ୍ଟା ଦେବତାଙ୍କ ଭୋଜନ ପାଇଁ ଅଶ୍ୱ ସହିତ ସେ ଅଜ ଦେହରୁ ସୁଖାଦ୍ୟ, ପୁରୋଡାଶ ପ୍ରସ୍ତୁତ କରନ୍ତୁ ।'' (ଋଗ୍‌ବେଦ ୧.୧୬୨.୨ ଓ ୩)

ମହିଷ ବିଷୟରେ ପଞ୍ଚମ ମଣ୍ଡଳର ପଚିଶ ସୂକ୍ତର ୮ ଋକ୍ କହେ, ''ହେ ଇନ୍ଦ୍ର ! ଯେତେବେଳେ ତମେ ତିନିଶତ ମଇଁଷିଙ୍କ ମାଂସ ଭକ୍ଷଣ କରିଥିଲ, ଅସୂର୍ଯ୍ୟସମ୍ପନ୍ନ ତମେ ତିନିପାତ୍ର ସୋମରସ ପାନ କରିଥିଲ, ସେତେବେଳେ ତମେ ବୃତ୍ର ସଂହାର କରିଥିଲ । ସେତେବେଳେ ସବୁ ଦେବତା ସୋମପାନକାରୀ ଇନ୍ଦ୍ରଙ୍କୁ ବୃତ୍ରବଧ ଯୁଦ୍ଧ ସ୍ଥଳେ ଆହ୍ୱାନ କରିଥିଲେ ।'' ବୃଷ ସମ୍ବନ୍ଧରେ ଖୋଦ୍ ଇନ୍ଦ୍ରଙ୍କର ବକ୍ତବ୍ୟ

ହେଉଛି ''ମୋ ପାଇଁ ପଞ୍ଚଦଶ, ଏପରିକି ବିଂଶ ବୃଷ ପାକ କରିଦିଅ । ମୁଁ ଖାଇ ଶରୀରର ସୁସ୍ଥତା ସମ୍ପାଦନ କରେଁ । ଉଦର ଦୁଇପାର୍ଶ୍ୱ ପୂର୍ଣ୍ଣ ହେଉ ।'' (ଋଗ୍‌ବେଦ ୧୦.୮୬.୧୪) ''ତମ ବୃଷମାନଙ୍କୁ ଇନ୍ଦ୍ର ଭକ୍ଷଣ କରନ୍ତୁ ।'' (୧୦.୮୬.୧୩) ଥରକେ ୧୫/୨୦ ବୃଷଙ୍କୁ ପାକ କରି ଭୋଜନ କରିବା ନିଶ୍ଚୟ ଏକ ଭୋଜିଭାତ ହେବ, ଯେଉଁଠିକି ଗୋଷ୍ଠୀର ସବୁଲୋକ ଯୋଗ ଦେଉଥିବେ । ସେହିପରି ରହିଛି, ''ବୀରଗଣ ଶୁକ୍ଳବର୍ଣ୍ଣ ବୃଷକୁ ପାକ କରିଛନ୍ତି । (୧.୮୬.୧୩) ଏପରିକି ଉପନିଷଦ ପ୍ରବକ୍ତାଙ୍କ ନାମ ଯାଜ୍ଞବଲକ୍ୟ । ସେ ଗୋମାଂସ ଖାଇ ଚାଲିଥିଲେ ବୋଲି ଡକ୍ଟର କୋଶାମ୍ବି ଲେଖିଛନ୍ତି । (୧) ଅଶୋକଙ୍କ ସମୟରେ ପଶୁବଧ ଥିଲାବେଳେ ରାସ୍ତା କଡରେ ଗୋମାଂସ ବିକ୍ରି ହେଉଥିଲା । ତେବେ ଷଣ୍ଢଙ୍କୁ ମାରିବା ମନାଥିଲା ।'' (୨)

ପରବର୍ତ୍ତୀ କାଳରେ ମଧ୍ୟ ଗୋମାଂସ ନିଷିଦ୍ଧ ନୁହେଁ । ଆୟୁର୍ବେଦରେ ଏହାର ଉପକାରିତା ଓ ଔଷଧୀୟ ଗୁଣ ବିଷୟରେ ବିଶଦ ବର୍ଣ୍ଣନା ରହିଛି । ତେବେ ସେସବୁ ଏଠି ଆଲୋଚ୍ୟ ବିଷୟ ନୁହେଁ ।

ଏ ସବୁଥିରେ ଆଶ୍ଚର୍ଯ୍ୟ ଓ ବିବ୍ରତ ହେବାର କିଛି ନାହିଁ । ସବୁଠି ମଣିଷର ଆଦିମ ଅବସ୍ଥା ଊଣାଅଧିକେ ସମାନ ।

ଅନ୍ୟ ସ୍ଥାନରେ ତାହା ଲିଭିଗଲାବେଳେ ବେଦରେ ତାହା ଲିପିବଦ୍ଧ ହୋଇରହିଛି । ସେତେବେଳେ କୌଣସି ଆଧ୍ୟାତ୍ମିକତା ଓ ଐଶ୍ୱରିକ ଭାବର ଜନ୍ମ ନାହିଁ । ବଞ୍ଚିରହିବା ଲାଗି ମଣିଷର ଆପ୍ରାଣ ସଂଗ୍ରାମ । ସବୁବେଳେ ତୁଚ୍ଛା ପାର୍ଥିବ ଜିନିଷର କାମନା । ମଣିଷ କିପରି ସ୍ୱାସ୍ଥ୍ୟବାନ ହେବ, ପଶୁଧନ ଓ ପୁତ୍ର ଆଦି ଲାଭ କରିବ, ସେ ଦିଗରେ ଅନବରତ ଉଦ୍ୟମ । ଏବେ ବୈଦିକ ସାହିତ୍ୟରେ ଏମିତି ବର୍ଣ୍ଣନା ରହିଛି, ଯାହାକି ବର୍ତ୍ତମାନ ଦୃଷ୍ଟିରୁ ନିହାତି ଅଶ୍ଳୀଳ ମନେହେବ । ତାହା ପୁଣି ବଡ ବଡ ଋଷି କବିଙ୍କ କୃତ । ସେମାନେ ମୈଥୁନକୁ ଯଜ୍ଞ ସହିତ ତୁଳନା କରନ୍ତି ଏବଂ ତାକୁ ସେହି ଭାବରେ ଗ୍ରହଣ କରନ୍ତି । ବୃହଦାରଣ୍ୟକ ଉପନିଷଦରେ ରହିଛି ''ପ୍ରଜାପତି ମନେ ମନେ ଚିନ୍ତା କଲେ ...... ସେ ଏକ ନାରୀ ସୃଷ୍ଟି କଲେ । ତାକୁ ସୃଷ୍ଟି କରି ତାର ଅଧୋଦେଶରେ ଉପସ୍ଥ ମିଳିତ କଲେ । ସେହି କାରଣରୁ ସ୍ତ୍ରୀର ଅଧୋଦେଶରେ ମିଳିତ ହେବା ଉଚିତ । (ଉପସ୍ଥ) ସେ ନିଜର ଉର୍ଦ୍ଧ୍ୱୋତ୍‌ଥିତ ଗ୍ରାବଣକୁ (ଛେଚି ସୋମରସ ବାହାର କରୁଥିବା ଶିଳପୁଆ ଏଠାରେ ଶିଶ୍ନ ବ୍ୟଞ୍ଜକ) ପ୍ରସାରିତ କରିଦେଲେ । ତଦ୍ଦ୍ୱାରା ତାକୁ ଗର୍ଭବତୀ କଲେ । (୬.୪.୨) । ''ତାର (ସ୍ତ୍ରୀ ଲୋକ) ଉପସ୍ଥ (ନିମ୍ନାଙ୍ଗ) ବେଦୀ (ଯଜ୍ଞବେଦୀ) ତାର ଲୋମ ଯଜ୍ଞତୃଣ, ତାର ଚର୍ମ ଅଧୟବନ'' (ସୋମରସ ନିଷ୍କାସନ ଯନ୍ତ୍ର) ତାର ମୁଷ୍କଦ୍ୱୟ ମଧ୍ୟସ୍ଥ ଅଗ୍ନି ।

(୧) An Introduction to the Study of Indian History, D. D. Kosambi, Page - 170.

(୨) Ibid, Page - 207.

ବାଜପେୟଯଜ୍ଞକାରୀ ନିକଟରେ ଜଗତ ଯେତେ ବୃହତ୍ ଏହା ଜାଣି ଯେ ମୈଥୁନ କରେ, ତା ପାଖରେ ଜଗତ ସେତେ ବୃହତ । ସ୍ତ୍ରୀ ଦ୍ୱାରା ନିଜେ ଶକ୍ତିମାନ ହୁଏ । ଯିଏ ସେ ତତ୍ତ୍ୱ ନ ଜାଣେ, ମୈଥୁନ କରେ, ସ୍ତ୍ରୀର ସ୍ୱୀକୃତିକୁ ....'' (୬.୪.୩ ଯାଜ୍ଞବଲ୍‌କ୍ୟ) ।

ଏହି ମୈଥୁନ କ୍ରିୟାକୁ ଉପନିଷଦରେ ଖୋଲା ଖୋଲି ଯଜ୍ଞ ବୋଲି ଉଲ୍ଲେଖ କରିଛନ୍ତି । ଆଦିମ କାଳରେ ସେଥିରେ ଅଶ୍ଳୀଳତା, ଉପଭୋଗ ବା କାମ ଉଦ୍ଦୀପନା ପ୍ରଚାରର ପ୍ରଶ୍ନ ନାହିଁ । ତାହା ବୈଦିକ ଋଷିଙ୍କର କାମବିକାରର ନିଦର୍ଶନ ନୁହେଁ, ସେହି ବାମାଚାର ଯେ କିପରି ଗୁରୁତ୍ୱପୂର୍ଣ୍ଣ, ସାମଗାନ ସହିତ ତୁଳନା କରିବାରେ ତାହା ପ୍ରକାଶ ପାଏ । ଯଜ୍ଞ ଓ ସାମଗାନ ଥିଲା ତାଙ୍କ ଜୀବନର ସର୍ବସ୍ୱ । ଯଜ୍ଞ, ସନ୍ତାନ ଓ ଧନ ଉତ୍ପାଦନକୁ ମଣିଷ କିପରି ସମାନ ଚକ୍ଷୁରେ ଦେଖୁଥିଲା, ତା ଆମେ ଏଥିପୂର୍ବରୁ ଆଲୋଚନା କରିଛେ ।

''ନ କାଞ୍ଚନ ପରିହରାତେ ତଦ୍ ବ୍ରତମ୍'' କୌଣସି ସ୍ତ୍ରୀକୁ ପରିହାର କରିବ ନାହିଁ, ତାହାହିଁ ବ୍ରତ । ବେଦ, ଉପନିଷଦ ଏ କଥା କହିଛି, ଯାହାକି କଳ୍ପନାର ବହିର୍ଭୂତ । କିନ୍ତୁ ସେମାନେ ଥିଲେ ସତ୍ୟଦ୍ରଷ୍ଟା ଅର୍ଥାତ୍ ଯାହା ଦେଖୁଥିଲେ ବିଶ୍ୱାସ କରୁଥିଲେ, ତାହା ପ୍ରକାଶ କରୁଥିଲେ । ତାଙ୍କୁ ଯଦି ସତ୍ୟଦ୍ରଷ୍ଟା ବୋଲି ସ୍ୱୀକାର କରା ନ ଯାଏ, ତେବେ ମାନିବାକୁ ହେବ ଯେ, ସେହି ମୁନିଋଷିମାନେ ଥିଲେ ଆଧୁନିକ ଅଶ୍ଳୀଳ ସାହିତ୍ୟର ପ୍ରଚାରକ ବା ଉଲଗ୍ନ ସଭ୍ୟତାର ଉପଭୋଗକାରୀ । ସେହି ପ୍ରାଚୀନତାକୁ ଆଧୁନିକ ଦୃଷ୍ଟି ଓ ରୁଚିକୁ ବିଚାର କରିବା ଭୂଲ୍ ହେବ ।

ପରବର୍ତ୍ତୀ କାଳରେ ଯେତେବେଳେ ଶ୍ରେଣୀ-ବିଭାଜନ, ବ୍ୟକ୍ତିଗତ ସମ୍ପତ୍ତିର ପ୍ରାଧାନ୍ୟ ଓ ଗୋଟାଏ ପରାଙ୍ଗପୁଷ୍ଟ ଅବସରଭୋଗୀ ଆଳସ୍ୟପରାୟଣ ଦଳ ସୃଷ୍ଟି ହୋଇଛନ୍ତି, ସେତେବେଳେ ସେହି ଦୃଷ୍ଟିଭଙ୍ଗୀ ସଂପୂର୍ଣ୍ଣ ବଦଳିଯାଇଛି ।

ପୁରୋହିତର ପ୍ରଧାନ କାମ, ତାର ଯଜମାନର ଗୋତ୍ର ଜାଣିବା । ଶୁଦ୍ଧି, ଶ୍ରାଦ୍ଧ, ବିବାହ, ବ୍ରତ ଆଦି କ୍ଷେତ୍ରରେ ଆଗ ଲୋଡା ଗୋତ୍ର । ଆଧୁନିକ ଅର୍ଥରେ ଗୋତ୍ର ହେଉଛି ତମ ବଂଶର ପିନ୍‌କୋଡ, ପୂର୍ବପୁରୁଷଙ୍କର ନିର୍ଦ୍ଦିଷ୍ଟ ଠିକଣା । ସେଇ ଠିକଣାରେ ଯାହା ଅର୍ପଣ କରିବ, ତାହା ତାଙ୍କୁ ନିଶ୍ଚିତ ପ୍ରାପ୍ତ ହେବ । କୁହାଯାଏ, ଗୋତ୍ର ସବୁ ସାଧାରଣତଃ ଏକ ଏକ ଋଷିଙ୍କର ନାମ । ସେଇ ମହାପୁରୁଷଙ୍କଠାରୁ ନିଜର ବଂଶର ଉଦ୍ଭବ ବୋଲି ଲୋକ ଗର୍ବବୋଧ କରେ । ସେଇସବୁ ଋଷି ହେଲେ କଶ୍ୟପ, କୌଶିକ, ନାଗ, ମାଣ୍ଡୁକେୟ, ଗୌତମ, ଭରଦ୍ୱାଜ, ବସ୍ତ, ଶୁନାକ ଇତ୍ୟାଦି ।

ଏକ ଗୋତ୍ରର ଯେତେ ଲୋକ ଯିଏ ଯେଉଁଠି ଥିଲେ ବି ସମସ୍ତଙ୍କ ପୂର୍ବପୁରୁଷ ଏକ । ତେଣୁ ସ -ଗୋତ୍ରରେ ବିବାହ ନିଷିଦ୍ଧ । ଯଦି ସେପରି ବିବାହ

ହୋଇଗଲା, ତେବେ ପ୍ରାୟଶ୍ଚିତ୍ତ ସ୍ୱରୂପ ସ୍ତ୍ରୀ ପୁରୁଷ ପରସ୍ପର ପ୍ରତି ମାତା ପୁତ୍ର ବ୍ୟବହାର କରିବେ । ଏହି ଗୋତ୍ରର ମୂଳରେ ରହିଛି ଟୋଟେମ ବିଶ୍ୱାସର ଧାରଣା । କୌଣସି ବସ୍ତୁ ବା ପ୍ରାଣୀ ସହ ଜ୍ଞାତିତ୍ୱ ବା ତାଙ୍କଠାରୁ ଉତ୍ପନ୍ନ ହେବା ଧାରଣା । ମଣିଷ ଗୋଷ୍ଠୀଙ୍କ ଭଳିଆ ଗୋତ୍ର ସଂଖ୍ୟା ମଧ୍ୟ ଅସଂଖ୍ୟ । ଯେଉଁ ଗୋତ୍ର ନେଇ ଏତେ ଗର୍ବ, ସେମାନେ ମୂଳତଃ ପଶୁ, ବୃକ୍ଷ, ଲତା ଆଦି । ଯଥା - କଶ୍ୟପ (କଇଁଛ), କୌଶିକ (ପେଚା), ମାଣ୍ଡୁକେୟ (ବେଙ୍ଗଛୁଆ), ଗୌତମ (ଗୋରୁ), ଭରଦ୍ୱାଜ (ଭଦଭଦଳିଆ), ବତ୍ସ (ବାଛୁରୀ), ଶୂନକ୍ (କୁକୁର), ସାଣ୍ଡିଲ୍ୟ (ପକ୍ଷୀ), କାତ୍ୟାୟନ (ଦୂବଘାସ), ତୈତ୍ତିରୀୟ (ତିତିଲି ଚଢେଇ), ନାଗ (ସାପ) ଇତ୍ୟାଦି । ଏହି ଗୋତ୍ର—ବ୍ୟବସ୍ଥାରୁ ଜଣାଯାଏ- ପ୍ରତ୍ୟେକ ଜାତି ଯେତେ ଉଚ୍ଚ ବା ନୀଚ ବର୍ଣ୍ଣର ହେଉ, ସମସ୍ତେ ସେଇ ଟ୍ରାଇବାଲ୍ ଗୋଷ୍ଠୀରୁ ଉଦ୍ଭବ । ଆଦିମ ଅବସ୍ଥାରେ ସାନ ବଡ ମଣିଷଗୋଷ୍ଠୀ ଯେଉଁ ଗଣ Clan (କ୍ଲାନ୍) ବା Gens (ଜେନ) ନାମ ନେଇଥିଲା, ତାକୁ ଧରି ଏଇ ଗୋତ୍ର ସୃଷ୍ଟି । ଏବେ ସେମାନେ ତାଙ୍କରି ବଂଶଧର । ଆମେରିକା, ଅଷ୍ଟ୍ରେଲିଆରେ ରହିଥିବା ଆଦିମ ଗୋଷ୍ଠୀ ସେହିପରି ବିଭିନ୍ନ ଜନ୍ତୁ ବା ପ୍ରାଣୀମାନଙ୍କ ନାମରେ ନାମିତ । ଗୋତ୍ର ଆଦିମ ଗୋଷ୍ଠୀ ସଙ୍ଗଠନ । ତାହା ସେହି ଆଦିମ ସାମ୍ୟ ସମାଜର ଚିହ୍ନ । ତା ଭିତରେ ସାନ ବଡ, ଉଚ୍ଚ ନୀଚର ଭେଦ ନାହିଁ । ପ୍ରତ୍ୟେକ ଭାଇ ଭାଇ । ସେହି ଭାଇଚାରାର ସ୍ମୃତି ଗୋତ୍ରଦ୍ୱାରା ପ୍ରକାଶିତ । ଛାନ୍ଦୋଗ୍ୟ ଉପନିଷଦରେ ରହିଛି ଯେ କୁକୁରମାନେ ସାମ ଗାନ କରୁଥିଲେ, ଅର୍ଥାତ୍ କୁକୁରଗୋଷ୍ଠୀର ଲୋକେ ସାମ୍ୟ ଅବସ୍ଥା ଭିତରେ ରହିଥିଲେ । ସେହି ଲୋକଙ୍କର ବ୍ୟକ୍ତିସତ୍ତା, ବ୍ୟକ୍ତିଗତ ଜୀବନ, ସେହି ଟୋଟେମ ବା ଗୋଷ୍ଠୀର କାର୍ଯ୍ୟକଳାପ ଉପରେ ନିର୍ଭର କରେ । ଗୋତ୍ର ସେହି ଆଦିମ ସାମ୍ୟ-ଗଣତାନ୍ତ୍ରିକ ସ୍ମୃତିର ପରିଚୟ ।

ସମାଜରେ ବ୍ୟକ୍ତିଗତ ସମ୍ପତ୍ତିର ଆବିର୍ଭାବରେ ସେଇ ସାମ୍ୟ-ସମାଜର ଧ୍ୱଂସ ସ୍ତୂପ ଉପରେ ଗଢିଉଠିଛି ରାଷ୍ଟ୍ରଶକ୍ତି । ଧନସମ୍ପତ୍ତି କେନ୍ଦ୍ରୀଭୂତ ହେବା ସହିତ କେନ୍ଦ୍ରୀଭୂତ ହୋଇଛି ସାମାଜିକ କ୍ଷମତା । ତା ସହିତ ବିଶ୍ୱାସ କେନ୍ଦ୍ରୀଭୂତ ହେବାରେ ରୂପାନ୍ତରିତ ହୋଇଛି ଧର୍ମବିଶ୍ୱାସରେ । ଆଦିମ ସମାଜରେ ଧର୍ମର ଚେତନା ନ ଥିଲା କି ଗୋତ୍ର ଧର୍ମରୂପେ ଗୃହୀତ ହେଉନଥିଲା । ଗୋତ୍ର ଥିଲା ଏକ ଗୋଷ୍ଠୀର ସମସ୍ତଙ୍କର ବନ୍ଧନର ଡୋରି । ତାକୁ ସମସ୍ତେ ନିଜର ବୋଲି ମନେ କରୁଥିଲେ । ସେଥିରେ କାହାକୁ କୌଣସିପ୍ରକାର ପୂଜା ଉପାସନାର ପ୍ରଶ୍ନ ନ ଥିଲା । ଧନର ପୂଜା ସହିତ ଆରମ୍ଭ ହୋଇଛି ରାଷ୍ଟ୍ରଶକ୍ତିର ପୂଜା । ସାମ୍ୟର ପତନ ସହିତ ରୂପାନ୍ତରିତ ହୋଇଛି ଗୋତ୍ରର ବନ୍ଧନ । ତାହା ପ୍ରକାଶ ପାଇଛି ଏକ ଅଦୃଶ୍ୟ ସମ୍ପର୍କର ଆବେଗ ଭାବରେ । ଏହା ଦିନେ ମଣିଷର ଐକ୍ୟର ପ୍ରତୀକ, ତାର ଆତ୍ମବୋଧର ପରିଚୟ ଏବଂ ତାର ସାମ୍ୟ-ଜୀବନର ସଙ୍କେତ ହୋଇଥିଲା, ତାହା ଏବେ ଏକ ପ୍ରକାର ଦେବତାର ଆସନ ଲାଭ କଲା । ଅନ୍ୟମାନଙ୍କୁ ମୁଣ୍ଡିଆ ମାଇଲା ଭଳି ଶେଷରେ ମଣିଷ ଗୋଷ୍ଠୀର ପ୍ରତୀକ

ପ୍ରାଣୀ ପାଖରେ ନତମସ୍ତକ ହେଲା । ସେଇସବୁ ଗୋତ୍ର ମଣିଷର ଦେବତାରେ ପରିଣତ ହେଲେ ।

ଗୋତ୍ର ସାଧାରଣତଃ ଟୋଟେମ୍ ଅର୍ଥରେ ବ୍ୟବହୃତ ହୋଇଥାଏ । ତଦ୍ୱାରା କୌଣସି କୌଣସି ପ୍ରାଣୀ ବା ବସ୍ତୁକୁ ଅଦୃଶ୍ୟ ଭାବେ ବଂଶ ବା ଜ୍ଞାତିତ୍ୱର ପ୍ରତୀକ ଭାବେ ଧରାଯାଏ । ସେଥିରେ ଫୁଲ, ବୃକ୍ଷ, ଲତା, ପଶୁପକ୍ଷୀ ଆଦି ସମସ୍ତେ ରହିଛନ୍ତି । ମହାଭାରତ ଓ ରାମାୟଣରେ ବହୁପ୍ରକାର ମଣିଷଗୋଷ୍ଠୀଙ୍କ ନାମ ଦେଖିବାକୁ ମିଳେ । ଯଥା — ପେଚା, ବିଛା, କାଉ, ହାତୀ, ମେଣ୍ଢା, ଘୋଡା, ତାଳ, ଶାଳ, ବାଉଁଶ ଇତ୍ୟାଦି । ଋଗ୍‌ବେଦରେ ଗୋଟାଏ ଗୋଷ୍ଠୀର ମଣିଷ ଅଛନ୍ତି, ସେମାନେ ଅଜ ବା ଛେଳି । ମତ୍ସ୍ୟ, କଚ୍ଛପ ଆଦି ତ ରହିଛନ୍ତି । ଏହା କେବଳ ଭାରତରେ ନୁହେଁ, ଆଦିମ ଅବସ୍ଥାରେ ଥିବା ସାଧାରଣ ମଣିଷ ଗୋଷ୍ଠୀଙ୍କ ବୈଶିଷ୍ଟ୍ୟ । ତାଙ୍କର ବିଶ୍ୱାସ ଯେ କୌଣସି ବୃକ୍ଷଲତା ଓ ପଶୁପକ୍ଷୀଙ୍କଠାରୁ ତାଙ୍କର ଜନ୍ମ ।

ସେହି ଟୋଟମ ବା ଗୋତ୍ର ସମାଜରେ ଯେଉଁ ପ୍ରାଣୀ ସହିତ ମଣିଷର ଏକାନ୍ତବୋଧ ଥିଲା, ରାଷ୍ଟ୍ରଶକ୍ତିର ଆବିର୍ଭାବ ପରେ ଦେଖାଗଲା ଯେ ମଣିଷ ତା ଆଗରେ ଆଣ୍ଠୁମାଡି ପୂଜା ପ୍ରାର୍ଥନା ଆରମ୍ଭ କରିଛି । ଆଦିମ ଅଧିବାସୀଙ୍କ ସେଇ ଟୋଟେମ ଏବେ ଲୁପ୍ତ ହୋଇନାହିଁ । ସେମାନେ କେତେ ହିନ୍ଦୁ ଦେବତାମାନଙ୍କ ବାହନରେ ପରିଣତ ହୋଇଛନ୍ତି ।

ଯେଉଁ ଅହିଂସା ଓ ଆଧ୍ୟାତ୍ମିକତା ଘେନି ହିନ୍ଦୁମାନଙ୍କର ଏତେ ପ୍ରଚାର, ବେଦରେ ତାର ଉଲ୍ଲେଖ ନାହିଁ । କାରଣ ସେପରି ଅବସ୍ଥା ଆସିନାହିଁ । କୁରୁକ୍ଷେତ୍ର ଭଳି କୌଣସି ରକ୍ତାକ୍ତ ସଂଗ୍ରାମର କଳ୍ପନା ମଣିଷ ଏପର୍ଯ୍ୟନ୍ତ କରିପାରିପାରିନାହିଁ, ଯେଉଁଠି କି ରକ୍ତନଦୀର ବନ୍ୟାର ଶବ ସବୁ ଭାସିଯାନ୍ତି । ଆର୍ଯ୍ୟ ଜାତି ଭାରତରେ ପ୍ରବେଶ କରିଛି ହାତରେ ବର୍ଚ୍ଛା ଧରି । ହାଣ, ମାର, ଲୁଣ୍ଠନ ହୋଇଛି ତାଙ୍କର ସେତେବେଳର ଧର୍ମ । ଧ୍ୱଂସ କରିଛନ୍ତି ହରପ୍‌ପା, ମହେଞ୍ଜୋଦାରୋ ଭଳି ପ୍ରାଚୀନ ସଭ୍ୟତାକୁ । ଇନ୍ଦ୍ର "ନଗର ପରେ ନଗର ଧ୍ୱଂସ କରିବାରେ ଲାଗିଛନ୍ତି" । (୨.୧.୧୩ ଋକ୍‌ବେଦ) ପୁର ଧ୍ୱଂସ କରିବାରେ ଧୂରନ୍ଧର ହେତୁ ତାଙ୍କ ନାମ ହେଉଛି ପୁରନ୍ଦର । ତାଙ୍କର ଠିକ୍ ସେଇ କାର୍ଯ୍ୟ ହେତୁ ସେ ସମାଜରେ ଶ୍ରେଷ୍ଠ, ଗୌରବାନ୍ୱିତ ଓ ପ୍ରଶଂସିତ ବ୍ୟକ୍ତି । ତାଙ୍କର ବନ୍ଦନାରେ ବେଦ ମୁଖରିତ ।

ଅହିଂସା ଓ ବେଦ ଏ ଦୁହେଁ ପରସ୍ପର-ବିରୋଧୀ । ଅହିଂସାକୁ କେବଳ ବେଦର ବିରୋଧିତା ଦ୍ୱାରା ପ୍ରକାଶ କରାଯାଇପାରେ । ତାହା ପ୍ରକାଶ ପାଇଛି କପିଳ ମୁନିଙ୍କ କ୍ଷେତ୍ରରେ । ସେ ସର୍ବପ୍ରାଚୀନ ସାମ୍ୟସମାଜର ଲୋକ । ତାଙ୍କର ସାଂଖ୍ୟଦର୍ଶନ ସମସ୍ତଙ୍କ ଦ୍ୱାରା ସମ୍ମାନିତ । ସେ ବୁଦ୍ଧଙ୍କ ପୂର୍ବର । ବୁଦ୍ଧ କେତେକ ବିଷୟ ତାଙ୍କଠୁଁ ଆଣିଛନ୍ତି । କୃଷ୍ଣ କହନ୍ତି ଯେ; ସେ ହେଉଛନ୍ତି କପିଳମୁନି । ତାଙ୍କର ସେଇ ଅହିଂସା ଭାବ ସହିତ ବେଦ-ବିରୋଧିତାର ଦୃଷ୍ଟାନ୍ତ ମହାଭାରତର ଶାନ୍ତିପର୍ବର ୨.୬.୮

ଅଧ୍ୟାୟରେ ମିଳେ । ଦିନେ ମହର୍ଷି ତ୍ୱଷ୍ଟା ରାଜା ନହୁଷଙ୍କ ଘରେ ଅତିଥି । ଶାଶ୍ୱତ ବିଧାନ ଅନୁସାରେ ସେ ତାଙ୍କୁ ମଧୁପର୍କ ପ୍ରଦାନ ଲାଗି ଗୋବଧ କରିବାକୁ ଉଦ୍ୟତ ହେଉଛନ୍ତି । ଏହି ସମୟରେ ମହାତ୍ମା କପିଳ ଯଦୃଚ୍ଛାକ୍ରମେ ସେଠାରେ ଉପସ୍ଥିତ ହୋଇ ନହୁଷଙ୍କୁ ଗୋବଧ କରିବାରେ ଉଦ୍ୟତ ହେବା ଦେଖି ସ୍ୱୟଂ ଶୁଭକାରୀ ନୈଷ୍ଠିକ ବୁଦ୍ଧି ପ୍ରଭାବରେ ''ହା ବେଦ'' ଏହା ଉଚ୍ଚାରଣ କଲେ । ସେତେବେଳେ ସୌମ୍ୟରଶ୍ମି ନାମରେ ଋଷି ଯୋଗ ବଳରେ ଗୋ ମଧ୍ୟରେ ପ୍ରବେଶ କରି କପିଳଙ୍କୁ କହିଲେ ''ଆପଣ ବେଦ ବିହିତ ହିଂସା ଅବଲୋକନ କରି ବେଦ ପ୍ରତି ଅବଜ୍ଞା ପ୍ରଦର୍ଶନ କଲେ । ଆପଣ ହିଂସାଶୂନ୍ୟ ଧର୍ମ ଅବଲମ୍ବନ କରି ଚାଲିଛନ୍ତି । ତା କ'ଣ ବେଦ ବିହିତ ନୁହେଁ ?'' କପିଳ ମୁନି ସୌମ୍ୟରଶ୍ମିଙ୍କର ଯୁକ୍ତିକୁ ଓଲଟାଇ ଦେଇ କହିଲେ ''ବେଦରେ ଏ ବି ହୁଏ, ସେ ବି ହୁଏ । ତୁମର ଅନ୍ୟ ଯୁକ୍ତି ଥିଲେ କୁହ ।'' ........ ବେଦରେ କାର୍ଯ୍ୟ କରିବା — ନ କରିବା ଉଭୟ ବିଧି ରହିଛି । ବିଧି ଦ୍ୱାରା କାର୍ଯ୍ୟ ଆରମ୍ଭ ଓ ଅନାରମ୍ଭ ଉଭୟ ଦୋଷାବହ ବୋଲି ପ୍ରତିପନ୍ନ ହୁଏ । ବେଦ ଅନୁସାରେ କାର୍ଯ୍ୟର ଉଚିତ ଅନୁଚିତ ବିଚାର କରିବା ଅତ୍ୟନ୍ତ ଦୁଃସାଧ । ଯଦି ବେଦଶାସ୍ତ୍ର ଭିନ୍ନ ଯୁକ୍ତି ଓ ଅନୁମାନ ଦ୍ୱାରା ଅହିଂସା ଅପେକ୍ଷା ଆଉ ଉତ୍କୃଷ୍ଟ ଧର୍ମ ସ୍ଥିର କରିଥାଅ, ତାହା କୀର୍ତ୍ତନ କର । ଅତଏବ ବେଦରେ ସବୁ ଅଛି ବୋଲି ଯେଉଁମାନେ କହିଛନ୍ତି, ସେମାନେ ମଧ୍ୟ ବୁଝିବା ଦରକାର ଯେ 'ହଁ' ଓ 'ନାହିଁ' ଦୁଇକଥା ସେଠି ରହିଛି ।

ଅହିଂସା ଓ ବେଦର ବିରୋଧିତା ହେଲା କପିଳ ମୁନିଙ୍କର ବିଚାର । ସେ ନିଜେ ଥିଲେ ଅନାର୍ଯ୍ୟ-ସମ୍ଭୂତ ଆଦିମ ସାମ୍ୟସମାଜର । ଜଗନ୍ନାଥ ଆଦିମ ସାମ୍ୟସମାଜର ଭାବ—ସାମ୍ୟ, ମୈତ୍ରୀର ପ୍ରତୀକ ହେଲେ । ସାଂଖ୍ୟ ଦର୍ଶନ ହେଲା ସେଇ ସମାଜର ଦୃଷ୍ଟିକୋଣ । କାରଣ ଅହିଂସାର ଭାବ ଓ ଦର୍ଶନର ବାସ୍ତବ ଭିତ୍ତି କେବଳ ସେଇ ସମାଜରେ ହିଁ ସମ୍ଭବ ।

ଋଷିଗଣଙ୍କ ହିଂସା ପ୍ରତି ସମର୍ଥନ, ପଶୁହତ୍ୟା, ଗୋବଧ ଏବଂ ପୁର ଅଧିକାରୀ ଇନ୍ଦ୍ରଙ୍କ ସ୍ତୁତିଗାନରେ ସୀମିତ ନ ଥିଲା । ଏପରିକି ଯୁକ୍ତିରେ ନ ପାରିଲେ ସେମାନେ ପ୍ରତିପକ୍ଷ ବିରୋଧରେ ହିଂସାର ଧମକ ଦେଉଥିଲେ । ସେ ପୁଣି ଅନ୍ୟ କେହି ନୁହଁନ୍ତି ଉପନିଷଦର କର୍ତ୍ତା ସ୍ୱୟଂ ଯାଜ୍ଞବଲ୍‌କ୍ୟ । ବୃହଦାରଣ୍ୟକ ଉପନିଷଦର ତୃତୀୟ ଅଧ୍ୟାୟ ଷଷ୍ଠ ବ୍ରାହ୍ମଣରେ ଗାର୍ଗୀ ଓ ଯାଜ୍ଞବଲ୍‌କ୍ୟ ମଧ୍ୟରେ ଜଗତର ସୃଷ୍ଟି ନେଇ ଆଲୋଚନା ରହିଛି । ଆଲୋଚନା ଭିତରେ ଯେତେବେଳେ ଗାର୍ଗୀ ପ୍ରଶ୍ନ କରିଛନ୍ତି— ''କୁହ ଯାଜ୍ଞବଲ୍‌କ୍ୟ, ବ୍ରହ୍ମଲୋକ କେଉଁଠି ? କେଉଁଠି ପରିବ୍ୟାପ୍ତ'' ? ଯାଜ୍ଞବଲ୍‌କ୍ୟ ଉତ୍ତର କରିଛନ୍ତି, '' ତମର ମସ୍ତିଷ୍କ ଯେପରି ନିପତିତ ନ ହୁଏ, ସେଇ ବିଷୟ ନେଇ ଅତି-ପ୍ରଶ୍ନ କରିବା ଉଚିତ୍ ନୁହେଁ । ତୁମେ ସେଇ ଅତି-ପ୍ରଶ୍ନ କରୁଛ ?'' ତାପରେ ଗାର୍ଗୀ ନୀରବ ହୋଇ ରହିଛନ୍ତି ତର୍କରେ ପରାସ୍ତ ହେବା ଭୟରେ ନୁହେଁ, ମସ୍ତିଷ୍କ ନିପତିତ ହେବା ଭୟରେ ।

ସେଇ ଅଧ୍ୟାୟର ଅଷ୍ଟମ ବ୍ରାହ୍ମଣରେ ଅଛି— ପୁଣି ତର୍କ ଆରମ୍ଭ ହୋଇଛି ଶାକଲ୍ୟ ଓ ଯାଜ୍ଞବଲ୍କ୍ୟଙ୍କ ମଧ୍ୟରେ । ଶାକଲ୍ୟ ବୁଦ୍ଧିମତୀ ଗାର୍ଗୀଙ୍କ ପରାମର୍ଶ ନେଇ ନାହାଁନ୍ତି । ତାଙ୍କର ଆଧିଦୈବିକ, ଆଧିଭୌତିକ ଜ୍ଞାନ ଖୁବ୍ ଥିଲା । କିନ୍ତୁ ଉପନିଷଦର ଆଧ୍ୟାତ୍ମିକ ଜ୍ଞାନ ନ ଥିଲା । ଶାକଲ୍ୟଙ୍କ ପ୍ରଶ୍ନରେ ଯାଜ୍ଞବଲ୍କ୍ୟ ଉତ୍ୟକ୍ତ ହୋଇ ତାଙ୍କୁ ଫାନ୍ଦରେ ପକାଇବା ଉଦ୍ଦେଶ୍ୟରେ କହିଛନ୍ତି, ''ମୁଁ ଉପନିଷଦର ବ୍ରହ୍ମ କଥା ପଚାରୁଛି, ଯଦି ସେ ବିଷୟରେ କହି ନ ପାର, ତୁମର ମସ୍ତକ ନିପତିତ ହେବ ।'' ଶାକଲ୍ୟ ତାହା ଜାଣନ୍ତି ନାହିଁ, ତେଣୁ ତାଙ୍କର ମସ୍ତକ ଖସିପଡ଼ିଲା । ବ୍ରାହ୍ମଣମାନେ ଚୁପ୍ ହୋଇଗଲେ । ଯାଜ୍ଞବଲ୍କ୍ୟ ବିଜୟୀ ହେଲେ । ସେହିପରି ନରହତ୍ୟା ଦ୍ୱାରା ବିଜୟର ଉଦ୍ଦେଶ୍ୟ କ'ଣ ? ବୃହଦାରଣ୍ୟକର ଚତୁର୍ଥ ଅଧ୍ୟାୟ ପ୍ରଥବ ବ୍ରାହ୍ମଣର ପ୍ରଥମ କଥା ହେଉଛି — ରାଜା ଜନକ ଯାଜ୍ଞବଲ୍କ୍ୟଙ୍କୁ ପ୍ରଶ୍ନ କଲେ — ''ଆପଣଙ୍କ ଆସିବାର ଉଦ୍ଦେଶ୍ୟ କ'ଣ ? ସୂକ୍ଷ୍ମ ତତ୍ତ୍ୱର ଆଲୋଚନା ନା ପଶୁଲାଭର ଇଚ୍ଛା ।'' ଯାଜ୍ଞବଲ୍କ୍ୟଙ୍କ ଉତ୍ତର ''ଉଭୟ ଉଦ୍ଦେଶ୍ୟ'' ।

କିନ୍ତୁ ମୈତ୍ରେୟୀ ଯାଜ୍ଞବଲକ୍ୟ ଭଳି ବ୍ରହ୍ମବାଦିନୀ ନ ଥିଲେ । ସେ କହନ୍ତି— ''ଯେଉଁ ବିତ୍ତ ଅମୃତ ଦିଏ ନାହିଁ , ତାକୁ ନେଇ ମୁଁ କ'ଣ କରିବି ?'' କିନ୍ତୁ ଯାଜ୍ଞବଲ୍କ୍ୟଙ୍କ କ୍ଷେତ୍ରରେ ବିତ୍ତଲାଭ ଓ ବ୍ରହ୍ମଜ୍ଞାନ ପରସ୍ପର- ବିରୋଧୀ ନୁହନ୍ତି । ତେଣୁ ବୃହଦାରଣ୍ୟକ ଉପନିଷଦର ଦ୍ୱିତୀୟ ଅଧ୍ୟାୟର ଚତୁର୍ଥ ବ୍ରାହ୍ମଣ ଓ ଚତୁର୍ଥ ଅଧ୍ୟାୟର ପଞ୍ଚମ ବ୍ରାହ୍ମଣ ଅନୁଯାୟୀ ଯାଜ୍ଞବଲ୍କ୍ୟ ମୈତ୍ରେୟୀଙ୍କୁ ଶିକ୍ଷାଦେଇ କହିଛନ୍ତି ଯେ, ସମସ୍ତ ବିଶ୍ୱ ହିଁ ଆତ୍ମସ୍ୱରୂପ । ଅର୍ଥାତ୍ ଅମୃତମୟ— ଅର୍ଥାତ୍ ଜଗତକୁ ପରମାତ୍ମାର ରୂପ ଭାବି ଭୋଗକରେ , ସେ ଭୋଗୀ ନୁହେଁ— ଯୋଗୀ ।

ଅତଏବ ଅନ୍ୟ କିଏ ଭୋଗ କରୁ ବା ନ କରୁ, ଭୋକରେ ରହିଥାଉ ପଛେ, ଜଗତକୁ ପରମାତ୍ମାଙ୍କ ରୂପ ଭାବି ଭୋଗ କର ଏହା ହେଲା ଉପନିଷଦର ସର୍ବୋଚ୍ଚ ଅଧିକାରୀ ଯାଜ୍ଞବଲ୍କ୍ୟଙ୍କ ମହାନ ବାଣୀ । ସେଥିଲାଗି ଯଦି ହିଂସା, ହତ୍ୟା ଯାହା ଆବଶ୍ୟକ, ତାହା ସ୍ୱାଗତଯୋଗ୍ୟ । ଏ ସବୁ ଜଗନ୍ନାଥଙ୍କ ସାମ୍ୟ ମୈତ୍ରୀ, ପ୍ରୀତି ଓ ଅହିଂସା ମର୍ମର ସଂପୂର୍ଣ୍ଣ ଓଲଟା-ଶ୍ରେଣୀ-ବିଭକ୍ତ ସମାଜର ସେଇ ଧାରଣା ପ୍ରତିଷ୍ଠା କରିବାକୁ ହେଲେ ବେଦର ଆଦ୍ୟ ଧାରଣାକୁ ଆଗ ଭାଙ୍ଗିବାକୁ ପଡିବ । କାରଣ ଆଗର ବୈଦିକ ସମାଜରେ ଈଶ୍ୱର, ଜାତିଭେଦ କି ବ୍ରାହ୍ମଣ , ପୁରୋହିତ ନାହାନ୍ତି । ତାହା ତାର ସ୍ୱଭାବଗତ ଚରିତ୍ର । ଅଥଚ ଏବର ସମାଜରେ ଠିକ୍ ସେଇ ଜିନିଷଗୁଡିକ ଦରକାର । ସେଥିଲାଗି ବେଦକୁ ଆକ୍ରମଣ କରି ନ୍ୟୁନ କରିବା, ତାର ମୂଳ ଭିତ୍ତି ଓ ଆଦର୍ଶକୁ ଭାଙ୍ଗିବା, ତାର ସେଇ ଦୃଷ୍ଟିକୋଣକୁ ପ୍ରତ୍ୟାଖ୍ୟାନ କରିବା ବିନା ତାହା ସମ୍ଭବ ନୁହେଁ । ତାକୁ ଯିଏ କରିଛି, ସେ ହେଲା ଶ୍ରୀମଦ୍ ଭଗବଦ୍ ଗୀତା । ତାକୁ ପଣି ପ୍ରକାଶ କରଯାଇଛି ଖୋଦ୍ ଶ୍ରୀକୃଷ୍ଣଙ୍କ ମୁହଁରେ । ଏକମାତ୍ର ଉଦ୍ଦେଶ୍ୟ, ପୂର୍ବର ବୈଦିକ ଧାରଣାକୁ ଭାଙ୍ଗି ଏକ ନୂତନ ଆଦର୍ଶ ଧରଣାକୁ ପ୍ରତିଷ୍ଠା କରିବା ।

ଦ୍ୱିତୀୟ ଅଧ୍ୟାୟ ୪୨-୪୫ ଶ୍ଳୋକ ହେଉଛି ତା'ର ଜ୍ୱଳନ୍ତ ଦୃଷ୍ଟାନ୍ତ । ତାହା କହେ, ଯେଉଁମାନେ ଆପାତଃ ଚିତ୍ତାକର୍ଷକ ରମଣୀୟ ବାକ୍ୟ ଶ୍ରବଣରେ ଅନୁରକ୍ତ, ବହୁ ଫଳଦାୟକ ବେଦବାକ୍ୟ ପ୍ରତି ଆସକ୍ତ, ଯେଉଁମାନେ କାମନା ପରାୟଣ, ସ୍ୱର୍ଗ ଯେଉଁମାନଙ୍କ ଲାଗି ପୁରୁଷାର୍ଥ — ସେଇ ବିବେକହୀନ ମୂଢ଼ ବ୍ୟକ୍ତିମାନଙ୍କ ବୁଦ୍ଧି ସମାଧି ବିଷୟରେ ସଂଶୟଶୂନ୍ୟ ହୁଏ ନାହିଁ । ହେ ଅର୍ଜୁନ, ବେଦ ସବୁ ସକାମ ବ୍ୟକ୍ତିମାନଙ୍କର କର୍ମଫଳ ପ୍ରତିପାଦକ । ଏବେ ତମେ ଧୈର୍ଯ୍ୟଶୀଳ, ଅପ୍ରମାଦୀ ହୋଇ ନିଷ୍କାମ ହୁଅ । ତମର ବୁଦ୍ଧି ନାନାବିଧ ବୈଦିକ, ଭୌତିକ ବିଷୟରେ ଉଦ୍‌ଭ୍ରାନ୍ତ ହୋଇଛି । ଯେତେବେଳେ ତାହା ବିଷୟାନ୍ତରରେ ଆକୃଷ୍ଟ ନହୋଇ ସ୍ଥିର ଭାବରେ ପରମେଶ୍ୱରରେ ଅବସ୍ଥାନ କରିବ, ସେତେବେଳେ ତମେ ତତ୍ତ୍ୱଜ୍ଞାନ ଲାଭ କରିବ । ପୁଣି ୪୬ ଶ୍ଳୋକରେ କୁହାଯାଇଛି— ସର୍ବତ୍ର ଜଳପ୍ଲାବିତ ହେଲେ ଯେପରି ଜଳାଶୟର ପ୍ରୟୋଜନ ରହେ ନାହିଁ, ସେହିପରି ସର୍ବବ୍ୟାପୀ ଈଶ୍ୱରଙ୍କ କ୍ଷେତ୍ରରେ ବେଦର କୌଣସି ପ୍ରୟୋଜନ ରହେ ନାହିଁ , ସେହିପରି ସର୍ବବ୍ୟାପୀ ଇଶ୍ୱରଙ୍କ କ୍ଷେତ୍ରରେ ବେଦର କୌଣସି ପ୍ରୟୋଜନ ନାହିଁ ।

ଏହାର ଅର୍ଥ ଅତି ସ୍ପଷ୍ଟ । ବେଦ ଅନ୍ତଃସାର ଶୂନ୍ୟ, କିନ୍ତୁ ଆପାତଃ ରମଣୀୟ, ସୁଖକର । କାରଣ ତାହା ବାସନାପୂର୍ଣ୍ଣ । ସ୍ୱର୍ଗାଦି କାମନାକୁ ଜାଗ୍ରତ କରେ । ଯେଉଁମାନେ ସେଇ କାମନା ବାସନା ପ୍ରତି ଆସକ୍ତ ଅର୍ଥାତ୍ ବେଦରେ ବିଶ୍ୱାସୀ, ସେମାନେ ମୂଢ଼, ବିବେକହୀନ । ସେଥିଯୋଗୁଁ ଅର୍ଜୁନ ମୋହଗ୍ରସ୍ତ ଓ ବିଭ୍ରାନ୍ତ । ଈଶ୍ୱର-ଜ୍ଞାନ ତୁଳନାରେ ବେଦ ଗୋଟାଏ କ୍ଷୁଦ୍ର ଗାଡିଆ— ଅତଏବ ବେଦକୁ ଛାଡି ଈଶ୍ୱରଙ୍କୁ ଧର ।

କାରଣ ବେଦ ସକାମ ଆସକ୍ତି, ଈଶ୍ୱର ନିଷ୍କାମ ଓ ଅନାସକ୍ତ ସକାମ ହେଲେ ମଣିଷ ଚାହିଁବ, ଖୋଜିବ ତାର କାମର ଫଳକୁ, ଦେଖିବ ତା ଗଲା କୁଆଡେ ଓ ତାକୁ ନେଲା କିଏ ? କିନ୍ତୁ ନିଷ୍କାମ ହେଲେ ତାକୁ ଚାହିଁବା ଲୋଡିବାର ପ୍ରଶ୍ନ ନାହିଁ। କାମର ଫଳ ଯୁଆଡେ ଯାଉ, ଯିଏ ନେଉ ପଛେ । ବେଦକୁ ଆକ୍ରମଣ କରିବାର ଅନ୍ୟ ଏକ ପ୍ରଧାନ କାରଣ ବର୍ଣ୍ଣାଶ୍ରମର ପ୍ରତିଷ୍ଠା କରିବା, ଜାତିଭେଦକୁ କାଏମ କରିବା । ବର୍ଣ୍ଣାଶ୍ରମ ହେଉଛି ପୁତ୍ରପୌତ୍ରାଦିକ୍ରମେ ନୀଚବର୍ଣ୍ଣଙ୍କ ଉପରେ ଉଚ୍ଚବର୍ଣ୍ଣଙ୍କର ଆଧିପତ୍ୟ ବିସ୍ତାରର ଏକ ଅଲଙ୍ଘନୀୟ ଉପାୟ । ସେହି ଆଧିପତ୍ୟ ସାମାଜିକ, ଅର୍ଥନୈତିକ, ରାଜନୈତିକ ଆଦି ସର୍ବକ୍ଷେତ୍ରବ୍ୟାପୀ । ସମସ୍ତ ପ୍ରକାର ନିର୍ଯ୍ୟାତନା, ଲୁଣ୍ଠନ, ଅତ୍ୟାଚାର, ଶୋଷଣ ହେଲା ତାର ଏକମାତ୍ର ତାତ୍ପର୍ଯ୍ୟ । ପୂର୍ବର ବୈଦିକ ସମାଜିକ ବ୍ୟବସ୍ଥା ରହିଥିବାଯାଏ ତାହା କସ୍ମିନ୍‌କାଳେ ସମ୍ଭବ ହୁଅନ୍ତା ନାହିଁ ।

ସେହି ବ୍ୟବସ୍ଥାକୁ ଦୃଢ଼ ଓ ସ୍ଥାୟୀ କରିବାର ଏକମାତ୍ର ବାଟ ହେଉଛି ଜାତିର ବିଶୁଦ୍ଧତାକୁ ରକ୍ଷା କରିବା । ମଣିଷକୁ ଜାତି ଓ କର୍ମ ଭିତ୍ତି ଭିତରେ ଏମିତି ବାନ୍ଧିଦେବା, ଯେପରିକି ସେମାନେ କେବେ ମିଶିପାରିବେ ନାହିଁ , ନିଜ ଜାତି କର୍ମ୍ମ ଛାଡି ଅନ୍ୟ କର୍ମ୍ମ ଧରିପାରିବେ ନାହିଁ । ତାର ଏକମାତ୍ର ଉପାୟ ହେଉଛି— ଦୁଇ ଭିନ୍ନ ଭିନ୍ନ

ଜାତିର ମିଳନରେ ଜାତ ସନ୍ତାନକୁ ବର୍ଣ୍ଣସଙ୍କର ଆଖ୍ୟା ଦେଇ ତାକୁ ବନ୍ଦ କରିବା । ନ ହେଲେ ବର୍ଣ୍ଣଭେଦ ସ୍ୱତଃ ଲୋପ ପାଇବ । ବର୍ଣ୍ଣଭେଦ ଲୋପ ହେଲେ ଉଚ୍ଚବର୍ଣ୍ଣଙ୍କର ନୀଚବର୍ଣ୍ଣଙ୍କ ଉପରେ ନିରଙ୍କୁଶ ଆଧିପତ୍ୟର ଭିତ୍ତି ଲୋପ ପାଇବ । ଅର୍ଜ୍ଜୁନ ବିଷାଦ ଯୋଗରେ ଗୀତାର ଦ୍ୱିତୀୟ ଅଧ୍ୟାୟ ୩୯-୪୩ ଶ୍ଳୋକରେ ଠିକ୍ ସେଇକଥା ଉତ୍ଥାପନ କରିଛନ୍ତି । ଯୁଦ୍ଧ ହେଲେ ହତ୍ୟାର ସ୍ରୋତ ଛୁଟିବ, କୁଳକ୍ଷୟ ହେବ, କୁଳନାଶ ହେଲେ ସ୍ତ୍ରୀମାନେ ବ୍ୟଭିଚାରିଣୀ ହେବେ, ଫଳରେ ବର୍ଣ୍ଣସଙ୍କର ଜାତ ହେବେ, ଧର୍ମ ରସାତଳକୁ ଯିବ । କୃଷ୍ଣ କର୍ମ ଦିଗରୁ ସେଇକଥା କହିଥାଆନ୍ତି, ଗୀତାର ତୃତୀୟ ଅଧ୍ୟାୟ ୨୩-୨୪ ରେ । ଏ ଶ୍ଳୋକର ମର୍ମ୍ମ ହେଲା , କୃଷ୍ଣ କହନ୍ତି, ଏ ତିନିଲୋକରେ ମୋର କିଛି କର୍ତ୍ତବ୍ୟ ନାହିଁ । ଅପ୍ରାପ୍ତ ବା ପ୍ରାପ୍ତବ୍ୟ ବୋଲି କିଛି ନାହିଁ । ତଥାପି ମୁଁ କର୍ମ୍ମ କରୁଛି । ଯଦି ମୁଁ କର୍ମ୍ମ ନ କରେ, ଲୋକେ ଉଛନ୍ନ ହେବେ । ମୁଁ ଆଦର୍ଶ ନ ଦେଖାଇଲେ ଲୋକେ ସ୍ୱଧର୍ମ କରିବେ ନାହିଁ । ଧର୍ମ ଲୋପ ହେବ । ବିଶୃଙ୍ଖଳା ଓ ବ୍ୟଭିଚାର ବ୍ୟାପିବ । ମୁଁ ବର୍ଣ୍ଣସଙ୍କରର କର୍ତ୍ତା ହେବି । ପ୍ରଜା ନାଶ ଯିବେ । ଅର୍ଥାତ୍ — ବର୍ଣ୍ଣସଙ୍କର ହେଲେ, ଜାତିଙ୍କର ମିଳନ ଘଟିଲେ, ଜାତିକାମ ବୋଲି ଆଉ କିଛି ରହିବ ନାହିଁ । ଫଳରେ ସବୁ ନାଶ ଯିବ । ଉଚ୍ଚବର୍ଣ୍ଣ ନୀଚବର୍ଣ୍ଣ ଏକାକାର ହୋଇଯିବେ ।

ଅଥଚ, କୃଷ୍ଣ ଓ ଅର୍ଜ୍ଜୁନ ଉଭୟ ବର୍ଣ୍ଣସଙ୍କର ବା ସେଇ କୁଳରେ ଜାତ । କ୍ଷତ୍ରିୟ ଯଯାତି ଓ ବ୍ରାହ୍ମଣକନ୍ୟା ଦେବଯାନୀଙ୍କ ମିଳନରୁ ଯଦୁକୁଳର ଜନ୍ମ । ସେହିପରି ଅସୁରକନ୍ୟା ଦାସୀ ଶୂଦ୍ରା ଶର୍ମିଷ୍ଠା ଓ ସେଇ କ୍ଷତ୍ରିୟ ଯଯାତିଙ୍କର ମିଳନରୁ ପୁରୁ, ଦୁଷ୍ମନ୍ତ, ଭରତଙ୍କର ବଂଶର ଜନ୍ମ । ଧୃତରାଷ୍ଟ୍ର ଓ ପାଣ୍ଡୁ ହେଲେ ଭୀଷ୍ମଙ୍କ ବିମାତା କୈବର୍ତ୍ତକନ୍ୟା ସତ୍ୟବତୀଙ୍କ ନାତି । ସେମାନେ ମଧ୍ୟ ''ନିୟୋଗ'' ପ୍ରଥା ଦ୍ୱାରା ଜାତ । ଖୋଦ୍ ଅର୍ଜ୍ଜୁନ ମଧ୍ୟ ଇନ୍ଦ୍ରସୁତ — ବାସବନନ୍ଦନ । କୃଷ୍ଣଙ୍କର ମାତା ଦେବକୀ ଅସୁର କଂସର ଭଉଣୀ ହେଲାବେଳେ ତାଙ୍କର ପିତା ବସୁଦେବ ହେଲେ କ୍ଷତ୍ରିୟ । ମହାଭାରତରେ କ୍ୱଚିତ ଚରିତ୍ର ଭେଟିବ, ଯିଏ ବର୍ଣ୍ଣସଙ୍କର ନୁହନ୍ତି । ତାହା ଜଣାଇଦିଏ —ଜାତିଭେଦ ସେତେବେଳେ ଏତେ ନ ଥିଲା । ପରବର୍ତ୍ତୀ କାଳରେ ଗୀତା ଦ୍ୱାରା ତାହା ଯୋଡାଯାଇଛି । ପୃଥିବୀରେ ଯୁଦ୍ଧ, ଦୁର୍ଭିକ୍ଷ, ମହାମାରୀ, ଅନାହାର ଆଦି ଅଶେଷ ବିପତ୍ତି ଥିଲାବେଳେ ଗୀତା ଚକ୍ଷୁରେ ବର୍ଣ୍ଣସଙ୍କରଟା ହେଉଛି ଏକ ମାତ୍ର ବିପତ୍ତି ।

କାବ୍ୟ ଓ ପୁରାଣରେ ଏପରି ଅଦଳ ବଦଳ, ଯୋଗ ବିଯୋଗ ଏକ ସାଧାରଣ କଥା । ନିଜର ଦୃଷ୍ଟିକୋଣରୁ ତାହା କରାଯାଇଥାଏ, ଏବେ ବି ହେଉଛି । ଗୀତାର ଜାତିଭେଦ ଆଜି ଓଡିଆ ଅକ୍ଷର ଭିତରେ ଜାତିଭେଦ ସୃଷ୍ଟି କରିଛି । ଆଗେ ଗୋପବନ୍ଧୁ, ନୀଳକଣ୍ଠ ପ୍ରଭୃତି 'ଦାସ' ବ୍ୟବହାର କରୁଥିଲାବେଳେ ଏବେ ରାମଲକ୍ଷ୍ମଣଗଣ 'ଦାଶ' ବ୍ୟବହାର କରନ୍ତି । ଏକମାତ୍ର ଉଦ୍ଦେଶ୍ୟ :—ଶୂଦ୍ର ଓ ଲୋକଙ୍କ ଠାରୁ ନିଜକୁ ଅଲଗା କରି ଉଚ୍ଚବର୍ଣ୍ଣ ବ୍ରାହ୍ମଣ ବୋଲି ଦର୍ଶାଇବା । ନିଜର

ଜାତିଗତ ଗର୍ବ ଅହଂଙ୍କାରକୁ ପ୍ରକାଶ କରିବା । ସେହି ପ୍ରଚାର ଦ୍ୱାରା ଓଡିଆ ଭାଷାରେ ତାର ପ୍ରଚଳନ ଆରମ୍ଭ ହେଲାଣି । ଆଉ କିଛିଦିନ ପରେ କାଳକ୍ରମେ ତାହା ଦାନା ବାନ୍ଧିବ । ଶେଷକୁ ଓଡିଆ ଅକ୍ଷରର ଜାତିଗତ ବିଭାଜନ ତାର ବୈଶିଷ୍ଟ୍ୟରେ ପରିଣତ ହେବ । ଏହା ଏକ ଦିଗରେ ଗୀତାର ସେଇ ଦୃଷ୍ଟି, ସ୍ୱାର୍ଥ, କୌଶଳକୁ ଯେପରି ପ୍ରକାଶ କରେ, ଅନ୍ୟ ଦିଗରେ ସେହି ପ୍ରକ୍ରିୟା ଗୀତାରେ ଭଗବାନଙ୍କ ମୁହଁରେ ପ୍ରକାଶିତ ଜାତିଭେଦର ଉଦ୍ଦେଶ୍ୟମୂଳକ ପ୍ରଚାରକୁ ସେମିତି ପ୍ରତିପାଦିତ କରିଥାଏ ।

ବେଦ ବିରୋଧରେ ଏଇ ଅଭିଯାନ କାର୍ଯ୍ୟତଃ ପ୍ରକୃତରେ ଜଗନ୍ନାଥଭାବ ବିରୁଦ୍ଧରେ ଅଭିଯାନ । ବେଦର ବିଚାର, ମଣିଷର ଚିନ୍ତା ରାଜ୍ୟରେ, ତାର ଆଲୋଚନା ଭିତରେ । କିନ୍ତୁ ଜଗନ୍ନାଥ ଭାବର ପ୍ରୟୋଗ, ସାମାଜିକ ବାସ୍ତବତା ଭିତରେ, କାର୍ଯ୍ୟକ୍ଷେତ୍ରରେ । ବେଦକୁ ବିଭିନ୍ନଭାବେ ବ୍ୟାଖ୍ୟା କରାଯାଇପାରେ । ତା ପ୍ରତି ବିଭିନ୍ନ ମତ ଓ ବିଚାର ଆରୋପ କରାଯାଇପାରେ । ଏପରିକି ତାର ମୂଳ ମର୍ମ୍ମକୁ ମଧ୍ୟ ଉଡାଇ ଦିଆଯାଇପାରେ । କିନ୍ତୁ ଜଗନ୍ନାଥ ଭାବକୁ ଉଡାଇବା ଅସମ୍ଭବ । ଜଗନ୍ନାଥ ତାଙ୍କ ଭାବଠାରୁ ଅଭିନ୍ନ । ତାଙ୍କର ସେଇ ଭାଗ ଯୋଗୁ ହିଁ, ସେ ଜଗନ୍ନାଥ । ତାହା ଗୀତାର ଭଗବାନଙ୍କ ତୁଳନାରେ ଅଧିକ ପ୍ରାଚୀନ, ଅଧିକ ଶ୍ରେଷ୍ଠ ଓ ଅଧିକ ମହତ୍ । ମାନବ ବିକାଶର ଗୋଟାଏ, ପର୍ଯ୍ୟାୟରେ ଈଶ୍ୱର ଧାରଣା ଯେପରି ଆସିଛି, ସେହିପରି ଆଉ ଗୋଟାଏ ପର୍ଯ୍ୟାୟରେ ତାର ବିଦାୟ ସ୍ୱାଭାବିକ, ସୁନିଶ୍ଚିତ । କିନ୍ତୁ ସେମିତି ରହୁଥିବେ ଜଗନ୍ନାଥ — ଯେତେଦିନଯାଏ ଧରାପୃଷ୍ଠରେ ମଣିଷର ଅସ୍ତିତ୍ୱ ରହିଛି ।

## ଜଗନ୍ନାଥ-ଭାବର ସୃଜନଶୀଳ ପ୍ରୟୋଗ

ଉପନିଷଦରେ ସେଇ ଆତ୍ମା ବିରୋଧରେ ବୁଦ୍ଧ ଏକ ବିଦ୍ରୋହ । ସେ ଉପନିଷଦର ପ୍ରତ୍ୟେକ ମତକୁ କେବଳ ପ୍ରତ୍ୟାଖ୍ୟାନ କରିନାହାନ୍ତି, ତା' ବିରୋଧରେ ନିଜର ଏକ ଦୃଢ ବିକଳ୍ପ ମତ ଉପସ୍ଥାପିତ କରିଛନ୍ତି । ସେ ବି ମଣିଷର ମୁକ୍ତି ଚାହିଁଛନ୍ତି, କିନ୍ତୁ ଉପନିଷଦ ପରି ପରଲୋକରେ ନୁହେଁ, — ତାହା ଏଇ ପୃଥିବୀ ବକ୍ଷରେ, ଇହଲୋକରେ ।

ସେଇ ବୁଦ୍ଧ-ଦନ୍ତ ଯଦି ଜଗନ୍ନାଥଙ୍କ ଆତ୍ମା ହୁଏ, ତେବେ ବୁଦ୍ଧଙ୍କୁ ଅନୁସରଣ ନ କରି ଜଗନ୍ନାଥଙ୍କ ଆତ୍ମାକୁ ବା କିପରି ଚିହ୍ନିହେବ ? ଏ ପର୍ଯ୍ୟନ୍ତ ସେହି ଆତ୍ମା ଆଲୋଚିତ ନ ହେବାର କ'ଣ ବା କାରଣ ? ଏପରି ଆଲୋଚନା ନ ହେବାଟା ଆକସ୍ମିକ ଘଟଣା ନୁହେଁ, ଏହା ଇଚ୍ଛାକୃତ । କାରଣ ସେହି ଆଲୋଚନା ଅସଲରେ ଅତି ଅପ୍ରିୟ ସତ୍ୟକୁ ପ୍ରକାଶ କରେ । ସମାଜର ବଦ୍ଧମୂଳ ଧାରଣାକୁ ଆଘାତ କରେ । ବିଶେଷକରି, ବେଦାନ୍ତ ବା ଉପନିଷଦକୁ ଆକ୍ରମଣ କରିବା ସହିତ ସମାଜର କର୍ତ୍ତୃତ୍ୱକାରୀ ଶ୍ରେଣୀର ଜୀବନ-ନାଡିକାକୁ ବିପନ୍ନ କରେ । ତାହା କ'ଣ ସେଇ ଆତ୍ମାକୁ ଏଡିଦେଇ ଯିବାର କାରଣ ନୁହେଁ ? କାରଣ, ସେଇ ଦାନ୍ତ ଯଦି ଆତ୍ମା ହୁଏ — ତେବେ ଜଗନ୍ନାଥଙ୍କ ମହତ୍ତ୍ୱ ସେଇ ବୌଦ୍ଧଭାବର ମର୍ମ୍ମରେ ହିଁ ନିହିତ ହେବ । ଏହା

ଅତି ସ୍ୱାଭାବିକ କଥା । ସମାଜରୁ ଦୁଃଖ ନିର୍ଯ୍ୟାତନାର କାରଣ ବିଲୋପ ଯଦି ବୁଦ୍ଧଙ୍କ ତପସ୍ୟା ବା ଅନ୍ୱେଷଣର ଉଦ୍ଦେଶ୍ୟ ହୁଏ, ତେବେ ଜଗନ୍ନାଥଙ୍କ ସେଇ ମୂଳଭାବ — ସାମ୍ୟ, ମୈତ୍ରୀ ଓ ପ୍ରୀତିର ତାହା ପରିପୂରକ ହେବା ଅବଶ୍ୟମ୍ଭାବୀ ।

ବୁଦ୍ଧଙ୍କ ସମୟ ହେଉଛି ଆଦିମ ଟ୍ରାଇବାଲ ଓ ଉପଜାତି ଗୋଷ୍ଠୀ ସମାଜର ପତନ ଓ ରାଷ୍ଟ୍ରଶକ୍ତିର ଅଭ୍ୟୁଦୟର ସମୟ । ସେଇ ଉପଜାତି ସମାଜର ଧ୍ୱଂସ ଉପରେ ଠିଆହୋଇଛି ଦୁର୍ଦ୍ଧର୍ଷ ରାଷ୍ଟ୍ରଶକ୍ତି । ବିସ୍ତାର ଲାଭ କରିଛି ମଗଧ, କୋଶଳ ଭଳି ବିରାଟ ବିରାଟ ସାମ୍ରାଜ୍ୟ । ତାହା ଗୋଟାକ ପରେ ଗୋଟିଏ କ୍ଷୁଦ୍ର ଆଦିମ ଉପଜାତି ଗୋଷ୍ଠୀକୁ ଗ୍ରାସ କରି ସେମାନଙ୍କୁ ନିଜର ଅଧୀନ କରିଚାଲିଛି । ଲୋପ ପାଇଛି ସେ ସମାଜର ସେଇ ଆଦିମ ସାମ୍ୟ ନୀତି, ଗଣତାନ୍ତ୍ରିକ ଜୀବନ ପ୍ରଣାଳୀ । ତାହା ସ୍ଥାନରେ ଦେଖାଦେଇଛି ରାଷ୍ଟ୍ରର କେନ୍ଦ୍ରୀଭୂତ ଶାସନ, କୋଠ ସମ୍ପତ୍ତିର ଅପହରଣ, କର, ଟିକସ, ଋଣ, ଆଉ ଲୁଣ୍ଠନ । ପାଶବିକ ଭୋଗବିଳାସ ଆଉ ଜଘନ୍ୟ ସ୍ୱାର୍ଥପରତା ଆଦି ଯାହାକି ପୂର୍ବେ କେବେ ଦେଖାନଥିଲା, ସେତେବେଳେ ପୂର୍ବର ସେଇ ସାମ୍ୟ ସମାଜର ଅବଶେଷ ବହୁ ସ୍ଥାନରେ ତିଷ୍ଠି ରହିଥିଲା । ମଲ୍ଲକ, ବ୍ରାଜିକି, ଲିଚ୍ଛବୀ, କୁକ୍କୁର, କୁରୁ-ପାଞ୍ଚାଳ ଶାକ୍ୟମାନେ ତେବେ ବି ଉପଜାତି ସମାଜର ସରଳ ଜୀବନ ଭିତରେ ରହିଥିଲେ । ଲୋକଙ୍କ ମନରେ ତାର ସ୍ମୃତି ଜାଗରୂକ ଥିଲା । ସେଇ ଟ୍ରାଇବାଲ ଗୋଷ୍ଠୀ ସମାଜର ଗଣତାନ୍ତ୍ରିକ ଜୀବନ, ସାମ୍ୟ ଓ ଭ୍ରାତୃତ୍ୱର ଭାବକୁ ଝୁରିହେଉଥିଲେ । ତେଣୁ ତାର ପତନକୁ ନିଜର ଦୁଃଖର କାରଣ ଭାବେ ଦେଖିବା ଅତି ସ୍ୱାଭାବିକ । ଅନ୍ୟଦିଗରେ କିନ୍ତୁ ଉତ୍ପାଦନ ପ୍ରଣାଳୀର ବିକାଶରେ ସାମ୍ରାଜ୍ୟପ୍ରତିଷ୍ଠା — ଆଉ ତାର ସେହି ବିକାଶ ଲାଗି ସେଇ ଉପଜାତି ସମାଜର ଧ୍ୱଂସ ଅନିବାର୍ଯ୍ୟ ।

ବୁଦ୍ଧଙ୍କର ନିଜର ଜନ୍ମ ଶାକ୍ୟ ଟ୍ରାଇବ୍ ବା ଉପଜାତିରେ । ତାଙ୍କର ନିଜର ସେଇ ଗୋଷ୍ଠୀ, ସାମ୍ରାଜ୍ୟ ବିସ୍ତାର ଦ୍ୱାରା ଆକ୍ରାନ୍ତ । ତାଙ୍କର ସେଇ ଉପଜାତିର ଲୋକେ ସ୍ତ୍ରୀ, ପିଲା ନିର୍ବିଶେଷରେ ବୀଭତ୍ସ ଗଣହତ୍ୟାର ଶିକାର ହୋଇଛନ୍ତି । ଏଣେ ମଗଧର ରାଜା ଅଜାତଶତ୍ରୁ, ଯାହାଙ୍କୁ ଉପନିଷଦ ଜଣେ ଶ୍ରେଷ୍ଠ ଦାର୍ଶନିକ ବୋଲି ଗଣନା କରେ, ସେ ଘୋଷଣା କରନ୍ତି, "ମୁଁ ବିଜିତକୁ (ଆଦିମ ଉପଜାତି ଗୋଷ୍ଠୀ) ଧ୍ୱଂସ କରି ନିର୍ମୂଳ କରିଦେବି ।" ପୁଣି ସେଇ ଅଜାତଶତ୍ରୁ ତାଙ୍କର ପିତା ମଗଧର ସମ୍ରାଟ ବିମ୍ବିସାରଙ୍କୁ ଅନାହାରରେ ରଖି ହତ୍ୟା କରନ୍ତି । ସେଇଭଳି କୋଶଳ ରାଜା ପ୍ରସେନ୍‌ଜିତଙ୍କୁ ତାଙ୍କର ପୁତ୍ର ବ୍ୟୁଦାୟୁ ଅତି ବିଶ୍ୱାସଘାତକତା କରି ହତ୍ୟା କରିଛନ୍ତି । ବୁଦ୍ଧ ଦେଖନ୍ତି, ଧନ ସମ୍ପତ୍ତି ଲୋଭହିଁ ଏହାର କାରଣ । ଯେତେ ଲାଭ କଲେ ବି ସେଇ ଲୋଭର ତୃପ୍ତି ନାହିଁ । ତା ସଦା ଲାଗିରହିଛି ଓ ପ୍ରସାର ଲଭୁଛି । ତେଣୁ ଦାସତ୍ୱ,ଅତ୍ୟାଚାର ଓ ନିର୍ଯ୍ୟାତନାର ଅନ୍ତ ନାହିଁ ଇତ୍ୟାଦି ।

ଚାରିଆଡ଼େ ଯେତେବେଳେ ଦୁଃଖ,ଦୈନ୍ୟ ଓ ନିର୍ଯ୍ୟାତନାର ରାଜୁତି, ସେତେବେଳେ ବୁଦ୍ଧ ଉପନିଷଦର ମୁକ୍ତି, ଅଧିବିଦ୍ୟା, ଦର୍ଶନ ଜ୍ଞାନ ଦ୍ୱାରା ମୋକ୍ଷ

ବ୍ୟବସ୍ଥାର ସୂତ୍ର ପାଇଲେ ନାହିଁ । ତାହା ତାଙ୍କୁ ସନ୍ତୁଷ୍ଟ କରିପାରିଲା ନାହିଁ । ତାଙ୍କର ପ୍ରଶ୍ନ ହେଲା ଦେହରେ ଶରବିଦ୍ଧ ହେଲେ ତମେ ଆଗ କଣ କରିବ ? ଶରଟାକୁ ଟାଣି ଓଟାରି ବାହାର କରିଦେବ ନା ସେଠି ଆଲୋଚନା କରି ବସିବ ଶର କେଉଁଥିରେ ତିଆରି ? ତାକୁ କିଏ ସୃଷ୍ଟି କଲା — କେଉଁଆଡୁ ଆସିଲା , କେଉଁ ଆଡେ ଯିବ ଇତ୍ୟାଦି । ଏହାଠୁ ବଳି ଆଉ ଅଧିକ ନିର୍ବୋଧତା କ'ଣ ହୋଇପାରେ ?

ସେତେବେଳେ ସମାଜରୁ ଦୁଃଖ, ଦୈନ୍ୟ ଲୋପ ହେବାର ବାସ୍ତବ ଅବସ୍ଥା ସୃଷ୍ଟି ହୋଇନାହିଁ । କେବଳ ଉତ୍ପାଦନଶକ୍ତିର ପ୍ରଭୂତ ବିକାଶ, ସବୁକ୍ଷେତ୍ରରେ ଉତ୍ପାଦନର ପ୍ରାଚୁର୍ଯ୍ୟ ଓ ସମାଜରେ ଶୋଷଣର ବିଲୋପ ଫଳରେ ସମତା ଆଣିବାର ଅବସ୍ଥା ସୃଷ୍ଟି ହୋଇପାରେ । ତାହା କେବଳ ସମାଜବାଦରେ ହିଁ ସମ୍ଭବ । ସମାଜର ସେଇ ବିକାଶର ଧାରା ସେ ପର୍ଯ୍ୟନ୍ତ ମଣିଷ ମନକୁ ସ୍ପର୍ଶ କରି ନାହିଁ । ତେଣୁ ସମାନ୍ତବାଦ, ପୁଞ୍ଜିବାଦର ମଧ୍ୟବର୍ତ୍ତୀ ସୋପାନକୁ ଡେଇଁ ସମାଜରେ ପହଞ୍ଚିବା କସ୍ମିନକାଳେ ସମ୍ଭବ ନୁହେଁ । ସେତେବେଳେ ସାମ୍ରାଜ୍ୟର ବିସ୍ତାର, କୃଷିର ପ୍ରସାର ସହିତ ସମ୍ପତ୍ତିର ଅପହରଣ, ଲୁଣ୍ଠନ ଓ ଶୋଷଣ ଆଦି ହୋଇଛି ଉତ୍ପାଦନବୃଦ୍ଧିର ଅପରିହାର୍ଯ୍ୟ ଅବସ୍ଥା । ତେଣୁ ଦୁଃଖରୁ ମୁକ୍ତିଲାଭର ଏକମାତ୍ର ଉପାୟ ହେଲା ସେଇ ବାସ୍ତବ ସମସ୍ୟାର ଆଦର୍ଶଗତ ସମାଧାନର ସୂତ୍ର ବାହାର କରିବା । ତଦ୍ୱାରା ମନରେ ଗୋଟାଏ ଏମିତି ପରିବର୍ତ୍ତନ ଆଣିବା, ଯେଉଁଠି ମଣିଷର ଦୁଃଖ ଅନୁଭବର ଭାବଟା ଦୂର ହୋଇପାରିବ । ସେ ଭାବିବ ନାହିଁ ଯେ, ସେ ଦୁଃଖ ଭୋଗୁଛି— ତାହାହିଁ ହେଲା ନିର୍ବାଣ ।

ତାହା ପାଇବା ପାଇଁ ବୁଦ୍ଧ ତେଣୁ ଆଗକୁ ନ ଦେଖି ଅନାଇଛନ୍ତି ପଛକୁ — ସେଇ ଟ୍ରାଇବାଲ ବା ଉପଜାତି ସମାଜ ଆଡ଼କୁ — ତାର ସେଇ ଆଦିମ ଗଣଗୋଷ୍ଠୀ ଜୀବନକୁ । ତାଙ୍କର ସଂଘ ସେଇ ଗଣଗୋଷ୍ଠୀ ସମାଜର ନିୟମରେ ଗଠିତ । ସେଠି ବ୍ୟକ୍ତିଗତ ସମ୍ପତ୍ତି କି ଜାତିବର୍ଣ୍ଣର ପ୍ରଶ୍ନ ନାହିଁ — ନାହିଁ ବଡ଼-ସାନର ପାର୍ଥକ୍ୟ । ସମ୍ପୂର୍ଣ୍ଣ ଗଣତନ୍ତ୍ର । ସମସ୍ତେ ପରସ୍ପରର ଭାଇଭାଇ । ଚାରିଆଡ଼େ ଶ୍ରେଣୀବିଭକ୍ତ ସମାଜର ମହାସାଗର ଭିତରେ ସେହି ସଂଘ ହେଲା ଏକ ଶ୍ରେଣୀହୀନ କ୍ଷୁଦ୍ର ଦ୍ୱୀପ ଭଳି ।

ଅତଏବ ବ୍ୟକ୍ତିଗତ ସମ୍ପତ୍ତିର ଅଭାବ ଆଉ ସାମ୍ୟ — ଏ ହେଉଛି ବୁଦ୍ଧ ଓ ଜଗନ୍ନାଥ ଉଭୟଙ୍କର ମୂଳନୀତି । ଫରକ ହେଉଛି ଜଗନ୍ନାଥଙ୍କ ଜନ୍ମବେଳେ ବ୍ୟକ୍ତିଗତ ସଂପତ୍ତି ନାହିଁ । ତା' କଣ, ମଣିଷ ଭାବନା ଭିତରେ ନାହିଁ । ବୁଦ୍ଧଙ୍କ ବେଳକୁ ତାର ଉଦ୍‌ଭବ ଘଟିଲାଣି । ତକୁ ଧରି ବୁଦ୍ଧ ନିଜର ନୀତି ସ୍ଥିର କରିଛନ୍ତି । ବୁଦ୍ଧ ସେଇ ବ୍ୟକ୍ତିଗତ ସମ୍ପତ୍ତି ଭିତରେ ବ୍ୟକ୍ତିବାଦିତ୍ୱକୁ (personality) ଲକ୍ଷ୍ୟ କରିଛନ୍ତି । ସେ ଦେଖିଛନ୍ତି, ବ୍ୟକ୍ତିଗତ ସମ୍ପତ୍ତି ସହିତ 'ମୁଁ 'ଓ 'ମୋର' ଭାବ ଜଡ଼ିତ । ତାହାହିଁ ସଦା ଆଗ୍ରହ ଓ ଆସକ୍ତିଭାବ ଉଦ୍ରେକ କରେ । ବ୍ୟକ୍ତିଗତ ସମ୍ପତ୍ତି ପ୍ରତି ଆସକ୍ତି ସମସ୍ତ ଅନ୍ୟାୟ ଅନୀତି ଓ ଦୁଷ୍କର୍ମର ମୂଳ । ସେଇ ବ୍ୟକ୍ତିବାଦିତ୍ୱ ଆତ୍ମାକୁ ସ୍ୱୀକାର କରେ ।

ତେଣୁ ଆତ୍ମା ସହିତ ବ୍ୟକ୍ତିଗତ ସମ୍ପତ୍ତି ସଂପୃକ୍ତ । ତେଣୁ ଆତ୍ମାର ଅସ୍ତିତ୍ୱକୁ ଅସ୍ୱୀକାର କରିବା ଦ୍ୱାରା ବ୍ୟକ୍ତିଗତ ସମ୍ପତ୍ତିର ଅଧିକାରକୁ ଅସ୍ୱୀକାର କରିବାରେ ବୌଦ୍ଧମତ ହେଉଛି ସର୍ବପ୍ରଧାନ । ତାହା ଏକ ମହାନ୍ ଦାର୍ଶନିକ ମତର ସୂତ୍ରପାତ କରେ । ତେଣୁ ସେଇହିଁ ହେଉଛି ପ୍ରକୃତରେ ବୌଦ୍ଧ, ଯିଏ ନିଜର ବ୍ୟକ୍ତିଗତ ସମ୍ପତ୍ତି ତ୍ୟାଗ କରିଛି, ନିଜର ପରିବାରବର୍ଗଙ୍କୁ ତ୍ୟାଗ କରିପାରିଛି ।

ଯେତେ ବଡ ମହାତ୍ମା ବା ମହାପୁରୁଷ ହେଲେ ବି ସମସ୍ତେ ସେଇ ସାମାଜିକ ବିକାଶ ଦ୍ୱାରା ନିୟନ୍ତ୍ରଣାଧୀନ । ଇତିହାସର ଅପରିହାର୍ଯ୍ୟ ନିୟମର ଅଧୀନ । ସେ ନିୟମରେ ହସ୍ତକ୍ଷେପ କରିବା, ତାକୁ ବଦଳାଇଦେବା ତାଙ୍କ ଶକ୍ତିର ବହିର୍ଭୂତ । ତେଣୁ ବ୍ୟକ୍ତିଗତ ସମ୍ପତ୍ତି, ମୁକ୍ତି, ସ୍ୱାଧୀନତା , ଗଣତନ୍ତ୍ର ଆଦି ପ୍ରତ୍ୟେକଟି ବିଷୟ ସେଇକାଳର ସାମାଜିକ ବିକାଶ ଦ୍ୱାରା ସୀମିତ ଓ ନିର୍ଦ୍ଧାରିତ ।

ଜଗନ୍ନାଥଭାବ କେବଳ ସାମ୍ୟର କଥା କହେ । ତାହା କେମିତି ଆସିବ, ତାହା କହେ ନାହିଁ । ଜଗନ୍ନାଥ ଯେଉଁ ସମାଜର ସେତେବେଳେ — ସେଠାରେ ସାମ୍ୟ ରହିଛି । ତାର ପତନ ଘଟିନାହିଁ , ତାହା ଲୋପପାଇ ନାହଁ । ତେଣୁ ତାକୁ ଆଣିବା, ତାର ପୁନଃପ୍ରତିଷ୍ଠା କରିବାର ଉପାୟ ଖୋଜିବାର ପ୍ରଶ୍ନ ଉଠେ ନାହିଁ । ବୁଦ୍ଧଙ୍କ ବେଳକୁ ତାହାହିଁ ଥିଲା ମୁଖ୍ୟ ସମସ୍ୟା । ଆମର ବର୍ତ୍ତମାନର ଚିନ୍ତାଧାରାକୁ ସେ ସମୟର ବୁଦ୍ଧଙ୍କ ପ୍ରତି ପ୍ରୟୋଗ କରିବା ଠିକ୍ ନୁହେଁ । ତେଣୁ ତାଙ୍କର ଆଭିମୁଖ୍ୟ ହୋଇଛି ଜଗତ ପ୍ରତି ଆତ୍ମନିଷ୍ଠାର ଆଭିମୁଖ୍ୟ ବା ନିଜର ଆତ୍ମ-ପରିବର୍ତ୍ତନ । ତାହା ବାସ୍ତବତା ଉପରେ ପ୍ରତିଷ୍ଠିତ । ତାଙ୍କର ଚାରୋଟି ସର୍ବୋଚ୍ଚ ସତ୍ୟ ହେଉଛି, ଦୁଃଖ ଓ ଦୁଃଖର କାରଣ ରହିଛି । ଦୁଃଖ ଦୂର କରି ହେବ ; ତାକୁ ଦୂର କରାଯିବାର ମାର୍ଗ ରହିଛି । ବୁଦ୍ଧ ତାକୁ ଆଲୋଚନା କରି କହନ୍ତି — ଜନ୍ମ ଦୁଃଖ, ବ୍ୟାଧି ଦୁଃଖ, ବାର୍ଦ୍ଧକ୍ୟ ଦୁଃଖ, ଅପ୍ରିୟଙ୍କ ସହ ମିଳନ ଦୁଃଖ, ପ୍ରିୟଙ୍କ ସହ ବିଚ୍ଛେଦ ଦୁଃଖ.... ତାର ଉତ୍ପତ୍ତିର କାରଣ ହେଲା :- ମଣିଷର କାମଲାଳସା, ବାସନା, ତୃଷ୍ଣା ଓ ପିପାସା — ଯାହା ଜନ୍ମରୁ ମୃତ୍ୟୁଯାଏ ତାକୁ ଘେନିଯାଏ — ଆନନ୍ଦ ପାଇଁ ପିପାସା, ପଦାର୍ଥ ପାଇଁ ପିପାସା, କ୍ଷମତା ପାଇଁ ପିପାସା । ସେହି ଦୁଃଖର ବିଲୋପ ରହିଛି । କାମନା ବିନାଶରେ ପିପାସାର ବିଲୋପ, ତାକୁ ପ୍ରତ୍ୟାଖ୍ୟାନ କରିବା । ତାହାଠାରୁ ଆପଣାକୁ ଛିନ୍ନ କରି ନେବା । ସେହି ଦୁଃଖର ବିନାଶ ମାର୍ଗ ହେଉଛି— ସମ୍ୟକ୍ ଦୃଷ୍ଟି, ସମ୍ୟକ୍ ସଙ୍କଳ୍ପ, ସମ୍ୟକ୍ ବାକ୍ୟ, ସମ୍ୟକ୍ କର୍ମ, ସମ୍ୟକ୍ ଆଜୀବ, ସମ୍ୟକ୍ ବ୍ୟାୟାମ, ସମ୍ୟକ୍ ସ୍ମୃତି, ସମ୍ୟକ୍ ସମାଧି — ଏଇ ଆଠୋଟି ବିଷୟ । ଅର୍ଥାତ୍ ମଣିଷକୁ ନିର୍ଭୁଲ ଯଥାର୍ଥ ଦୃଷ୍ଟି, କଥା, କାର୍ଯ୍ୟ, ଜୀବିକା, ଉଦ୍ୟମ, ଜ୍ଞାନ, ବିଶ୍ୱାସ ଓ ଏକାଗ୍ରତା ଅନୁସରଣ କରିବାକୁ ହେବ ।

ସେ ତାଙ୍କ ଶିଷ୍ୟମାନଙ୍କୁ ବିସ୍ତାରିତଭାବେ ବୁଝାଇ କହନ୍ତି, ମାନସିକ ଉନ୍ମତ୍ତତାକୁ (Tension) ଆୟତ୍ତ କରି ହୃଦୟରେ ଶାନ୍ତି ଓ ସ୍ଥିରତା ଆଣିବାକୁ ହେବ । ବ୍ୟକ୍ତିଗତ ସମ୍ପତ୍ତି ହେଉଛି ତାର ପ୍ରଧାନ ପ୍ରତିବନ୍ଧକ । ତାହା ଆସକ୍ତି ଆଣେ । ମାନସିକ ଉନ୍ମତ୍ତତା ସୃଷ୍ଟି କରେ । ତେଣୁ ସଂଘ ଭିତରେ ତାର ସ୍ଥାନ ନାହିଁ ।

ଇତିହାସର ନିୟମ ଅନୁଯାୟୀ ବୁଦ୍ଧଙ୍କ ସମୟ ହେଉଛି ବ୍ୟକ୍ତିଗତ ସମ୍ପତ୍ତିର ସୃଷ୍ଟି ଆଉ ପ୍ରସାରର ସମୟ । ଧନସମ୍ପତ୍ତି ରାଜା ଓ ବଣିକମାନଙ୍କ ହାତରେ କେନ୍ଦ୍ରୀଭୂତ ହେଉଛି । ଇତିହାସର ସେଇ ଅପରିହାର୍ଯ୍ୟ ପ୍ରବାହ ଭିତରେ ବୁଦ୍ଧଙ୍କ ପ୍ରତିଷ୍ଠିତ ବ୍ୟକ୍ତିଗତ ସମ୍ପତ୍ତିହୀନ ସଂଘଗୁଡ଼ିକ ନିଶ୍ଚିହ୍ନ ହୋଇଗଲେ । ସେମାନେ ଓଲଟି ନିଜେ ଧନଦଉଲତ ଧରି ବିଳାସବ୍ୟସନର ସ୍ଥଳ ହୋଇଉଠିଲେ । ଶେଷରେ ସେଇ ସମ୍ପଦ ସାଗର ଭିତରେ ବୁଡ଼ିଗଲେ ।

ବୁଦ୍ଧ କୌଣସି ଅଲୌକିକ ବା ଅତି ପ୍ରାକୃତିକ ଶକ୍ତିକୁ ସ୍ୱୀକାର କରନ୍ତି ନାହିଁ । ବେଦ, ଉପନିଷଦ, ଧର୍ମଶାସ୍ତ୍ର ଆଦିକୁ ପ୍ରମାଣ ବୋଲି ଗ୍ରହଣ କରନ୍ତି ନାହିଁ । ସେ ବ୍ରହ୍ମ, ଆତ୍ମା, ମୋକ୍ଷ ଆଦିକୁ ପ୍ରତ୍ୟାଖ୍ୟାନ କରନ୍ତି । ତେଣୁ ତାଙ୍କ ନିକଟରେ ତାହା ସତ୍ୟ ଓ ପବିତ୍ର ହେବାର ପ୍ରଶ୍ନ ଉଠେ ନାହିଁ । ତାଙ୍କ ମତରେ ବ୍ୟକ୍ତିଗତ ସମ୍ପତ୍ତି ହେଲା ସବୁ ଦୁର୍ଗତି ଓ ଦୁଷ୍କର୍ମର କାରଣ । ତାଙ୍କର ନିର୍ବାଣ ପରଲୋକରେ ମୋକ୍ଷପ୍ରାପ୍ତି ନୁହେଁ । ଏଇ ଇହଲୋକରେ ତାକୁ ପ୍ରାପ୍ତ କରିହେବ । ବୁଦ୍ଧ ଯଜ୍ଞବିଧାନର ଘୋର ବିରୋଧୀ । ତାହା ତାଙ୍କ ଦୃଷ୍ଟିରେ ଗୋଟାଏ ପ୍ରବଞ୍ଚନା । ତା ଛଡ଼ା ସେଥିରେ ଅସଂଖ୍ୟ ପଶୁ ବଳି ପଡ଼ନ୍ତି । ଅହିଂସା, ଦୟା, ଅନୁକମ୍ପାକୁ ବାଦ ଦେଲେ ସେ ସମୟରେ ପଶୁବଳି ମଧ୍ୟ ସମାଜ ଲାଗି ଘୋର କ୍ଷତିକାରକ । ପଶୁଚାରଣରୁ କୃଷିକାର୍ଯ୍ୟକୁ ଆସିବାରେ ଚାଷବାସ, ବାଣିଜ୍ୟ ଓ ପରବହନି ଲାଗି ଗୋରୁ ଘୋଡ଼ାଙ୍କ ଆବଶ୍ୟକତା ଅତିମାତ୍ରାରେ ବଢ଼ିଯାଇଛି । ଫଳରେ ବୁଦ୍ଧ ଯେ ବଣିକ ଓ କୃଷିକାରୀଲୋକଙ୍କର ବିଶେଷ ସମର୍ଥନ ଲାଭ କରିଥିଲେ , ତାହା ତାତ୍ପର୍ଯ୍ୟହୀନ ନୁହେଁ । ବୁଦ୍ଧ ଜାତିଭେଦର ଘୋର ବିରୋଧୀ । ସେ ଦେଖିଛନ୍ତି ଭେଦାଭେଦ୍ ଫଳରେ ଉପଜାତି ଗୋଷ୍ଠୀ ସମାଜ କିପରି ଧ୍ୱଂସ ପାଇଛି । ସେ ସାମାଜିକ ଦୈନ୍ୟ ବିଷୟରେ ସଦା ସଚେତନ । ତାଙ୍କର ଶିଷ୍ୟ ଓ ଅନୁଗାମୀଙ୍କ ମଧ୍ୟରୁ ଅଧିକାଂଶ ହେଉଛନ୍ତି ବୈଶ୍ୟ, ଶୂଦ୍ର ଓ ଅସ୍ପୃଶ୍ୟ ଶ୍ରେଣୀର ଲୋକ । ବ୍ରାହ୍ମଣ କିମ୍ବା କ୍ଷତ୍ରିୟ ନୁହନ୍ତି । (ଅବଶ୍ୟ ଦାସ ଓ ଖାତକମାନଙ୍କ ଲାଗି ସଂଘରେ ପ୍ରବେଶ ନିଷେଧ ଥିଲା)

ବୁଦ୍ଧଙ୍କର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଅବଦାନ ହେଉଛି— ପ୍ରତୀତ୍ୟସମୁତ୍ପାଦ — ତାହା ହେଉଛି, ଏ ଜଗତରେ କିଛି ସ୍ଥିର କିମ୍ବା ସ୍ଥାୟୀ ନୁହେଁ । ସବୁ କେବଳ ଗୋଟାଏ ପ୍ରବାହ ମାତ୍ର । ପ୍ରତ୍ୟେକ ଜିନିଷର ଆବିର୍ଭାବ ଓ ତିରୋଭାବ ରହିଛି । ଯିବା, ଆସବା ଲାଗିଛି । ଆସିବା ଯିବା ଏଇ ଯେଉଁ ଅବିଶ୍ରାନ୍ତ ପ୍ରବାହ, ସେଥିରେ ସାମାଜିକ ଦୁଃଖ, ଦୁର୍ଦ୍ଦଶା ଲୋପ ପାଇବାକୁ ବାଧ୍ୟ । ସେଇ ନିୟମ ଯୋଗୁଁ ମଣିଷର ସ୍ଖଳନ ଘଟିଛି । ସେ ଯେ କୌଣସି ଦେବତାଙ୍କ ଆଶୀର୍ବାଦ ଯୋଗୁଁ ମୁକ୍ତ ହେବ, ତାହା ନୁହେଁ । ଅର୍ଥାତ, ବିଶ୍ୱଜନୀନ ପରିବର୍ତ୍ତନ ନିୟମ ଭିତରେ ସବୁ ଘଟିଚାଲିଛି । ଜନ୍ମ ନେଉଛି — ଲୋପ ପାଉଛି । ସବୁର ନିର୍ଦ୍ଦିଷ୍ଟ ଆରମ୍ଭ ଓ ନିର୍ଦ୍ଦିଷ୍ଟ ଶେଷ ରହିଛି । ସେଇ ନିୟମ ଅନୁଯାୟୀ ମଣିଷର କିଛି ଚିରସ୍ଥାୟୀ ଅନ୍ତିମ ଲକ୍ଷ୍ୟ ହୋଇ ନ ପାରେ । ସେଇପରି ଜାତିପ୍ରଥା ଏକ ନିର୍ଦ୍ଦିଷ୍ଟ ଅବସ୍ଥାରେ ଆସିଛି ଓ ଏକ ନିର୍ଦ୍ଦିଷ୍ଟ ଅବସ୍ଥାରେ

ଯିବ । ସେଇପରି ଗତି ହେବ ବେଦ — ଉପନିଷଦର, ଐଶ୍ୱରିବ ଭାବ ଓ ତାର ନିର୍ଦ୍ଦେଶର । ତାହା ପରିବର୍ତ୍ତନ ବହିର୍ଭୂତ ନୁହେଁ ।

ତାଙ୍କ ମତରେ ଏ ବିଶ୍ୱ ସଦା ବିଦ୍ୟମାନ । ତାହା ତାର ଅନ୍ତର୍ନିହିତ ନିୟମ ଅନୁସାରେ ଚାଳିତ, ଭବିଷ୍ୟତରେ ରହିଥିବ । ଏଇ ଦର୍ଶନ ପୂରାପୂରି ନାସ୍ତିକ ଓ ବସ୍ତୁବାଦୀ । ସେସବୁ ସମ୍ପର୍କରେ ପରେ ଆଲୋଚନା କରିବା । ଶେଷରେ ବୌଦ୍ଧମତ ମହାଯାନ ଭାବେ ପ୍ରକାଶ ପାଇଛି । ବୁଦ୍ଧଙ୍କ ନାମରେ ନୂତନ ଶାସ୍ତ୍ର ପ୍ରଚାରିତ ହୋଇଛି । ବୁଦ୍ଧଙ୍କୁ ବୋଧିସତ୍ତ୍ୱର ଆସନ ଦେଇ ତାଙ୍କ ନାମରେ ନାନାଦି କିମ୍ବଦନ୍ତୀ ସୃଷ୍ଟି କରାଯାଇଛି । ବୁଦ୍ଧ ଯାହାକୁ ଅସ୍ୱୀକାର କରିଥିଲେ , ତାକୁ ବିଭିନ୍ନ ନାମରେ ବିଭିନ୍ନ ବାଟରେ ପୁନଃ ପ୍ରତିଷ୍ଠିତ କରାଯାଇଛି । ନିରୀଶ୍ୱରବାଦୀ ବୁଦ୍ଧ ହୋଇଛନ୍ତି ନିଜେ ସର୍ବୋଚ୍ଚ ଦେବ, ଈଶ୍ୱରଙ୍କ ଅବତାର । ବହୁ ଛୋଟ ଦେବଦେବୀଙ୍କ ସହ ଭୂତ, ପ୍ରେତ, ଯୋଗନୀ ମଧ୍ୟ ସୃଷ୍ଟି ହୋଇଛନ୍ତି । ଶେଷରେ ତାହା ବୌଦ୍ଧ ତନ୍ତ୍ର ସାଧନାରେ ଆସି ପହଞ୍ଚିଛି ।

ତେଣୁ ଯେଉଁ ଧର୍ମ, ଈଶ୍ୱର ବିଶ୍ୱାସ, ବ୍ୟକ୍ତିଗତ ସମ୍ପତ୍ତି,ହିଂସା, ଲୋଭ ସ୍ୱାର୍ଥପରତା ଆଉ ଉପନିଷଦର ଉପଦେଶ ବିରୁଦ୍ଧରେ ବୁଦ୍ଧ ଅଭିଯାନ କରିଥିଲେ ଶେଷରେ ବୌଦ୍ଧବାଦ ତାହାର ଶିକାର ହୋଇଛି । ଧର୍ମ -ଧାରଣା, ଯେତେ ଶକ୍ତିଶାଳୀ ହେଲେ ବି ବ୍ୟକ୍ତିଗତ ସମ୍ପତ୍ତି ଆଗରେ ସମସ୍ତେ ନତମସ୍ତକ । ତାହା ସମସ୍ତଙ୍କୁ ଆୟତ୍ତ, ବଶୀଭୂତ ଓ ନିୟନ୍ତ୍ରିତ କରେ । ବୌଦ୍ଧଧର୍ମ ତାର ଜ୍ୱଳନ୍ତ ଦୃଷ୍ଟାନ୍ତ ।

ସମ୍ପତ୍ତିର ମୋହ ଓ ଲାଳସାଠାରୁ ଦୂରରେ ରହିବା , ତାର ଗ୍ରାସରୁ ନିଜକୁ ରକ୍ଷା କରିବା ଲାଗି ଯିଏ ଘରେ ଚୂଲି ଜାଳୁ ନଥିଲେ , ଭିକ୍ଷା ଉପରେ ନିର୍ଭର କରୁଥିଲେ, ଶେଷରେ ତାଙ୍କରି ଧର୍ମ ପୁଣି ସାମ୍ରାଜ୍ୟ ବିସ୍ତାରର ଆୟୁଧ ହେଲା ।

ଅନ୍ୟଦିଗରୁ ଅଲୋଚନା କଲେ ଦେଖିବା, ଯେଉଁ ଅର୍ଥନୈତିକ ସାମାଜିକ ବ୍ୟବସ୍ଥା ବ୍ୟକ୍ତିଗତ ସଂପତ୍ତିକୁ ଜନ୍ମ ଦିଏ ଓ ବୃଦ୍ଧି କରେ, ତାହାହିଁ ଲୋକଙ୍କର ଚିନ୍ତା, ଚେତନା ଓ ଧାରଣାକୁ ନିୟନ୍ତ୍ରଣ କରେ । ସେହି ଚିନ୍ତା, ଚେତନା ଓ ଧାରଣା ଏକ ମତାଦର୍ଶର ରୂପ ନେଇ ସ୍ୱାଧୀନ ଶକ୍ତି ହୋଇ ଠିଆ ହୁଏ । ସାମାଜିକ ଅର୍ଥନୈତିକ, ସାମାଜିକ, ରାଜନୈତିକ ଓ ସାଂସ୍କୃତିକ ଜୀବନକୁ ଉତ୍ସାହିତ କରେ, ଆଗେଇ ନିଏ । ଦୁହେଁ ପରସ୍ପରକୁ ପ୍ରଭାବିତ କଲା ଭିତରେ ସମାଜର ଅର୍ଥନୈତିକ ବିକାଶ ଓ ଉତ୍ପାଦନ କୌଶଳ ସେହି ମତାଦର୍ଶର ସୀମା ଲଘି ଅଗ୍ରସର ହେବାକୁ ବସିଲାବେଳେ ସେ ତାର ପ୍ରତିବନ୍ଧକ ହୋଇ ଠିଆ ହୁଏ । ଗୋଟାଏ ଆଗୁଳ ହୋଇ ଉଠେ । ଏବେ ଅଗ୍ରସର ହେବାକୁ ହେଲେ ସେଇ ଆଗୁଳକୁ ଭାଙ୍ଗିବାକୁ ହେବ । ତେଣୁ ନୂତନ ଅବସ୍ଥାରୁ ଜାତ ମତାଦର୍ଶ ସହିତ ପୁରାତନର ସଂଘର୍ଷ ଅନିବାର୍ଯ୍ୟ ହୋଇଥାଏ । ଏମିତିକି ସେହି ମତାଦର୍ଶର ସାମାଜିକ — ଅର୍ଥନୈତିକ ଭିତ୍ତି ଲୋପ ପାଇଲେ ମଧ୍ୟ ତାହା ମଣିଷ ମନ ଭିତରେ ବହୁଦିନ ଧରି ଲାଗି ରହିଥାଏ ।

ତେଣୁ ଚିନ୍ତା ଓ କର୍ମ ଭିତରେ ଚେତନା ଓ ଶ୍ରମ ମଧ୍ୟରେ ସେହି ବିରୋଧିତାର ଐକ୍ୟରେ ହିଁ ମଣିଷର ଅଗ୍ରଗତି । ଗୋଟିକୁ ଛାଡ଼ି ଅନ୍ୟଟିର ସ୍ଥିତି ନାହିଁ, କି ସେହି ସ୍ଥିତି ଭିତରେ ବିରୋଧିତାର ଟିକିଏ ହେଲେ ବିଶ୍ରାମ ନାହିଁ । ବିରୋଧିତା ଲାଗି ସେହି ଐକ୍ୟ ଅପରିହାର୍ଯ୍ୟ ।

ବୁଦ୍ଧ ତାଙ୍କ ସମୟରେ ସମାଜରେ ସେଇ ବିକାଶ ଧାରାକୁ ଦେଖିବା ସମ୍ଭବ ନୁହେଁ । ତେଣୁ ସେ ଚାହିଁଥିଲେ ତାଙ୍କ ପ୍ରତିଷ୍ଠିତ ସଂଘରୁ ବ୍ୟକ୍ତିଗତ ସମ୍ପତ୍ତିକୁ ନିର୍ବାସନ କରି ତାର ଆଦର୍ଶ ଓ ପ୍ରଚାର ଦ୍ୱାରା ଲୋକଙ୍କ ଭିତରେ ସେଇ ସମ୍ପତ୍ତିର କୁପ୍ରଭାବକୁ ଦୂର କରିବେ । ତାର ପ୍ରଭାବ ଯାହା ସବୁ ଅମଙ୍ଗଳର ମୂଳ, ତାକୁ ନିର୍ମୂଳ କରିବେ ।

ସାମାଜିକ ବିକାଶର ନିୟମରେ ତାହା ଯେତେବେଳେ ବ୍ୟକ୍ତିଗତ ସମ୍ପତ୍ତିର ବୃଦ୍ଧି ଓ ବିସ୍ତାରର କାଳ, ସେତେବେଳେ ତାକୁ ବିସର୍ଜନ ଦେବାର ଆହ୍ୱାନ— ନଈବଢ଼ିକୁ ବିଅଙ୍କ ରାଣ ଭଳି ଏକ ନିରର୍ଥକ ପ୍ରଚାର । ଓଲଟି ବୌଦ୍ଧ ଧର୍ମ ବ୍ୟକ୍ତିଗତ ସମ୍ପତ୍ତିର ବନ୍ୟାରେ ଭାସିଯାଇଛି । ବୁଦ୍ଧଙ୍କ ପ୍ରଚାରିତ ମୂଳବାଣୀକୁ ତାଙ୍କ ଶିଷ୍ୟ ଓଲଟାଇ ଦେଇଛନ୍ତି । ମହାଯାନ ନାମରେ ବୌଦ୍ଧବାଦର ଏକ ନୂତନ ସଂସ୍କରଣ ସୃଷ୍ଟି ହୋଇଛି । ମହାଯାନପନ୍ଥୀମାନେ ନିଜେ ଗୋଟାଏ ଶାସ୍ତ୍ର ସୃଷ୍ଟି କରିଛନ୍ତି । କୁହାଗଲାଯେ, ବୁଦ୍ଧ ତାକୁ ନିଜେ ଲେଖିଥିଲେ । କିନ୍ତୁ ତାକୁ ପ୍ରଚାର କରିବାର ସମୟ ଆସି ନ ଥିବାରୁ ନାଗମାନଙ୍କ ଭିରେ ସେଇ ଶାସ୍ତ୍ରକୁ ଲୁଚାଇ ରଖିଥିଲେ । ବହୁ ଶତାବ୍ଦୀ ପରେ ନାଗାର୍ଜୁନ ତାକୁ ଆବିଷ୍କାର କଲେ । ସେଥିରେ ପ୍ରଥମ ବଳି ହେଲେ ନିଜେ ବୁଦ୍ଧ । ନାନା କାହାଣୀ କିମ୍ବଦନ୍ତୀ ମଧ୍ୟରେ ତାଙ୍କୁ ବୋଧିସତ୍ତ୍ୱ କରାଗଲା । ଦ୍ୱିତୀୟରେ ବଳି ପଡ଼ିଲା ବୁଦ୍ଧଙ୍କର ନିରୀଶ୍ୱରବାଦ । ଯଦିଓ ତାକୁ ଉପରକୁ ପ୍ରତ୍ୟାଖ୍ୟାନ କରାଗଲା ନାହିଁ , କିନ୍ତୁ ବହୁ ଦେବଦେବୀ ସୃଷ୍ଟି ହୋଇଗଲେ । ବୁଦ୍ଧ ଏକ ସର୍ବୋଚ୍ଚ ଦେବତା , ଅବତାର ହୋଇ ରହିଲେ । ତୃତୀୟ ବଳି ହେଲା ବୁଦ୍ଧଙ୍କର ମୂଳ ଦୃଷ୍ଟିକୋଣ, ବସ୍ତୁବାଦ । ବସ୍ତୁବାଦ ପରିବର୍ତ୍ତେ ଭାବବାଦର ଆରମ୍ଭ ହେଲା — ଯାହାକି ଜଗତର ବାସ୍ତବତାକୁ ଅସ୍ୱୀକାର କରେ । ତାର ଶେଷ ପରିଣତି ହେଲା ନାଗାର୍ଜୁନଙ୍କ ଶୂନ୍ୟବାଦ ।

ବୁଦ୍ଧଙ୍କର ସବୁଠୁ ଗୁରୁତ୍ୱପୂର୍ଣ୍ଣ ଅବଦାନ, ତାଙ୍କର ଦ୍ୱନ୍ଦ୍ୱାତ୍ମକ ଦୃଷ୍ଟିକୋଣ— ''ପ୍ରତୀତସମୁତ୍ପାଦ'' ବିଶେଷକରି ଏହାର ନିୟମକୁ ମହାଯାନ ପ୍ରତ୍ୟାଖ୍ୟାନ କରିବା, ଯେଉଁ ନିୟମ କହେ ଏ ଜଗତରେ କୌଣସି ଜିନିଷ ସ୍ଥିର ଓ ସ୍ଥାୟୀ ନୁହେଁ, ସବୁ କେବଳ ଏକ ପ୍ରବାହ ମାତ୍ର । ଆବିର୍ଭାବ ତିରୋଭାବର ଗୋଟିଏ ଅବିରାମ ଧାରା । ଯାହା ଆସିଛି ତାର ବିଲୋପ ସୁନିଶ୍ଚିତ । ବୁଦ୍ଧଙ୍କର ସେଇ ଭାବର ଅବସାନ ଘଟିଲା ସେତିକିବେଳେ, ଯେତେବେଳେ ରାଜା ଭଗବାନଙ୍କର ପୁତ୍ର ହେଲେ, ସ୍ୱର୍ଗୀୟ ଆଶୀର୍ବାଦ ଲାଭ କଲେ । ବ୍ରହ୍ମ, ଆତ୍ମା ଆଦି ବିଷୟଗୁଡ଼ିକ ବୌଦ୍ଧମତ ଭିତରେ ପ୍ରବେଶ କଲା । ''ତଥାଗତ ଗର୍ଭ''ର ଧାରଣା ଉପନିଷଦ ବର୍ଣ୍ଣିତ ଆତ୍ମାର

ନିକଟବର୍ତ୍ତୀ ହେଲା । ଏବେ ତଥାଗତ ଚିରନ୍ତନ ହେଲେ ଯାହାଙ୍କର ନିର୍ବାପନ ନାହିଁ — ଅର୍ଥାତ୍ ସେ ଅମର । ଶେଷରେ ବୁଦ୍ଧ ଇତିହାସର ସୃଷ୍ଟି ନ ହୋଇ ସ୍ୱର୍ଗୀୟ ରୂପ ଗ୍ରହଣ କରି ଶେଷକୁ ଏକ ଅବତାରରେ ପରିଣତ ହେଲେ । ଉପନିଷଦର ମୂଳ ମର୍ମ — ଆତ୍ମାର ଧାରଣା ଯାହାକୁ ବୁଦ୍ଧ ପ୍ରତ୍ୟାଖ୍ୟାନ କରିଥିଲେ, ତାହା ଏବେ ପ୍ରଚଳିତ ହେଲା । ବୁଦ୍ଧ ନିଜେ ଭଗବାନ ହେବାରେ ତାଙ୍କର ନିରୀଶ୍ୱରବାଦ ସମାଧି ପାଇଲା । ପୁନର୍ଜ୍ଜୀବନ ଲାଭ କଲା ବର୍ଣ୍ଣାଶ୍ରମ ଧର୍ମ ।

ବୌଦ୍ଧ ମତରେ ସେଇ ପ୍ରତ୍ୟାଖ୍ୟାନ ଓ ଉପନିଷଦର ଭାବର ପ୍ରବେଶ ଆକସ୍ମିକ ନୁହେଁ, ଅତି ସ୍ୱାଭାବିକ କଥା । କଥାରେ ଅଛି, ମଣିଷ ଯାହାର ଖାଇବ, ତାର ଗାଇବ । ବୌଦ୍ଧ ସଂଘ, ବିହାର, ଧର୍ମ ନିର୍ଭର କଲା ରାଜାମାନଙ୍କ ସାହାଯ୍ୟ ଓ ପୃଷ୍ଠପୋଷକତା ଉପରେ । ବ୍ୟକ୍ତିଗତ ସମ୍ପତ୍ତିର ବୃଦ୍ଧି ସହିତ ଅନ୍ୟ ଦିଗରେ ସମାଜରେ ପରାଙ୍ଗପୁଷ୍ଟ ଶ୍ରେଣୀର ବିକାଶ ଘଟିଲା । ପରାଙ୍ଗପୁଷ୍ଟ ରାଜାଙ୍କ ସାଙ୍ଗକୁ ବୌଦ୍ଧ ସନ୍ନ୍ୟାସୀମାନେ ହେଲେ ପରାଙ୍ଗପୁଷ୍ଟ । ସମାଜରେ ବ୍ୟକ୍ତିଗତ ସମ୍ପତ୍ତିର ଆବିର୍ଭାବ, ଜାତିଭେଦ, ଶ୍ରେଣୀ-ବିଭାଜନ ଆଦି ଫଳରେ ଯେଉଁ ଉପନିଷଦ ଭାବର ଆବିର୍ଭାବ, ସେଇ ମୂଳ ଅର୍ଥନୈତିକ ବିକାଶ ସହିତ ଉପନିଷଦର ଧାରଣା ଓ ତତ୍ତ୍ୱ ଅଧିକ ବିକଶିତ, ବଳିଷ୍ଠ ଆଉ ପ୍ରସାରିତ ହେବା ସ୍ୱାଭାବିକ । ତେଣୁ ବୁଦ୍ଧଙ୍କର ସେଇ ମୂଳ ବୈପ୍ଳବିକ ଦ୍ୱନ୍ଦ୍ୱାତ୍ମକ ଦୃଷ୍ଟିକୋଣର ଓ ସମାଜ —ତତ୍ତ୍ୱର ଅବସାନ ଘଟିଲା । ସେଥିରେ ଏତେ ପରିବର୍ତ୍ତନ ଆସିଲା ଓ ଏମିତି ବିଧିବିଧାନ ସୃଷ୍ଟି ହେଲା ଯେ ହିନ୍ଦୁ ଓ ବୌଦ୍ଧଧର୍ମ ମଧ୍ୟରେ ପାର୍ଥକ୍ୟ ଲୁଚିଗଲା । ହିନ୍ଦୁଧର୍ମଠାରୁ ବୌଦ୍ଧ ଧର୍ମକୁ ଆଉ ଅଲଗା କରି ଚିହ୍ନି ହେଲା ନାହିଁ ।

ଜଗନ୍ନାଥ ଓ ବୁଦ୍ଧ ଦୁହିଁଙ୍କର ଉତ୍ପତ୍ତି ଓ ପରିଣତି ସମାନ । ପ୍ରଥମତଃ ଦୁହେଁ ଇତିହାସର ସୃଷ୍ଟି, ପୁରାଣର କଳ୍ପନା ନୁହନ୍ତି । ତେଣୁ ଦୁହିଁଙ୍କୁ କୌଣସି ଆତ୍ମନିଷ୍ଠ ଚିନ୍ତାରେ ନୁହେଁ, ଇତିହାସର ବାସ୍ତବତା ଭିତରେ ଦେଖିବାକୁ ହେବ । ଜଗନ୍ନାଥ ଆଦିମ ଗୋଷ୍ଠୀ-ସାମ୍ୟ-ସମାଜର ପ୍ରତୀକ ହେଲାବେଳେ ବୁଦ୍ଧଙ୍କର ସେଇ ଆଦିମ ସାମ୍ୟ-ସମାଜକୁ ଫେରିଯିବାର ପ୍ରଚେଷ୍ଟା । ଆଦିମ ଗୋଷ୍ଠୀସମାଜରେ — ବ୍ୟକ୍ତିଗତ ସମ୍ପତ୍ତିର ଅଭାବ ଏବଂ ବୁଦ୍ଧଙ୍କ ସମାଜରେ ବ୍ୟକ୍ତିଗତ ସମ୍ପତ୍ତିର ଅଭିଯାନ । ବୁଦ୍ଧ ଚାହିଁଛନ୍ତି ଆଦର୍ଶ ମାନବର ସୃଷ୍ଟି । ସେଥିଲାଗି ବ୍ୟକ୍ତିଗତ ସମ୍ପତ୍ତିର ପରିହାର । କିନ୍ତୁ ସାମାଜିକ ବିକାଶର ନିୟମ ହୋଇଛି ସେଇ ବ୍ୟକ୍ତିଗତ ସମ୍ପତ୍ତିର ବିକାଶ । ସେହି ସାମାଜିକ ନିୟମ ଜଗନ୍ନାଥ ଓ ବୁଦ୍ଧ ଉଭୟଙ୍କୁ କେବଳ ନିଜର ଅଧୀନସ୍ଥ କରିନାହିଁ, ସେମାନଙ୍କୁ ଗଢ଼ିଛି ନିଜର ରୂପରେ । ଉଭୟ ତାଙ୍କ ବିପରୀତରେ ପହଞ୍ଚିଛନ୍ତି । ଉଭୟଙ୍କୁ କରାଯାଇଛି ବ୍ୟକ୍ତିଗତ ସମ୍ପତ୍ତିର ଧ୍ୱଜାଧାରୀ । ଶେଷକୁ ଲୋକଧର୍ମ ରାଜଧର୍ମରେ ପରିଣତ ହୋଇଛି । ଖଡ୍‌ଗ ତୁଳନାରେ ଧର୍ମଦ୍ୱାରା ଅଶୋକ ସାମ୍ରାଜ୍ୟର ବିସ୍ତାର ଅଧିକ ବ୍ୟାପକତା ଲାଭ କରିଛି । ଆଶାତୀତଭାବେ ସଫଳ ହୋଇଛି । ସେହିପରି

ଜଗନ୍ନାଥଙ୍କ ବାହୁଛାୟାତଳେ ସେହ ଜଗନ୍ନାଥଙ୍କ ''ରାଉତ'' ଆଖ୍ୟା ଧାରଣ କରି ସାମ୍ରାଜ୍ୟ ବିସ୍ତାର ହୋଇଛି ଓଡିଶାର ପ୍ରତ୍ୟେକ ରାଜାଙ୍କର ଲକ୍ଷ୍ୟ । ଶେଷକୁ ରାଜା ଓ ଠାକୁର ଏକ ହୋଇ, ହୋଇଛନ୍ତି 'ଠାକୁର ରାଜା' ।

ଏଣୁ ଅପରିହାର୍ଯ୍ୟ ସେଇ ବୁଦ୍ଧ ଜଗନ୍ନାଥ ମିଳନ । ଯାହା ଅପରିହାର୍ଯ୍ୟ, ତାହା ଆକସ୍ମିକ କି ପୌରାଣିକ କିମ୍ୱା ଶାସ୍ତ୍ରଜ୍ଞମାନଙ୍କର ବିଧାନ ହୋଇ ନ ପାରେ । ତାହା କୌଣସି ରାଜାଦେଶ ବା ଧର୍ମାଧୀଶଙ୍କ ଆଜ୍ଞାକୁ ଅପେକ୍ଷା କରେ ନାହିଁ । ତାହା ହେଉଛି ସମଭାବ, ସମ ଆଦର୍ଶ, ସମ ପ୍ରେରଣାର ମିଳନ । ସେହି ଭାବ ଆଦର୍ଶଗତ ମିଳନ ଇତିହାସର ବାସ୍ତବତା ଉପରେ ପ୍ରତିଷ୍ଠିତ । ବୁଦ୍ଧ ଭାବ ହେଉଛି ପରିବର୍ତ୍ତିତ ଅବସ୍ଥାରେ ଜଗନ୍ନାଥ ଭାବର ପ୍ରୟୋଗ । ଗଢ଼ିଉଠିଥିବା ଅସାମ୍ୟ, (ଶ୍ରେଣୀବିଭକ୍ତ) ସମାଜରେ ଦୁଃଖର ବିନାଶ ପ୍ରତି ପୂର୍ବର ସାମ୍ୟ (ପ୍ରାକ୍‌ବିଭକ୍ତ) ସମାଜର ଭାବର ସୃଜନଶୀଳ ପ୍ରୟୋଗ ଦିଗରେ ଏକ ନିଷ୍ଠାପର ଉଦ୍ୟମ । ତେଣୁ ସେହି ଭାବର ମର୍ମ୍ମ ସ୍ଥାନ ପାଇଛି ଜଗନ୍ନାଥଙ୍କ ମର୍ମ୍ମ ଦେଶରେ । ପୌରାଣିକ ଭାଷାରେ କହିଲେ ଘୂରି ବୁଲୁଥିବା ବୁଦ୍ଧଙ୍କର ଭାବ ପ୍ରବେଶ କରିଛି କଳିଙ୍ଗସ୍ଥିତ ଜଗନ୍ନାଥ ଘଟରେ ''ଆତ୍ମା'' ରୂପରେ ।

ଶେଷରେ ବୁଦ୍ଧଙ୍କର ସେହି ଆପ୍ତିବଚନ ''ବୁଦ୍ଧଂ ଶରଣଂ ଗଚ୍ଛାମି, ଧର୍ମଂ ଶରଣଂ ଗଚ୍ଛାମି, ସଙ୍ଘଂ ଶରଣଂ ଗଚ୍ଛାମି'' — ଏଗୁଡିକ ଅନ୍ୟ ସବୁ ଧର୍ମଠାରୁ ସମ୍ପୂର୍ଣ୍ଣ ଫରକ୍ । ଦେଖିଲେ ତାଙ୍କର ପୂରା ବିପରୀତ । ଯେହେତୁ ବୌଦ୍ଧ ଭାବ ଏକମାତ୍ର ଧର୍ମ ଯାହାକି ଈଶ୍ୱରବିହୀନ, ଆତ୍ମା ପରମାତ୍ମା ଶୂନ୍ୟ, ତେଣୁ ଅନ୍ଧବିଶ୍ୱାସର ଊର୍ଦ୍ଧ୍ୱରେ । ସେଥିଲାଗି ବୌଦ୍ଧ ଶରଣ ଯାଏ ପ୍ରବୁଦ୍ଧତ୍ୱର, ନିଜକୁ ସମର୍ପଣ କରେ ଉଦ୍‌ବୋଧିତ ଜ୍ଞାନପ୍ରାପ୍ତି ନିକଟରେ । ଆଧାର କରି ଧରେ ନୀତି - ନିଷ୍ଠାର ନ୍ୟାୟୋଚିତ ଧର୍ମକୁ । ଆଶ୍ରୟ ନିଏ ସଂଘ ବା ଗଣ ସମୁଦାୟର । ଅନ୍ୟ ଦିଗରେ ଜଗନ୍ନାଥ ଭାବ ସେହିପରି ଈଶ୍ୱର-ବିହୀନ ଆତ୍ମା ପରମାତ୍ମା ଶୂନ୍ୟ ଏବଂ ସେହିପରି ଗଣ /ସଂଘ/ ସମୁଦାୟ ହେଉଛି ତାର ଭିତ୍ତିଭୂମି । କିନ୍ତୁ ନାହିଁ ସେଠି ବୁଦ୍ଧତ୍ୱର ପରିକଳ୍ପନା, ଯେହେତୁ ସେତେବେଳେ କର୍ମ୍ମ ଓ ଜ୍ଞାନ ବିଚ୍ଛିନ୍ନ ନୁହନ୍ତି ।

**ପରିବର୍ତ୍ତନ ଓ ପ୍ରତି ଆକ୍ରମଣ —**

ବ୍ରାହ୍ମଣ୍ୟବାଦ ଶେଷରେ ବୌଦ୍ଧବାଦକୁ ଗ୍ରାସ କରିଯାଇଛି, ତାକୁ ନିଜର କରିନେଇଛି । ଦୀର୍ଘଦିନ ଧରି ସେ ଦିଗରେ ସଂଘର୍ଷ ଚାଲିଛି । ସେଇ ସଂଘର୍ଷ ଧର୍ମ ଓ ମତାଦର୍ଶ ସ୍ତରରୁ ରାଜନୈତିକ ଓ ସାମାଜିକ ସ୍ତରକୁ ବ୍ୟାପିଛି । କେତେଠି ରକ୍ତାକ୍ତ ହୋଇପଡିଛି । ଜଗନ୍ନାଥ ସେଇ ସଂଘର୍ଷର ପ୍ରଭାବରୁ ମୁକ୍ତ ନୁହନ୍ତି । ଜଗନ୍ନାଥଙ୍କ ଭିତରେ ବୌଦ୍ଧମତର ପ୍ରବେଶ, ବ୍ରାହ୍ମଣଙ୍କ ଦ୍ୱାରା ବୌଦ୍ଧମତର ବିତାଡନ, ତା ପରକୁ ବିଷ୍ଣୁ, କୃଷ୍ଣ, ବୈଷ୍ଣବ ଆଦି ବିଭିନ୍ନ ମତ, ବିଶେଷକରି ଭକ୍ତିଭାବର ପ୍ରଚାର ଏସବୁ କାଳକ୍ରମେ ପ୍ରକାଶ ପାଇଛି । ତାହା ହେଉଛି ଭାରତୀୟ ଧର୍ମଧାରଣା, ମତ —

ବିଶ୍ୱାସର ଏକ ଅଖଣ୍ଡ ଅଂଶ । ଜଗନ୍ନାଥଙ୍କ ସହିତ ତାହା ଘନିଷ୍ଠଭାବେ ଜଡିତ ହେବା ଦୃଷ୍ଟିରୁ ସେ ସବୁର ସମ୍ୟକ୍ ଆଲୋଚନା ଦରକାର । ଅଶୋକଙ୍କ କଳିଙ୍ଗଯୁଦ୍ଧ ବେଳକୁ ବୌଦ୍ଧମତ ଓଡିଶାରେ ପ୍ରବେଶ କରିସାରିଲାଣି । ଜଗନ୍ନାଥଙ୍କ ମୂର୍ତ୍ତି ଓ ମନ୍ଦିର ନିର୍ମାଣ ପୂର୍ବରୁ ତାହା ଓଡିଶାରେ ପ୍ରତିଷ୍ଠା ଲାଭ କରିଛି । ସେହି ବୌଦ୍ଧ ଶିଳ୍ପକଳା ଓ ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ ହେଉଛି ଓଡିଶାର ଶିଳ୍ପ, କଳା ଗୌରବର ମୂଳଭିତ୍ତି । ହରପ୍ପା ଲିପି ପରେ ପ୍ରାୟ ତିନିହଜାର ବର୍ଷ ଉତ୍ତାରୁ ପରବର୍ତ୍ତୀ ଲିପି ହେଉଛି ଅଶୋକଙ୍କ ଶିଳାଲିପି, ଯାହାକୁ ଧାରଣ କରି ଧଉଳିଗିରି ଠିଆ ହୋଇଛି । ଏବେ ଉଦୟଗିରି, ଲଳିତଗିରି ଏବଂ ରତ୍ନଗିରି ଖନନରୁ ଯେଉଁ ସ୍ତୂପ ବିହାର ଓ ଚୈତ୍ୟର ସନ୍ଧାନ ମିଳେ, ଯେଉଁ ବୁଦ୍ଧ ମୂର୍ତ୍ତିମାନ ଆବିଷ୍କାର ହେଉଛି ବାସ୍ତବରେ ତାହା ଅତୀବ ବିସ୍ମୟକର । ସେ ଖନନ ଏବେ ବି ପୂର୍ଣ୍ଣାଙ୍ଗ ନୁହେଁ । ତାହା ଅଧିକ ଖନନ, ଅଧ୍ୟୟନ ଓ ଅନୁଶୀଳନ ଏବେବି ପୂର୍ଣ୍ଣାଙ୍ଗ ନୁହଁ । ଏହାଛଡା ଓଡିଶାର ବହୁ ସ୍ଥାନରେ ବୌଦ୍ଧ ଅବଶେଷ ଏବେ ବି ବିଛେଇ ହୋଇ ରହିଛି । ତାକୁ ସ୍ପର୍ଶ କରାଯାଇ ନାହିଁ । ବିସ୍ତର ସ୍ମାରକ ରହିଛି, ତାହା ଜଣାଇଦିଏ ଯେ ଓଡିଶା ବୌଦ୍ଧ ମତ ଓ ଧର୍ମର ଦିନେ ପୀଠସ୍ଥଳୀ ଥିଲା । ବୌଦ୍ଧ ମତର ସେହି ପ୍ରଭାବରେ ଅନ୍ୟ ଦିଗରେ ଉପନିଷଦରେ ବ୍ରାହ୍ମଣ୍ୟବାଦର ମଧ୍ୟ ପରିବର୍ତ୍ତନ ଆସିଛି ।

କେବଳ ବୁଦ୍ଧ ନୁହନ୍ତି, ବସ୍ତୁବାଦୀ ମାତ୍ରେ ଉପନିଷଦ ଉପରେ ତାଙ୍କର ଆକ୍ରମଣ ଠୂଳ କରିଛନ୍ତି । ସବୁଠାରୁ କଠୋର ହେଉଛି ଲୋକାୟତ ଓ ଚାର୍ବାକ୍‌ଙ୍କ ଆକ୍ରମଣ । ସେମାନେ ବ୍ରାହ୍ମଣ୍ୟବାଦର ଧଡି ଉଡାଇ ଦେଇଛନ୍ତି । ପୂର୍ବ - ମୀମାଂସା ତାର ଆରମ୍ଭରୁ ଉପନିଷଦ -ବିରୋଧୀ । ନ୍ୟାୟ ଓ ବେଷୟିକଗଣ ଉପନିଷଦର ପକ୍ଷପାତୀ ନୁହନ୍ତି । ନ୍ୟାୟଦର୍ଶନର ଭିତ୍ତି ହେଲା ପ୍ରତ୍ୟକ୍ଷ ଜ୍ଞାନ । ବୈଷୟିକର ଭିତ୍ତି ହେଲା ଅଣୁବାଦ । ଏମାନଙ୍କ ପୂର୍ବରୁ ମଧ୍ୟ ସାଂଖ୍ୟଦର୍ଶନ ରହିଛି । ଏମାନେ କେହି ଉପନିଷଦର ଗୂଢଜ୍ଞାନ ବା ରହସ୍ୟକୁ ଗ୍ରହଣ କରନ୍ତି ନାହିଁ । ବିଭିନ୍ନ ଦିଗରୁ ତାକୁ ସମାଲୋଚନା କରିଥାଆନ୍ତି ।

ପୁଣି ଏହିସମୟରେ ବାହାରୁ ଗ୍ରୀକ୍‌ମାନେ ଆସିଛନ୍ତି । ବାଣିଜ୍ୟ, ଯୋଗାଯୋଗର ପ୍ରସାର ଘଟିଛି । ଦୂରଦେଶ କେନ୍ଦ୍ରଏସିଆ, ରୋମ୍, ଚୀନ୍, ଦକ୍ଷିଣ ଏସିଆ ଆଦି ସହିତ ସମ୍ବନ୍ଧ ସ୍ଥାପିତ ହୋଇଛି । ଭାବ ଓ ଚିନ୍ତାର ଆଦାନ ପ୍ରଦାନ ସମ୍ଭବ ହୋଇଛି । ତା ସାଙ୍ଗକୁ ବାହାରୁ ହୁନ, ଶକ, କୁଷାଣ ଆଦି ଉପଜାତିଗଣ ଦଳ ଦଳ ହୋଇ ଭାରତରେ ପ୍ରବେଶ କରିଛନ୍ତି । ସେମାନଙ୍କ ପରମ୍ପରା ଓ ସାମାଜିକ ସଙ୍ଗଠନ ବିଭିନ୍ନ ପ୍ରକାରର । ତେଣେ ଦେଶ ଭିତରେ ଅନାର୍ଯ୍ୟ, ବିଭିନ୍ନ ଟ୍ରାଇବ୍ ଓ ଉପଜାତିମାନଙ୍କ ଅଧିକ ଅଧିକ ସଂଖ୍ୟାରେ ଆର୍ଯ୍ୟ ସମାଜ ଭିତରକୁ ଆସିଛନ୍ତି । ଏମାନେ କେହି ଆତ୍ମା, ମୋକ୍ଷ, କର୍ମ, ପୁନର୍ଜନ୍ମ ଆଦି ଉପନିଷଦ ବିଚାରର ବିଶ୍ୱାସୀ ନୁହନ୍ତି । ଉପନିଷଦର ଧର୍ମୀୟ ସାମାଜିକ ବ୍ୟବସ୍ଥାକୁ ମାନନ୍ତି ନାହିଁ । ଫଳରେ ସମାଜ ଭିତରେ ରହିଥିବା ଉଚ୍ଚବର୍ଣ୍ଣର (ବ୍ରାହ୍ମଣ, କ୍ଷତ୍ରିୟଙ୍କ) ରାଜନୈତିକ, ସାମାଜିକ

ଆଧିପତ୍ୟ ଦୁର୍ବଳ ହୋଇଯାଇଛି । ଅଥଚ ତେଣେ ବ୍ୟକ୍ତିଗତ ସମ୍ପତ୍ତିର ଆଧିପତ୍ୟ ଓ ଅଭିବୃଦ୍ଧି ଲାଗି ଗୋଟାଏ ଅନୁରୂପ ସାମାଜିକ ବ୍ୟବସ୍ଥା ଦରକାର ।

ଅମେ ଦେଖିଛେ ବ୍ୟକ୍ତିଗତ ସମ୍ପତ୍ତି ସହିତ ଉପନିଷଦ ଜଡ଼ିତ । ଏବେ ତାହା ଦୁର୍ବଳ ହୋଇ ପଡ଼ିବାରେ ତାର ରକ୍ଷାଲାଗି ଉପନିଷଦରେ ଅନୁରୂପ ପରିବର୍ତ୍ତନ ଆବଶ୍ୟକ । ଯାହାକି ସେଇ ବ୍ୟକ୍ତିଗତ ସମ୍ପତ୍ତି ଉପରେ ପ୍ରତିଷ୍ଠିତ ସାମାଜିକ ବ୍ୟବସ୍ଥାର କେବଳ ପ୍ରହରୀ ହେବ ନାହିଁ, ତାକୁ ଉତ୍ସାହିତ ମଧ କରିବ । ସେଥିପ୍ରତି ଦୃଷ୍ଟିଦେଲେ ଦେଖାଯାଏ ଯେ ସେଇ ଉଦ୍ଦେଶ୍ୟ ନେଇ ନୂତନ ଅବସ୍ଥା ଅନୁଯାୟୀ ବେଦାନ୍ତ ଉପନିଷଦ ନିଜକୁ ପରିବର୍ତ୍ତିତ କରିଛନ୍ତି । ପ୍ରଥମ ଅବସ୍ଥାରେ ନିଜର ଆତ୍ମରକ୍ଷା ସହିତ ସେହି ଶୋଷଣ ବ୍ୟବସ୍ଥାକୁ ଶକ୍ତିଶାଳୀ କରିବା—କୁ ଚେଷ୍ଟା କରାଯାଇଛି । ଦ୍ୱିତୀୟ ଅବସ୍ଥାରେ ଆତ୍ମରକ୍ଷା ପରେ ଆରମ୍ଭ ହୋଇଛି ପ୍ରତି — ଆକ୍ରମଣ । ତା ହେଉଛି ବିଭିନ୍ନ ଶାସ୍ତ୍ର ପୁରାଣ ଆଦିର ସୃଷ୍ଟି । ତା ମଧ୍ୟରେ ଗୀତା, ଭାଗବତ, ରାମାୟଣ, ମହାଭାରତ ହେଲା ମୁଖ୍ୟ । ମୂଳରୁ ଶେଷ ପର୍ଯ୍ୟନ୍ତ ଏମାନଙ୍କର ମୁଖ୍ୟବାଣୀ ହେଲା ବର୍ଣ୍ଣାଶ୍ରମ ଧର୍ମ । ଜାତିଭେଦକୁ ଯେକୌଣସି ମତେ ସାବ୍ୟସ୍ତ ଓ ସୁଦୃଢ଼ କରିବା । ତୃତୀୟରେ, ତାହାର ରାଜନୈତିକ ପ୍ରକ୍ରିୟା ପ୍ରକାଶ ଲାଭ କରିଛି କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ । ତାହା ହେଲା ରାଷ୍ଟ୍ରର ଗଠନ ତତ୍ତ୍ୱ । ସେଇ ଶୋଷଣର ଶାସନକୁ କାୟମ ରଖିବାର ସୁନିର୍ଦ୍ଦିଷ୍ଟ ନୀତି ଓ ତାର ପ୍ରୟୋଗର ବୈଜ୍ଞାନିକ ପ୍ରଣାଳୀ । ଚତୁର୍ଥରେ, ସାମାଜିକ କ୍ଷେତ୍ରରେ ତାହା ରୂପ ନେଇଛି ମନୁ ସ୍ମୃତିରେ, ମନୁଙ୍କର ସାମାଜିକ ନିୟମରେ । ମନୁଙ୍କର ସେଇ ବର୍ଣ୍ଣାଶ୍ରମ ବ୍ୟବସ୍ଥା ଏବେ ବି ସୁପ୍ରତିଷ୍ଠିତ । ତାହା ଲୌହର ଶୃଙ୍ଖଳଠାରୁ ଅଧିକ ଶକ୍ତ ଏବଂ ଖୋଦ ଭଗବାନଙ୍କ ଭାବଠାରୁ ଅଧିକ ପବିତ୍ର । ସର୍ବୋପରି ଭାରତରେ ଆବହମାନ କାଳରୁ ପ୍ରଚଳିତ ତାର ଅପରିବର୍ତ୍ତନୀୟ ଗ୍ରାମ୍ୟ ଅର୍ଥନୈତିକ ବ୍ୟବସ୍ଥା, ଆଉ ତାର ଅନୁରୂପ ଦର୍ଶନ ହୋଇଛି ତାର ଭିତ୍ତିଭୂମି । ହିନ୍ଦୁଧର୍ମ ଏସବୁର ଏକ ସୁମିଶ୍ରିତ ସମନ୍ୱିତ ପ୍ରତିଫଳନ ।

ସିମେଣ୍ଟ କଂକ୍ରିଟ୍ ଭଳି ଏସବୁ ଏମିତି ଗେଟାବାନ୍ଧି ଟାଣ ହୋଇଯାଇଛି ଯେ ତାକୁ ଭାଙ୍ଗିବା କଷ୍ଟକର । ଜଗନ୍ନାଥ ମନ୍ଦିର ଗାତ୍ରରୁ ଚୂନ ଛଡ଼ାଇବା ସହଜ, କିନ୍ତୁ ତାଙ୍କ ଦେହରେ ଜମିଥିବା ସେଇ ବଦ୍ଧମୂଳ ଧାରଣା, ବିଶ୍ୱାସର ବଦ୍ଧତାକୁ ଦୂର କରିବା କଷ୍ଟସାଧ୍ୟ । ସେଇ ବଦ୍ଧତାକୁ ଦୂର କଲେହିଁ ଜଗନ୍ନାଥଙ୍କ ପ୍ରକୃତ ରୂପର ଦର୍ଶନ ଓ ନିଜେ ମଣିଷର ''ମୁକ୍ତି'' ସମ୍ଭବ । ଏହି ମୁକ୍ତି ଅନ୍ୟ କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତିର ନୁହେଁ, ବ୍ୟକ୍ତି-ସମୁଦାୟଙ୍କର । ପରଲୋକରେ ନୁହେଁ, ଏଇ ଇହଲୋକରେ । ପୂଜା ଉପାସାନ ଦ୍ୱାରା ନୁହେଁ, ବୈଜ୍ଞାନିକ ଦୃଷ୍ଟିରୁ ସଚେତନ ପଦକ୍ଷେପ ଦ୍ୱାରା ।

ଉପନିଷଦର ବିକାଶ ଓ ତାର ବିଜୟ ପର୍ଯ୍ୟନ୍ତ ସମାଜ ବିଭିନ୍ନ ସ୍ତର ଦେଇ ଗତିକରି ଆସିଛି । ମଣିଷର ସର୍ବ ଆଦିମ ଧାରଣା ହେଲା ଋତ, ତାହା ଆଗରୁ ଆମେ ଆଲୋଚନା କରିଛୁ । ସମସ୍ତ ବିଶ୍ୱ ଋତଚାଳିତ । ଋତହିଁ ଶକ୍ତି । ଅର୍ଥାତ୍ ବିଶ୍ୱ ତାର ନିଜର ପ୍ରକୃତି ଦ୍ୱାରା କାର୍ଯ୍ୟକରେ । ତେଣୁ ପ୍ରାକୃତିକ ନିୟମ ସାମାଜିକ ନିୟମ

ଭିତରେ କିଛି ଫରକ ନାହିଁ । ସେ ଦୁହେଁ ଏକ ଓ ଅଭିନ୍ନ । ବିଶ୍ୱ ତଥା ସବୁର ବିକାଶ ଓ କାର୍ଯ୍ୟ ନିଜ ନିଜର ସ୍ୱଭାବ ଅନୁଯାୟୀ । ଏସବୁ ବେଦ-ପୂର୍ବ ଆଦିମ ସମାଜର କଥା । ତାପରେ ଆସିଛି ଜାଦୁର ଧାରଣା । ପ୍ରକୃତିକୁ ବଶ କରି ତାକୁ ମନାଇନେବା ହେଲା ତା ଉଦ୍ଦେଶ୍ୟ । ସେଥିଲାଗି ସେଇ ପ୍ରାକୃତିକ କାର୍ଯ୍ୟକୁ ନକଲ ବା ଅନୁକରଣ କରିବା ହେଲା ତାର କାର୍ଯ୍ୟ । ସେଇପରି ନାଚ, ଗୀତ ଓ ମନ୍ତ୍ର ଦ୍ୱାରା ତାକୁ ଆହ୍ୱାନ କରିବା ହେଲା ତାର ଉପାୟ । ଯଜ୍ଞ ହେଉଛି ତାର ଏକ ଉନ୍ନତ ରୂପ । ସେଠି ନିର୍ଦ୍ଦିଷ୍ଟ ପ୍ରକାରର ଯଜ୍ଞ ନିର୍ଦ୍ଦିଷ୍ଟ ଫଳ ପ୍ରଦାନ କରେ । ତାହା ସାଙ୍ଗକୁ ଆସିଛି ସାଂଖ୍ୟମତ । ପ୍ରକୃତି ଓ ପୁରୁଷ ସହିତ ସ୍ୱଭାବବାଦ । ଏହା ବୁଦ୍ଧଙ୍କ ପୂର୍ବର ବିଷୟ । ଏହା ଆଦିମ ଗଣ-ସମାଜରେ ଉଦ୍ଭବ । ସ୍ୱଭାବକୁ ସାଂଖ୍ୟ ମୂଳକରି ଧରେ । ସାଂଖ୍ୟ ପ୍ରାଚୀନ ଦର୍ଶନଙ୍କ ଭିତରେ ସବୁଠାରୁ ସମ୍ମାନିତ । ତାହା ଆଲୋଚନା ପରେ କରିବା । ତା ସାଙ୍ଗକୁ ରହିଛି ଲୋକାୟତ, ଚାର୍ବାକ୍ । ଏମାନେ ସେଇପରି ସ୍ୱଭାବବାଦର ପ୍ରବକ୍ତା । ସ୍ୱଭାବ ହେଉଛି ସବୁ ବସ୍ତୁବାଦୀଙ୍କର ମୂଳଭିତ୍ତି । ମହାଭାରତ କହେ, ''ସ୍ୱଭାବଭୂତଃ ଚିନ୍ତକଃ'' । ଯେଉଁମାନେ ବସ୍ତୁକୁ ମୂଳ କରି ଧରନ୍ତି, ସେମାନେ ସ୍ୱଭାବ କଥା କହନ୍ତି । ଚାର୍ବାକ୍ ମତରେ ସ୍ୱଭାବ ହେଉଛି ନିଜେ ନିଜର କାରଣ ।

ସ୍ୱଭାବର ଅର୍ଥ ପ୍ରକୃତିର ସ୍ୱଭାବ । ଅର୍ଥାତ୍ ପ୍ରକୃତିର ନିୟମ ( Law of Nature) ନିଉଟନ ସେହି ପ୍ରାକୃତିକ ନିୟମର ଜଣେ ଶ୍ରେଷ୍ଠ ପ୍ରବକ୍ତା । ତଥାପି ସେ କହନ୍ତି ତାହା ଚାଲେ ଭଗବାନଙ୍କ ଇଚ୍ଛାରେ । ସେ ପ୍ରକୃତି-ନିୟମ ଭିତରେ ଭଗବାନଙ୍କୁ ଛାଡିପାରି ନାହାନ୍ତି । କିନ୍ତୁ ଆମର ସ୍ୱଭାବବାଦୀଙ୍କ କ୍ଷେତ୍ରରେ କୌଣସି ଧର୍ମ ଓ ଭଗବାନଙ୍କ ସ୍ଥାନ ନାହିଁ । ପ୍ରତ୍ୟେକ ସ୍ୱଭାବ ଅନୁସାରେ ଗତି କରନ୍ତି । ତାହା କୌଣସି ଅତିପ୍ରାକୃତିକ ଶକ୍ତି ଉପରେ ନିର୍ଭର କରେ ନାହିଁ । ତେଣୁ ବ୍ରହ୍ମ, ଆତ୍ମା, କର୍ମ, ଅଦୃଷ୍ଟ, ପୁନର୍ଜନ୍ମ, ମୋକ୍ଷ — କାହାକୁ ଲୋକାୟତ ଓ ଚାର୍ବାକ୍ ସ୍ୱୀକାର କରନ୍ତି ନାହିଁ । ସେସବୁକୁ ପ୍ରତ୍ୟାଖ୍ୟାନ କରନ୍ତି । ସେମାନେ କୌଣସି ଆକସ୍ମିକତା ବା ଯଦୃଚ୍ଛାବାଦକୁ ସ୍ୱୀକାର କରନ୍ତି ନାହିଁ । କହନ୍ତି ସବୁ ପଛରେ କାରଣ ରହିଛି । ତ ଦ୍ୱାରା ସେମାନେ କୌଣସି ଅଦୃଷ୍ଟ ବା ଗୂଢ଼ରହସ୍ୟର ସମ୍ଭାବନାକୁ ପ୍ରଶୟ ଦିଅନ୍ତି ନାହିଁ । ଅଥଚ ଉପନିଷଦ ଠିକ୍ ତାର ଓଲଟା । ତାହା ସବୁ ରହସ୍ୟ ବାଦର ଆଧାର । ଆତ୍ମା, ବ୍ରହ୍ମ, ମୋକ୍ଷ ଆଦି ସବୁ ଗୂଢ଼ଜ୍ଞାନ ଉପରେ ପ୍ରତିଷ୍ଠିତ । ତାକୁ ଛାଡିଦେଲେ ଉପନିଷଦର ଅସ୍ତିତ୍ୱ ରହିବ ନାହିଁ ।

ସେହି କାଳରେ ବୌଦ୍ଧ-ଧର୍ମର ପ୍ରସାର, ଭାରତ ବାହାରୁ ବିଭିନ୍ନ ଉପଜାତି ଲୋକଙ୍କର ଆଗମନର ପ୍ରଭାବ ଏବଂ ବ୍ୟାପକ ସାମାଜିକ ପରିବର୍ତ୍ତନ —ଏସବୁ ଉପନିଷଦର ମୂଳଭିତ୍ତିକୁ ଦୋହଲାଇଦେଇଛି, ତାକୁ ଦୁର୍ବଳ କରି ଦେଇଛି । ତେଣୁ ଉପନିଷଦକୁ ପୁନର୍ବାର ଦୃଢୀଭୂତ କରିବାକୁ ହେଲେ କେତେକ ପରିବର୍ତ୍ତନ ଦରକାର ।

ପ୍ରଥମରେ ବ୍ରାହ୍ମଣ ଓ କ୍ଷତ୍ରିୟଙ୍କୁ ଛାଡି ଦେଲେ, ଉପନିଷଦ ଅନ୍ୟ ନୀଚଜାତିଙ୍କ ଲାଗି ମୁକ୍ତି ଦ୍ୱାର ରୁଦ୍ଧ କରିଦେଇଥିଲା । ସେମାନଙ୍କ ପାଇଁ ମୋକ୍ଷର

କୌଣସି ପ୍ରଶ୍ନ ନ ଥିଲା । କିନ୍ତୁ ବୌଦ୍ଧଧର୍ମ୍ମ ଜାତିବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କ ପାଇଁ ନିର୍ବାଣର ଦ୍ୱାର ଖୋଲିଦେଲା । ସେମାନଙ୍କ ପ୍ରାଣରେ ଆଶାର ଭାବ ସଞ୍ଚାର କଲା ।

ଆଗେ ମୋକ୍ଷର ଏକମାତ୍ର ମାର୍ଗ ଥିଲା ଜ୍ଞାନମାର୍ଗ । ବେଦ ଅଧ୍ୟୟନ ବ୍ରାହ୍ମଣ କ୍ଷତ୍ରିୟଙ୍କ ଛଡା ଅନ୍ୟ ସମସ୍ତଙ୍କ ପାଇଁ ଥିଲା ନିଷିଦ୍ଧ । ଏବେ ତାହା ସେହିପରି ବ୍ରାହ୍ମଣ କ୍ଷତ୍ରିୟ ଏକଚାଟିଆ ରହିଲେ ବି ଅନ୍ୟ ନୀଚଜାତିଙ୍କ ପାଇଁ ଅନ୍ୟ ଏକ ଦ୍ୱାର ଖୋଲାଗଲା — ଭକ୍ତିର ମାର୍ଗ । ଭଜନ, ପୂଜନ, ଆରାଧନା ଓ ଉପାସନାର ମାର୍ଗ । ଅଜ୍ଞ ମୂର୍ଖ ଲୋକ ସହଜରେ ସେ ରାସ୍ତାରେ ମୋକ୍ଷ ଲାଭ କରି ପାରିବେ ।

ଦ୍ୱିତୀୟରେ ଆତ୍ମା, ବ୍ରହ୍ମ ଆଦି ଗୂଢ଼ଜ୍ଞାନ ସାଧାରଣ ଲୋକଙ୍କ କଳ୍ପନାର ବାହାରେ । ତାକୁ ସେମାନେ ଗ୍ରହଣ କରିବେ କଣ ତାହା ଦୂରେ ଥାଉ, ସେଇଟା କ'ଣ ସେମାନେ କଳ୍ପନା କରିପାରନ୍ତି ନାହିଁ । ଏବେ ତାଙ୍କଲାଗି ସୃଷ୍ଟି ହେଲା ଏକ ବ୍ୟକ୍ତିବିଶେଷ ଦେବତା, ''ଶ୍ରୀକୃଷ୍ଣ'' — ତାଙ୍କର ଆସାଧାରଣ ଅଲୌକିକ କାର୍ଯ୍ୟାବଳୀ ଯାହାଙ୍କୁ ଲୋକ ବୁଝିପାରିବେ, ଧରିପାରିବେ, କାମନା ପୂରଣ ଲାଗି ଡାକି ପାରିବେ । ସେଥିଲାଗି ତାଙ୍କ ପଛରେ ଗୋଡାଇ ପାରିବେ । ତାହା ସହିତ ଦେଖାଦେଲା ଅବତାରର କଳ୍ପନା — ଭଗବାନଙ୍କ ବିଭିନ୍ନ ରୂପ । ଏସବୁ ଆଗେ ଉପନିଷଦରେ ନ ଥିଲା ।

ତୃତୀୟରେ, ଦର୍ଶନ ଦିଗରୁ ଗୀତା ହେଲା ସାଂଖ୍ୟ, ଯୋଗ, ବେଦାନ୍ତ ଭିତରେ ସମନ୍ୱୟର ଏକ ସୁଚତୁର ପ୍ରତିଷ୍ଠା । ଗୀତାଠାରୁ ବଳି ଏତେ ସୁନ୍ଦର ସରଳ ଶକ୍ତିଶାଳୀ ସୁଚତୁର ଗ୍ରନ୍ଥ ନାହିଁ । ଏହା ଯୁଗ ଯୁଗ ଧରି ହିନ୍ଦୁ ସମାଜରେ ପ୍ରଭାବ ବିସ୍ତାର କରିଆସିଛି । ତାକୁ ପ୍ରତ୍ୟେକ ନିଜ ନିଜ ଦୃଷ୍ଟିରୁ ବ୍ୟାଖ୍ୟା ଓ ପ୍ରୟୋଗ କରିବାରେ ଲାଗିଛନ୍ତି ।

ଚତୁର୍ଥରେ, ଏଣିକି ଦୟା, ପ୍ରେମ, ଅନୁକମ୍ପା ଏବଂ ଶେଷକୁ ଅହିଂସାର ଭାବ ପ୍ରଚଳିତ ହେଲା । କାରଣ ଏଥିପୂର୍ବରୁ ଉପନିଷଦର କଠୋର ଚାତୁର୍ବର୍ଣ୍ଣ୍ୟ ବ୍ୟବସ୍ଥା ବିରୋଧରେ ବୌଦ୍ଧଧର୍ମ ଏସବୁର ଡାକ ଦେଇଥିଲା । ତାର ସେଇ କାର୍ଯ୍ୟ ଓ ପ୍ରଚାର ଲୋକଙ୍କୁ ଆକୃଷ୍ଟ କରିଥିଲା । ଉପନିଷଦ ଲୋକଙ୍କର ସେଇସବୁ ଆଶା ଆକାଙ୍କ୍ଷା, ଯାହାକୁ ଅସ୍ୱୀକାର କରିଥିଲା, ଗୀତା ଏବେ ସେ ଦିଗରେ ଆଶା ଆଶ୍ୱାସନାର ଭାବ ପ୍ରଦାନ କଲା । ଏବେ ଏହାଦ୍ୱାରା ଆରମ୍ଭ ହେଲା ବର୍ଣ୍ଣାଶ୍ରମ ଓ ବ୍ରାହ୍ମଣ୍ୟବାଦର ବ୍ୟାପକ ପ୍ରତି-ଆକ୍ରମଣ, ଯାହା ଏବେ ବି ଅପ୍ରତିହତ ରହିଛି । ଏ ସମ୍ପର୍କରେ ପରେ ଆଲୋଚନା କରିବା ।

**ଗଣ-ସମାଜର ପତନରେ ଜଗନ୍ନାଥଙ୍କ ଭିତ୍ତିର ବିଲୋପ ---**

ଗଣଗୋଷ୍ଠୀ ସମାଜ ସାଧାରଣତଃ ଆଦିମ ସାମ୍ୟ- ସମାଜ । ସେଇ ଆଦିମ ସମାଜର ଅଗ୍ରଗତି ଦୁଇଟି ରାସ୍ତାରେ ସମ୍ଭବ । ଗୋଟିଏ ହେଲା ତାର ନିଜସ୍ୱ ସ୍ୱାଭାବିକ

ବିକାଶ, ନିଜେ ନିଜର ଉଦ୍ୟମରେ, ନିଜ ବାଟରେ କୌଣସି ବାହ୍ୟ ହସ୍ତକ୍ଷେପ ବିନା କ୍ରମଶଃ ବିକାଶ ଲାଭ କରିବା । ନିଜର ବ୍ୟକ୍ତିଗତ ସମ୍ପତ୍ତିର ବିକାଶ ଓ ରାଷ୍ଟ୍ରଶକ୍ତିର ଆବିର୍ଭାବରେ ସାମ୍ୟରୁ ଅସାମ୍ୟକୁ ଗତି କରିବା — ଉନ୍ନତି ଦିଗରେ ଅଗ୍ରସର ହେବା । ଅନ୍ୟଟି ହେଲା, କୌଣସି ବାହ୍ୟ ଶକ୍ତିଦ୍ୱାରା ପରାଭୂତ ବା ଧ୍ୱସ୍ତ ବିଧ୍ୱସ୍ତ ହୋଇ ବା ତାହାଦ୍ୱାରା ପରିବର୍ତ୍ତନ ପଥରେ ଟଣା ହୋଇଯିବା । ଗୋଟିଏ ସ୍ୱାଭାବିକ, ପ୍ରାକୃତିକ ବିକାଶ ହେଲେ ଅନ୍ୟଟି ଧ୍ୱଂସାତ୍ମକ, ଉଦ୍ଦେଶ୍ୟମୂଳକ ବିକାଶ । ଦୃଷ୍ଟାନ୍ତସ୍ୱରୂପ: ଭାରତର ଶିଳ୍ପପ୍ରସାରକୁ ଦେଖାଯାଇପାରେ । ତାହା ଅନ୍ୟ ପାଶ୍ଚାତ୍ୟ ଦେଶଙ୍କ ଭଳି ସ୍ୱାଭାବିକ ଭାବେ ନିଜ ଉଦ୍ୟମରେ ସାମନ୍ତବାଦୀ ଅର୍ଥନୀତିରୁ ପୁଞ୍ଜିବାଦୀ ଶିଳ୍ପ- ଉନ୍ନତିକୁ ଗତିକରିନାହିଁ । ବ୍ରିଟିଶଙ୍କର ଲାଭ ଦୃଷ୍ଟିରୁ ସାମନ୍ତବାଦକୁ ରଖି ଦେଶର ପୂର୍ବଶିଳ୍ପକୁ ଧ୍ୱଂସ କରିଛି । ତାହା ସ୍ଥାନରେ ଯାହା କିଛି କରିଛି ତାହା ନିଜର ଶୋଷଣ ବିସ୍ତାର ଲାଗି । ଫଳରେ ଭାରତର ଦୁଃଖ ନିର୍ଯ୍ୟାତନାର ସୀମା ରହିଲା ନାହିଁ ।

ପ୍ରାୟ ଠିକ୍ ସେହିପରି ଘଟିଛି ଆଦିମ ଗଣ-ସମାଜରେ । ସବୁ ଗଣ ସମାଜ ବିକାଶର ସମାନ ସ୍ତରରେ ନାହାନ୍ତି । ସମସ୍ତେ ପ୍ରାୟ ଭାଙ୍ଗିଛନ୍ତି ନିଜର ସ୍ୱାଭାବିକ ବିକାଶ ଦ୍ୱାରା ନୁହେଁ, ବାହାର ଶକ୍ତିର ହସ୍ତପେକ୍ଷ, ଆକ୍ରମଣ ବା ସାମ୍ରାଜ୍ୟ- ବିସ୍ତାର ଅଭିଯାନ ଦ୍ୱାରା । ବ୍ୟକ୍ତିଗତ ସମ୍ପତ୍ତି ଓ ରାଷ୍ଟ୍ର ଶକ୍ତିର ଅଭ୍ୟୁତ୍‌ଥାନ ଆଉ ପ୍ରସାର ଲାଗି ଗଣଗୁଡିକର ଧ୍ୱଂସ ଅନିର୍ବାର୍ଯ୍ୟ । ସେହି ଧ୍ୱଂସର ପରିଣାମ ଦୁଃଖଦାୟକ ହେବା ସ୍ୱାଭାବିକ । ବୁଦ୍ଧ ସେଇଥିରେ ମର୍ମାହତ ଓ ମ୍ରିୟମାଣ ହୋଇ ଖୋଜିଛନ୍ତି ସେଇ ଦୁଃଖର କାରଣକୁ । ଅନ୍ୟ ଦିଗରେ ଅତି ନିର୍ମମ ନିର୍ଲଜ୍ଜ ନିର୍ବିକାର ଚିତ୍ତରେ ସେଇ ଗଣଧ୍ୱଂସର ମାର୍ଗ ଅନୁସରଣ କରିଛନ୍ତି କୌଟିଲ୍ୟ । ଯେଉଁଠିକି କୌଣସି ଦୟା ମାୟା, ନୀତି ଅନୀତି, ସତ୍ୟ ମିଥ୍ୟା, ପାପ ପୁଣ୍ୟ, ବିବେକ ଅବିବେକ ଆଦି ବାଛ ବିଚାରର ପ୍ରଶ୍ନ ନାହିଁ ।

ବୁଦ୍ଧ ଓ କୌଟିଲ୍ୟ ଦୁହେଁ କିନ୍ତୁ ସେଇ ଗଣସମାଜର ଅନ୍ତର୍ନିହିତ ଶକ୍ତି ସମ୍ବନ୍ଧରେ ଏକମତ । ସେଇ ଶକ୍ତି ହେଉଛି ଗଣସମାଜର ସାମାଜିକ ବ୍ୟବସ୍ଥା ଓ ଐକ୍ୟ । ତାହା ସାଧାରଣତଃ ବ୍ୟକ୍ତିଗତ ସମ୍ପତ୍ତିର ଅଭାବ — ସମତା, ଭ୍ରାତୃତ୍ୱ ଓ ସ୍ୱାଧୀନତା ଉପରେ ପ୍ରତିଷ୍ଠିତ । ବୁଦ୍ଧ ଚାହିଁଛନ୍ତି ସେସବୁର ପୁନଃପ୍ରତିଷ୍ଠା । ତାକୁ ନିଜର ସଂଘର ଭିତ୍ତି କରି ଗଢିବାକୁ । କୌଟିଲ୍ୟ ଚାହିଁଛନ୍ତି ରାଷ୍ଟ୍ରଶକ୍ତିର ପ୍ରସାର ଲାଗି ତାକୁ କିପରି ଭାଙ୍ଗିବେ, ଧ୍ୱଂସ କରିବେ । ସେହି ଦୃଷ୍ଟିରୁ ବୁଦ୍ଧ ତାକୁ ନିଜ ସଂଘର ନିୟମାବଳୀର ଭିତ୍ତି କଲାବେଳେ ଅନ୍ୟ ଦିଗରେ କୌଟିଲ୍ୟ ରାଷ୍ଟ୍ରଶକ୍ତିର ବିସ୍ତାର ଦୃଷ୍ଟିରୁ ତାର ନିଧନର ନିର୍ଦ୍ଦେଶ ଦେଇଥାନ୍ତି । ତାହା ପରେ ଆଲୋଚନା କରିବା ।

ଯେତେ ଯାହା ହେଲେ ବି ଏବେ ସମାଜ ଗତି ସାମ୍ୟରୁ ଅସାମ୍ୟ ଆଡକୁ ଆରମ୍ଭ ହେଲା । ସେହି ଯାତ୍ରା ପଥରେ ଆଗେଇ ଚାଲିଲା ଜଗନ୍ନାଥଙ୍କ ଜୀବନ ।

ଯେହେତୁ ସେ "ଇତିହାସର ଠାକୁର, " ପ୍ରାକ୍-ଶ୍ରେଣୀବିଭକ୍ତ ସାମ୍ୟ ସମାଜରେ ତାଙ୍କର ଜନ୍ମ ତେଣୁ ନାହିଁ ତାଙ୍କଠାରେ ବ୍ୟକ୍ତିଗତ ସମ୍ପତ୍ତି ବା ବ୍ୟକ୍ତିଗତ ସ୍ୱାର୍ଥର କାମନା । ସେହିପରି ପ୍ରାକ୍- ଅଧି- ବିଦ୍ୟାବାଦୀ ଅତି ସରଳ ନିର୍ମଳ ପ୍ରାକୃତିକ ଧାରଣା ଭିତରେ ସେହି ଭାବର ବିସ୍ତାର ହେତୁ ନାହିଁ ସେଠି କୌଣସି ଅତି ପ୍ରାକୃତିକ ଶକ୍ତିର ପରିକଳ୍ପନା କି କୌଣସି ଅଲୌକିକ ସତ୍ତାର ପ୍ରବେଶ । ଏବେ ଠିକ୍ ସେହି ଦୁଇଟି ଭାବଦ୍ୱାରା ଜଗନ୍ନାଥ ଅଭିଷିକ୍ତ ହେଲେ । ତାଙ୍କୁ ଡକାପଡ଼ିଲା ବ୍ୟକ୍ତିଗତ କାମନାର ପୂରଣ ପାଇଁ ଏକ ଅଲୌକିକ ସତ୍ତା ଭାବରେ । ତାଙ୍କୁ ଦେଖାଯାଏ ଏକ ଅତିପ୍ରାକୃତିକ ଶକ୍ତି ଭାବରେ ନିଜର ସ୍ୱାର୍ଥ ପୂରଣଲାଗି । ସେଦିନର କେଉଁ ଅଜଣା କାଳରେ ଯେଉଁ ଯାତ୍ରାର ଆରମ୍ଭ, ଅଲକ୍ଷ୍ୟରେ ତାର ଅନିବାର୍ଯ୍ୟ ପରିଣତି ହେଲେ— ଆଜିର ଜଗନ୍ନାଥ ।

ସେହିସବୁ ଗଣକୁ ବାର୍ତ୍ତ, ସଂଘ, ପୁଗ, ଶ୍ରେଣୀ ମଧ କୁହାଯାଉଥିଲା । ତାହା ଥିଲା ଟ୍ରାଇବାଲ୍ ଗଣତନ୍ତ୍ର । ତାକୁ କିନ୍ତୁ ବର୍ତ୍ତମାନ ଅର୍ଥରେ ଗଣତାନ୍ତ୍ରିକ ରାଷ୍ଟ୍ର ବୋଲି ବିଚାର କରିବା ଠିକ୍ ନୁହେଁ । କାରଣ ରାଷ୍ଟ୍ର ଏକ ଶାସନ, ଦମନମୂଳକ ସଂସ୍ଥା । ଯାହାଦ୍ୱାରା ଗୋଟାଏ ଶ୍ରେଣୀ ଅନ୍ୟ ଏକ ଶ୍ରେଣୀକୁ ଜବତ୍ କରେ, ଅଧୀନ କରି ରଖେ । ଟ୍ରାଇବାଲ୍ ସମାଜରେ ସେପରି ଏକ ସଂସ୍ଥା ବା ସଙ୍ଗଠନ ସମ୍ପୂର୍ଣ୍ଣ ଅଜଣା । ତାର ଆବଶ୍ୟକତା ସେପର୍ଯ୍ୟନ୍ତ ଅନୁଭୂତ ହୋଇନାହିଁ । ସେଠି ରାଷ୍ଟ୍ରର ପ୍ରଶ୍ନ ଉଠେନା । ତାକୁ ଆଦିମ କମ୍ୟୁନିଷ୍ଟ ସମାଜ କୁହାଯାଏ । ରିହିସ୍ ଦାରିଦସ୍‌ଙ୍କ ମତରେ "ଗଣର ପ୍ରଶାସନ ଓ ବିଚାର ସର୍ବସାଧାରଣ ସଭାରେ ହେଉଥିଲା । କପିଳବାସ୍ତୁର ଧୂଳିଧୂସରିତ ସର୍ବସାଧାରଣ ଗୃହରେ ତାହା ବସୁଥିଲା । ପିଲା, ବୁଢ଼ା, ସମସ୍ତେ ସମାନ ଭାବେ ଉପସ୍ଥିତ ରହୁଥିଲେ । କାର୍ଯ୍ୟ ପରିଚାଳନା ଲାଗି ଜଣେ ମୁଖ୍ୟ ନିର୍ବାଚିତ ହେଉଥିଲେ । ସେ କିପରି ଓ କେତେ ସମୟ ଲାଗି ହେଉଥିଲେ ତାହା ଆମେ ଜାଣୁନାହିଁ । ସେ ସଭାରେ ସଭାପତିତ୍ୱ କରୁଥିଲେ । ସଭା ନ ବସିଲାବେଳେ ସିଏ ରାଷ୍ଟ୍ରର ସଭାପତିଭାବେ ରାଜା ଆଖ୍ୟା ନେଇ ରାଜ୍ୟ ଚଳାଉଥିଲେ । ତାହା ଗୋଟାଏ ପ୍ରକାରର ରୋମ କନସଲ୍ ବା ଗ୍ରୀସର ଅର୍କମ୍‌ଙ୍କ ଭଳି । (ଏମାନେ ହେଲେ ପ୍ରାଚୀନ କାଳରେ ସେଠାରେ ପ୍ରଜାତନ୍ତ୍ର ଦ୍ୱାରା ନିଯୁକ୍ତ ମାଜିଷ୍ଟ୍ରେଟ୍) । ସେହି ରାଜକୀୟ କାର୍ଯ୍ୟ ପ୍ରକୃତ ରାଜାଙ୍କର ପ୍ରତି କରାଯାଉଥିବା କଥା ଭଳି ଆମେ ଜାଣୁନା ।" ପରେ ହେଲାଭଳି ରାଜା ବିଷ୍ଣୁଙ୍କ ଅବତାର ନ ଥିଲେ । ରାଜା ଥିଲେ ଗଣର ସେବକ । ତାକୁ କୁହାଯାଉଥିଲା 'ଗଣ-ଦାସ' । ଯେହେତୁ ସେ ସମସ୍ତଙ୍କ ମତ ନେଇ ହେଉଥିଲେ, ତେଣୁ ରାଜାଙ୍କର ଅନ୍ୟନାମ ଥିଲା "ମହାସମ୍ମତ" ।

ବୁଦ୍ଧ ତାଙ୍କ ପ୍ରେରଣା ପାଇଛନ୍ତି ସେହି ଟ୍ରାଇବାଲ ସମାଜରୁ । ଏପରିକି ତାଙ୍କ ସଂଘର ସଙ୍ଗଠନ, ଭିକ୍ଷୁ ହେବାର ବିଧାନ ସେହି ଟ୍ରାଇବାଲ ପ୍ରଥାର ଅନୁସରଣର ଗଠିତ । ମଣିଷ ଟ୍ରାଇବାଲ ସମାଜରେ ଜନ୍ମ ହେଲେ ବି ତାର ପଦମର୍ଯ୍ୟାଦା ଲାଭ ଲାଗି ତାକୁ ଗୋଟାଏ ବିଧାନ ଭିତର ଦେଇ ଯିବାକୁ ହୁଏ ।

ସେଥିରେ ମଣିଷ ଏକସଙ୍ଗରେ ଜନ୍ମ ଓ ମୃତ୍ୟୁର ଛଳନା କରେ । ସେଠି ସେ ନାବାଳକ ଭାବେ ମରିଯାଏ, ସାବାଳକ ହୋଇ ଜନ୍ମ ନିଏ । ଟ୍ରାଇବାଲ ସଭାରେ ନିଜର କର୍ତ୍ତବ୍ୟ ଓ ଦାୟିତ୍ୱର ଶପଥ ନେବା ଦ୍ୱାରା ସେଇ ସମାଜର ସଭ୍ୟର ମର୍ଯ୍ୟାଦା ଲାଭ କରେ । ଉପନୟନରେ ବ୍ରାହ୍ମଣ ପ୍ରଥା ତାକୁ ଅନୁସରଣ କରିଛି । ବ୍ରାହ୍ମଣ କୁଳରେ ଜନ୍ମ ହେଲେ ଲୋକ ବ୍ରାହ୍ମଣ ହୁଏ ନାହିଁ । ସେଥିଲାଗି ଉପନୟନ ଦ୍ୱାରା ତାକୁ ଦ୍ୱିଜ ହେବାକୁ ପଡ଼େ । ଅର୍ଥାତ ଦୁଇଥର ଜନ୍ମ ହେବାକୁ ପଡ଼େ । ଏହା ସେହି ଟ୍ରାଇବାଲ ପ୍ରଥାରୁ ଉଦ୍ଭବ । ବୁଦ୍ଧଙ୍କ ଦ୍ୱାରା ତାହା ଅତି ଗଣତାନ୍ତ୍ରିକ ଭାବରେ ଅନୁସୃତ । ଜଣକୁ ସଂଘଭୁକ୍ତ ହେବାକୁ ହେଲେ ସମସ୍ତ ଭିକ୍ଷୁଙ୍କର ମତ ଦରକାର । ସଭାରେ ସେ ଦିଗରେ ପ୍ରସ୍ତାବକୁ ତିନିଥର ରଖାଯାଏ । ପ୍ରାର୍ଥୀଙ୍କୁ ବହୁ ପ୍ରଶ୍ନର ଉତ୍ତର ଦେବାକୁ ପଡ଼େ । କେହି ବିରୋଧ ନ କରି ମୌନ ରହିଲେ ମୌନଂ ସମ୍ମତି-ଲକ୍ଷଣଂ ଭାବେ ତାହା ଗୃହୀତ ହୁଏ । ବିରୋଧ ହେଲେ ଭୋଟ ହୁଏ । ସଭାରେ ଏକ ସର୍ବନିମ୍ନ ଉପସ୍ଥିତି ବା କୋରମ ଦରକାର ଇତ୍ୟାଦି ।

ସେହି ପ୍ରାକ୍ -ଶ୍ରେଣୀବିଭକ୍ତ ସମାଜ ହେଉଛି ଭାରତର ଗଣସମାଜ । ଗଣର ଅର୍ଥ ହେଉଛି ସମୂହ ବା ସମଷ୍ଟି — ସମସ୍ତଙ୍କ ସାମ୍ୟ ସମାଜ । ଭାରତର ସବୁ-ଅଞ୍ଚଳର ବିକାଶ ଗୋଟାଏ ସମୟରେ ସମାନ ଭାବରେ ଘଟିନାହିଁ । ସେଇ ଗଣସମାଜ ନୂତନ ଗଢ଼ିଉଠିଥିବା ରାଷ୍ଟ୍ରଶକ୍ତି ସହିତ ବହୁ ଜାଗାରେ ଏକାଠି ରହିଆସିଛନ୍ତି । ସେହି ଅସମ ବିକାଶ ଏବେ ବି ଚାଲିଛି । ଆଜି ସହରର ନଭଶ୍ଚୁମ୍ବୀ ଅଟ୍ଟାଳିକା ସହିତ ଅର୍ଦ୍ଧ-ଉଲଗ୍ନ ଆଦିବାସୀ ବି ରହିଛନ୍ତି । ସେହି ପ୍ରାଚୀନ କାଳରେ ଚାରିଆଡ଼େ ରହିଥିବା ଗଣଙ୍କ ଭିତରେ ଏଠି ସେଠି ମୁଣ୍ଡ ଟେକି ଉଠିଛି ବିଭିନ୍ନ ରାଷ୍ଟ୍ରଶକ୍ତି ।

କିନ୍ତୁ ସେମାନଙ୍କ ପକ୍ଷରେ ଗଣ ବା ସଂଘକୁ ଭାଙ୍ଗିବା — ତାଙ୍କୁ ଜୟ କରିବା ସହଜସାଧ୍ୟ ନୁହେଁ । କୌଟିଲ୍ୟ ଭଲକରି ଜାଣନ୍ତି ସଂଘମାନେ 'ଅଧୃଷ୍ୟ' ଓ ଅଜେୟ । ତାଙ୍କର ସେହି ଅଜେୟ ଶକ୍ତିର ଉତ୍ସ ହେଉଛି — ଗୋଷ୍ଠୀ ଐକ୍ୟର ବନ୍ଧନ । ''ସେମାନେ ଦୃଢ଼, ସାମୂହିକ ଶକ୍ତିସମ୍ପନ୍ନ ।'' ସେହି ଗୋଷ୍ଠୀ ଜୀବନର ବନ୍ଧନ ଏକ ଅଲଙ୍ଘନୀୟ ନିୟମ । ସାମ୍ୟ, ମୈତ୍ରୀ ପ୍ରୀତିର ଗଣତନ୍ତ୍ର ଉପରେ ଯେଉଁ ଐକ୍ୟ ପ୍ରତିଷ୍ଠିତ, ତାହା କେଡ଼େ ଶକ୍ତ, ବଳିଷ୍ଠ ଓ ଦୁର୍ଦ୍ଧର୍ଷ ହୋଇ ନ ଥିବ ? ତେଣୁ ତାଙ୍କୁ ପ୍ରତ୍ୟକ୍ଷ ଆକ୍ରମଣ ନ କରି ତାକୁ କଳେ ବଳେ କୌଶଳେ ଭାଙ୍ଗିବା ଓ ଦଖଲ କରିବା ନୀତି କୌଟିଲ୍ୟ ନେଇଛନ୍ତି । ଗଣକୁ ଭିତରୁ ଫଟାଇବା ଲାଗି ବିଭେଦ ସୃଷ୍ଟିର ସମସ୍ତ କୌଶଳ ଖଟାଇଛନ୍ତି । ମଦ, ଲାଞ୍ଚ, ସଧବା ବିଧବା ନାରୀ ପ୍ରେରଣ, ସନ୍ୟାସୀ ବେଶଧାରୀ ଗୁପ୍ତଚରଙ୍କ ପ୍ରୟୋଗ, ମିଥ୍ୟା ରଟନା, ବିଷର ବ୍ୟବହାର, ଗୋପନରେ ହତ୍ୟା ଆଦି କୌଣସି ବିଷୟ ବାକି ରଖିନାହାନ୍ତି । ତାକୁ ସେ ରାଷ୍ଟ୍ର ଶାସନର ପବିତ୍ର ନୀତିରେ ପରିଣତ କରିଛନ୍ତି । ଗଣଗୁଡ଼ିକୁ ଭାଙ୍ଗିବା ଲାଗି କୌଟିଲ୍ୟ କି ପ୍ରକାର

ଘୃଣ୍ୟ, ଜଘନ୍ୟ ଓ ଭୟଙ୍କର ରୂପମାନ ପ୍ରୟୋଗର ପରାମର୍ଶ ଦେଇଛନ୍ତି, ତାହା ତାଙ୍କ ନିଜ ମୁହଁରୁ ଶୁଣନ୍ତୁ । ତାହା ଟିକେ ଦୀର୍ଘ ହେଲେ ବି ଅଧ୍ୟୟନଯୋଗ୍ୟ (ଅର୍ଥଶାସ୍ତ୍ର ୨.୨୦୯-୧୨ ସଂଘକୃତମ୍)

''ସଂଘ ସମୂହ କେବଳ ସାମୂହିକ ଦୃଢ଼ ଶକ୍ତିସମ୍ପନ୍ନ ହୋଇ ଅବସ୍ଥିତ ହୋଇଥିବା ଯୋଗୁଁ ଶତ୍ରୁଦ୍ୱାରା ଅଧୃଷ୍ୟ ଅର୍ଥାତ୍ ଅଜେୟ ହୋଇଥାନ୍ତି । ଅତଏବ ବିଜିଗୀଷୁଙ୍କର ଏହିପରି ସଂଘସମୂହ ଯଦି ଅବିରୁଦ୍ଧାଚାରୀ ହୁଅନ୍ତି, ତେବେ ତାଙ୍କୁ ଭେଦ-ଦଣ୍ଡ ଦ୍ୱାରା ଆୟତ୍ତ କରିବ ।'' ଲିଚ୍ଛବିକ, ବ୍ରିଜିକ, ମଲ୍ଲକ, ମଦ୍ରକ, କୁକ୍କୁର, କୁରୁ, ପାଞ୍ଚାଳ, ଅନ୍ଧକ ଆଦି କେତେ ସଂଘର ନାମ ଉଲ୍ଲଖ ଅଛି, .....''ସଂଘଭୁକ୍ତ ବ୍ୟକ୍ତିମାନେ ରାଜ-ଶବ୍ଦୋପଯୋଗୀ ଅର୍ଥାତ୍ ନାମମାତ୍ର ରାଜା ଆଖ୍ୟା ଧାରଣ କରି ବିଭିନ୍ନ ସ୍ୱରୂପରେ ପରିଚିତ ହୋଇଥାନ୍ତି, ବା ଉପଜୀବିକା ଚଳାନ୍ତି ।

ସଂଘର ନିକଟବର୍ତ୍ତୀ ହୋଇ ଗୂଢ଼ (ଗୁପ୍ତ) ପୁରୁଷଗଣ ସଂଘ ମଧ୍ୟରେ ପରସ୍ପର ଭିତରେ ଦୋଷ, ଦ୍ୱେଷ ଓ କ୍ରୋଧ ଅପକାର ଆଦି ବୈର ବିଦ୍ରୋହ କଳହର କାରଣକୁ ଉପଲବ୍ଧି କରି ତାଙ୍କ ମଧ୍ୟରେ କ୍ରମଶଃ ଅନୁପ୍ରବେଶିତ ଭେଦ ଘଟାଇବେ । କହିବେ,''ଅମୁକ ଗଣ ତମ ବିରୋଧରେ ଏପରି ଅପବାଦ କରେ ।''

ଅନ୍ୟ ସଂଘଙ୍କ ପ୍ରତି ମଧ୍ୟ ସେହିପରି କହି ଉଭୟପକ୍ଷ ମଧ୍ୟରେ ଭେଦ ଆଣିବେ । (ଲିଚ୍ଛବିକ, ବ୍ରିଜିକ, ମଲ୍ଲକ, ମଦ୍ରକ, କୁକ୍କୁର, କୁରୁ, ପାଞ୍ଚାଳ ଆଦି କେତେକ ସଂଘ ବା ଗଣର ଉଲ୍ଲେଖ ରହିଛି ।) ପରସ୍ପର ପ୍ରତି ରୁଷ୍ଟଭାବାପନ୍ନ ଗଣମାନଙ୍କ ମଧ୍ୟରେ ଆଚାର୍ଯ୍ୟ-ବ୍ୟଞ୍ଜକ ଗୂଢ଼ ପୁରୁଷଗଣ ବିଦ୍ୟା, ଶିଳ୍ପ, ଦ୍ୟୂତ ଓ ବୈବାହିକ ବିଷୟରେ କଳହ ଉତ୍ପାଦନ କରିବେ । ହୀନ ଲୋକମାନଙ୍କ ସହିତ ବିଶିଷ୍ଟମାନଙ୍କର ଏକ ପଂକ୍ତିରେ ଭୋଜନ ଓ ବିବାହ ସମ୍ବନ୍ଧ ସେମାନେ ନିବାରଣ କରିବେ..... ଅଥବା ଗଣ ଭିତରେକୌଣସି ନ୍ୟାୟଭାବ ନିର୍ଣ୍ଣୀତ ହେଲେ ମଧ୍ୟ ସେମାନେ ତାର ବିପରୀତ ନ୍ୟାୟ ସମର୍ଥନ କରି ଶୁଣାଇବେ ବା ବୁଝାଇବେ । ଅଥବା, ତୀକ୍ଷ୍ଣ ନାମକ ଗୂଢପୁରୁଷମାନେ ରାତିରେ ଗଣ (ସଂଘ) ଭିତରେ କୌଣସି ବିପଦ ଉପସ୍ଥିତ ହେଲେ ଗୋଟିଏ ପକ୍ଷର ଜିନିଷ, ପଶୁ, ମଣିଷ ଆଦି ନଷ୍ଟ କରି ଅପରପକ୍ଷ ଉପରେ ସେଇ ଦୋଷ ବୋଳିଦେଇ ସେମାନଙ୍କ ମଧ୍ୟରେ କଳହ ଉତ୍ପାଦନ କରିବେ.... ବିକ୍ରମର ଅବସର ଉପସ୍ଥିତ ହେଲେ ଶୌଣ୍ଡିକ ଓ ସୌରିକା ବେଶଧାରୀ ଗୂଢ ପୁରୁଷଗଣ ନିଜ ସ୍ତ୍ରୀ ଓ ପୁତ୍ରର ମରଣ ଛଳନା କରି (ପ୍ରେତ ଉଦ୍ଦେଶ୍ୟରେ) ବୈଷେସନିକ ନାମକ ମଧ୍ୟ ଏହି କଥା କହି ସଂଘ ନିକଟରେ ମଦରସ ଯୁକ୍ତ ଶତ ଶତ କୁମ୍ଭ ପ୍ରଦାନ କରିବେ । .... ଅଥବା କୁଳଟା ସ୍ତ୍ରୀର ପୋଷଣକାରୀ ପ୍ଲବକ, ନଟ, ନର୍ତ୍ତକ ଓ ସୌରିକଗଣ ବେଶଧାରୀ ପୁରୁଷମାନଙ୍କୁ ଗୁପ୍ତଚର କାର୍ଯ୍ୟରେ ବ୍ୟାପୃତ କରି ପରମ ରୂପ ଯୌବନ ବିଶିଷ୍ଟ ସ୍ତ୍ରୀଲୋକଙ୍କ ଦ୍ୱାରା ସଂଘ ମୁଖ୍ୟ ଆଦିମାନଙ୍କୁ ଉନ୍ମାଦିତ କରିବେ । ସଂଘର ମୁଖ୍ୟମାନେ ଏହି ଭାବେ ସ୍ତ୍ରୀ-କାମୀ ହୋଇ

ତାଙ୍କ ମଧ୍ୟରୁ କୌଣସି ସ୍ତ୍ରୀ-ଲୋକ ପ୍ରତି ବିଶ୍ୱାସ ଉତ୍ପାଦନ କରି ମିଳନର ସଙ୍କେତ ସ୍ଥାନ ଠିକ୍ ହେଲେ ସେହି ରମଣୀକୁ ଅନ୍ୟ ଏକ ସଂଘ ମୁଖ୍ୟଦ୍ୱାରା ଅନ୍ୟତ୍ର ଘେନିଯିବା କିମ୍ବା ତାକୁ ଅପହରଣ କରିଛି ବୋଲି ମିଥ୍ୟା କଥା ରଚନା କରି ସଂଘମୁଖ୍ୟଙ୍କ ମଧ୍ୟରେ କଳହ ଉତ୍ପାଦନ କରିବେ । ଏହିପରି କଳହ ଉତ୍ପାଦନ ହେଲେ ତୀର୍ଥ ନାମକ ଗୂଢ ପରୁଷମାନେ ତାଙ୍କ ନିଜ କାର୍ଯ୍ୟ ସମ୍ପାଦନ କରିବେ । ଅର୍ଥାତ୍ କୌଣସି ଜଣେ ସଂଘମୁଖ୍ୟର ହତ୍ୟା ସାଧନ କରିବେ ଏବଂ ରଟାଇ ଦେବେ ଯେ ''ଏହି କାମୁକ ବ୍ୟକ୍ତି ପ୍ରତି କାମୁକ ଅନ୍ୟ ବ୍ୟକ୍ତି ଦ୍ୱାରା ନିହତ ହୋଇଛି ।'' ସେହି ସଂଘ ମୁଖ୍ୟମାନଙ୍କ ମଧ୍ୟରେ କେହି ଝଗଡା କରିବାକୁ ନ ଚାହିଁଲେ, ସେହି ରମଣୀ ଏହିପରି କହିବ— ''ଆପଣଙ୍କ ପ୍ରତି ମୁଁ ଜାତକାମ ହେଲି, ସେଥିରେ ଅମୁକ ସଂଘର ମୁଖ୍ୟ ବାଧା ଦେଉଥିଲା, ଅର୍ଥାତ୍ — ସେ ତାହା ଇଛା କରୁନ ଥିଲା । ସିଏ ଜୀବତ ଥିଲେ ମୁଁ ଆଉ ଏଠି ଆପଣଙ୍କ ନିକଟରେ ରହିପାରି ନ ଥାନ୍ତି । '' ଏହି କଥା କହି ସେ ତାର ବଧର ଆୟୋଜନ କରିବ । ଅଥବା ଯଦି କୌଣସି ମୁଖ୍ୟ ତାକୁ ବଳତ୍କାରପୂର୍ବକ ଅପହରଣ କରି କୌଣସି ଜଙ୍ଗଲ ବା କ୍ରୀଡା ଗୃହକୁ ଘେନିଯାଏ, ତାହାହେଲେ ତାକୁ ତୀକ୍ଷ୍ଣ ନାମକ ଗୂଢପୁରୁଷ ଦ୍ୱାରା ହତ୍ୟା କରାଇବ ଅଥବା ସ୍ୱୟଂ ବିଷ ପ୍ରୟୋଗ କରି ତାକୁ ହତ୍ୟା କରିବ । ତାପରେ ସେହି ରମଣୀ ଏମିତି କହିବ, '' --ଅମୁକ ବ୍ୟକ୍ତି (ପ୍ରତି-କାମୀ) ଦ୍ୱାରା ତମର ଲୋକ ହତ ହୋଇଛନ୍ତି ।'' ଅଥବା ସିଦ୍ଧପୁରୁଷ ବେଶଧାରୀ କୌଣସି ଗୂଢ ପୁରୁଷ କୌଣସି ଜାତକାମ ସଂଘମୁଖ୍ୟକୁ ବଶୀକରଣ ଉପଯୋଗୀ ଔଷଧ ପ୍ରୟୋଗର ଛଳନା କରି ବିଷମିଶ୍ରିତ ଔଷଧର ପ୍ରୟୋଗ ଦ୍ୱାରା ତାର ବଧ ସାଧନ କରି ପଳାଇଯିବ । ସେ ପଳାଇଗଲା ପରେ ଅନ୍ୟ ପୁରୁଷମାନେ କହିବେ ଯେ ''ଅନ୍ୟ ଜଣେ ପ୍ରତି-କାମୁକ ଦ୍ୱାରା ପ୍ରେରିତ ହୋଇ ସେହି ସିଦ୍ଧ ପୁରୁଷ ତାର ବଧ କରିଛି । ଅଥବା ଧନୀ, ବିଧବା ସ୍ତ୍ରୀ ଲୋକ ଅଥବା ସଧବାହେଲେ ମଧ୍ୟ ଦାରିଦ୍ର୍ୟ ଦୋଷରେ ଗୁଢ଼ ଭାବେ ବ୍ୟଭିଚାରୀ ସ୍ତ୍ରୀ ଲୋକ ବା କପଟ ସ୍ତ୍ରୀ ଲୋକ (ଅର୍ଥାତ୍ ସ୍ତ୍ରୀ ବେଶଧାରୀ ପୁରୁଷ) ଦାୟ ବା ନିକ୍ଷେପ ସମ୍ବନ୍ଧୀୟ ବିବାଦରେ ମାତି ସଂଘ ମୁଖ୍ୟମାନଙ୍କ ନିକଟରେ ଉପସ୍ଥିତ ହୋଇ ସେମାନଙ୍କୁ ଉନ୍ମାଦିତ କରିବ । ଅଥବା ଅଦିତି ସ୍ତ୍ରୀ (ନାନା ପ୍ରକାରେ ଦେବବତାଙ୍କ ଛବି ପ୍ରଦର୍ଶନ କରି ଜୀବିକା ନିର୍ବାହକାରିଣୀ ) କୌଶିକ ସ୍ତ୍ରୀ (ସର୍ପଗ୍ରାହୀଙ୍କ ସ୍ତ୍ରୀ ) ନର୍ତ୍ତକୀ ଓ ଗାୟିକା ସଂଘ ମୁଖ୍ୟମାନଙ୍କୁ ଉନ୍ମାଦିତ କରିବେ । ଏହି ଭାବରେ ଉନ୍ମାଦିତ ହୋଇ ବଶୀକୃତ ସଂଘମୁଖ୍ୟଙ୍କୁ ସଙ୍କେତରେ ଗୂଢ ପ୍ରହରେ ରାତ୍ରି ସମାଗମାର୍ଥ ପ୍ରବେଶ କଲେ ତୀକ୍ଷ୍ଣ ନାମକ ଗୂଢପୁରୁଷ ଦ୍ୱାରା ତାଙ୍କୁ ବଧ କରିବ କିମ୍ବା ବନ୍ଧନ ପୂର୍ବକ ଅପହରଣ କରିବ । ଅଥବା କୌଣସି ଗୂଢପୁରୁଷ ସଂଘର ମୁଖ୍ୟକୁ ଜଣାଇବ — ଅମୁକ ଗ୍ରାମର ଦରିଦ୍ର କୁଳଜାତ ଅମୁକ ପୁରୁଷ ଜୀବିକା ପାଇଁ ଅନ୍ୟତ୍ର ଚାଲିଯାଇଛି । ତା ସ୍ତ୍ରୀ ରାଜଭୋଗର ଯୋଗ୍ୟ, ତାକୁ ଆପଣ ସ୍ୱୀକାର କରିନିଅନ୍ତୁ'' । ସେହି ସଂଘର ମୁଖ୍ୟଙ୍କ ଦ୍ୱାରା ଗୃହୀତ

ହେଲେ ପନ୍ଦର ଦିନ ପରେ ସିଦ୍ଧ ବେଶଧାରୀ ଏକ ଦୂତ ସଂଘମୁଖ୍ୟମାନଙ୍କ ଭିତରକୁ ଯାଇ ଆକ୍ରନ୍ଦନ ବା ଚିତ୍କାର କରି ଏହିପରି କହିବ-- 'ଏହି ମୁଖ୍ୟ ପୁରୁଷ ମୋର ଭାର୍ଯ୍ୟା, ପୁତ୍ରବଧୂ, ଭଗିନୀ ବା କନ୍ୟାକୁ ବଳାତ୍କାର କରି ଭୋଗକରୁଛି । ଯଦି ସେହି ମୁଖ୍ୟକୁ ନିଗୃହୀତ କରେ, ତାହାହେଲେ ବିଜିଗୀଷୁ ରାଜା ତାକୁ ସ୍ୱ ବଶରେ ଆଣି ଅନ୍ୟାନ୍ୟ ପ୍ରତିକୂଳଚାରୀ ମୁଖ୍ୟମାନଙ୍କ ଉପରେ ତାକୁ ଉଦ୍ୟୁକ୍ତ କରିବେ । ଯଦି ସେହି ମୁଖ୍ୟ ସଂଘ ଦ୍ୱାରା ନିଗୃହୀତ ନ ହୁଏ, ତାହାହେଲେ ତୀକ୍ଷ୍ଣ ଗଣ ରାତିରେ ସିଦ୍ଧବେଶଧାରୀ ଦୂଷା ପୁରୁଷକୁ ହତ୍ୟା କରିବେ । ତାପରେ ଅନ୍ୟାନ୍ୟ ସିଦ୍ଧ ବ୍ୟଞ୍ଜକ ଗୂଢ ପୁରୁଷମାନେ ଚିତ୍କାର କରି କହିବେ, 'ଏହି ସଂଘ ମୁଖ୍ୟ ପୁରୁଷ ବ୍ରହ୍ମଘାତୀ ଏବଂ ସେ ବ୍ରାହ୍ମଣର ସହିତ ଜାର, ଚର୍ମ୍ମରତ ଥିଲା '' ଅଥବା କର୍ତ୍ତାନ୍ତିକ ବା ଦୈବଜ୍ଞର ବେଶଧାରୀ (ସଂଘର ମୁଖ୍ୟମାନଙ୍କ ) ଅନ୍ୟତମ ଦ୍ୱାରା କୃତ (କୌଣସି ବ୍ୟକ୍ତିର) କନ୍ୟା ସମ୍ବନ୍ଧରେ ଅନ୍ୟତମ ସଂଘ ମୁଖ୍ୟ ଏହି ଭାବରେ ବୁଝାଇବ । ''ଅମୁକ ବ୍ୟକ୍ତିର କନ୍ୟା ଯାହାର ପତ୍ନୀ ହେବ, ସେ ରାଜା ହେବ ଏବଂ ସେ କନ୍ୟା ଯେଉଁ ପୁତ୍ର ପ୍ରସବ କରିବ, ସେ ରାଜା ହେବ । ଅତଏବ ସର୍ବସ୍ୱ ଦାନ କରି ବଳାତ୍କାର ପୂର୍ବକ ସେଇ କନ୍ୟାକୁ ଲାଭ କର ।'' (ସେଇ ବୋଧିତ ସଂଘ ମୁଖ୍ୟ ଦ୍ୱାରା ) ଯଦି ସେଇ କନ୍ୟା ଲବ୍ଧ ନ ହୁଏ, ତାହାହେଲେ ପୂର୍ବ ବରଣକାରୀ ପକ୍ଷକୁ ସେମାନେ ତା ବିରୋଧରେ ଉତ୍ସାହିତ କରିବେ । ଆଉ ଯଦି ସେଇ ସଂଘ ମୁଖ୍ୟ ସେଇ କଥାକୁ ଲାଭ କରିପାରେ ତେବେ ପୂର୍ବ ବରୟିତା ଓ ପରବର୍ତ୍ତୀ ଯାଚକ — ଏ ଉଭୟଙ୍କ ମଧ୍ୟରେ କଳହ ସିଦ୍ଧ ହେବ । ଅଥବା ଭିକ୍ଷୁକ ବେଶଧାରୀ ସ୍ତ୍ରୀ ଗୁପ୍ତଚର ଭାର୍ଯ୍ୟା ପ୍ରେମରତ କୌଣସି ସଂଘ ମୁଖ୍ୟକୁ ଏହିପରି କହିବ, '' ଅମୁକ ଯୌନଦୃପ୍ତ ମୁଖ୍ୟ ଆପଣଙ୍କ ଭାର୍ଯ୍ୟାପ୍ରତି କାମ ଲୋଲପ ହୋଇ ତା ପାଖକୁ ମୋତେ ଦୂତୀ ରୂପେ ପଠାଇଛନ୍ତି । ତାଙ୍କ ଭୟରେ ଏହି ପତ୍ର ଆପଣଙ୍କ ପାଖକୁ ନେଇ ଏଠାକୁ ଆସିଛି । ଆପଣଙ୍କ ଭାର୍ଯ୍ୟା ନିର୍ଦ୍ଦୋଷା, ଆପଣ ଗୂଢ ଭାବରେ ତାଙ୍କ ବିରୋଧରେ ପ୍ରତିକାର ଚିନ୍ତା କରନ୍ତୁ, ଅର୍ଥାତ୍ ବଧ ଉପାୟ ଚିନ୍ତା କରନ୍ତୁ । ଯେତେ ଦିନ ଯାଏ ଆପଣ ତାହା ନ କରିଛନ୍ତି, ସେତେଦିନ ଯାଏ ମୁଁ ନିକଟରେ ଅବସ୍ଥାନ କରିବି । ଏହିପରି କଳହର କାରଣ ଉପସ୍ଥିତ ହେଲେ ବା ଆପେ କଳହ ଉତ୍ପନ୍ନ ହେଲେ, ଅଥବା ତୀକ୍ଷ୍ଣ ପୁରୁଷଙ୍କ ଦ୍ୱାରା କଳହ ଉତ୍ପାଦିତ ହେଲେ ବିଜିଗୀଷୁ ରାଜା ଅଳ୍ପ ଶକ୍ତି ବିଶିଷ୍ଟସଂଘମୁଖ୍ୟଙ୍କୁ ଦୋଷ ଓ ଦଣ୍ଡ ଦ୍ୱାରା ନିଜ ବଶରେ ଆଣି ତାକୁ ପ୍ରତିକୂଳଚାରୀ ଅନ୍ୟାନ ସଂଘ ମୁଖ୍ୟଙ୍କ ବିରୋଧରେ ଅକ୍ରମଣରେ ନିଯୁକ୍ତ କରିବେ ।'' ଲୋକାରତ ଦର୍ଶନ ।

ଏଥିରୁ ଜଣାଯାଏ, ଏହି ଗଣଗୁଡିକ ତାଙ୍କ ମନକୁ ମନ ଭାଙ୍ଗିନାହାନ୍ତି । ତାଙ୍କୁ ଭିତରୁ କଳହ, ବିବାଦ, ହତ୍ୟା ଓ ଷଡଯନ୍ତ୍ର ଦ୍ୱାରା ଭଙ୍ଗାଯାଇଛି । ଭୀଷ୍ମ ମହାଭାରତରେ କହିଛନ୍ତି ଯେ, ଗଣ ଭିତରେ ଲୋକଙ୍କ କ୍ରୋଧ ଆଦି ଦ୍ୱାରା ତାହାର ପତନ ହେଲା । ସେସବୁକୁ କିପରି ଉଦ୍ଦେଶ୍ୟମୂଳକଭାବେ ଭର୍ତ୍ତି କରାଯାଇଛି,

କୌଟିଲ୍ୟ ତାହାର ଜ୍ୱଳନ୍ତ ପ୍ରମାଣ । ଏକକୁ ଅଧିକାର କରି ତାଦ୍ୱାରା ଅନ୍ୟକୁ ଅଧିକାର କରିବା ହେଲା ତାଙ୍କର ଉଦ୍ଦେଶ୍ୟ । ତେଣୁ ଅର୍ଥଶାସ୍ତ୍ର କହେ, ''ହୀନପକ୍ଷକୁ ଦୋଷ ବା ଦଣ୍ଡ ଦ୍ୱାରା ସ୍ୱପକ୍ଷକୁ ଆଣି ତାଙ୍କୁ ନିଜର ପ୍ରତିପକ୍ଷ ଓ ଶତ୍ରୁ ବଧ କରିବାରେ ନିୟୋଗ କରିବ ।'' ( ୧ ) ସେମାନେ ପରେ କାଳେ ପୁଣି ଏକ ହୋଇଯାଇ ପାରନ୍ତି, ତେଣୁ ଗଣସମାଜରୁ ଉତ୍ପାଦିତ ଲୋକଙ୍କୁ ପାଞ୍ଚ ଦଶ ଘର କରି ଅଲଗା ଅଲଗା ଛୋଟ ଛୋଟ ଗାଁମାନଙ୍କରେ ବସାଇବ । ''ଦଶକୁଳିନମ୍, ପଞ୍ଚକୁଳିନମ୍ ବା କୁଶ୍ୟା ନିବସୟେତ୍ ।'' ( ୨ ) ଅର୍ଥାତ୍, ତାକୁ କେବେ ଏକ ହେବାର ସୁଯୋଗ ଦେବ ନାହିଁ । ''ଏମାନଙ୍କୁ ଏକତ୍ର ହେବାକୁ ଦେଲେ ସେମାନେ ବିଜିଗୀଷୁ ରାଜା ବିରୋଧରେ ଶସ୍ତ୍ର ଗ୍ରହଣରେ ସମର୍ଥ ହୋଇପାରନ୍ତି । ଏମାନେ ସମବେତ ହେଲେ ଏମାନଙ୍କ ଉପରେ ଦଣ୍ଡ ବିଧାନ କରିବ ।'' (୩)

କୌଟିଲ୍ୟଙ୍କ ସମସ୍ତ ଦୃଷ୍ଟି ଚିନ୍ତା ବା ଉଦ୍ୟମ ଗଣସମାଜର ଧ୍ୱଂସ ଦିଗରେ ଉଦ୍ଦିଷ୍ଟ । ସାମ୍ୟ ଓ ଗଣତାନ୍ତ୍ରୀକ ସମାଜର ବିଲୋପ ସହିତ ଶ୍ରେଣୀ ( ରାଜା ) ଶାସନକୁ ସୁଦୃଢ଼ କରିବା ଉପରେ ନିବଦ୍ଧ । ତାଙ୍କର ଅର୍ଥଶାସ୍ତ୍ର ଅତି ବିଶାଦଭାବେ ଆମୂଳଚୂଳ ସେହି ନୀତିର ନିର୍ଦ୍ଧାରଣ ଘୋଷଣା କରେ । ତାଙ୍କର ସମସ୍ତ ବିଚାର ସେଇ ନୀତିର ଅଧୀନ । କୌଟିଲ୍ୟଙ୍କ ବକ୍ତବ୍ୟ ହେଲା ବୈଷୟିକ (ଅର୍ଥ) ଲାଭ ହେଉଛି ପ୍ରଧାନ ଲକ୍ଷ୍ୟ । କାରଣ ନୈତିକତା (ଧର୍ମ), ଇନ୍ଦ୍ରିୟ ସୁଖ (କାମ) ଉଭୟ ବୈଷୟିକ ଲାଭ ମୂଳରେ ନିହିତ । ଏସବୁ ଏତେଦୂର ଉଗ୍ର ନିଷ୍ଠୁର ଭୟଙ୍କର ଯେ ତାକୁ ଚାହୁଁଥିବା ଲୋକେ ମୁହଁ ଖୋଲି କହିପାରୁ ନ ଥିଲେ । ତାହା କହିଥିବା ଯୋଗୁ କୁହାଯାଏ ତାଙ୍କ ନାମ କୁଟିଳରୁ କୌଟିଲ୍ୟ ହୋଇଛି - ଅର୍ଥାତ୍ କୁଟିଳତା ।

ତାଙ୍କ ସମୟରେ କୌଣସି ଜିନିଷ ଉପରୁ କର ଟିକସ ଛାଡ଼ ନ ଥିଲା । ବାଣିଜ୍ୟ ବ୍ୟବସାୟଠାରୁ ଜୁଆ ଆଡ୍‌ଡ଼ା, ମଦଭାଟି, ଗଣିକାଳୟ ସବୁ ଉପରେ ଟିକସ ଲାଗୁଥିଲା । ଗୁପ୍ତଚରଙ୍କୁ ବଣିକ ସଜାଇ ଅତ୍ୟଧିକ ମୁନାଫା ଲୁଟିବା, ମାତାଲ କରାଇ ଲୁଣ୍ଠନ କରିବା, ଏପରିକି ମଠ, ମନ୍ଦିର, ଧର୍ମାନୁଷ୍ଠାନର ସମ୍ପତ୍ତିକୁ ନିରାପଦ ରଖିବା ଆଳରେ ଦେବାଧକ୍ଷଙ୍କ ଦ୍ୱାରା ତାକୁ ମାରିନେବା ଆଦି କୌଣସି ପନ୍ଥା କୌଟିଲ୍ୟ ଛାଡ଼ିନାହାନ୍ତି ।

କିନ୍ତୁ କୌଟିଲ୍ୟ ତାଙ୍କ ଦୃଷ୍ଟିକୋଣରେ ଆଶ୍ଚର୍ଯ୍ୟଜନକ ଭାବେ ଧର୍ମ-ନିରପେକ୍ଷ । ଲୁଣ୍ଠନ କରିବା ଦିଗରେ ସେ ରାଜାଙ୍କୁ ସବୁପ୍ରକାର ଅନ୍ଧ ଧର୍ମବିଶ୍ୱାସ ଓ କୁସଂସ୍କାର ଆଦିକୁ ବ୍ୟବହାର କରିବାକୁ ପରାମର୍ଶ ଦେଇଛନ୍ତି । କିନ୍ତୁ ସେଥିସହିତ ରାଜାଙ୍କୁ ସତର୍କ କରି ଦେଇଛନ୍ତି ଯେ ସେ ନିଜେ ଯେପରି କୌଣସି ଅନ୍ଧ, ଧର୍ମବିଶ୍ୱାସ

(୧) କୋଟିଲ୍ୟ ଅର୍ଥଶାସ୍ତ୍ର, ୨.୨୦୯
(୨) ଏଜନ, ୨.୨୦୯
(୩) ଏଜନ, ୨.୨୧୦

କୁସଂସ୍କାରର ଶିକାର ନ ହୁଅନ୍ତି, ସେଥିରେ ବିଶ୍ୱାସ ନ କରନ୍ତି । ଅଟଳ ଓ ଆପୋଷ-ହୀନ ଭାବେ ''ଆନ୍ୱିକ୍ଷିକୀ(ନ୍ୟାୟ) ଅନୁସରଣ କରନ୍ତି । କୌଟିଲ୍ୟଙ୍କ କି ସ୍ପଷ୍ଟବାଦିତା !

ଅର୍ଥଶାସ୍ତ୍ର ଆମର ଆଲୋଚ୍ୟ ବିଷୟ ନୁହେଁ । ତାହା ଯେ ଶ୍ରେଣୀବିଭକ୍ତ ସମାଜ, ତାର ରାଷ୍ଟ୍ର ନୀତିର ଆଦିମ ସର୍ବପ୍ରାଚୀନ ମୂଳଶାସ୍ତ୍ର, ଏଥିରେ ସନ୍ଦେହ ନାହିଁ । ପରବର୍ତ୍ତୀ କାଳରେ ସବୁ ଶାସ୍ତ୍ର ଓ ପୁରାଣ ନିୟାମକଗଣ ତାକୁଇ ଅନୁସରଣ କରିଛନ୍ତି । ମନୁସଂହିତା ସାମାଜିକ ଦିଗରୁ ଧର୍ମର ଦ୍ୱାହିଦେଇ ତାକୁ ଆହୁରି ଦୂରକୁ ଘେନିଯାଇଛି । ଏପରିକି ଗୀତାରେ ଖୋଦ ଭଗବାନ ମଧ୍ୟ ସେହି କୌଟିଲ୍ୟଙ୍କର ଆଶ୍ରୟ ନେଇଛନ୍ତି । କାରଣ ତାହା ହିଁ ହେଉଛି ଶ୍ରେଣୀବିଭକ୍ତ ସମାଜର ମୂଳ ଦାବୀ ଓ ଅଲଘନୀୟ ଆହ୍ୱାନ ।

ତେଣୁ ଯାହା ଦିନେ ଖ୍ରୀଷ୍ଟ ଜନ୍ମର ଚାରିଶହ ବର୍ଷ ପୂର୍ବେ ଦେଖା ଦେଇଥିଲା, ତାହା ତାର ହଜାର ବର୍ଷ ପରେ ଏବେ ମଧ୍ୟ ମୂଳତଃ ସେହିପରି ଚାଲିଛି । ଅବସ୍ଥା ଓ ସମୟର ଆବଶ୍ୟକତା ଦୃଷ୍ଟିରୁ ତାର ରୂପ ଓ ପ୍ରୟୋଗରେ ଯେତେ ପରିବର୍ତ୍ତନ ଆସିଲେ ବି ଅର୍ଥଶାସ୍ତ୍ରର ମୌଳିକ ମର୍ମ୍ମ ଏହିପରି ଅକ୍ଷୁର୍ଣ୍ଣ ଓ ଅପରିବର୍ତ୍ତିତ ରହିଛି । କାରଣ ସମସ୍ତ ପରିବର୍ତ୍ତନ ସତ୍ତ୍ୱେ ସେ ଦିନର ସୃଷ୍ଟ ଶ୍ରେଣୀବିଭକ୍ତ ସମାଜ ସେହିପରି ଚାଲିଆସୁଛି । ଅର୍ଥଶାସ୍ତ୍ର ଭାବର ମର୍ମ୍ମ ହେଉଛି ସେଇ ସମାଜର ଆତ୍ମା —ଯାହାକି ଜଗନ୍ନାଥଙ୍କ 'ଆତ୍ମାର' ବିରୋଧୀ ।

ଅତଏବ, ଆଦିମ ଗୋଷ୍ଠୀସମାଜର ଗଣଗୁଡ଼ିକ ବିରୁଦ୍ଧରେ ସେହି ଆକ୍ରମଣ ହେଉଛି, ମୂଳତଃ ସେଇ ଜଗନ୍ନାଥ ଭାବ ବିରୁଦ୍ଧରେ ଆକ୍ରମଣ ଏବଂ ସେଇ ଆକ୍ରମଣ ପ୍ରତିହତ ନ ହେବାଯାଏ ପ୍ରକୃତ ଜଗନ୍ନାଥ ଭାବର ଉପଲବ୍‌ଧ କସ୍ମିନ — କାଳେ ସମ୍ଭବ ନୁହେଁ ।

ଗଣସମାଜର ବିଲୋପରେ—ସେହି ସାମ୍ୟ ମୈତ୍ରୀ ପ୍ରୀତି—ଯାହା ଜଗନ୍ନାଥ- ଭାବର ସାମାଜିକ ଭିତ୍ତି, ଲୁଚିଗଲା ଚିରଦିନ ପାଇଁ—କେବଳ ରହିଗଲା ତାର ସେହି ଅପାଶୋରା ସ୍ମୃତି—ମଣିଷ ପ୍ରାଣର ଆକୁଳ ଆକାଂକ୍ଷା ଭାବରେ—ତାର ଜୀବନରେ ସର୍ବଶ୍ରେଷ୍ଠ କାମନା ସେହି ଜଗନ୍ନାଥ ପ୍ରାପ୍ତିର—ଏକମାତ୍ର ପବିତ୍ର ଭାବନା ରୂପରେ ।



# ସପ୍ତମ ପର୍ବ

## ମାନବ ମର୍ମରେ ଗଢ଼ା

ଜଗନ୍ନାଥ-ଭାବର ଜନ୍ମ ହିନ୍ଦୁ ଧର୍ମର ବୃହୁ ପୂର୍ବରୁ, ଧର୍ମର ଧାରଣା ଜନ୍ମ ନେବା ଆଗରୁ । ପୁଣି ତା' ଆଉ ଏକ (ଅଣଆର୍ଯ୍ୟ) ସମାଜରେ । ତେଣୁ ସେଇ ଧର୍ମ ଦର୍ଶନର କ'ଣ କିଛି ସ୍ୱତନ୍ତ୍ରତା ଅଛି ? ଯଦି ଅଛି ତେବେ ସେ ସ୍ୱତନ୍ତ୍ରତା କ'ଣ ? ଯଦି ନାହିଁ ତେବେ ନାହିଁ କାହିଁକି ? ନାହିଁ ଯଦି ତାହା କାଳକ୍ରମେ ଅନ୍ୟ (ହିନ୍ଦୁ) ଧର୍ମ ଦର୍ଶନରେ ମିଶିଯାଇଛି ଏବଂ ଏବେ ହିନ୍ଦୁଧର୍ମର ଅଙ୍ଗୀଭୂତ, ତେବେ ତାହା ଘଟିଲା କାହିଁକି ? ହେଲା କିପରି ? ସେହି ପ୍ରକ୍ରିୟାର ଶେଷ ପରିଣତି କ'ଣ ? କ'ଣ ତାର ସେଇ ଭବିଷ୍ୟତ ?

ଏହା ଏକ ଅର୍ଥହୀନ ଅନାବଶ୍ୟକ ପଣ୍ଡିତିଆ ଆଲୋଚନା ନୁହେଁ । ଏହା ଏକ ଅତି ଦରକାରୀ କଥା । କେବଳ ନିଜ ପାଇଁ ନୁହେଁ, ସମଗ୍ର ମାନବ ଜାତି ପାଇଁ । ତାହା ନହେଲେ ମଣିଷ କେଉଁ ଆଦିମ ଯୁଗରୁ କାହିଁକି ଜଗନ୍ନାଥଙ୍କୁ ଡାକିବାରେ ଲାଗିଛି ? ନିଶ୍ଚୟ କିଛି ଗୋଟାଏ ବିରାଟ ଅଭାବ ରହିଛି, ଯାହାର ମୋଚନ ସେ ଚାହେଁ । ଅଥଚ ନିଜେ ସେ ତାର ଅଭାବକୁ ଦୂର କରିବାରେ ସମର୍ଥ ନୁହେଁ । ତେଣୁ ସେ ଜଗନ୍ନାଥଙ୍କୁ ଡାକେ, ତାଙ୍କ ଦ୍ୱାରା ଦୂର କରିବାକୁ ଚାହେଁ । ସେ ଦିନେ ପଚାରି ନାହିଁ ସେହି ଅଭାବ ମୋଚନ କରିବାର ଶକ୍ତି ଜଗନ୍ନାଥଙ୍କର ନିଜର ଅଛି କି ନାହିଁ । ସେ ତାହା ନ ବୁଝି ଜଗନ୍ନାଥଙ୍କ ପାଖରେ ନିଜକୁ ଅର୍ପଣ କରିଦେଇଛି କେବଳ ମାତ୍ର ବିଶ୍ୱାସକୁ ଆଶ୍ରାକରି ।

ଯଦି ଜଣେ ବିଶ୍ୱାସ କରେ ପ୍ରକୃତରେ ଜଗନ୍ନାଥ ଜଗତର ସୃଷ୍ଟିକର୍ତ୍ତା, ସେଇ ହିଁ ତାର ଭାଗ୍ୟର ନିୟନ୍ତା, ତା'ର ଭବିଷ୍ୟତର ଏକମାତ୍ର ବିଧାତା, ତେବେ ଜଗନ୍ନାଥଙ୍କୁ ଅନୁସରଣ କରିବା ଆଗରୁ ଆଗ ଖୋଦ ସେଇ ଜଗନ୍ନାଥ— ନିୟନ୍ତାଙ୍କ ଭାଗ୍ୟ ଓ ଭବିଷ୍ୟତ୍ ଖୋଜିବାକୁ ହେବ । ନ ହେଲେ ଜାଣିବାକୁ ହେବ ମଣିଷ ଅନ୍ଧଭାବେ ଗୋଟାଏ ଅଦୃଷ୍ଟ ପଛରେ ଧାଇଁଛି ।

ଜଗନ୍ନାଥଙ୍କ ଜନ୍ମ ଘେନି ନାନା କାହାଣୀ କିମ୍ବଦନ୍ତୀ ରହିଛି, ବହୁ ଶାସ୍ତ୍ର ପୁରାଣ ଲେଖାଯାଇଛି । କିନ୍ତୁ ତାଙ୍କର ଭାଗ୍ୟ ଓ ଭବିଷ୍ୟତ୍ ସମ୍ବନ୍ଧରେ କେଉଁଠି କିଛି ଉଲ୍ଲେଖ ନାହିଁ । ସେ ବିଷୟରେ ସମସ୍ତେ ସଂପୂର୍ଣ୍ଣ ନୀରବ । ଯିଏ ନିଜର ଭାଗ୍ୟ ଜାଣେନା ବା ନିଜେ ଭାଗ୍ୟହୀନ—ଭବିଷ୍ୟତଶୂନ୍ୟ, ସେ ପୁଣି ଅନ୍ୟର ଭାଗ୍ୟ ନିୟନ୍ତ୍ରଣ କରେ, ଜଗତର ଭବିଷ୍ୟତ ଗଢ଼େ ? ଏହା କ'ଣ କେବେ ବିଶ୍ୱାସ ଯୋଗ୍ୟ ? ଅଥଚ ସେଇ ବିଶ୍ୱାସ ଇନ୍ଦ୍ରଙ୍କ ବଜ୍ରଠାରୁ ବଳି କଠିନ ।

ନାହିଁ ଯଦି ଜଣେ ବିଚାର କରେ, ମଣିଷହିଁ ଜଗନ୍ନାଥଙ୍କୁ ସୃଷ୍ଟି କରିଛି, ଆଦ୍ୟମାନବ ଜନ୍ମ ପରେ ତାଙ୍କର ଜନ୍ମ, ଆଉ ସେ ତାକୁ ପ୍ରକାଶ କରିଛି ନିଜର ମାନବିକତାର ଆଦ୍ୟ ଅଙ୍କୁରର ପ୍ରତୀକ ରୂପରେ; ତାହାହେଲେ ଜଗନ୍ନାଥଙ୍କୁ ଖୋଜିବାକୁ ହେଲେ ସେହି ଆଦ୍ୟ ଅଙ୍କୁରର ସ୍ୱାଭାବିକ ବିକାଶର ପ୍ରତିଫଳନ ଭିତରେ ତାଙ୍କ ଭାବର ପୂର୍ଣ୍ଣତାକୁ ଦେଖିବାକୁ ହେବ ।

ନାହିଁ ଯଦି ବିଜ୍ଞାନ, ଅର୍ଥାତ୍ ବିଶେଷ ଜ୍ଞାନ ଦିଗରୁ ଜଗନ୍ନାଥଙ୍କୁ ଗବେଷଣା କରାଯାଏ, ତେବେ ଅତୀତର ଆଲୋଚନା ସହ ଜୀବନର ପରିବର୍ତ୍ତନ ଭିତରେ ତାଙ୍କର ଭବିଷ୍ୟତର ସମ୍ଭାବନାକୁ ଉପସ୍ଥାପିତ ଓ ସାବ୍ୟସ୍ତ କରିବାକୁ ହେବ । ଭବିଷ୍ୟତ ଯେଉଁଠି ଅତୀତ ବିକାଶର ସ୍ୱାଭାବିକ ପରିଣତି ନୁହେଁ, କି ଅତୀତ ଯେଉଁଠି ଭବିଷ୍ୟତର ସ୍ୱାଭାବିକ ଭିତ୍ତି ନୁହେଁ—ସେପରି ଆଲୋଚନା ଯେତେ ଲୋକପ୍ରିୟ ହେଲେ ବି ତାର ସତ୍ୟତା ସତତ ସନ୍ଦେହଜନକ । ସ୍ଥାପତ୍ୟର ସାର୍ଥକତା ମନ୍ଦିର ଚୂଡ଼ାରେ କଳଶ ସ୍ଥାପନାରେ ପ୍ରକାଶ ପାଇଲାଭଳି, ଉତ୍‌ଥାପିତ ପ୍ରଶ୍ନର ଯଥାର୍ଥ ଉତ୍ତର ପ୍ରକାଶ କରେ ତାର ଦାବୀର ବାସ୍ତବତାକୁ ।

ଜଣେ ଧର୍ମ ଦିଗରୁ ଜଗନ୍ନାଥଙ୍କୁ ସୃଷ୍ଟିକର୍ତ୍ତାଭାବେ ଦେଖୁ, କିମ୍ବା ଜଣେ ଇତିହାସ ଦିଗରୁ ଜଗନ୍ନାଥଙ୍କୁ ମଣିଷର ସୃଷ୍ଟି ବୋଲି ବିଚାରୁ, କିମ୍ବା ଜଣେ ବିଜ୍ଞାନ ଦୃଷ୍ଟିରୁ ସମସ୍ତ ସୃଷ୍ଟିକୁ ନିଖିଳ ବିଶ୍ୱ ପ୍ରକୃତିର ନିୟମ ଭାବେ ଅନୁସରଣ କଲା ଭିତରେ ଜଗନ୍ନାଥଙ୍କୁ ନିର୍ଣ୍ଣୟ କରୁ — ଏ ସବୁ କ୍ଷେତ୍ରରେ ମଣିଷ ଓ ଜଗନ୍ନାଥ ଏକ ଅଚ୍ଛିନ୍ନ ଡୋରିରେ ବନ୍ଧା । ଜଗନ୍ନାଥଙ୍କୁ ବୁଝିବାକୁ ଓ ତାଙ୍କର ଭବିଷ୍ୟତକୁ ଦେଖିବାକୁ ହେଲେ ମଣିଷର ନିଜକୁ ବୁଝିବା ଓ ଆପଣାର ଭବିଷ୍ୟତକୁ ଖୋଜିବାକୁ ପଡ଼ିବ । ଜଗନ୍ନାଥ ଯଦି ଆଦ୍ୟ ମାନବତାର ଅଙ୍କୁରର ପ୍ରତୀକ ହୁଅନ୍ତି, ତେବେ ମଣିଷ ନିଜର ମାନବିକତାର ବିକାଶ ଓ ତାର ପରିଣତିର ପୂର୍ଣ୍ଣ ଉପଲବ୍‌ଧିର ଭିତରେହିଁ କେବଳ ଜଗନ୍ନାଥଙ୍କର ଉପଲବ୍‌ଧି ସମ୍ଭବ — ତାହାଛଡ଼ା ଅନ୍ୟ ମାର୍ଗ ନାହିଁ ।

ଧର୍ମ ମାଧ୍ୟମରେ ଜଗନ୍ନାଥଙ୍କ ଉପଲବ୍‌ଧି କସ୍ମିନ୍‌କାଳେ ସମ୍ଭବ ନୁହେଁ । ବିଶ୍ୱାସରେ ଭଗବାନ ମିଳିପାରନ୍ତି, କିନ୍ତୁ ଜଗନ୍ନାଥ ନୁହେଁ । କାରଣ ଭଗବାନଙ୍କର ସୃଷ୍ଟି, ସ୍ଥିତି ଓ ଗତି, ଏସବୁ ଏକମାତ୍ର ବିଶ୍ୱାସକୁ ହିଁ ଆଶ୍ରା କରେ । କିନ୍ତୁ ଜଗନ୍ନାଥ ଏକ ବିଶ୍ୱାସ ନୁହନ୍ତି । ସେ ଇତିହାସର ସୃଷ୍ଟି । ମାନବ ସଭ୍ୟତାର ଅବଦାନ । ତେଣୁ

ଧର୍ମର ବିଶ୍ୱାସରେ ଜଗନ୍ନାଥଙ୍କୁ ବୁଝିବାକୁ ବସିବା ମାନେ କେବଳ ଅନ୍ଧାରରେ ଦରାଣ୍ଡି ହେବା ।

କାରଣ ଧର୍ମ ବିଶ୍ୱାସ, ଯାହା ମଣିଷର ସ୍ୱାଧୀନ ଚିନ୍ତାକୁ ଖର୍ବ କରେ, ତାକୁ ଅନ୍ଧ କରି ରଖେ ଏବଂ ଯେଉଁ ଦର୍ଶନର ଗୂଢ଼ ଜ୍ଞାନ, ମଣିଷର ଭାବନାକୁ ବିଭ୍ରାନ୍ତ ଓ ତାର ସ୍ୱାଭାବିକ ଦୃଷ୍ଟିକୁ ରହସ୍ୟମୟ ଓ ବିଜ୍ଞାନବିରୋଧୀ କରି ଦିଏ, ତାହା ଜଗନ୍ନାଥଙ୍କର ପ୍ରକୃତ ରହସ୍ୟ ଓ ତାଙ୍କର ଅନ୍ତରର ଆତ୍ମାକୁ ପ୍ରକାଶ କରିବାରେ କଦାପି ସମର୍ଥ ହେବନାହିଁ । କାରଣ, ତାହା ସବୁ ରହସ୍ୟ ଉଦ୍‌ଘାଟନର ମୂଳ ସର୍ତ୍ତ, ମଣିଷର ଭାବନା ବିକାଶର ଅବ୍ୟର୍ଥ ନିୟମ, ପ୍ରକୃତିର ସ୍ୱଭାବ, ସମାଜ ବିକାଶର ବସ୍ତୁନିଷ୍ଠ ବାସ୍ତବତା ଆଉ ସକଳ ପରିବର୍ତ୍ତନର ସ୍ୱାଭାବିକ ଗତିକୁ ପ୍ରତ୍ୟାଖ୍ୟାନ କରେ । ମଣିଷ ଓ ପ୍ରକୃତିର ସ୍ୱାଭାବିକ ସମ୍ବନ୍ଧର ତାତ୍ପର୍ଯ୍ୟ ପ୍ରତି ଆଖି ବୁଜିଦିଏ, ତାର ଉପଲବ୍‌ଧିକୁ ଅସ୍ୱୀକାର କରେ ।

ଧର୍ମ ହେଉ ବା ଦର୍ଶନ ହେଉ, ତାହା ମଣିଷର ଗୋଟାଏ ମତ । ତାହା ଚେତନାର ଗୋଟାଏ କିସମର ପ୍ରକାଶ । ସେହି ମତାଦର୍ଶ, ତତ୍ତ୍ୱ ଓ ବିଜ୍ଞାନ ଯାହା ହେଲେ ବି ତାହା ଏକ ନିର୍ଦ୍ଦିଷ୍ଟ ସମାଜ ଭିତରୁ ଜାତ । ସେହି ସମାଜରୁ ଖୋରାକ ସଂଗ୍ରହ କରି ପ୍ରେରଣା ପାଇ ବଳିଷ୍ଠ ହୁଏ । ଧର୍ମ ଓ ଦର୍ଶନକୁ ବିଚାର କରିବାକୁ ହେଲେ ତାର ଚେରକୁ ସେଇ ସମାଜ ଭିତରେ ଅନୁସରଣ କରିବାକୁ ହେବ । ତାର ମୂଳକୁ ସେଇଠି ଖୋଜିବାକୁ ପଡ଼ିବ ।

ଧର୍ମ ଓ ଦର୍ଶନ ଦୁଇଟି ସ୍ୱତନ୍ତ୍ର ବିଷୟ । ବିଶ୍ୱାସ ଉପରେ ଧର୍ମ ପ୍ରତିଷ୍ଠିତ ହେଲେ ଦର୍ଶନର ଆଧାର ହେଲା ସୂକ୍ଷ୍ମ ବିଚାର । ଧର୍ମରେ 'କାହିଁକି'ର ପ୍ରଶ୍ନ ନାହିଁ । 'କାହିଁକି' ଏହି କଥାଟିର ସ୍ପର୍ଶରେ ବିଶ୍ୱାସ ବରଫ ଭଳି ମିଳେଇଯାଏ । ଅଥଚ, ଦର୍ଶନରେ 'କାହିଁକି' କଥାକୁ ଛାଡ଼ି ବିଚାର ନାହିଁ । ସେଠି କାରଣ ପ୍ରକାଶ ହିଁ ସତ୍ୟତାର ପ୍ରମାଣ । କାହିଁକି, ଥିବା ଓ ନଥିବା ହେତୁ ଦୁହେଁ ପରସ୍ପର ବିପରୀତ । ସାଧାରଣ କ୍ଷେତ୍ରରେ ବିଶେଷକରି ଆମ ସମାଜରେ ଦର୍ଶନ ଓ ଧର୍ମ ଏମିତି ଛନ୍ଦାଛନ୍ଦି ଯେ ଗୋଟିକରୁ ଅନ୍ୟଟିକୁ ଅଲଗା କରି ଦେଖିବା କଷ୍ଟକର । କାରଣ ବହୁ କ୍ଷେତ୍ରରେ ବିଶ୍ୱାସକୁ ହିଁ ପ୍ରମାଣ ସ୍ୱରୂପ ବ୍ୟବହାର କରାଯାଏ । ଯଥା — ବେଦର ଗାର, ଅମୁକ ଋଷିଙ୍କ ମତ, ଗୀତା ଭାଗବତରେ ଭଗବାନଙ୍କ ବାଣୀ ଇତ୍ୟାଦି । ତାକୁ ଉଦ୍ଧାର କରିଦେଲେ ତା ଉପରେ ଆଉ 'କାହିଁକି'ର ପ୍ରଶ୍ନ ନାହିଁ । ଅନ୍ୟ ଦିଗରେ ସେ ଧର୍ମ ପୁଣି ବିଚାରର ପଦ୍ଧତି ବା ମାପକାଠି । ଯାବତୀୟ ସତ୍ୟାସତ୍ୟ ମାପିବାର ଉପାୟ । ଥରେ ସେହି ମାପର ଦୃଷ୍ଟିକୋଣ ସ୍ଥିର ହୋଇଗଲେ ତେଣିକି ସବୁ ଜିନିଷ ତଦ୍ୱାରା ତଉଲ ହୁଏ । ସେଇ ଦୃଷ୍ଟି ଦ୍ୱାରା ସବୁ ମପାଯାଏ । ବେଦାନ୍ତ, ବୌଦ୍ଧ, ଜୈନ, ମୁସଲମାନ, ଖ୍ରୀଷ୍ଟିୟାନ ଆଦି ବିଭିନ୍ନ ଧର୍ମ ଏବଂ ଆଧ୍ୟାତ୍ମିକବାଦ, ଭାବବାଦ, ଭୌତିକବାଦ ନାନାଦି ଦର୍ଶନ ରହିଛି । ବେଦାନ୍ତ କ୍ଷେତ୍ରରେ ହିନ୍ଦୁଧର୍ମ ଆଉ ଭାବବାଦୀ ଦର୍ଶନର ମିଳନ ଅତି ସ୍ପଷ୍ଟ ।

ଦିନେ ଗୋଟାଏ ସମାଜ ଥିଲା ଯେଉଁଠି ବର୍ତ୍ତମାନ ଅର୍ଥରେ ଧର୍ମ, ଦର୍ଶନ ବୋଲି କିଛି ନ ଥିଲା । ସେସବୁ ସେ ପର୍ଯ୍ୟନ୍ତ ସୃଷ୍ଟି ହୋଇନାହିଁ । ସେଗୁଡ଼ିକ ଦୁଇଟି ସ୍ୱଷ୍ଟ ମତରେ ବିଭକ୍ତ ହୋଇନାହାନ୍ତି । ସେହି ଆଦିମ ଗଣଗୋଷ୍ଠୀ ପ୍ରାକ୍‌ବିଭକ୍ତ ସମାଜର କୌଣସି ଏକ ପର୍ଯ୍ୟାୟରେ ଯେତେଦୂର ସମ୍ଭବ ଜଗନ୍ନାଥଙ୍କ ଭାବର ଜନ୍ମ । ମଣିଷ ନିଜେ ଧର୍ମ, ଦର୍ଶନ ସୃଷ୍ଟି କରି ଆପଣାକୁ କ୍ରମଶଃ ସେଥିରେ ଦୀକ୍ଷିତ କରିବା ଭିତରେ ଜଗନ୍ନାଥଙ୍କୁ ସେଥିରେ ଦୀକ୍ଷିତ କରିଛି । ଏପରିକି କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ ଦର୍ଶନ ଶବ୍ଦର ପ୍ରଚଳନ ଆସିନାହିଁ । ତା ସ୍ଥାନରେ ଆନ୍ୱିକ୍ଷିକୀ ଶବ୍ଦ ବ୍ୟବହାର ଦେଖାଯାଏ । ତାହାର ଅର୍ଥ ହେଲା ନ୍ୟାୟ, ତର୍କ ,ଯୁକ୍ତି ଓ ଇନ୍ଦ୍ରିୟ ଲବ୍‌ଧ ଜ୍ଞାନ ଆଦି । ତାହା କୌଣସି ଗୁପ୍ତ ବା ଗୂଢ଼ଜ୍ଞାନ ଉପରେ ପର୍ଯ୍ୟବସିତ ନୁହେଁ । ସେହି ଶବ୍ଦଟିକୁ ଆସ୍ତିକ ବା ଈଶ୍ୱରବିଶ୍ୱାସୀମାନେ ବିଦ୍ରୁପରେ ବ୍ୟବହାର କରୁଥିଲେ । କାରଣ ଦର୍ଶନ ବୋଇଲେ ସାଧାରଣତଃ ଆତ୍ମା, ବ୍ରହ୍ମ, ମୋକ୍ଷ ସମ୍ବନ୍ଧୀୟ ଗୂଢ଼ଜ୍ଞାନକୁହିଁ ବୁଝାଉଥିଲା । କୁହାଯାଏ ଭାରତୀୟ ଦର୍ଶନ କେବଳ ସେଇ ଦିଗରେ ଉଦ୍ଦିଷ୍ଟ । କିନ୍ତୁ ଇତିହାସ ଦୃଷ୍ଟିରୁ ତାହା ଆଦୌ ଠିକ୍ ନୁହେଁ । ଏହିପରି ଧର୍ମ ଦର୍ଶନର ଧାରଣାକୁ ଅନ୍ୟ ଦିଗରେ ଲୋକାୟତ ଓ ଚାର୍ବାକ୍ ଆଦି ଉପହାସରେ ଉଡ଼ାଇଥିଲେ । ସେସବୁ ଆଲୋଚନାକୁ ପରେ ଆସିବା । ଏଠି କହିବାର କଥା, କୌଣସି ଗୂଢ଼ ଧାରଣାର ଉଦ୍ଭବର ବହୁ ପୂର୍ବରୁ ଯେଉଁ ଧାରଣା ପ୍ରଚଳିତ ଥିଲା, ତାକୁ ଯେଉଁ ଆଖ୍ୟା ଦିଆଯାଉନା କାହିଁକି, ତାରି ଭିତରେ ଜଗନ୍ନାଥ ଭାବର ଉଦ୍ଭବ ଏବଂ ମନେ ହୁଏ ସେହି ଭାବ ସର୍ବପ୍ରାଚୀନ ।

ସାମ୍ୟ, ମୈତ୍ରୀ, ପ୍ରୀତି ସେହି ସର୍ବପ୍ରାଚୀନ ଭାବର ପ୍ରତିଫଳନ ହେଲେ ଜଗନ୍ନାଥ । ତାକୁ ବାଦଦେଲେ ଜଗନ୍ନାଥ, ଜଗନ୍ନାଥ ନୁହନ୍ତି । ସେମିତି ଜଗନ୍ନାଥଙ୍କୁ ବାଦ ଦେଲେ ଅନ୍ୟ କୌଣସି ଦେବଦେବୀ ଭିତରେ ସାମ୍ୟ, ମୈତ୍ରୀ, ପ୍ରୀତି ପ୍ରତିଷ୍ଠିତ ବା ମୂର୍ତ୍ତିମନ୍ତ ନୁହେଁ । ଯୁଗ ଯୁଗ ଧରି ସେଇ ରୀତି ଚାଲିଆସଛି ସବୁ ପ୍ରତିବନ୍ଧକକୁ ଅତିକ୍ରମ କରି । ଧର୍ମ ଭଳି, ଜଗନ୍ନାଥ-ଭାବ , କୌଣସି ଜଣେ ଋଷି, ମୁନି ମହାତ୍ମା କି କୌଣସି ଅବତାର କିମ୍ବା ଦେବପୁତ୍ର ବା ଦେବଦୂତଙ୍କର ସୃଷ୍ଟି ନୁହେଁ । ତାହା ମଣିଷ ସମାଜର ସହଜାତ ସୃଷ୍ଟି । ତାର ସେଇ ସହଜାତ ଭାବର ପ୍ରତିଫଳନ । ଇତିହାସରେ ମାନବର ଆବିର୍ଭାବ ସହିତ ମାନବତାର ଉଦ୍ଭବ । ତାକୁ କେହି ଚିନ୍ତା କରି ବା ତପସ୍ୟା କରି ବା ଶାସ୍ତ୍ର ଲେଖି ଆଣିନାହିଁ । କାୟା ପଛରେ ଛାୟା ଭଳି ତାହା ଆସିଛି । ତାହାହିଁ ମଣିଷକୁ ମଣିଷ ପଦବାଚ୍ୟ କରିଛି । ଜଗନ୍ନାଥ ଭାବର ସେଇ ଭ୍ରୁଣ ବିନା ମାନବତାର ଆବିର୍ଭାବ ସମ୍ଭବ ହୋଇ ନ ଥାନ୍ତା ।

ଯେଉଁ ସ୍ୱଭାବ ବା ପ୍ରକୃତିର ଉଦ୍‌ଗମ ପଶୁକୁ ମଣିଷ ପଦବାଚ୍ୟ କରେ, ତାହାହିଁ ହେଉଛି ଜଗନ୍ନାଥ ଭାବର ଅନ୍ତର୍ନିହିତ ଭ୍ରୂଣ । ତାହା ବିନା ମାନବତାର ଆବିର୍ଭାବ ଯେପରି ସମ୍ଭବ ନୁହେଁ, ସେହିପରି ଅସମ୍ଭବ ଜଗନ୍ନାଥ ଭାବର ଉନ୍ମେଷ ।

ଆଦିମ ଅବସ୍ଥାରେ ସେହି ସମୂହ କାମନା, ସମୂହ ଭାବ, ସମୂହ ଭାବନା ମାନବାତ୍ମାର ବିକାଶ ଏକାତ୍ମଭାବେ ରୂପ ନେଇଛି ଜଗନ୍ନାଥ-ଭାବରେ । ସେହି ଭାବର ଅଭାବରେ ମଣିଷ ଅନ୍ୟ ପ୍ରାଣୀଙ୍କ ଭଳି ଏକ ମନନହୀନ ଶରୀର ହେଲାଭଳି ଜଗନ୍ନାଥ ଅନ୍ୟ ଦେବତାଙ୍କ ଭଳି ଏକ ମନଗଢ଼ା ସତ୍ତା ହୋଇ ରହିଯାଆନ୍ତି । ମଣିଷର ମାନବିକ ସତ୍ତା ଯେପରି ବିମୂର୍ତ୍ତ, ସେହିପରି ବିମୂର୍ତ୍ତ ଜଗନ୍ନାଥଙ୍କ ସହଜାତ ଶ୍ରେଷ୍ଠତ୍ୱ । କିନ୍ତୁ ଦୁହେଁ ବିମୂର୍ତ୍ତ ହେଲେ ବି ବିକାଶଶୀଳ, କାରଣ ସାମ୍ୟ, ମୈତ୍ରୀ, ପ୍ରୀତିର ପରିବର୍ତ୍ତନ ରହିଛି , ନାହିଁ ପୂର୍ଣ୍ଣଚ୍ଛେଦ । ତାହା ଯେପରି ମାନବିକତାର ମର୍ମ, ସେହିପରି ଜଗନ୍ନାଥ ଭାବର ପ୍ରାଣ ।

## ସେଇ ମର୍ମର ମୂଳ, - ଋତରେ

ସେତେବେଳର ସେଇ ସମାଜ ହେଉଛି ଋତ ସମାଜ । ଏଥିପୂର୍ବରୁ ଆମେ ସେ ସମ୍ବନ୍ଧରେ ଆଲୋଚନା କରିଛୁ । ତାର ଯଥେଷ୍ଟ ସୂଚନା ଋଗ୍‌ବେଦର ଆଦ୍ୟ ଭାଗରେ ରହିଛି । ସେହି ଋତ ହେଉଛି, ପ୍ରାକୃତିକ ସାମାଜିକ ନିୟମ । ସେହି ଋତ ଅନୁସାରେ ସୂର୍ଯ୍ୟ ଉଏଁ, ଅଗ୍ନି ଆଲୋକ ଦିଏ । ବର୍ଷ ହେଉଛି ସେହି ଋତର, ବାରଟି ଅର—ଇତ୍ୟାଦି, ଇତ୍ୟାଦି । ସେଥିରେ ରହିଛି, ''ହେ ଆଦିତ୍ୟ, ଯେ ଋତ ପାଳନ କରେ ତାଙ୍କ ଉପରେ ପ୍ରାଚୁର୍ଯ୍ୟ ଆଉ ଗୌରବ ବର୍ଷଣ କର । (ଋଗ୍‌ବେଦ ୨.୨୭.୧୨) ସେହି ପ୍ରାଚୀନ କବିଗଣ ଋତ ପାଳନ କରୁଥିଲେ । ଦେବତାଙ୍କ ସହିତ ବାସ କରୁଥିଲେ... । ସେମାନେ କୋଠରେ ସବୁ ପଶୁଙ୍କ ସହ ଏକାଠି ରହୁଥିଲେ । ଗୋଟାଏ ମନରେ ଚାଲିଥିଲେ । ଏକାଠି କାମ କରୁଥିଲେ । ଦେବତାଙ୍କ ବିଧିବିଧାନରେ ତ୍ରୁଟି କରୁନଥିଲେ ।'' (ଋ ୭.୭୩.୪୫) । '' ହେ ଇନ୍ଦ୍ର, ତୁମେ ଖାଦ୍ୟ ଓ ଋତର ପ୍ରହରୀ । ଆମର ଗାଈଙ୍କୁ ଖୋଜିବାରେ ତୁମେ ଆମକୁ ସାହାଯ୍ୟ କରିଛ । ତମେ ଆମର ବନ୍ଧୁ ହୁଅ । (ଋ ୧.୧୩୨.୩) ''ତମେ ବରୁଣ ଓ ଅନ୍ୟମାନେ ଋତର ରକ୍ଷକ, ଋତର ବୃଦ୍ଧିକର, ଅନୃତର (ଋତର ବିପରୀତ ମିଥ୍ୟାର) ଘୋର ଶତ୍ରୁ । ଆମେ ଓ ଅନ୍ୟ ବୀରମାନେ ତମ ଗହଣରେ ଧନସମ୍ପତ୍ତି ସହ ଆନନ୍ଦରେ ରହିପାରୁ ।'' (ଋ ୭.୭୬.୩) '' ହେ ମିତ୍ର ବରୁଣ, ତମେ ଋତକୁ ସ୍ପର୍ଶ କର, ଋତକୁ ବୃଦ୍ଧି କର । ଋତ ସାହାଯ୍ୟରେ ଯଜ୍ଞ ପରିଚାଳନା ଲାଗି ତମେ ନିଜକୁ ବିସ୍ତାରିତ କର । ଋତ ଓ ଯଜ୍ଞ ସମାନ । ସମସ୍ତ ଲାଗି ଖାଦ୍ୟ, ଧନ, ସମ୍ପଦ, ପ୍ରାଚୁର୍ଯ୍ୟ ସହାୟକ ଭାବରେ ସାମୟିକ କୋଠ ସମ୍ପଦ ରକ୍ଷକ ଭାବରେ ଆମେ ଇନ୍ଦ୍ରଙ୍କୁ ଆହ୍ୱାନ କରୁ । (ଋ ୩.୨.୧୦) ''ମଣିଷମାନଙ୍କ ସହିତ ଯିଏ ନିଜ ନିଜ ଭିତରେ ସମାନ'' (ଋ ୧.୭.୯୮), ମଣିଷ ଦେବତାଙ୍କ ସହ ସମାନ ହେଲା, ତାହା ତାଙ୍କ ପିତାମାତାଙ୍କ କାଳରୁ ଆରମ୍ଭ ହୋଇଛି ।'' (ଋ ୩.୫୮.୬୭) '' ହେ ଅଗ୍ନି ! ଆମେ ସମସ୍ତ ସହ ସମାନ ।'' (ଋ ୧. ୧୨୭. ୮) '' ହେ ପ୍ରଭୁ ! ଆମର ଯଜ୍ଞ ଲାଗି, ଆମର କାମ ଲାଗି, ଆମର ବଂଶଧରଙ୍କ ଲାଗି ଖାଦ୍ୟ ତିଆରି କର । ତାହାହେଲେ ଆମେ ସମସ୍ତେ ବୀରପୁରୁଷ

ଓ ମନୁଷ୍ୟମାନଙ୍କ ସହିତ ବାସ କରିବୁ । ଆମ ଶରୀର ଲାଗି ବଳ ପ୍ରଦାନ କର ।'' (ଋ ୧.୧୧୧.୨) '' ନାସତ୍ୟ (ଅଶ୍ୱିନୀ କୁମାର) ସଭାରେ ବସି ଲୋକମାନଙ୍କ ସହ ସୋମପାନ କଲେ ।'' (ଋ୭.୭୩.୨)

ଦେବତାମାନେ କେବଳ ଋତରୁ ଜାତ ନୁହନ୍ତି, ସେମାନେ ଋତର ଆଚରଣରେ ଯା-ଆସ କରନ୍ତି । ''ରକ୍ଷାକାରୀ ସୋମ; ସେ ଋତ ଓ କବି ।'' (୯.୬୨.୩୦) '' ସେ (ସୋମ) ରାଜା ଓ ଦେବତା ଋତରୁ ଜାତ । ସେ ଋତ ଦ୍ୱାରା ଋତକୁ ବୃହତରୂପେ ବର୍ଦ୍ଧିତ କରନ୍ତି । (୯.୧୦୮.୮) ସେ ଋତ କର୍ମଯୁକ୍ତ, ହେ ସତ୍ୟଧର୍ମା, ବିଶ୍ୱେଦେବଗଣ, ତମେ ଯଜ୍ଞକୁ ଆସିଛ ଅଗ୍ନିର ଜିହ୍ୱାଦ୍ୱାରା ତୁମେ ପାନକର । (୫.୫୧.୨)

ଋତ ହେଉଛି ଧନଲାଭ, ଅନ୍ନଲାଭ ଓ ଗାଭୀଲାଭର ଉପାୟ । ତାହା ପ୍ରାକ୍‌ବିଭକ୍ତ ସମାଜର ସହଜାତ । ତାର ଅଖଣ୍ଡନୀତି ଓ ସ୍ୱଭାବ ଅର୍ଥାତ୍ ମାନବିକ ଚେତନାର ଅପରିହାର୍ଯ୍ୟ ଅଂଶ ଓ ପ୍ରକାଶ ପ୍ରାକୃତିକ ନିୟମ ଭଳି ଅମୋଘ । ସେତେବେଳେ ପ୍ରାକୃତିକ ଚେତନା ଓ ନୈତିକ ଚେତନା ଅଖଣ୍ଡ ସାମଗ୍ରିକ ଚେତନା ଜଗନ୍ନାଥ ଧାରଣାକୁ ଅନୁସରଣ କଲେ ତାର ମୂଳ ଚେର ମିଳିବ ସେଇ ଋତ ସମାଜର ଚେତନା ଭିତରେ । ସେତିକିବେଳେ ଋତ ସମାଜର ପତନ ଘଟିଛି ଯେତେବେଳେ କି ବ୍ୟକ୍ତି ସମ୍ପତ୍ତିର ଆବିର୍ଭାବ ଘଟିଛି । ସମାଜ ସେହିପରି ଲୋଭ, ଲାଳସା, ଆତ୍ମସ୍ୱାର୍ଥପରତାରେ ବିଦୀର୍ଣ୍ଣ । କ୍ଷୁଧା-ପ୍ରପୀଡିତ ପିତା ଶତ ଗାଭୀ ଆଶାରେ ନିଜ ପୁତ୍ରକୁ ଯୂପକାଠରେ ବଧ କରିବା ଲାଗି ଅସିହସ୍ତରେ ଅଗ୍ରସର ହୁଏ । ଐତରେୟ ବ୍ରାହ୍ମଣରେ ଶୁନଃ ଶେଫ ଉପାଖ୍ୟାନ ତାର ଜ୍ୱଳନ୍ତ ଦୃଷ୍ଟାନ୍ତ । ସେଠି ସେହି ଅତୀତର ସ୍ମୃତିକୁ ଉଦ୍ଧାର କରି କୁହାଯାଏ ।

''ବାଧସ୍ୟ ଦୂରେ ବିରତିଂ ପରାଚୈଃ,
କୃତ ଚିଦେନ ପ୍ର ମୁଗ୍‌ଧସ୍ୟ ସ୍ମୃତ ।''

ଅର୍ଥାତ୍ ନିଋତିରୁ (ଋତ-ହୀନତ୍ୱରୁ) ଆମ୍ଭମାନଙ୍କୁ ଦୂରରେ ରଖ । କୃତ ପାପର ମୋହରୁ ଆମକୁ ମୁକ୍ତ କର । (୨.୨୪.୯)

ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ସାମ୍ୟରୁ ଅସାମ୍ୟକୁ ଯିବାରେ ପ୍ରତ୍ୟେକ ସମାଜର ଏହାହିଁ ହେଉଛି ମାର୍ଗ । ସବୁଠି ଏମିତି ଗଣସମାଜର ପତନ ଘଟିଛି । ଫ୍ରେଡେରିକ ଏଙ୍ଗେଲସ୍ ତାଙ୍କର ପରିବାର, ବ୍ୟକ୍ତଗତ ସମ୍ପତ୍ତି ଓ ରାଷ୍ଟ୍ରର ଉତ୍ପତ୍ତି ପୁସ୍ତକରେ ଲେଖିଛନ୍ତି, ''ଯଦି ନା ଧନସମ୍ପତ୍ତିର ଲୋଭ ଗଣଗୋଷ୍ଠୀକୁ (gens) ଧନୀ, ନିର୍ଦ୍ଧନ ଏହି ଦୁଇ ଭାଗରେ ବିଭକ୍ତ ନ କରିଥାନ୍ତା, ଯଦି (Gens) ବା ଗଣସମାଜ ମଧ୍ୟରେ ସମ୍ପତ୍ତିର ତାରତମ୍ୟ ଉଦ୍ଦେଶ୍ୟମୂଳକଭାବେ ସମସ୍ତ ଗୋଷ୍ଠୀକୁ ଛାଡ଼ି ତାଙ୍କ ସଭ୍ୟମାନଙ୍କ ମଧ୍ୟରେ ବିରୋଧିତାରେ ପରିଣତ ହୋଇ ନ ଥାନ୍ତା ...., ତେବେ ଏପରି ଘଟଣା ଘଟି ନ ଥାଆନ୍ତା ।''

ଭାରତର ସେଇ ଅତୀତ ସ୍ମୃତିର କାହାଣୀ ସମସ୍ତ ମାନବ ସମାଜର ଅଭିଜ୍ଞତାରୁ ଭିନ୍ନ ନୁହେଁ । ସେଇ ଋତ ସମାଜର ନୀତିବୋଧ ସହ ବର୍ତ୍ତମାନର ନୀତି - ବୋଧର ଆକାଶ ପାତାଳ ପ୍ରଭେଦ । ଅଧୁନିକ ଚେତନାରେ ପ୍ରାକୃତିକ ନିୟମ, ଜୀବନର ସଂଗ୍ରାମ, କର୍ତ୍ତବ୍ୟ, ଦାୟିତ୍ୱ ଆଦି ଏସବୁ ପରସ୍ପରଠାରୁ ବିଚ୍ଛିନ୍ନ । ମଣିଷ କେବଳ ଏକ ସ୍ୱତନ୍ତ୍ର ସତ୍ତା ନୁହେଁ — ସେ ଏକ ବିଚ୍ଛିନ୍ନ ସତ୍ତାଭାବେ ନିଜକୁ ପ୍ରତିଷ୍ଠା କରେ । ସେଠି ନୈତିକ ଜୀବନର ନିୟମ ପ୍ରାକୃତିକ ନିୟମଠାରୁ ସ୍ୱତନ୍ତ୍ର ଓ ବିଚ୍ଛିନ୍ନ । ତାହା ପ୍ରାକୃତିକ ନିୟମ ଭଳି ସ୍ୱାଭାବିକ ଓ ଅମୋଘ ନୁହେଁ ।

ତେଣୁ ଆଧୁନିକ ମଣିଷ କହେ ଗୋଟାଏ, ଲେଖେ ଗୋଟାଏ, ପ୍ରଚାର କରେ ଆଉ ଗୋଟାଏ ଏବଂ କଲାବେଳେ କରେ ତାର ଓଲଟା । ଆଦିମ ସମାଜରେ ତାହା ନ ହେବାର କାରଣ ସମ୍ବନ୍ଧରେ ଲେନିନ ଲେଖିଛନ୍ତି ....... '' ସେ ପର୍ଯ୍ୟନ୍ତ ଅଧିକାର ଓ କର୍ତ୍ତବ୍ୟ ମଧ୍ୟରେ ଫରକ ଆସିନାହିଁ, ସର୍ବସାଧାରଣ କାର୍ଯ୍ୟରେ ଭାଗନେବା, ରକ୍ତର ପ୍ରତିଶୋଧ ନେବା ଏବଂ କ୍ଷତି ଓ ଅନ୍ୟାୟର ପ୍ରତିକାର, ଏସବୁ ଗୋଟାଏ ଅଧିକାର କି କର୍ତ୍ତବ୍ୟ, ସେ ପ୍ରଶ୍ନ ଇରୋକୁଇ ଆମେରିକାର ଭାରତୀୟଙ୍କ ଆଗରେ କେବେ ଦେଖା ଦେଇନାହିଁ । ସେଠି ଖାଇବା, ଶୋଇବା ଓ ଶିକାର କରିବାଟା ଅଧିକାର ନା କର୍ତ୍ତବ୍ୟ ବୋଲି ଧରିଲେ ଗୋଟାଏ ହାସ୍ୟାସ୍ପଦ ବିଷୟ ହେବ ।''

ସେହିପରି ସମାଜର ପତନରେ ମଣିଷ ଆତୁର ହୋଇ ତାର ପୁନଃପ୍ରତିଷ୍ଠା ଲାଗି ଡାକ ଛାଡିଛି । ମଣିଷର ସେହି ଆତୁର ପ୍ରାର୍ଥନା ଋଷିକବି ତ୍ୱଷ୍ଟାଙ୍କ ମୁଖରେ ପ୍ରକାଶ ପାଏ । ତାହାର ମର୍ମାନୁବାଦ କହେ — ''ହେ ବରୁଣ, ତମକୁ ମୁଁ ପଚାରେ, ପ୍ରାର୍ଥନା ଜଣାଏ, ଅତୀତର ସେଇ ଋତ ଗଲା କୁଆଡେ ? କିଏ ସେହି ନୂତନ ପୁରୁଷ ଯିଏ ତାକୁ ଧାରଣ କରେ ? ହେ ଦ୍ୟାବାପୃଥିବୀ, ମୋ ବିଷୟ ଅବଗତ ହୁଅ । ହେ ଦେବଗଣ ! ତମର ଋତ ଗଲା କୁଆଡେ ? ତମ ସତ୍ୟ ପାଳନ କେଉଁଠି ? ତମ ସତ୍ୟ ବା କେଉଁଠି, ଅସତ୍ୟ ବା କେଉଁଠି, କେଉଠି ମହତ୍ ଅର୍ଯମାର ପଥଦେଇ ଆମେ ପାପମତିମାନଙ୍କର ଅତିକ୍ରମ କରିପାରିବୁ ? ସେଇ ପଥର ଦର୍ଶକ, ଖାଦ୍ୟର ସ୍ରଷ୍ଟା ବରୁଣଙ୍କ ନିକଟରେ ଅନ୍ତର ଭିତରୁ ପାର୍ଥନା କରୁ, ଋତ ପୁନର୍ବାର ନୂଆକରି ସୃଷ୍ଟି ହେଉ, ହେ ଦ୍ୟାବାପୃଥିବୀ ! ଆମର ବିଷୟ ଅବଗତ ହୁଅ । (ଋଗ୍‌ବେଦ ୧.୦.୪.୫-୬-୧୫)

ଏହା ଦର୍ଶାଇଦିଏ, ଋତ ନିୟମରେ ପ୍ରକୃତି ଓ ସମାଜ ସବୁ ଚାଳିତ । ସେଠି ବ୍ୟକ୍ତିଜୀବନ ଓ ଟ୍ରାଇବାଲ ଗୋଷ୍ଠୀ ଜୀବନ ଏକ ଓ ସମାନ । ସେହିପରି ସମାଜରେ ମଣିଷର କର୍ତ୍ତବ୍ୟ ଓ ଅଧିକାର ଏକ ଓ ସମାନ । ତେଣୁ ଋତ ବୋଇଲେ ସମତା, ଭାତୃତ୍ୱ ଓ ସାମୂହିକତା । ସେ କ୍ଷେତ୍ରରେ ତାର ସାମାଜିକ ସମ୍ପର୍କ, ସାମ୍ୟ, ମୈତ୍ରୀ ଓ ପ୍ରୀତି ହେବା ସ୍ୱାଭାବିକ । ତା ଛଡା ଆଉ କିଛି ହୋଇ ନ ପାରେ । ଏହିପରି ଏକ ସମାଜ କେବଳ ଜଗନ୍ନାଥ-ଭାବକୁ ଜନ୍ମ ଦେଇପାରେ । ଅନ୍ୟ କୌଣସି ସମାଜରେ ଜଗନ୍ନାଥଙ୍କ ଜନ୍ମ ଅସମ୍ଭବ ।

ଏହିପରି ସମାଜ ଅତୀତରେ ପ୍ରାୟ ସବୁ ଦେଶରେ ରହିଛି । ଫ୍ରେଡେରିକ ଏଙ୍ଗେଲସ୍‌ଙ୍କ ବର୍ଣ୍ଣନାରୁ ତାହା ପରିସ୍ଫୁଟ ହୁଏ । "ସେଇ ଜ୍ଞାତିଭିତ୍ତିକ ସଙ୍ଗଠନ, ତାର ଶିଶୁ-ସୁଲଭ ସରଳତା ବାସ୍ତବିକ ଅତି ଚିତ୍ତାକର୍ଷକ । ସୈନ୍ୟ ସାମନ୍ତ ପୁଲିସ ନାହିଁ, ପାଇକ ସିପେହୀ ନାହିଁ, ରାଜା, ମନ୍ତ୍ରୀ, ରାଜ୍ୟପାଳ ଓ ବିଚାରପତି ଆଦି କେହି ନାହାନ୍ତି, କୋର୍ଟ ଜେଲ ଅଦାଲତ ନାହିଁ, କିନ୍ତୁ ସବୁକିଛି ସହଜ, ସରଳ ଭାବରେ ଚାଲିଛି । ଏଠି ଗରିବ ଓ ଅଭାବଗ୍ରସ୍ତ ବୋଲି କେହି ନାହାନ୍ତି । ବୃଦ୍ଧ, ଅସୁସ୍ଥ, ଯୁଦ୍ଧରେ ଅକ୍ଷମମାନଙ୍କ ପ୍ରତି କ'ଣ କର୍ତ୍ତବ୍ୟ, ତାହା ସାମାଜବାଦୀ ବା ଗଣ (Gens) ପରିବାରକୁ ଜଣା । ନରନାରୀ ସମସ୍ତେ ସ୍ୱାଧୀନ ଓ ସମାନ ..... ସେହି ନିଷ୍କଳଙ୍କ ମଣିଷଙ୍କ ସହିତ ଯେତେ ଗୋରା ଲୋକ ସ୍ପର୍ଶରେ ଆସିଛନ୍ତି, ସମସ୍ତେ ତାଙ୍କର ଉଚ୍ଚ ପ୍ରଶଂସା କରିଛନ୍ତି । ସେହି ଅସଭ୍ୟ ମଣିଷଙ୍କର ଆତ୍ମମର୍ଯ୍ୟାଦା, ସ୍ପଷ୍ଟବାଦିତା, ଚରିତ୍ର ବଳ ଆଉ ସାହସର ସେଇ ଯେଉଁ ପ୍ରଶଂସା, ତାହା ଜଣାଇଦିଏ ଯେ, ସେହି ଜ୍ଞାତିଭିତ୍ତିକ ସମାଜ କି ପ୍ରକାର ସ୍ତ୍ରୀ ପୁରୁଷ ତିଆରି କରିଛି ।" (ଆମେରିକାର ଆଦିମ ଅଧିବାସୀ ରେଡ୍ ଇଣ୍ଡିୟାନ ବା ଭାରତୀୟମାନଙ୍କ ସମାଜର ବର୍ଣ୍ଣନା ।)

"ନିକଟରେ ଆମେ ଆଫ୍ରିକାରେ ସେଇ ବୀରତ୍ୱର ଦୃଷ୍ଟାନ୍ତ ଦେଖିଛେ । କେତେକ ବର୍ଷ ତଳେ ଜୁଲୁକାଫିର ଓ ତାର ମାସ ଦୁଇ ଆଗରୁ ଲୁବିୟାନ — ଉଭୟ ଉପଜାତିଙ୍କ ମଧ୍ୟରେ ଜ୍ଞାତିଭିତ୍ତିକ ଅନୁଷ୍ଠାନ ଏବେ ବି ବଞ୍ଚିରହିଛି । ସେମାନେ ଯାହା କରିଛନ୍ତି, କୌଣସି ଇଉରୋପୀୟ ସେନାବାହିନୀ କରି ପାରିନାହାନ୍ତି । ....... ଶ୍ରେଣୀ ବିଭାଗ ଦେଖାଦେବା ପୂର୍ବରୁ ମାନବଜାତି ଓ ମାନବ ସମାଜ ସେହି ପ୍ରକାର ଥିଲା । ତାଙ୍କ ସହିତ ଆଜି ସଭ୍ୟ ମଣିଷଙ୍କର ବହୁଳ ଭାଗକୁ ତୁଳନା କଲେ ଆମେ ଦେଖି ପାରିବା ଯେ — ବର୍ତ୍ତମାନର ସର୍ବହରା ଓ କ୍ଷୁଦ୍ର ଚାଷୀ ଏବଂ ପ୍ରାଚୀନ କାଳରେ ସେଇ ଗୋଷ୍ଠୀ (Gens) ର ସ୍ୱାଧୀନ ମଣିଷଙ୍କ ମଧ୍ୟରେ ଆକାଶ ପାତାଳ ପ୍ରଭେଦ ।"

"ଏହା ଛବିର ଗୋଟିଏ ପାଖ । କିନ୍ତୁ ଭୁଲିଗଲେ ଚଳିବ ନାହିଁ ଯେ, ସେ ସଙ୍ଗଠନ ଧ୍ୱଂସ ପାଇବାକୁ ବାଧ୍ୟ,.... ଆଦିମ ଗୋଷ୍ଠୀ ସମାଜର ଶକ୍ତି ଭାଙ୍ଗିବାର ଥିଲା, — ତାହା ଭାଙ୍ଗିଲା । ତାହା ଏପରି ପ୍ରଭାବର ଆଘାତରେ ଭାଙ୍ଗିଲା ଯେ ଯାହାକି ଆରମ୍ଭରୁ ଆମ ଆଗରେ ଏକ ଅଧଃପତନ ବୋଲି ପ୍ରତୀୟମାନ ହୁଏ । ପ୍ରାଚୀନ ଜ୍ଞାନଭିତ୍ତିକ ସମାଜର ସରଳ ନୈତିକ ଐଶ୍ୱର୍ଯ୍ୟର ପତନ ଓ ଘୃଣିତ ଲୋଭ, ପାଶବିକ ଇନ୍ଦ୍ରିୟ ଲାଳସା, ଜଘନ୍ୟ ପରଶ୍ରୀକାତରତା, ସ୍ୱାର୍ଥପରଭାବେ କୋଠ ସମ୍ପତ୍ତିର ଅପହରଣ — ଏହି ସବୁ ହୀନ କୁତ୍ସିତ ବିଷୟଗୁଡିକ ଅତି ଉନ୍ମାଦନା ସହ ଦେଖାଦେଲା — ସେଇ ନୂତନ ଶ୍ରେଣୀ ସମାଜରେ । ଚୋରି, ଧର୍ଷଣ, ପ୍ରତାରଣା, ବିଶ୍ୱାସଘାତକତା, ଏଇସବୁ ଉପାୟ ଦ୍ୱାରା ଆଦିମ ଶ୍ରେଣୀଶୂନ୍ୟ ଜ୍ଞାତିଭିତ୍ତିକ ସମାଜଟି ଭିତରୁ ଘୁଣ ଲାଗି ଭାଙ୍ଗିପଡ଼ିଲା । ଏବେ ସେହି ନୂତନ ସମାଜ ଗତ ଅଢ଼େଇ ହଜାର ବର୍ଷ ଧରି ତାର ସ୍ଥିତି ମଧ୍ୟରେ ବହୁଳ ସଂଖ୍ୟକ ଲୋକଙ୍କର ଶୋଷଣ, ଅତ୍ୟାଚାର ବିନିମୟରେ ଅଳ୍ପ ସଂଖ୍ୟକ ଲୋକଙ୍କର ବିକାଶ ବ୍ୟତୀତ ଅନ୍ୟ କିଛି

ନୁହେଁ, —ଆଗ ତୁଳନାରେ ତାହା ଆହୁରି ଅଧିକ ସ୍ପଷ୍ଟ ଓ ପ୍ରାଞ୍ଜଳ ।'' (ଏଙ୍ଗେଲସ୍)

**ଋତର ପତନରେ ଅସାମ୍ୟ, ଅହଂ ଓ ଆତ୍ମା -**

ଏଠାରେ ଦୁଇ ପ୍ରକାରର ସାମାଜର ଚିତ୍ର, ଲୋକଙ୍କ ମଧ୍ୟରେ ଦୁଇ ପ୍ରକାରର ସମ୍ପର୍କ ଏବଂ ସେମାନଙ୍କର ଦୁଇ ପ୍ରକାର ଜୀବନର ପ୍ରଣାଳୀ ଏବଂ ଦୁଇ ପ୍ରକାରର ଆଚାର ବ୍ୟବହାର—ଅର୍ଥାତ୍ ପ୍ରତ୍ୟେକ ଜିନିଷ ପ୍ରତି ଦୁଇପ୍ରକାର ଦୃଷ୍ଟିକୋଣ ପ୍ରକାଶ ପାଏ । ଏବେ ଧର୍ମ ଓ ଦର୍ଶନର ଦ୍ୱାହିଦେଇ ସ୍ୱର୍ଗ, ମୋକ୍ଷ, ସତ୍ୟ, ନ୍ୟାୟ ଆଉ ସତ୍‌ମାର୍ଗ ଅନୁସରଣର ଉପଦେଶ ଦିଆଯାଏ । ସ୍ୱାର୍ଥ, ଲୋଭ, ହିଂସା, ଦ୍ୱେଷ ଅଦି ଅସତ୍ ମାର୍ଗ ପରିହାରର ବାଣୀ ପ୍ରଚାର କରାଯାଏ । ସେହି ପ୍ରାଚୀନ ସାମାଜରେ କିନ୍ତୁ ଏହିସବୁର କିଛି ଚିହ୍ନ ନ ଥିଲା । ସତ୍ ଅସତ୍ ସମ୍ବନ୍ଧରେ କୌଣସି ଧାରଣା ସୁଦ୍ଧା ନ ଥିଲା । ସେମାନେ ଜାଣନ୍ତି ନାହିଁ, ଏସବୁ ଜିନିଷ କ'ଣ ଓ କାହିଁକି ସେହିଭଳି ଏକ ସ୍ୱଚ୍ଛ ନିର୍ମଳ ସମାଜର ଧ୍ୱଂସ ଉପରେ ଏ ସବୁର ଆବିର୍ଭାବ । ଅର୍ଥାତ୍ ତାହାରି ଉପରେ ବିକାଶଲାଭ କରିଛି ଆଧୁନିକ ଧର୍ମ, ଧାରଣା, ଦର୍ଶନ ଆଦି ।

ଆମ ଆଦିମ ଋତ ସମାଜର ପତନ ଓ ଉପନିଷଦ ବେଦାନ୍ତ ସମାଜର ଆବିର୍ଭାବ ଠିକ୍ ସେହିପରି ଏକ ଘଟଣାର ସୂଚନା ଦିଏ । ଋତ ସମାଜର ପତନରେ ସେ କାଳର ଲୋକଙ୍କ ମଧ୍ୟରେ ଅନୁରୂପ ସମ୍ପର୍କ, ଆଚାର, ବ୍ୟବହାର, ଦୃଷ୍ଟିକୋଣ ବା ଦର୍ଶନର ପତନ ଘଟିଛି । ତାର ଜ୍ୱଳନ୍ତ ପ୍ରମାଣ ହେଉଛି ସେହି ମହାନ ପବିତ୍ର ଖୋଦ୍ ଦେବତାମାନଙ୍କର ଅଧଃପତନ ।

ଋତ ପରବର୍ତ୍ତୀ କାଳରେ ବ୍ରାହ୍ମଣ, ଉପନିଷଦ ଯୁଗରେ ବୈଦିକ ଦେବତାମାନଙ୍କ ଅବସ୍ଥା ଅତି ଶୋଚନୀୟ ହୋଇପଡିଛି । ସେମାନେ ତାଙ୍କର ପୂର୍ବର ସମ୍ମାନ, ପଦମର୍ଯ୍ୟାଦା ଓ ଗୌରବ ହରାଇଛନ୍ତି । ଅଶ୍ରୁତପୂର୍ବ ନିନ୍ଦା, ଲାଞ୍ଛନା ଭର୍ତ୍ସନା ଆଦି ହୋଇଛି ତାଙ୍କ ଜୀବନର କାହାଣୀ । ସେସବୁର ଉଲ୍ଲେଖ ରହିଛି ବୈଦିକ ସାହିତ୍ୟରେ । ଋତ ସମାଜର ସବୁଠାରୁ ସମ୍ମାନିତ ଓ ଶକ୍ତିଶାଳୀ ଦେବତା ବରୁଣ ଓ ଇନ୍ଦ୍ରଙ୍କର (ଯାହାଉପରେ ବର୍ଣ୍ଣନା କରାଯାଇଛି) ଅବସ୍ଥା ସବୁଠାରୁ ଦୟନୀୟ ଓ ଲଜ୍ଜାଜନକ । ବରୁଣ ଜଣେ ଅତି ଲୋଭୀ, ନିର୍ଦ୍ଦୟ, ଜଘନ୍ୟ ଲାଳସାଗ୍ରସ୍ତ, ହୃଦୟହୀନ ଆଉ ଏକ ଭୟଙ୍କର ଦେବରେ ପରିଣତ ହୋଇଛନ୍ତି । ତାଙ୍କୁ ବେଡ଼ି ପକାଯାଇ ରଖାଯାଇଛି । ତେଣେ ଇନ୍ଦ୍ରଙ୍କର ଅଧଃପତନର ସୀମା ନାହିଁ । ସେ ଠକ, ପ୍ରତାରକ, ଛଦ୍ମ ରୂପଧାରୀ, ପରସ୍ତ୍ରୀ ହରଣକାରୀ, ବିନା କାରଣେ ହତ୍ୟା, ନିଜ ବନ୍ଧୁ ମରୁତଙ୍କର ଲୁଣ୍ଠନ, ଋଷି ମୁନିଙ୍କ ପ୍ରତି ଘୋର ଅପମାନଜନକ ବ୍ୟବହାର ଆଦି ବହୁ ବହୁ ଦୃଷ୍ଟାନ୍ତ ରହିଛି । ଋତ ସମାଜର ଅବସ୍ଥା ସମ୍ପୂର୍ଣ୍ଣ ବଦଳିଯାଇଛି ।

ଋତ ସମାଜର ସେଇ ଭାବ ହେଉଛି ଜଗନ୍ନାଥ-ଭାବ । ତମେ ତାକୁ ଯେଉଁ ଭାବ, ଧାରଣା, ଦର୍ଶନର ଆଖ୍ୟା ଦିଅନା କାହିଁକି, ତାର ସାରମର୍ମ ହେଲା ସାମ୍ୟ, ମୈତ୍ରୀ ଓ ପ୍ରୀତି । ଋତ ସମାଜର ଅବସାନରେ ସେଇ ଭାବ ସମ୍ପୂର୍ଣ୍ଣ ଓଲଟି ଯାଇଛି । ଏଥିପୂର୍ବରୁ ବୈଦିକ ସମାଜର ଉପନିଷଦ ଯୁଗରେ, କିପରି ଶ୍ରେଣୀ ବିଭାଜନ ଘଟିଛି, ବ୍ୟକ୍ତିଗତ ସମ୍ପତ୍ତିର ପ୍ରାଧାନ୍ୟ ବୃଦ୍ଧି ପାଇଛି, ତାର ଅଲଘନୀୟ ପରିବର୍ତ୍ତନର ପ୍ରତିଫଳନ କିପରି ଅର୍ଥଶାସ୍ତ୍ର ଓ ମନୁସ୍ମୃତିରେ ପ୍ରକାଶ ପାଇଛି, ତାହା ଆମେ ଦେଖିଛେ । ପଦେ କଥାରେ କହିଲେ ସେ ସବୁଠି ଜଗନ୍ନାଥ, ତାଙ୍କ ଆଦ୍ୟଭାବର ବିପରୀତରେ ପରିଣତ ହୋଇଛନ୍ତି । ଦର୍ଶନ ମଧ୍ୟ ତାର ବ୍ୟତିକ୍ରମ ନୁହେଁ ।

**ଜଗନ୍ନାଥର ଭାବ—**

ସାମ୍ୟ, ମୈତ୍ରୀ ଓ ପ୍ରୀତି, ଏ ଗୋଟିଏ ଧାରା । ଋତ ସମାଜର ଏହି ଧାରା ପରସ୍ପର ସହିତ ସଂଯୁକ୍ତ । ବେଦାନ୍ତର ଭାବ ବ୍ରହ୍ମ, ଚାତୁର୍ବର୍ଣ୍ଣ୍ୟ, କର୍ମ୍ମ, ମୋକ୍ଷ, ପୁନର୍ଜନ୍ମ ଏସବୁ ଅନ୍ୟ ଗୋଟିଏ ଧାରା । ଏମାନେ ପରସ୍ପର ସହିତ ସଂଯୁକ୍ତ । ଏ ଦୁଇ ଧାରଣା ପରସ୍ପର—ବିରୋଧୀ ଧାରଣା । ଏବର ଜଗନ୍ନାଥ ସେଇ ବିରୋଧିତାର ପ୍ରତିମୂର୍ତ୍ତି । ପ୍ରଥମଟି ଋତ ଯୁଗର — ପ୍ରାକ୍ ବିଭକ୍ତ ସମାଜର ଧାରଣା ହେଲାବେଳେ, ଅନ୍ୟଟି ଉପନିଷଦ ବେଦାନ୍ତ ଯୁଗର ଶ୍ରେଣୀବିଭକ୍ତ ସମାଜର ଦର୍ଶନୟ । ବର୍ତ୍ତମାନ କେହି ସାମ୍ୟ, ମୈତ୍ରୀ , ପ୍ରୀତି ଚାହିଁ ଜଗନ୍ନାଥଙ୍କ ପାଖକୁ ଯାଆନ୍ତି ନାହିଁ, ସେଥିଲାଗି ତାଙ୍କୁ କେହି ଲୋଡନ୍ତି ନାହିଁ । ସମସ୍ତେ ତାଙ୍କ ପାଖକୁ ଯାଆନ୍ତି ଅସାମ୍ୟର ବୃଦ୍ଧି ଲାଗି, ନିଜେ ବଡ଼ ହେବା ପାଇଁ, ଭଜନ୍ତି ବ୍ୟକ୍ତିଗତ ସ୍ୱାର୍ଥ ଓ ମୋକ୍ଷପ୍ରାପ୍ତି ପାଇଁ । ସେଇ ମୋକ୍ଷପ୍ରାପ୍ତିର ଦର୍ଶନକୁ ନ ଦେଖିଲାଯାଏ ଜଗନ୍ନାଥଙ୍କ ଦର୍ଶନ ସମ୍ପୂର୍ଣ୍ଣ ନୁହେଁ । ସେଇ ମୋକ୍ଷପ୍ରାପ୍ତିର ଦର୍ଶନ, ଦୀର୍ଘ ତିନିହଜାର ବର୍ଷ ଧରି ତାର ଆଧିପତ୍ୟ ବିସ୍ତାର କରିଛି । ସବୁଠାରୁ ଲକ୍ଷଣୀୟ ବିଷୟ ହେଲା—ଏହା ଘଟିଛି ଯେତେବେଳେ କି ଭାରତର ବିଶିଷ୍ଟ ଦାର୍ଶନିକଗଣ ନାସ୍ତିକ, ନିରୀଶ୍ୱରବାଦୀ ବା ଭାବବାଦର ବିରୋଧୀ ।

ସେଇ ସାମ୍ୟ, ମୈତ୍ରୀ, ପ୍ରୀତି ଏଇ ଭାବଟି ଇହଲେକର ଆକାଙ୍କ୍ଷା ଓ ଦର୍ଶନ ହେଲାବେଳେ, ଦ୍ୱିତୀୟ ଭାବ ମୋକ୍ଷପ୍ରାପ୍ତି, ପରଲୋକର ଆକାଙ୍କ୍ଷା ଓ ଦର୍ଶନ । ତେଣୁ ଇହଲୋକ ପରଲୋକର ଦର୍ଶନ କହିଲେ ସାଧାରଣତଃ ବସ୍ତୁବାଦ ଓ ଭାବବାଦକୁ ବୁଝାଇଥାଏ । ତେଣୁ ଜଗନ୍ନାଥଙ୍କ ବିଚାର ହେଉଛି ଅସଲରେ ସେଇ ବସ୍ତୁବାଦ ଭାବବାଦର ସଂଘର୍ଷ ଓ ସହାବସ୍ଥାନ ବା ସମନ୍ୱୟର ବିଚାର ।

ବେଦାନ୍ତ ହେଉଛି ଧର୍ମ, ଦର୍ଶନ ଓ ସମାଜ ତତ୍ତ୍ୱ । ଏ ସବୁର ଏକ ସମନ୍ୱୟ ଶକ୍ତି । ତା କବଳରୁ ଖସିବା ସହଜ ନୁହେଁ । ସେଥିରୁ ଗୋଟାଏ କଣ୍ଟାରୁ ଖସିଲେ ଆଉ ଦୁଇଟା କଣ୍ଟା ତମକୁ ଟାଣି ଧରିବେ । କାଳେ କାଳେ ତା ହେଉଛି ଶାସକ ଶ୍ରେଣୀର ଦର୍ଶନ । ବ୍ରାହ୍ମଣ, କ୍ଷତ୍ରିୟ ଓ ଉଚ୍ଚ ବର୍ଣ୍ଣଙ୍କର ବିଧାନ ଓ ଅନୁଷ୍ଠାନ । ତେଣେ

ସାଧାରଣ ଲୋକ, ଯେଉଁମାନଙ୍କ ଲାଗି ଇହଲେକରେ ଦୁଃଖ ଦୈନ୍ୟରୁ ମୁକ୍ତି ନାହିଁ । ତାଙ୍କ ଲାଗି ପରଲୋକରେ ମୋକ୍ଷର ଉପାୟ । ମଣିଷ ସେତିକିବେଳେ ମୋକ୍ଷ ବିଷୟ ଚିନ୍ତା କରିଛି, ଯେତେବେଳେ ଶାରୀରିକ କର୍ମରୁ ଅବସର ପାଇଛି । କେବଳ ଏକ ଅବସରଭୋଗୀ ଶ୍ରେଣୀ ସୃଷ୍ଟିହେଲା ପରେ ହିଁ ତାହା ସମ୍ଭବ ହୋଇଛି । ସେମାନେ ସତ୍ୟ ଓ ଅନ୍ତିମ ବାସ୍ତବତା ନେଇ ପ୍ରଶ୍ନ କରିଛନ୍ତି । ତାହା ଚିନ୍ତା କରିବାକୁ ଯାଇ ଧ୍ୟାନମଗ୍ନ ହୋଇଛନ୍ତି । ତାଙ୍କର ନିଜର ଚିନ୍ତା, ଚେତନାକୁ ଅନ୍ତିମ ବାସ୍ତବତାର ସହିତ ସମାନ କରି ଦେଖିଛନ୍ତି । ତାହା ହୋଇଛି ସର୍ବୋଚ୍ଚ ସତ୍ୟ ଓ ସୃଷ୍ଟିକର୍ତ୍ତା । ଆତ୍ମଜ୍ଞାନ— ଆତ୍ମା ହେଉଛି ସବୁର ମୂଳ । ତାରି ଉପଲବଧି ହିଁ ଅନ୍ତିମ ବାସ୍ତବତା । ବ୍ରହ୍ମର ଉପଲବ୍ଧି ଓ ମୋକ୍ଷପ୍ରାପ୍ତି ।

ଉପନିଷଦ କହେ ''ଅହଂ ବ୍ରହ୍ମାସ୍ମି'' ମୁଁ ବ୍ରହ୍ମ ଅଟେ । ଆତ୍ମା ହେଲା ବ୍ରହ୍ମ, ଅନ୍ତିମ ବାସ୍ତବତା । ସେହି ଅନ୍ତିମ ବାସ୍ତବତା ହେଉଛି ନିର୍ମଳ ବିଶୁଦ୍ଧ ଚେତନା ମାତ୍ର । ଅର୍ଥାତ୍ ଭୌତିକ ଜଗତ୍, ଯେଉଁ ବାସ୍ତବତାକୁ ତୁମେ ଅନୁଭବ ଓ ବ୍ୟବହାର କର, ତାର କିଛି ବାସ୍ତବତା ନାହିଁ । ଅତଏବ ସେଇ ନିର୍ମଳ ଆତ୍ମା, —ଯିଏ ସବୁ ଅସତ୍‌ରୁ ମୁକ୍ତ, —କାଳଶୂନ୍ୟ ଓ ମୃତ୍ୟୁହୀନ, ଦୁଃଖ ହୀନ, କ୍ଷୁଧା ତୃଷା ଶୂନ୍ୟ........ ତାର ଧାରଣାହିଁ ବାସ୍ତବ, ତାକୁ ଖୋଜି ବାହାର କରିବାକୁ ହେବ । ଯିଏ ଆତ୍ମାକୁ ପାଇଛି ଓ ବୁଝିଛି, ସେ ସମସ୍ତ ଜଗତ୍, ସମସ୍ତ ବାସନା ଲାଭ କରିଛି । ସେ ଦିଗରେ ଭାବବାଦର ମୁଖ୍ୟ କର୍ତ୍ତା ଯାଜ୍ଞବଲ୍‌କ୍ୟଙ୍କ ବକ୍ତବ୍ୟ ହେଲା—ବାହ୍ୟ ଜଗତରୁ ନିଜକୁ ପ୍ରତ୍ୟାହାର କରିନେଇ ଅନ୍ତର୍ଜଗରେ ନିମଗ୍ନ କରି ରଖ । —ପ୍ରତ୍ୟେକ ଜିନିଷକୁ ଜଗତ୍‌ରୁ ନେଇ ଆତ୍ମାରେ ନିବିଷ୍ଟ କର ।

ଯୁକ୍ତି ହେଲା — ସତ୍ୟ ହେଉଛି—ସ୍ୱାମୀ ପ୍ରତି ଶ୍ରଦ୍ଧା ଅଛି ବୋଲି ସ୍ୱାମୀ ପ୍ରିୟ ନୁହେଁ । ଆତ୍ମା ପ୍ରତି ଶ୍ରଦ୍ଧା ଯୋଗୁ ସ୍ୱାମୀ ପ୍ରିୟ । ସ୍ତ୍ରୀ ପ୍ରତି ସ୍ନେହ ଯୋଗୁ ସ୍ତ୍ରୀ ପ୍ରିୟ ନୁହେଁ, ଆତ୍ମା ପ୍ରତି ସ୍ନେହ ହେତୁ ସ୍ତ୍ରୀ ପ୍ରିୟ । ଧନ ପ୍ରତି ମମତା ଯୋଗୁ ଧନ ପ୍ରିୟ ନୁହେଁ । ଆତ୍ମା ପ୍ରତି ମମତା ଯୋଗୁ ଧନ ପ୍ରିୟ..... ଅତଏବ ଦେବତା, ମଣିଷ, ଭୂତ ପଦାର୍ଥ ଆଦି ଯେ ପ୍ରିୟ, ତାହା ସେମାନଙ୍କ ପ୍ରତି ପ୍ରେମ, ସ୍ନେହ, ଶ୍ରଦ୍ଧା ଓ ମମତା ଯୋଗୁ ନୁହେଁ । ନିଜ (ଆତ୍ମା) ପ୍ରତି ପ୍ରେମ, ସ୍ନେହ, ମମତା ଯୋଗୁ ସେମାନେ ପ୍ରିୟ । ଅତଏବ ଯାଜ୍ଞବଲ୍‌କ୍ୟଙ୍କ ମତରେ ସତ୍ୟ ହେଲା ଅନ୍ୟ ପ୍ରତି ସ୍ନେହ ଶ୍ରଦ୍ଧା ଯୋଗୁ ସେମାନେ ପ୍ରିୟ ନୁହନ୍ତି, ନିଜ ପ୍ରତି ସ୍ନେହ ଶ୍ରଦ୍ଧା ଯୋଗୁ ସେ ସମସ୍ତେ ପ୍ରିୟ । ଆତ୍ମାହିଁ ସବୁର ମୂଳ ।

ଯିଏ ଆତ୍ମାକୁ ଜାଣେ, ସିଏ ସବୁ ଜାଣେ । ଯିଏ ଆତ୍ମାଛଡ଼ା ଅନ୍ୟ ଯେକୌଣସି ବିଷୟ ଜାଣେ, ସେ ଅଜ୍ଞତାକୁ ଜାଣେ । ଏହା ହେଲା ଇନ୍ଦ୍ରିୟ ଜ୍ଞାନକୁ ଅସ୍ୱୀକାର କରିବା । ଅର୍ଥାତ୍ ବ୍ରହ୍ମ ଜାଣିବା ଦିଗରେ ଜ୍ଞାନର ପ୍ରତ୍ୟାଖ୍ୟାନ । ଯାଜ୍ଞବଲ୍‌କ୍ୟଙ୍କ ଦୃଷ୍ଟିକୋଣ ହେଲା ସମ୍ପୂର୍ଣ୍ଣ ନାସ୍ତିବାଚକ । ବ୍ରହ୍ମ କ'ଣ ? ଏ ପ୍ରଶ୍ନର

ଏକମାତ୍ର ଉତ୍ତର ହେଉଛି ''ନେତି, ନେତି ।'' ଅର୍ଥାତ ଏଇଟା ନୁହେଁ, ସେଇଟା ନୁହେଁ, କୌଣସିଟା ନୁହେଁ । ତାହାହେଲେ ବ୍ରହ୍ମ କେଉଁଟା ? ତାର କୌଣସି ଅସ୍ତିବାଚକ ଉତ୍ତର ନାହିଁ । ଏକମାତ୍ର ଉତ୍ତର ହେଉଛି, ଏଇଟା ସେଇଟା ଜାଣିବା ଅର୍ଥ, ଅଜ୍ଞାନ-ଅନ୍ଧାରରେ ଘାଣ୍ଟିହେବା । ବ୍ରହ୍ମ ହେଲା କାଳହୀନ, ମୃତ୍ୟୁହୀନ, କ୍ଷୁଧାତୃଷାହୀନ, କାମନା- ବାସନାହୀନ ..... ଇତ୍ୟାଦି ସବୁ ହୀନ । ତାହାହେଲେ ରହିଛି କ'ଣ ? ''ତେଣୁ କେବଳ ନାସ୍ତିମୂଳକ ଦୃଷ୍ଟିଦ୍ୱାରା ଅସ୍ତିମୂଳକ ଜ୍ଞାନ କିପରି ବା ସମ୍ଭବ ? ସବୁ ''ନାହିଁ '' ହେଲାବେଳେ ପୁଣି ''ହଁ '' ଟା ଆସିବ କେଉଁଠୁ ? ଶଙ୍କର ଉପନିଷଦର ଭାବବାଦକୁ ଚରମ ସୀମାକୁ ଘେନିଯାଇଛନ୍ତି । ତାଙ୍କର ଅଦ୍ୱୈତ ବେଦାନ୍ତ କହେ, ଏ ବିଶ୍ୱ ଜଗତ୍ ଶୂନ୍ୟ, ଗୋଟାଏ ମାୟା ମାତ୍ର । ଏକମାତ୍ର ବାସ୍ତବ ସତ୍ୟ ହେଉଛି ବ୍ରହ୍ମ ବା ଆତ୍ମା ।

ଏଇ ଯେଉଁ ଲୋକେ କହନ୍ତି ଏ ଜଗତ ସମସ୍ତ ଭୌତିକ, ସବୁ ମାୟା, ମିଥ୍ୟା ଓ ଅଳୀକ, ସେମାନେ ସବୁ ପାର୍ଥିବ ବିଷୟର ନିନ୍ଦା କରି ବ୍ରହ୍ମଜ୍ଞାନ ଦ୍ୱାରା ସ୍ୱର୍ଗୀୟ ଆନନ୍ଦ ଓ ମୋକ୍ଷପ୍ରାପ୍ତିର ପ୍ରଶସ୍ତି ଗାନ କରିଛନ୍ତି । ସୋମାନେ କିନ୍ତୁ ରାଜାଙ୍କ ଠାରୁ ଧନ, ସମ୍ପତ୍ତି—ସ୍ୱର୍ଣ୍ଣ ଓ ଗାଭୀ ଚାହିଁବାରେ ଲେଶମାତ୍ର ପଶ୍ଚାତ୍‌ପଦ ନୁହନ୍ତି । ସେ ଦିଗରେ ଖୋଦ୍ ଯାଜ୍ଞବଲ୍‌କ୍ୟ ହିଁ ହେଉଛନ୍ତି ପୁରୋଧା । ବୃହଦାରଣ୍ୟକ ଉପନିଷଦରେ ରହିଛି ରାଜା ଜନକ ଦିନେ ଯାଜ୍ଞବଲ୍‌କ୍ୟଙ୍କ ଆସିବାର ଉଦ୍ଦେଶ୍ୟ ନେଇ ପ୍ରଶ୍ନ କଲେ — ''ଆପଣ ପଶୁଲାଭ ନା ସୂକ୍ଷ୍ମତତ୍ତ୍ୱ ଆଲୋଚନା—କେଉଁ ଉଦ୍ଦେଶ୍ୟରେ ଆସିଛନ୍ତି । ଯାଜ୍ଞବଲ୍‌କ୍ୟଙ୍କ ଉତ୍ତର ହେଲା '' ବାସ୍ତବିକ ଉଭୟ ଉଦ୍ଦେଶ୍ୟ ନେଇ ଆସିଛି ।'' (୪.୧.୧) ଜନକ ଯାଜ୍ଞବଲ୍‌କ୍ୟଙ୍କ ଆଲୋଚନାରେ ପ୍ରୀତ ହୋଇ ତାଙ୍କୁ ଦଶହଜାଇ ଗାଈ ଓ ପ୍ରତ୍ୟେକ ଗାଈର ଶିଙ୍ଘରେ ଲାଗିଥିବା ସୁବର୍ଣ୍ଣ ଖଣ୍ଡମାନ ଅର୍ପଣ କରିଥିଲେ । ସେଠି ଯାଜ୍ଞବଲ୍‌କ୍ୟ ପାର୍ଥିବ ଧନଲାଭ ଓ ସୂକ୍ଷ୍ମ ତତ୍ତ୍ୱ ଆଲୋଚନା ଭିତରେ କୌଣସି ବିରୋଧିତା ଦେଖି ନ ଥିଲେ । କିନ୍ତୁ ମୈତ୍ରେୟୀ ବ୍ରହ୍ମଜ୍ଞାନୀ ନ ଥିଲେ, ସେ କହିଛନ୍ତି ଯେଉଁ ଧନ ଅମୃତ ଦିଏ ନାହିଁ, ତାକୁ ନେଇ ମୁଁ କ'ଣ ବା କରିବି ?

ବୃହଦାରଣ୍ୟକ ଉପନିଷଦର ଦ୍ୱିତୀୟ ଅଧ୍ୟାୟର ଚତୁର୍ଥ ବ୍ରାହ୍ମଣ ଓ ଚତୁର୍ଥ ଅଧ୍ୟାୟର ପଞ୍ଚମ ବ୍ରାହ୍ମଣ ଅନୁସାରେ ଯାଜ୍ଞବଲ୍‌କ୍ୟ ମୈତ୍ରେୟୀଙ୍କୁ ଶିକ୍ଷା ଦେଇ କହିଛନ୍ତି । ''ସମଗ୍ର ବିଶ୍ୱ ଆତ୍ମା ସ୍ୱରୂପ, ଅର୍ଥାତ୍ ଅମୃତମୟ । ତେଣୁ ଏ ଜଗତ୍‌କୁ ଆତ୍ମା ସ୍ୱରୂପ ଭାବି ଯିଏ ଭୋଗ କରେ, ସେ ''ଭୋଗୀ'' ନୁହେଁ—ଯୋଗୀ ।

ଉପନିଷଦ କହେ ''ମା ଗୃଧଃ'' ଲୋଭ କର ନାହିଁ । ''ତେନ ତ୍ୟକ୍ତେନ ଭୁଞ୍ଜୀଥାଃ'' ତ୍ୟାଗ ସଙ୍ଗରେ ଭୋଗ କର । ଭୋଗ କର ନାହିଁ ଏକଥା ଉପନିଷଦ କହିନାହିଁ । ଭୋଗ କର, କିନ୍ତୁ ଆସକ୍ତ ହୁଅ ନାହିଁ । ଏହାହିଁ ଉପନିଷଦର ଶିକ୍ଷା ।

ଭୋଗ-ସର୍ବସ୍ୱତା ଓ ଭୋଗ-ବିମୁଖତା ଭିତରେ ଏହାହିଁ ହେଲା ମଧ୍ୟମ ପନ୍ଥା । ଏଥିରେ କାହାରି ଆପତ୍ତିର ପ୍ରଶ୍ନ ନାହିଁ । ପୂର୍ବର ସାମ୍ୟ ସମାଜରେ ଭୋଗର

ଅଧିକାର ସମସ୍ତଙ୍କ ପାଇଁ ସମାନ । କିନ୍ତୁ ଉପନିଷଦର ବାଣୀ ଅନୁସାରେ ଯେଉଁ ମୁଷ୍ଟିମେୟ ଲୋକଙ୍କର କାର୍ଯ୍ୟତଃ ଭୋଗ କରିବାର ଅଧିକାର ଅଛି, ସେମାନେ ହେଲେ ବ୍ରାହ୍ମଣ, କ୍ଷତ୍ରିୟ । ସାଧାରଣ ଲୋକ, ଯାହାଙ୍କର କାମ ହେଲା ବ୍ରାହ୍ମଣ କ୍ଷତ୍ରିୟଙ୍କର ସେବା କରିବା, ତାଙ୍କର ଭୋଗ ବା ତ୍ୟାଗର ପ୍ରଶ୍ନ ନାହିଁ । ଯାହାଙ୍କର କିଛି ନାହିଁ ତାଙ୍କୁ, ''ତ୍ୟାଗ ଦ୍ୱାରା ଭୋଗ କର'' କହିବାଟା କ'ଣ ଏକ ବିଦ୍ରୁପ ନୁହେଁ ? ଯାହାଙ୍କର କିଛି ରହିଛି, ତାଙ୍କୁ ପୁଣି ସେଇ ଉପଦେଶ କଣ 'କିଛି ନ ଥିଲା ଲୋକଙ୍କର' ଅସନ୍ତୋଷର ଉପଶମ ଦିଗରେ ଉଦ୍ଦିଷ୍ଟ ନୁହେଁ ? ପୁଣି କୁହାଯାଏ, ''ମା ଗୃଧଃ କସ୍ୟସ୍ୱିଦ୍ ଧନଂ'', କାହାରି ଧନରେ ଲୋଭ କରନାହିଁ । ଏହାର ଏକମାତ୍ର ଅର୍ଥ ହେଉଛି ତମେ ଧନହୀନ ଦରିଦ୍ରଲୋକେ ଧନୀ ଲୋକଙ୍କର ଧନରେ ଲୋଭ କର ନାହିଁ । କିନ୍ତୁ କୌଣସି ଧନୀ ବିନା ଲାଭରେ ଧନୀ ହୋଇନାହିଁ । ଉପନିଷଦର ଉଚ୍ଚ ଦାର୍ଶନିକ ଚିନ୍ତାର ଏହି ହେଲା ନିଦର୍ଶନ ।

ବୃହଦାରଣ୍ୟକ — ମୈତ୍ରେୟୀ ବ୍ରାହ୍ମଣର ଏକ ମନ୍ତ୍ର ହେଉଛି ''ଯେଉଁ ବ୍ୟକ୍ତି ବ୍ରାହ୍ମଣ ଜାତିକୁ ଆତ୍ମାରୁ ପୃଥକ ବୋଲି ମନେ କରେ, ବ୍ରାହ୍ମଣ ଜାତି ତାକୁ ପରିତ୍ୟାଗ କରିବ । ଯେଉଁ ବ୍ୟକ୍ତି କ୍ଷତ୍ରିୟ ଜାତିକୁ ଆତ୍ମାରୁ ପୃଥକ ବୋଲି ମନେକରେ, କ୍ଷତ୍ରିୟ ଜାତି ତାକୁ ପରିତ୍ୟାଗ କରିବ । ଯେଉଁ ବ୍ୟକ୍ତି ସ୍ୱର୍ଗାଦି ଲୋକସମୂହକୁ ଆତ୍ମାରୁ ପୃଥକ ବୋଲି ମନେକରେ, ସ୍ୱର୍ଗାଦି ଲୋକସମୂହ ତାକୁ ପରିତ୍ୟାଗ କରିବ ।'' ଏହିପରି ଦେବଗଣ, ଭୂତସମୂହ ଓ ସକଳ ବସ୍ତୁର ଉଲ୍ଲଖ କରି ଯାଜ୍ଞବଲ୍‌କ୍ୟ ଉପସଂହାରରେ କହନ୍ତି— ''ଏଇ ବ୍ରାହ୍ମଣ ଜାତି, ଏଇ କ୍ଷତ୍ରିୟ ଜାତି, ଏଇ ସମୁଦାୟ ବସ୍ତୁହିଁ ଏଇ ଆତ୍ମା ।'' ଏଠାରେ ବିଶ୍ୱରେ ଯେଉଁ ଆତ୍ମା ବ୍ରହ୍ମର ଉପଲବ୍ଧି ଦେଖିବ, ସେଥିରେ ବ୍ରାହ୍ମଣ କ୍ଷତ୍ରିୟ ଜାତି ଅଛନ୍ତି, ନାହାନ୍ତି କେବଳ ବୈଶ୍ୟ ଓ ଶୂଦ୍ର । ତେଣୁ ଉପନିଷଦ ଅନୁଯାୟୀ ବିଶ୍ୱରେ ବ୍ରାହ୍ମଣ ଓ କ୍ଷତ୍ରିୟ ହେଲେ ମଣିଷ, ଅନ୍ୟମାନେ ନୁହନ୍ତି । ଯେହେତୁ ତାଙ୍କର ଆତ୍ମା ନାହିଁ । ସେମାନଙ୍କ କ୍ଷେତ୍ରରେ ମୋକ୍ଷର ପ୍ରଶ୍ନ ନାହିଁ । ଯେତେବେଳେ ସେଇ ଦଳିତ ଜାତିଙ୍କ ମଧ୍ୟରେ ଘୋର ଅସନ୍ତୋଷ ଓ ବିଦ୍ରୋହ ଭାବ ପ୍ରକାଶ ପାଇଛି, ସେତେବେଳେ ସେମାନଙ୍କ ଲାଗି ଆତ୍ମାର ମୋକ୍ଷ ବାଟ ଖୋଲାଯାଇଛି । ତା ହୋଇଛି ଗୀତାର ଭକ୍ତିମାର୍ଗ । ଅନ୍ୟ ଦିଗରେ ସେଇ ବିଦ୍ରୋହ ଦମନଲାଗି ଆବଶ୍ୟକ ସ୍ଥଳେ ମନୁ ବ୍ରାହ୍ମଣଙ୍କୁ ଅସ୍ତ୍ରଧାରଣର ଅଧିକାର ପ୍ରଦାନ କରି ନୀଚ୍ଚଜାତିକୁ ନିରସ୍ତ୍ର କରି ରଖିବାର ବିଧାନ ମଧ୍ୟ ଖଞ୍ଜିଦେଇଛନ୍ତି । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଏହା ଶ୍ରେଣୀବିଭକ୍ତ ସମାଜର ସାଧାରଣ କଥା । ତାହା ବିଭିନ୍ନ ସ୍ଥାନରେ ବିଭିନ୍ନ ଭାବରେ ପ୍ରକାଶ ପାଇଛି । ପ୍ରାଚୀନ ଗ୍ରୀସରେ ପ୍ଲାଟୋ ଆରିଷ୍ଟଟଲଙ୍କ ସହିତ ଯାଜ୍ଞବଲ୍‌କ୍ୟ ଓ ତାଙ୍କ ବନ୍ଧୁମାନଙ୍କର ଯଥେଷ୍ଟ ମେଳ ରହିଛି । ସେଠାରେ ଦାସ ଓ ଏଠାର ନୀଚବର୍ଣ୍ଣ —ଏମାନେ ପ୍ରାୟ ସମାନ ପର୍ଯ୍ୟାୟଭୁକ୍ତ । ସେଠି ମଧ୍ୟ ସେମାନେ ଆତ୍ମାରେ ବିଶ୍ୱାସୀ । ସେମାନେ କହନ୍ତି ଆତ୍ମା ଯେପରି ଶରୀରର ମାଲିକ, ସମାଜରେ ଦାସ ଓ ଦାସ ମାଲିକଙ୍କ ସମ୍ପର୍କ ସେହପରି । ସେଥିପାଇଁ ମଣିଷର ଶରୀର

ଚାଲିଲା ଭଳି ସମାଜ ଚଳୁଛି । ଏମାନେ ଆତ୍ମାଦ୍ୱାରା ଦାସ ମାଲିକଙ୍କ ଅଧିକାରକୁ ସାବ୍ୟସ୍ତ କଲାବେଳେ, ରାଜା ଅଜାତଶତ୍ରୁ ଆହୁରି ଆଗେଇଯାଇ ଓଲଟି ରାଜ ଅଧିକାର — ଆତ୍ମାର ଅଧିକାରକୁ ସାବ୍ୟସ୍ତ କରନ୍ତି ।

ଯୁକ୍ତିହେଲା, ''ଆତ୍ମା ଅହଂ'' ହେଉଛି ସବୁ ସତ୍ୟର ସତ୍ୟ । ''ବୁଢ଼ିଆଣୀ ଦେହରୁ ଯେପରି ସୂତା ବାହାରେ, ଅଗ୍ନିରୁ ଯେପରି ସ୍ଫୁଲିଙ୍ଗ ବିଚ୍ଛୁରିତ ହୁଏ, ସେମିତି ସମସ୍ତ, ସମସ୍ତ ବିଶ୍ୱ, ସବୁ ଦେବତା ଓ ସବୁ ସତ୍ତା ସେହିପରି ଆତ୍ମାରୁ ସିଃସୃତ ।''

''ଜଣେ ମୁଖ୍ୟ ଉପରେ, ତାର ଲୋକମାନେ ନିର୍ଭର କଲାଭଳି ସେଇ ଆତ୍ମା ଉପରେ ସେସବୁ ସତ୍ତା ନିର୍ଭର କରନ୍ତି । ମୁଖ୍ୟ ଯେପରି ତାର ଲୋକମାନଙ୍କୁ ଭୋଗ କରେ, କିମ୍ବା ତାର ଲୋକମାନେ ଯେପରି ମୁଖ୍ୟର ସେବାରେ ସତତ ନିୟୋଜିତ ଥାଆନ୍ତି, ସେମିତି ବୌଦ୍ଧିକ ଅହଂ ସେଇସବୁ ସତ୍ତାକୁ ଭୋଗ କରେ । ସେଇସବୁ ସତ୍ତା, ସେମିତି ତାଙ୍କ ସେବାରେ ଜାଗ୍ରତ ରହିଥାଆନ୍ତି । (କୌଶିତକୀ ଭାଗ ୪,୫)

ଅତଏବ ଆତ୍ମା ଓ ବ୍ରହ୍ମ କାହିଁକି ? କ'ଣ ତାର ଆବଶ୍ୟକତା ? ଏବେ ଅତି ପରିଷ୍କାର । ଯେଉଁଠି ନ୍ୟାୟ, ଯୁକ୍ତିତର୍କ ଆଦି ହାରମାନେ, ସେଠି ନିଜକୁ ସାବ୍ୟସ୍ତ କରିବାର ଏକମାତ୍ର ଉପାୟ ହେଉଛି '' ଦଣ୍ଡ'' । ବିପକ୍ଷର ନିଧନ । ବୃହଦାରଣ୍ୟକ ଉପନିଷଦରେ ଏହା ଅତି ସ୍ପଷ୍ଟ । ସେଠି ଗାର୍ଗୀ ଯାଜ୍ଞବଲ୍କ୍ୟଙ୍କ ଭିତରେ ଆଲୋଚନା କାଳରେ ଗାର୍ଗୀ ବାୟୁ, ଅନ୍ତରୀକ୍ଷ, ଗନ୍ଧର୍ବଲୋକ, ଆଦିତ୍ୟଲୋକ, ନକ୍ଷତ୍ରଲୋକ ଆଦି ବିଭିନ୍ନ ବିଷୟ ଘେନି ପ୍ରଶ୍ନ କରିଛନ୍ତି । ଶେଷରେ ଆଗେଇ ଆସି ଦୃଢ଼ ସ୍ୱରରେ କହିଛନ୍ତି ''ହେ ଯାଜ୍ଞବଲ୍କ୍ୟ, ବ୍ରହ୍ମଲୋକ କାହାକୁ ଘେନି ପରିବ୍ୟାପ୍ତ'' ? ସେଥିରେ ଯାଜ୍ଞବଲ୍କ୍ୟ କ୍ରୋଧାନ୍ୱିତ ହୋଇ ଉତ୍ତର ଦେଇଛନ୍ତି, ''ତମର ମସ୍ତିଷ୍କ ଯେପରି ନିପତିତ ନ ହୁଏ । ଯେଉଁ ବିଷୟରେ ଅତିଶୟ ପ୍ରଶ୍ନ କରିବା ଉଚିତ ନୁହେଁ ତୁମେ ସେହି ବିଷୟରେ ପ୍ରଶ୍ନ କରୁଛ ।'' ତାପରେ ଗାର୍ଗୀ ଆଲୋଚନାରୁ ବିରତ ରହିଲେ । ତର୍କରେ ପରାସ୍ତ ହୋଇ ନୁହେଁ, ମସ୍ତକ ନିପତିତ ହେବା ଭୟରେ । (୩ୟ ଅଧ୍ୟାୟ, ଷଷ୍ଠ ବ୍ରାହ୍ମଣ) ପୁଣି ସେହି ଷଷ୍ଠ ଅଧ୍ୟାୟର ଅଷ୍ଟମ ବ୍ରାହ୍ମଣରେ କହେ ଯେ, ଏଥର ଆଲୋଚନାରେ ଗାର୍ଗୀ ତାଙ୍କର ସୀମା ବିଷୟରେ ସଜାଗ ରହିଛନ୍ତି । ତାକୁ ଲଙ୍ଘନ କରିନାହାନ୍ତି । କିନ୍ତୁ ତାଙ୍କ ସହ ଥିବା ଶାକଲ୍ୟଙ୍କର ଜ୍ଞାନ ଆଧିଦୈବିକ ଓ ଆଧିଭୌତିକ ଭିତରେ ସୀମିତ ଥିଲା । (ଚତୁର୍ବେଦ ଓ ଆନୁଷଙ୍ଗିକ ଶାସ୍ତ୍ର) ଆଧ୍ୟାତ୍ମିକ ଉପନିଷଦ ଜ୍ଞାନ ତାଙ୍କୁ ଜଣା ନ ଥିଲା । ସେ ଦେବତା ଓ ବସ୍ତୁ ଆଦି ସମ୍ପର୍କରେ ଜାଣନ୍ତି, କିନ୍ତୁ ଆତ୍ମା ସମ୍ବନ୍ଧରେ ଜାଣନ୍ତି ନାହିଁ । ଶାକଲ୍ୟଙ୍କ ଆଲୋଚନାରେ ଉତ୍ୟକ୍ତ ହୋଇ ଯାଜ୍ଞବଲ୍କ୍ୟ ଶେଷରେ ତାଙ୍କର ବ୍ରହ୍ମାସ୍ତ୍ର ଛାଡ଼ିଲେ, କହିଲେ ''ମୁଁ ସେହି ଉପନିଷଦ ବ୍ରହ୍ମ କଥା ପଚାରୁଛି, ଯଦି ତାର ଉତ୍ତର ଦେଇ ନ ପାର, ତେବେ ତମ ମସ୍ତକ ଖସିପଡ଼ିବ ।'' ତାପରେ ରହିଛି, ଶାକଲ୍ୟ ସେ ବିଷୟରେ ଜାଣନ୍ତି ନାହିଁ, ତେଣୁ ତାଙ୍କର ମସ୍ତକ ଖସିପଡ଼ିଲା । ସବୁ ବ୍ରାହ୍ମଣ ଚୁପ୍ ହୋଇଗଲେ । ଯାଜ୍ଞବଲ୍କ୍ୟଙ୍କ

ବିଜୟ ହେଲା । ନ୍ୟାୟ ତର୍କରେ ହାରିଲେ ବି ଉପନିଷଦ ବେଦାନ୍ତ ବ୍ରହ୍ମଜ୍ଞାନକୁ ସାବ୍ୟସ୍ତ କରିବାର ଏଇ ହେଲା ଶେଷ ଉପାୟ । ମସ୍ତକ ଛେଦନର ଉପାୟ ।

ବେଦାନ୍ତ ଦର୍ଶନ, ଯେଉଁସବୁ ମହାନ୍ ଶବ୍ଦ — ଆଡ଼ମ୍ବର ଭିତରେ ଆବୃତ ହୋଇ ରହିଥିଲା, ସ୍ମୃତିକାରଙ୍କର ବ୍ୟାବହାରିକ ପ୍ରୟୋଗରେ ତାର ଉଲଗ୍ନ ରୂପ ଖୋଲିଗଲା । ମନୁଙ୍କର ବ୍ୟବସ୍ଥା ଦ୍ୱାରା ଶେଷରେ ତାହା ଏକ ଫୌଜଦାରୀ ଆଇନ ବା କ୍ରିମିନାଲ କୋଡ଼ରେ ପରିଣତ ହେଲା ।

ମନୁ ପ୍ରଥମରୁ ପରିଷ୍କାର କରିଦେଲେ, ''ଶ୍ରୁତି ବୋଇଲେ ବେଦକୁ'' ବୁଝିବାକୁ ହେବ । ସ୍ମୃତି ହେଲା ଧର୍ମୀୟ ଆଇନ । ଏ ଦୁହେଁ ହେଉଛନ୍ତି ନିୟମର ମୂଳ । ବିରୋଧୀ ଯୁକ୍ତିତର୍କ ଦ୍ୱାରା ତାକୁ ବିଚାର କରିବାକୁ ହେବ ନାହିଁ । ଯଦି ଜଣେ ନ୍ୟାୟଶାସ୍ତ୍ରର ଅନୁସରଣରେ ବେଦକୁ ଓ ସେହି ଆଇନସଙ୍ଗତ କୋର୍ଡ ବା ଆଚରଣବିଧିକୁ ଅଗ୍ରାହ୍ୟ କରେ, ତାକୁ ନାସ୍ତିକ ବୋଲି ବିଚାରିବାକୁ ହେବ । ଏପରିକି ସେ ବ୍ୟକ୍ତି ଯଦି ''ବ୍ରାହ୍ମଣ ହୋଇଥାଏ, ତାକୁ ସମାଜରୁ ଫିଙ୍ଗିଦେବାକୁ ହେବ ।'' (ମ.୨.୧୦.୧୧)

ସେହି ସ୍ମୃତିର ପରମ୍ପରା ଅନୁସାରେ ନାସ୍ତିକମାନେ ହେଲେ — 'ହେତୁକ', ଯେଉଁମାନେ ସବୁକଥାରେ ହେତୁ ବା କାରଣ ଖୋଜନ୍ତି । ଆନ୍ୱୀକ୍ଷିକ, ଯେଉଁମାନେ ଗୁପ୍ତ ବା ଗୂଢ଼ଜ୍ଞାନକୁ ବିଶ୍ୱାସ ନ କରି ଇନ୍ଦ୍ରିୟଲବ୍ଧ ପ୍ରତ୍ୟକ୍ଷ ଜ୍ଞାନ ଲୋଡ଼ନ୍ତି । 'ସ୍ୱାଧୀନ ଚିନ୍ତକ,' ଏମାନେ ଧର୍ମବାଣୀରେ ବିଶ୍ୱାସ ନ କରି ଚିନ୍ତାର ସ୍ୱାଧୀନତା ଦାବୀ କରନ୍ତି । ତେଣୁ ଏମାନେ ପ୍ରଚଳିତ ଧର୍ମନୀତିର ବିରୋଧୀ, ଜାତିଭେଦ ନୀତିର ଲଙ୍ଘନକାରୀ, ପରଲୋକରେ ଅବିଶ୍ୱାସୀ, ବେଦନିନ୍ଦୁକ ଆଉ ବସ୍ତୁବାଦୀ — ଏମାନେ ସବୁ ହେଲେ ଗୋଟାଏ ଶ୍ରେଣୀଭୁକ୍ତ ।

ଜଗନ୍ନାଥ- ଭାବରେ ସେହିସବୁ କୌଣସିଟିର ପ୍ରଶ୍ନ ନାହିଁ । ତା' ଦେଖା ଦେଇଛି ପରବର୍ତ୍ତୀ କାଳରେ, ଜଗନ୍ନାଥ-ଧର୍ମ ବେଳକୁ ।



# ଅଷ୍ଟମ ପର୍ବ

## ବିନା ତନ୍ତ୍ରରେ ଜଗନ୍ନାଥ ନାସ୍ତି

ଜଗତର ନାଥଙ୍କୁ ବୁଝିବାକୁ ହେଲେ ଜଗତ ଆଉ ନାଥ, -ଉଭୟଙ୍କୁ ବୁଝିବାକୁ ହେବ । ଖୋଜିବାକୁ ହେବ ସେ ଉଭୟଙ୍କ ମଧ୍ୟର ସମ୍ପର୍କକୁ । କାରଣ, ସେହି ସମ୍ପର୍କର ତାତ୍ପର୍ଯ୍ୟ ଭିତରେ ତତ୍‌କାଳୀନ ମଣିଷର ସମାଜିକ ଜୀବନ, ତାର ଧ୍ୟାନ ଧାରଣାର ପ୍ରକୃତ ମହତ୍ତ୍ୱ ଲୁକ୍‌କାୟିତ । ସେହିପରି ଏକ ବଡ଼ ରହସ୍ୟମୟ ଲୁକ୍‌କାୟିତ ବିଷୟ ହେଉଛି ତନ୍ତ୍ର । ଏବେ କେବଳ ତାର ଅବଶେଷ ନାହିଁ, ତାର ଆଧିପତ୍ୟ ମଧ୍ୟ କେତେଠି ରହିଛି । ସେଇ ଜଗନ୍ନାଥହିଁ ତାର ଜ୍ୱଳନ୍ତ ଦୃଷ୍ଟାନ୍ତ । ଜଗନ୍ନାଥ, ଶ୍ରୀକ୍ଷେତ୍ର, ତନ୍ତ୍ରପୀଠ ଭାବେ କଥିତ । କାହିଁକି, କ'ଣ ବା ସେଇ ତନ୍ତ୍ରର ତାତ୍ପର୍ଯ୍ୟ ? ଜଗନ୍ନାଥ ପୁଣି ସେଇ ତନ୍ତ୍ର ସହିତ ସମ୍ପୃକ୍ତ ହେବାର କାରଣ କ'ଣ ? ସେଇ ସମ୍ପର୍କ ଆକସ୍ମିକ ନା ସ୍ୱାଭାବିକ ? ଯଦି ଆକସ୍ମିକ, ତେବେ ତାର ଅର୍ଥ ଅତି ସହଜ । କେବଳ ଆକସ୍ମିକ ବୋଲି ଘୋଷଣା କରିଦେଲେ ହେଲା । ତାର କାରଣ ଖୋଜିବାର ଆବଶ୍ୟକତା ଆଉ ନାହିଁ । ନାହିଁ ଯଦି ତାକୁ ସ୍ୱାଭିବିକ, ଅର୍ଥାତ୍ ଜଗନ୍ନାଥଙ୍କ ସହଜାତ ପ୍ରକୃତି ବୋଲି କୁହ, ତେବେ ତାର ଆଲୋଚନା ଦରକାର । ସେଠି ତାହା ଜଗନ୍ନାଥଙ୍କ ସ୍ୱଭାବର ଏକ ଅପରିହାର୍ଯ୍ୟ ଅଙ୍ଗ ହୋଇଉଠେ । ସେଠି ସେଇ ସ୍ୱଭାବକୁ ଛାଡ଼ି ଜଗନ୍ନାଥଙ୍କର ଆଲୋଚନା, ରୌଦ୍ରକୁ ଛାଡ଼ି ସୂର୍ଯ୍ୟଙ୍କ ଆଲୋଚନା ଭଳି ଅର୍ଥହୀନ ।

ଅଥଚ, ଜଗନ୍ନାଥଙ୍କ ସହିତ ତନ୍ତ୍ରର ପ୍ରକୃତ ତାତ୍ପର୍ଯ୍ୟ ଏ ପର୍ଯ୍ୟନ୍ତ ଅନାବୃତ ନୁହେଁ । ତନ୍ତ୍ର ହୋଇଲେ ଆମେ ସାଧାରଣତଃ ଗୋଟାଏ ପ୍ରକାର ଦେବୀ ପୂଜା, ମନ୍ତ୍ରଯନ୍ତ୍ର ବା ଗୁଣୀଗାରେଡ଼ି ବୁଝୁ । ତଦ୍ୱାରା କୌଣସି ଏକ ନିର୍ଦ୍ଦିଷ୍ଟ ଦେବୀଙ୍କୁ ପ୍ରଭାବିତ ବା ବଶ କରି ତାଙ୍କ ଦ୍ୱାରା ନିଜର ଇଚ୍ଛା ଓ କାମନା ପୂରଣର ଉପାୟ ଖୋଜାଯାଏ ।

ଅସାଧ ରୋଗର ଆରୋଗ୍ୟଠାରୁ ଅନ୍ୟ ପ୍ରତି ଅକଶ ସାଧନ, ଏପରିକି ମଣିଷ ମାରଣ ଯାଏ ସବୁକିଛି କରାଯାଇପାରେ । ଉଭୟ ଭଲ ମନ୍ଦ, ରୋଗର ଆରୋଗ୍ୟ, ନିଜର ଭାଗ୍ୟ ଜାଣିବା ଓ ତାର ପରିବର୍ତ୍ତନ ଲାଗି ମଧ୍ୟ ଲୋକେ ତାନ୍ତ୍ରିକଙ୍କ ଦ୍ୱାରସ୍ଥ ହୋଇଥାଆନ୍ତି, ଏପରିକି — ଅର୍ଥ ଧର୍ମ କାମ ମୋକ୍ଷ ମଧ୍ୟ ତନ୍ତ୍ରର ଅନ୍ତର୍ଭୁକ୍ତ । ବିଶେଷକରି ଆପଦ ବିପଦ ବେଳେ, ଏବର ଭୋଟ କାଳରେ ତାନ୍ତ୍ରିକଙ୍କର ଭାଉ ବଢିଯାଏ । ପ୍ରଶ୍ନ ହେଉଛି, ଏସବୁ ଭିତରେ ଜଗନ୍ନାଥ ଆସିଲେ କୁଆଡୁ ? ସେ ତ ଦେବୀ ନୁହନ୍ତି । ଯଦି ତାଙ୍କଠାରେ ନାରୀର କଳ୍ପନା ନାହିଁ, ତେବେ ତାଙ୍କୁ ନାକଚଣା ପିନ୍ଧାଇବାର କ'ଣ କାରଣ ? ଅନ୍ୟ କୌଣସି ଦେବତାଙ୍କ କ୍ଷେତ୍ରରେ ତାହା ତ ଦେଖାଯାଏ ନାହିଁ ! ଆଗେ ପୁରୁଷ ଲୋକ, ଖୁବ୍ ହେଲେ ଖଡୁ, ହାର ବା କାନର ଭୂଷଣ ପିନ୍ଧୁଥିଲେ । କିନ୍ତୁ ନାକର ଅଳଙ୍କାର ଏକମାତ୍ର ଜଗନ୍ନାଥଙ୍କର ବୈଶିଷ୍ଟ୍ୟ । ତାହା କ'ଣ ତନ୍ତ୍ରର ପ୍ରଭାବ ହେତୁ ? ତାଙ୍କର ନିଜର ଜୀବନ କ'ଣ ତନ୍ତ୍ର ଦ୍ୱାରା ନିୟନ୍ତ୍ରିତ ?

ଶୁଣିଲେ ଯେକୌଣସି ଲୋକ ଆଶ୍ଚର୍ଯ୍ୟ ହେବ ଯେ, ତନ୍ତ୍ର ବିନା ଜଗନ୍ନାଥଙ୍କ ଚୂଲୀ ଜଳେ ନାହିଁ । ଜଗନ୍ନଥଙ୍କର ଚୂଲୀ ଲାଗିବାଠାରୁ ତାଙ୍କର ଭୋଗ ମହାପ୍ରସାଦର ମର୍ଯ୍ୟାଦା ପାଇବା ଏବଂ ସିଏ ଶୟନ କଲା ପର୍ଯ୍ୟନ୍ତ, ପ୍ରତ୍ୟେକ କ୍ଷେତ୍ରରେ ତନ୍ତ୍ରର ରୀତି ଅନୁସୃତ । ତନ୍ତ୍ରର ସ୍ପର୍ଶ ବିନା ଜଗନ୍ନାଥଙ୍କ ଭୋଗ ମହାପ୍ରସାଦ ନୁହେଁ, ଅର୍ଥାତ୍ ଆଚାଣ୍ଡାଳ ବ୍ରାହ୍ମଣ ସମସ୍ତଙ୍କୁ ସମାନ କରି ଦେବାର କ୍ଷମତା, — ତନ୍ତ୍ର ଛଡା ଆଉ କାହାରି ନାହିଁ । ତନ୍ତ୍ରହିଁ ଜଗନ୍ନାଥଙ୍କୁ ତାଙ୍କର ସେଇ ବୈଶିଷ୍ଟ୍ୟ ପ୍ରଦାନ କରେ । ଅର୍ଥାତ୍, ତାଙ୍କୁ ଜଗନ୍ନାଥ କରିଦିଏ ।

ପ୍ରଥମତଃ, ଜଗନ୍ନାଥଙ୍କ ଚୂଲୀର ନକ୍ସା ତାନ୍ତ୍ରିକ ରୀତିରେ ତିଆରି । ତାର ନିର୍ମାଣ-କୌଶଳ ତନ୍ତ୍ରର ଯନ୍ତ୍ର ଭଳି । ତାହା ନଅ ଭାଗରେ ବିଭକ୍ତ । ଯେଉଁଠି ନଅଟି କୁଡିଆ, ନଅ ମୁହଁରେ ଏକାବେଳକେ ବସିବ । ଅନ୍ୟ ପ୍ରକାର ରନ୍ଧା ସେଠାରେ ନିଷେଧ । ତଦ୍ଦ୍ୱାରା ତାହା ମହାପ୍ରସାଦ ହେବ ନାହିଁ । ଦ୍ୱିତୀୟରେ, ଚୂଲୀ ଲାଗିଲା ପୂର୍ବରୁ ଆଗ ହୋମ ହେବ । ତାର କଳ୍ପନା ହେଉଛି ଲକ୍ଷ୍ମୀ ଋତୁମତୀ । ତାଙ୍କ ସହ ନାରାୟଣଙ୍କ ମିଳନରେ ଯେଉଁ ଅଗ୍ନି ଜାତ ହୁଏ, ତାହାହିଁ କେବଳ ଜଗନ୍ନାଥଙ୍କ ରନ୍ଧନ କାର୍ଯ୍ୟ ଲାଗି ଉପଯୁକ୍ତ । ତୃତୀୟରେ, ସେଇ ଅଗ୍ନିରେ ପାକ ପଦାର୍ଥ ଜଗନ୍ନାଥ ଭୋଗ କଲେ, ତାହା ମହାପ୍ରସାଦ ହୁଏ ନାହିଁ, ତାହା ଶେଷରେ ବିମଳାଙ୍କୁ ଅର୍ପଣ ହେଲା ପରେ ହିଁ ମହାପ୍ରସାଦର ମର୍ଯ୍ୟାଦା ଲାଭ କରେ । ଏ ବିମଳା ପୁଣି କିଏ ? ତାଙ୍କର ଚାରିହାତ, ତିନି ଆଖି, ଦକ୍ଷିଣ ଉପର ହାତରେ ଅକ୍ଷମାଳା, ତଳ ହାତରେ ବରଦାତ୍ରୀ ଭଳି ସଙ୍କେତ । ବାମ ଉପର ହାତରେ ମତ୍ସ୍ୟକନ୍ୟା, ତଳ ହାତରେ ପାନପାତ୍ର । ଦୁଇପାଖରେ ଦୁଇଟି ଭୟଙ୍କର ଉଲଗ୍ନ ନାରୀମୂର୍ତ୍ତି, ଆଗରେ ଯୂପକାଠ — ଏ

ହେଲେ ବିମଳା । ଏହିପରି ଏକ ଦେବୀଙ୍କୁ ଅର୍ପଣ ପରେ କେବଳ ଜଗନ୍ନାଥଙ୍କର ଭୋଗ ସାମ୍ୟର ଶକ୍ତି ଲାଭ କରେ । (୧)

ମନ୍ଦିରରେ ଅଶ୍ଳୀଳ ମିଥୁନମୂର୍ତ୍ତି ରହିଛି । ତାକୁ ଯୋଗିନୀ କହନ୍ତି । ତନ୍ତ୍ର କହେ ପଚାଶ ମିଥୁନକୁ ଭୋଗଦେବା ଉଚିତ । ଅନଙ୍ଗ ତ୍ରୟୋଦଶୀ ଦିନ ଜଗନ୍ନାଥଙ୍କ ମନ୍ଦିରର ମିଥୁନମୂର୍ତ୍ତି ସବୁ ପ୍ରକୃତରେ ପୂଜାପାଆନ୍ତି । ପ୍ରଥମେ ପୂଜିତ ହୁଅନ୍ତି ଜଗମୋହନର ବାହାରର ଉତ୍ତରପଟେ ଥିବା ମିଥୁନମୂର୍ତ୍ତି । ଅନ୍ୟ ଦିଗରେ ତେଣେ ଜଗନ୍ନାଥଙ୍କର ନିଜର ପୂଜା ହୁଏ ସେଇ ତାନ୍ତ୍ରିକ ପଦ୍ଧତିରେ । ''ଆମ୍ନାୟାଗମଦେବାୟ ତେ ଶୁଦ୍ଧ-ବୁଦ୍ଧୟେ ନମଃ ।'' ଆମ୍ନାୟ ଅର୍ଥ ବେଦ, ଆଗମ ଅର୍ଥ ତନ୍ତ୍ର, ଏଇ ଦୁଇ ମିଶ୍ରିତ ଉପାୟରେ ପୂଜା ହେଉଛି ସର୍ବଶ୍ରେଷ୍ଠ ପୂଜା, ମହାଭାରତ କହେ । ଭାଗବତ ଆହୁରି ଆଗକୁ ଯାଇ କହେ ''ଯେଉଁମାନେ ମୋକ୍ଷ ଚାହାନ୍ତି, ସେମାନେ ବୈଦିକ ଓ ତାନ୍ତ୍ରିକ ଉଭୟ ଭାବରେ ପୂଜା କରିବା ଉଚିତ ।'' (ଅଷ୍ଟମ ଅଧ୍ୟାୟ)

ମନ୍ଦିର ଦୁଆର ଫିଟିବା ପରଠାରୁ ''ନିତ୍ୟପୂଜା'' ଆରମ୍ଭରେ ଯେତେ ବିଧାନ ହୁଏ, ତାହା ସେହିପରି ଉଭୟ ରୀତିରେ ହୋଇଥାଏ । ସନ୍ଧ୍ୟାପୂଜା ହୁଏ ସେଇ ଉଭୟ ରୀତିରେ । 'ସ୍ନାନ', ତାହା ମଧ୍ୟ ତାନ୍ତ୍ରିକ, ବୈଦିକ ଉଭୟ ପଦ୍ଧତି ଅନୁସରଣ କରେ । ତା ପଛକୁ ମୁଖ୍ୟ ପୂଜାର ବୈଦିକମନ୍ତ୍ର 'ଓଁ'ରୁ ଉଚ୍ଚାରଣ ଆରମ୍ଭ ହେଲାବେଳେ ତନ୍ତ୍ର ମତରେ ତାହା ଆରମ୍ଭ ହୁଏ 'କ୍ଲୀଂ'ରୁ । ବୈଦିକ ଅଂଶଟି ହେଲା ବ୍ରହ୍ମର ପ୍ରତୀକ ସଙ୍କେତ ପ୍ରତି ଅର୍ପଣ । ତନ୍ତ୍ରର ଐତିହ୍ୟାସିକ ହେଉଛି ନ୍ୟାସ, ପ୍ରାଣାୟାମ ଆଦି — ସର୍ବାଙ୍ଗ ନ୍ୟାସ କେଶବାଦି ନ୍ୟାସ, ସୃଷ୍ଟି, ସ୍ଥିତି, ସଂହାର ନ୍ୟାସ, ମର୍ତ୍ତକ୍ୟ ନ୍ୟାସ, ପୁଣି ବିଭିନ୍ନ ଯନ୍ତ୍ର, କ୍ରିୟା (ମୁଦ୍ରା) ବୀଜମନ୍ତ୍ର ଆଦି ।

ତନ୍ତ୍ରର ପ୍ରଧାନମନ୍ତ୍ର ହେଲା ପଞ୍ଚ 'ମ'କାର — ମତ୍ସ୍ୟ, ମାଂସ, ମଦ୍ୟ, ମୁଦ୍ରା, ମୈଥୁନ । ପ୍ରତ୍ୟେକଟିର ଅନୁକଳ୍ପ ବା ବିକଳ୍ପ ପୂଜା ରହିଛି । ଯଥା- କଞ୍ଚା ପରିବାରେ ହେଙ୍ଗୁ ମିଶିଲେ ତାହା ମାଛ ହୁଏ । ଅଦା ପାଚେଡ଼ି ହେଉଛି ମାଂସ, କଂସାରେ ପଇଡ଼ ପାଣି ହେଲା ମଦ । ଅଟା ଓ ମିଠାରୁ ତିଆରି କାନ୍ତି ହେଉଛି ମୁଦ୍ରା,

(୧) ବିମଳାଙ୍କ ନିକଟରେ ଭଗମାୟା ଓ ଭଗଦୁର୍ଗା ବୋଲି ଯେଉଁ ମୂର୍ତ୍ତି ରହିଛି ତାହା ଦୁଇହସ୍ତରେ ନିଜର ଯୋନିକୁ ସ୍ପଷ୍ଟରୂପେ ପ୍ରଦର୍ଶିତ କରିଛନ୍ତି । ତାଙ୍କର ପୂଜାମନ୍ତ୍ର ହେଲା......''ଯୋନିବନ୍ଧ - କରୌ ସାକ୍ଷାତ୍ ଭଗମାର୍ଗ ପ୍ରଦର୍ଶିତା, ଯୋନିମଧ୍ୟେ ଚ ଭୂତାନି ଜଗଚ୍ଚୈବ ଚରାଚରମ୍, ମହାମାୟାମୟୀ ଦେବୀ ଭଗକାଳୀ ନମସ୍ତୁତେ ।'' ଅର୍ଥାତ୍ ଯୋନିର ମାର୍ଗରୁ ସବୁ ଜଗତର ଉଦ୍ଭବ । ହେ ଆଦ୍ୟଶକ୍ତି (ମହାମାୟା) ତତେ ନମସ୍କାର କରେ । ତାହା ବିମଳାଙ୍କ ବିଶେଷତ୍ୱ ନୁହେଁ । ଏହି ପ୍ରକାରର ମାଟିର ମୂର୍ତ୍ତିର ଅସଂଖ୍ୟ ନିଦର୍ଶନ ପୃଥିବୀର ବିଭିନ୍ନ ଅଞ୍ଚଳରେ ପ୍ରତ୍ନତତ୍ତ୍ୱ ଖନନରୁ ମିଳିଥାଏ । ମାତୃଶକ୍ତିର ପ୍ରାଧାନ୍ୟ ପ୍ରଦର୍ଶନ ହେଲା ସେସବୁର ଏକମାତ୍ର ଲକ୍ଷ୍ୟ । ଖ୍ରୀଷ୍ଟପୂର୍ବ ତିନିହଜାର ବର୍ଷ ତଳରୁ ମେସୋପଟେମିଆରୁ, ହରପ୍ପା, ମହେଞ୍ଜୋଦାରରୁ ଯେଉଁସବୁ ମୂର୍ତ୍ତି ମିଳେ, ସେସବୁ ଯେତେ ରୁକ୍ଷ, ସୁନ୍ଦର ବା ଅସୁନ୍ଦର ହେଲେ ବି ତାହା ସୃଷ୍ଟିର ରହସ୍ୟ ଉଦ୍‌ଘାଟନର ସୂଚନା ଦିଏ । ମାତୃତ୍ୱ ଜ୍ଞାନର ଉପଲବ୍ଧିକୁ ଦର୍ଶାଇଥାଏ । ସେଥିରେ ଅଶ୍ଳୀଳତାର ବା କୌଣସି ବିରାଟ ଆଧ୍ୟାତ୍ମିକ ଭାବର ପ୍ରଶ୍ନ ନାହିଁ । ତାହା ଏକ ସରଳ ଜୀବନର ଅନାବିଳ ପ୍ରକାଶନ ମାତ୍ର ।

ଏକ ନିର୍ଦ୍ଦିଷ୍ଟ ପ୍ରକାର ଦେବଦାସୀ ନାଚ, ଆଉ କେତେକ ମତରେ ଅପରାଜିତା ଫୁଲ ହେଉଛି ମୈଥୁନ । ସେ ଫୁଲ ଦ୍ୱାରା ଯୋନିର କଳ୍ପନା କରାଯାଇଛି । (୧)

ଏହି 'ମ'କାର ନୈବେଦ୍ୟର ବନ୍ଦନା ଓଡ଼ିଶା କଲଚରାଲ ଫୋରମ୍ ଦ୍ୱାରା ପ୍ରକାଶିତ 'ଶ୍ରୀଜଗନ୍ନାଥ ସଂସ୍କୃତି' ପୁସ୍ତକରେ ଗଣେଶ ପ୍ରସାଦ ପରିଜାଙ୍କର ଲେଖାରେ ରହିଛି, ''ନୂଆ ଓଳିରେ ଜାଇଫଳ ଘୋରା ପାଣି ଓ କଂସା ବାସନରେ ପଇଡ଼ ଜଳ ମଦର ଅନୁରୂପ, ସେହିପରି ମାଂସ ବଦଳରେ ବିରି ପିଠା, ମାଛ ବଦଳରେ ଅଦା, ଗୁଡ଼ ବା ଶାକ... ବଡ଼ ଶୃଙ୍ଗାର ବେଶବେଳେ ଭିତର ଗାଆଣୀର ନଗ୍ନ ବା ଅର୍ଦ୍ଧନଗ୍ନ ଅବସ୍ଥାରେ ଲାସ୍ୟ ସଙ୍ଗୀତ ଓ ମୈଥୁନର ଉପଚାର ଓ ଦେବତାଙ୍କୁ ଯୋନିମୁଦ୍ରା ପ୍ରଦର୍ଶନ ମୁଦ୍ରା ପଚାର ଅନୁରୂପ, ବିଶେଷକରି ଜଗନ୍ନାଥଙ୍କ ନିକଟରେ ବଢ଼ାଯାଉଥିବା ମେଣ୍ଢାମୁଣ୍ଡିଆ ଖେଚେଡ଼ି ନାମରୁ ସ୍ପଷ୍ଟ ଜଣାଯାଏ, ପୂର୍ବେ ଦିଅଁଙ୍କ ପାଖରେ ମେଣ୍ଢାମୁଣ୍ଡ ବଢ଼ାଯାଉଥିଲା । ପରେ ବୈଷ୍ଣବ ପ୍ରଭାବ ହେତୁ ଆଉ ମେଣ୍ଢାମୁଣ୍ଡ ବଢ଼ା ନ ଯାଇ ସେ ଥାଳିରେ ଅଦା, ହେଙ୍ଗୁ, ଖେଚେଡ଼ି ବଢ଼ାଯାଉଥିଲେ ମଧ୍ୟ ପୂର୍ବ ନାମ ଅନୁଯାୟୀ ଏବେ ବି ନାମିତ ....। ଶ୍ରୀଜଗନ୍ନାଥ ସମ୍ପୂର୍ଣ୍ଣ ତନ୍ତ୍ରର ଦେବତା.... ହଜାର ବର୍ଷ ପାଖାପାଖି ହେବ ବୈଷ୍ଣବମାନେ ତାଙ୍କୁ ତାଙ୍କର ଦେବତା ରୂପେ ପ୍ରଚାର କରିବାକୁ ଯାଇ ସଫଳ ହୋଇନାହାନ୍ତି ।''

ଉପରୋକ୍ତ ଦୁଇ ବର୍ଣ୍ଣନା ଭିତ୍ତିରେ କେତେକ ପାର୍ଥକ୍ୟ ଥିଲେ ବି ତାହା ମୂଳତଃ ସମାନ । ଅସଲ ପ୍ରଶ୍ନ ତନ୍ତ୍ର କଅଣ ? ତନ୍ତ୍ର କାହିଁକି ଓ କିପରି ଜଗନ୍ନାଥଙ୍କ ସହଜାତ ବା ତାଙ୍କର ସ୍ୱାଭାବିକ ଅଙ୍ଗରେ ପରିଣତ ହେଲା ? ସେଥିଲାଗି ଆମକୁ ଜଗନ୍ନାଥଙ୍କ ଜନ୍ମକାଳ ସେହି ଆଦିମ ସମାଜକୁ ଫେରିଯିବାକୁ ହେବ । ଆଚାର ଓ ବ୍ୟବହାର ଯାହା ସବୁ ତତ୍କାଳୀନ ସମାଜର ଅପରିହାର୍ଯ୍ୟ ଅଙ୍ଗ, ତାହାହିଁ ଜଗନ୍ନାଥଙ୍କର ସାଧାରଣ ଚରିତ୍ରରେ ରୂପନେବା ଅତି ସ୍ୱାଭାବିକ ।

ତନ୍ତ୍ରର ବୈଶିଷ୍ଟ୍ୟ ହେଉଛି ନାରୀ- ପ୍ରାଧାନ୍ୟ । ଦେବୀ ଶକ୍ତି ଆଦି ବିଭିନ୍ନ ନାମରେ ନାରୀର ପୂଜା ଓ ସାଧନା କେଉଁ ପ୍ରାଚୀନ କାଳରୁ ମିଶରର ସୁଦୂର ନୀଳନଦୀ କୂଳରୁ ସିନ୍ଧୁନଦୀ କୂଳ ଧରି ଏକ ବିରାଟ ସୁବିସ୍ତୃତ ଭୂଖଣ୍ଡରେ ଏବେ ବି ହଜାର ହଜାର ବର୍ଷ ତଳର ଅସଂଖ୍ୟ ପୋଡ଼ା ମାଟିର ମାତୃମୂର୍ତ୍ତିର ସନ୍ଧାନ ବା ଅବଶେଷ ମିଳିଥାଏ । ସେମିତି ଆମ ଗାଁ ମୁଣ୍ଡରେ ଭଙ୍ଗା ମନ୍ଦିର, ଖଣ୍ଡିଆ ଘର ଏପରିକି ଗଛ ମୂଳରେ ଗ୍ରାମଦେବତୀ ଏବେ ବି ବିରାଜମାନ । ଶୁଭ କାମରେ ଆଗ ତାଙ୍କୁ ମଙ୍ଗୁଳା ହୁଏ । ବିପଦ ପଡ଼ିଲେ ତାଙ୍କର ମାଜଣା ବସେ । ଆଦିବାସୀ ହରିଜନଙ୍କ କ୍ଷେତ୍ରରେ ଦେବୀ ନିଜେ କାଳିସୀ ହୋଇ ମଣିଷ ଦେହରେ ଉଭା ହୁଅନ୍ତି । ସେହିସବୁ

(1) Cult of Jaganath by Dr. K. C. Mishra

ସ୍ମାରକୀର ରୂପ ଯେତେ ଭିନ୍ନ ଭିନ୍ନ ହେଲେ ବି ସେସବୁ ସମ୍ପର୍କହୀନ ବା ତାତ୍ପର୍ଯ୍ୟଶୂନ୍ୟ ନୁହନ୍ତି ।

**ଆଦିମ ଅବସ୍ଥାରେ ତନ୍ତ୍ରର ତାତ୍ପର୍ଯ୍ୟ —**

ଆରମ୍ଭରେ ମଣିଷ ତିନୋଟି ପର୍ଯ୍ୟାୟ ଦେଇ ସଭ୍ୟତାକୁ ଆସିଛି । ଶିକାର, ପଶୁପାଳନ ଓ କୃଷି । ଶିକାରକୁ ମଣିଷ ଆଖିରେ ଦେଖେ, ତାକୁ ବୁଝେ, ଶେଷରେ ତାକୁ ମାରି ସଙ୍ଗରେ ଧରି ଆସେ । ପଶୁପାଳନରେ ମଣିଷ ପଡ଼ିଆ ବଣବୁଦାରେ ପଶୁ ଚରାଏ, ତାଙ୍କର ବଂଶବୃଦ୍ଧି ପ୍ରତି ଲକ୍ଷ୍ୟ ରଖେ, ତାଙ୍କୁ ଅନାଇଥାଏ ଓ ଅଧିକାର କରେ । କୃଷିରେ ମଞ୍ଜି ବୁଣିଲେ ଫଳ ପାଏ, ସେଥିଲାଗି ଅପେକ୍ଷା କରିବାକୁ ହୁଏ । କିନ୍ତୁ ମଞ୍ଜିରୁ ଫଳ ହୁଏ କାହିଁକି ? ଅଜଣା ସେହି ମାଟିର, ଅର୍ଥାତ୍ ସୃଷ୍ଟିର ରହସ୍ୟ । ସେହି ସୃଷ୍ଟିର ରହସ୍ୟ ଉଦ୍‌ଘାଟନ କରିବା ଦିଗରେ ସେ ସଦା ଚେଷ୍ଟିତ । ମଣିଷ ଦେଖିଛି, ସେ ନିଜେ ବି ସନ୍ତାନ ଉତ୍ପାଦନ କରେ । ତେଣୁ ସେ କଳ୍ପନା କରିଛି —ଏ ଦୁହେଁ ସମାନ । ସେ ଦୁହିଁଙ୍କ ଭିତରେ ସମ୍ପର୍କ ଧାରଣାକୁ ସେ ଅନୁସରଣ କରିଛି । ସେହି କଳ୍ପନା ଅନୁଯାୟୀ ହୋଇଛି ତାର କାର୍ଯ୍ୟ । ଆମେ ଦେଖିଛେ ଆଦିମ ଅବସ୍ଥାରେ ମଣିଷ ବୃଷ୍ଟି ଚାହିଁଲେ ସେ ନାଚ, ଗୀତ, ଆଦିର ଅଭିନୟ କରି ବର୍ଷାକୁ ଆହ୍ୱାନ କରେ, ଅର୍ଥାତ୍ ନକଲ ବା କୃତ୍ରିମତାର ସାହାଯ୍ୟରେ ସେ ବାସ୍ତବତାକୁ ଡାକେ । ସଫଳତା ଲାଭର ଉପାୟ ଖୋଜେ । ଏଇ ଶସ୍ୟ ଉତ୍ପାଦନ କ୍ଷେତ୍ରରେ ସେଇ ଅନୁସୃତ ପଦ୍ଧତି, ଅର୍ଥାତ୍ ନାଚ ଦ୍ୱାରା ବର୍ଷାକୁ ଆଣିବା ଏକପ୍ରକାର ଯାଦୁର ଭାବନା । ତା ମୂଳରେ କୌଣସି ବାସ୍ତବତା ନାହିଁ । ସେହିପରି ସନ୍ତାନ ଉତ୍ପାଦନ ପ୍ରଣାଳୀର ପ୍ରୟୋଗ ଦ୍ୱାରା ଶସ୍ୟ ଉତ୍ପାଦନ କଳ୍ପନା ଏକ ଯାଦୁର ଭାବନା, ସେଥିରେ ବାସ୍ତବତାର ଲେଶମାତ୍ର ପ୍ରଶ୍ନ ନାହିଁ । ସେଇଠୁ ଆରମ୍ଭ ତନ୍ତ୍ରର । ତନ୍ତ୍ର ମଧ୍ୟ ଗୋଟାଏ ଯାଦୁ ।

ପଶୁପାଳନ ପୁରୁଷଙ୍କ କାର୍ଯ୍ୟ, ତେଣୁ ତହିଁରେ ପୁରୁଷଙ୍କ ପ୍ରାଧାନ୍ୟ । ପଶୁପାଳନର ସମାଜ ପୁରୁଷ ପ୍ରଧାନ ସମାଜ । ଆର୍ଯ୍ୟମାନେ ପ୍ରଥମରେ ପଶୁପାଳକ । ତାହାହିଁ ହେଉଛି ବୈଦିକ ସମାଜର ଅର୍ଥନୀତି । ତେଣୁ ବୈଦିକ ସାହିତ୍ୟରେ ଦେବୀ ନୁହନ୍ତି, ଦେବତାଙ୍କ ପ୍ରାଧାନ୍ୟ ପ୍ରତିଷ୍ଠିତ । ନାରୀ ସବୁର ଜନ୍ମଦାତ୍ରୀ ହେଲାବେଳେ, ବେଦରେ 'ପୁରୁଷ' ହିଁ ବିଶ୍ୱରେ ସୃଷ୍ଟିକର୍ତ୍ତା —ମାନବ ଜାତି ଉତ୍ପତ୍ତିର କାରଣ । ସେଇହିଁ ଜନ୍ମଦାତା । ସେଠି ନାରୀ କେବଳ ଅପ୍ରଧାନ ନୁହେଁ, ସେ ଘୃଣିତ ଓ ଉପେକ୍ଷିତ । ସେମାନେ ସବୁଦିଗରୁ ଶୂଦ୍ରଙ୍କ ସହ ସମାନ, ସମାଜରେ ଅଧିକାର-ହୀନ । ମୋଟ ଉପରେ ବୈଦିକ ସାହିତ୍ୟରେ ନାରୀ ପ୍ରାଧାନ୍ୟ ଅସ୍ୱୀକୃତ । ତାର ଧର୍ମୀୟ ଅଭିବ୍ୟକ୍ତି ହୁଏ, 'ନାରୀ ନରକର ଦ୍ୱାର' ।

କିନ୍ତୁ, କୃଷି ହେଉଛି ନାରୀର ଆବିଷ୍କାର । ତାହା ସାଧାରଣତଃ ନାରୀର କାର୍ଯ୍ୟ । ତେଣୁ କୃଷି-ଅର୍ଥନୀତିରେ ନାରୀ ପ୍ରଧାନ । ଆର୍ଯ୍ୟଙ୍କ ଅର୍ଥନୀତି ପଶୁପାଳନ

ହେଲାବେଳେ, ଅନାର୍ଯ୍ୟଙ୍କ ଅର୍ଥନୀତି ଥିଲା କୃଷି । ତେଣୁ କୃଷି କେନ୍ଦ୍ରିକ ସମାଜରେ ନାରୀ-ପ୍ରାଧାନ୍ୟ ସ୍ୱୀକୃତ । ସେହି ସମାଜର ଧାରଣା ଅନୁଯାୟୀ ନାରୀ ଦେବୀ ଓ ଶକ୍ତି, ନାନାରୂପରେ ପ୍ରତିଷ୍ଠିତ । ଏବେ ବି ବିତ୍ତ, ବିଦ୍ୟା, ବିଜୟର ପ୍ରତୀକ ରୂପରେ ସେଇ ନାରୀ ପ୍ରାଧନ୍ୟର ସ୍ମୃତି ସର୍ବତ୍ର ପୂଜିତ ।

ଅତଏବ, ସମାଜରେ ଦୁଇଟିଧାରା— ପୁରୁଷପ୍ରଧାନ ବୈଦିକ ଧାରା ଓ ନାରୀପ୍ରଧାନ ଅବୈଦିକ ଧାରା ପ୍ରାଚୀନକାଳରୁ ପ୍ରବାହିତ ହୋଇଚାଲିଛି । ଏହାର ମୂଳ ଉତ୍ସ ରହିଛି ପଶୁପାଳନ, କୃଷି— ସେହି ଦୁଇ ଅର୍ଥନୀତି ଓ ଉତ୍ପାଦନର ଦୁଇ ଉପାୟ ଭିତରେ ।

ମଣିଷ ଉତ୍ପାଦନ କରେ ତାର ଅଭାବ ମୋଚନ ପାଇଁ । ସେହି ଅଭାବ ମୋଚନ ଦିଗରେ ବାସ୍ତବ କ୍ଷେତ୍ରରେ ମଣିଷ ଯେଉଁ କାର୍ଯ୍ୟ କରେ, ତାର ପ୍ରତିଫଳନ ଘଟେ ତାର ମାନସ ରାଜ୍ୟରେ । ତାହା ପ୍ରକାଶ ପାଏ ତାର ଧ୍ୟାନ ଧାରଣା ରୂପରେ । ମଣିଷର ସେଇ ଅଭାବ ହେଲା ମୁଖ୍ୟତଃ ଦୁଇଟି । ଗୋଟିଏ ହେଲା ନିଜର ଆତ୍ମରକ୍ଷା ଓ ନିରାପତ୍ତା । ଅନ୍ୟଟି ହେଲା ପଶୁ, ଶସ୍ୟ, ସନ୍ତାନର ଉତ୍ପାଦନ—ନିଜର ବଂଶ, ଧନସମ୍ପଦ ଅଭିବୃଦ୍ଧି । ପ୍ରଥମଟି ପାଇଁ ପୁରୁଷର ଶକ୍ତି ଲୋଡା ହେଲାବେଳେ ଅନ୍ୟଟି ପାଇଁ କେବଳ ନାରୀହିଁ ସମର୍ଥ । ତେଣୁ ପ୍ରଥମଟିର ଉପାସ୍ୟ ଦେବତା ପୁରୁଷ ହେଲାବେଳେ ଅନ୍ୟଟି ଲାଗି ଦେବୀଙ୍କର ଆରାଧନା । ସ୍ୱର୍ଗରେ ପୁରୁଷ ଓ ନାରୀ ଭେଦର ଗୁରୁତ୍ୱ ମର୍ତ୍ତ୍ୟରେ ତାଙ୍କର କାର୍ଯ୍ୟ ଉପରେ ନିର୍ଭର କରେ ନାହିଁ, ତାହା ନିର୍ଭର କରେ ସାମାଜିକ କ୍ଷେତ୍ରରେ ତାଙ୍କର ପ୍ରାଧାନ୍ୟ ଉପରେ । ବୈଦିକ ସମାଜ ଯେହେତୁ ପୁରୁଷପ୍ରଧାନ, ସ୍ୱର୍ଗରେ ତେଣୁ ସବୁଠି ଦେବତାଙ୍କର ପ୍ରାଧାନ୍ୟ ।

କିନ୍ତୁ ସନ୍ତାନ ଉତ୍ପାଦନ ଓ ଧନ ଉତ୍ପାଦନରେ ନାରୀ ପ୍ରଧାନ, ପୁରୁଷ ଅପ୍ରଧାନ । ନାରୀ ହେଲା ଜଗଦମ୍ବା । ସବୁର ଜନ୍ମ ନାରୀଠାରୁ । ତାହା ହେଲା ମାତୃପ୍ରଧାନ, ତନ୍ତ୍ରର ମୂଳଭିତ୍ତି । ଅଥଚ ବୈଦିକ ସମାଜରେ ପୁରୁଷକୁ ପ୍ରଧାନ ଭୂମିକା ପ୍ରଦାନ କରାଯାଇଛି । ତାହା ପ୍ରକାଶ ପାଇଛି କ୍ଷେତ୍ରପ୍ରଧାନ ବା ବୀଜପ୍ରଧାନର ଆଲୋଚନାରେ । ଅଥର୍ବ ବେଦରେ ପୁରୋହିତ ବରକୁ କହନ୍ତି ''ଏ ନାରୀ ତୁମର କ୍ଷେତ୍ର, ତୁମେ ବୀଜ ବପନ କର ।''

କେବଳ ନାରୀ ସନ୍ତାନବତୀ ହୋଇପାରେ । ସେହିପରି ଫଳପ୍ରସୂ ହୁଏ ଏ ପୃଥିବୀ—ପ୍ରକୃତି । ତେଣୁ ଦୁଇ ଫଳପ୍ରସୂତା ସମ୍ବେଦନଶୀଳ । ଆଦିମ ବିଶ୍ୱାସ ହେଲା ନାରୀ ସନ୍ତାନବତୀ ହେବାର ଶକ୍ତିର ପ୍ରଭାବରେ କେବଳ ପୃଥିବୀକୁ ଫଳପ୍ରସୂ କରାଯାଇପାରେ । ନାରୀର ଉତ୍ପାଦିକା ଶକ୍ତି ଓ ପ୍ରକୃତିର ଉତ୍ପାଦିକା ଶକ୍ତି ଉଭୟ କ୍ଷେତ୍ରରେ ପୁରୁଷ ଅପ୍ରଧାନ । କାରଣ, କୃଷି ନାରୀକେନ୍ଦ୍ରିକ, ତେଣୁ ଧାରଣା ଯେ ନାରୀ ଉତ୍ପାଦିକା ଶକ୍ତି ଉପରେ ପ୍ରାକୃତିକ ଉତ୍ପାଦିକା ଶକ୍ତି ବା ଉର୍ବରତା ନିର୍ଭରଶୀଳ । ସେହିପରି ଅନ୍ୟଦିଗରୁ ଦେଖିଲେ ସବୁକିଛି ପୃଥିବୀ-ସମ୍ଭୂତ । ତେଣୁ ନାରୀର

ଉତ୍ପାଦିକା ଶକ୍ତି ପୃଥିବୀର ଉତ୍ପାଦିକା ଶକ୍ତି ଉପରେ ନିର୍ଭରଶୀଳ । ଗୋଟିଏ ହେଲା ନିଜର ବଂଶବୃଦ୍ଧିର ପଦ୍ଧତି । ଅନ୍ୟଟି ହେଲା ଗଛବୃଛ, ବୃକ୍ଷଲତା ଆଦି ବୃଦ୍ଧିର ପଦ୍ଧତି । ସେଇ ଦୁଇ ପଦ୍ଧତି ମଧ୍ୟରେ ଫରକ କେଉଁଠି, ମଣିଷ ପ୍ରଥମ ଅବସ୍ଥାରେ ତାହା ଜାଣେ ନାହିଁ । ସେ କଳ୍ପନା କରିଛି ନିଜର ବଂଶବୃଦ୍ଧି ପଦ୍ଧତି ସାହାଯ୍ୟରେ ପ୍ରାକୃତିକ ବଂଶବୃଦ୍ଧି—ଉତ୍ପାଦନକୁ ପ୍ରଭାବିତ କରାଯାଇପାରେ ।

ଆଦିମ ସମାଜ କ୍ରମଶଃ ନାରୀ ଓ ତାହାର ଜନନାଙ୍ଗକୁ ପ୍ରଜନନ ଶକ୍ତିର ଅଧାର ବୋଲି ଚିହ୍ନିଛି । ପ୍ରକୃତିର ଫଳପ୍ରସୂତା ମାନବୀୟ ଫଳପ୍ରସୂତା ଉପରେ ନିର୍ଭର କରେ, ସେଇ ଧାରଣାରୁ ତାକୁ ଆୟତ୍ତ କରିବା ଆଶାରେ ସେଇ ଜନନାଙ୍ଗ ପ୍ରତି ଗୁରୁତ୍ୱ ଆରୋପ କରିଛି । ସେଇ ଆଦିମ ବିଶ୍ୱାସରୁ ସେଇ କାଳରୁ ତନ୍ତ୍ରପୂଜା, ଲତାସାଧାନା, ଭଗଯାଗ ଓ ତାନ୍ତ୍ରିକ ଯନ୍ତ୍ର ଆଦି କ୍ରମଶଃ ଦେଖାଦେଇଛି । ସେଗୁଡ଼ିକୁ କେବଳ ସେଇ ଫଳପ୍ରସୂତା ବା ଉତ୍ପାଦନ ପରିପ୍ରେକ୍ଷୀରେ ବୁଝାଯାଇ ପାରେ ।

ସେ ସବୁର ବିଶଦ ବର୍ଣ୍ଣନା ଏବେ ଆଧୁନିକ ରୁଚିବୋଧର ବିରୁଦ୍ଧ । ଆଜିର ଦୃଷ୍ଟିରେ ସେ ସବୁ ଧ୍ୟାନ ଧାରଣା କେବଳ ଅମୂଳକ ନୁହେଁ, ଉତ୍କଟ କାମ ବିକାର ଆଉ ଅସମ୍ଭବ ବୋଲି ମନେହୁଏ । କିନ୍ତୁ ଜଗନ୍ନାଥଙ୍କ ଚୁଲୀ ଲାଗି ଅଗ୍ନି ସୃଷ୍ଟିର ସେଇ ପଦ୍ଧତି, ବିଭିନ୍ନ ଦେବଦେବୀ ଯୋଗିନୀଙ୍କ ପୂଜା ଏବଂ ଯନ୍ତ୍ରକାଟି ପୂଜା କରିବାର ବିଧାନ ଆଜି ସେଇ ତନ୍ତ୍ରର ସୁସ୍ପଷ୍ଟ ସୂଚନା, ତାହା ସମାଜର ଅଙ୍ଗୀଭୂତ ଓ ବିନା ପ୍ରଶ୍ନରେ ଗୃହୀତ ହୋଇଥାଏ । ସେଥିରୁ ବୁଝିବାକୁ ହେବ, ହୁଏତ ଏ ସମସ୍ତ ସମାଜଟା ନିର୍ବିଚାରରେ କେବଳ କାମ ବିକାରଗ୍ରସ୍ତ, କିମ୍ବା ନ ହେଲେ ତାହା କୌଣସି ଏକ ବଳିଷ୍ଠ ବାସ୍ତବତାର ଅପରିହାର୍ଯ୍ୟ ଆବଶ୍ୟକତା ଭିତରୁ ଉଦ୍ଭବ, ସାମାଜିକ କ୍ରମବିକାଶର ଏକ ନିର୍ଦ୍ଦିଷ୍ଟ ସ୍ତରର ଧ୍ୟାନ ଧାରଣାର ପ୍ରତିଫଳନ ବା ଏକ ସାଧାରଣ ପଦ୍ଧତି, — ଯାହାକି ସେଇ ସାମାଜିକ ଉଦ୍ଦେଶ୍ୟ ପୂରଣ ଦିଗରେ ଉଦ୍ଦିଷ୍ଟ ।

ତନ୍ତ୍ରର ବିଭିନ୍ନ ପ୍ରକାରର ଯନ୍ତ୍ର ରହିଛି । ସେସବୁ ହେଉଛି ସେଇ ନାରୀ ଜନନାଙ୍ଗର ପ୍ରତୀକ । ଲତାଦି ବିଷୟ ମଧ୍ୟ ସେଥିସହିତ ସମ୍ପୃକ୍ତ — ତାକୁହିଁ ପ୍ରକାଶ କରିଥାଏ । କେବଳ ସନ୍ତାନ ଉତ୍ପାଦନ ନୁହେଁ, ପ୍ରାକୃତିକ ଉତ୍ପାଦନ ମଧ୍ୟ ତାହା ଉପରେ ନିର୍ଭର କରେ । ଆଉ ଏକ ମତରେ ତନ୍ତ୍ରର ସେହି ଯନ୍ତ୍ର ହେଉଛି, ମଣିଷର ପ୍ରସ୍ତର ଯୁଗର ହାତହତିଆର ଓ ନାନା ବିଧିବିଧାନର ସଂକେତ, — ଯାହାକି ପୃଥିବୀକୁ ଫଳପ୍ରସୂ କରିବା ସହିତ ସଂପୃକ୍ତ । ପଦେ କଥାରେ କହିଲେ ତାହାହିଁ ପାର୍ଥିବ ସମ୍ପଦର ଉତ୍ସ । ସବୁ ଐଶ୍ୱର୍ଯ୍ୟର ମୂଳ, ଅଣିମାଦି ଅଷ୍ଟବିଧ ଐଶ୍ୱର୍ଯ୍ୟ, ସମଗ୍ର ବୀର୍ଯ୍ୟ, ସମଗ୍ର ଯଶ, ସମଗ୍ର ଶ୍ରୀ, ସମଗ୍ର ଜ୍ଞାନ ଏବଂ ସମଗ୍ର ବୈରାଗ୍ୟ — ଏଇ ଅଷ୍ଟ ଐଶ୍ୱର୍ଯ୍ୟର ନାମ ଭଗ । ସେଥିଲାଗି ଭଗଯାଗ ।

''ଐଶ୍ୱର୍ଯ୍ୟସ୍ୟ ସମଗ୍ରସ୍ୟ ବୀର୍ଯ୍ୟସ୍ୟ ଯଶସଃ ପ୍ରିୟଃ
ଜ୍ଞାନ ବୈରାଗ୍ୟୟୋଶ୍ଚୈବ ଯସ୍ମାତ୍ ଭଗ ଇତୀରିତେ ।''

(ବିଶ୍ୱକୋଷ ୭.୫.୨୮)

ଏଇ ଭଗରୁ ଭଗବତୀ ଦେବୀ ପୂଜାର ଧରଣା । (ସ୍ତ୍ରୀ ଭଗଂ ପୂଜନ ଧାରାଃ) । ଯନ୍ତ୍ର ଦୁଇ ପ୍ରକାର, ଦେବୀଯନ୍ତ୍ର, ଦେବୀ ପୂଜା ଧାରଣାରେ ଯନ୍ତ୍ର ଆଙ୍କି ଦେବୀ ଅଧିଷ୍ଠାନ ଧାରଣା କରାଯାଏ । ଅସଲରେ ସେଇ ଯନ୍ତ୍ର ଐଶ୍ୱର୍ଯ୍ୟ ଲାଭ ଉଦ୍ଦେଶ୍ୟରେ ହୋଇଥାଏ । ଅନ୍ୟ ଏକ ଧାରଣା ପଦ୍ଧତି, 'ମ'କାର, ସେଥିମଧ୍ୟରୁ ମଦ, ମୈଥୁନ ଏ ଦୁଇଟି ରୁଚି ଓ ନୀତି ଗର୍ହିତ । ଋକ୍‌ବେଦରେ ସୋମରସର ଅଜସ୍ର ଗୁଣଗାନ । 'ଆଗସ୍ୟ ସୋମରସଃ ଅମୃତା ଅଭୂମ', ଆମେ ସୋମରସ ପାନ କରି ଅମୃତତ୍ୱ ଲାଭ କରିଛୁ । (୪.୪୮.୩) ଏଠି ମୃତ୍ୟୁରୁ ଉତ୍ତୀର୍ଣ୍ଣ ହେବାର କଳ୍ପନା । ସେତେବେଳେ ମଦର ବାସ୍ତବ ଗୁଣ ବୁଝିବା ସମ୍ଭବ ନୁହେଁ । ମଣିଷ ଦେଖେ ତଦ୍ୱାରା ସାମୟିକ ଭାବେ ଉତ୍ସାହ, ଉଦ୍ଦୀପନା ବୃଦ୍ଧି ପାଏ, ଶକ୍ତି, ସାମର୍ଥ୍ୟ ଆସେ । ତାହା ମଣିଷକୁ ଏକ ନୂଆ ପ୍ରକାର ମଣିଷରେ ପରିଣତ କରିଦିଏ । ଅତଏବ ମଦ ନବଜୀବନର ଆଧାର, ପ୍ରାଣଦାୟକ ରୂପେ ବିବେଚିତ । ଯେଉଁ ଜୀବନ ଯାଇଛି, ତଦ୍ୱାରା ତାକୁ ପାଇହେବ, ଯେଉଁ ଜୀବନ ଆସୁଛି, ତାକୁ ଆୟତ୍ତ କରିହେବ ।

କୃଷିକୈନ୍ଦ୍ରିକ ଜାଦୁରୁ ଯେପରି ତନ୍ତ୍ରର ଜନ୍ମ, ସେମିତି ସେଇ ସାଧନା ମଦ୍ୟପାନ ବିନା ସମ୍ଭବ ନୁହେଁ । (''ବିନା ମଦ୍ୟଂ ମହେଶାନି ନ ସିଦ୍ଧ୍ୟାନ୍ତି କଦାଚନ''।) ସେତେବେଳର ଏଇ ନୀତିବୋଧ ସମାଜର ଅର୍ଥନୈତିକ ଉନ୍ନତିର ଅନୁରୂପ । ସେଇ ଅର୍ଥନୈତିକ ଜୀବନ ହିଁ ସେଇ ନୀତିର ଭିତ୍ତି । ଅର୍ଥାତ୍, ତାହା ଧନ ଉତ୍ପାଦନ ପଦ୍ଧତି ଉପରେ ନିର୍ଭରଶୀଳ । ସେହିପରି ମୈଥୁନ, ତାହା କେବଳ ମାତ୍ର କାମ ଚରିତାର୍ଥତା ନୁହେଁ । ତାହା ଏକ ଅନୁଷ୍ଠାନ ବିଶେଷ । ଏକ ମୌଳିକ ଅର୍ଥନୈତିକ ପ୍ରଚେଷ୍ଟାର ଅଙ୍ଗ । ମଣିଷର ଆଦିମ ଅସହାୟ ଅବସ୍ଥାର ଫଳ । ଯେଉଁଠିକି ମଣିଷର ଧାରଣା, ସନ୍ତାନ ଉତ୍ପାଦନ ଓ ଫସଲ ଉତ୍ପାଦନ ସଂପର୍କହୀନ କ୍ରିୟା ନୁହେଁ । ସେଠି ଉତ୍ପାଦନ ନକଲର କଳ୍ପନା କରି ପ୍ରାକୃତିକ ଉପାଦାନକୁ ଆୟତ୍ତ ବା ପ୍ରଭାବିତ କରିବାର ଚେଷ୍ଟା ହୁଏ । ତାହା ଅବାସ୍ତବ ହେଲେ ମଧ୍ୟ ତତ୍କାଳୀନ ଅବସ୍ଥାରେ ବିଚାରର ଏକ ବାସ୍ତବତା । ଜଗନ୍ନାଥଙ୍କ ରୋଷଶାଳର ଅଗ୍ନି ଉତ୍ପାଦନ, ସେଇ ସନ୍ତାନ ଉତ୍ପାଦନ ପ୍ରକ୍ରିୟାର ଏକ ଅନୁରୂପ ବ୍ୟବସ୍ଥା । ବର୍ତ୍ତମାନ ଦୃଷ୍ଟିରେ ସେଇ ଆଦିମ ଉଦ୍ଦେଶ୍ୟ ସାଧନକୁ ବୁଝିବା ସମ୍ଭବ ନୁହେଁ ।

ଏବେ ତନ୍ତ୍ରର ମୈଥୁନ ଏକ ଧର୍ମ ଅନୁଷ୍ଠାନର ଅଙ୍ଗ । ତାହା ଆଉ ଉତ୍ପାଦନ ପଦ୍ଧତିର ଅଂଶ ହୋଇ ନାହିଁ । ମଣିଷ ତାର ଅର୍ଥନୈତିକ ଅବସ୍ଥା, ଧ୍ୟାନଧାରଣା, ସାମାଜିକ ନୀତିବୋଧ ଦିଗରୁ ସେଇଦିନଠାରୁ ଏତେଦୂର ଅଗ୍ରସର ହେଲାଣି ଯେ, ତାହା କେବଳ ଏବେ ଏକ ସୂଚନା ଭାବେ ପ୍ରକାଶିତ । ନିଜର ଆଦ୍ୟ ଉଦ୍ଦେଶ୍ୟରୁ ବିଚ୍ୟୁତ ହେବାରେ ତାହା ଧର୍ମର ରୂପ ନିଏ । ଧର୍ମର ଆବରଣରେ ଆବୃତ । ଧର୍ମ ଅନୁଷ୍ଠାନ ହେଲା ଗୋଟାଏ ଆଚାର-ବିଚାରର ଆଧାର । ତାହା ଦିନେ ଏକ ନିର୍ଦ୍ଦିଷ୍ଟ ଅର୍ଥନୈତିକ ଉଦ୍ଦେଶ୍ୟ ସାଧନ କରୁଥିଲା । ସେହି ହେତୁ ତାହା ଜୀବନଧାରଣ

ଉପାୟର ସହାୟକ ହୋଇ ରହିଥିଲା । ତେଣୁ ମଣିଷ ଚେତନାରେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଗ୍ରହଣ କରିଥିଲା ।

ଉଦାହାଣ ସ୍ୱରୂପ, ଐତରେୟ ବ୍ରାହ୍ମଣ ଅନୁଯାୟୀ ଦିନେ ବୈଦିକ ଯଜ୍ଞ ଦେବତାଙ୍କ ଲାଗି ଅନ୍ନଲାଭର ଉପାୟ ଥିଲା । ତେଣୁ ବୈଦିକ ଜୀବନରେ ତାହା ଅନୁରୂପ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା । ତାର ସେଇ ଅର୍ଥନୈତିକ ଆବଶ୍ୟକତା ଲୋପ ପାଇବାରେ ତାର ବିଚ୍ୟୁତି ଘଟି ତାହା ଏକ ଧର୍ମ ଅନୁଷ୍ଠାନରେ ପରିଣତ ହେଲା । ଏପରିକି ତାହା ବିପରୀତ ରୂପରେ ପର୍ଯ୍ୟବେସିତ ହେଲା । କାରଣ, ଯାହା ଦିନେ ଜୀବନଯାତ୍ରାରେ ସହାୟକ ଥିଲା, ଏବେ ଜୀବନଯାତ୍ରା ପଥରେ ପ୍ରତିବନ୍ଧକ ରୂପେ ଦେଖାଦେଲା । ମିଥୁନ ପୂଜା କେବଳ ଅନାବଶ୍ୟକ ହେଲା ନାହିଁ, ନୀତିବୋଧ ଦୃଷ୍ଟିରୁ ଘୃଣ୍ୟ ସ୍ଥାନ ନେଲା । କିନ୍ତୁ ଧର୍ମ ଅନୁଷ୍ଠାନ ଛାପ ଥିବା ହେତୁ ତାହା ଧର୍ମ ବିଶ୍ୱାସର ପବିତ୍ରତାରେ ଆବୃତ ହେଲା । ତାର ଯଥାର୍ଥତା ନେଇ ପ୍ରଶ୍ନ, ଧର୍ମ-ବହିର୍ଭୂତ ବୋଲି ବିଚାର କରାଯାଏ । କାରଣ ତାହା ତନ୍ତ୍ର-ଧର୍ମର ବିରୁଦ୍ଧତା ବୋଲି ଧରାଯାଏ ।

ପରବର୍ତ୍ତୀ କାଳରେ ତନ୍ତ୍ର ଉପରେ ବିଭିନ୍ନ ଧର୍ମର ଛାପ ପଡିଛି । ତେଣୁ ବୌଦ୍ଧ, ଶୈବ, ଶାକ୍ତ ଆଦି ତନ୍ତ୍ରଗୁଡିକ ଦେଖା ଦେଇଛନ୍ତି । ଉପରର ସେଇ ଛାପକୁ ପୋଛିଦେଲେ ମୂଳତଃ ସବୁ ତନ୍ତ୍ର ଗୋଟାଏ ଓ ସମାନ । ସେଗୁଡିକ ହିନ୍ଦୁ, ବୌଦ୍ଧ କିଛି ନୁହନ୍ତି । ହିନ୍ଦୁଧର୍ମ ଅନୁସାରେ ପୂଜା, ମୋକ୍ଷପ୍ରାପ୍ତି, ବ୍ରହ୍ମଜ୍ଞାନ, ନାନା ଦେବଦେବୀ ଆଦି ତନ୍ତ୍ରରେ ପ୍ରବେଶ କରିଛନ୍ତି । ସେହିପରି ବୌଦ୍ଧଧର୍ମ ଅନୁସାରେ ନିର୍ବାଣ, ବଜ୍ରସତ୍ତ୍ୱ, ପ୍ରଜ୍ଞା-ପାରମିତ ଓ ମାଧ୍ୟମିକ ଆଦି ଦାର୍ଶନିକ ଧାରଣା ଆସିଛି । ସେହିପରି ଜଗନ୍ନାଥ କ୍ଷେତ୍ରରେ ତାଙ୍କର ନିଜସ୍ୱ ସାମ୍ୟର ଧାରଣା ତନ୍ତ୍ରର ମାଧ୍ୟମରେ ପ୍ରକାଶ ପାଇଛି ।

ତନ୍ତ୍ର ନିଜେ ଯେପରି ଜାତି, ଧର୍ମ, ବର୍ଣ୍ଣଭେଦର ଊର୍ଦ୍ଧ୍ୱରେ, ତାର ସ୍ପର୍ଶରେ ଜଗନ୍ନାଥ ସେହିପରି ଜାତି, ଧର୍ମ, ବର୍ଣ୍ଣକୁ ଦଳି ନିଜର ସାମ୍ୟର ଶକ୍ତି ଆହରଣ କରନ୍ତି । କାରଣ, ଦୁହେଁ ସମାନ ସାମାଜିକ ଭିତ୍ତିରୁ ଉଦ୍ଭବ । ଆଜି ତାଙ୍କର ଅତୀତର ସେହି ଉତ୍ପାଦନ-ଭିତ୍ତି ସର୍ବତ୍ର ବିଲୁପ୍ତ, ତାହା ସହିତ ବିସ୍ମୃତି ଲଭିଛି ତନ୍ତ୍ର ଓ ଜଗନ୍ନାଥଙ୍କର ସେହି ଅବିଚ୍ଛେଦ୍ୟ ସମ୍ପର୍କର ଇତିହାସ । ସେଥି ସହିତ ଲୁକ୍‌କାୟିତ ସେହି ସମ୍ପର୍କର ବାସ୍ତବ ମହତ୍ତ୍ୱ । କିନ୍ତୁ ଏବର ତନ୍ତସାଧନା ସହିତ ସେଇ ଆଦିମ ତତ୍ତ୍ୱର କୌଣସି ସମ୍ପର୍କ ନାହିଁ ।

ଏ ବିଷୟଟିକୁ ଶ୍ରୀ ଦେବୀପ୍ରସାଦ ଚଟ୍ଟୋପାଧ୍ୟାୟ ତାଙ୍କର ପ୍ରସିଦ୍ଧ ଗ୍ରନ୍ଥ 'ଲୋକାୟତ'ରେ ବୈଜ୍ଞାନିକ ବସ୍ତୁବାଦୀ ଦୃଷ୍ଟିକୋଣରୁ ବିସ୍ତୃତ ଭାବେ ଆଲୋଚନା କରିଛନ୍ତି । ସେ ଇତିହାସ, ଶାସ୍ତ୍ର, ପୁରାଣ, ଦର୍ଶନ, ଶାସ୍ତ୍ରନୀତି, ସମାଜବିଜ୍ଞାନ ଆଦିର ତଥ୍ୟ ଓ ତତ୍ତ୍ୱ ସହିତ ଏବେ ପୃଥିବୀର ବିଭିନ୍ନ କୋଣରେ ରହିଥିବା ଆଦିମ ଲୋକଙ୍କର

ଆଚାର-ବ୍ୟବହାର ଓ ବାସ୍ତବ ଜୀବନର ଦୃଷ୍ଟାନ୍ତ ଦ୍ୱାରା ତାଙ୍କର ମତକୁ ପ୍ରତିପାଦନ କରି କହନ୍ତି, ''ଆମର ଯୁକ୍ତି ଅନୁସାରେ କୃଷିବିଦ୍ୟା ନାରୀମାନଙ୍କର ଆବିଷ୍କାର । ତେଣୁ ପ୍ରାଥମିକ ପର୍ଯ୍ୟାୟରେ କୃଷିବିଦ୍ୟାର କେନ୍ଦ୍ରିକ ସମାଜ ନାରୀ-ପ୍ରଧାନ । ସେଇ ପର୍ଯ୍ୟାୟରେ କୃଷିବିଦ୍ୟାର ଅପରିହାର୍ଯ୍ୟ ଅଂଶ ହେଲା — ଜାଦୁ ଅନୁଷ୍ଠାନ, ତାର ମୂଳକଥା ହେଲା ନାରୀ ପ୍ରଜନନ ଶକ୍ତି ସାହାଯ୍ୟରେ ପ୍ରକୃତିର ଫଳପ୍ରସୂତାକୁ ଆୟତ୍ତରେ ଆଣିବାର ଚେଷ୍ଟା । ଖୋଜିଲେ ସେଇ ଜାଦୁ ଅନୁଷ୍ଠାନ ମଧ୍ୟରେ ହିଁ ତନ୍ତ୍ର ସାଧନାର ଉତ୍ସ ମିଳିଥାଏ । ପରବର୍ତ୍ତୀ କାଳରେ ଆମର ଉତ୍ପାଦନ କୌଶଳ ବାଧାପ୍ରାପ୍ତ ହୋଇ ଅଟକିଯାଇଛି । ଫଳରେ ଦେଶର ଆଚାର, ଅନୁଷ୍ଠାନ ଧ୍ୟାନଧାରଣା କ୍ଷେତ୍ରରୁ ସେଇ ପ୍ରାଥମିକ ପର୍ଯ୍ୟାୟର ସ୍ମାରକୀଗୁଡ଼ିକ ବିଲୁପ୍ତ ହୋଇନାହିଁ । ଯଦିଚ ସେଇ ସ୍ମାରକୀଗୁଡ଼ିକ ମଧ୍ୟରେ ଉକ୍ତ ଆଚାର ଅନୁଷ୍ଠାନ ଓ ଧ୍ୟାନ ଧାରଣାର ତାତ୍ପର୍ଯ୍ୟ ଅନିବାର୍ଯ୍ୟଭାବେ ବିପରୀତରେ ପର୍ଯ୍ୟବସିତ ହୋଇଛି । ସେଇ କାରଣରୁ ଆମ ଦେଶରେ ଏତେଦିନ ତନ୍ତ୍ର ସାଧନାରେ ଏପରି ବ୍ୟାପକ ଓ ଗଭୀର ପ୍ରଭାବ । ଅବଶ୍ୟ ସେଇ ସାଧନା ଉପରେ ହିନ୍ଦୁ, ବୌଦ୍ଧ ଧର୍ମର ନାନା ବିଶ୍ୱାସ ପ୍ରକ୍ଷିପ୍ତ ହୋଇଛି । ଆପାତ ଦୃଷ୍ଟିରୁ ମନେ ହୋଇପାରେ ଯେ ତନ୍ତ୍ର ସାଧନା ଦ୍ୱିବିଧ । ହିନ୍ଦୁ ଆଉ ବୌଦ୍ଧ....... ଏଇ ବିଷୟଗୁଡ଼ିକ ଉପରେ ଦୃଷ୍ଟି ଆବଦ୍ଧ ରଖିଲେ ତନ୍ତ୍ର ସାଧନାର ସ୍ୱରୂପ ଚିହ୍ନାଯିବ ନାହିଁ ।'' (୧)

### ତନ୍ତ୍ରର ଦର୍ଶନ

ତନ୍ତ୍ରର ଗୁରୁତ୍ୱପୂର୍ଣ୍ଣ ବିଷୟ ହେଲା, ତାହା ଭିତରେ ନିହିତ ଦର୍ଶନର ଧାରଣା । ସେଇଟି ହେଉଛି, ପୂରାପୂରି ଲୋକାୟତ ବା ବସ୍ତୁବାଦୀ ଚିନ୍ତାଧାରା । ଲୋକାୟତ ହେଲା 'ଲୋକେଷୁ ଆୟତ', — ଯାହା ଲୋକଙ୍କ ମଧ୍ୟରେ ପରିବ୍ୟାପ୍ତ, ଲୋକଙ୍କର ଦର୍ଶନ — ଇହଲୋକର ଦର୍ଶନ । ତାହା କେବଳ ଦୃଶ୍ୟମାନ ଜଗତକୁ ସ୍ୱୀକାର କରେ । ଆତ୍ମା, ଈଶ୍ୱର ଓ ପରକାଳ ଆଦି ମାନେ ନାହିଁ । ତାହାହେଲା ଦେହାତ୍ମବାଦ । ଦେହହିଁ ହେଲା ସର୍ବଶ୍ରେଷ୍ଠ, ପରମସତ୍ୟ । ଆଉ ସେଇ ଦେହାତ୍ମବାଦ ହେଉଛି ତନ୍ତ୍ରର ପ୍ରାଣ, ତାର ସାଧନାର ପଦ୍ଧତି । ଦେହତତ୍ତ୍ୱକୁ ଛାଡି ତନ୍ତ୍ର ସାଧନା ନାହିଁ। ତନ୍ତ୍ର ମତରେ ଦେହଟା ହେଲା ବ୍ରହ୍ମାଣ୍ଡ — ପିଣ୍ଡହିଁ ବ୍ରହ୍ମାଣ୍ଡ, ବ୍ରହ୍ମାଣ୍ଡହିଁ ପିଣ୍ଡ । ତେଣୁ ଦେହକୁ ବୁଝିଲେ ବ୍ରହ୍ମାଣ୍ଡକୁ ବୁଝିବା ଦେହର ରହସ୍ୟ ଉଦ୍‌ଘାଟନରେ ବ୍ରହ୍ମାଣ୍ଡର ରହସ୍ୟ ଉଦ୍‌ଘାଟନ ସମ୍ଭବ ।

ପିଣ୍ଡ ବ୍ରହ୍ମାଣ୍ଡର ସେଇ ଐକ୍ୟକୁ ଯଦି କେହି ଅତି ସରଳ, ପ୍ରାଞ୍ଜଳ ଓ ପରିପୂର୍ଣ୍ଣ ଭାବେ ପ୍ରକାଶ କରିଥାଏ, ସେ ହେଉଛନ୍ତି କବିଗୁରୁ ରବୀନ୍ଦ୍ରନାଥ । ତାହା ପୂରାପୂରି ଭୌତିକ ଦୃଷ୍ଟିକୋଣ । ''ଆମର ଭୌତିକ ଦେହ ସ୍ୱତନ୍ତ୍ର ପଦାର୍ଥ ନୁହେଁ । ପୃଥିବୀର ମାଟି, ପାଣି, ପବନ, ଉତ୍ତାପ, ପୃଥିବୀର ଓଜନ, ଆୟତନ ଓ ଗତି ସମସ୍ତଙ୍କ ସହିତ ସଂଯୋଜନରେ ଏହି ଶରୀର । କୌଣସି ସ୍ୱତନ୍ତ୍ର ଦେହ ନାହିଁ । କୁହାଯାଇପାରେ ପୃଥିବୀ ମଣିଷର ପରମ ଦେହ । ସାଧନା ଦ୍ୱାରା, ଯୋଗ ବିସ୍ତାର

ଦ୍ୱାରା, ସେଇ ବିରାଟକୁ ମଣିଷ ନିଜର କରି ଗଢୁଛି । ବଡ ଦେହ ମଧ୍ୟରେ ଛୋଟ ଦେହକୁ ପ୍ରସାରିତ କରୁଛି । ବିଶ୍ୱ ଭୌତିକ ଶକ୍ତିକୁ ଆୟତ୍ତକରି ପରିମିତ ଦେହର କର୍ମଶକ୍ତିକୁ ପରିପୂର୍ଣ୍ଣ କରୁଛି । ଚକ୍ଷୁକୁ ସ୍ୱଷ୍ଟତର କରି ଦେଖୁଛି । ସୁଦୂର ମହୀୟାନକୁ ଓ ନିକଟସ୍ଥ କନୀୟାନଙ୍କୁ ଦୁଇ ହାତରେ ପାଉଛି ବହୁ ସହସ୍ର ହାତର ଶକ୍ତି । ଦେଶର ଦୂରତ୍ୱ ସଂକୀର୍ଣ୍ଣ ହୋଇ ଆମ ଦେହର ନିକଟବର୍ତ୍ତୀ ହେଉଛି । ଦିନେ ସମସ୍ତ ଭୌତିକ ଶକ୍ତି ଦେହଶକ୍ତିର ପରିଶିଷ୍ଟ ହୋଇଉଠିବ — ମଣିଷର ଏଇ ସଂକଳ୍ପ ।'' (୧)

ପିଣ୍ଡ ବ୍ରହ୍ମାଣ୍ଡର ଏଇ ଐକ୍ୟ, ତନ୍ତ୍ର, ଯୋଗ ଓ ବିଜ୍ଞାନ — ସମସ୍ତଙ୍କର ମୂଳଭିତ୍ତି । ତନ୍ତ୍ରର ଆଦ୍ୟରୂପରେ ଆଧ୍ୟାତ୍ମିକତାର ପ୍ରଶ୍ନ ନାହିଁ, — ତାର ପରବର୍ତ୍ତୀ ବିକାଶରେ ଯାହା ହେଉନା କାହିଁକି । ସେଇ ତନ୍ତ୍ରଧାରଣା ଯେ ଗୀତାର ବହୁପୂର୍ବର, ଏଥିରେ ସନ୍ଦେହ ନାହିଁ । ଗୀତାର ଷୋଡଶ ଅଧ୍ୟାୟ ଅଷ୍ଟମ ଶ୍ଳୋକରେ ଅସୁର ମତ ବୋଲି ଯାହାକୁ ଆକ୍ରମଣ କରାଯାଇଛି ତାହା ତନ୍ତ୍ରଧାରଣାଠାରୁ ଭିନ୍ନ ନୁହେଁ । ତାହା କହେ, ଜଗତ ଈଶ୍ୱର-ସୃଷ୍ଟି ନୁହେଁ । ତାହା ସ୍ତ୍ରୀ -ପୁରୁଷର ମିଳନରୁ ଜାତ । ତାର ସେହି ପ୍ରାଚୀନତା ଯୋଗୁ ତନ୍ତ୍ରରେ ଜାତିଭେଦର ପ୍ରଶ୍ନ ନାହିଁ ।

ହିନ୍ଦୁ ବୌଦ୍ଧ ଶାକ୍ତ ଆଦି ଯେଉଁ ତନ୍ତ୍ରରେ ଯାହା ଉଲ୍ଲେଖ ଥାଉ ନା କାହିଁକି, ତାହା ମୂଳତଃ ସେଇ ଆଦିମ ବିଶ୍ୱାସର ବିଭିନ୍ନ ରୂପ ମାତ୍ର । ସେଇ ବିଶ୍ୱାସର ଅନ୍ତର୍ନିହିତ ବିଷୟ ହେଉଛି, କୃଷିକେନ୍ଦ୍ରିକ ଜାଦୁ ବିଶ୍ୱାସ, ଯାହା ଆମେ ଆଲୋଚନା କରିଛେ । ଯାହାର ମୂଳ ହେଲା ସନ୍ତାନ ଉତ୍ପାଦନ ଓ ଶସ୍ୟ ଉତ୍ପାଦନ ଏକ ସମଜାତୀୟ ପ୍ରକ୍ରିୟା । ମାନବୀୟ ଓ ପ୍ରାକୃତିକ ପ୍ରକ୍ରିୟା ମଧ୍ୟରେ କୌଣସି ଗୁଣାତ୍ମକ ଫରକ ନାହିଁ । ତେଣୁ ପ୍ରଜନନ ସାହାଯ୍ୟରେ ପ୍ରାକୃତିକ ଶସ୍ୟ ଉତ୍ପାଦନକୁ ପ୍ରଭାବିତ ଓ ଆୟତ୍ତ କରିବାର କଳ୍ପନା କରାଯାଇଥାଏ ।

ସେହି ବିଶ୍ୱାସର ପରିଣତି ହେଉଛି ଦେହତତ୍ତ୍ୱ ଓ କୃଷିତତ୍ତ୍ୱ, ଏକ ସୂତ୍ରରେ ବନ୍ଧା । ଅର୍ଥାତ୍ ବିଶ୍ୱ ସୃଷ୍ଟି ଓ ଜୀବ ସୃଷ୍ଟି ଗୋଟାଏ ପଦ୍ଧତି । ତେଣୁ ତନ୍ତ୍ରମତରେ ପୁରୁଷ ପ୍ରକୃତିର ମୈଥୁନରୁ ଏ ବିଶ୍ୱର ଉତ୍ପତ୍ତି । ଏ ହେଲା ସେଇ ଆଦିମ କୃଷି କେନ୍ଦ୍ରିକ ଜାଦୁ ବିଶ୍ୱାସ ଅର୍ଥନୀତିର ଅନୁରୂପ ପ୍ରତିଫଳନ । ତାହା କେବଳ ଭାରତ ନୁହେଁ, ଚୀନ ଓ ମେସୋପଟାମିଆ (ଆଧୁନିକ ଇରାକ, ଲେବାନନ) ଭଳି ପ୍ରାଚୀନ ସଭ୍ୟତାର ଆଦ୍ୟ ପର୍ଯ୍ୟାୟରେ ଦେଖାଯାଏ, କାରଣ ତାହା ସେହିପରି କୃଷିଭିତ୍ତିକ ସଭ୍ୟତା ଭିତରୁ ଉଦ୍ଭବ ।

ତନ୍ତ୍ରର ମୂଳତତ୍ତ୍ୱ ଓ ସାଂଖ୍ୟ ଦର୍ଶନର ମୂଳମତ, ଏ ଦୁହେଁ ପ୍ରାୟ ପୂରାପୂରି ମିଳିଯାଆନ୍ତି । ତାହା ଜଣାଇଦିଏ ଦୁହିଙ୍କର ଭିତ୍ତି ସମାନ । ଦୁହେଁ ସମାନ ମୂଳରୁ

(୧) ଚଲାକାୟତ ଗ୍ର । ଦେବୀ । ପ୍ରସାଦ ଚଟ୍ଟୋପାଧ୍ୟାୟ, - ପୃ ୫୪ । -୫୯
(୨) 'ରିବୀନ୍ଦ୍ର ଗ୍ରନ୍ଥାବଳୀ' ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର, ଦଶମଖଣ୍ଡେ-ପୃଷ୍ଠା୬୩୭

ଜାତ । କୁହାଯାଏ ଆଦ୍ୟ ସାଂଖ୍ୟର ଜନ୍ମ ହେଉଛି ଖ୍ରୀ: ୮୦୦ ପୂର୍ବରୁ । ତାହା କାରିକାଭାବେ ଲିପିବଦ୍ଧ ହୋଇଛି ବହୁବର୍ଷ ପରେ ୫୦୦ ଖ୍ରୀଷ୍ଟାବ୍ଦରେ, ଅର୍ଥାତ୍ ୧୩୦୦ ବର୍ଷ ବ୍ୟବଧାନରେ । ସାଂଖ୍ୟ ଯେପରି ସର୍ବପ୍ରାଚୀନ, ସେହିପରି ସର୍ବ ସମ୍ମାନିତ । ଉପନିଷଦରେ ସାଂଖ୍ୟକୁ ପୂର୍ବପକ୍ଷ ବା ପ୍ରତିପକ୍ଷ ଭାବେ ବର୍ଣ୍ଣନା କରାଯାଇଛି । ଗୀତା ଶାସ୍ତ୍ର ପୁରାଣ ନାହିଁ, ଯେଉଁଠି କି ସାଂଖ୍ୟର ଉଲ୍ଲେଖ ନାହିଁ । ସେ ସବୁର ଉଦ୍ଦେଶ୍ୟ ସାଂଖ୍ୟମତକୁ ଦର୍ଶାଇବା, ବା ତାର ସମର୍ଥନରେ ନୁହେଁ— ସେ ସବୁର ଏକମାତ୍ର ଉଦ୍ଦେଶ୍ୟ ସାଂଖ୍ୟମତକୁ ଖଣ୍ଡନ କରିବା । ତାକୁ ବିବୃତ କରି ତା ଉପରେ ନିଜ ମତର ପ୍ରଲେପ ଲେପନ କରିବା । ତାହା ହୋଇଛି, ସାଂଖ୍ୟର ବସ୍ତୁବାଦୀ ମତକୁ ନିଜର ଭାବଦ୍ୱାରା ଢ଼ାଙ୍କିବାର ଉଦ୍ୟମ । କୌଟିଲ୍ୟ ତାଙ୍କ ଅର୍ଥଶାସ୍ତ୍ରରେ ସାଂଖ୍ୟ, ଯୋଗ ଓ ଲୋକାୟତ ଏହି ତିନୋଟି ଦର୍ଶନର ଉଲ୍ଲେଖ କରିଛନ୍ତି । ଏହିମାନେ ହେଲେ ଆଦି, ମୂଳ ବା ମୁଖ୍ୟ ଦର୍ଶନ । ସେଇ ଆଦିମ ଭାବର ପ୍ରତୀକ ଭାବରେ ଜଗନ୍ନାଥ ସେଇ ବସ୍ତୁବାଦୀ ଦର୍ଶନ ସହିତ ଘନିଷ୍ଠଭାବେ ସମ୍ପୃକ୍ତ । ତାର ଏକ ଅଂଶ । ଯେତେ ଚାହିଁଲେ ବି ତାଙ୍କୁ ସେଠାରୁ ବିଚ୍ଛିନ୍ନ କରାଯାଇ ନ ପାରେ । ଜଗନ୍ନାଥ ସେଇ ମତ ସହିତ ଅବିଚ୍ଛେଦ୍ୟ । ସେଥିରୁ ତାଙ୍କୁ ଛେଦନ କରିବାର ଚେଷ୍ଟା, ଜଗନ୍ନାଥ-ଭାବର ହତ୍ୟା ସହିତ ସମାନ । ସାଂଖ୍ୟ ମତରେ

''ସ୍ତ୍ରୀ ପୁରଷ ସଂଯୋଗାତ୍ ସୁତୋତ୍ପତ୍ତିସ୍ତଥା
ପ୍ରଧାନ ପୁରୁଷ ସଂଯୋଗାତ୍ ସର୍ଗସ୍ୟୋପ୍ତତ୍ତିଃ ।''

ଯଥା ସ୍ତ୍ରୀ-ପୁରୁଷ ସଂଯୋଗରେ ସନ୍ତାନ ଉତ୍ପତ୍ତି ହୁଏ, ତଥା — 'ପ୍ରଧାନ' (ପ୍ରକୃତି) ପୁରୁଷ ସଂଯୋଗରେ ସୃଷ୍ଟିର ଉତ୍ପତ୍ତି ହୁଏ । ଏ ହେଲା ସାଂଖ୍ୟ କାରିକାରେ ଗୌତମଙ୍କ ଭାଷ୍ୟ । ଅତଏବ ପ୍ରକୃତି ଆଉ ପୁରୁଷ, ଏ ଦୁହିଁଙ୍କର ମିଳନରେ ସୃଷ୍ଟି । ଏହି ମତ ଅନ୍ୟ ଭାବରେ ତନ୍ତ୍ର ଦ୍ୱାରା ସ୍ୱୀକୃତ । ସାଂଖ୍ୟରେ ଯେପରି ପ୍ରକୃତି ପ୍ରଧାନ, ତନ୍ତ୍ରରେ ସେହିପରି ପ୍ରଧାନ ହେଉଛି ନାରୀ ।

ସାଂଖ୍ୟଙ୍କ ପ୍ରକୃତି ଓ ପୁରୁଷ ମଧ୍ୟରେ ପ୍ରକୃତି ପ୍ରଧାନ । ପୁରୁଷ ନିହାତି ଅପ୍ରଧାନ, ଉଦାସୀନ । ତାର ଭୂମିକା ଅତି ଗୌଣ । ସେହି ହେତୁ ସାଂଖ୍ୟ ହେଲା ପ୍ରଧାନ କାରଣବାଦ । ଅର୍ଥାତ୍ ପ୍ରକୃତି ହେଲା ଆଦ୍ୟ କାରଣ । ସେହି ପ୍ରକୃତି ଆଉ କିଛି ନୁହେଁ, ତାହାହିଁ ଆଦ୍ୟ ବସ୍ତୁ । ସେହିପରି ସାଂଖ୍ୟଙ୍କ ପୁରୁଷ ବୋଇଲେ ତାହା କୌଣସି ଆତ୍ମା, ବ୍ରହ୍ମ ବା ଅଲୌକିକ ଶକ୍ତିକୁ ବୁଝାଏ ନାହିଁ । ପୁରୁଷ ବୋଇଲେ ସାଧାରଣ ଦେହଧାରୀ ମଣିଷକୁ ବୁଝାଇଥାଏ । ତେଣୁ ତାହା ବୈଦିକ ଚିନ୍ତାଧାରାର ସମ୍ପୂର୍ଣ୍ଣ ବିରୋଧୀ । ପରବର୍ତ୍ତୀ କାଳରେ ସାଂଖ୍ୟଙ୍କ ପୁରୁଷ ପ୍ରତି ଅବଶ୍ୟ ଆତ୍ମା, ପରମାତ୍ମା, ଈଶ୍ୱର ଆଦି ବୈଦିକଭାବ ଆରୋପ କରାଯାଇଛି । କିନ୍ତୁ ସାଂଖ୍ୟ ପୂରାପୂରି ଅବୈଦିକ ଐତିହ୍ୟକୁ ପ୍ରକାଶ କରେ — ଯାହାକୁ କହନ୍ତି ଜଡବାଦ ।

ସାଂଖ୍ୟ କେବଳ ନାରୀପ୍ରଧାନ ନୁହେଁ, ତାହା ସେହି ନାରୀ-ପ୍ରଧାନ ସମାଜରୁ ଉଦ୍ଭବ । ସେଠି ପୁରୁଷ କେବଳ ଅପ୍ରଧାନ ନୁହେଁ, ଉଦାସୀନ ନିଶ୍ଚେଷ୍ଟ ଓ ନିଷ୍କ୍ରିୟ । କେତେକ କହନ୍ତି, ତାହା ଏପରି ଏକ ସାମାଜରୁ ଉଦ୍ଭବ, ଯେଉଁଠି ସନ୍ତାନ ଉତ୍ପାଦନରେ ପୁରୁଷ ଭୂମିକା ଅଜଣା । ମଣିଷ ଜାଣେ ନାହିଁ ଗର୍ଭଧାରଣର କାରଣ । ସେହିପରି ଏକ ଆଦିମ ଅବସ୍ଥାରେ ସାଂଖ୍ୟମତର ଜନ୍ମ ହେଉଛି ପୁରୁଷ ଅପ୍ରଧାନ ହେବାର ମୁଖ୍ୟ କାରଣ । ଏବେ ବି କେତେଠି ଅନୁନ୍ନତ ସାମାଜରେ ପିତାକୁ 'ବାପ'(ବପନକାରୀ) ବୋଲି କୁହାଯାଏ । ମାତୃଶାସିତ ସମାଜରେ ପିତା ସହିତ ସନ୍ତାନର ଆଦୌ କୌଣସି ସମ୍ପର୍କ ନାହିଁ । ମାତାର ନାମ, ବଂଶ, ଗୋତ୍ର ଦ୍ୱାରା ସନ୍ତାନ ପରିଚିତ । ଯଦିଓ ପୁରୁଷ ରହିଛି, ସେ କିନ୍ତୁ ଅପ୍ରଧାନ । ଯେମିତିପରି ସବୁ ସୃଷ୍ଟିର ମୂଳ, ଆଦି କାରଣ ହେଉଛି ପ୍ରକୃତି । ସେହିହିଁ ଉତ୍ପତ୍ତିର ମୂଳ । ସେଠି ପୁରୁଷ ବା ଦେହଧାରୀ ମଣିଷ ରହିଛି, କିନ୍ତୁ ଅପ୍ରଧାନ ଭାବେ ।

ଅତଏବ ବୈଦିକ ଓ ଅବୈଦିକ ଏ ଦୁଇ ଧାରାର ପ୍ରବାହ ବହିବାରେ ଲାଗିଛି । ସେ ଦୁଇଙ୍କର ମୂଳ ଉତ୍ସ ବେଶ୍ ପରିଷ୍କାର । ତାକୁ ଆର୍ଯ୍ୟ-ଅନାର୍ଯ୍ୟ, ଦେବ-ଅସୁର ବା ଆର୍ଯ୍ୟ-ଦ୍ରାବିଡ ଯେଉଁ ଆଖ୍ୟା ଦିଅନା କାହିଁକି, ତାହା ଦୁଇ ଅର୍ଥନୀତି— ପଶୁପାଳନ ଓ କୃଷିକାର୍ଯ୍ୟ ଭିତରୁ ଉଦ୍ଭବ । ଦୁଇ ଅର୍ଥନୀତିର ଦୁଇ କିସମର ଫଳ । ପଶୁପାଳନ ଅର୍ଥନୀତି-ପୁରୁଷପ୍ରଧାନ ଓ ବୈଦିକ । କୃଷି ଅର୍ଥନୀତି— ନାରୀ-ପ୍ରଧାନ ଓ ଅବୈଦିକ । ଦୁଇ ଅର୍ଥନୀତିର ସେଇ ପାର୍ଥକ୍ୟ କେବଳ ପୁରୁଷ ପ୍ରାଧାନ୍ୟ ଓ ନାରୀ-ପ୍ରାଧାନ୍ୟକୁ ପ୍ରକାଶ କରେ ନାହିଁ, ସେଥି ସହିତ ତାହା ବୈଦିକ ଓ ଅବୈଦିକ, ବୈଦିକ ଓ ତାନ୍ତ୍ରିକ, ଭାବବାଦ ଓ ବସ୍ତୁବାଦର ମଧ୍ୟ ସୂଚନା ଦେଇଥାଏ । ପରବର୍ତ୍ତୀ କାଳରେ ସାଂଖ୍ୟର ଉଦାସୀନ ପୁରୁଷକୁ ଆତ୍ମାର ଆଖ୍ୟା ଦେଇ ତାକୁ ଆଧାତ୍ମିକ ରୂପ ଦେବାରେ, ଭାବବାଦରେ ପରିଣତ କରିବାର ବହୁ ଉଦ୍ୟମ ହୋଇଛି । କିନ୍ତୁ ସାଂଖ୍ୟ ମତରେ ଅଚେତନ ପ୍ରକୃତି ଯେତେବେଳେ ଜଗତର ସବୁ ସୃଷ୍ଟିର କାରଣ, ସେତେବେଳେ ମଣିଷର ଇଛା, ଚିନ୍ତା, ଚେତନା ଆଦି ଆତ୍ମଜନିତ ନ ହୋଇ ଅନାତ୍ମଜନିତ ହେବା ସୁନିଶ୍ଚିତ । ଅର୍ଥାତ୍ ଯେ କୌଣସି ଅଲୌକିକ ଶକ୍ତିର ସୃଷ୍ଟି ନ ହୋଇ ଜଡପ୍ରକୃତିର ସୃଷ୍ଟି ହୁଏ । ତା ମାନେ, ଜଡରୁ ହୁଏ ଚୈତନ୍ୟର ଉତ୍ପତ୍ତି । ଚୈତନ୍ୟ ବିଶ୍ୱସୃଷ୍ଟିର କାରଣ ନୁହେଁ । ସୃଷ୍ଟିର ଏହି କାରଣ ହୋଇଛି ବସ୍ତୁବାଦ ଓ ଭାବବାଦ ଭିତରେ ମୌଳିକ ଦ୍ୱନ୍ଦ୍ୱ । ସାଂଖ୍ୟ ସହିତ ବେଦାନ୍ତ ଉପନିଷଦର ବିରୋଧିତା ଠିକ୍ ଏଇଠି ।

ତନ୍ତ୍ର ଓ ଯୋଗ, ଏ ଦୁହେଁ ଏକ ବୃକ୍ଷର ଦୁଇ ଶାଖା ଭଳି । ତନ୍ତ୍ରର ମୂଳନୀତି ହୋଇଛି ପଞ୍ଚ 'ମ' କାର, ଅର୍ଥାତ୍ ସକଳ ପ୍ରବୃତ୍ତିର ପୂରଣ । ଯୋଗର ମୂଳନୀତି ହେଲା ସକଳ ସଂସାର ପରିହାର, — ଚରମ ନିବୃତ୍ତି । ଏହି ପ୍ରବୃତ୍ତି ଓ ନିବୃତ୍ତି, ଏ

ଦୁହେଁ ପୁଣି ଗୋଟାଏ ମୂଳର ଫଳ ହେବେ କିପରି ? ତାର କାରଣ, ସେ ଉଭୟଙ୍କର ମୂଳ ହେଲା ଦେହ । ଏଇଠି ନିବୃତ୍ତି ଓ ପ୍ରବୃତ୍ତି ରହିଛି । ତାହା ସେହି କୃଷିକୈନ୍ଦ୍ରିକ ଜାଦୁ ବିଶ୍ୱାସ ସମାଜରୁ ଉଦ୍ଭବ । ତେଣୁ ତନ୍ତ୍ରସାଧନା ଓ ଯୋଗସାଧନା ଆଦ୍ୟ ଅବସ୍ଥାରେ ପୃଥକ ନୁହେଁ । କ୍ରମୋନ୍ନତି ଭିତରେ ଆଦିମ ସମାଜର ସେଇ ତାନ୍ତ୍ରିକ ଧାରଣା ସାଂଖ୍ୟ ଦର୍ଶନରେ ପ୍ରକାଶ ପାଇଲାବେଳେ, ତାର ଅନୁଷ୍ଠାନ ଦିଗଟା ପ୍ରକାଶ ପାଇଛି  ଯୋଗ ସାଧନାରେ । ସେଇ ଆଦିମ ସମାଜର ଜାଦୁ, ଯେଉଁଠି ନକଲ ଉପରେ ଜୋରଦେଇ ବାସ୍ତବତାକୁ ଆୟତ୍ତ କରିବାର କଳ୍ପନା କରାଯାଏ, ଏଇଠି ସେଇ କଳ୍ପନା ଅନୁସାରେ ଦେହର ସାଧନା — ଦେହକୁ ଆୟତ୍ତ କରିବା ଜରିଆରେ ଜଗତକୁ ଆୟତ୍ତ କରିବା, ଅର୍ଥାତ୍ ତଦ୍ୱାରା ନିଜେ ଗୋଟାଏ ଅଲୌକିକ ଶକ୍ତି ହେବାର କଳ୍ପନା କରାଯାଇଥାଏ । ସେହି ଅଲୌକିକ କାର୍ଯ୍ୟ ଲାଗି ତନ୍ତ୍ରର ସେଇ ସାଧନା । ପରବର୍ତ୍ତୀ କାଳରେ ଯୋଗ ଉପରେ  ବୈଦିକ ବିଶ୍ୱାସ ଓ ଭାବବାଦୀ ଧାରଣାର ପ୍ରଭାବ ପଡିଛି । ସେମାନେ ତାକୁ ନିଜର ଭାବ ଅନୁଯାୟୀ ରଞ୍ଜିତ କରିବାର ଚେଷ୍ଟା କରିଛନ୍ତି । ଯିଏ ଯେତେ କହନ୍ତୁନା କାହିଁକି ଯୋଗର ମୂଳ ହେଲା ଦେହତତ୍ତ୍ୱ । ସେଠି ଈଶ୍ୱର କି ଆତ୍ମାର ପ୍ରଶ୍ନ ନାହିଁ, ତାର  ମୂଳ ବିଶ୍ୱାସ ହେଉଛି ବିଭିନ୍ନ ପ୍ରକାର ଆସନ ଦ୍ୱାରା ଶାରୀରିକ ପ୍ରକ୍ରିୟା ସାହାଯ୍ୟରେ ଚିତ୍ତକୁ ସଂଯମ ଓ ଶକ୍ତିଶାଳୀ କରିବା ଯେପରି ସମ୍ଭବ ହେବ । ଚିତ୍ତର ଏକାଗ୍ରତା ଆଦି କେତେକ ଆଭ୍ୟନ୍ତରୀଣ ପ୍ରକ୍ରିୟା ସାହାଯ୍ୟରେ ଶାରୀରିକ ଶକ୍ତିକୁ ଉପଲବ୍ଧି କରିବା, ନିଜ ମଧ୍ୟରେ ସେଇ ଶକ୍ତିକୁ ଉଦ୍‌ବୁଦ୍ଧ କରିପାରିଲେ ପ୍ରକୃତିକୁ ମଧ୍ୟ ଆୟତ୍ତରେ ଅଣାଯାଇ ପାରେ ।

ମଣିଷର ଏ ସମସ୍ତ ବିଶ୍ୱାସର ମୂଳ ହେଉଛି ସେତେବେଳର ଦୟନୀୟ ଅବସ୍ଥା । ସେତେବେଳେ ମଣିଷ ସବୁ ଦିଗରୁ ଅସହାୟ । ପ୍ରକୃତିକୁ ବୁଝିବା, ଜାଣିବା, ତାକୁ ନିଜର ସେବାରେ ଲଗାଇବାରେ ତାର ସର୍ବନିମ୍ନ ଜ୍ଞାନର ଅଭାବ । ସେଇ ଜ୍ଞାନର ଦୈନ୍ୟ ଓ ଅଜ୍ଞତାକୁ ନେଇ ସେ ଠିଆ ହୋଇଛି ପ୍ରକୃତି ବିରୋଧରେ ସଂଗ୍ରାମରେ । ନିଜର ଦୀନତା ଭିତରେ ସେ ତାର ଦୈନ୍ୟର ମୁକାବିଲା କରିଛି ।  ସେ କ୍ଷେତ୍ରରେ ବାସ୍ତବ ଜ୍ଞାନର ଅଭାବରେ କଳ୍ପନାହିଁ ହୋଇଛି ତାର ଏକମାତ୍ର ସମ୍ବଳ ଆଉ ଶକ୍ତି । ତାହା ପ୍ରକାଶ ପାଇଛି ଯାଦୁର ବିଶ୍ୱାସରେ, ଜାଦୁର ଅନୁଷ୍ଠାନ ଦ୍ୱାରା । ଏହା ନିଶ୍ଚିତ ଯେ, ଜାଦୁ ବାହାର ଜଗତ ଉପରେ କୌଣସି ପ୍ରଭାବ ପକାଏ ନାହିଁ । ତାକୁ କସ୍ମିନ୍‌କାଳେ ପରିବର୍ତ୍ତନ କରି ନ ପାରେ । କିନ୍ତୁ, ତାହା ପ୍ରଭାବ ପକାଏ ମଣିଷର ମନ ଉପରେ । ସେ ଭାବେ ସେହି ଜାଦୁ ଅନୁଷ୍ଠାନ ଦ୍ୱାରା, ସିଏ ପ୍ରକୃତିକୁ ପରିବର୍ତ୍ତନ କରିଛି । ତେଣୁ ସେ  ଅଧିକ ଆତ୍ମବିଶ୍ୱାସ ନେଇ ଜୋର୍‌ରେ ଲାଗିପଡେ । ତାହା ପରୋକ୍ଷରେ ତାକୁ ଅନୁପ୍ରାଣିତ ଓ ତାର କାର୍ଯ୍ୟକୁ ଅଧିକ ଜୋର୍‌ରେ କରେ । ଫଳରେ

ପରିବର୍ତ୍ତନ ଅଧିକ ତ୍ୱରାନ୍ୱିତ ହୁଏ ।। ତାହା କାର୍ଯ୍ୟକୁ ସଫଳ କରିବାରେ ତାର ସହାୟକ ହୋଇଥାଏ ।

ବର୍ତ୍ତମାନର ଦୃଷ୍ଟିରେ ସେଇ ଜାଦୁବିଶ୍ୱାସ ଯେ ପୂରାପୂରି ଗୋଟାଏ କୁସଂସ୍କାର, ଏଥିରେ ସନ୍ଦେହ ନାହିଁ । କିନ୍ତୁ ତାହା ପ୍ରକୃତିକୁ ଚିହ୍ନିବାରେ ତାର ସେଇ ଦୈନ୍ୟର ଅନୁରୂପ । ତଦ୍ୱାରା ମଣିଷ ନିଜ ଭିତରେ ତାର ମାନବିକ ଶକ୍ତିକୁ ଜାଗ୍ରତ କରେ । ତାହା ସେ କରେ ଧ୍ୟାନ, ଉପବାସ, ଉପାସନା ଓ ମାଦକ ଦ୍ରବ୍ୟାଦି ସେବନ ଦ୍ୱାରା । ଶ୍ରୀ ଚଟ୍ଟୋପାଧ୍ୟାୟଙ୍କ ଭାଷାରେ " ମାନବୀୟ ଜନନାଙ୍ଗ ସାହାଯ୍ୟରେ ପ୍ରକୃତିର ପ୍ରଜନନ ଶକ୍ତିକୁ ଜାଗ୍ରତ କରିବାର ପ୍ରଚେଷ୍ଟା ଯେପରି କାଳ୍ପନିକ, ସେହିପରି କାଳ୍ପନିକ ହେଉଛି ସେହି ପ୍ରଚେଷ୍ଟାକୁ ଦେବତା ପ୍ରାଣରେ କରୁଣା ଜାଗ୍ରତ କରିବା ବା ତଦ୍ୱାରା ତାଙ୍କୁ ଭୟଭୀତ ବୋଲି ବ୍ୟାଖ୍ୟା କରିବାର ଆୟୋଜନ କରିବା ।"

ମଣିଷର ଏହିସବୁ ଧାରଣା ବିଭିନ୍ନ ରୂପରେ ପ୍ରକାଶ ପାଇଛି । ତନ୍ତ୍ର ପିଣ୍ଡକୁ, ଜାଦୁ ଦେହକୁ, ଯୋଗ ଶରୀରକୁ, ସାଂଖ୍ୟ ପ୍ରକୃତିକୁ, ଲୋକାୟତ ପଦାର୍ଥକୁ ମୂଳକରି ଧରିଛନ୍ତି । ବର୍ତ୍ତମାନ ଅର୍ଥରେ ସେମାନେ ହେଲେ ବସ୍ତୁ । ସେଥିରେ ଆଧ୍ୟାତ୍ମିକତାର ତିଳେ ହେଲେ ପ୍ରଶ୍ନ ନାହିଁ । ସେସବୁ ଗୋଟିଏ ମୂଳରୁ ଜାତ । ତାହା ମାତୃପ୍ରଧାନ ବା ପିତୃପ୍ରଧାନ ହେଉ, ଆର୍ଯ୍ୟ ବା ଅନାର୍ଯ୍ୟ ହେଉ, ପଶୁପାଳନ ଅର୍ଥନୀତି ବା କୃଷିକୈନ୍ଦ୍ରିକ ଅର୍ଥନୀତି ହେଉ, ସେସବୁ ପ୍ରାକ୍- ଶେଣୀ ବିଭକ୍ତ ସାମାଜର ଫଳ । ସେହିହେତୁ ତାହା ସବୁ ପ୍ରାକ୍-ଆଧ୍ୟାତ୍ମିକବାଦୀ । ପ୍ରାକ୍-ଆଧ୍ୟାତ୍ମିକବାଦୀ ଦୃଷ୍ଟିରୁ ତାହା ବସ୍ତୁବାଦୀ । ପ୍ରାକ୍-ଶ୍ରେଣୀ ବିଭକ୍ତ ସମାଜ ଦୃଷ୍ଟିରୁ ତାହା ଆଦିମ ସାମ୍ୟବାଦୀ । ଜଗନ୍ନାଥଙ୍କ ଧାରଣା କେବଳ ସେଇଭଳି ସାମାଜର ଅବଦାନ ହୋଇପାରେ । ତାହା ଛଡା ଅନ୍ୟ କୌଣସି ସମାଜରେ ଜଗନ୍ନାଥ ଜନ୍ମ ଲଭି ନ ପାରନ୍ତି । ତାର ନିଦର୍ଶନ ଜଗନ୍ନାଥଙ୍କ ଚୂଲୀଠାରୁ ତାଙ୍କର ସିଂହାସନ ଓ ଶଯ୍ୟା ପର୍ଯ୍ୟନ୍ତ ସର୍ବତ୍ର ଯେପରି ପ୍ରତିଫଳିତ, ସେହିପରି ପ୍ରତିପାଦିତ ତାଙ୍କର ସାମ୍ୟ ଓ ମୈତ୍ରୀ ଓ ପ୍ରୀତିର ଭାବ ଓ ଆଦର୍ଶରେ ।



# ନବମ ପର୍ବ

## ଜଗନ୍ନାଥ ଧାରଣାର ଆଧାର ଓ ଉପାଦାନ

ଲୋକାୟତିକ ଐତିହ୍ୟ ଓ ବୈଦିକ୍ ଧାରଣା, ଏ ଦୁହିଁଙ୍କ ମିଳନରେ ଜଗନ୍ନାଥଙ୍କ ପ୍ରକାଶ । ଅଥଚ, ସେ ଦୁହେଁ ପରସ୍ପରର ବିରୋଧୀ, ସେମାନଙ୍କ ମଧ୍ୟରେ ଅହି-ନକୁଳ ସମ୍ପର୍କ । ବୈଦିକ ଭାବର ପୁରୋଧାଗଣ ଲୋକାୟତକୁ ଘୃଣା ଚକ୍ଷୁରେ ଦେଖନ୍ତି । ଲୋକାୟତିକମାନେ ବୈଦିକଙ୍କୁ ବିଦ୍ରୁପ କରିଥାଆନ୍ତି । ସେମାଙ୍କର ଉକ୍ତ ବିରୋଧିତା କେବଳ ପରସ୍ପର ପ୍ରତି ନିନ୍ଦା ଭର୍ତ୍ସନାରେ ସୀମିତ ନୁହେଁ । ତାହା ଏପରିକି ଶାରୀରିକ ନିଧନ ଆଡ଼କୁ ଗତି କରିଛି ।

ପ୍ରଥମତଃ, କୌଣସି ଚିନ୍ତାଧାରା ସ୍ୱର୍ଗରୁ ଖସିନାହିଁ । ବୈଦିକ ଧାରଣା ମଧ୍ୟ ନୁହେଁ । ଯଦି ତ ବେଦକୁ ଅପୌରୁଷେୟ କହି ତାକୁ ସେହି ପରି ପ୍ରଚାର କରିବା ଚେଷ୍ଟା ହୁଏ, ଅନ୍ଧବିଶ୍ୱାସକୁ ଉତ୍ସାହିତ କରାଯାଇଥାଏ, କିନ୍ତୁ ସବୁ ଧ୍ୟାନ ଧାରଣା ଭଳି ବୈଦିକ ଧାରଣା ମଧ୍ୟ ଏହି ପୃଥିବୀରୁ ଜାତ । ସବୁ ଜିନିଷଭଳି ତାର ଚେର ମଧ୍ୟ ଏଇ ସମାଜରେ ରହିଛି । ତେଣୁ ତାର ଜନ୍ମ ଓ ଇତିହାସ ରହିଛି । ବ୍ୟକ୍ତିଗତ ସମ୍ପତ୍ତିର ମୂଳଚେର ଯେପରି ସାଧାରଣ ସମ୍ପତ୍ତିର ସୃଷ୍ଟିରୁ ଉଦ୍ଭବ, ଏବର ଅସାମ୍ୟ ଯେପରି ପୂର୍ବର ମୂଳ ସାମ୍ୟ ଭିତରୁ ଜାତ, ସେହିପରି ବୈଦିକ ଭାବଧାରାର ଉତ୍ପତ୍ତିର ଉତ୍ସ ହେଉଛି ସେଇ ଲୋକାୟତିକ ଐତିହ୍ୟ ଓ ବୈଦିକ ସମାଜର ଆଗର ଧ୍ୟାନ ଧାରଣା । ସମାଜର କ୍ରମବିକାଶ ଭିତରେ ବ୍ୟକ୍ତିଗତ ସମ୍ପତ୍ତି ଯେପରି ସାଧାରଣ କୋଠ ସମ୍ପତ୍ତିକୁ ଗ୍ରାସ କରିଛି, ସାମାଜିକ ଅସମ୍ୟର କ୍ରମାଗତ ବିସ୍ତାରରେ ଯେପରି ସାମ୍ୟର ବିଲୋପ ଘଟିଛି, ସେହିପରି ତା ସହତ ବିକାରଗ୍ରସ୍ତ ଓ ପରିତ୍ୟକ୍ତ ହୋଇଛି ଲୋକାୟତିକ ଧାରଣା । ଆଜି ଯେପରି ଚତୁର୍ଦ୍ଦିଗରେ ବ୍ୟକ୍ତିଗତ ସମ୍ପତ୍ତିର ରାଜତ୍ୱ ସ୍ୱୀକୃତ, ତାହା ଅତି ପବିତ୍ର ଅଲଙ୍ଘନୀୟଭାବେ ଗୃହୀତ ଏବଂ ସେହି ସମାଜ ଯେପରି ବିଧି-ନିର୍ଦ୍ଦିଷ୍ଟ ଓ ପ୍ରାକୃତିକ ବୋଲି ପ୍ରଚାରିତ ଓ ସୁରକ୍ଷିତ, ସେହିପରି ବୈଦିକ

ଧାରଣାର ଆଧିପତ୍ୟ । ତାହା ସେହି ସାମାଜିକ ବ୍ୟବସ୍ଥାକୁ ସନାତନଭାବେ ଘୋଷଣା କରିବା ସହିତ ମଣିଷ ମନକୁ କେବଳ ଅଧିକାର କରିନାହିଁ, ତାକୁ ଭାରତର ଏକମାତ୍ର ଦର୍ଶନ ବୋଲି ପ୍ରଚାରୀ କରେ । କୁହାଯାଏ, ସେଇ ବୈଦିକ ଭାବର ଅଭ୍ୟୁଥାନ, ବିଶ୍ୱପ୍ରତି ତାର ଏକ ମହାନ ଆଧାତ୍ମିକ ଅବଦାନ । ତାହାହିଁ ତାର ବିଶିଷ୍ଟ ପ୍ରଜ୍ଞା ଓ ପ୍ରତିଭା । ତାର ସେଇ ଖାସ ଅବଦାନ ହେଉଛି ମଣିଷର ଆଦ୍ୟ ଓ ଅନ୍ତିମ ଜୀବନର ସଙ୍କେତ ।

ପିଲା ବାପାର ଚିହ୍ନ ଧାରଣ କରେ । ଯିଏ ଯେଉଁଥିରୁ ଜାତ, ସିଏ ନିଜେ ଯେତେ ଉତ୍କୃଷ୍ଟ, ନିକୃଷ୍ଟ ବା ବିକୃତ ହେଲେ ବି ତାର ପୂର୍ବପୁରୁଷର ଚିହ୍ନ ନିଶ୍ଚୟ ବହନ କରିବ । ଲୋକାୟତ ଐତିହ୍ୟକୁ ଯେତେ ଘୃଣ୍ୟ କହି ପରିହାର କଲେ ବି, ବୈଦିକ ସାହିତ୍ୟରେ ତାର ଅଶେଷ ଚିହ୍ନ ରହିଛି । ସେଇସବୁ ଧାରଣ ବୈଦିକ ଚିନ୍ତାର କଠୋର ନିର୍ଦ୍ଦେଶକୁ ଭେଦ କରି ଆପଣାକୁ ପ୍ରକାଶ କରେ । ତାର ଅର୍ଥ, ଗୋଟାଏ କାଳରେ ଯାହା ବେଶ୍ ସୁପ୍ରତିଷ୍ଠିତ ଥିଲା, ପରବର୍ତ୍ତୀ ଯୁଗରେ ତାହା ପରିତ୍ୟକ୍ତ । ଯାହା ଦିନେ ଆଦର ଗୌରବର ବିଷୟ ହୋଇ ରହିଥିଲା, ଏବେ ସେସବୁ ନିନ୍ଦନୀୟ । ସେମିତି ଏବେ ଯାହାଙ୍କୁ ଘୃଣ୍ୟ ଓ ଅସ୍ପୃଶ୍ୟ ମନେ କରାଯାଏ, ଦିନେ ସେଇମାନେ ଥିଲେ ସମାଜରେ ସମସ୍ତଙ୍କ ସହ ସମାନ ପଦମର୍ଯ୍ୟାଦାର ଅଧିକାରୀ । ଲୋକ ଯେତେ ଘୃଣ୍ୟ ଅସ୍ପୃଶ୍ୟ ହେଲେ ବି ଜଗନ୍ନାଥଙ୍କ ଆଗରେ କିନ୍ତୁ ସବୁବେଳେ ସେମିତି ସମାନ । ତାଙ୍କ ପାଖରେ ସମସ୍ତଙ୍କର ପ୍ରବେଶର ସମାନ ଅଧିକାର । ଜଗନ୍ନାଥଙ୍କ ପ୍ରସାଦ କ୍ଷେତ୍ରରେ ସେଇ ଅଧିକାର ଏବେ ବି ଅଲଘଂନୀୟ ।

ମୋଟ ଉପରେ ତିନୋଟି ବିଷୟକୁ ନେଇ ଏବର ଜଗନ୍ନାଥ ଧର୍ମ ଗଢା, —ଲୋକାୟତିକ, ଆଧାତ୍ମିକ ଓ ହିନ୍ଦୁ ଧର୍ମ ବିଶ୍ୱାସ । ଲୋକାୟତିକ ଓ ଭୌତିକତା, ଏ ଦୁହେଁ ପରସ୍ପର ସହିତ ସଂଶ୍ଳିଷ୍ଟ ଓ ସମାନ । ଆଧାତ୍ମିକ ଓ ଭାବବାଦ, ଏ ଦୁହେଁ ପରସ୍ପର ସହିତ ସଂଶ୍ଳିଷ୍ଟ ଓ ସମାନ । ସେମିତି ଧର୍ମ ଓ ଅନ୍ଧବିଶ୍ୱାସ, ଏ ଦୁହେଁ ପରସ୍ପର ସହିତ ସଂଶ୍ଳିଷ୍ଟ ଓ ସମାନ । ଆଗ ଦୁଇଟି ହେଉଛି ଧ୍ୟାନ, ଧାରଣା ଓ ଦର୍ଶନ । ଶେଷଟି ହେଉଛି ଧର୍ମ ଦିଗରୁ ଜଗନ୍ନାଥଙ୍କ ପ୍ରତି ଏକମାତ୍ର ବିଶ୍ୱାସ । ସବୁ ଧର୍ମ ବିଶ୍ୱାସର ମୂଳ ହେଲା ଅନ୍ଧବିଶ୍ୱାସ, ଅଜିଜ୍ଞାସିତ ଧାରଣା ଓ କୁସଂସ୍କାର । ସାମାଜିକ ଦିଗରୁ ବିଚାର କଲେ, ପ୍ରଥମଟି ପ୍ରାକ୍-ଶ୍ରେଣୀବିଭକ୍ତ ସମାଜର ପ୍ରତିଫଳନ ହେଲାବେଳେ ପଛ ଦୁଇଟି ଶ୍ରେଣୀବିଭକ୍ତ ସମାଜର ଫଳ, ଅର୍ଥାତ୍ ପୂର୍ବର ସାମ୍ୟ ସମାଜର ପତନ ଉପରେ ଗଠିତ । ପଦେ କଥାରେ କହିଲେ, — ସାମ୍ୟ ବିନା ଜଗନ୍ନାଥଙ୍କ ଜନ୍ମ ନାହିଁ । ବୈଦିକ ବିଚାର ବିନା ଜଗନ୍ନାଥଙ୍କ ବିକାଶ ବା ମାହାତ୍ମ୍ୟ ନାହିଁ । ଧର୍ମବିଶ୍ୱାସ ବିନା ଜଗନ୍ନାଥଙ୍କ ଚଳଣି ବା କାଟତି ନାହିଁ ।

ତେଣୁ ଧ୍ୟାନ, ଧାରଣା ଓ ଦର୍ଶନ ଦିଗରୁ ଲୋକାୟତ ଓ ଭୌତିକତା ଭିତରେ ଜଗନ୍ନାଥଙ୍କ ଜନ୍ମ । ଆଧାତ୍ମିକତା, ଭାବବାଦ ଓ ଧର୍ମବିଶ୍ୱାସ ଭିତରେ ତାଙ୍କର ବିକାଶ ଓ ବିସ୍ତାର । ଅର୍ଥାତ୍ ଜନ୍ମକାଳୁ ମଣିଷ ଓ ତାର ସମାଜ ଯେଉଁ ପ୍ରକ୍ରିୟା ଭିତରେ

ଗତି କରିଛି, ସେତେବେଳେ ଯେଉଁ ସୋପାନ ଅତିକ୍ରମ କରିଛି, ଠିକ୍ ତାହା ସହିତ ସମ ପଦକ୍ଷେପରେ ଚାଲିଛନ୍ତି ଜଗନ୍ନାଥ ।

ଏହାର ଏକମାତ୍ର ଅର୍ଥ ମାନବ ଜୀବନ ସହିତ ଜଗନ୍ନାଥ ଜଡିତ । ତାଙ୍କୁ ସେଥିରୁ ବିଚ୍ଛିନ୍ନ କରିହେବ ନାହିଁ । ଭାରତରେ ମୁଖ୍ୟତଃ ତିନୋଟି ବୈଦିକ, ବୌଦ୍ଧ, ଜଗନ୍ନାଥ ଭାବ ବା ଧାରଣା ପ୍ରକାଶ ପାଇଛି । ବୈଦିକ ଧାରଣାର ଆଦିମ କେନ୍ଦ୍ର ହେଉଛି ଆର୍ଯ୍ୟାବର୍ତ୍ତ । ବର୍ତ୍ତମାନର ମଥୁରା ତାର ଆଖପାଖ ଅଞ୍ଚଳ (ଉତ୍ତର ପ୍ରଦେଶ)। ବୌଦ୍ଧମତର କେନ୍ଦ୍ରସ୍ଥଳ ହେଲା ମଗଧ ବା ବର୍ତ୍ତମାନର ବିହାର । ଜଗନ୍ନାଥଙ୍କ ସ୍ଥଳୀ ହେଉଛି କଳିଙ୍ଗ — ଆଜିର ଓଡିଶା । ପ୍ରଥମଟିରେ ବୈଦିକ ଆର୍ଯ୍ୟଙ୍କର ଆଧିପତ୍ୟ । ଯେଉଁଠି ପୂର୍ବର ଟ୍ରାଇବାଲ ଉପଜାତି ଓ ଗଣଗୋଷ୍ଠୀ ସମାଜର ବିଲୋପ ଘଟିଛି । ଦ୍ୱିତୀୟଟିରେ ବିଲୋପର ସେଇ ପ୍ରକ୍ରିୟା ଲାଗିରହିଛି । ତାର ଘୋର ଦୁଃଖଦାୟକ ପରିଣତିରେ ବୁଦ୍ଧ ମ୍ରିୟମାଣ ହୋଇ ସଂସାର ତ୍ୟାଗ କରିଛନ୍ତି, ସେଇ ଦୁଃଖର କାରଣ ବିନାଶ ଖୋଜିବା ଲାଗି । ଆଉ ସେତେବେଳେ କଳିଙ୍ଗରେ ରହିଛି ସେହି ଟ୍ରାଇବ ବା ଗଣଗୋଷ୍ଠୀ ସମାଜର ଅଖଣ୍ଡ ଆଧିପତ୍ୟ । ଉପରେ ଯେତେ ପରିବର୍ତ୍ତନ ଘଟିଲେ ବି ସେଇ (ଟ୍ରାଇବାଲ୍) ସାମାଜିକ ବ୍ୟବସ୍ଥା ସେହିପରି ଅପରିବର୍ତ୍ତିତ ହୋଇରହିଛି । ସେଇ ତିନି ଅଞ୍ଚଳର ସାମାଜିକ ଅବସ୍ଥା, ତାର ଧ୍ୟାନ ଧାରଣାର ପ୍ରତିଫଳନ ସେଇ ତିନି ଧର୍ମ ଓ ତିନି ଦର୍ଶନରେ ପ୍ରତିଫଳିତ । ଗୋଟିକର ମର୍ମ୍ମ ହେଉଛି ଆତ୍ମା, ବ୍ରହ୍ମ, ମୋକ୍ଷ, ପୁନର୍ଜନ୍ମ ହେଲାବେଳେ ଦ୍ୱିତୀୟଟିର ହେଉଛି ଦୟା, କରୁଣା, ଅନୁକମ୍ପା ଆଉ ସକଳ ତୃଷ୍ଣା କାମନାର ପରିହାର । ଆଉ ଶେଷଟିର ମର୍ମ୍ମ ହେଉଛି ସାମ୍ୟ, ମୈତ୍ରୀ ଓ ପ୍ରୀତି । ଏ ସବୁକୁ ଯଥାକ୍ରମେ ବୈଦିକ, ବୌଦ୍ଧ ଓ ଲୋକାୟତ ମତଭାବେ ବର୍ଣ୍ଣନା କରାଯାଇପାରେ । ସ୍ଥୂଳ ଦୃଷ୍ଟିରୁ ବିଚାର କଲେ ଲୋକାୟତ ପିଣ୍ଡଭିତରେ ବୌଦ୍ଧକ (ଆତ୍ମାହୀନ) ଆତ୍ମା ଘେନି ବୈଦିକ ଆବରଣ ତଳେ ଏବର ଜଗନ୍ନାଥ ବିରାଜମାନ ।

ଏଥିପୂର୍ବରୁ ଜଗନ୍ନାଥ ଓ ବୁଦ୍ଧବାଦ, ଏ ଦୁହିଁଙ୍କ ସମ୍ପର୍କରେ କେତେକ ଆଲୋଚନା ହୋଇଛି । ଏବେ ଲୋକାୟତ ଓ ଆଧ୍ୟାତ୍ମିକତା, ଭୌତିକତା ଓ ଭାବବାଦ ପ୍ରତି ଦୃଷ୍ଟିଦେବାକୁ ହେବ । ଉକ୍ତ ଦୁଇ ଦୃଷ୍ଟିକୋଣର ତାତ୍ପର୍ଯ୍ୟ, ତାଙ୍କର ସମ୍ପର୍କ ଓ ଉଦ୍ଦେଶ୍ୟ ... ଲିଖିତ ଉପାଖ୍ୟାନରେ ହିଁ ପ୍ରକାଶ ପାଏ ।

ମହାଭାରତରେ ରହିଛି, ପାଣ୍ଡବମାନେ ଯୁଦ୍ଧରେ ବିଜୟୀ ହୋଇ ପୁର ପ୍ରବେଶ କାଳରେ ସହସ୍ର ସହସ୍ର ପୁରବାସୀ ତାଙ୍କ ଦର୍ଶନ ଲାଗି ସମବେତ ହେଲେ । ସହସ୍ର ସହସ୍ର ବ୍ରାହ୍ମଣ ଯୁଧିଷ୍ଠିରଙ୍କୁ ଆଶୀର୍ବାଦ କରିବାକୁ ଲାଗିଲେ । ସେଇ ସମସ୍ତ ବ୍ରାହ୍ମଣଙ୍କ ମଧ୍ୟରେ ଦୁର୍ଯ୍ୟୋଧନର ସଖା ଦୁରାତ୍ମା ଚାର୍ବାକ ରାକ୍ଷସ ଭିକ୍ଷୁକ ରୂପ ଧାରଣା କରି ରହିଥିଲା । ସେ ପାପାତ୍ମା ପାଣ୍ଡବମାନଙ୍କ ଅପକାର କରିବା ଇଚ୍ଛାରେ ଥିଲା । ବ୍ରାହ୍ମଣଗଣ ନିସ୍ତବ୍ଧ ରହିବାରେ, ସେ ନିର୍ଭୀକ ଚିତ୍ତରେ ଉଚ୍ଚ କଣ୍ଠରେ ଗର୍ବିତ ବାକ୍ୟରେ ଯୁଧିଷ୍ଠିରଙ୍କୁ ସମ୍ବୋଧନ କରି କହିଲା, ‘‘ମହାରାଜ ! ଏହି

ବ୍ରାହ୍ମଣଗଣ ଆପଣଙ୍କୁ ଜ୍ଞାତି - ହତ୍ୟାକାରୀ ଏକ କୁତ୍ସିତ ରାଜା ବୋଲି ଧିକ୍କାର ପ୍ରଦାନ କରନ୍ତି । ଏପରି ଜ୍ଞାତି ହରାଇ ଏବଂ ଗୁରୁଜନମାନଙ୍କ ବିନାଶ ସାଧନରେ ଆପଣଙ୍କର କି ଲାଭ ହେଲା ? ଏହିକ୍ଷଣି ଆପଣଙ୍କର ମୃତ୍ୟୁ ଶ୍ରେୟ ......'' ସେତେବେଳେ ଅନ୍ୟ ବ୍ରାହ୍ମଣଗଣ ଚାର୍ବାକଙ୍କ କଥାରେ ଅତିଶୟ କ୍ରୁଦ୍ଧ, ବ୍ୟଥିତ ଓ ଲଜ୍ଜିତ ହୋଇ ନୀରବତା ଅବଲମ୍ବନ କଲେ । ରାଜା ଯୁଧିଷ୍ଠିର ବ୍ରାହ୍ମଣମାନଙ୍କୁ ନୀରବ ହେବାର ଦେଖି କହିଲେ ''ମୁଁ ଅଚିରାତ୍ ପ୍ରାଣ ତ୍ୟାଗ କରିବି । ଆପଣମାନେ ମତେ ଧିକ୍କାର କରନ୍ତୁ ନାହିଁ .... ''ସେତେବେଳେ ବ୍ରାହ୍ମଣମାନେ ରାଜା ଯୁଧିଷ୍ଠିରଙ୍କୁ ସମ୍ବୋଧନ କରି କହିଲେ, ''ମହାରାଜ ! ଆମେ ଆପଣଙ୍କୁ ଧିକ୍କାର କରିନାହୁଁ । ଆପଣଙ୍କର ମଙ୍ଗଳ ହେଉ ।'' ବେଦବେତ୍ତା ବ୍ରାହ୍ମଣଗଣ ଏହିକଥା କହି, ଜ୍ଞାନ-ଚକ୍ଷୁଦ୍ୱାରା ଚାର୍ବାକଙ୍କୁ ଜ୍ଞାତ ହୋଇ ପୁନର୍ବାର ଧର୍ମରାଜଙ୍କୁ କହିଲେ, ''ମହାରାଜ, ଯେଉଁ ବ୍ୟକ୍ତି ଆପଣଙ୍କ ପ୍ରତି କଟୂକ୍ତି ପ୍ରୟୋଗ କଲା, ସେ ଦୁର୍ଯୋଧନଙ୍କ ପରମ ବନ୍ଧୁ, ଚାର୍ବାକ ନାମକ ରାକ୍ଷସ ।''

ଅନନ୍ତର ସେଇ ବ୍ରାହ୍ମଣଗଣ ଚାର୍ବାକଙ୍କ ପ୍ରତି ଅତି କ୍ରୁଦ୍ଧ ହୋଇ ଭର୍ତ୍ସନା କରି ହୁଙ୍କାର ଶବ୍ଦ ପ୍ରୟୋଗ କରିବାକୁ ଲାଗିଲେ । ସେଠି ଚାର୍ବାକ ସେଇ ମହାତ୍ମାମାନଙ୍କ କ୍ରୋଧାଗ୍ନିରେ ଦଗ୍ଧପ୍ରାୟ ହୋଇ ପାଦପ ଭଳି ତତ୍କ୍ଷଣାତ୍ ଭୂତଳେ ପତିତ ହେଲା । ରାଜା ଯୁଧିଷ୍ଠିର ବ୍ରାହ୍ମଣମାନଙ୍କୁ ଯଥୋଚିତ ସମ୍ମାନିତ କଲେ ।

ବ୍ରାହ୍ମଣମାନଙ୍କୁ ଦାନ, ଦକ୍ଷିଣା ଓ ମଧୁର ବାକ୍ୟଦ୍ୱାରା ରାଜା ଯୁଧିଷ୍ଠିର ସମ୍ମାନିତ କଲେ କାହିଁକି ? କାରଣ, ବ୍ରାହ୍ମଣମାନେ ତାଙ୍କୁ ରାଜା ହେବାରେ ତାଙ୍କର ଭାଇ ବନ୍ଧୁ ଜ୍ଞାତି ସ୍ୱଜନଙ୍କ ହତ୍ୟାକୁ ସମର୍ଥନ କଲେ, ଆଉ ସେଇ ହତ୍ୟାର ନିନ୍ଦା ଓ ପ୍ରତିବାଦ କରୁଥିବାରୁ ଚାର୍ବାକକୁ 'ଦଗ୍ଧ' କଲେ, ଅର୍ଥାତ୍ ପୋଡ଼ି ଧ୍ୱଂସ କରିଦେଲେ ।

ଏଠାରେ ଦୁଇ ନୀତି, ଦୁଇ ମତ ଓ ଦୁଇ ଦର୍ଶନ ବେଶ୍ ସ୍ପଷ୍ଟ ପ୍ରାଞ୍ଜଳ । ଗୋଟିଏ ହେଲା ପୂର୍ବର ଗଣଗୋଷ୍ଠୀ ସମାଜର ନୀତିବୋଧକୁ ରକ୍ଷା କରିବା, ଯେଉଁଠି ଜ୍ଞାତିହତ୍ୟା ନିଷେଧ ଓ କଳ୍ପନାତୀତ । ଯେହେତୁ ସମସ୍ତେ ଏକ ଜ୍ଞାତିର ଲୋକ, ପରସ୍ପରର ଭାଇ । ଅନ୍ୟଟି ହେଲା ରାଜା ହେବା ଲାଗି ସେଇ ନୀତିବୋଧକୁ ବଳିଦେବା । ତାକୁ ପରିହାର କରି ନିଜର ଜ୍ଞାତିଭାଇଙ୍କୁ ହତ୍ୟା କରିବା । ତାହାହିଁ ଅର୍ଜୁନଙ୍କୁ ଦ୍ୱନ୍ଦ୍ୱରେ ପକାଇଛି । ସମସ୍ତ ଗୀତା ହେଉଛି ସେଇ ଦ୍ୱନ୍ଦ୍ୱର ସମାଧାନ । ତାର ଏକମାତ୍ର ଉଦ୍ଦେଶ୍ୟ ହେଲା ରାଜ୍ୟଲାଭ । ନିଜର ଧନ, କ୍ଷମତା, ପ୍ରଭୁତ୍ୱର ବିସ୍ତାର ।

ସେଇ ଦୁଇମତ ଅତି ପରିଷ୍କାର ଏବଂ ପରସ୍ପର- ବିରୋଧୀ । ସେଇ ଦୁଇ ଦୃଷ୍ଟି ଓ ଦର୍ଶନ ମଧ୍ୟରେ ସବୁ ଦ୍ୱନ୍ଦ୍ୱର ପ୍ରକାଶ । ଗୋଟିଏ ପକ୍ଷରେ ରାଜା, ବ୍ରାହ୍ମଣ । ଅନ୍ୟ ପକ୍ଷରେ ଚାର୍ବାକ୍ ରାକ୍ଷସ । ପ୍ରଥମଟିର ସମର୍ଥକ, ପ୍ରବର୍ତ୍ତକ ଓ ସଙ୍ଗଠକ ହେଲେ ଦେବତା, ବ୍ରାହ୍ମଣ ଓ ସ୍ୱୟଂ ଭଗବାନ—ଶ୍ରୀକୃଷ୍ଣ ଏବଂ ତାହା ସବୁ ଶାସ୍ତ୍ର ପୁରାଣଦ୍ୱାରା

ପ୍ରଚାରିତ । ଶେଷରେ ତାହାହିଁ ହୋଇଛି ପବିତ୍ର ଆଧ୍ୟାତ୍ମିକତା । ଅନ୍ୟ ପକ୍ଷରେ ରହିଲେ ଚାର୍ବାକ୍ ରାକ୍ଷସ । ତାର ସମର୍ଥକ ହେଲେ ସେଇ ଜ୍ଞାତି ସମାଜର ଧାରଣା, — ଲୋକାୟତ ଓ ବାର୍ହସ୍ପତ୍ୟ ଆଦି ଦର୍ଶନ । ତାହା ଜ୍ଞାତିହତ୍ୟାର ବିରୋଧୀ, ପୂର୍ବର ଗଣସମାଜର ପକ୍ଷପାତୀ, ଅର୍ଥାତ୍ ସାମ୍ୟ, ମୈତ୍ରୀ ଓ ପ୍ରୀତିର ବାହକ — ସାଧାରଣ ଲୋକଙ୍କର ଦର୍ଶନ ।

ସେହି ଲୋକାୟତ ହେଲା ନିପଟ ଭୌତିକତା, ଆଧ୍ୟାତ୍ମିକତା ଦାବୀ କରୁଥିବା ଲୋକଙ୍କ ଦ୍ୱାରା ଘୃଣିତ ଓ ପରିତ୍ୟକ୍ତ । ବ୍ରାହ୍ମଣମାନେ କେବଳ ଚାର୍ବାକ୍‌ଙ୍କୁ ପୋଡି ଧ୍ୱଂସ କରିନାହାନ୍ତି , ତାଙ୍କର ସେଇ ଦର୍ଶନ ଓ ଶାସ୍ତ୍ରକୁ ମଧ୍ୟ ପୋଡ଼ି ଜାଳି ଦେଇଛନ୍ତି । ସେଇ ମତକୁ ପ୍ରତ୍ୟାଖ୍ୟାନ ବା ଖଣ୍ଡନ କରିବା ଭିତରେ ଯେଉଁ କେତେକ ବାକ୍ୟ ଉଲ୍ଲେଖ କରିଛନ୍ତି, ତାର ରହିଥିବା ଅବଶେଷରୁ ସେଇ ଦର୍ଶନର ସତ୍ୟତା ପ୍ରକାଶ ପାଏ ।

ଯାହା ଦେଖାଯାଏ, (ରାକ୍ଷସ) ଅସୁରମାନେ ହେଲେ ଗୋଟିଏ ଟ୍ରାଇବ, ବିଭିନ୍ନ ଉପଜାତି ଗୋଷ୍ଠୀ । ଆର୍ଯ୍ୟମାନଙ୍କ ସହିତ ପ୍ରଥମରୁ ତାଙ୍କର ସଂଘର୍ଷ ଲାଗିରହିଛି । ସେହି ଅସୁରଙ୍କ ବିରୋଧରେ ଇନ୍ଦ୍ର କ୍ରମାଗତ ଅଭିଯାନ ଚଳାଇଛନ୍ତି। ତାଙ୍କର ପୂର ଓ ନଗର ଆଦି ଧ୍ୱଂସ କରିଛନ୍ତି । ସେସବୁର ଉଲ୍ଲେଖ ଋଗ୍‌ବେଦର ଷଷ୍ଠ ମଣ୍ଡଳରେ ରହିଛି । (୬.୨୭.୫ ଓ ୬.୫୧.୫) ଏପରିକି ଏବେ ବି ଛୋଟନାଗପୁରରେ ସେଇ ଅସୁର ଟ୍ରାଇବଙ୍କର ଅବଶେଷ ଥିବା ଜଣାଯାଏ । ଛାନ୍ଦୋଗ୍ୟ ଉପନିଷଦରେ ଇନ୍ଦ୍ର ଓ ଅସୁର ବିରୋଚନଙ୍କ ଉପାଖ୍ୟାନରେ ଚାର୍ବକ୍ ମତକୁ ଆସୁର ମତ ବୋଲି କୁହାଯାଇଛି । ମୈତ୍ରାୟଣୀୟ ଉପନିଷଦ କହେ ଯେ ଦେବଗୁରୁ ବୃହସ୍ପତି ଶୁକ୍ରଙ୍କ ରୂପ ଧାରଣ କରି ଇନ୍ଦ୍ରଙ୍କ ନିରାପତ୍ତା ଲାଗି ଅସୁରଙ୍କ ମଧ୍ୟରେ ଭ୍ରମାତ୍ମକ ଲୋକାୟତ ମତ ପ୍ରଚାର କରିଥିଲେ । ଅଥଚ ଚାର୍ବାକ୍ ଲୋକାୟତର ଅନ୍ୟ ଏକ ନାମ ହେଲା ବାର୍ହସ୍ପତ୍ୟ — ଯାହା ବୃହସ୍ପତିଙ୍କ ଦ୍ୱାରା ସୃଷ୍ଟି । ତେଣୁ ବୃହସ୍ପତି ଯାହା କହନ୍ତି, ତାକୁ ସେ ଛଳନା କରି କହନ୍ତି ବୋଲି କୁହାଯାଏ । ଗୀତାର ଷୋଳ ଅଧ୍ୟାୟରେ ୬,୭,୮ ଶ୍ଳୋକରେ ତାହା ଉଲ୍ଲେଖ ରହିଛି । ଅସୁର ମତକୁ ନାସ୍ତିକ, ଭୋଗାସକ୍ତ ଓ କାମହେତୁକ କହି ତା ବିରୋଧରେ ବିଷୋଦ୍‌ଗାର କରାଯାଇଛି ।

ସେଇ ଅସୁର ସଭ୍ୟତା ବିଷୟ ପଣ୍ଡିତ ନୀଳକଣ୍ଠ ତାଙ୍କ ''ଓଡ଼ିଆ ସାହିତ୍ୟର କ୍ରମ ପରିଣାମ''ରେ ଉଲ୍ଲେଖ କରି କହନ୍ତି ଯେ, ତାହା ଦିନେ ସିନ୍ଧୁଠାରୁ ଗଙ୍ଗାନଦୀ ଯାଏ ବ୍ୟାପିଥିଲା । ସେଇ ଅସୁରମାନେ ହେଲେ ଶବର, ନିଷାଦ ଆଦି ବିଭିନ୍ନ ଗୋଷ୍ଠୀର ଲୋକ । ''ଆର୍ଯ୍ୟ ସଭ୍ୟତା ଅସୁର ସାମ୍ରାଜ୍ୟକୁ ଧ୍ୱଂସ କରିଛି । ତାଙ୍କର ପାଶୁପତ ମହାଦେବଙ୍କୁ ନିଜର କରିଛି । ତାଙ୍କ କଳା ଓ କାଳୀଙ୍କୁ ନିଜର ହର ପପାର୍ବତୀଙ୍କ ସଙ୍ଗେ ମିଶାଇଛି । ''ଶୂନ୍ୟ ବା ନୈରାତ୍ମ୍ୟରେ ଆତ୍ମରୂପ ନିତ୍ୟବସ୍ତୁକୁ ସମାଧାନରେ ମିଶାଇ 'ନିର୍ବାଣ'କୁ ମୁକ୍ତି ବା ମୋକ୍ଷରେ ପରିଣତ କରି ସେଇ

ପୀଠରେ ବିଶାଳ ଦର୍ଶନ ଓ ତତ୍ତ୍ୱଦୃଷ୍ଟି ଫିଟାଇଛି । ସମାଜରେ ମଧ୍ୟ 'ବର୍ଣ୍ଣାଶ୍ରମ' ଓ ଜାତିଭେଦକୁ ପ୍ରତିଷ୍ଠା କରି ......-ମୈତ୍ରୀ ଧର୍ମକୁ ଆର୍ଯ୍ୟସଭ୍ୟତା ପୂରାପୂରି ହଜମ କରି ଯେପରି ନିଜର କରିପାରିଛି, ତାହା କୌଣସି ବିଜେତା ସମାଜ ପକ୍ଷରେ ସମ୍ଭବ ବୋଲି କଳ୍ପନା କରି ହେଉନାହିଁ ।'' (୧୦୯ ପୃଷ୍ଠା) ''ଏମାନଙ୍କ ସୃଷ୍ଟିର କଳ୍ପନାକୁ କାମହେତୁକ ବୋଲି ଲକ୍ଷ୍ୟ କରାଯାଇଛି ।'' ଏଥିରୁ ଜଣାଯାଏ, ସେଇ ଅସୁରଙ୍କ ଭିତରେ ସୃଷ୍ଟି ନେଇ କୌଣସି ଆତ୍ମା, ବ୍ରହ୍ମ ବା ପୁରୁଷର ପ୍ରଶ୍ନ ନାହିଁ, ଆଉ ସେଇମାନଙ୍କ ସଭ୍ୟତାର ପୀଠ ଉପରେ ଗଢ଼ିଉଠିଛି ''ବିଶାଳ ଦର୍ଶନ ଓ ତତ୍ତ୍ୱ ଦୃଷ୍ଟି ।'' ଶେଷରେ ସେଇମାନଙ୍କ ''ମୈତ୍ରୀ ଧର୍ମକୁ ହଜମ କରି ପ୍ରତିଷ୍ଠା ହୋଇଛି ବର୍ଣ୍ଣାଶ୍ରମ ଓ ଜାତିଭେଦ ବ୍ୟବସ୍ଥା''ଅଥଚ ସେଇ ମୈତ୍ରୀ ହେଉଛି ଜଗନ୍ନାଥ ଭାବର ମୂଳମନ୍ତ୍ର — ଯାହାକି ସାମ୍ୟ ସମାଜ ବିନା ଅସମ୍ଭବ ।

ଯେତେ ବୈଦିକ ପଣ୍ଡିତ, ଆଧ୍ୟାତ୍ମିକ ଧର୍ମ, ଭାବବାଦୀ ଦର୍ଶନ ଏବଂ ତାକୁ ଆଶ୍ରା କରିଥିବା ଶାସକ ଶ୍ରେଣୀ, — ଏ ସମସ୍ତେ ଯୁଗ ଯୁଗ ଧରି ଚାର୍ବାକ ଲୋକାୟତ ମତ ବିରୁଦ୍ଧରେ ଅସ୍ତ୍ରଧାରଣ କରି ଆସଛନ୍ତି । ସେ ସଂଗ୍ରାମରେ କେବେ ବିରତି ନାହିଁ କି ସାଲିସ ନାହିଁ , କାରଣ ସେ ସଂଗ୍ରାମ ତତ୍ତ୍ୱଦର୍ଶନ ବା ପାଣ୍ଡିତ୍ୟ-ସୁଲଭ ଆଲୋଚନାରେ ସୀମିତ ନାହିଁ , ତାହା ସମାଜ-ନୀତିର ସବୁ ସ୍ତରକୁ ବ୍ୟାପିଛି, ତାର ଅସଲ ମଞ୍ଜି ରହିଛି ସାମାଜିକ ଅର୍ଥନୀତିରେ , ଭୌତିକ ସ୍ୱାର୍ଥରେ । ଗୀତା, ମହାଭାରତ, ରାମାୟଣ ଆଦିକୁ ଯେତେ ଆଧ୍ୟାତ୍ମିକତାର ଆଖ୍ୟା ଦେଲେ ବି ତାର ମୂଳମଞ୍ଜି ଓ ଅସଲ ସ୍ୱାର୍ଥହେଲା ଭୌତିକ ସ୍ୱାର୍ଥ । ଏବଂ ଆଉ ଠିକ୍ ସେଇ ସ୍ୱାର୍ଥର ପୂରଣ ଲାଗି ଗୀତାର ସୃଷ୍ଟି ଓ ତାର ଆହ୍ୱାନ, ସେଇ ମହାନ ଆଧ୍ୟାତ୍ମିକତାର ଆହ୍ୱାନ ତଳେ ଜ୍ଞାତି ସ୍ୱଜନଙ୍କର ହତ୍ୟା, ରାଜ୍ୟପ୍ରାପ୍ତିର ଭାବ ପ୍ରକଟିତ । ଆଉ ସେଇ ହତ୍ୟାର ଯିଏ ନିନ୍ଦା ବା ପ୍ରତିବାଦ କଲା, ସେଇ ଚାର୍ବାକ୍ ରାକ୍ଷସଙ୍କର ଧ୍ୱଂସ ଭଳି ଧ୍ୱଂସ ହୋଇଛି ତାଙ୍କର ଭାଗ୍ୟର ଲିଖନ । ସେହି ହତ୍ୟା, ଲୁଣ୍ଠନ ଆଦି ସ୍ୱାର୍ଥ ହାସଲର ଉପାୟଗୁଡ଼ିକ ଆଜି ଆଧ୍ୟାତ୍ମିକତାର ପବିତ୍ର ଐତିହ୍ୟ ଓ ମହାନ୍ ପରମ୍ପରା ଭାବେ ପ୍ରଚାରିତ ।

ଯେଉଁଠି ଅନାର୍ଯ୍ୟ ଶବରଙ୍କ କାଠଗଣ୍ଡି ଆର୍ଯ୍ୟ ହିନ୍ଦୁଙ୍କର ପରମ ଦେବତା ହୁଅନ୍ତି, ଅନାର୍ଯ୍ୟ ସମାଜର ସାମ୍ୟ, ମୈତ୍ରୀ, ପ୍ରୀତି ସ୍ଥାନରେ ଅସାମ୍ୟ, ବର୍ଣ୍ଣଭେଦ ଓ ଆତ୍ମସ୍ୱାର୍ଥ ଲାଗି ହିଂସା, ଦ୍ୱେଷର ବନ୍ୟା ଛୁଟେ, ଯେଉଁଠି ଜଗତର ନାଥ, ଏକ କ୍ଷୁଦ୍ରଗୋଷ୍ଠୀ ହିନ୍ଦୁଙ୍କର ନାଥରେ ପରିଣତ ହୁଅନ୍ତି, ମାନବ ଧର୍ମ ରାଜଧର୍ମର ରୂପ ନିଏ, ଏବଂ ଶେଷରେ ଯେଉଁଠି ପ୍ରକୃତ ଦେହଧାରୀ ମାନବକୁ ବାଦଦେଇ ବିମୂର୍ତ୍ତ ମାନବବାଦର ମହତ୍ତ୍ୱ ଓ ଉତ୍କର୍ଷକୁ ନିଜର ଲକ୍ଷ୍ୟ କରାଯାଏ, ସେଠି ସେହି ସବୁର ମୂଳରେ ଲୁକ୍‌କାୟିତ ତତ୍ତ୍ୱ, ଚିନ୍ତା ଓ ଦର୍ଶନକୁ ଉନ୍ମୁକ୍ତ ନ କଲାଯାଏ କଣ ଜଗନ୍ନାଥଙ୍କ ପ୍ରକୃତ ଦର୍ଶନ କେବେହେଲେ ସମ୍ଭବ ହୋଇପାରେ ? ତାହା କରିବାକୁ ହେଲେ ଆଦିମ କାଳରୁ ଏ ପର୍ଯ୍ୟନ୍ତ ଚାଲିଥିବା ସବୁ ଦର୍ଶନର ଏକ ସମ୍ୟକ ଆଲୋଚନା ଦରକାର । ତାହା ଯେତେ ଦୁରୂହ ବ୍ୟାପାର ହେଲେ ବି ତାକୁ ଏଡ଼ିଦେଇ ଯିବା ସମ୍ଭବ ନୁହେଁ ।

ତେବେ ମୁଖ୍ୟତଃ ଭୌତିକ ଓ ଆଧ୍ୟାତ୍ମିକ — ବସ୍ତୁବାଦ ଓ ଭାବବାଦ, ଏଇ ଦୁଇଟି ଧାରାକୁ ଅନୁସରଣ କରବାକୁ ହେବ ।

**ଘଟ, ଆତ୍ମା ଓ ଆବରଣ**

ମଣିଷର ଦେହ, ଆତ୍ମା, ଆଉ ତାର ଆବରଣ ଭଳି ଜଗନ୍ନାଥ ମଧ୍ୟ ତିନି ଭାଗରେ ବିଭକ୍ତ । ଜଗନ୍ନାଥଙ୍କ ଦେହ ଆଦିମ ସାମ୍ୟ ସମାଜର ଲୋକାୟତ ଧାରା ଭିତରୁ ଉଦ୍ଭବ । ତାଙ୍କର "ଆତ୍ମା", ଶ୍ରେଣୀବିଭକ୍ତ ସମାଜର ଦୁଃଖର ବିନାଶର ଇଙ୍ଗିତ ଭାବରେ ବୁଦ୍ଧଦନ୍ତର ମହତ୍ତ୍ୱ ନେଇ ସ୍ଥାପିତ । ଶେଷରେ ତାଙ୍କର ଆବରଣ ହେଉଛି, ବୈଦିକ ହିନ୍ଦୁ ଧର୍ମ ଧାରଣା ଓ ବିଭିନ୍ନ ମତ ବିଶେଷର ସମଷ୍ଟି, — ଯେଉଁ ଭାବରେ କି ଜଗନ୍ନାଥ 'ଲୋକ' ରେ ପରିଚିତ ଓ ପୂଜିତ ।

ପ୍ରାକ- ବିଭକ୍ତ ସମାଜରେ ତାର ସେଇ ଅନୁରୂପ ଧାରଣା ଅନୁଯାୟୀ ଜଗନ୍ନାଥ ହେଲେ ସାମ୍ୟ, ମୈତ୍ରୀ ଓ ପୀତିର ପ୍ରତୀକ । ଶ୍ରେଣୀବିଭକ୍ତ ସମାଜରେ ବ୍ୟକ୍ତିଗତ ସମ୍ପତ୍ତିର ଉଦ୍ଭବ ସହିତ ତାର ଅନୁରୂପ ବ୍ୟକ୍ତିଗତ ଆତ୍ମାର ଧାରଣା ପ୍ରକାଶନ ପ୍ରତିବିମ୍ବିତ ହୋଇଛି ଜଗନ୍ନାଥଙ୍କର ଆତ୍ମାର ଧାରଣାରେ । ବ୍ୟକ୍ତିଗତ ସମ୍ପତ୍ତି, ବ୍ୟକ୍ତିଗତ ଆତ୍ମା ଓ ବ୍ୟକ୍ତିବିଶେଷଙ୍କ ଦୁଃଖ, — ଏମାନେ ପରସ୍ପର ଅବିଚ୍ଛେଦ୍ୟ ଭାବେ ସମ୍ପୃକ୍ତ । ତେଣୁ ବ୍ୟକ୍ତିଗତ ଦୁଃଖରୁ ମୁକ୍ତିଲାଗି ଆତ୍ମାର ମୋକ୍ଷ ଉପନିଷଦର ଆହ୍ୱାନ ହେଲାବେଳେ, ସେହି ଦୁଃଖର କାରଣ ବିନାଶରେ ଦୁଃଖର ବିନାଶ, ଏହି ମାର୍ଗର ଅନ୍ୱେଷଣ ହୋଇଛି ବୁଦ୍ଧଙ୍କର ଉଦ୍ୟମ । ଏହି ଦୃଷ୍ଟିକୋଣରୁ ବିଚାର କଲେ ସେସବୁ ହେଲେ ଯଥାକ୍ରମେ ଆଧି ଭୌତିକ ଦର୍ଶନ, ଆଧ୍ୟାତ୍ମିକ ଭାବବାଦୀ ଦର୍ଶନ ଏବଂ ବୌଦ୍ଧ ଦର୍ଶନ । ପ୍ରଥମଟିର ପ୍ରବର୍ତ୍ତକ ହେଲେ, ଉଦ୍ଦାଳକ ଆରୁଣି । ଦ୍ୱିତୀୟଟିର ପ୍ରବର୍ତ୍ତକ ହେଲେ, ଯାଜ୍ଞବଲ୍‌କ୍ୟ । ଶେଷଟିରେ କର୍ତ୍ତା ବା ପ୍ରବର୍ତ୍ତକ ହେଉଛନ୍ତି ଗୌତମ ବୁଦ୍ଧ । ଇତିହାସ ମଧ୍ୟ ସେଇ କ୍ରମରେ ସେମାନଙ୍କୁ ଜନ୍ମ ଦେଇଛି । ପ୍ରଥମେ ଖ୍ରୀଷ୍ଟପୂର୍ବ ଅଷ୍ଟମ ଓ ସପ୍ତମ ଶତାବ୍ଦୀରେ ଆସିଛନ୍ତି ଉଦ୍ଦାଳକଆରୁଣି । ଠିକ୍ ତାଙ୍କ ପଛେ ପଛେ ଯାଜ୍ଞବଲ୍‌କ୍ୟଙ୍କ ଆଗମନ ଏବଂ ଖ୍ରୀଷ୍ଟପୂର୍ବ ଷଷ୍ଠ- ପଞ୍ଚମ ଶତାବ୍ଦୀରେ ବୁଦ୍ଧଙ୍କର ଆବିର୍ଭାବ ।

ଜଗନ୍ନାଥ ଭାରତର ସେଇସବୁ ସାମାଜିକ ଭାବଧାରାକୁ କେବଳ ଧାରଣ କରନ୍ତି ନାହିଁ, ତଦ୍ୱାରା ସମସ୍ତ ବିଶ୍ୱର ସମଗ୍ର ମାନବଜାତିର ବିକାଶର ଭାବକୁ ପ୍ରତିଫଳିତ କରନ୍ତି । କାରଣ, ମାନବସମାଜ ମଧ୍ୟ ପ୍ରଥମେ ସାମ୍ୟ ଅବସ୍ଥାରେ ଦୁଃଖର ଅଭାବ, ତାପରେ ବିଭକ୍ତ ସମାଜରେ ଦୁଃଖର ଆବିର୍ଭାବ ଏବଂ ତା ପଛକୁ ସେଇ ଦୁଃଖର ଅବସାନ ମାର୍ଗର ଅନ୍ୱେଷଣ, ଏହିପରି ବିଭିନ୍ନ ପର୍ଯ୍ୟାୟ ଦେଇ ଗତି କରିଆସିଛି । ଜଗନ୍ନାଥ ପ୍ରକୃତରେ ନିଜକୁ ଜଗନ୍ନାଥ ଭାବରେ ପ୍ରତିପାଦିତ କରନ୍ତି ସେଇ ସମସ୍ତ ପର୍ଯ୍ୟାୟର ଇଚ୍ଛା ଆଭିମୁଖ୍ୟର ଭାବକୁ ଧାରଣ କରି । ଦୁଃଖର ଅଭାବ,

ଆବିର୍ଭାବ ଓ ତାର ଅବସାନର ଅଦ୍ୱିତୀୟ ପ୍ରତିମୂର୍ତ୍ତି ସିଏ, ତାଙ୍କର ଅତୀତର ସତ୍ୟତା ଯେପରି ପ୍ରଶ୍ନାତୀତ, ତାଙ୍କର ବର୍ତ୍ତମାନର ବାସ୍ତବତା ଯେପରି ଯଥାର୍ଥ, ସେହିପରି ଅବ୍ୟର୍ଥ ତାଙ୍କର ଭବିଷ୍ୟତର ଇଙ୍ଗିତ ।

ଅଥଚ, ଜଗନ୍ନାଥଙ୍କୁ ନ ଦେଖି ଲୋକେ ଭାରତର ଆଧ୍ୟାତ୍ମିକତା ଲାଗି ଗର୍ବ କରନ୍ତି । କହନ୍ତି, ପାଶ୍ଚାତ୍ୟ ଦେଶମାନେ ଭୌତିକତାରେ ଅଗ୍ରସର ହୋଇପାରନ୍ତି, କିନ୍ତୁ ଭାରତ ତାର ଆଧ୍ୟାତ୍ମିକତା ବଳରେ ବଳୀୟାନ । ତାହାରି ବଳରେ ସେ ସମସ୍ତ ଜଗତକୁ ପ୍ରଭାବିତ କରିବ । କିନ୍ତୁ ଭାରତର ପ୍ରକୃତ ମହାନ ସର୍ବଶ୍ରେଷ୍ଠ ଅବଦାନ ହେଉଛନ୍ତି ଶ୍ରୀଜଗନ୍ନାଥ । ତାହା କାହାରି ଆଖିରେ ପଡ଼େ ନାହିଁ । ଜଗନ୍ନାଥ କେବଳ ଅତୀତର ଏକ ନିର୍ଜୀବ ସ୍ମାରକୀ କିମ୍ବା ''ନିର୍ଯ୍ୟାତିତ ପ୍ରାଣୀର ଦୀର୍ଘଶ୍ୱାସ'', ଏକ ହୃଦୟହୀନ ଦୁନିଆର ହୃଦୟ ଓ ''ଏକ ଆତ୍ମାହୀନ ଅବସ୍ଥାର ଆତ୍ମା ନୁହନ୍ତି, ସେ ହେଉଛନ୍ତି ଭବିଷ୍ୟତର ସାମ୍ୟ, ମୈତ୍ରୀ ଓ ପ୍ରୀତିପୂର୍ଣ୍ଣ ମାନବ ସମାଜର ନିର୍ଦ୍ଦେଶକ, ଯେଉଁ ସମାଜ କି ବର୍ତ୍ତମାନର ହିଂସା ଦ୍ୱେଷ ଶୋଷଣ ନିର୍ଯ୍ୟାତନାପୂର୍ଣ୍ଣ ସମସ୍ତ ପ୍ରକାର ଅସାମ୍ୟ ଓ ଶାସନ ଦମନର ଚିର ଅବସାନ ଉପରେ ହିଁ କେବଳ ପ୍ରତିଷ୍ଠିତ ହୋଇପାରେ ।

ସେଇଥିଲାଗି ଜଗନ୍ନାଥଙ୍କ ଉପରେ 'ଆଧ୍ୟାତ୍ମିକତାର' ପ୍ରଲେପ ବୋଳି ତାଙ୍କର ପ୍ରକୃତ ମହତ୍ତ୍ୱକୁ କ୍ଷୁର୍ଣ୍ଣ ଓ ଭବିଷ୍ୟତର ଉତ୍‌କର୍ଷକୁ ମଳିନ କରିବା ଦିଗରେ ଅନବରତ ଚେଷ୍ଟା ହୋଇଆସିଛି । ଆମର ଅଧିକାଂଶ ଲୋକ ଅଚେତନଭାବେ ଏହାର ଶିକାର ହୁଅନ୍ତି । କେହି ଦିନେ ପ୍ରଶ୍ନ କରନ୍ତି ନାହିଁ, କଣ ସେଇ ଆଧ୍ୟାତ୍ମିକତା, ଯାହାକୁ ନେଇ ଭାରତ ଗଠିତ ? ସେଇ ଆଧ୍ୟାତ୍ମିକତାରୁ କଣ ସର୍ବଗ୍ରାସୀ ବିଶ୍ୱରୂପକୁ ବାଦ ଦେଇ ହେବ, ଧର୍ମ୍ମ ବିଶ୍ୱାସକୁ ଛାଡ଼ି ହେବ ? ଯାହା କହନ୍ତି, ମୁନି ଗୋଟିକେ ମତ ଗୋଟିଏ । ଆମ ମୁନି ଋଷି, ଦାର୍ଶନିକମାନଙ୍କର ଆଧ୍ୟାତ୍ମିକତା ସମ୍ବନ୍ଧରେ ବାଖ୍ୟା ଭିନ୍ନ ଭିନ୍ନ ।

**ଭାରତର ଏକ ସର୍ବଶ୍ରେଷ୍ଠ ଅବଦାନ**

ଭାରତର ପ୍ରାଚୀନ ଦାର୍ଶନିକଙ୍କ ମଧ୍ୟରୁ ଅଧିକାଂଶ ନିରୀଶ୍ୱରବାଦୀ । ସେମାନଙ୍କ ମତରେ ଈଶ୍ୱର ଏକ ପ୍ରାଣହୀନ, ଆବଶ୍ୟକତା ଶୂନ୍ୟ ଭ୍ରମାତ୍ମକ ଧାରଣା । ବିନା ପିତାରେ ପୁତ୍ରଲାଭ ଭଳି ବିନା ଈଶ୍ୱରରେ ଆଧ୍ୟାତ୍ମିକତା କିନ୍ତୁ ଏକ ଅପ୍ରାସଙ୍ଗିକ ବିଷୟ ।

ହିନ୍ଦୁଧର୍ମ୍ମରେ ସାଧାରରତଃ ଷଡ଼ଦର୍ଶନ କଥା କୁହାଯାଇଥାଏ । ଯଥା:- କପିଳଙ୍କ ସାଂଖ୍ୟ, ପତଞ୍ଜଳିଙ୍କ ଯୋଗ, ଗୌତମଙ୍କ ନ୍ୟାୟ,କଣାଦଙ୍କ ବୈଶେଷିକ, ଜୈମିନିଙ୍କ ପୂର୍ବମୀମାଂସା ଆଉ ବାଦାରୟଣଙ୍କ ବେଦାନ୍ତ ସୂତ୍ର । ଏହା ବ୍ୟତୀତ ଆଉ

ଅନ୍ୟାନ୍ୟ ମତ ମଧ୍ୟ ରହିଛି । ଏମାନଙ୍କ ଭାଷ୍ୟର ସୀମା ନାହିଁ । ପରବର୍ତ୍ତୀ କାଳରେ ଭାଷ୍ୟକାରମାନେ ସେଥିରେ ନିଜର ମତକୁ ମଧ୍ୟ ଭର୍ତ୍ତି କରିଛନ୍ତି । କେତେଠି ମୂଳମନ୍ତ୍ର ମଧ୍ୟ ଓଲଟିଯାଇଛି । ଏପରିକି ଭୌତିକବାଦକୁ ଭାବବାଦ ଧାରଣାରେ ରଞ୍ଜିତ କରାହୋଇଛି । ଖୋଦ୍ ସାଂଖ୍ୟ ହେଉଛି ତାର ଦୃଷ୍ଟାନ୍ତ । ଏହି ଦର୍ଶନ ଭିତରୁ ଅଧିକାଂଶ ଈଶ୍ୱରଙ୍କୁ ସ୍ୱୀକାର କରନ୍ତି ନାହିଁ । ପୁଣି କେତେକ ବେଦକୁ ମୁହଁରେ ମାନିଲେ ବି କାର୍ଯ୍ୟତଃ ତାକୁ ପ୍ରତ୍ୟାଖ୍ୟାନ କରନ୍ତି । ତାହା ପରେ ଆଲୋଚନା କରିବା ।

ଦର୍ଶନର ମୂଳ ଉଦ୍ଦେଶ୍ୟ ହୋଇଛି ବିଶ୍ୱର ରହସ୍ୟ ଉଦ୍‌ଘାଟନ । ସେହି କେବଳ ରହସ୍ୟ ଉଦ୍‌ଘାଟନ କରିପାରେ ଯିଏ ନିଜେ ରହସ୍ୟହୀନ । ଯା'ର ନିଜର ପଦ୍ଧତି ସବୁ ରହସ୍ୟକୁ ଖଣ୍ଡନ କରେ ଏବଂ ରହସ୍ୟ ଶୂନ୍ୟତା ଯା'ର ଜୀବନର ଏକମାତ୍ର ଧର୍ମ । ଯେଉଁ ବିଷୟ ବା ଯାହାକୁ ଲୋକ ପ୍ରତ୍ୟକ୍ଷ କରେ, ଯାହା ପରୀକ୍ଷା ଦ୍ୱାରା ପ୍ରମାଣିତ ଏବଂ ପର୍ଯ୍ୟବେକ୍ଷଣ ଭିତ୍ତିରେ ପ୍ରତିଷ୍ଠିତ, ସେଠି କିଛି ରହସ୍ୟର ପ୍ରଶ୍ନ ନାହିଁ । ଆଲୁଅରେ ଅନ୍ଧାର ଲୁଚିଲା ଭଳି ସେଠି ରହସ୍ୟ ଆପେ ଉଭେଇ ଯାଏ । ଅନ୍ୟ ଦିଗରେ ସିଏ ସେହି ରହସ୍ୟକୁ ଆହ୍ବାନ କରେ, ଯା'ର ଜୀବନ ଗୂଢ଼ ରହସ୍ୟ ଉପରେ ପ୍ରତିଷ୍ଠିତ । କାରଣ, ସେ ନିଜକୁ ରକ୍ଷା କରିବା ପାଇଁ ସେଇ ଗୂଢ଼ ରହସ୍ୟକୁ ଆଶ୍ରା କରେ । ଗୂଢ଼ଜ୍ଞାନକୁ ସଦା ଲୁକ୍‌କାୟତ, ଓ ନିଷେଧ କରି ରଖିବାରେ ଆପ୍ରାଣ ଚେଷ୍ଟା କରେ । ବିଶ୍ୱ ରହସ୍ୟ ଉଦ୍‌ଘାଟନ କରିବାକୁ ଯାଇ କେତେ ଭାରତୀୟ ଦର୍ଶନ ନିଜେ ଅଧିକ ରହସ୍ୟମୟ ହୋଇ ପଡ଼ିଛନ୍ତି । ସାଧାରଣ ଲୋକଙ୍କ ଲାଗି ସେହି ଜ୍ଞାନପ୍ରାପ୍ତି, ଶାସ୍ତ୍ରର ଅଧ୍ୟୟନ, ଏପରିକି ଶ୍ରବଣକୁ ମଧ୍ୟ ନିଶେଧ କରି ନିୟାମକଗଣ ନିଜଲାଗି ଗୂଢ଼ଜ୍ଞାନର ପବିତ୍ର ମର୍ଯ୍ୟାଦା ଦାବୀ କରିଥାନ୍ତି । ବେଦାନ୍ତ ଉପନିଷଦ ଆଦି ଭାବବାଦୀ ଦର୍ଶନ ହେଲା ତାର ଦୃଷ୍ଟାନ୍ତ । ଯାଜ୍ଞବଲ୍‌କ୍ୟଙ୍କ ଭାଷାରେ

"ପରୋକ୍ଷ ପ୍ରିୟାଇବ ହି ଦେବାଃ, ପ୍ରତ୍ୟକ୍ଷ ଦ୍ୱିଷଦଃ"

(ବୃହଦାରଣ୍ୟକ ଉପନିଷଦ, ୪.୨.୨)

Gods are found of obscure and detest direct knowledge. ଦେବତାମାନେ ପ୍ରହେଳିକାପ୍ରିୟ ଏବଂ ପ୍ରତ୍ୟକ୍ଷ ଜ୍ଞାନକୁ ସେମାନେ ଘୃଣା କରନ୍ତି ।

ତେବେ ଉପନିଷଦରେ ବସ୍ତୁବାଦ ଓ ଭାବବାଦ ଉଭୟଙ୍କର ପୂର୍ବାଭାସ ରହିଛି । ଉପରେ କଥିତ ଉଦ୍ଦାଳକ ଆରୁଣୀ ଓ ଯାଜ୍ଞବଲ୍‌କ୍ୟ ଉଭୟ ଉପନିଷଦରେ ରହିଛନ୍ତି । ଉଦଳକ ଆରୁଣି ବସ୍ତୁବାଦୀ ଓ ପ୍ରକୃତି-ବିଜ୍ଞାନୀ ହେଲାବେଳେ ଯାଜ୍ଞବଲ୍‌କ୍ୟ ଅତି ଉଗ୍ର ଭାବବାଦୀ । ପ୍ରକୃତରେ ଆଧ୍ୟାତ୍ମିକତା ବା ଭାବବାଦ ବିଶ୍ୱକୁ

ଭାରତର ମହାନ୍ ଅବଦାନ ନୁହେଁ । ତାର ପ୍ରକୃତ ସର୍ବଶ୍ରେଷ୍ଠ ଅବଦାନ ହେଉଛି ଭାରତର ବସ୍ତୁବାଦ ଓ ବିଜ୍ଞାନ । ସମଗ୍ର ବିଶ୍ୱରେ ସର୍ବପ୍ରଥମ ନୁହେଁ, ଏକ ବିରାଟ ବିସ୍ମୟ ! ସେ ଦିଗରୁ ବିଶ୍ୱରେ ସର୍ବପ୍ରଥମ ବିଜ୍ଞାନୀ ଓ ବସ୍ତୁବାଦୀ ହେଲେ ଉଦ୍ଦାଳକ ଆରୁଣି । ସେ ଖ୍ରୀଷ୍ଟପୂର୍ବ ଅଷ୍ଟମ ଶତାବ୍ଦୀର । ବିଶ୍ୱରେ ବିଜ୍ଞାନର ପ୍ରଥମ ପ୍ରଦର୍ଶକ ବୋଲି କୁହାଯାଉଥିବା ଗ୍ରୀସ୍‌ର ଥାଲେସ୍‌ଙ୍କଠାରୁ ସେ କେବଳ ଅଧିକ ପ୍ରାଚୀନ ନୁହନ୍ତି, ତାତ୍ତ୍ୱିକ ଆଲୋଚନାରେ ଅଧିକ ସ୍ପଷ୍ଟ ଓ ବିଜ୍ଞାନ ଦିଗରୁ ଅଧିକ ବଳିଷ୍ଠ । ତାହା ଛାନ୍ଦୋଗ୍ୟ ଉପନିଷଦର ଷଷ୍ଠ ଅଧ୍ୟାୟରେ ତାଙ୍କର ପୁତ୍ର ଶ୍ୱେତକେତୁଙ୍କ ସହ ଆଲୋଚନା ଭିତରେ ପ୍ରକାଶ ପାଏ । ଉଦ୍ଦାଳକ ଆରୁଣୀଙ୍କର ସେଇ ମହାନ କୃତିକୁ ଏଡ଼ିଦେଇ ଯିବା ବା ସ୍ୱୀକାର ନ କରିବା ଏକ ସ୍ୱାଭାବିକ ଘଟଣା । କାରଣ ତାଙ୍କର ସେହି ଦର୍ଶନ ମୂଳତଃ ଭୌତିକତାବାଦୀ, ଶାସକ ଶେଣୀର ଭାବବାଦୀ ଦର୍ଶନର ବିରୋଧୀ । ଭାବବାଦୀ ଦର୍ଶନ ରହସ୍ୟାବୃତ ହେଲାବେଳେ ସେହି ରହସ୍ୟର ଉଦ୍‌ଘାଟନ ହେଲା ଭୌତିକବାଦର ଧର୍ମ ।

ଉଦ୍ଦାଳକ ଆରୁଣି କୌଣସି ଉଚ୍ଚବର୍ଣ୍ଣର ବା ବ୍ରାହ୍ମଣ କୁଳର ନୁହନ୍ତି । ସେ ଜଣେ ଦାସୀପୁତ୍ର । ସେ ତାଙ୍କର ପୁତ୍ର ଶ୍ୱେତକେତୁଙ୍କୁ ବିଦ୍ୟା ଅଧ୍ୟୟନ ଲାଗି ଗୁରୁଗୃହକୁ ପଠାଇଛନ୍ତି । ବାରବର୍ଷ କାଳ ସବୁ ଶାସ୍ତ୍ର ଅଧ୍ୟୟନରେ ପାରଦର୍ଶିତା ଲାଭ କରି ଜ୍ଞାନଗର୍ବରେ ଘରକୁ ପୁଅ ଫେରିଛି, ତାକୁ ବୁଝିପାରି ଉଦ୍ଦାଳକ ପୁତ୍ରକୁ ପ୍ରଶ୍ନ କରିଛନ୍ତି, ''ତମେ ଗୁରୁଙ୍କଠାରୁ ଏମିତି କିଛି ଶିକ୍ଷା କରିଛ, ତୁମେ ଯାହାକୁ ଜାଣି ନାହଁ ତାକୁ ଜାଣିପାରିବ, ଯାହାକୁ ଶୁଣିନାହଁ ତାକୁ ଶୁଣିପାରିବ, ଯାହାକୁ ଚିନ୍ତା କରିନାହଁ ତାକୁ ଚିନ୍ତା କରିପାରିବ, ଯାହାକୁ ବୁଝିନାହଁ ତାକୁ ବୁଝିପାରିବ ?'' ଶ୍ୱେତକେତୁ ନିଜର ଅଜ୍ଞତା ପ୍ରକାଶ କରି କହିଛନ୍ତି—ଗୁରୁ ତାହା ନିଜେ ଜାଣିଥିଲେ ନିଶ୍ଚେ ତାଙ୍କୁ କହିଥାଆନ୍ତେ । ସେ ଜାଣିବାକୁ ଚାହିଁଛନ୍ତି ସେସବୁ କ'ଣ ?

ପିତା-ପୁତ୍ରଙ୍କର ସେଇ ବାକ୍ୟାଳାପ ଓ ଆଲୋଚନା ବେଶ୍ କୌତୂହଳ - ଜନକ, ଗୁରୁତ୍ୱପୂର୍ଣ୍ଣ । ତାର ସବିଶେଷ ବର୍ଣ୍ଣନା ଏଠାରେ ସମ୍ଭବ ନୁହେଁ । ତେବେ ତାର ସାରାଂଶ ବର୍ତ୍ତମାନ ପାଇଁ ଯଥେଷ୍ଟ । ଉଦ୍ଦାଳକ ଆରୁଣିଙ୍କ ଉକ୍ତିର ମର୍ମ ହେଉଛି ବିଶ୍ୱର ପ୍ରତ୍ୟେକ ଜିନିଷ କେଉଁଥିରେ ତିଆରି, ତାକୁ ଜାଣିବ କିପରି ? ତାକୁ ସେ ପ୍ରଶ୍ନର ଉତ୍ତର ଭିତର ଦେଇ ଶ୍ୱେତକେତୁଙ୍କଠାରୁ ତାହା ଆଦାୟ କରିଛନ୍ତି । ତାକୁ ପ୍ରମାଣ ଦ୍ୱାରା ଦର୍ଶାଇଛନ୍ତି । ଯଥା — ମାଟିକୁ ଜାଣିଲେ ମାଟିରେ ନିର୍ମିତ ସମସ୍ତ ପାତ୍ର ଓ ଜିନିଷକୁ ଜାଣିପାରିବ । ଅନ୍ୟସବୁ ସେଇ ମାଟିର ରୂପାନ୍ତର ମାତ୍ର — ବିଭିନ୍ନ ନାମରେ ପରିଚିତ । ସେସବୁର ବାସ୍ତବତା ହେଉଛି 'ମାଟି' । ସେହିପରି ଲୁହା, ସୁନା ଆଦି ବିଷୟ କଥା କୁହାଯାଇଛି । ଏହା ହେଉଛି—ଅନ୍ତିମ ବାସ୍ତବତା ଜାଣିବା ଦିଗରେ ତାଙ୍କର ଆଗ୍ରହର ପ୍ରମାଣ ଓ ଉପାୟର ପଦ୍ଧତି ।

ଏଠାରେ ପରୋକ୍ଷଭାବେ ସେକାଳର ସେଇ ଶାସ୍ତ୍ରଜ୍ଞାନର ବ୍ୟର୍ଥତାକୁ ସେ ଦର୍ଶାଇଛନ୍ତି । ସେ ଦିଗରେ କଠୋର ସମାଲୋଚନା ବା ରୂକ୍ଷ ବାକ୍ୟର ପ୍ରୟୋଗ ନାହିଁ । ବାରବର୍ଷ ବେଦଶାସ୍ତ୍ର ଅଧ୍ୟୟନ କରି ବିଶ୍ୱ କେଉଁଥିରେ ତିଆରି ତାହା ଲୋକ ଯେ ଜାଣିବାରେ ଅସମର୍ଥ, ତାକୁ ହିଁ ଉଦ୍ଦାଳ- କଆରୁଣି ପରୋକ୍ଷରେ ପ୍ରକାଶ କରନ୍ତି । ବେଦର ପ୍ରବକ୍ତାମାନଙ୍କୁ ତେଡ଼ି ନ ଦେଇ ତାଙ୍କର ମୂଖା ଖୋଲି ଦେଇଛନ୍ତି । ତାହା ଆହୁରି ସ୍ପଷ୍ଟ ଓ ପ୍ରାଞ୍ଜଳ ହୋଇ ଉଠିଛି ରାଜା ଅଶ୍ୱପତି କୈକେୟଙ୍କ ପ୍ରଶ୍ନରେ । —''ଆତ୍ମା କାହାକୁ କହନ୍ତି ?'' ଉଦ୍ଦାଳକ ଆରୁଣି ଉତ୍ତର ହେଲା ପ୍ରକୃତ ପକ୍ଷେ ପୃଥିବୀ । (ଛାନ୍ଦୋଗ୍ୟ ଉପନିଷଦ ୫.୧୭.୮)

ଏହାଦ୍ୱାରା ଆତ୍ମାର ଗୂଢ଼ ରହସ୍ୟମୟ ଧାରଣାକୁ ଉଦ୍ଦାଳକ ଆରୁଣି ଏକା କଥାକେ ଉଡ଼ାଇ ଦେଇଛନ୍ତି । ତାଙ୍କ କହିବାର କଥା ହେଲା — ଆତ୍ମା କୌଣସି ଇନ୍ଦ୍ରିୟାତୀତ ଜିନିଷ ନୁହେଁ । କୌଣସି ଅଚିନ୍ତ୍ୟ ଅବୋଧ ଅନିର୍ବଚନୀୟ ବିଷୟ ନୁହେଁ । ତାହା ଅତି ବାସ୍ତବ । ଏହି ପୃଥିବୀ — ଅର୍ଥାତ୍, ତାହା ବସ୍ତୁଗତ ।

**ରହସ୍ୟ ଉଦ୍‌ଘାଟନର ମାର୍ଗ**

ପୁଣି କାରଣବାଦର ପ୍ରଥମ ପ୍ରକକ୍ତା ହେଉଛନ୍ତି ଉଦ୍ଦାଳକ ଆରୁଣି । ବିଶ୍ୱର ଆରମ୍ଭ କିପରି ? ଗୋଟାଏ ମତରେ ସତ୍‌ରୁ ଅସତ୍‌ର ଉତ୍ପତ୍ତି । —ସତ୍ତାରୁ ଅସତ୍ତାର ଉତ୍ପତ୍ତି । ଆଉ ଗୋଟାଏ ମତରେ ଅସତ୍‌ରୁ ସତ୍‌ର ଉତ୍ପତ୍ତି । ତାମାନେ ମୂଳକାରଣ ଗୂଢ଼ ରହସ୍ୟମୟ, ବର୍ଣ୍ଣନା ବହିର୍ଭୂତ । ଋଗ୍‌ବେଦର ନାସଦୀୟ ସୂକ୍ତ କହେ ''ଅବର୍ଣ୍ଣନୀୟ'' ଭିତରୁ ବିଶ୍ୱର ଉଦ୍ଭବ । ପ୍ରଥମେ ସତ୍ତା କି ଅସତ୍ତା କ'ଣ ଥିଲା କହିହେବ ନାହିଁ । ଯେଉଁ ମତ କହେ ପ୍ରଥମ କାରଣ ଅସତ୍ ବା ଅସତ୍ତା, — ତାକୁ ପ୍ରତ୍ୟାଖ୍ୟାନ କରି ଉଦ୍ଦାଳକ ଆରୁଣି କହନ୍ତି, ଅସତ୍‌ରୁ ସତ୍‌ର ଉଦ୍ଭବ ଅସମ୍ଭବ । ଶୂନ୍ୟରୁ କେବଳ ଶୂନ୍ୟହିଁ ଆସିପାରେ, ଅନ୍ୟ କିଛି ନୁହେଁ । ସେ କାରଣବାଦର ଧାରଣାକୁ ଅନୁସରଣ କରି ତାକୁ କହନ୍ତି—ସତ୍‌କାର୍ଯ୍ୟ- ବାଦ । ଅର୍ଥାତ୍ କାରଣ ଭିତରେ କର୍ମଫଳ ବିଦ୍ୟମାନ । କାର୍ଯ୍ୟ ଫଳର ପ୍ରକୃତିରୁ କେବଳ କାରଣର ପ୍ରକୃତିକୁ ଅନୁମାନ କରାଯାଇପାରେ । କାର୍ଯ୍ୟଫଳ ଯଦି ଭୌତିକ ବିଷୟ, ପ୍ରକୃତିହିଁ ତେବେ ପ୍ରଥମ କାରଣ । କୌଣସି ନା କୌଣସି ରୂପରେ କେବଳ ସତ୍ତା ବା ବସ୍ତୁ ହୋଇପାରେ । ପରବର୍ତ୍ତୀ କାଳରେ ସାଂଖ୍ୟଙ୍କ ଭାଷାରେ ତାହା ହେଉଛି, '' ପ୍ରକୃତି ବା ପ୍ରଧାନ'' — ଅଚେତନ ପଦାର୍ଥର ତତ୍ତ୍ୱ ।

ଉଦ୍ଦାଳକ ଆରୁଣିଙ୍କ ମତରେ ମଶାମାଛିଙ୍କଠାରୁ ଚନ୍ଦ୍ର ସୂର୍ଯ୍ୟଙ୍କ ପର୍ଯ୍ୟନ୍ତ ସମସ୍ତେ ସତ୍‌ରୁ ଜାତ । ଅର୍ଥାତ୍ ବସ୍ତୁ ବା ଜଡ଼ ପଦାର୍ଥରୁ ଉଦ୍ଭବ । ସେ ଏଠି ଏକାଗାରକେ ବେଦ, ଦେବତା ଓ ଖୋଦ୍ ଭଗବାନଙ୍କୁ ଉଡ଼ାଇଦିଅନ୍ତି । ସେ ଦର୍ଶାନ୍ତି ଯେ ପ୍ରତ୍ୟେକ ଜିନିଷ ସତ୍ତାର ସୂକ୍ଷ୍ମାତୀତ ସୂକ୍ଷ୍ମକଣାର ମର୍ମଦ୍ୱାରା ଗଢ଼ା । ତାର ପ୍ରମାଣ

ସ୍ୱରୂପ ସେ ଶ୍ୱେତକେତୁଙ୍କୁ ଏକ ମଞ୍ଜିକୁ ଟିକି ଟିକି କରି କାଟିବାକୁ କହିଛନ୍ତି । କାଟି କାଟି ଗଲାପରେ ଗୋଟାଏ ଅବସ୍ଥାରେ ତାହା ଆଉ କାଟି ହେଉନାହିଁ କି ଆଖିକୁ ଦିଶୁନାହିଁ । ସେମିତି ଲୁଣକୁ ପାଣିରେ ପକାଇବାକୁ କହିଛନ୍ତି । ସେ ମିଳାଇଗଲା ପରେ ପାଣିର ତଳ, ଉପର, ଯେଉଁଠି ଚାଖ ତାହା ଲୁଣିଆ ଲାଗିବ । ତମେ ସେସବୁର ସତ୍ତା ଦେଖି ପାରନାହିଁ , ତେବେ ସେ କ'ଣ ? ସେଇ — ସୂକ୍ଷ୍ମାତୀତ ସୂକ୍ଷ୍ମର ମର୍ମ । ତାହାହିଁ ଆତ୍ମା, — ତାହା ବାସ୍ତବତା, ''ତତ୍ ତ୍ୱମ୍ ଅସି'' — ସେ ଆତ୍ମା ପୃଥିବୀ ଛଡ଼ା ଅନ୍ୟ କିଛି ନୁହେଁ ।

କୌଣସି ବ୍ରାହ୍ମଣ ପୁରୋହିତଙ୍କ ଭାଷ୍ୟ, ବେଦ ବା ଶାସ୍ତ୍ରର ଉକ୍ତି କିମ୍ବା ମୁନି ଋଷିଙ୍କ ବାଣୀ ଦ୍ୱାରା ସେ ସବୁକୁ ଉଦ୍ଧାଳକ ପ୍ରତିପାଦନ କରନ୍ତି ନାହିଁ, କିମ୍ବା କଣାଦ ଓ ଡ଼ିମୋକ୍ରେଟିସଙ୍କ(Democratis) ଭଳି ତାହା କଳ୍ପନାମୂଳକ ନୁହେଁ । ତାହା ସମ୍ପୂର୍ଣ୍ଣ ପରୀକ୍ଷାମୂଳକ । ପ୍ରତ୍ୟକ୍ଷ ପର୍ଯ୍ୟବେକ୍ଷଣ ଉପରେ ପର୍ଯ୍ୟବସିତ । ସେ ପ୍ରତ୍ୟେକଟି ବିଷୟକୁ ପୁତ୍ର ଶ୍ୱେତକେତୁଙ୍କ ଦ୍ୱାରା ତାଙ୍କର ହାତରେ ପରୀକ୍ଷା କରାଇଛନ୍ତି । ଦର୍ଶାଇ ଦେଇଛନ୍ତି ଶୂନ୍ୟରୁ କିଛି ଆସିନାହିଁ । ସତ୍ ହେଉଛି ଆଦ୍ୟବସ୍ତୁ ।

ମାନସ ମଧ ସେହିପରି ଖାଦ୍ୟର ସୂକ୍ଷ୍ମତୀତ ସୂକ୍ଷ୍ମକଣାର ମର୍ମ୍ମ ନେଇ ଗଢ଼ା। ତେଜ, ଅପ ଓ ଅନ୍ନ ଏ ସବୁର ଉଦ୍ଭବ ସେଇ ସତ୍‌ରୁ । ତାହାହିଁ ମଣିଷକୁ ତିଆରି କରେ । ମଣିଷର ପ୍ରାଣ, ମନ ଓ ବ୍ୟାକ୍ ସେଇଥିରୁ ଉଦ୍ଭବ । ତାକୁ ପ୍ରମାଣ କରିବାକୁ ଯାଇ ସେ ଶ୍ୱେତକେତୁଙ୍କୁ ବହୁଦିନ ଧରି ଖାଦ୍ୟ ବିନା ଅନାହାରରେ ରଖିଛନ୍ତି । ଆହାର ବିନା ତାଙ୍କ ମନପ୍ରାଣ ଆଦି କିପରି ଧୀରେ ଧୀରେ ଅବଶ, ନିସ୍ତେଜ, କର୍ମ୍ମହୀନ ଓ ଅଚଳ ହୋଇପଡ଼େ, ତାହା ଦର୍ଶାଇଛନ୍ତି ।

ଆଗରେ ଧାରଣା ହେଲା ଯେ ବସ୍ତୁ ବା ଜଡ଼ ପଦାର୍ଥର ଜୀବନ ରହିଛି । ସେଥିପାଇଁ ଗ୍ରୀକ୍‌ମାନେ ଏକ ନୂତନ ଶବ୍ଦ ହିଲୋ-ଯୋସିନ୍ (Hylo-zosin) ସୃଷ୍ଟି କରିଥିଲେ । କିନ୍ତୁ ଜଡ଼ରୁ ଜୀବନର ଉତ୍ପତ୍ତି ଏଇ ପ୍ରଶ୍ନ ଉତ୍‌ଥାପନ କରିବାରେ ଉଦ୍ଧାଳକ ଆରୁଣି ହିଁ ସର୍ବପ୍ରଥମ । ସେ ଦେଖିଛନ୍ତି ମାନସ ଗୋଟାଏ କଳ୍ପନା ନୁହେଁ । ତାହା ସୂକ୍ଷ୍ମାତୀତ ସୂକ୍ଷ୍ମ ଅଂଶର ମର୍ମ୍ମରୁ ଜାତ ।

ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ହେଉଛି ତାଙ୍କର ଚିନ୍ତାର ପଦ୍ଧତି । ତାହା ଅନ୍ୟମାନଙ୍କ ଭଳି ଗୂଢ଼ଜ୍ଞାନ, ଅନ୍ତର୍ଜ୍ଞାନ ବା ଦିବ୍ୟଜ୍ଞାନ ଆଧାରିତ ନୁହେଁ । ସେହି ପଦ୍ଧତି ମଧ ପରୀକ୍ଷା-ମୂଳକ । ତାହା ପ୍ରତ୍ୟକ୍ଷ ପର୍ଯ୍ୟବେକ୍ଷଣ ଉପରେ ପ୍ରତିଷ୍ଠିତ । ସେଠି ଆତ୍ମଗତ ଭାବର ପ୍ରଶ୍ନ ନାହିଁ । ମାଟି, ଲୁହା ଆଦି ପ୍ରତ୍ୟେକଟିକୁ ପ୍ରତ୍ୟକ୍ଷ କରି, ପୃଥିବୀକୁ ପର୍ଯ୍ୟବେକ୍ଷକ କରି, ପୁତ୍ର ଶ୍ୱେତକେତୁଙ୍କୁ ଅନାହାରରେ ରଖି, ତାର ଉପରେ ପରୀକ୍ଷା ଚଳାଇ, ସେ ସେହି ସିଦ୍ଧାନ୍ତରେ ପହଞ୍ଚିଛନ୍ତି — ଯାହାକି ବିଜ୍ଞାନର ମୂଳଭିତ୍ତି । ତାର ଏକମାତ୍ର ପଦ୍ଧତି । ଅଢ଼େଇ ହଜାରରୁ ଊର୍ଦ୍ଧ୍ୱ ବର୍ଷ ତଳେ ଏପରି ଏକ ଚିନ୍ତା ବାସ୍ତବରେ

ବିସ୍ମୟକର । ତାହା ବିଜ୍ଞାନ ଇତିହାସରେ ଏକ ନୂତନ ଦିଗ୍‌ବଳୟର ଉଦ୍‌ଘାଟନ । ବିଶ୍ୱର ମାନବସମାଜ ପ୍ରତି ଏକ ଅପୂର୍ବ ଅବଦାନ ।

ଏଇ ନୂତନ ଜ୍ଞାନପ୍ରାପ୍ତି ଲାଗି ଉଦ୍ଦାଳକ ଆରୁଣି କୌଣସି ଶାସ୍ତ୍ରଜ୍ଞ ପଣ୍ଡିତଙ୍କୁ ଆଶ୍ରା କରିନାହାନ୍ତି । ସେ ଅନୁସରଣ କରିଛନ୍ତି କମାର, କୁମ୍ଭାର, କୃଷିକାରୀ, ବଣିଆ ଆଦି କାରିଗର, ଖଟିଖିଆ ଲୋକଙ୍କୁ । ଯେଉଁମାନେ ହାତରେ କାମ କରି ପ୍ରକୃତିରେ ପରିବର୍ତ୍ତନ ଆଣନ୍ତି, ନୂତନ ସୃଷ୍ଟି କରନ୍ତି । ସେହି ସୃଷ୍ଟିର, ପ୍ରକୃତିର ପର୍ଯ୍ୟବେକ୍ଷଣ ଦ୍ୱାରା ସୃଷ୍ଟିର ରହସ୍ୟ ଉଦ୍‌ଘାଟନ କରିବାକୁ ଚେଷ୍ଟା କରିଛନ୍ତି ଉଦ୍ଦାଳକ ଆରୁଣି । ତାଙ୍କ ନିକଟରେ କୌଣସି ଧର୍ମଶାସ୍ତ୍ରର ଦୃଷ୍‌ଟାନ୍ତ ନାହିଁ । ସବୁ ଦୃଷ୍‌ଟାନ୍ତ ହେଉଛି ହାତ ଓ କାମର, ଶାରୀରିକ ଶ୍ରମ ଫଳର । ତାଙ୍କ ଦୃଷ୍ଟିରେ ଶାରୀରିକ ଶ୍ରମ ଘୃଣିତ ନୁହେଁ , ସମ୍ମାନିତ — ଯାହାକି ଧର୍ମଶାସ୍ତ୍ର ଓ ଆଧାତ୍ମିକ ବ୍ୟକ୍ତିଙ୍କ କ୍ଷେତ୍ରରେ ସମ୍ପୂର୍ଣ୍ଣ ବିପରୀତ । ତାହା ଶାରୀରୀକ ଶ୍ରମକାରୀଙ୍କୁ ଘୃଣା ଚକ୍ଷୁରେ ଦେଖେ । ଶାସ୍ତ୍ରଜ୍ଞ ପଣ୍ଡିତ, ବ୍ରାହ୍ମଣଙ୍କ ପାଇଁ ଶାରୀରିକ କର୍ମ ଯେପରି ନିଷିଦ୍ଧ, ଶାରୀତିକ ଶ୍ରମକାରୀଙ୍କ ପାଇଁ ଶାସ୍ତ୍ର ଅଧ୍ୟୟନ ସେହିପରି ଦଣ୍ଡନୀୟ ।

ଅତଏବ ଉଦ୍ଦାଳକ ଆରୁଣି ମାନବର ଚିନ୍ତାରାଜ୍ୟରେ ଏକ ବିରାଟ ବିପ୍ଳବ, ବୈଜ୍ଞାନିକ ଦୃଷ୍‌ଟିକୋଣର ବାର୍ତ୍ତାବହ ଏବଂ ନୂତନ ସୃଷ୍ଟିର 'ପଥ ପ୍ରଦର୍ଶକ ।' କାରଣବାଦକୁ ଦେଖିବା, ସତ୍ (ସତ୍ତା) ବା ଆଦ୍ୟବସ୍ତୁକୁ ବିଶ୍ୱର ମୂଳକାରଣ ବୋଲି ଧରିବା, ପରିବର୍ତ୍ତନ ସେହି ଆଦ୍ୟବସ୍ତୁର ସହଜାତ ମର୍ମ୍ମ ହେବା ହେତୁ ସବୁ ଜିନିଷର ବିକାଶ ଓ ବିବର୍ତ୍ତନର ଧାରଣା କରିବା ଏବଂ ଆତ୍ମାକୁ ପୃଥିବୀ ଭାବେ ପ୍ରକାଶ କରିବା, ଆଉ ବୌଦ୍ଧକ ବିଚାରରେ ବ୍ରହ୍ମକୁ ପ୍ରତ୍ୟାଖ୍ୟାନ କରିବା ଦ୍ୱାରା ଶାସ୍ତ୍ରର ଅଲୌକିକ ଧାରଣା ଓ ସମସ୍ତ ଅନ୍ଧବିଶ୍ୱାସ ମୂଳରେ କୁଠାରାଘାତ କରିଛନ୍ତି ଉଦ୍ଦାଳକ ଆରୁଣି । ପ୍ରଚାର କରିଛନ୍ତି ଏକ ନୂତନ ଯୁଗର ସନ୍ଦେଶ ।

ଉଦ୍ଦାଳକ ଆରୁଣି ଓ ଯାଜ୍ଞବଲ୍‌କ୍ୟ, ଏଇ ଦୁଇ ମୌଳିକ ଦୃଷ୍ଟିର ଭିତ୍ତି ଉପରେ ଗଢ଼ିଉଠିଛି ସମଗ୍ର ଭାରତୀୟ ଧାରଣାର ପରମ୍ପରା । ଜଗନ୍ନାଥ ତାର ବ୍ୟତିକ୍ରମ ନୁହନ୍ତି । ଉଦ୍ଦାଳକ ଆରୁଣିଙ୍କ ପଥ ହେଉଛି ଜଗନ୍ନାଥଙ୍କ ରହସ୍ୟ ଉଦ୍‌ଘାଟନର ଏକମାତ୍ର ମାର୍ଗ । କାରଣ, ତାହା ବିଶ୍ୱପ୍ରକୃତିକୁ ନିର୍ମଳ ବିଶୁଦ୍ଧ ଅନାବିଳ ଦୃଷ୍ଟିରେ ଦେଖେ । ସେଥିରେ କୌଣସି ବାହ୍ୟ ଆବିଳତା, ବାହାରର କୌଣସି ମିଶ୍ରଣ ଆଣେ ନାହିଁ । କୌଣସି ଅତିପ୍ରାକୃତିକ ଅଲୌକିକ ଶକ୍ତିର ହସ୍ତକ୍ଷେପକୁ ପ୍ରଶ୍ରୟ ଦିଏ ନାହିଁ । ତେଣୁ ସେହି ଦୃଷ୍ଟରେ ପ୍ରକୃତି ବହିର୍ଭୂତ ସମସ୍ତ ବିଷୟ — ଯାବତୀୟ ଧ୍ୟାନ ଧାରଣା, ସବୁ ଦେବଦେବୀ ଏପରିକି ସ୍ୱୟଂ ଭଗବାନ ବାଛି ହୋଇ ବାହାରି ପଡ଼ନ୍ତି । ସେହି ଦୃଷ୍ଟିର ସ୍ପର୍ଶରେ ସବୁ ଦୃଷ୍ଟିହୀନ ଧାରଣା — ଅନ୍ଧବିଶ୍ୱାସ ସକାଳର କୁହୁଡ଼ି ଭଳି ମିଳାଇଯାଆନ୍ତି । କିନ୍ତୁ ଯାଜ୍ଞବଲ୍‌କ୍ୟଙ୍କ ପଥ ହେଉଛି ବିଶ୍ୱଜଗତକୁ ଅଧିକ ରହସ୍ୟମୟ କରି ଗଢ଼ିବାର ଉପାୟ । କାରଣ ତାହା ବିଶ୍ୱପ୍ରକୃତି ପ୍ରତି ମନର ଯାବତୀୟ ପୂର୍ବକଳ୍ପିତ ଭାବକୁ ଆରୋପ କରେ । ଅର୍ଥାତ୍ ପ୍ରକୃତି- ବହିର୍ଭୂତ ଅତି -ପ୍ରାକୃତିକ

ଶକ୍ତିର ହସ୍ତକ୍ଷେପକୁ ଆହ୍ୱାନ କରେ । ପ୍ରକୃତିର ରହସ୍ୟ ଉଦ୍‌ଘାଟନ କରିବାକୁ ଯାଇ ତାକୁ ଅଧିକ ରହସ୍ୟମୟ କରିଦିଏ । ସେଇ ଦୃଷ୍ଟିର ସ୍ପର୍ଶରେ ଜଗନ୍ନାଥ ହୁଅନ୍ତି ସକଳ ପ୍ରହେଳିକାର ସର୍ବୋଚ୍ଚ ଅବତାର । ତାକୁ ପାଇବାର, ଉପଲବ୍‌ଧି କରିବାର ମାର୍ଗ ହୁଏ — ତାଙ୍କୁ ଆହୁରି ଅଧିକ ରହସ୍ୟମୟ କରି ଗଢ଼ିବାରେ ।

**ଭୌତିକ ଓ ଆଧାତ୍ମିକ ଦୃଷ୍ଟିରେ**

ଆମର ଚିନ୍ତାଧାରା ସାଧାରଣତଃ ଭାବବାଦ ଓ ଆଧାତ୍ମିକତା ନେଇ ଅଭ୍ୟସ୍ତ । କହିବାକୁ ଗଲେ ତାହା ସମାଜିକ ଚିନ୍ତାର ଅବିଚ୍ଛେଦ୍ୟ ଅଙ୍ଗ ହୋଇ ଉଠିଛି । ଦର୍ଶନ ବୋଇଲେ ତାକୁହିଁ ବୁଝାଯାଏ । ସେ ନେଇ ଏଥିପୂର୍ବରୁ କେତେକ ଆଲୋଚନା ମଧ୍ୟ ହୋଇଛି । ତାର ମୂଳ ହେଉଛି ଆତ୍ମା, ବ୍ରହ୍ମ ଆଦି । ସେ ଦୁହେଁ ସମାନ । ତାହାହିଁ ଅନ୍ତିମ ବାସ୍ତବତା ଓ ସତ୍ୟ ବୋଲି କୁହାଯାଏ । ସେଇଠୁ ସମସ୍ତଙ୍କ ଉତ୍ପତ୍ତି ଓ ପରିସମାପ୍ତି । ତେଣୁ ଆତ୍ମା, ଅହଂ ହେଉଛି ଅନ୍ତିମ ବାସ୍ତବତା । ଉପନିଷଦର ସେଇ ଅନ୍ତିମ ବାସ୍ତବତା ହେଲା ନିର୍ମଳ ଚେତନା । ଅର୍ଥାତ୍ ଅନୁଭୂତ ଭୌତିକ ବିଶ୍ୱର କୌଣସି ନିଜର ବାସ୍ତବତା ନାହିଁ । ଚେତନାରେ କେବଳ ସେ ରହିଛି । ମୁଁ ଭାବୁଛି ବୋଲି ସେ ରହିଛି । ଯେମିତିକି ଯାଜ୍ଞବଲକ୍ୟଙ୍କ ଭାଷାରେ " ସ୍ତ୍ରୀକୁ ଭଲପାଇବା ହେତୁ ସ୍ତ୍ରୀ ମୋର ପ୍ରିୟ ନୁହେଁ । ନିଜକୁ ଭଲ ପାଇବା ହେତୁ ସ୍ତ୍ରୀ ମୋର ପ୍ରିୟ......." । ଅର୍ଥାତ୍ ମୋର ଭଲପାଇବାକୁହିଁ ମୁଁ ଭଲପାଏ । ସ୍ତ୍ରୀକୁ ନୁହେଁ । ଯାଜ୍ଞବଲ୍‌କ୍ୟଙ୍କ ଭାଷାରେ ନିଜକୁ ଅର୍ଥାତ୍ ଆତ୍ମାକୁ ଦେଖିବାକୁ, ଭାବିବାକୁ ବିଚାର କରିବାକୁ ହେବ । ଯିଏ ତାକୁ ଦେଖେ, ଶୁଣେ, ଭାବେ, ବିଚାର କରେ, ସେ ବିଶ୍ୱକୁ ଜ୍ଞାତ ହୁଏ । ବିଶ୍ୱକୁ ଦେଖେ ଶୁଣେ ଓ ବିଚାର କରିପାରେ । ଯିଏ ଆତ୍ମାକୁ ଜାଣେ, ସେ ସବୁକିଛି ଜାଣିପାରେ ।

ଆତ୍ମାର ସେଇ ଉପଲବ୍‌ଧି କୌଣସି ଇନ୍ଦ୍ରିୟଜ୍ଞାନ ଦ୍ୱାରା ସମ୍ଭବ ନୁହେଁ । ତାହା କେବଳ ନିଜର ନିଜସ୍ୱ ଉପଲବ୍‌ଧି ବା ସ୍ୱତଃଲବ୍‌ଧ ଜ୍ଞାନ ( Intuition) ଦ୍ୱାରା ଆସିପାରେ । ତା ଲାଗି କୌଣସି ଯୁକ୍ତି, ବିଚାର ବା ପ୍ରମାଣର ଆବଶ୍ୟକତା ନାହିଁ । ତାହା ହେଉଛି ବିଶୁଦ୍ଧ ଜ୍ଞାନ ବା ନିର୍ମଳ ଚେତନା । ପ୍ରଥମ ଦ୍ୱିତୀୟ ଶତାବ୍ଦୀ ବେଳକୁ ବୌଦ୍ଧ ଦାର୍ଶନିକ ନାଗାର୍ଜୁନଙ୍କ ଶୂନ୍ୟବାଦ ପହଞ୍ଚିଛି । ଆମେ ଯାହା ଦେଖୁ ତାହା ବାସ୍ତବ ନୁହେଁ, ମାୟା । ଆମର ପ୍ରକୃତି ଅନୁଭୂତି ବାସ୍ତବତାର ପ୍ରମାଣ ନୁହେଁ । ତାପରେ ଭାବବାଦର ପ୍ରକାଶ ଘଟେ ଯୋଗାଚାର୍ଯ୍ୟଙ୍କ ବିଜ୍ଞାନବାଦରେ । ଏଠି ଅନ୍ତିମ ବାସ୍ତବତା ହେଉଛି ବିଶୁଦ୍ଧ ଭାବ (Pure idea ) । ଯଦି ଜଣେ ଧ୍ୟାନ କରେ, ଦୀର୍ଘ ଦିନ ଧରି ଧ୍ୟାନରେ ନିମଗ୍ନ ରହେ, ସମସ୍ତ ବାହାର ଜଗତରୁ ନିଜକୁ ବିଚ୍ଛିନ୍ନ କରି ନିଜ ଭିତରେ ନିଜକୁ ଆବଦ୍ଧ କରି ରହେ, ତେବେ ମଣିଷ କେବଳ ବିଶୁଦ୍ଧ ଜ୍ଞାନ, ନର୍ମଳ ଭାବର ବାସ୍ତବତା ଲାଭ କରିପାରିବ । ସେ ମଣିଷ କେବଳ ବିଶୁଦ୍ଧ ଜ୍ଞାନ, ନିର୍ମଳ ଭାବର ବାସ୍ତବତା ଲାଭ କରିପାରିବ । ସେ ଏକ ସୁଷୁପ୍ତି ଅବସ୍ଥାରେ ଉପଗତ ହେବ । ତାପରେ ଅଷ୍ଟମ ଶତାବ୍ଦୀରେ ଶଙ୍କରଙ୍କ ଅଦ୍ୱୈତ, ବେଦାନ୍ତ ଦର୍ଶନର ପ୍ରଚାର । ତାହା

କହେ ଦୈନନ୍ଦିନ ଜୀବନର ଅନୁଭୂତି- ଲବ୍ଧ ଏଇ ଭୌତିକ ବିଶ୍ୱ ବାସ୍ତବ ନୁହେଁ । ତାର କୌଣସି ସତ୍ୟତା ନାହିଁ । ତାହା ସପ୍ନ ଭଳି ଅବାସ୍ତବ, ଅଳୀକ, ଗୋଟାଏ ମାୟା ମାତ୍ର । ଏହିପରି ବ୍ୟାଖ୍ୟାର ଅଭାବ ନାହିଁ । ମୋଟ ଉପରେ ବାସ୍ତବତାର, ଭୌତିକତାର ଓ ସତ୍ୟର ପରିହାର ହେଲା ସେ ସବୁର ମୂଳ ।

କିନ୍ତୁ ବାସ୍ତବ ଜୀବନରେ ତାହା କଣ କେବେ ସମ୍ଭବ ହୋଇପାରେ ? ଯେତେ ଭାବବାଦୀ ହେଲେ ବି ତାକୁ ଏକା ବଞ୍ଚିବାକୁ ହେବ । ଖାଇ, ପିଇ, ପିନ୍ଧି, ଚାଲିବାକୁ ପଡ଼ିବ । ଏହି ବାସ୍ତବ ସତ୍ୟକୁ କିପରି କିଏ ଏଡ଼ି ଦେଇପାରେ ? ମାୟାରେ କ'ଣ କେବେ କାହାର ପେଟ ପୂରିଲାଣି ? ତେଣୁ ତାକୁ ଶୂନ୍ୟବାଦ ସ୍ୱୀକାର କରି କହେ, ତାହା ହେଲା ''ସଂବୃତ୍ତ ସତ୍ୟ'' — ସତ୍ୟ, ଯିଏ କି ପ୍ରକୃତ ସତ୍ୟକୁ ଲୁଚାଏ । ଅଦ୍ୱୈତ ବେଦାନ୍ତ ତାକୁ କହେ — ''ବ୍ୟାବହାରିକ ସତ୍ୟ ।'' ବ୍ୟବହାର ଲାଗି ସତ୍ୟ । ତା ମାନେ ପ୍ରକୃତରେ ଏହା ସତ୍ୟ ନୁହେଁ , — ମିଥ୍ୟା । ବାସ୍ତବ ଜୀବନରେ ବ୍ୟବହାରର ସଂକୀର୍ଣ୍ଣତା ଦୃଷ୍ଟିରୁ ତାହା କେବଳ ସତ୍ୟ । ସେ ଉଭୟଙ୍କର ଅର୍ଥ ସମାନ । ମୀମାଂସକ କୁମାରିଲଙ୍କ ମତରେ ଏସବୁ କେବଳ ଶବ୍ଦର ଆଡ଼ମ୍ବର ମାତ୍ର । ଏସବୁ କେବଳ ନିଜର ହାସ୍ୟାସ୍ପଦ ମତକୁ ଢ଼ାଙ୍କିବା ଓ ଲୋକଙ୍କୁ ପ୍ରତାରିତ କରିବା ଲାଗି ଉଦ୍ଦିଷ୍ଟ । ଯେପରିକି ଲୋକେ ତାକୁ ଧରି ନ ପାରି ଭାବିବେ ଦାର୍ଶନିକ— ମାନେ ଗୋଟାଏ କିଛି ମହାନ୍ ବିଷୟର ଅବତାରଣା କରୁଛନ୍ତି ।

ଅତଏବ, ସେଇ ସତ୍ୟ ଯାହା ସତ୍ୟ ନୁହେଁ, — କୁମାରିଲଙ୍କ ଭାଷାରେ ଏହାହିଁ ହେଲା ଭାବବାଦୀଙ୍କ ସତ୍ୟ । ଏହି ସତ୍ୟ ବ୍ୟାବହାରିକ ଦୃଷ୍ଟିରେ ସେଇମାନଙ୍କ ଲାଗି ପ୍ରୟୋଜନ, ଯେଉଁମାନେ ସତକୁ ମିଛ, ମିଛକୁ ସତ, ନ୍ୟାୟକୁ ଅନ୍ୟାୟ, ଅନ୍ୟାୟକୁ ନ୍ୟାୟ ବୋଲି କହନ୍ତି । ମଣିଷର ଶୋଷଣକୁ ମାନବୀୟ ମହତ୍ତ୍ୱର ଆଖ୍ୟା ଦେଇ ନିଜକୁ ପ୍ରତିଷ୍ଠିତ କରିପାରନ୍ତି । ତାହା ଯୁଗ ଯୁଗ ଧରି ଶୋଷକ ଶାସକ ଶ୍ରେଣୀଙ୍କ ହାତରେ ଏକ ଅମୋଘ ଉପାୟ ହୋଇଆସିଛି । ଏ ବିଷୟଟି ପ୍ରାଚୀନ ଗ୍ରୀସ୍‌ରେ ମଧ୍ୟ ଦେଖିବାକୁ ମିଳେ । ପ୍ଲାଟୋ ତାଙ୍କର ଗ୍ରନ୍ଥ 'ରିପବ୍‌ଲିକ୍'ରେ ଲେଖିଛନ୍ତି, ''ଶ୍ରମଜୀବୀ ଲୋକଙ୍କୁ ଆୟତ୍ତରେ ରଖିବା ଦିଗରେ ''ହିତକାରୀ ମିଥ୍ୟା'' (beneficiary lies)ର ଅବାଧ ବ୍ୟବହାର ଦରକାର ।'' ସେ ତାର ନାମ ଦେଇଛନ୍ତି, 'noble truth' ସମ୍ଭ୍ରାନ୍ତ ସତ୍ୟ । ଏହା ଆମର ସଂବୃତ୍ତ ସତ୍ୟର ଗ୍ରୀକ୍ ସଂସ୍କରଣ ମାତ୍ର । ପ୍ରାଚୀନ ମିଶର ଦେଶରେ ଲୋକଙ୍କୁ ଆୟତ୍ତରେ ରଖିବା ଲାଗି ପୁରାଣ, କିମ୍ବଦନ୍ତୀର ଯେଉଁ ବ୍ୟବହାର ଚାଲିଥିଲା, ପ୍ଲାଟୋ ତାହାର ଉଚ୍ଚପ୍ରଶଂସା କରିଛନ୍ତି । କାରଣ, ପୁରାଣ, କିମ୍ବଦନ୍ତୀ ସତ୍ୟ ନ ହେଲେ ବି ତାଙ୍କର ଉଦ୍ଦେଶ୍ୟ ସାଧନ କରନ୍ତି । ପ୍ଲାଟୋଙ୍କ ସମୟର ଜଣେ ଗ୍ରୀକ୍ ଶାସକ କୁସଂସ୍କାର ବ୍ୟବହାରକୁ ଖୁବ୍ ପସନ୍ଦ କରୁଥିଲେ । କାରଣ, ତାହା ଲୋକଙ୍କୁ ଆୟତ୍ତରେ ରଖିବା ଲାଗି ସମ୍ମୋହନ ମନ୍ତ୍ର ଭଳି କାମ କରେ । ତାହା ଲୋକଙ୍କର ସ୍ୱାଧୀନ ଚିନ୍ତାକୁ ଖର୍ବ କରେ । କୁସଂସ୍କାର ଯାହା କହେ, ତାକୁ ସେମାନେ ବିନା ବାକ୍ୟରେ ଅନୁସରଣ କରନ୍ତି । ତେଣୁ

ଶାସକଶ୍ରେଣୀର ବଶ୍ୟତା ବିନା ତାଙ୍କ ଆଗରେ ଆଉ କିଛି ବିକଳ୍ପ ରହେ ନାହିଁ । ରୋମର ଲୋକେ କୁସଂସ୍କାରକୁ 'ଆଲୋକ' ଭଳି ବ୍ୟବହାର କରୁଥିବାରୁ ପୋଲିବସ (Polybush.) ତାଙ୍କର ଉଚ୍ଚ ପ୍ରଶଂସା କରୁଥିଲେ ।

ଏହିପ୍ରକାର ଦର୍ଶନର, — ତାର ସତ୍ୟ ଓ ତତ୍ତ୍ୱର ପ୍ରକୃତ ସ୍ୱରୂପ ଯଦି କିଏ ଖୋଲିଦିଏ, ତେବେ ସେ ଓ ତାର ସମର୍ଥକ, ବିଶେଷକରି ଶାସକଶ୍ରେଣୀର ଶରବ୍ୟ ହେବା ସୁନିଶ୍ଚିତ । ସେହି ଭଳି ମତର ପ୍ରଚାରକ ଚାର୍ବାକ୍ ରାକ୍ଷସଙ୍କୁ ଯେଉଁମାନେ ଦଗ୍‌ଧ କରିପାରନ୍ତି, ସେମାନେ କ'ଣ ଚାର୍ବାକ ଓ ଲୋକାୟତଙ୍କ ଶାସ୍ତ୍ର ଓ ସାହିତ୍ୟକୁ ବଞ୍ଚିବାକୁ ଛାଡ଼ିଦେବେ ? ଏହା କେବଳ ଭାରତରେ ନୁହେଁ, ଏହିକଥା ଊଣା ଅଧିକେ ସବୁ ଦେଶରେ ଘଟିଛି । ପ୍ରାଚୀନ ଗ୍ରୀକ୍ ଦାର୍ଶନିକ ଡ଼ିମୋକ୍ରାଟିସଙ୍କ ପରମାଣୁ -ଭୌତିକବାଦରେ ପ୍ଲାଟୋ ଖୁବ୍ ବିବ୍ରତ ଓ ବ୍ୟତିବ୍ୟସ୍ତ ହୋଇ ପଡ଼ିଥିଲେ । ସେ ଚାହିଁଥିଲେ ତାକୁ ଧ୍ୱଂସ କରିବା ପାଇଁ । ଶେଷରେ ତାହାହିଁ ହେଲା । ଏପରିକି ବ୍ରିଟିଶ ପାର୍ଲିଆମେଣ୍ଟ ୧୪୦୧ରେ 'On the desirability of burning heretics' — ଧର୍ମବିରୋଧୀମାନଙ୍କୁ ଦଗଧ କରିବା ଉଚିତ ବୋଲି ଏକ ଆଇନ ମଧ୍ୟ ପାସ୍ କରିଥିଲା । ସେମାନଙ୍କୁ ସର୍ବସାଧାରଣରେ ଖୁଣ୍ଟରେ ବାନ୍ଧି ପୋଡ଼ି ମାରିବାର ଉଦ୍ଦେଶ୍ୟ ହେଲା ଅନ୍ୟମାନଙ୍କ ପ୍ରାଣରେ ଭୟ ସଞ୍ଚାର କରିବା । ଷୋଳଶହ ଶତାବ୍ଦୀରେ ଯୂପକାଠରେ ସେହିପରି ଜୀବନ୍ତ ଦଗ୍‌ଧ କରାଯାଇଛି(Giordons Bruno) ଗୀର୍ଡୋନ ବ୍ରୁନୋଙ୍କୁ । ଏହା କଣ ସେହି ଚାର୍ବାକ ରାକ୍ଷସଙ୍କୁ ଦଗ୍‌ଧ କରିବା ଆଦର୍ଶର ପରମ୍ପରା ନୁହେଁ ?

ଗୋଟାଏ ସମୟ ଥିଲା, ଯେତେବେଳେ ମନୁଷ୍ୟର ଆତ୍ମା ସମ୍ପର୍କରେ ଧାରଣ ନ ଥିଲା । ସେମିତି ଗୋଟାଏ ସମୟ ଆସିଲା, ଯେଉଁ ଅବସ୍ଥାରେ ମଣିଷ ଆତ୍ମାର ଧାରଣା ସୃଷ୍ଟି କଲା, — ନିଜର ପ୍ରୟୋଜନୀୟତା ଦୃଷ୍ଟିରୁ ଏବଂ ତାକୁ ରହସ୍ୟମୟ କଲା । ସେହି କାଳରୁ ମଣିଷ ତାର ଗୂଢ଼ ରହସ୍ୟ ଉଦ୍‌ଘାଟନ କରିବାରେ ସଦା ବ୍ୟସ୍ତ । ସେ ଦିଗରେ ତାର ଉଦ୍ୟମରେ ତିଳେହେଲେ ଅବ୍ୟାହତି ନାହିଁ । ତାହା ମଧ୍ୟ ପୁଣି ତାର ସେଇ ପ୍ରୟୋଜନୀୟତା ଦୃଷ୍ଟିରୁ । ତା ନ ହେଲେ ସେ ଏମିତି ପାଗଳ ହୋଇ ତା ପଛରେ ଧାଇଁଥା'ନ୍ତା କାହିଁକି ? ତେଣୁ ତାର ସେହି ପ୍ରୟୋଜନୀୟତା ଯଦି ଦୂର ହୋଇଯାଏ, ଯେଉଁ ଅବସ୍ଥା ଆତ୍ମାକୁ ଆଣିଛି, ତାହା ଯଦି ଅପସରି ଯାଏ, ତେବେ ଆତ୍ମା କଣ ଆପେ ଆପେ ଲୁଚିଯିବ ନାହିଁ ?

ମଣିଷ ସେଇ ଆତ୍ମାର ଧାରଣାକୁ ଜଗନ୍ନାଥଙ୍କ ପ୍ରତି ଆରୋପ କରିଛି । ତାକୁ ପରମାତ୍ମା କରି ଥୋଇଛି । ତାର ବିଶ୍ୱାସ, ଥରେ ପରମାତ୍ମାଙ୍କୁ ଲାଭ କଲେ ତେଣିକି ଜଗତରେ କୌଣସି ବିଷୟ ତାହା ପକ୍ଷରେ ଅପ୍ରାପ୍ତ ରହିବ ନାହିଁ । ସେଇ ରହସ୍ୟର ଉଦ୍‌ଘାଟନରେ ସକଳ ରହସ୍ୟ ଉଦ୍‌ଘାଟିତ ହେବ । ଅନ୍ୟ ଭାଷାରେ କହିଲେ ତାହାହିଁ ହେଲା 'ମାଷ୍ଟର କିୟି', ତା' ସବୁ ତାଲା ଖୋଲି ଦେଇପାରେ ।

ଆଧ୍ୟାତ୍ମିକତା ଓ ଭୌତିକତା, ଏ ଉଭୟ ଦିଗରୁ ଜଗନ୍ନାଥଙ୍କ ଆତ୍ମାର ବିଚାର ଦରକାର । ଭାବବାଦୀ ଧାରଣାର ମୂଳ ହେଲା, ଆତ୍ମ ଉପଲବ୍‌ଧିରେ ବିଶ୍ୱ ଜଗତର ଉପଲବ୍‌ଧି । ଭୌତିକବାଦୀ ଧାରଣା ହେଲା, ବସ୍ତୁର ମର୍ମ୍ମ ଉଦ୍‌ଘାଟନ ବିନା ତାର ବାସ୍ତବତାର ଉପଲବ୍‌ଧି ନାହିଁ । ତାକୁ ଯେଉଁ ଆଖ୍ୟା ଦେଲେ ବି ତାର ଉପଲବ୍‌ଧି ଦରକାର । ଆତ୍ମା ଇତିହାସର ଅଗ୍ରଗତିରେ ଏକ ଅବଦାନ । ସମାଜର ବିକାଶରେ ଏକ ଅପରିହାର୍ଯ୍ୟ ପରିଣାମ । ଅସହାୟ ମଣିଷର ଏକମାତ୍ର ଆଶ୍ରୟ ।

ମଣିଷ ନିଜର ଆତ୍ମାକୁ ଖୋଜୁଛି, କିନ୍ତୁ ସେ ଜଗନ୍ନାଥଙ୍କ ଆତ୍ମାକୁ ଜାଣିଛି । ନବ କଳେବର ସମୟରେ ସେ ତାଙ୍କ ଆତ୍ମାକୁ ପୁରୁଣା ଘଟରୁ ନେଇ ନୂଆ ଘଟରେ ରଖେ । ତାକୁ ସେ ବୁଦ୍ଧଦନ୍ତ ବୋଲି କହେ, — ବିଶ୍ୱାସ କରେ । ତାହା ଯଦି ଜଗନ୍ନାଥଙ୍କ ଆତ୍ମା ହୁଏ, ତେବେ ତାର ରହସ୍ୟ ଉଦ୍‌ଘାଟନରେ ତ ମଣିଷ ଜଗତର ସମସ୍ତ ରହସ୍ୟ ଉଦ୍‌ଘାଟିତ କରିପାରେ, ନିଜର ଆତ୍ମାକୁ ପାଇପାରେ ।

ଜଗନ୍ନାଥ—ସାମ୍ୟ, ମୈତ୍ରୀ, ପ୍ରୀତିର ପ୍ରତୀକ ହେଲେ, ବୁଦ୍ଧଦନ୍ତ ହେଲା — କାରଣର ବିନାଶରେ ଦୁଃଖର ବିନାଶର ସଙ୍କେତ । ଦୁହିଁଙ୍କ ଭିତରେ ସାମଞ୍ଜସ୍ୟ ନ ଥିଲେ, ପ୍ରତ୍ୟେକ ଅନ୍ୟର ପରିପୂରକ ନ ହେଲେ, ସେ ଦୁହିଁଙ୍କ ମିଳନ କଦାପି ସମ୍ଭବ ହୋଇ ନ ଥାଆନ୍ତା । ତେଣୁ ବିଷୟଟିକୁ, — ଦୁହିଁଙ୍କୁ ଏକର ଦୁଇ ଅଭିନ୍ନ ଅଂଶ ଭାବେ ଅନୁସରଣ କରିବାକୁ ହେବ ।

ଜଗନ୍ନାଥ ଓ ବୁଦ୍ଧ ଏକ ସମୟର ନୁହନ୍ତି । କିନ୍ତୁ ପ୍ରାୟ ଏକ ପ୍ରକାର ସମାଜରୁ ଉଦ୍ଭବ । ଫରକ ହେଉଛି ଜଗନ୍ନାଥ ଜନ୍ମ ଆଦିମ ଟ୍ରାଇବାଲ ଗଣଗୋଷ୍ଠୀ ସମାଜର ବିଭବ କାଳରେ ହେଲାବେଳେ ବୁଦ୍ଧଙ୍କର ଆବିର୍ଭାବ ସେହି ସମାଜର ବିନାଶ ମୁହୂର୍ତ୍ତରେ — ତାର ଧ୍ୱଂସ ଓ ପତନ କାଳରେ । ତେଣୁ ଜଗନ୍ନାଥ ଭାବ ତାର ବିକାଶ କାଳର ବିଭବକୁ ପ୍ରକାଶ କଲାବେଳେ, ବୁଦ୍ଧଭାବ ତାର ଧ୍ୱଂସ କାଳର ଘୋର ଯନ୍ତ୍ରଣାରୁ ଉଦ୍ଧାରର ବାଟ ଖୋଜେ ।

ପୂର୍ବର ଟ୍ରାଇବାଲ ବା ଗଣଗୋଷ୍ଠୀ ସମାଜ ଧ୍ୱଂସ ଉପରେ ଗଢ଼ିଉଠିଛି ରାଷ୍ଟ୍ର ଶକ୍ତି । ସେଇ (ଗଣଗୋଷ୍ଠୀ) ସମାଜ ଥିବା ପର୍ଯ୍ୟନ୍ତ ରାଜଶକ୍ତିର ଉଦ୍ଭବ କିପରି ସମ୍ଭବ ନୁହେଁ ଓ ତାକୁ କିପରି ଭାଙ୍ଗିବାକୁ ହେବ ତାହା ଆମେ କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ ଦେଖିଛେ । ଏହି ରାଜଶକ୍ତିର ଉଦ୍ଭବର ଅର୍ଥ ହେଲା ଆଗେ ଯେଉଁଠି ଗଣଗୋଷ୍ଠୀ ରହିଥିଲା, ସମସ୍ତ ଗୋଷ୍ଠୀ ସ୍ୱାଧୀନ ଭାବେ ଜୀବନ ଯାପନ କରୁଥିଲା, ଖୋଲା ଖୋଲି ସମୂହଭାବେ, ନିଜର ବ୍ୟବସ୍ଥା ନିଜେ ନିର୍ବାହ କରୁଥିଲା, ଏବେ ତା ସ୍ଥାନରେ ଏକ ବାହ୍ୟ ଶକ୍ତି ଦେଖାଦେଲା, ତାକୁ ଲୁଣ୍ଠନକରି ଶାସନ କରିବା ଦିଗରେ ଖାସ୍ ଏକ ସ୍ୱତନ୍ତ୍ର ସଙ୍ଗଠନ ସୃଷ୍ଟି ହେଲା । ସେଇ ଗଣସମାଜର ଧ୍ୱଂସର ଚିତ୍ର ବିଭିନ୍ନ ବୌଦ୍ଧ ଜାତକ କାହାଣୀରେ ପ୍ରକାଶ ପାଏ । ସାମ୍ୟ, ମୈତ୍ରୀ ପ୍ରୀତିର ମୂଲ୍ୟବୋଧ ସ୍ଥାନରେ ପ୍ରତିଷ୍ଠିତ ହେଲା ବ୍ୟକ୍ତିଗତ ସମ୍ପତ୍ତିର ମୋହ, ଲୋଭ ଓ ଲୁଣ୍ଠନର

ନୀତିବୋଧ । ଆଗର ସ୍ୱେଚ୍ଛାସେବୀ ଗଣବାହିନୀ ସ୍ଥାନରେ ଏବେ ଭଡାଟିଆ ସୈନ୍ୟବାହିନୀ ଦେଖାଦେଲେ । ପୂର୍ବର ଗୋଷ୍ଠୀ ଅନୁରକ୍ତି ପରିବର୍ତ୍ତେ ପ୍ରକାଶ ପାଇଲା ରାଜଶକ୍ତି ପ୍ରତି ଅନୁରକ୍ତି । ସେହି ପ୍ରଶାସନବାହିନୀକୁ ପୋଷିବା ଲାଗି ଦରକାର ହେଲା ପ୍ରଚୁର ଅର୍ଥ । ସାଧାରଣ ଲୋକେ ହେଲେ ''ବଳି'' ପୀଡିତ, ଅର୍ଥାତ୍ ନାନାଦି କର ଟିକସ ଦ୍ୱାରା ଆକ୍ରାନ୍ତ । ଆଗେ କେବେ ଦେଖା ନଥିବା ଋଣ, ସୁଧ, ବନ୍ଧାଛନ୍ଦା ଆଦିର ଗୋଟାଏ ନୂତନ ପ୍ରଥା ଆରମ୍ଭ ହୋଇଗଲା । ଏକ 'ସୂତ୍ର' ରେ ବୁଦ୍ଧ କହିଛନ୍ତି

''ପୃଥିବୀରେ ବିଭବଶାଳୀ ଲୋକେ ଯେଉଁ ଧନ ସମ୍ପତ୍ତି ହାସଲ କରିବାରେ ଲାଗିଛନ୍ତି, ମୁଁ ଦେଖୁଛି ସେମାନେ ଭୁଲରେ ସୁଦ୍ଧା ଅନ୍ୟକୁ କିଛି ଦିଅନ୍ତି ନାହିଁ । ସେମାନେ ଅତି ବ୍ୟଗ୍ର ବ୍ୟାକୁଳ ଭାବରେ ଗଦା ଗଦା ଧନସମ୍ପତ୍ତି ଠୁଳ କରୁଛନ୍ତି । ସେମାନେ ଅଧିକରୁ ଅଧିକ ଆହୁରି ଭୋଗବିଳାସ ପଛରେ ଧାଉଁଛନ୍ତି । ରାଜା ପୃଥିବୀର ସବୁ ରାଜ୍ୟ ଦଖଲ କଲେ, ସମୁଦ୍ରକୂଳ ପର୍ଯ୍ୟନ୍ତ ସମସ୍ତ ଦେଶର ଅଧିକାରୀ ହେଲେ ମଧ ସେଥିରେ ତାଙ୍କର ତୃପ୍ତି ନାହିଁ । ସମୁଦ୍ର ଆର ପାରିର ଦେଶଗୁଡିକୁ ଗ୍ରାସ କରିବାକୁ ବ୍ୟାକୁଳ ।

''ରାଜା ଓ ବହୁ ଲୋକେ ଅତୃପ୍ତ ବାସନା ନେଇ ମୃତ୍ୟୁର ଶିକାର ହୋଇଥାଆନ୍ତି । କି ଜ୍ଞାତି ଭାଇ ବନ୍ଧୁ, ବା ସାଙ୍ଗ ସାଥୀ ମରୁଥିବା ଲୋକଙ୍କୁ କେହି ରକ୍ଷା କରି ପାରନ୍ତି ନାହିଁ । ତାଙ୍କର ଉତ୍ତରାଧିକାରୀମାନେ ସମ୍ପତ୍ତି ଘେନିଯାଆନ୍ତି । ସେ କିନ୍ତୁ ତା କାର୍ଯ୍ୟର ପୁରସ୍କାର ପାଏ । ଯିଏ ମରେ, ସେ ସଙ୍ଗରେ କିଛି ଧନ ସମ୍ପତ୍ତି ନିଏ ନାହିଁ । ତାର ସ୍ତ୍ରୀ ପିଲା କି ରାଜ୍ୟ କି ଧନସମ୍ପଦ କିଛି ତା ପଛରେ ଗୋଡାଇ ଯାଆନ୍ତି ନାହିଁ ।''

''ଧନ ଓ ଐଶ୍ୱର୍ଯ୍ୟରେ ପରିପୂର୍ଣ୍ଣ ରାଜନ୍ୟଗଣ, ଯେଉଁମାନେ ରାଜ୍ୟଶାସନ କରନ୍ତି, ସେମାନେ ପରସ୍ପର ବିରୋଧରେ ଲୋଭ ଲାଳସାକୁ ଉନ୍ମୁକ୍ତ କରିଦିଅନ୍ତି । ନିଜର ଅତୃପ୍ତ ବାସନାକୁ ସଦା ଉତ୍ସାହିତ ଓ ବର୍ଦ୍ଧିତ କରିଥାଆନ୍ତି । ଯଦି ଏହିପରି କର୍ମସବୁ ଅହରହ କୁତ୍ସିତ ଭାବନା ନେଇ ଘୃଣ୍ୟ ଲୋଭ ଲାଳସାର ଭିତରେ ଅନିତ୍ୟତାର ସ୍ରୋତରେ ସନ୍ତରଣ କରେ, ତେବେ ଏ ପୃଥିବୀରେ କିଏ ବା ଶାନ୍ତିରେ ରହିପାରେ ?''

ବୁଦ୍ଧ ସେହି ବ୍ୟକ୍ତିଗତ ସମ୍ପତ୍ତିର ଲୋଭ-ଲାଳସାର ଅଶାନ୍ତି ଅସୀମ ପିପାସାର ଭୟାବହ ପରିଣତକୁ ନିଜେ ସ୍ୱଚକ୍ଷୁରେ ଦେଖିଛନ୍ତି । ସେ କାଳରେ ରାଜଗାଦି ଲାଗି ବୁଦ୍ଧଙ୍କର ଜଣେ ପ୍ରଧାନ ବନ୍ଧୁ ରାଜା ପ୍ରସେନଜିତ୍‌ଙ୍କୁ ତାଙ୍କ ପୁତ୍ର ବିଡୁଦତ୍ତ ହତ୍ୟା କରନ୍ତି । ତାଙ୍କ ଅନ୍ୟତମ ବନ୍ଧୁ ରାଜା ବିମ୍ବିସାରଙ୍କୁ ବନ୍ଦୀ କରି ଅନାହାରରେ ମାରନ୍ତି ତାଙ୍କ ପୁତ୍ର ଅଜାତଶତ୍ରୁ । ଆଉ ଟିକେ ପରେ ସେ ଦେଖିଥାନ୍ତେ ଆଜାତଶତ୍ରୁଙ୍କୁ ହତ୍ୟା କରନ୍ତି ତାଙ୍କର ପୁତ୍ର ଉଦୟଭଦ୍ର । ପୁଣି ଉଦୟଭଦ୍ରଙ୍କୁ ହତ୍ୟା କରନ୍ତି ତାଙ୍କର ପୁତ୍ର ଅନିରୁଦ୍ଧକ । ଅନିରୁଦ୍ଧକଙ୍କୁ ହତ୍ୟା କରନ୍ତି ତାଙ୍କର ପୁତ୍ର

ନାଗଦଶକ । ଶେଷରେ ନାଗରିକମାନେ ଏ ପିତୃହତ୍ୟାର ପରମ୍ପରାରେ କ୍ରୋଧାନ୍ୱିତ ହୋଇ ପିତୃହତ୍ୟାକୁ ବନ୍ଦ କରିବା ଲାଗି ନାଗଦଶକଙ୍କୁ ଗାଦିଚ୍ୟୁତ କରି ତାଙ୍କ ସ୍ଥାନରେ ଅଧିଷ୍ଠିତ କରାନ୍ତି ତାଙ୍କ ମନ୍ତ୍ରୀ ସୂକ୍ଷ୍ମନାଗଙ୍କୁ । ଏହି ପିତୃହତ୍ୟାର ଧାରା ଆକସ୍ମିକ ନୁହେଁ, ତାହା ନୀତିଗତ । ଟ୍ରାଇବାଲ ବା ଗଣଗୋଷ୍ଠୀ ସମାଜର ନୀତିବୋଧ ସ୍ଥାନରେ ତାହା ହେଲା ଶ୍ରେଣୀସମାଜର ନୀତି ବୋଧର ପ୍ରକାଶ । ରାଜ୍ୟ ପ୍ରାପ୍ତି ଲାଗି ଗୀତା ସେହି ଜ୍ଞାତିହତ୍ୟାର ମୂଲ୍ୟବୋଧକୁ ପ୍ରଚାର କରେ । ତାକୁ ସ୍ୱୟଂ ଭଗବାନଙ୍କ ବାଣୀ କହି ପବିତ୍ର ଓ ଅଲଙ୍ଘନୀୟ କରିଦିଏ । କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର ରାଜା ତାଙ୍କର ପୁତ୍ର ଉତ୍ତରାଧିକାରୀଙ୍କ ମଧ୍ୟରେ ସେହି ସମ୍ପର୍କକୁ ସ୍ୱାଭାବିକ ବୋଲି ବିଚାରେ । ତେଣୁ ଯୁବରାଜ ପ୍ରତି ରାଜା କିପରି ସତର୍କ ରହିବେ, (ଅର୍ଥଶାସ୍ତ୍ର ୧. ୭୬) ତାର ପରାମର୍ଶ ଦେବାବେଳେ ତେଣେ ସନ୍ଦେହୀ ରାଜାଙ୍କୁ ଯୁବରାଜ କିପରି ପ୍ରତାରିତ କରିବ (୧. ୧୮ ଅର୍ଥଶାସ୍ତ୍ର) ତାର ପରାମର୍ଶ ମଧ୍ୟ ତାଙ୍କୁ ଦେଇଥାଏ ।

**ଅନାତ୍ମବାଦୀର ଆତ୍ମାରେ**

ବୁଦ୍ଧ ତେଣୁ ଲୋଭ ଲାଳସାହୀନ ଭେଦାଭେଦ ଶୂନ୍ୟ ସୁବର୍ଣ୍ଣ ଯୁଗର ସମାଜ ଚାହିଁଛନ୍ତି । ସେଠି ଆଦିମ ଗଣସମାଜର ଅସ୍ତବେଳେ ସେ ତାର ଉଦୟକାଳର ଆଲୋକର ସ୍ୱପ୍ନ ଦେଖିଛନ୍ତି । ତାର ସେଇ ଆଲୋକ, ତାର ସେଇ ନୀତିବୋଧ, — ଶ୍ରେଣୀବିଭକ୍ତ ସମାଜର ଆବିର୍ଭାବରେ ଚିରଦିନଲାଗି ନିର୍ବାପିତ ହୋଇଛି । ସମାଜର ସେହି ଆଲୋକ, ବୁଦ୍ଧଙ୍କର ସେଇ ସ୍ୱପ୍ନର ବାସ୍ତବ ଆଭାସ ମିଳିଛି ଦୁଇହଜାର ବର୍ଷ ଉତ୍ତାରୁ, ଫରାସୀ ବିପ୍ଳବ ଡାକରେ —ସ୍ୱାଧୀନତା, ସମତା,ଭ୍ରାତୃତ୍ୱର ଆହ୍ୱାନରେ । ଏହା କେବଳ ସମୟର ବ୍ୟବଧାନ ନୁହେଁ, — ଏକ ବିରାଟ ସାମାଜିକ ବିକାଶର ପର୍ଯ୍ୟାୟ, ଏକ ବୈପ୍ଳବିକ ପରିବର୍ତ୍ତନର ପରିଣାମ । ନିର୍ଦ୍ଦିଷ୍ଟ ବାସ୍ତବ ଅବସ୍ଥା ଦୃଷ୍ଟିରୁ ମଣିଷର ସେଇ ଦୁଇଟି ଲକ୍ଷ୍ୟ ଭିତରେ ଫରକ ରହିଛି, କିନ୍ତୁ ମୂଳତଃ ଦୁହେଁ ଏକଇ ଦିଗରେ ଅଭିପ୍ରେତ ।

ଇତିହାସର ସ୍ରୋତରେ ଉଜାଣି ନାହିଁ । ପୂର୍ବର ସେଇ ଗଣସମାଜ ଆଉ ଫେରିବାର ନୁହେଁ । ଯାହା ସାମାଜିକ ଜୀବନରେ ସମ୍ଭବ ନୁହେଁ, ବୁଦ୍ଧି ଚାହିଁଛନ୍ତି ତାକୁ ବ୍ୟକ୍ତିଗତ ଜୀବନର ଆଦର୍ଶ କରିବାକୁ । ତାଙ୍କର ସେହି ସଂଘ ବ୍ୟକ୍ତିଗତ ସମ୍ପତ୍ତି ହୀନ, ଭେଦଭାବ ଶୂନ୍ୟ ଆଉ ଲୋଭ ଲାଳସାହୀନ ଏବଂ ସେଇ ସାମ୍ୟ, ମୈତ୍ରୀ, ପ୍ରୀତିକୁ ଆଧାର କରି ପଲ୍ଲବିତ ହେବାର ଚେଷ୍ଟା କରିଛି । ସଂଘର ନିୟମ, ଶୃଙ୍ଖଳା, ନୀତିବୋଧ ଆତ୍ମଚେତନା ଓ କର୍ତ୍ତବ୍ୟ-ପରାୟଣ ଆଦିକୁ ବୁଦ୍ଧ ଆହରଣ କରିଛନ୍ତି ସେଇ ଟ୍ରାଇବାଲ ଆଦିମ ଗଣଗୋଷ୍ଠୀ ସମାଜରୁ । ତାକୁ ସେ ଦୁଃଖ ଓ ନିର୍ଯ୍ୟାତନାର ବିଲୋପ, ଏକତା ଓ ସମତାର ଭିତ୍ତି ଓ ମାନବିକ ଶକ୍ତି ଆଉ ମୁକ୍ତିର ମାର୍ଗ ଭାବରେ ଦେଖିଛନ୍ତି । ପଦେ କଥାରେ, ପୂର୍ବର ସେଇ ସାମ୍ୟ, ମୈତ୍ରୀ, ପ୍ରୀତି — ଜଗନ୍ନାଥ ସମାଜର ମର୍ମ ହୋଇଛି ବୁଦ୍ଧ-ସଂଘର ଧର୍ମ ।

ଟ୍ରାଇବାଲ ଗଣସମାଜର ପ୍ରତ୍ୟକ୍ଷ ଅନୁଭୂତି ଓ ତାର ନିବିଡ ପର୍ଯ୍ୟବେକ୍ଷଣ ଭିତରୁ ବୁଦ୍ଧ ନିଜ ମତର ମର୍ମ ଲାଭ କରିଛନ୍ତି । ମହାପରିନିର୍ବାଣ 'ସୂତ୍ର' ରୁ ତାର ସୂଚନା ମିଳିଥାଏ । ଟ୍ରାଇବାଲ ଗଣସମାଜର ଏକ ଗଣଗୋଷ୍ଠୀ ବାଜ୍ଜିକୁ ଅଜାତଶତ୍ରୁ ଅଧିକାର କରିବାକୁ ଚାହିଛନ୍ତି, ମାତ୍ର ପାରିନାହାନ୍ତି । ତାଙ୍କର ଅଭିଯାନ ପୂର୍ବରୁ ସେ ତାଙ୍କର ମନ୍ତ୍ରୀ ବ୍ରାହ୍ମଣ ବର୍ଷାକାରଙ୍କୁ ବୁଦ୍ଧଙ୍କ ପାଖକୁ ପଠାଇଛନ୍ତି ଆଶୀର୍ବାଦ ଲାଭ ଉଦ୍ଦେଶ୍ୟରେ । ବୁଦ୍ଧଙ୍କଠାରୁ ବର୍ଷାକାର କୌଣସି ଉତ୍ତର ପାଇନାହାନ୍ତି । ତାଙ୍କୁ ବିନା ଆଶୀର୍ବାଦରେ ଫେରିବାକୁ ପଡିଛି । ତାପରେ ବୁଦ୍ଧ ଶିଷ୍ୟ ଆନନ୍ଦକୁ ଶିକ୍ଷା ଦେଇ କହିଛନ୍ତି, ଯେତେଦିନ ପର୍ଯ୍ୟନ୍ତ ବାଜ୍ଜିମାନେ ଏକତ୍ର ମିଳିମିଶି ଚାଲିଛନ୍ତି , ତାଙ୍କର ଗୋଷ୍ଠୀରେ ସାଧାରଣ ସଭାରେ ବରାବର ମିଳିତ ହେଉଛନ୍ତି, ସେ ପର୍ଯ୍ୟନ୍ତ ତାଙ୍କର ପତନ ଆଶା କରାଯାଇ ନ ପାରେ । ବର୍ଷାକାର ଚାଲିଗଲା ଉତ୍ତାରୁ ବୁଦ୍ଧ ଭିକ୍ଷୁମାନଙ୍କୁ ଏକାଠି କରି ଶିକ୍ଷା ଦେଇଛନ୍ତି । ଯେଉଁ ସାତୋଟି ବିଷୟ ବୁଦ୍ଧ ବାଜ୍ଜିଗୋଷ୍ଠୀରେ ଲକ୍ଷ୍ୟ କରିଛନ୍ତି, ସେ ତାହା ହିଁ ଭିକ୍ଷୁଙ୍କୁ କହିଛନ୍ତି । ଯେଉଁ ବିଷୟଗୁଡିକ ତାଙ୍କ ଭିତରେ ଭେଦାଭେଦ ହିଂସାଦ୍ୱେଷ ଜାଗ୍ରତ କରେ ନାହିଁ, ସେମାନଙ୍କୁ ଐକ୍ୟବଦ୍ଧ କରେ ଏବଂ ଯାହା ସେମାନଙ୍କୁ ଅପରାଜେୟ କରିଛି, ତାହା ସେ ବର୍ଣ୍ଣନା କରିଛନ୍ତି । ତାର ଏକମାତ୍ର ଅର୍ଥ ହେଲା — ଯେ ପର୍ଯ୍ୟନ୍ତ ସମସ୍ତେ ଭାଇ ଭାଇ ହୋଇ ଏକମନ ଏକପ୍ରାଣରେ ଚାଲିଛନ୍ତି, ସମସ୍ତେ ଏକାଠି ବସି ଏକ ନିଷ୍ପତ୍ତି ନିଅନ୍ତି ଓ ସଂଘର କର୍ତ୍ତବ୍ୟ ପାଳନ କରନ୍ତି, ଆଗରୁ ନିଷ୍ପତ୍ତି ନ ହୋଇଥିବା କୌଣସି ବିଷୟ କରନ୍ତି ନାହିଁ, କିମ୍ବା କୌଣସି ନିଷ୍ପତ୍ତି କାର୍ଯ୍ୟକାରୀ ନ କରି ରହନ୍ତି ନାହିଁ, ସଂଘର ସ୍ଥିରୀକୃତ ନିୟମକୁ ଅନୁସରଣ କରନ୍ତି ... ଏସବୁ ପ୍ରଚଳିତ ଥିବାଯାଏ ତାଙ୍କର ପତନ ନାହିଁ । ତେଣୁ ସେହି ସଂଘର ଅର୍ଥ ହେଉଛି ଟ୍ରାଇବାଲ ସମୁଦାୟ । ବୁଦ୍ଧଙ୍କ ସଂଘ ଯେ ଏଇ ଟ୍ରାଇବାଲ ନୀତି, ନିୟମ ଓ ତାରି ଢାଞ୍ଚାରେ ତିଆରି, ତା ଦିବାଲୋକ ଭଳି ସୁସ୍ପଷ୍ଟ ।

ଅତଏବ, ସେଇ ଟ୍ରାଇବାଲ ଗଣ - ସମାଜର ମର୍ମ୍ମ, —ଯାହା ବୌଦ୍ଧ ସଂଘର ଧର୍ମ୍ମ, ତାହାହିଁ ପ୍ରକାଶ ପାଇଛି ଜଗନ୍ନାଥଙ୍କ ଆତ୍ମା, ବୁଦ୍ଧଦନ୍ତ ରୂପରେ ।

ବୁଦ୍ଧଦନ୍ତ ଯଦି ଜଗନ୍ନାଥଙ୍କ ଆତ୍ମା ହୁଏ, ତେବେ ସେହି ଆତ୍ମାର ଅନ୍ତର୍ନିହିତ ତାତ୍ପର୍ଯ୍ୟ ପ୍ରକାଶ ପାଏ ତାର ଅଭିବ୍ୟକ୍ତିରେ ।

ତାର ସେହି ଅଭିବ୍ୟକ୍ତି କେବଳ ବ୍ୟକ୍ତିଗତ ସମ୍ପତ୍ତି, ଲୋଭ ଲାଳସା, ହିଂସା ଦ୍ୱେଷର ପରିହାରକୁ ଘୋଷଣା କରେ ନାହିଁ; କେବଳ ସାମ୍ୟ, ମୈତ୍ରୀ, କରୁଣା, ଅହିଂସା ଆଦି ନୀତିବୋଧକୁ ପ୍ରଚାର କରେ ନାହିଁ, ଅନ୍ୟ ଦିଗରେ ସେହି ଦନ୍ତ-ଆତ୍ମାର ଅଭିବ୍ୟକ୍ତି, ଖୋଦ୍ ଆତ୍ମାର ସେଇ ଧାରଣାକୁ ଅସ୍ୱୀକାର କରେ, ତାର ଅସାରତାକୁ ପ୍ରକାଶ କରେ । ତେଣୁ ଆତ୍ମାର ଅମରତ୍ୱ, ତାର ଅବୋଧ, ଅବ୍ୟକ୍ତ, ଅଚିନ୍ତ୍ୟ ଆଦି ଯେତେ ବିଚାର ରହିଛି, ବୁଦ୍ଧଙ୍କ ନିକଟରେ ସେସବୁ କେବଳ ଗୋଟାଏ ଶବ୍ଦ ଆଡମ୍ବର, ଅର୍ଥହୀନ କଳ୍ପନା ମାତ୍ର ।

ବୁଦ୍ଧ ଆତ୍ମାକୁ ପ୍ରତ୍ୟାଖ୍ୟାନ କରନ୍ତି, ତାଙ୍କର ଅନାତ୍ମବାଦ, କୌଣସି କାଳ୍ପନିକ କାରଣ ବା ବସ୍ତୁବାଦ ଭିତ୍ତିର ନୁହେଁ । ସେ ତାହା କରନ୍ତି ଗୋଟାଏ ଅଲଘଂନୀୟ ନିୟମର ବଳରେ —ପ୍ରତୀତ୍ୟସମୁତ୍‌ପାଦ — ବିଶ୍ୱଜନୀନ କାରଣବାଦ ଦ୍ୱାରା । ଯିଏ ପ୍ରତୀତ୍ୟସମୁତ୍‌ପାଦକୁ ଦେଖେ, ସେ ଧର୍ମକୁ ଦେଖେ । ଯିଏ ଧର୍ମକୁ ଦେଖେ, ସେ ପ୍ରତୀତ୍ୟସମୁତ୍‌ପାଦକୁ ଦେଖେ । ବିଶ୍ୱଜନୀନ କାରଣବାଦ ଅନୁସାରେ ପ୍ରତ୍ୟେକ ବିଷୟ ତାର କାରଣ ଉପରେ ନିର୍ଭର କରେ । ତେଣୁ କିଛି ଚିରନ୍ତନ ନୁହେଁ । ସବୁ ଗୋଟାଏ ପ୍ରବାହ ମାତ୍ର । ପ୍ରତି ମୁହୂର୍ତ୍ତରେ ବଦଳି ବଦଳି ଚାଲିଛି । ତେଣୁ ତାହା ଏକ ସମୟରେ ଅସ୍ତି ନାସ୍ତି ଉଭୟଙ୍କୁ ଧାରଣ କରେ ।

ଯଥା, ପ୍ରତ୍ୟେକଟି ବିଷୟ ବା ଘଟଣା ପଛରେ ତାର କାରଣ ରହିଛି । ତା ପଛରେ ଥିବା ନିହିତ କାରଣ ଉପରେ ତାହା ନିର୍ଭରଶୀଳ । ବିଶ୍ୱଜନୀନ କାରଣବାଦ ନିୟମ ଅନୁସାରେ ତାହା (ସେଇସବୁ ଅବସ୍ଥା,ସର୍ତ୍ତ ବା କାରଣ) ନିଜେ ସ୍ଥାୟୀ ନୁହନ୍ତି । ଯେହେତୁ ସେମାନେ ମଧ୍ୟ ସେହିପରି ତାଙ୍କ ପଛରେ ଥିବା ଅବସ୍ଥା, ସର୍ତ୍ତ ଓ କାରଣ ଉପରେ ନିର୍ଭର କରନ୍ତି । ସମସ୍ତ ଜଗତଟା ଏହିପରି ନିର୍ଭରଶୀଳ ପ୍ରବାହ ଭିତରେ ଗତି କରେ ।

ତେଣୁ , କୌଣସି ଅବସ୍ଥା ଯାହା ଆସେ, ତାହା ନିଜେ ସ୍ଥିର ନୁହେଁ , ଯିଏ ଆସେ, ସିଏ ତାର ପ୍ରକୃତି ହେତୁ ଅସ୍ଥିର ଅବସ୍ଥାର ଅଧୀନ । ନିଜେ ଯିଏ ଅସ୍ଥିର, ତାର ଅସ୍ତିତ୍ୱର ବିଲୋପ ସ୍ୱତଃସିଦ୍ଧ (ନିରୋଧ) । ଅତଏବ, ଏହା ଏକ ସ୍ୱାଭାବିକ ବିଶ୍ୱଜନୀନ ନିୟମ, — ସେଇ ଭାବରେ 'ସମୁଦାୟ ଓ ନିରୋଧର' ପ୍ରକ୍ରିୟା ହେଉଛି ବିଶ୍ୱଜନୀନ ଅସ୍ଥିରତାର ନୀତି । ଯାହା ଆସୁଛି, ତାର ଚାଲିଯିବାଟା ଅତି ସୁନିଶ୍ଚିତ । ଯିବା ଆସିବାର ସେ ଏକ ଅସରନ୍ତି ପ୍ରକ୍ରିୟା । ଦ୍ୱନ୍ଦ୍ୱାତ୍ମକ ନୀତି ଅନୁସାରେ ଯାହାକୁ କହନ୍ତି—ବିଲୁପ୍ତିର ବିଲୁପ୍ତି । (Negation of Negation)

ବୁଦ୍ଧଙ୍କର ସେଇ ବିଶ୍ୱଜନୀନ କାରଣବାଦ ପ୍ରତୀତ୍ୟସମୁତ୍‌ପାଦ — ପରମ କାରଣବାଦକୁ ପ୍ରତ୍ୟାଖ୍ୟାନ କରେ । ବିଶ୍ୱଜନୀନ କାରଣ ଅନୁଯାୟୀ ଗୋଟାଏ ପରମ କାରଣ, (ପରମ ବ୍ରହ୍ମ, ପରମ ଆତ୍ମା) ବୋଲି କିଛି ନାହିଁ । ପ୍ରତ୍ୟେକ ଜିନିଷ ଅସ୍ତି ନାସ୍ତି, — ଅଛି ଓ ନାହିଁର ଗୋଟାଏ ପ୍ରକ୍ରିୟା ମାତ୍ର — ଗୋଟାଏ ପ୍ରବାହ । ପ୍ରଦୀପର ଶିଖା ଭଳି ପ୍ରତି ମୁହୂର୍ତ୍ତରେ ଜଳିଲା ଲିଭିଲା ଓ ଲିଭିଲା ଜଳିଲାର ଏକଇ ପ୍ରବାହରେ ଅଙ୍ଗୀଭୂତ ।

ତେଣୁ ଆତ୍ମ- ପ୍ରକାଶନ ଓ ଆତ୍ମ- ବିଲୁପ୍ତିର ପ୍ରକ୍ରିୟା ଭିତରେ କୌଣସିଟିର ସ୍ଥାୟୀତ୍ୱର ପ୍ରଶ୍ନ ନାହିଁ । ଶ୍ରେଣୀବିଭକ୍ତ ସମାଜର ସମସ୍ତ ଦୁଃଖର କାରଣ ସେଇ ନୀତି ଅନୁଯାୟୀ ଲୋପ ପାଇବାକୁ ବାଧ୍ୟ । ବୁଦ୍ଧଙ୍କର ସେଇ ପ୍ରତୀତ୍ୟ-ସମୁତ୍‌ପାଦ ଏକ ମହାନ୍ ତାତ୍ତ୍ୱିକ ଅସ୍ତ୍ର । ତାହା ଆତ୍ମା, ବ୍ରହ୍ମ, ରାଜା, ସାମନ୍ତ, ଜାତି,

ଧର୍ମ , ଦୁଃଖ, ଦୈନ୍ୟ, ଶୋଷଣ, ଅତ୍ୟାଚାର କୌଣସି ଜିନିଷଟିକୁ ଚିରନ୍ତନ ଆଖ୍ୟା ଦେବା ପରିବର୍ତ୍ତେ ତାଙ୍କର ଅପରିହାର୍ଯ୍ୟ ବିଲୁପ୍ତିକୁ ଘୋଷଣା କରେ ।

ଅତଏବ ସେଇ ବୁଦ୍ଧମତ, ଯାହା ଶ୍ରେଣୀବିଭକ୍ତ ସମାଜର ଆରମ୍ଭରେ ଦେଖା ଦେଇଛି, ତାହା ଅଢ଼େଇ ହଜାର ବର୍ଷ ପରେ ସେହି ଶ୍ରେଣୀବିଭକ୍ତ ସମାଜର ଚୂଡ଼ାନ୍ତ ପର୍ଯ୍ୟାୟରେ ପ୍ରକାଶ ପାଇଛି, — ଦ୍ୱନ୍ଦ୍ୱାତ୍ମକ ନିୟମ ରୂପରେ ।

ତେଣୁ, ବୁଦ୍ଧଦନ୍ତ ଭାବରେ ଜଗନ୍ନାଥଙ୍କ ଆତ୍ମାର ନିଦର୍ଶନ ହେଉଛି ଅସଲରେ ସେହି ଆତ୍ମାର ଅଳୀକତାର ସୂଚନା । ଏକ ବୈପ୍ଳବିକ ସଙ୍କେତ । ତାହା କୌଣସି ଈଶ୍ୱର, ବ୍ରହ୍ମ ବା କିଛି ଅତି ପ୍ରାକୃତିକ ଶକ୍ତିକୁ ପ୍ରକାଶ କରିବା ପରିବର୍ତ୍ତେ ସେହି ବିଶ୍ୱାସ ମୂଳରେ କୁଠାରାଘାତ କରେ । ତାହା ହେଉଛି ପ୍ରତିତ୍ୟସମୁତ୍‌ପାଦ —ବିଶ୍ୱଜନୀନ କାରଣବାଦର ନିୟମ । ବିକାଶ ଓ ବିଲୁପ୍ତର ଅହରହ ପ୍ରକ୍ରିୟା ମଧ୍ୟରେ ଉତ୍ତରୋତ୍ତର ଅଗ୍ରଗତିର ଏକ ଅପରିହାର୍ଯ୍ୟ ନିର୍ଦ୍ଦେଶ । ସାମ୍ୟ ମୈତ୍ରୀ ପ୍ରୀତିର ଘଟ ଭିତରେ ସେଇ ପ୍ରତୀତ୍ୟସମୁତ୍‌ପାଦ, 'ଆତ୍ମାହୀନ ଆତ୍ମାର' ପ୍ରବେଶ ଜଗନ୍ନାଥଙ୍କୁ ପ୍ରକୃତରେ ଜଗତର ନାଥ କରିବାରେ କେବଳ ପ୍ରୟୋଜନୀୟ ଅବସ୍ଥା ସୃଷ୍ଟି କରେ ନାହିଁ, ତାଙ୍କର ସେଇ କ୍ରମାଗତ ବିକାଶକୁ ମଧ୍ୟ ସୁନିଶ୍ଚିତ କରିଥାଏ ।

ଅନ୍ୟ ଦିଗରେ, ଜଗନ୍ନାଥଙ୍କ ଦେହରେ ବୁଦ୍ଧଙ୍କର ପ୍ରବେଶ ସେ ଦୁହିଁଙ୍କର ଭାବାତ୍ମକ ମିଳନକୁ ପ୍ରକାଶ କରେ । ତାହା ମଧ୍ୟ ବୌଦ୍ଧଭାବର ଦୁର୍ବଳତାର ନିଦର୍ଶନ । ତଦ୍ୱାରା ଭାବବାଦୀ ଦର୍ଶନ, ବ୍ରାହ୍ମଣ୍ୟ ଧର୍ମ ଏବଂ ସାମାଜିକ ନୀତିବୋଧ, ଯାହା ଜଗନ୍ନାଥ ଜୀବନର ଏକ ଅଦୃଶ୍ୟ ଅପରିହାର୍ଯ୍ୟ ଅଙ୍ଗ, ତାକୁ ବୌଦ୍ଧଭାବ ଅଲକ୍ଷ୍ୟରେ ସ୍ୱୀକାର କରିଯାଏ । ବୌଦ୍ଧଭାବର ନିଜର ତାତ୍ତ୍ୱିକ ଦୁର୍ବଳତା ଓ ସେହି ଶ୍ରେଣୀବିଭକ୍ତ ସମାଜର ବୈର ଚରିତ୍ର ହେଉଛି ତାର ମୁଖ୍ୟ କାରଣ ।

ବୁଦ୍ଧଙ୍କ ଧର୍ମପଦ କହେ, ''ଆମେ ଯାହା, ତାହା ଆମେ ଯାହା ଭାବୁ ତାରହିଁ ଫଳ । ଆମ ଚ଼ିନ୍ତା ଉପରେ ତାର ପ୍ରତିଷ୍ଠା । ଆମ ଚିନ୍ତାକୁ ନେଇ ତାର ଗଠନ । କୁ-ଚିନ୍ତାକୁ ନେଇ ଯିଏ କାର୍ଯ୍ୟ କରେ ବା କଥା କହେ, ଦୁଃଖ ତାକୁ ଅନୁସରଣ କରେ । ଯେପରି ଶକଟର ଚକ ଅନୁସରଣ କରିଚାଲେ ବଳୀବର୍ଦ୍ଧ ପଦଚିହ୍ନକୁ । ''ଆମେ ଯାହା, ତାହା ଆମେ ଯାହା ଭାବୁ, ତାର ହିଁ ଫଳ । ଆମର ଚିନ୍ତା ଉପରେ ପ୍ରତିଷ୍ଠିତ । ଆମର ଚିନ୍ତାକୁ ନେଇ ତାର ଗଠନ । ସୁ-ଚିନ୍ତାକୁ ନେଇ ଯିଏ କାର୍ଯ୍ୟ କରେ ବା କଥା କହେ, ସୁଖ ତାକୁ ଅନୁସରଣ କରେ, —ଯେପରି ଶକଟର ଚକ ଅନୁସରଣ କରିଚାଲେ ବଳୀବର୍ଦ୍ଧର ପଦଚିହ୍ନକୁ ।''

(ଧର୍ମପଦ, ୧ ଓ ୨)

ଏହାର ଏକମାତ୍ର ଅର୍ଥ ହେଲା, କୁଚିନ୍ତାରୁ ଦୁଃଖ ଓ ସୁଚିନ୍ତାରୁ ସୁଖର ଉଦ୍ଭବ । ତେଣୁ ଦୁଃଖ ଲାଗି ମଣିଷ ନିଜେ ବା ସେହି ଦୁଃଖୀ ଲୋକ ନିଜେ ଦାୟୀ ।

ତାର ଚିନ୍ତା, ଭାବନାହିଁଦାୟୀ ସାମାଜିକ ଶୋଷଣ ଓ ଉତ୍ପୀଡନ ଲାଗି ସେହି ଶୋଷଣକାରୀ ଲୋକେ ଦାୟୀ ନୁହନ୍ତି । ତେଣୁ ସେଥିରୁ ମୁକ୍ତି ଲାଗି ସମାଜର ପରିବର୍ତ୍ତନ ଦରକାର ନାହିଁ, କେବଳ ନିଜକୁ ପରିବର୍ତ୍ତନ କରିପାରିଲେ ହେଲା । ଧର୍ମ୍ମପଦ ଆହୁରି ପରିଷ୍କାର କରି କହେ । ''ମତେ ଗାଳିଦେଉଛ, ମତେ ମାଡ ମାରୁଛ, ମତେ ଜିଣୁଅଛ ବା ମୋର ପଦାର୍ଥଗୁଡିକ ଚୋରି କରି ନେଉଛ ଇତ୍ୟାଦି ଯିଏ ଭାବେ, ତାର ଶତ୍ରୁତା ବଢେ । ମତେ ଗାଳି ଦେଉଛ, ମତେ ଜିଣୁଅଛ, ମୋର ସମସ୍ତ ଚୋରି କରୁଛ ଇତ୍ୟାଦି ଯିଏ ନ ଭାବେ, ତାର ଶତ୍ରୁଭାବ ଦୂର ହୁଏ । (୩ ଓ ୪) ତା ମାନେ ନିଜେ ଭଲ ହେଲେ ତୁମେ ସୁଖୀ ହେବ, ଜଗତ ଭଲ ବୋଧ ହେବ । ଯାହାକୁ କହନ୍ତି ନିଜେ ଭାବିଲେ ଗୋବରଗାଡିଆ ଗଙ୍ଗା — ଏକ ନିପଟ ଭାବବାଦୀ ଦୃଷ୍ଟିକୋଣ ।

ତେଣୁ ଅସତ୍ ସମାଜରେ ସତ୍ ବା ଭଲହେବା ଲାଗି ବୁଦ୍ଧଙ୍କ ଉପଦେଶ । ଏହା ବାଘକୁ ଘାସ ଖାଇବାକୁ କହିଲା ଭଳି । ଦେଶର ଶାସକ ରାଜା ଓ ସମାଜର ଅଧିପତି ବ୍ରାହ୍ମଣଙ୍କ କ୍ଷେତ୍ରରେ 'ଭଲ ହେବା'ର ଆବଶ୍ୟକତା ନାହିଁ । ତେଣେ ଉତ୍ପୀଡିତ ପ୍ରଜା ଓ ଚିର ପତିତ ଶୂଦ୍ରଙ୍କ କ୍ଷେତ୍ରରେ 'ଭଲ ହେବାର' ଉପାୟ ନାହିଁ । କାରଣ, ଦୁହିଁଙ୍କ ଲାଗି ଅନୁକୂଳ ସାମାଜିକ ବ୍ୟବସ୍ଥାର ଅଭାବ । ତେଣୁ ସମସ୍ତେ ସେହି ଅବସ୍ଥା ଅନୁଯାୟୀ ସେମିତି ଚାଲିଛନ୍ତି । ଦେହ, ମନ, ହୃଦୟ ଥିବାଯାଏ 'ତୃଷ୍ଣା'ର ପରିହାର ନାହିଁ । ବୁଦ୍ଧଙ୍କ ଉପଦେଶକୁ ଯାନ୍ତ୍ରିକ ଭାବେ ବ୍ୟାଖ୍ୟା କରି ତାକୁ ମନ୍ତ୍ର ରୂପେ ଧରି ବ୍ୟକ୍ତିଗତ ନିର୍ବାଣର ପଥ ଯୋଡିଛନ୍ତି ବୌଦ୍ଧ ସନ୍ନ୍ୟାସୀଗଣ, — ହୀନଯାନମାନେ । ମହାଯାନପନ୍ଥୀ ଲୋକଙ୍କ ସହିତ ମିଶିଯାଇ ଶେଷରେ ପରିବର୍ତ୍ତନଶୀଳତା ପରିବର୍ତ୍ତେ ଅବତାରବାଦରେ ପହଞ୍ଚିଛନ୍ତି । ବୁଦ୍ଧଙ୍କୁ ଈଶ୍ୱର କରି ତାଙ୍କର ପାର୍ଶ୍ୱଚରଭାବେ ବହୁ ଦେବଦେବୀ ସୃଷ୍ଟି କରିଛନ୍ତି । ଏପରିକି ତନ୍ତ୍ରର ଯୋଗିନୀ ବି ଦେଖା ଦେଇଛନ୍ତି । ଶେଷକୁ ବୌଦ୍ଧ ଓ ହିନ୍ଦୁ ଧର୍ମର ଏପରି ମିଳନ ଘଟିଛି ଯେ, ଦୁହିଁଙ୍କୁ ଅଲଗା କରି ଦେଖିବା କଷ୍ଟକର । ଫଳରେ ଜଗନ୍ନାଥଙ୍କଠାରେ ବୁଦ୍ଧଙ୍କର ପ୍ରକାଶରେ ସେ ଏକ ଅବତାର ।

ଅଥଚ ଜଗନ୍ନାଥ ହାତ ଗୋଡହୀନ ମାଦଳ ହେଲେ ବି ସେ ପଙ୍ଗୁ ନୁହନ୍ତି । କାରଣ, ତାଙ୍କର 'ଆତ୍ମା' କୌଣସି ବଦ୍ଧମୂଳ ଧରଣାର ପ୍ରତୀକ ନୁହେଁ । ନିଜର ସ୍ୱାର୍ଥ ଲାଗି ନ୍ୟସ୍ତସ୍ୱାର୍ଥ ତାଙ୍କୁ କିନ୍ତୁ ପଙ୍ଗୁ ବୋଲି ପ୍ରଚାର କରେ । ନିଜର ସ୍ୱାର୍ଥର ଶିକୁଳିରେ ତାଙ୍କୁ ବାନ୍ଧି ରଖିବାକୁ ଚାହେଁ । ଅଥଚ ତାଙ୍କର ସେଇ 'ଆତ୍ମା', ଅହରହ ପରିବର୍ତ୍ତନର ଅନ୍ତର୍ନିହିତ ଇଙ୍ଗିତ, ଚିରନ୍ତନ ବିକାଶର ସ୍ୱତଃସ୍ଫୁର୍ତ୍ତ ପ୍ରବାହ, ନିରବଚ୍ଛିନ୍ନ ଗତିର ସହଜାତ ନିର୍ଦ୍ଦେଶ, — ଯେହେତୁ ତାହା ପ୍ରତୀତ୍ୟସମୁତ୍ପାଦ — ମାନବର ଲାଗି ସଦା ପରିବର୍ତ୍ତନର ସଙ୍କେତ । ତାକୁ ପ୍ରତିହତ କରିବା ଦିଗରେ ନ୍ୟସ୍ତସ୍ୱାର୍ଥ ଅସଂଖ୍ୟ ପୋଥିପୁରାଣ ରଚନା କରିଛି, ବହୁ କାହାଣୀ କିମ୍ବଦନ୍ତୀ ସୃଷ୍ଟି କରିଛି, ସେ ଦିଗରେ ଇତିହାସକୁ ବିକୃତ କରିବାର ସଚେତନ ପ୍ରଚେଷ୍ଟା ଆଜି ବି ଅବ୍ୟାହତ ରହିଛି ।

॥ ୧୯୯ ॥

କିନ୍ତୁ ଜଗତରେ ଏକମାତ୍ର ପରିବର୍ତ୍ତନହିଁ ଚିର ଅମର, ଯେହେତୁ ତା' ଅପରିବର୍ତ୍ତନୀୟ । ପରିବର୍ତ୍ତନତାର ବିକାଶ ହିଁ ନିତ୍ୟ ଅମୃତମୟ, ଯେହେତୁ ଜ୍ବଳନ ହିଁ ଚିର ଭାସ୍ୱାନ, — ଆଉ ସିଏ ହେଉଛନ୍ତି ସ୍ୱୟଂ ସେଇ ଜଗନ୍ନାଥ — ଯିଏ ଆଜି ସର୍ବୋଚ୍ଚ ଅନ୍ଧବିଶ୍ୱାସର ଆକର ।

ଅନ୍ୟ ଦିଗରେ ନିଜ ସ୍ଥିତିରେ ସଦା ପରିବର୍ତ୍ତନଶୀଳ, ନିଜ ଗତିରେ ନିତ୍ୟ ବିକାଶଶୀଳ ଏବଂ ନିଜର ଲକ୍ଷ୍ୟରେ ଚିର ନବୀନ ଆଉ ଦୀପ୍ତିମାନ ଯଦି କିଏ ଥାଏ, ସିଏ ଅନ୍ୟ କେହି ନୁହେଁ, ସିଏ ହେଉଛି ସ୍ୱୟଂ ସେଇ ମଣିଷ । ଯିଏ ଆଜି ସର୍ବୋଚ୍ଚ ଅମନୁଷ୍ୟତା ଦ୍ୱାରା ଆବଦ୍ଧ ।



# ଦଶମ ପର୍ବ

## ସବୁର ମୂଳେ ସ୍ୱଭାବ

ଜଗନ୍ନାଥଙ୍କୁ ଜାଣିବା ଲାଗି ଈଶ୍ୱରଙ୍କ ଆଲୋଚନା ଦରକାର, ଯେହେତୁ ଜଗନ୍ନାଥ ସାକ୍ଷାତ୍ ଈଶ୍ୱର । ଈଶ୍ୱରଙ୍କ ଅସ୍ତି ନାସ୍ତି ଘେନି ଆଲୋଚନାର ସୀମା ନାହିଁ । କାରଣ ସେ ଯେପରି ପ୍ରୟୋଜନସିଦ୍ଧ, ସେହିପରି ସଂଶୟଯୁକ୍ତ ।

ଈଶ୍ୱର-ନିରୀଶ୍ୱରବାଦର ପ୍ରଶ୍ନ ବହୁ ପ୍ରାଚୀନ । ବୁଦ୍ଧଙ୍କ ପୂର୍ବର । ତାର ପ୍ରଥମ ସୂଚନା ମିଳେ ଶ୍ୱେତାଶ୍ୱତର ଉପନିଷଦରେ, ଖ୍ରୀ:ପୂ: ଷଷ୍ଠ ଶତାବ୍ଦୀରେ । ପରବର୍ତ୍ତୀ କାଳରେ ତାହାହିଁ ହୋଇଛି ସବୁ ସଂଘର୍ଷର ଭିତ୍ତି । ସାଧାରଣ ମତରେ ଈଶ୍ୱର ହିଁ ହେଲେ ପରମ ସତ୍ୟ, ଅନ୍ତିମ ବାସ୍ତବତା । ସେଥି ସହିତ, ତା ବିପକ୍ଷରେ ଆଉ ତିନୋଟି ବିଷୟ ଅନ୍ତିମ ବାସ୍ତବତା ଭାବେ ପ୍ରକାଶ ପାଏ । ଏକରେ ଭୌତିକ ଉପାଦାନ 'ଭୂତ', ଦୁଇରେ ଆଦ୍ୟବସ୍ତୁ — ପ୍ରକୃତି, ତିନିର ସ୍ୱଭାବ ଓ ଭୂତ ପ୍ରକୃତି ସ୍ୱଭାବ, ଏ ତିନୋଟିଯାକ ଲୋକାୟତ ମତ, ଚାର୍ବାକ, ବାର୍ହସ୍ପତ୍ୟ ମତ ଅନ୍ତର୍ଭୁକ୍ତ । ଏବଠୁ ଆରମ୍ଭ ହେଲା ଏ ମତଗୁଡିକ ମଧ୍ୟରେ ବିଧିବଦ୍ଧ ସଂଘର୍ଷ । ବିଶ୍ୱର କାରଣ କ'ଣ ? ତା'ର ମୂଳ କେଉଁଠି ? କର୍ତ୍ତା କିଏ ? ଈଶ୍ୱର ନା — ଅନ୍ୟ କିଏ — ସ୍ୱଭାବ ?

ଈଶ୍ୱରଙ୍କ ବିଷୟରେ କହିବାର କିଛି ନାହିଁ । ଅଧିକାଂଶ ଲୋକ ତାଙ୍କ ବିଷୟରେ ଅବଗତ । ତାଙ୍କ ଉପରେ ସମସ୍ତଙ୍କର ଅଗାଧ ବିଶ୍ୱାସ । କିନ୍ତୁ ସ୍ୱଭାବ ହେଉଛି ପ୍ରତ୍ୟେକ ଜିନିଷ ବା ବସ୍ତୁର ଅନ୍ତର୍ନିହିତ ପ୍ରକୃତି । ତା' ସହଜାତ । ଅଭୀଷ୍ଟ ସାଧନରେ ନିହିତ । ସ୍ୱଭାବକୁ ତାର ସେଇ ବସ୍ତୁଠାରୁ ଅଲଗା କରିହେବ ନାହିଁ । ତାହାହିଁ ତାର ପ୍ରକୃତି ।

ଈଶ୍ୱର ଧାରଣା କିନ୍ତୁ ଅତି-ପ୍ରାକୃତିକ, ତାହା ପ୍ରକୃତିଠାରୁ ସ୍ୱତନ୍ତ୍ର । ସଂପୂର୍ଣ୍ଣ ଭିନ୍ନ । ତେଣୁ ବିଶ୍ୱର ମଧ୍ୟରେ ସେଇ ସଂଘର୍ଷ ହେଉଛି ଅସଲରେ ପ୍ରାକୃତିକ ଓ ଅତି-ପ୍ରାକୃତିକ ମଧ୍ୟରେ ବିରୋଧିତା । ଅନ୍ୟ ଦିଗରୁ ଦେଖିଲେ ବିଶ୍ୱାସ ଓ ବିଜ୍ଞାନ ମଧ୍ୟରେ ବିରୋଧିତା । ସେହି ବିରୋଧିତା ବିଭିନ୍ନ ରୂପରେ ବିଦ୍ୟମାନ ।

ସ୍ୱଭାବ ହେଲା ସବୁର ମୂଳ । ପ୍ରତ୍ୟେକ ଜିନିଷର ପ୍ରାକୃତିକ ଗୁଣ, ସେ ସ୍ୱଭାବ ହେଉଛି ତାର ସ୍ଥିତି । ତାର ସ୍ୱଭାବ ଯୋଗୁହିଁ ତାହା ଆପେ ରୂପାନ୍ତରିତ ହୁଏ । ତାହା ତାର ସେଇ ସ୍ୱଭାବର କାର୍ଯ୍ୟର ଫଳ । ସ୍ୱଭାବ ବିନା କୌଣସି ନିୟମିତ ଘଟଣା ନାହିଁ । ପ୍ରତ୍ୟେକ ଜିନିଷ ତାର ନିୟମକୁ ଅପେକ୍ଷା କରେ । ଅର୍ଥାତ୍ ସେ ତାର ସ୍ୱଭାବରେ ହିଁ ରୂପାୟିତ । ଯେପରି ଜଳ ଶୀତଳ, ଅଗ୍ନି ଉତ୍ତପ୍ତ ଇତ୍ୟାଦି ।

ସ୍ୱଭାବ ସହିତ ଭୌତିକ ଦୃଷ୍ଟିକୋଣର ମିଳନ ଅତି ସ୍ୱାଭାବିକ । କାରଣ, ସ୍ୱଭାବ ହେଉଛି କୌଣସି ଏକ ଭୂତ ବା ବସ୍ତୁର ସ୍ୱଭାବ । ବସ୍ତୁହିଁ ତାର ଆଧାର । ତେଣୁ ତାର ଦୃଷ୍ଟିକୋଣ ଭୌତିକ ଦୃଷ୍ଟିକୋଣ । ମହାଭାରତ କହେ, "ସ୍ୱଭାବେ ଭୂତ ଚିନ୍ତିକଃ ।" ସ୍ୱଭବ ହେଉଛି ପ୍ରାଚୀନ କାଳରେ ଧର୍ମ ଓ ବିଜ୍ଞାନ ମଧ୍ୟରେ ସଂଘର୍ଷର ଭିତ୍ତି । ସେତେବେଳେ ତାହା ସହିତ କୌଣସି ଦାର୍ଶନିକ ଧାରଣା ଜଡିତ ନୁହେଁ, ଯଦିଓ ତାହା ଭୌତିକ ଦୃଷ୍ଟିକୋଣ ବା ତାର ନିକଟବର୍ତ୍ତୀ ଧାରଣା । ସେହିପରି ମତ ହେଉଛି ସାଂଖ୍ୟମତ, ଲୋକାୟତ ଓ ବାର୍ହସ୍ପତ୍ୟ ମତ । ଏହି ତିନୋଟି ମତ ଅତି ଉଗ୍ରଈଶ୍ୱରବିରୋଧୀ ।

ଭାରତୀୟ ଦର୍ଶନ କ୍ଷେତ୍ରରେ ସେହି ସଂଘର୍ଷ ଇତିହାସର ବର୍ଣ୍ଣନା ଏଠି ସମ୍ଭବ ନୁହେଁ । ତାହା କିନ୍ତୁ ଏପରି ଏକ ମୌଳିକ ବିଷୟ ଯେ ତାକୁ ଜଗନ୍ନାଥଙ୍କ ଆଲୋଚନାରେ ଏଡିଦେବା ସମ୍ଭବ ନୁହେଁ । କାରଣ, ତାହା କେବଳ ସୃଷ୍ଟିର ମୂଳ ନୁହେଁ, ସବୁ ଦୃଷ୍ଟିରୁ ମୂଳ । ତାକୁ ଛାଡ଼ି ଦର୍ଶନ ନାହିଁ ।

ସାଂଖ୍ୟ ଏକ ସର୍ବପ୍ରାଚୀନ ଦର୍ଶନ । ତାହା ପ୍ରାକ୍‌ବୈଦିକ ଅଣଆର୍ଯ୍ୟ ଚିନ୍ତାରୁ ଉଦ୍ଭବ । ତାର ଅଧିକାଂଶ ବିଷୟ ଧ୍ୱଂସପ୍ରାପ୍ତ ବା ସୁଚିନ୍ତିତ ଭାବେ ବିକୃତ ଓ ପରିତ୍ୟକ୍ତ । ସାଂଖ୍ୟ ମତରେ ସମସ୍ତ ବିଶ୍ୱ ଆଦ୍ୟବସ୍ତୁରୁ ଉଦ୍ଭବ । ତାହା ହେଉଛି ପ୍ରକୃତି ବା ପ୍ରଧାନ । ସେଠି ଈଶ୍ୱରଙ୍କ ପ୍ରଶ୍ନ ନାହିଁ । ଉପନିଷଦ ସାଂଖ୍ୟମତକୁ ପ୍ରତ୍ୟାଖ୍ୟାନ କରେ ନାହିଁ । ତାକୁ ସ୍ୱୀକାର କରିବା ସହିତ ତା ଉପରେ ନିଜର ଏକେଶ୍ୱରବାଦ ପ୍ରତିଷ୍ଠା କରିବାକୁ ଯାଇ କହେ ଯେ, ସେହି ଆଦ୍ୟବସ୍ତୁ ଈଶ୍ୱରଙ୍କ ସୃଷ୍ଟି । ତାହା ସ୍ୱାଧୀନ ବା ସ୍ୱୟଂକ୍ରିୟ ନୁହେଁ । ଈଶ୍ୱରଙ୍କ ଇଚ୍ଛାର ଅଧୀନ । ସାଂଖ୍ୟରେ ଈଶ୍ୱରଙ୍କୁ ପୂରାଇବାକୁ ଉଦ୍ୟମ ହୋଇଛି । କିନ୍ତୁ ସାଂଖ୍ୟକରିକାରେ ଈଶ୍ୱର ସମ୍ବନ୍ଧୀୟ କିଛି ନାହିଁ ।

ସାଂଖ୍ୟ ମତରେ ନିର୍ଗୁଣରୁ ସଗୁଣର ସୃଷ୍ଟି କିପରି ବା ସମ୍ଭବ ? ଗୁଣ ହେଉଛି ବସ୍ତୁର ମୌଳିକ ଗଠନ । ଈଶ୍ୱର ହେଲେ ନିର୍ଗୁଣ । ତେଣୁ ନିର୍ଗୁଣରୁ ଗୁଣର ଉତ୍ପତ୍ତି ହୋଇ ନ ପାରେ । ସେମିତି ବିଶ୍ୱ ହେଉଛି ଭୌତିକ, ଈଶ୍ୱର ଅଭୌତିକ ।

ଅଭୌତିକତାରୁ ଭୌତିକତାର ଜନ୍ମ କିପରି ବା ସମ୍ଭବ ? କାରଣ ନିୟମ ଅନୁସାରେ କାରଣ ଓ ତାର ଫଳ ବା କାର୍ଯ୍ୟ ମଧ୍ୟରେ ମୌଳିକ ସାମଞ୍ଜସ୍ୟ ରହିଛି । କାରଣ ମଧ୍ୟରେ ଫଳର ନିଦର୍ଶନ ନିହିତ । ଧଳାସୂତାରୁ କେବଳ ଧଳା ଲୁଗାହିଁ ହୋଇପାରେ । ସେମିତି ଭୌତିକ ବିଶ୍ୱ ସହିତ ଈଶ୍ୱରଙ୍କର କୌଣସି ସାମଞ୍ଜସ୍ୟ ବା ସମ୍ବନ୍ଧ ନାହିଁ ।

ଈଶ୍ୱରବାଦୀ କହନ୍ତି, ମୂଳ କାରଣ ବସ୍ତୁ ହୋଇଗଲେ ଯେ ଭୌତିକ ବିଶ୍ୱ ଗଢା ହୋଇଯିବ, ତାହା ନୁହେଁ । ମାଠିଆର କାରଣ ମାଟି ହେଲେ ବି ତା ଲାଗି କୁମ୍ଭକାରର ପ୍ରୟୋଜନ । ଏକ ଫଳପ୍ରଦ କାରଣ ବା ନିମିତ୍ତ ଆବଶ୍ୟକ । ସେହି ନିମିତ୍ତ ହେଉଛି ଈଶ୍ୱର । ଈଶ୍ୱର- ବିରୋଧୀ କରନ୍ତି ଆଦ୍ୟ-ଭୂତ, ତାହା କିନ୍ତୁ ଈଶ୍ୱରଙ୍କ ଆଗରୁ ରହିଛି । ଈଶ୍ୱର କେବଳ ତାକୁ ଯୋଡନ୍ତି ବା ଗଢନ୍ତି, ଜଣେ କାରିଗର ମାତ୍ର । ପୁଣି କୁହାଯାଏ, ଭୌତିକ ବିଶ୍ୱ ବା କାରଣରୁ ସୃଷ୍ଟି ଲାଗି ଏକ ସଚେତନ କାରଣ ଦରକାର । ତାର ଉତ୍ତର ହେଲା, ବିଶ୍ୱ ବିବର୍ତ୍ତନଶୀଳ, କୌଣସି ସଚେତନ କାରଣ ବିନା ଚାଲିଛି, ଏପରିକି ବାଛୁରୀକୁ କ୍ଷୀର ଦେବା ଲାଗି ଗାଈ ଦେହରେ ତାହା ସ୍ୱତଃ ଝରିଥାଏ । ଏଠି କୌଣସି ସଚେତନ ନୀତି ନାହିଁ । ସ୍ୱଭାବବାଦହିଁ କାର୍ଯ୍ୟ କରେ । ଈଶ୍ୱରଙ୍କ ପ୍ରଶ୍ନ ନାହିଁ ।

ସାଂଖ୍ୟ ଦର୍ଶନ କେତେବ ଗୁରୁତ୍ୱପୂର୍ଣ୍ଣ ଅସ୍ତିମୂଳକ ନୀତିର ସୂଚନା ଦିଏ । ବାଚସ୍ପତି ମିଶ୍ର ଓ ମାଧବ କହନ୍ତି, — ତାହା ହେଉଛି ସେହି ଆଦ୍ୟ ବସ୍ତୁ, (Primodial matter) । ତାହା ତାର ସେହି ସହଜାତ (ସ୍ୱଭାବ) ଗତି ବା ପରିବର୍ତ୍ତନର ନିୟମ ଦ୍ୱାରା ଚାଳିତ । ଏଇଥିରୁ ବିଶ୍ୱର ବିକାଶର କାରଣ ବେଶ୍ ପରିଷ୍କାର । ଗତି ହେଉଛି ବସ୍ତୁର ପ୍ରକାଶନ ପ୍ରଣାଳୀ । ବସ୍ତୁର ପ୍ରକୃତି ହେଲା ଗତି । ଏହା କେବଳ ନିରୀଶ୍ୱରବାଦୀଙ୍କର ଦୃଢ ଭିତ୍ତି ନୁହେଁ, ତାହା ବୈଜ୍ଞାନିକ ଦୃଷ୍ଟି କୋଣକୁ ମଧ୍ୟ ପ୍ରକାଶ କରେ । ବସ୍ତୁର ନିଜର ଯେ ଗତି ବା ପରିବର୍ତ୍ତନ ହେବାର କ୍ଷମତା ନାହିଁ, ତାହା ନୁହେଁ । ପରିବର୍ତ୍ତନ ହେବା ତାର ସ୍ୱାଭାବିକ ଗୁଣ ।

ଈଶ୍ୱରଙ୍କୁ ଯଦି ସୃଷ୍ଟି କର୍ତ୍ତା ବୋଲି ଧରାଯାଏ, ତେବେ ବୁଝିବାକୁ ହେବ ତାଙ୍କର କିଛି ଗୋଟାଏ ଅଭାବ ଥିଲା, ଯାହାର ପୂରଣ ଲାଗି ସେ ତାହା କରିଛନ୍ତି । ଯଦି ତାଙ୍କର କିଛି ଅଭାବ ରହିଗଲା, ତେବେ ଜାଣିବାକୁ ହେବ, ସେ ପରିପୂର୍ଣ୍ଣ ନୁହନ୍ତି । ତାଙ୍କଠି ପୂର୍ଣ୍ଣତାର ବାକି ରହିଛି । ଯଦି ସେଥିଲାଗି ସେ କାର୍ଯ୍ୟ କରନ୍ତି, ତେବେ ହୁଏତ ସେ ସ୍ୱାଧୀନ ଭାବେ ବା ପରାଧୀନ ଭାବେ, ସ୍ୱଇଚ୍ଛାରେ କିମ୍ବା ବାଧ ବାଧକତାରେ ତାହା କରିପାରୁଥାନ୍ତି । ଏଥିରୁ କୌଣସିଟି ଭାବେ ଈଶ୍ୱରଙ୍କୁ କଳ୍ପନା କରାଯାଇ ନ ପାରେ । ଯଦି ଈଶ୍ୱର ସମ୍ପୂର୍ଣ୍ଣ ସ୍ୱାଧୀନ, ତେବେ ସେ ସମସ୍ତ ବାସନା କାରଣରୁ ମୁକ୍ତ । ଏପରିକି ସୃଷ୍ଟି କରିବା ଇଚ୍ଛା ବା ଆସକ୍ତିରୁ ମୁକ୍ତ ହୁଅନ୍ତି । ତାହା ଯଦି ନ ହେଲା, ତେବେ ଏହା ସ୍ୱେଚ୍ଛାମୂଳକ ନୁହେଁ । ତେଣୁ ସେ ବାଧ ହୋଇ କାର୍ଯ୍ୟ କରନ୍ତି । ବନ୍ଧନଯୁକ୍ତ ଅର୍ଥ, ଈଶ୍ୱର ସର୍ବଶକ୍ତିମାନ ନୁହନ୍ତି । ବିଶ୍ୱ ସୃଷ୍ଟି କରିବା କାର୍ଯ୍ୟରୁ

ବଞ୍ଚିତ । ତେଣୁ ସେ ବିଶ୍ୱର ସୃଷ୍ଟି କର୍ତ୍ତା ହେବେ କିପରି ? ଏହାହିଁ ସାଂଖ୍ୟ, ଚାର୍ବାକ୍, ଲୋକାୟତ ମତ ।

ପୁଣି କୁହାଯାଏ, ଈଶ୍ୱର କର୍ମ ଅନୁଯାୟୀ ଫଳ ପ୍ରଦାନ କରନ୍ତି । ସାଂଖ୍ୟସୂତ୍ର ତାହାକୁ ପ୍ରତ୍ୟାଖ୍ୟାନ କରେ ଏବଂ କହେ, କାମ ଅନୁଯାୟୀ ଫଳପ୍ରାପ୍ତି, ଏହାକୁ ଦେଖିବା ବା ତଦାରଖ କରିବା ଲାଗି ଈଶ୍ୱରଙ୍କର କୌଣସି ପ୍ରୟୋଜନ ନାହିଁ । ପ୍ରତ୍ୟେକ କାର୍ଯ୍ୟ ତାର ଅନୁରୂପ ଫଳ ଆଣେ । ଏଥିଲାଗି ଈଶ୍ୱରଙ୍କର କ'ଣ ଦରକର ? ଏହା ମୀମାଂସକମାନେ ମଧ ଦାବୀ କରଥାଆନ୍ତି । ତାର ଉତ୍ତରରେ ଈଶ୍ୱରବାଦୀଙ୍କ ବକ୍ତବ୍ୟ ହେଉଛି, କାର୍ଯ୍ୟ ଅନୁଯାୟୀ ଫଳ, —ପୁରସ୍କାର ବା ଶାସ୍ତି ସ୍ୱତଃ ଆସେ ନାହିଁ । ନୈତିକ ଶାସକ ଭାବେ ଈଶ୍ୱରହିଁ ପାପ ପୁଣ୍ୟର ବିଚାରକ । ସେ ବିଁଚାର କରି ଫଳ ପ୍ରଦାନ କରନ୍ତି । ଏଠି ପ୍ରଶ୍ନ ଆସେ, ଯଦି ସେ ଜଣେ ବିଚାରକ, ବିଶ୍ୱର ଶାସକ, ତେବେ ସେ ଶାସନ କରନ୍ତି କାହିଁକି ? କାହାର ସ୍ୱାର୍ଥ ପାଇଁ ? ଜଣେ ସାଧାରଣ ଶାସକ ଭଳି ସେ ତାହା ନିଜପାଇଁ କରିବା ସ୍ୱାଭାବିକ ।

ଶେଷରେ ସାଂଖ୍ୟ ମତରେ ଈଶ୍ୱର ଯେ ଅଛନ୍ତି, ତାର କୌଣସି ପ୍ରମାଣ ନାହିଁ । ତେଣୁ ତାଙ୍କୁ ସ୍ୱୀକାର କାରିବା ପ୍ରଶ୍ନ ଉଠେ ନାହିଁ । ସେହି ମତରେ, ପ୍ରମାଣ ତିନିପ୍ରକାରର । ଏ ତିନିପ୍ରକାର ପ୍ରମାଣ ହେଲା —ପ୍ରତ୍ୟକ୍ଷ, ଅନୁମାନ ଓ ମୌଖିକ ସାକ୍ଷ୍ୟ । ପ୍ରତ୍ୟକ୍ଷ ପ୍ରମାଣ କଥା ଏପରିକି ନିଜେ ଈଶ୍ୱରବାଦୀମାନେ ମଧ ଦାବୀ କରନ୍ତି ନାହିଁ । ତାଙ୍କ ମୌଖିକ ସାକ୍ଷ୍ୟ ବେଦବଚନ । କିନ୍ତୁ ଶାସ୍ତ୍ରର ସୂଚନା ହେଉଛି ଅଚେତନ ପ୍ରକୃତିହିଁ ଅନ୍ତିମ ବାସ୍ତବତା । କୌଣସି ସଚେତନ ସତ୍ତା ନୁହେଁ । ଶେଷକୁ ରହିଲା ଅନୁମାନ ପ୍ରମାଣ । ଯେପରି ଧୂଆଁ ଦେଖି ନିଆଁକୁ ଅନୁମାନ କରି ହୁଏ ସେମିତି ବିଶ୍ୱକୁ ଦେଖି ଈଶ୍ୱରଙ୍କୁ ଅନୁମାନ କରାଯାଇପାରେ । ଧୂଆଁ ଓ ନିଆଁର ସମ୍ପର୍କ ହେଲା ଏକ ବିଶ୍ୱଜନୀନ ସମ୍ପର୍କ । ସେହି ସମ୍ପର୍କ ପୂର୍ବରୁ ସର୍ବତ୍ର ବାରମ୍ବାର ପ୍ରତ୍ୟକ୍ଷ ଦ୍ୱାରା ପ୍ରତିଷ୍ଠିତ । ସେହି ବିଶ୍ୱଜନୀନ ପ୍ରତ୍ୟକ୍ଷ, ସେହି ଅନୁମାନକୁ ପ୍ରମାଣିତ କରେ । ଈଶ୍ୱରଙ୍କ କ୍ଷେତ୍ରରେ ସେପରି ଅନୁମାନର ଲେଶ ମାତ୍ର ସମ୍ଭାବନା ନାହିଁ । ଈଶ୍ୱର ଧାରଣା ତତ୍ତ୍ୱ ବିଦ୍ୟା ଦୃଷ୍ଟିରୁ ଯେପରି ଅପ୍ରାସଙ୍ଗିକ, ନ୍ୟାୟଶାସ୍ତ୍ର ଓ ଯୁକ୍ତିବିଦ୍ୟା ଦିଗରୁ ସେହିପରି ଅପ୍ରମାଣ୍ୟ —ତେଣୁ ତାହା ସମ୍ପୂର୍ଣ୍ଣ ଅସିଦ୍ଧ ।

କୌଟିଲ୍ୟଙ୍କ ମତରେ ଈଶ୍ୱର ଅସ୍ୱୀକୃତ ଓ ଅପ୍ରମାଣିତ, ଯେହେତୁ ତାହା ବିରୋଧିତାରେ ପୂର୍ଣ୍ଣ । କାରଣ କୌଣସି ଫଳ ହଠାତ୍ ଆସେ ନାହିଁ । ତାହା ତାର ପୂର୍ବବର୍ତ୍ତୀ ଅବସ୍ଥା, କାରଣ ବା ଫଳ ଦ୍ୱାରା ରୂପ ନେଇଥାଏ । ଏହି ସବୁ ଗଡିଚାଲେ । ମଞ୍ଜିରୁ ଅଙ୍କୁର, ଅଙ୍କୁରରୁ ବୃକ୍ଷ, ବୃକ୍ଷରୁ ଶାଖା ଏବଂ ପତ୍ର ପୁଷ୍ପ କ୍ରମରେ ଫଳ ଆସେ । ଏହା ଏକ କ୍ରମାଗତ ପ୍ରକ୍ରିୟା । ସବୁ ଫଳ ପୁଣି ସବୁଠି ସବୁ ସମୟରେ ଆସନ୍ତି ନାହିଁ । ତାଙ୍କ ଲାଗି ନିର୍ଦ୍ଦିଷ୍ଟ ସମୟ ଓ ସ୍ଥାନ ଆଦି ଦରକାର । କିନ୍ତୁ ଈଶ୍ୱରଙ୍କ କ୍ଷେତ୍ରରେ କ'ଣ ସେଇ କ୍ରମ ଓ କାରଣ ଦେଖାଯାଏ ?

ନାଗାର୍ଜୁନ ସୃଷ୍ଟି ଦିଗରୁ ଈଶ୍ୱରଙ୍କୁ ଖଣ୍ଡନ କରନ୍ତି । ସୃଷ୍ଟିକର୍ତ୍ତା ଭାବେ ଈଶ୍ୱରଙ୍କୁ ଚିନ୍ତା କରିବା ପୂର୍ବରୁ ଆଗେ ପ୍ରମାଣ କରିବାକୁ ହେବ ଯେ, ସେ କିଛି ସୃଷ୍ଟି କରନ୍ତି । କିନ୍ତୁ ସେ ଯାହା ସୃଷ୍ଟି କରନ୍ତି ପ୍ରକୃତରେ ତାହା କ'ଣ ତାଙ୍କ ସ୍ୱଭାବ ? ସେ ଦିଗରୁ ସୃଷ୍ଟିର ତିନୋଟି ବିକଳ୍ପ ସମ୍ଭାବନା ରହିଛି । ହୁଏତ ସ୍ୱକୀୟ ବା ସହଜାତ ଭାବେ ସୃଷ୍ଟି ବିଦ୍ୟମାନ, ନାହିଁ ବା ସ୍ୱକୀୟ ବା ସହଜାତ ଭାବେ ତାହା ଅବିଦ୍ୟମାନ, କିମ୍ବା ପୂର୍ବରୁ ଅବିଦ୍ୟମାନ ଥିଲା, ପରିବର୍ତ୍ତନ ବଳରେ ଏବେ ତାହା ବିଦ୍ୟମାନ ।

ଏଥିମଧ୍ୟରୁ କୌଣସିଟି ଯୁକ୍ତି ଗ୍ରହଣଯୋଗ୍ୟ ନୁହେଁ । ପ୍ରଥମଟି ହାସ୍ୟାସ୍ପଦ । ଯାହା ସହଜାତ ଭାବେ ବିଦ୍ୟମାନ, ସେ ନିଜ ବଳରେ ବିଦ୍ୟମାନ, ତାହା ତାର ସ୍ୱଭାବ । ତାହା କୌଣସି ସୃଷ୍ଟିକର୍ତ୍ତାଙ୍କ ଦରକାର କରେ ନାହିଁ । ଯିଏ ସହଜାତ ଭାବେ ଅବିଦ୍ୟମାନ, ତାକୁ କେବେହେଲେ ବିଦ୍ୟମାନ କରାଯାଇ ନ ପାରେ । ତା' ଏପରିକି ଐଶୀଶକ୍ତି ଦ୍ୱାରା ମଧ୍ୟ ନୁହଁ । ତେଣୁ ତୃତୀୟ ପ୍ରଶ୍ନଟିର କୌଣସି ଯଥାର୍ଥତା ନାହିଁ । ବିଦ୍ୟମାନ ଓ ଅବିଦ୍ୟାମାନ, ଅନ୍ଧାର ଆଲୁଅ ଭଳି ଦୁଇଟି ବିରୁଦ୍ଧାତ୍ମକ ବିଷୟ । ସେ ଦୁହିଁଙ୍କୁ କେବେହେଲେ ଗୋଟିଏ ବିଷୟ ଭାବେ ଗ୍ରହଣ କରାଯାଇ ନ ପାରେ । ଅନ୍ଧାର ଆଲୁଅ ଏକାଠି ନ ରହିବା ଭଳି କୌଣସି ଜିନିଷ ବିଦ୍ୟମାନ ଅବିଦ୍ୟମାନ ଉଭୟ ହୋଇ ନ ପାରନ୍ତି । ନାଗାର୍ଜୁନଙ୍କ ଦ୍ୱିତୀୟ ପ୍ରଶ୍ନ ହେଲା, ଯିଏ ନିଜ ବାହାରେ ନିଜକୁ ଛାଡି ସୃଷ୍ଟି କରନ୍ତି, ସେ ନିଜେ ଜନ୍ମଲଭି ବା ଅଜନ୍ମା ରହି ସୃଷ୍ଟି କରନ୍ତି । ଯିଏ ନିଜେ ଅଜନ୍ମା ରହି କିଛି ସୃଷ୍ଟି କରନ୍ତି, ସେ ନିଜ ବହିର୍ଭୂତ କିଛି ସୃଷ୍ଟି କରି ନ ପାରନ୍ତି । ତାହା ବନ୍ଧ୍ୟା ନାରୀର ସନ୍ତାନ ପ୍ରସବ ଭଳି କାର୍ଯ୍ୟ । ସେହିପରି ଈଶ୍ୱରଙ୍କ ଅବସ୍ଥା ।

## ସବୁକୁ ଜନ୍ମଦିଏ ଅଜନ୍ମା ?

ତା'ପରେ, ଈଶ୍ୱର ନିଜେ ଜନ୍ମହୋଇ ବାହାର ବିଶ୍ୱ ସୃଷ୍ଟି କରନ୍ତି । କିନ୍ତୁ ସେ ଜନ୍ମ ହେଲେ କେଉଁଠୁ ? ସେ ନିଜଠାରୁ ନିଜେ ଜାତ ହୋଇପାରନ୍ତି ବା ଅନ୍ୟଠାରୁ ଜାତ ହୋଇପାରନ୍ତି । ପ୍ରଥମତଃ ନିଜଠାରୁ ନିଜେ ଜାତ ହେବା ଅସମ୍ଭବ । ଖଡ୍‌ଗର ଫଳକ ଯେତେ ଶାଣିତ ହେଲେ ବି ତାହା ନିଜକୁ ନିଜେ କାଟି ନ ପାରେ । ଉତ୍ପନ୍ନ (ଜନ୍ୟ) ଓ ଉତ୍ପାଦନକାରୀ (ଜନକ) — ପିତା ପୁତ୍ର ହୋଇ ନ ପାରନ୍ତି । ଈଶ୍ୱର ମଧ୍ୟ ବାହାରୁ-ଜାତ ହୋଇ ନ ପାରନ୍ତି । କାରଣ ତଦ୍ୱାରା ତାଙ୍କର ଜନ୍ମ ସମ୍ଭବ କରିବା ପାଇଁ ସୃଷ୍ଟିକୁ ଆଗରୁ କରିବାକୁ ହେବ । ଈଶ୍ୱର ନିଜେ ନିଜଠାରୁ ଜାତ ନୁହନ୍ତି କି ବାହାରେ ଅନ୍ୟଠାରୁ ଜାତ ନୁହନ୍ତି । ସେ ଉଭୟଠୁ ଜାତ ନ ହେବା ଦ୍ୱାରା କେଉଁଠୁ ହେଲେ ଜାତ ନୁହନ୍ତି , ତେଣୁ ମୂଳରୁ ନାହାନ୍ତି । ଇଏ ହେଲା ବୌଦ୍ଧ ନାଗାର୍ଜୁନଙ୍କ ମତ ।

ଈଶ୍ୱରବାଦୀମାନେ ଦାବୀ କରନ୍ତି ଯେ, ଈଶ୍ୱର ଚିରନ୍ତନ ତାଙ୍କର ଜ୍ଞାନ ମଧ୍ୟ ସେହିପରି ଚିରନ୍ତନ । ଅନ୍ୟ ଏକ ବୌଦ୍ଧମତ ହେଉଛି ତାହା ଯଥାର୍ଥ ନୁହେଁ (କମଳାସିଲ) । ପ୍ରଥମତଃ, କାରଣର ଅପରିହାର୍ଯ୍ୟ ବୈଶିଷ୍ଟ୍ୟ ହେଉଛି, ତାହା ପରିବର୍ତ୍ତନ ଦ୍ୱାରା ଆସେ । କମଳାସିଲ କହିଲା ଭଳି ବର୍ତ୍ତମାନରେ ଯାହା ଅଛି, ପରମୁହୂର୍ତ୍ତରେ ତାହା ଅତୀତ । ତେଣୁ ଅଚିରନ୍ତନ ଜିନିଷହିଁ କେବଳ ଉତ୍ପାଦନ କାରଣ ହୋଇପାରେ । ତାହାହିଁ କେବଳ ସୃଷ୍ଟି କରିବାରେ ସମର୍ଥ । ଏପରିକି ମଞ୍ଜି ହେଲା ଅଙ୍କୁରର କାରଣ । ସେପରି ହୁଏ, ଯେହେତୁ ମଞ୍ଜ ଅଚିରନ୍ତନ । ଯଦି ମଞ୍ଜି ପ୍ରକୃତରେ ଚିରନ୍ତନ ହୋଇଥାନ୍ତା, ଅର୍ଥାତ୍ ମଞ୍ଜିର କେବେ ବିଲୁପ୍ତ ନଥାନ୍ତା, ତଦ୍ୱାରା ଅଙ୍କୁର ଉତ୍ପତ୍ତି କେବେହେଲେ ସମ୍ଭବ ହୋଇ ନ ଥାନ୍ତା । ତେଣୁ ଈଶ୍ୱରଙ୍କୁ କାରଣ ମାନିବା ଏବଂ ତେଣେ ତାଙ୍କୁ ଚିରନ୍ତନ ବୋଲି ଧରିବା ହେଲା ଏକ ସାଙ୍ଗରେ ତାଙ୍କୁ ଚିରନ୍ତନ ଓ ଅଚିରନ୍ତନ ବୋଲି ଦାବୀ କରିବା, ଯାହାକି ସମ୍ପୂର୍ଣ୍ଣ ଅସମ୍ଭବ । ହାସ୍ୟାସ୍ପଦ ବିଷୟ ।

ଜୈନମାନେ ଈଶ୍ୱରବାଦୀଙ୍କୁ ମଧ୍ୟ ସମାଲୋଚନା ଓ ଖଣ୍ଡନ କରିଥାଆନ୍ତି । ଗୁଣରତ୍ନ କହନ୍ତି, ଈଶ୍ୱର ବିଶ୍ୱର ନିର୍ମାତା ହୋଇ ନ ପାରନ୍ତି । କାରଣ, ନିର୍ମାଣର କୌଣସି ଯନ୍ତ୍ରପାତି ତାଙ୍କର ନାହିଁ । ଯେପରିକି ଘଟ ଗଢ଼ିବା ଲାଗି କୁମ୍ଭାରର ଚକ ରହିଛି । ପୁଣି ଈଶ୍ୱର ବିଶ୍ୱର କାରଣ ହୋଇ ନ ପାରନ୍ତି । କାରଣ ସେ ସର୍ବବ୍ୟାପୀ କିମ୍ବା କାରଣ ସେ ଏକ, ଜଣେ ମାତ୍ର, — ଅର୍ଥାତ୍ ଶୂନ୍ୟ, ଆକାଶ । ମୀମାଂସା ଦର୍ଶନକୁ ଆସିଲେ ଦେଖାଯାଏ, ଜୈମିନି ଈଶ୍ୱର ସମ୍ବନ୍ଧରେ ଏକାବେଳେ ନୀରବ । ଶବର ମନୀଷୀ ଈଶ୍ୱରଙ୍କୁ ପ୍ରତ୍ୟାଖ୍ୟାନ କରନ୍ତି, ଯେହେତୁ ତାଙ୍କର ସ୍ଥିତିର କୌଣସି ପ୍ରମାଣ ନାହିଁ । ତାଙ୍କ ପରବର୍ତ୍ତୀ ମୀମାଂସକ ଗଣ (ପ୍ରଭାକର ଓ ଭଟ୍ଟ) ସେ ଦିଗରେ ଦୃଢ଼ ଯୁକ୍ତି ବାଢ଼ି ଈଶ୍ୱର ଧାରଣାକୁ ଖଣ୍ଡନ କରନ୍ତି । କୁମାରିଲ ଈଶ୍ୱରଙ୍କୁ ସୃଷ୍ଟି କର୍ତ୍ତା ଧରି ତାଙ୍କୁ ଅନୁସରଣ କରନ୍ତି । ସୃଷ୍ଟି ପୂର୍ବରୁ ଏକମାତ୍ର ଈଶ୍ୱର ରହିଥିଲେ । କିନ୍ତୁ ଯେତେବେଳେ କିଛି ନ ଥିଲା, କାହାରି ଅସ୍ତିତ୍ୱ ନ ଥିଲା, ସେତେବେଳେ କ'ଣ ଥିଲା ବିଶ୍ୱର ଅବସ୍ଥା ? ସେଠି ସୃଷ୍ଟିକର୍ତ୍ତା ପ୍ରଜାପତିଙ୍କ ଅବସ୍ଥା କ'ଣ ଥାଇପାରେ ? କ'ଣ ତାଙ୍କର ରୂପ ? ଯେତେବେଳେ କେହି ନ ଥିଲେ, ତାଙ୍କୁ କିଏ ବା ଜାଣିଥିଲା ? କିଏ ବା ପରବର୍ତ୍ତୀ ଲୋକଙ୍କୁ ତାଙ୍କ ବିଷୟରେ କହିଥିବ । ସୃଷ୍ଟି ପୂର୍ବରୁ ଈଶ୍ୱର-ଜ୍ଞାନ ଜାଣିବା ବା ତାଙ୍କର ସ୍ଥିତି ବିଷୟରେ କିପରି ଧାରଣା କରିବା ? ଏ ବିଶ୍ୱ ଯେ ଘୋର ଦୁଷ୍କର୍ମ ଓ ପାପାଚାରରେ ପୂର୍ଣ୍ଣ, ଏହାକୁ କିଏ ଅସ୍ୱୀକାର କରି ନ ପାରେ । ଈଶ୍ୱର କାହିଁକି ଏପରି ଏକ ଦୁଃଖ ଯନ୍ତ୍ରଣାପୂର୍ଣ୍ଣ ବିଶ୍ୱ ସୃଷ୍ଟି କରିବାକୁ ଇଚ୍ଛା କଲେ ? ସେ ଦିଗରେ ତାଙ୍କର ମନ ଗଲା କିପରି ? ସୃଷ୍ଟିର ଆରମ୍ଭରେ ଲୋକଙ୍କର ପାପ ପୁଣ୍ୟ ବୋଲି ତ କିଛି ନ ଥିଲା । ତେଣୁ ସେମାନେ କାହିଁକି ତାର ଫଳ ଭୋଗନ୍ତି ? ତା ଛଡା, କୌଣସି ସୃଷ୍ଟିକର୍ତ୍ତା କଣ ନିର୍ମାଣର କୌଣସି ଉପାୟ ବିନା ସୃଷ୍ଟି କରିପାରେ ?

ଏହାର ଉତ୍ତରରେ ବାଦାରାୟଣ କହନ୍ତି, ସୃଷ୍ଟି ଈଶ୍ୱରଙ୍କ ଏକ ଲୀଳା । ଅର୍ଥାତ୍ ଏକ ଖେଳ ମାତ୍ର । ରାଜାମାନେ ଯେପରି ମୃଗୟା କରନ୍ତି, ପିଲାମାନେ ଯେପରି କ୍ରୀଡା କଉତୁକରେ ମାତନ୍ତି, ଈଶ୍ୱରଙ୍କ ସୃଷ୍ଟି ସେହିପରି ଏକ କାର୍ଯ୍ୟ ମାତ୍ର । ଏଥିପ୍ରତି କୁମାରିଲଙ୍କ ଉତ୍ତର ହେଲା, ଯଦି ସୃଷ୍ଟି କର୍ତ୍ତା ତାଙ୍କର ଖେଳ ସୃଷ୍ଟିକରନ୍ତି, ତେବେ ସେଥିରେ ସେ ପରିତୃପ୍ତ ନୁହନ୍ତି କାହିଁକି ? ତାଙ୍କ ସୃଷ୍ଟିରେ ଦୁଃଖ, କଷ୍ଟ ବା ପ୍ରଳୟକୁ କିପରି ବୁଝିହେବ ?

ନ୍ୟାୟ ବୈଶେଷିକ ଦୃଢ ଈଶ୍ୱରବାଦୀ । ତାଙ୍କର ସେଇ ସମର୍ଥନ ବଡ କୌତୂହଳ-ଜନକ । କାରଣ ଆଦ୍ୟ ଅବସ୍ଥାରେ, ମୌଳିକ ଭାବେ ସେମାନେ ସଚେତନ ନିରୀଶ୍ୱରବାଦୀ । ଦର୍ଶନ ଦିଗରୁ ତାଙ୍କର ସେଇ ସମର୍ଥନ ଅତି ଟେକ୍‌ନିକାଲ, ଏକ ପ୍ରାୟୋଗିକ କୌଶଳ ମାତ୍ର । ଯେହେତୁ ତାର ଭିତ୍ତି ଈଶ୍ୱରଙ୍କ ପ୍ରୟୋଜନୀୟତାକୁ ପ୍ରତ୍ୟାଖ୍ୟାନ କରିଥାଏ ।

ନ୍ୟାୟ ଓ ବୈଶେଷିକ ଦୁଇଟି ସ୍ୱତନ୍ତ୍ର ବିଷୟ । ଦୁହେଁ ଅତି ଘନିଷ୍ଠ ଭାବେ ଜଡିତ । ପ୍ରଥମଟିର କର୍ତ୍ତା ଗୌତମ ହେଲାବେଳେ, ଅନ୍ୟଟିର ପ୍ରତିଷ୍ଠାତା ହେଲେ କଣାଦ । ପ୍ରାଚୀନ ଦର୍ଶନ ରାଜ୍ୟରେ ସେମାନେ ଅପେକ୍ଷାକୃତ ପରବର୍ତ୍ତୀ କାଳର । ଗୌତମଙ୍କ କାଳ ପ୍ରଥମ ଶତାବ୍ଦୀ ଧରା ଯାଉଥିଲାବେଳେ, କଣାଦଙ୍କୁ ତିନିଶହରୁ ଦୁଇଶହ ଖ୍ରୀ:ପୂ: ବୋଲି ଧରାଯାଏ । ଗୌତମଙ୍କ ନ୍ୟାୟ ହେଉଛି, ପ୍ରମାଣ ବା ଅକାଟ୍ୟ ଜ୍ଞାନ ସାହାଯ୍ୟରେ ବିଷୟବସ୍ତୁର ପରୀକ୍ଷା । ସେହି ପରୀକ୍ଷାମୂଳକ ଜ୍ଞାନ, ଜ୍ଞାନର ଅକାଟ୍ୟ ସ୍ୱୀକୃତିରୁ ଜାତ । ଅକାଟ୍ୟ ଉପାୟରୁ ଉଦ୍ଭବ । ''ସଫଳ କାର୍ଯ୍ୟ ସେତିକିବେଳେ ଉଦ୍ଭବ ହୁଏ, ଯେତେବେଳେ ବିଷୟବସ୍ତୁ ଅକାଟ୍ୟ ଜ୍ଞ୍ୟାନର ଉପାୟ ଦ୍ୱାରା ଅବଗତ ହୁଏ । ଦୈନନ୍ଦିନ ଜୀବନରେ ବ୍ୟାବହାରିକ କାର୍ଯ୍ୟ, ସତ୍ୟତାର ପ୍ରକୃତ ପ୍ରମାଣ । ପ୍ରମାଣ ହେଲା ଯେଉଁ ଉପାୟ ଦ୍ୱାରା ଜାଣିବା ଲୋକ (ପ୍ରମାତା) ବିଷୟଟିକୁ ସଟୀକ୍ ଭାବେ ଜାଣେ । ପ୍ରତ୍ୟୟ ହେଲା ସଟୀକ୍ ଭାବେ ଜ୍ଞାତ ବିଷୟ । ନ୍ୟାୟ ୫୨୮ଟି ସୂତ୍ରକୁ ନେଇ ଗଠିତ । କୌଣସି ଗୋଟିକରେ ଈଶ୍ୱରଙ୍କ ଉଲ୍ଲେଖ ନାହିଁ । ଗୋଟିଏ ସ୍ଥାନରେ ରହିଛି, ସେଠି ତା ପୂର୍ବପକ୍ଷ ଭାବେ, ଅର୍ଥାତ୍ ତାକୁ କାଟିବା ଲାଗି ଦୃଷ୍ଟାନ୍ତ ସ୍ୱରୂପ ବ୍ୟବହୃତ ।

ବୈଶେଷିକ କଣାଦ ହେଲେ ଅଣୁବାଦର କର୍ତ୍ତା । ଅଣୁ ହେଲା ଜଗତର ମୂଳ । ସବୁ କିଛି ଅଣୁପୁଞ୍ଜରୁ ଜାତ । ଏହା ବୈଜ୍ଞାନିକ ଦୃଷ୍ଟିକୋଣରୁ ଏକ ସୁସ୍ପଷ୍ଟ ସୂଚନା । ଏଠି ସୃଷ୍ଟି ସର୍ବପ୍ରଥମେ ଜାଦୁ, ଧର୍ମ ବିଶ୍ୱାସ ଓ ପୌରାଣିକ କିମ୍ବଦନ୍ତୀରୁ ମୁକ୍ତ ହେଲା । ବୈଶେଷିକ ସୂତ୍ରରେ କେଉଁଠି ହେଲେ ଈଶ୍ୱରଙ୍କ ଉଲ୍ଲେଖ ନାହିଁ । ତାକୁ ପୂରାପୂରି ଏଡି ଦିଆଯାଇଛି, ଯେହେତୁ ସେ ସମ୍ପୂର୍ଣ୍ଣ ଅଦରକାରୀ ।

ପରବର୍ତ୍ତୀ କାଳରେ ନ୍ୟାୟ ଓ ବୈଶେଷିକର ଲିଖିତ ଭାଷ୍ୟରେ ଈଶ୍ୱରଙ୍କୁ ଭର୍ତ୍ତି କରାଯାଇଛି । ଯଥା 'ଦ୍ୱୈତ-ଅଣୁ ଅର୍ଥାତ୍ ଅଣୁ ଯୋଡାହେବାରେ ସୃଷ୍ଟିର

ଆରମ୍ଭ । ଅର୍ଥାତ୍ କୁମ୍ଭାର ଘଟ ତିଆରି କରିବା ଭଳି ଈଶ୍ୱରଙ୍କ ଆବଶ୍ୟକତା । ତେଣୁ ଈଶ୍ୱର ରହିଛନ୍ତି । ସେ "ବିଶ୍ୱର ନିମିତ୍ତ କାରଣ" । କିନ୍ତୁ ତାହା ମୁଖ୍ୟତଃ ସଚେତନ କର୍ତ୍ତା । ଅଥଚ, ଜଣେ କର୍ତ୍ତାଭାବେ ଈଶ୍ୱର ଶରୀରହୀନ, ଅଚେତନ । ସୃଷ୍ଟି କିନ୍ତୁ ବସ୍ତୁର ସହଜାତ ଗୁଣ । ଛୁଞ୍ଚ୍ ଚୁମ୍ବକର ସମ୍ପର୍କ ଭଳି ଏକ ସ୍ୱାଭାବିକ ଗୁଣ । ସ୍ୱଭାବବାଦ ମାତ୍ର । ପୁଣି ନ୍ୟାୟ ଓ ବୈଶେଷିକରେ ଆତ୍ମା ପରମାତ୍ମା ନାହିଁ, ସେମାନେ ପରମାତ୍ମାଙ୍କ ବିରୋଧୀ । ସେହିପରି ତାଙ୍କ ମୁକ୍ତିର ଧାରଣା ଈଶ୍ୱରଙ୍କ ଉପାସନା ନୁହେଁ । ନ୍ୟାୟ ଓ ବୈଶେଷିକର ମୁକ୍ତି ହେଉଛି ସର୍ବାଧିକ ମଙ୍ଗଳ ।

ଏହାର ମୂଳକୁ ଗଲେ ଜୈମିନିଙ୍କ ମୀମାଂସାରେ ପହଞ୍ଚିବାକୁ ହୁଏ । ସେ ବେଦକୁ ଭିତ୍ତିକରି ତାର ବିଧିବିଧାନ ବା କର୍ମକାଣ୍ଡ ଉପରେ ଜୋର ଦିଅନ୍ତି । କହନ୍ତି, କାର୍ଯ୍ୟ ଅନୁଯାୟୀ ଫଳ । ତାହା କୌଣସି ଅଦୃଶ୍ୟ ଶକ୍ତିର ଦାନ ନୁହେଁ । ସେହି ଅନୁଯାୟୀ ଈଶ୍ୱରଙ୍କୁ ଅସ୍ୱୀକାର କରନ୍ତି । ଗୌତମ, ତାଙ୍କ ସମର୍ଥକ ବାଦାରାୟଣ ବେଦର ଜ୍ଞାନକାଣ୍ଡକୁ ମୂଳ କରି ଧରନ୍ତି । ତାହା କିନ୍ତୁ କଣାଦଙ୍କ ଭଳି ବସ୍ତୁର ଜ୍ଞାନ ନୁହେଁ । ତେଣୁ ଶେଷରେ ତାହା ଈଶ୍ୱର ଭାବରେ ପହଞ୍ଚିଲାବେଳେ, ନ୍ୟାୟ ବୈଶେଷିକ ତାକୁ ବସ୍ତୁର ଜ୍ଞାନ ଧରି ସ୍ୱଭାବବାଦରେ ପହଞ୍ଚିଥାନ୍ତି । ତେଣୁ ସ୍ୱଭାବବାଦ ଗ୍ରହଣ ଜ୍ଞାନର ଖଣ୍ଡନ ନୁହେଁ । ଓଲଟା ତାହା ଈଶ୍ୱର ଧାରଣାକୁ ଖଣ୍ଡନ କରେ ।

**ଲୋକାୟତ ମତ**

ଲୋକାୟତ ଚାର୍ବାକ୍ ଓ ବାର୍ହସ୍ପତ୍ୟ, ଏମାନେ ଗୋଟିଏ ମତର । ଏସବୁ କେବଳ ଦୃଢ଼ ଈଶ୍ୱର-ବିରୋଧୀ ନୁହନ୍ତି, ସେଥିସହିତ ବେଦ, ବ୍ରାହ୍ମଣ, ଧର୍ମ, ଯାଗ, ଯଜ୍ଞ, ଦେବଦେବୀ, ଜାତିଭେଦ, ଯାବତୀୟ ଅନ୍ଧବିଶ୍ୱାସ, କୁସଂସ୍କାର, ପ୍ରତାରଣାକୁ ପ୍ରତ୍ୟାଖ୍ୟାନ କରନ୍ତି । ମହାଭାରତରେ ଚାର୍ବାକଙ୍କୁ ହତ୍ୟା କରିବାର ଦୃଷ୍ଟାନ୍ତ ଆଗରୁ କୁହାଯାଇଛି । ଯେଉଁଠି ସେପରି ଲୋକଙ୍କୁ ଜୀବନ୍ତ ଦଗ୍ଧ କରାଯାଏ, ସେଠି ତାଙ୍କର ମତ ଓ ଶାସ୍ତ୍ର ଆଦିକୁ କଣ ବଞ୍ଚି ରହିବାକୁ କେବେ ଛାଡି ଦିଆଯାଇପାରେ ? ସେସବୁକୁ ଏପରି ଧ୍ୱଂସ କରାଯାଇଛି ଯେ, କେବଳ ଲୋକ ମୁଖରେ କଥିତ ଶ୍ରୁତି ଛଡ଼ା ତାର ଆଉ କିଛି ନାହିଁ । ତାକୁ ଖଣ୍ଡନ କରିବାକୁ ଯାଇ ଯେଉଁ କେତେକ ଖଣ୍ଡିତ ପଙ୍କ୍ତି ଉଦ୍ଧାର କରାଯାଇଛି, ସେଇଥିରୁ ସେଇ ମତର ଶକ୍ତି ଓ ସତ୍ୟତାର ସନ୍ଧାନ ମିଳେ । ସେଇ ମତ ଭିତରେ ଜଡବାଦ, ଭୂତ, ଚୈତନ୍ୟବାଦ, ଦେହାତ୍ମବାଦ, ଇନ୍ଦ୍ରିୟାତ୍ମବାଦ, ପ୍ରମାଣାତ୍ମବାଦ, ସ୍ୱଭାବବାଦ, ଅହିଂସାବାଦ, ଆଦି ବହୁ ଧାରଣା ଅନ୍ତର୍ଭୁକ୍ତ । ଏସବୁ ଭୌତିକତାବାଦୀ । ତାହା କେବଳ ଈଶ୍ୱର ମତକୁ ପ୍ରତ୍ୟାଖ୍ୟାନ କରେ ନାହିଁ, ତାହା ବିରୋଧରେ ଦର୍ଶନ ମଧ୍ୟ ଉପସ୍ଥାପିତ କରେ ।

"ଯାବତ୍ ଜୀବେତ୍ ସୁଖଂ ଜୀବେତ୍, ଋଣଂ କୃତ୍ୱା ଘୃତଂ ପିବେତ୍," ଯେତେ ଦିନ ବଞ୍ଚିବ ସୁଖରେ ବଞ୍ଚିବ, ଋଣ କରି ଘିଅ ଖାଇବ । ଚାର୍ବାକ ମତର ନିଦର୍ଶନ ସ୍ୱରୂପ ଏହାହିଁ ଲୋକମୁଖରେ ବହୁଳ ଭାବେ ପ୍ରଚାରିତ । ତାହା ତାଙ୍କର

ବିରୋଧୀମାନଙ୍କ ପ୍ରଚାର । ସେମାନେ ଦେଖାଇବାକୁ ଚାହାନ୍ତି ଯେ ଲୋକାୟତ ମତ ଏକ ନିପଟ, ଭୋଗାସକ୍ତ ତଥା ଇନ୍ଦ୍ରିୟାସକ୍ତ ଦର୍ଶନ । ତାହା କେବଳ ଭୋଗ ବିଳାସରେ ମାତିବାକୁ ଚାହେଁ । ତାହା ଭିତରେ କୌଣସି ଉଚ୍ଚ ମାନବିକ ଆଧ୍ୟାତ୍ମିକ ଭାବ ନାହିଁ । କଥାଟା ସମ୍ପୂର୍ଣ୍ଣ ଓଲଟା । ଲୋକାୟତବାଦୀମାନେ ସେହି ବିରୋଧୀମାନଙ୍କ ମୁଖା ଖୋଲି ଦିଅନ୍ତି । ଯେଉଁ ଲୋକେ ଈଶ୍ୱର, ଧର୍ମ, ଜାତି, ଯାଗ, ଯଜ୍ଞ, ପୂଜା ପ୍ରାର୍ଥନା ଆଦିକୁ ଆଧ୍ୟାତ୍ମିକତା କହି ଲୋକଙ୍କୁ ପ୍ରତାରିତ କରନ୍ତି, ତାଙ୍କୁ ସଦା ଦୁଃଖ ନିର୍ଯ୍ୟାତନାରେ ନିକ୍ଷେପ କରନ୍ତି, ଲୋକାୟତ ସେହିମାନଙ୍କର ଅସଲ ରୂପ ଓ ଉଦ୍ଦେଶ୍ୟକୁ ପ୍ରକାଶ କରିଦିଏ ।

ଏହି ମତର ପ୍ରବର୍ତ୍ତକ ହେଉଛନ୍ତି ଋଷି ବୃହସ୍ପତି । ତେଣୁ ତାକୁ ବାର୍ହସ୍ପତ୍ୟ କୁହାଯାଏ । ତାଙ୍କୁ ଦେବତାର ଆସନ ପ୍ରଦାନ କରି ହୋମ ପୂଜା ଆଦି କାର୍ଯ୍ୟରେ ତାଙ୍କୁ ଆହ୍ୱାନ କରିବାର ବିଧାନ ରହିଛି । କୁହାଯାଏ ସେ ଦେବଗୁରୁ । ସେ ଇନ୍ଦ୍ରଙ୍କ ରକ୍ଷା ଓ ଅସୁରଙ୍କ କ୍ଷୟ ଲାଗି ଅସୁରଙ୍କ ଭିତରେ ରହି ନାସ୍ତିକ ଭାବ ପ୍ରଚାର କରିଥିଲେ । ଅନ୍ୟମାନେ ବେଦକୁ ଚରମ ସତ୍ୟ ଓ ଅପୌରୁଷେୟ ଆଦି କାହିଲାବେଳେ, ଚାର୍ବାକ୍ କହନ୍ତି ବେଦ ଭଣ୍ଡ, ଧୂର୍ତ୍ତ, ମାଂସଲୋଲୁପ ନିଶାଚରମାନଙ୍କ ଦ୍ୱାରା ରଚିତ । ସେଥିରେ ଅସମ୍ଭବ କଥାମାନ ରହିଛି, ଯଥା: ଚାରିଶୃଙ୍ଗ, ତିନି ଚରଣ ଦୁଇ ମୁଣ୍ଡ ଇତ୍ୟାଦି । କାଷ୍ଠ ପାଷାଣ ଆଦି ଚୈତନ୍ୟହୀନ ପଦାର୍ଥକୁ ଦେବତା ଭାବେ ଆହ୍ୱାନ କରାଯାଇଛି । ଏମାନେ ଈଶ୍ୱର ସ୍ୱୀକାର କରନ୍ତି ନାହିଁ କି ବେଦ ମାନନ୍ତି ନାହିଁ । ବ୍ରାହ୍ମଣ ଶ୍ରମଣକୁ ପ୍ରତ୍ୟାଖ୍ୟାନ କରନ୍ତି । ଏମାନଙ୍କ ମତରେ ଅଗ୍ନିହୋତ୍ର, ବେଦାଧ୍ୟୟନ, ଦଣ୍ଡ ଧାରଣା, ଭସ୍ମଲେପନ, ଏସବୁ ପୌରୁଷହୀନ ଲୋକର ଉପଜୀବିକା ମାତ୍ର । ଦାନ ଧର୍ମ ଯଜ୍ଞର ସୁକୃତ ଦୁଷ୍କୃତ ଫଳ ବୋଲି କିଛି ନାହିଁ । ଈଶ୍ୱର ବ୍ରହ୍ମା ବା ପ୍ରଜାପତି ନୁହନ୍ତି । ମାଟି, ବାୟୁ, ତେଜ ଓ ଜଳ ଏହି ଚାରୋଟି ଭୂତଙ୍କୁ ନେଇ ସମସ୍ତ ବିଷୟ ଗଢ଼ା । ମଣିଷ ଯାହା ଦେଖେ, ଶୁଣେ ବା ଅନୁଭବ କରେ, ସେ ସବୁ ହେଉଛି ଇନ୍ଦ୍ରିୟମାନଙ୍କ ଉପରେ ସେଇ ଭୂତମାନଙ୍କର କ୍ରିୟା । ସେଇ ଭୂତ ଜଡ଼ ଅଚେତନ ପଦାର୍ଥମାନଙ୍କରୁ ପ୍ରାଣ ଓ ଚେତନର ଉଦ୍ଭବ । ସେ ସବୁକୁ ଏକାଠି କରିଦେଲେ ପ୍ରାଣ ବା ଚେତନା ଆସେ ନାହିଁ । ସେସବୁ କେବଳ ନିର୍ଦ୍ଦିଷ୍ଟ ପ୍ରକାର ନିର୍ଦ୍ଦିଷ୍ଟ ନିୟମ ଅନୁଯାୟୀ ମିଶ୍ରିତ ହେବାରେ ପ୍ରାଣର ଅଙ୍କୁର ସମ୍ଭବ ହୋଇଥାଏ, ଯେପରିକି ଚାଉଳଗୁଡ଼ିକୁ ନିର୍ଦ୍ଦିଷ୍ଟ ନିୟମରେଏକାଠି କରିବାରେ ମଦ ଉତ୍ପନ୍ନ ହୁଏ ।

ସେହି ଭୂତମାନଙ୍କ ନିର୍ଦ୍ଦିଷ୍ଟ ଗୁଣ ଓ ଗତି ରହିଛ । ଯଥା, କିଏ ଥଣ୍ଡା ତ କିଏ ଗରମ । କିଏ କଠିନ ତ କିଏ ନରମ । କିଏ ଉଡ଼େ ତ କିଏ ବୁଡ଼େ । କିଏ ଦୃଶ୍ୟ ତ କିଏ ଅଦୃଶ୍ୟ ଇତ୍ୟାଦି ଗୁଣ । ପୁଣି ସେମାନଙ୍କ ଗତି ଓ ପରିବର୍ତ୍ତନ ରହିଛି । ସେହି ବିବର୍ତ୍ତନ, ଯାହାଦ୍ୱାରା ପ୍ରକୃତି ବଦଳୁଛି ଓ ସୃଷ୍ଟି ଚାଲିଛି, ତାହା ସେହିମାନଙ୍କ ସ୍ୱଭାବ । ଅତଏବ ''ସ୍ୱଭାବ ଏବ ଜଗତଃ କାରଣଂ'' । ପୁଣି ''ପଦାର୍ଥାନାଂ ପ୍ରତିନିୟତ

ଶକ୍ତିଃ'', ''ସ୍ୱଭାବତଃ ସର୍ବମିଦଂ ପ୍ରବୃତ୍ତଂ'', ଅର୍ଥାତ୍ ସ୍ୱଭାବ ଜଗତର କାରଣ, ସ୍ୱଭାବ ଜଗତର ଶକ୍ତି, ତା 'ସ୍ୱଭାବର ନିୟମ ଅନୁସରଣ କରେ । ଅନ୍ୟ ଭାଷାରେ କହିଲେ ସ୍ୱଭାବ ହେଉଛି ପ୍ରକୃତିର ନିୟମ, ''Law of the nature ,'' ତାକୁଇ ଅନୁସରଣ କରିବାକୁ ହେବ ।

ତେଣୁ ଜଗତର ସୃଷ୍ଟି ଲାଗି ଈଶ୍ୱର ସମ୍ପୂର୍ଣ୍ଣ ନିଷ୍ପ୍ରୟୋଜନ । ପ୍ରତ୍ୟେକ ଜିନିଷର କାର୍ଯ୍ୟକାରିତା ରହିଛି । ଈଶ୍ୱରଙ୍କ ସୃଷ୍ଟିର କାରଣ କିଏ ? କିନ୍ତୁ ଜଗତର ସୃଷ୍ଟିର କାରଣ ରହିଛି । କାରଣ ''ଗୁଣଃ କାର୍ଯ୍ୟଂ ଗୁଣମାରଭନ୍ତେ'', ଅର୍ଥାତ୍ କାର୍ଯ୍ୟ ଯେ ଗୁଣ , ତା କାର୍ଯ୍ୟକୁହିଁ ଆଶ୍ରା କରେ । ଅର୍ଥାତ୍ ଭୂତ ବା ବସ୍ତୁମାନଙ୍କର ଯେଉଁ ଗୁଣ, ତା ସେଇ ଭୂତମାନଙ୍କୁ ହିଁ ଆଶ୍ରା କରେ । ଏପରିକି ଅଗ୍ନିରୁ ତାର ଉତ୍ତାପକୁ ଅନ୍ତର କରିହେବ ନାହିଁ । ତେଣୁ ଭୂତମାନଙ୍କର ସେହି ସ୍ୱଭାବ, ଗତି ଓ ଗୁଣଯୋଗୁଁ ସମସ୍ତ ଜଗତ — ପରମାଣୁଠାରୁ ଚୈତନ୍ୟ ଯାଏ ସମସ୍ତ ପ୍ରପଞ୍ଚ ବିଦ୍ୟମାନ ।

ବୃହସ୍ପତିଙ୍କ ମତରେ, କେବଳ ଶାସ୍ତ୍ରରେ ଲେଖା ହେଲା ବୋଲି ତାହା ସତ୍ୟ ନୁହେଁ । ବେଦରେ କୁହାଗଲା ବୋଲି ତାହା ପ୍ରମାଣ ନୁହେଁ ।

**''କେବଳଂ ଶାସ୍ତ୍ରମାଶ୍ରିତ୍ୟ ନୈବ କାର୍ଯ୍ୟା ବିଚାରଣା**

**ଯୁକ୍ତିହୀନ୍- ବିଚାରେ ତୁ ଧର୍ମହାନିଃ ପ୍ରଜାୟତେ ॥''**

ଲେଖା ହୋଇଗଲା ବୋଲି କୌଣସି ଜିନିଷ ନିର୍ଭରଯୋଗ୍ୟ ନୁହେଁ । ଅସଲ କଥା, ଯୁକ୍ତି ନ ଥାଇ, ପ୍ରମାଣ ନ ଥାଇ କିଛି ଗ୍ରହଣ କରିବ ନାହିଁ । ତେଣୁ ସେ ମତ ଅନୁଯାୟୀ ଏକମାତ୍ର ଇହଲୋକହିଁ ସତ୍ୟ ପରଲୋକ ବୋଲି କିଛି ନାହିଁ । ଆଧ୍ୟାତ୍ମିକ ବାଦୀମାନେ ଇହଲୋକଙ୍କୁ ମାୟା ମିଥ୍ୟା ଓ ଅଳୀକ କହି ପରଲୋକକୁ ସତ୍ୟ କହିଲାବେଳେ ଏମାନେ ଠିକ୍ ତାର ଓଲଟା କଥା କହିଥାନ୍ତି । କାରଣ ତାହା ସବୁ ପ୍ରମାଣ ହୀନ । ତେଣୁ ସୁଖଭୋଗ କରିବାକୁ ହେଲେ ତାହା ଇହଲୋକରେ ହିଁ କରିବାକୁ ହେବ । ପରଲୋକରେ ମୃତ୍ୟୁ ପରେ ତାର ପ୍ରଶ୍ନ ଉଠେ ନାହିଁ । ଚିତ୍ତକୁ ନିବୃତ୍ତ ନ କରି ଭୋଗ କରିବାକୁ ହେଲେ ସଂସାରକୁ ଆନନ୍ଦମୟ କରି ଗଢ଼ିବାକୁ ହେବ । ଦରକାର ପଡିଲେ ଅଧିକ ସୁଖ ଲାଗି କ୍ଷଣିକ ସୁଖକୁ ତ୍ୟାଗ କରିବାକୁ ହେବ । ସେସୁଖ ହେଉଛି ମାନବୋଚିତ ସୁଖ, ସୁଖ ନୁହେଁ । ଅଥଚ ଲୋକାୟତଙ୍କ ବିରୋଧରେ ଅପପ୍ରଚାରର ସୀମା ନାହିଁ । ପାପ, ପୁଣ୍ୟ, ଧର୍ମ, ଅଧର୍ମ, ଆଚାର, ଅନାଚାର, କିଛି ବିଚାର ନ କରି ବିର୍ବିଚାର ସୁଖ ଭୋଗ ତାଙ୍କ ଉଦ୍ଦେଶ୍ୟ ବୋଲି କୁହାଯାଏ । ତାକୁ ନିନ୍ଦିତ କରିବା ହେଲା ଏକମାତ୍ର ଲକ୍ଷ୍ୟ । ଧର୍ମ ପ୍ରଚାରକ ଓ ଶାସକଶ୍ରେଣୀ, ଯେଉଁମାନଙ୍କର ମତ ଧର୍ମ, ଆଦର୍ଶ ଆଉ ବାସ୍ତବ କାର୍ଯ୍ୟକୁ ଏମାନେ ସମାଲୋଚନା କରନ୍ତି ଓ ତାଙ୍କର

ପ୍ରକୃତ ମୁଖା ଖୋଲି ଦିଅନ୍ତି, ସେହିମାନେ ହିଁ ଲୋକାୟତମାନଙ୍କ ବିରୋଧରେ ଏହା ପ୍ରଚାର କରନ୍ତି ।

ଲୋକାୟତମାନଙ୍କ ଦର୍ଶନରେ ଉଚ୍ଛୃଙ୍ଖଳତା ନାହିଁ । ଏମାନେ କଳୁଷିତ ଜୀବନଯାପନ ବିରୋଧୀ । ଏମାନଙ୍କ ମତରେ ମଣିଷ ହେବ ''ଶୁଦ୍ଧାନ୍ତକରଣାଃ-ସର୍ବାନୁଷ୍ଠାନନିର୍ମଳାଃ,'' ମଣିଷର ଅନ୍ତର ଶୁଦ୍ଧ ଓ ନିର୍ମଳ ହେବା ଦରକାର । ତେଣୁ ପାଶବିକ ଓ ଜୈବିକ ସୁଖ, ସୁଖ ନୁହେଁ । ସୁଖ ହେଉଛି, ''ନାଳ୍ପେ ସୁଖମସ୍ତି, ଭୂମେତ୍ୟେକ ବିଜିଜ୍ଞାସିବ୍ୟୋଃ,'' ସାମାନ୍ୟ ସୀମିତ ଜୈବ ସୁଖ, ସୁଖ ନୁହେଁ, ଅନନ୍ତ ପରିତୃପ୍ତିହୀନ ଆନନ୍ଦମୟ ସୁଖ ହିଁ ଭୂମା । ଭୂମା ହେଉଛି ସବୁଦିଗରୁ ସବୁ କ୍ଷେତ୍ରରେ ପରିପୂର୍ଣ୍ଣ ବିପୁଳତା ।

ଲୋକାୟତ ମତରେ ସାଧାରଣ ଆବଶ୍ୟକତା ପୂରଣରେ ସୁଖ ନାହିଁ । ତାହା ଜୈବିକ, ପାଶବିକ ସୁଖ । ପଶୁ ପକ୍ଷୀ ସମସ୍ତେ ତାଙ୍କର କାମ୍ୟ ବସ୍ତୁ ପାଇଲେ ସୁଖୀ ହୁଅନ୍ତି, ନ ପାଇଲେ ଦୁଃଖ କରନ୍ତି । ମଣିଷ କେବଳ ସେତିକି ରେ ସନ୍ତୁଷ୍ଟ ହୋଇ ନ ପାରେ, କାରଣ ସେ ମଣିଷ । ତାର କର୍ମ, ଜ୍ଞାନ, ଚିନ୍ତା, ଶକ୍ତି ଓ ଆକାଙ୍‌କ୍ଷା ରହିଛି । ଏଗୁଡ଼ିକର କୌଣସି ସୀମା ନାହିଁ । ତାର ସୁଖ ଆସିପାରେ, କିନ୍ତୁ ସନ୍ତୋଷ ନାହିଁ । କାରଣ ତାହା 'ଉପଭୋଗେନ ନ ଶ୍ୟାମ୍ୟତି' । ଉପଭୋଗ କଲେ ମଧ ତାର ଶେଷ ନାହିଁ । କାରଣ ଜୈବିକ କାମନାରେ ନିବୃତ୍ତି ବା ପରିତୃପ୍ତି ଆଁସିପାରେ, କିନ୍ତୁ ମାନବୋଚିତ କାମନା ବା ଆକାଙ୍‌କ୍ଷାରେ ନିବୃତ୍ତି ବା ପରିତୃପ୍ତି ନାହିଁ । ଜୈବିକ ସୁଖର ବିପରିତ ଦୁଃଖ । କିନ୍ତୁ ମାନବୋଚିତ ଆନନ୍ଦର ବିପରୀତ ଦୁଃଖ ନୁହେଁ । ସେ ଦୁଃଖକୁ ଦେଖେ ଆନନ୍ଦର ସୋପାନ ଭାବରେ, ତାକୁ ଆଲିଙ୍ଗନ ଓ ଅଧିକାର କରେ ଅଧିକ ଆନନ୍ଦ ପାଇଁ । ସେ ଆନନ୍ଦରେ ପରିତୃପ୍ତି ନାହିଁ । ପ୍ରକୃତି ଯେପରି ଚିର ଅନନ୍ତ, ମଣିଷ ଭିତରେ ତାର ସଚେତନ ପ୍ରକାଶର ସ୍ୱଭାବ ସେହିପରି ଅନ୍ତହୀନ । ଅଥଚ ଲୋକାୟତ ଦର୍ଶନରେ ଏହିପରି ଦୃଷ୍ଟକୋଣକୁ ବିକୃତ କରାଯାଏ ।

ସମସ୍ତ ମତପାର୍ଥକ୍ୟ ସତ୍ତ୍ୱେ ଅଧିକାଂଶ ଭାରତୀୟ ଦର୍ଶନ ଗୋଟିଏ ବିଷୟରେ ଏକମତ, — ଈଶ୍ୱର ବୋଲି କିଛିନାହିଁ, ତାହା ଏକ ଅଳୀକ, ଭ୍ରମାତ୍ମକ ଧାରଣା । ତାହା ଜ୍ଞାନସିଦ୍ଧ, ନ୍ୟାୟସିଦ୍ଧ, ନୀତିସିଦ୍ଧ ଓ ପ୍ରମଣ ସିଦ୍ଧ ନୁହେଁ । ଯେଉଁ ଦୁଇଟି ଦର୍ଶନ ଈଶ୍ୱରରେ ବିଶ୍ୱାସୀ, ତାହା ପରେ ଆସିବ ।

## ମାନବିକ ଦୃଷ୍ଟିରେ

ଧର୍ମ, ନ୍ୟାୟ, ଦର୍ଶନ, ବିଜ୍ଞାନ ବିଭିନ୍ନ ଦିଗରୁ ମଣିଷ ଈଶ୍ୱରଙ୍କୁ ବୁଝିବାରେ ଲାଗିଛି । କେବଳ ଦେଖିନାହିଁ ମଣିଷର ମାନବିକ ଦୃଷ୍ଟିରୁ, ଅର୍ଥାତ୍ ନିଜକୁ ଈଶ୍ୱରଙ୍କ ସୃଷ୍ଟି ନ ଭାବି ଏକ ସ୍ୱାଧୀନ ସ୍ୱତନ୍ତ୍ର ସତ୍ତାର ଦୃଷ୍ଟିରେ । ଏହା ସେହିପରି ଜଣେ ବ୍ୟକ୍ତିର ବିଚାର, ଯାହାର ମାନବ-ପ୍ରୀତି ସର୍ବୋଚ୍ଚ ମାନବତ୍ୱର ଊର୍ଦ୍ଧ୍ୱରେ । ଯାହାର ମାନବ-

ଦୃଷ୍ଟି କୌଣସି ପ୍ରକାର ସ୍ୱାର୍ଥ କି ବାହ୍ୟଭାବର ସ୍ପର୍ଶରେ ଜଡ଼ିତ ନୁହେଁ, ଯାହାର ମାନବିକ ବିଚାର ପ୍ରକୃତି ଭଳି ସ୍ୱଚ୍ଛ, ନିର୍ମଳ ଆଉ ପ୍ରାକୃତିକ । ସେହି ବ୍ୟକ୍ତି ଅନ୍ୟ କେହି ନୁହନ୍ତି, ସ୍ୱୟଂ ସର୍ଦ୍ଦାର ଭଗତ୍ ସିଂହ । ଯାହାଙ୍କର ମସ୍ତକ ବିଶ୍ୱଗ୍ରାସୀ ରାକ୍ଷସ-ଶକ୍ତି ଆଗରେ ଯେଭଳି ଅବନତ ନୁହେଁ, ସେହିପରି ଅବନତ ହୋଇନାହିଁ, ଯୁଗ ଯୁଗର ବିଶ୍ୱଜୟୀ ଅନ୍ଧବିଶ୍ୱାସ ଆଗରେ । ଦେଶ ଜାତିଲାଗି ବହୁଲୋକ ଶହୀଦ ହୋଇଛନ୍ତି, ଫାଶିରେ ଝୁଲିଛନ୍ତି, ଅସୀମ ସେମାନଙ୍କର ବୀରତ୍ୱ, କିନ୍ତୁ ମଣିଷର ବିଚାରଜ୍ଞାନର ସ୍ୱାଧୀନତା, ତାର ମାନବିକ ମହତ୍ତ୍ୱ ରକ୍ଷା କରିବାରେ କେତେଜଣ ସମର୍ଥ ? ଅନ୍ତିମ ଅବସ୍ଥାରେ ପ୍ରାୟ ସମସ୍ତେ ଆତ୍ମସମର୍ପଣ କରିଛନ୍ତି ସେହି ଅନ୍ଧବିଶ୍ୱାସ ଆଗରେ, ଖୋଜିଛନ୍ତି ମୁକ୍ତିର ମାର୍ଗ, ଆଶ୍ୱସ୍ତିର ରାହା । ଭଗତ ସିଂହଙ୍କ ଭାଷାରେ, ''ଈଶ୍ୱର ବିଶ୍ୱାସ ଦୁଃଖକୁ ଲାଘବ କରିଦିଏ, ଏପରିକି ତାକୁ ଆନନ୍ଦମୟ କରିଥାଏ । ସେହି ବିଶ୍ୱାସ ଭିତରେ ମଣିଷ ଦୃଢ଼ ସାନ୍ତ୍ୱନା ଓ ସମର୍ଥନ ପାଇପାରେ । ତାଙ୍କ ବିନା ମଣିଷକୁ ନିଜ ଉପରେ ନିର୍ଭର କରିବାକୁ ହେବ । ସଂସାରର ଝଡ଼ଝଞ୍ଜା ଭିତରେ ନିଜ ଗୋଡ଼ରେ ଛିଡା ହେବାଟା ଗୋଟାଏ ପିଲାଖେଳ ନୁହେଁ ।'' ଯଦି କିଏ ଜଲ୍ଲାଦର ଖଡ୍‌ଗ ଆଗରେ ମାନବର ପରାକାଷ୍ଠା — ଅନ୍ଧ ବିଶ୍ୱାସ ଉପରେ ତାର ବିଚାରଜ୍ଞାନର ବିଜୟକୁ ଘୋଷଣା କରିଛି, ଦ୍ୱିଧାହିନ ଉଦ୍‌ବେଗଶୂନ୍ୟ ଭାବେ ନିଜ ଆତ୍ମବିଶ୍ୱାସରେ ଅଟଳ ରହିଛି, ମାନବତାର ସ୍ୱାଧୀନ ଚିନ୍ତାର ଗୌରବକୁ ଅକ୍ଷୁର୍ଣ୍ଣ ରଖିଆସିଛି, ତାହାର ଏକମାତ୍ର ଦୃଷ୍ଟାନ୍ତ ସେହି ଭଗତ୍ ସିଂହ । ଫାଶିମଞ୍ଚ ଆରୋହଣ କରିବାକୁ ଯିବା ପୂର୍ବରୁ ଅସାଧାରଣ ସେହି ସର୍ଦ୍ଦାର ଭଗତ୍ ସିଂହର ଲେଖା । ତାହା ଟିକେ ଦୀର୍ଘ ହେଲେ ବି ସମସ୍ତଙ୍କ ପକ୍ଷରେ ପ୍ରଣିଧାନଯୋଗ୍ୟ ।

''ମୁଁ ଜାଣେ, ବର୍ତ୍ତମାନ ଅବସ୍ଥାରେ ଈଶ୍ୱରଙ୍କ ପ୍ରତି ମୋର ବିଶ୍ୱାସ, ମୋର ଜୀବନକୁ ସହଜ, ମୋର ଭାରକୁ ଲାଘବ କରିପାରନ୍ତା ଏବଂ ତାଙ୍କ ପ୍ରତି ମୋର ଅବିଶ୍ୱାସ ସମସ୍ତ ପରିସ୍ଥିତିକୁ ଅତିଶୟ ଶୁଷ୍କ କରି ଦେବାରୁ ଅବସ୍ଥା ଅତି କଠୋର ଦୁର୍ବିସହ ରୂପ ଗ୍ରହଣ କରିପାରେ । ସମାନ୍ୟ ଟିକେ ଇନ୍ଦ୍ରିୟାତୀତ ଭାବ ତାକୁ କାବ୍ୟିକ କରି ପାରିଥାଆନ୍ତା । ମୋର ଭାଗ୍ୟକୁ ଭେଟିବା ଲାଗି ମୁଁ କୌଣସି ମାଦକତାର ସାହାଯ୍ୟ ଚାହେଁ ନାହିଁ । ମୁଁ ଜଣେ ବାସ୍ତବବାଦୀ । ମୋ ଭିତରେ ଥିବା ପ୍ରବୃତ୍ତିକୁ ମୁଁ ବିଚାରଜ୍ଞାନ ଦ୍ୱାରା ପରାସ୍ତ କରି ଆସିଛି ।....

''.....ଯେ କୌଣସି ଲୋକ, ବିଚାର-ଶକ୍ତି ଯାହାର ଆୟତ୍ତରେ, ସେ ସବୁବେଳେ ତାର ପାରିପାର୍ଶ୍ୱିକ ଅବସ୍ଥାକୁ ବିଚାର କରି ଦେଖିବାକୁ ଚେଷ୍ଟା କରେ । ଯେଉଁଠି ପ୍ରତ୍ୟକ୍ଷ ପ୍ରମାଣର ଅଭାବ, ସେଠି ଦର୍ଶନ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ନିଏ । ମୁଁ ଆଗରୁ କହିଛି, କେତେକ ବିପ୍ଳବୀ ବନ୍ଧୁ କହନ୍ତି, ଦର୍ଶନଟା ମାନବିକ ଦୁର୍ବଳତାରୁ ଜାତ । ବିଶ୍ୱର ରହସ୍ୟ, ତାର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ, ତାର କାରଣ ଓ ନିମିତ୍ତର ସମାଧାନ ଦିଗରେ ଉଦ୍ୟମ ଲାଗି ଆମ ପୂର୍ବପୁରୁଷଙ୍କର ଯଥେଷ୍ଟ ଅବସର ରହିଥିଲା, ସେତେବେଳେ ପ୍ରତ୍ୟକ୍ଷ ପ୍ରମାଣର ଭୟଙ୍କର ଅଭାବବେଳେ ପ୍ରତ୍ୟେକ

ପ୍ରକୃତ ମୁଖା ଖୋଲି ଦିଅନ୍ତି, ସେହିମାନେ ହିଁ ଲୋକାୟତମାନଙ୍କ ବିରୋଧରେ ଏହା ପ୍ରଚାର କରନ୍ତି ।

ଲୋକାୟତମାନଙ୍କ ଦର୍ଶନରେ ଉଚ୍ଛୃଙ୍ଖଳତା ନାହିଁ । ଏମାନେ କଳୁଷିତ ଜୀବନଯାପନ ବିରୋଧୀ । ଏମାନଙ୍କ ମତରେ ମଣିଷ ହେବ ''ଶୁଦ୍ଧାନ୍ତକରଣାଃ-ସର୍ବାନୁଷ୍ଠାନନିର୍ମଳାଃ,'' ମଣିଷର ଅନ୍ତର ଶୁଦ୍ଧ ଓ ନିର୍ମଳ ହେବା ଦରକାର । ତେଣୁ ପାଶବିକ ଓ ଜୈବିକ ସୁଖ, ସୁଖ ନୁହେଁ । ସୁଖ ହେଉଛି, ''ନାଳ୍ପେ ସୁଖମସ୍ତି, ଭୂମେତ୍ୟେକ ବିଜିଜ୍ଞାସିତବ୍ୟଃ,'' ସାମାନ୍ୟ ସୀମିତ ଜୈବ ସୁଖ, ସୁଖ ନୁହେଁ, ଅନନ୍ତ ପରିତୃପ୍ତିହୀନ ଆନନ୍ଦମୟ ସୁଖ ହିଁ ଭୂମା । ଭୂମା ହେଉଛି ସବୁଦିଗରୁ ସବୁ କ୍ଷେତ୍ରରେ ପରିପୂର୍ଣ୍ଣ ବିପୁଳତା ।

ଲୋକାୟତ ମତରେ ସାଧାରଣ ଆବଶ୍ୟକତା ପୂରଣରେ ସୁଖ ନାହିଁ । ତାହା ଜୈବିକ, ପାଶବିକ ସୁଖ । ପଶୁ ପକ୍ଷୀ ସମସ୍ତେ ତାଙ୍କର କାମ୍ୟ ବସ୍ତୁ ପାଇଲେ ସୁଖୀ ହୁଅନ୍ତି, ନ ପାଇଲେ ଦୁଃଖ କରନ୍ତି । ମଣିଷ କେବଳ ସେତିକିରେ ସନ୍ତୁଷ୍ଟ ହୋଇ ନ ପାରେ, କାରଣ ସେ ମଣିଷ । ତାର କର୍ମ, ଜ୍ଞାନ, ଚିନ୍ତା, ଶକ୍ତି ଓ ଆକାଙ୍କ୍ଷା ରହିଛି । ଏଗୁଡ଼ିକର କୌଣସି ସୀମା ନାହିଁ । ତାର ସୁଖ ଆସିପାରେ, କିନ୍ତୁ ସନ୍ତୋଷ ନାହିଁ । କାରଣ ତାହା 'ଉପଭୋଗେନ ନ ଶ୍ୟାମ୍ୟତି' । ଉପଭୋଗ କଲେ ମଧ୍ୟ ତାର ଶେଷ ନାହିଁ । କାରଣ ଜୈବିକ କାମନାରେ ନିବୃତ୍ତି ବା ପରିତୃପ୍ତି ଆଁସିପାରେ, କିନ୍ତୁ ମାନବୋଚିତ କାମନା ବା ଆକାଙ୍କ୍ଷାରେ ନିବୃତ୍ତି ବା ପରିତୃପ୍ତି ନାହିଁ । ଜୈବିକ ସୁଖର ବିପରିତ ଦୁଃଖ । କିନ୍ତୁ ମାନବୋଚିତ ଆନନ୍ଦର ବିପରୀତ ଦୁଃଖ ନୁହେଁ । ସେ ଦୁଃଖକୁ ଦେଖେ ଆନନ୍ଦର ସୋପାନ ଭାବରେ, ତାକୁ ଆଲିଙ୍ଗନ ଓ ଅଧିକାର କରେ ଅଧିକ ଆନନ୍ଦ ପାଇଁ । ସେ ଆନନ୍ଦରେ ପରିତୃପ୍ତି ନାହିଁ । ପ୍ରକୃତି ଯେପରି ଚିର ଅନନ୍ତ, ମଣିଷ ଭିତରେ ତାର ସଚେତନ ପ୍ରକାଶର ସ୍ୱଭାବ ସେହିପରି ଅନ୍ତହୀନ । ଅଥଚ ଲୋକାୟତ ଦର୍ଶନରେ ଏହିପରି ଦୃଷ୍ଟକୋଣକୁ ବିକୃତ କରାଯାଏ ।

ସମସ୍ତ ମତପାର୍ଥକ୍ୟ ସତ୍ତ୍ୱେ ଅଧିକାଂଶ ଭାରତୀୟ ଦର୍ଶନ ଗୋଟିଏ ବିଷୟରେ ଏକମତ, — ଈଶ୍ୱର ବୋଲି କିଛିନାହିଁ, ତାହା ଏକ ଅଳୀକ, ଭ୍ରମାତ୍ମକ ଧାରଣା । ତାହା ଜ୍ଞାନସିଦ୍ଧ, ନ୍ୟାୟସିଦ୍ଧ, ନୀତିସିଦ୍ଧ ଓ ପ୍ରମଣ ସିଦ୍ଧ ନୁହେଁ । ଯେଉଁ ଦୁଇଟି ଦର୍ଶନ ଈଶ୍ୱରରେ ବିଶ୍ୱାସୀ, ତାହା ପରେ ଆସିବ ।

## ମାନବିକ ଦୃଷ୍ଟିରେ

ଧର୍ମ, ନ୍ୟାୟ, ଦର୍ଶନ, ବିଜ୍ଞାନ ବିଭିନ୍ନ ଦିଗରୁ ମଣିଷ ଈଶ୍ୱରଙ୍କୁ ବୁଝିବାରେ ଲାଗିଛି । କେବଳ ଦେଖିନାହିଁ ମଣିଷର ମାନବିକ ଦୃଷ୍ଟିରୁ, ଅର୍ଥାତ୍ ନିଜକୁ ଈଶ୍ୱରଙ୍କ ସୃଷ୍ଟି ନ ଭାବି ଏକ ସ୍ୱାଧୀନ ସ୍ୱତନ୍ତ୍ର ସତ୍ତାର ଦୃଷ୍ଟିରେ । ଏହା ସେହିପରି ଜଣେ ବ୍ୟକ୍ତିର ବିଚାର, ଯାହାର ମାନବ-ପ୍ରୀତି ସର୍ବୋଚ୍ଚ ମାନବତ୍ୱର ଊର୍ଦ୍ଧ୍ୱରେ । ଯାହାର ମାନବ-

ଦୃଷ୍ଟି କୌଣସି ପ୍ରକାର ସ୍ୱାର୍ଥ କି ବାହ୍ୟଭାବର ସ୍ପର୍ଶରେ ଜଡ଼ିତ ନୁହେଁ, ଯାହାର ମାନବିକ ବିଚାର ପ୍ରକୃତି ଭଳି ସ୍ୱଚ୍ଛ, ନିର୍ମଳ ଆଉ ପ୍ରାକୃତିକ । ସେହି ବ୍ୟକ୍ତି ଅନ୍ୟ କେହି ନୁହନ୍ତି, ସ୍ୱୟଂ ସର୍ଦ୍ଦାର ଭଗତ୍ ସିଂହ । ଯାହାଙ୍କର ମସ୍ତକ ବିଶ୍ୱଗ୍ରାସୀ ରାକ୍ଷସ-ଶକ୍ତି ଆଗରେ ଯେଭଳି ଅବନତ ନୁହେଁ, ସେହିପରି ଅବନତ ହୋଇନାହିଁ, ଯୁଗ ଯୁଗର ବିଶ୍ୱଜୟୀ ଅନ୍ଧବିଶ୍ୱାସ ଆଗରେ । ଦେଶ ଜାତିଲାଗି ବହୁଲୋକ ଶହୀଦ ହୋଇଛନ୍ତି, ଫାଶିରେ ଝୁଲିଛନ୍ତି, ଅସୀମ ସେମାନଙ୍କର ବୀରତ୍ୱ, କିନ୍ତୁ ମଣିଷର ବିଚାରଜ୍ଞାନର ସ୍ୱାଧୀନତା, ତାର ମାନବିକ ମହତ୍ତ୍ୱ ରକ୍ଷା କରିବାରେ କେତେଜଣ ସମର୍ଥ ? ଅନ୍ତିମ ଅବସ୍ଥାରେ ପ୍ରାୟ ସମସ୍ତେ ଆତ୍ମସମର୍ପଣ କରିଛନ୍ତି ସେହି ଅନ୍ଧବିଶ୍ୱାସ ଆଗରେ, ଖୋଜିଛନ୍ତି ମୁକ୍ତିର ମାର୍ଗ, ଆଶ୍ୱସ୍ତିର ରାହା । ଭଗତ ସିଂହଙ୍କ ଭାଷାରେ, ''ଈଶ୍ୱର ବିଶ୍ୱାସ ଦୁଃଖକୁ ଲାଘବ କରିଦିଏ, ଏପରିକି ତାକୁ ଆନନ୍ଦମୟ କିରିଥାଏ । ସେହି ବିଶ୍ୱାସ ଭିତରେ ମଣିଷ ଦୃଢ଼ ସାନ୍ତ୍ୱନା ଓ ସମର୍ଥନ ପାଇପାରେ । ତାଙ୍କ ବିନା ମଣିଷକୁ ନିଜ ଉପରେ ନିର୍ଭର କରିବାକୁ ହେବ । ସଂସାରର ଝଡ଼ଝଞ୍ଜା ଭିତରେ ନିଜ ଗୋଡ଼ରେ ଛିଡା ହେବାଟା ଗୋଟାଏ ପିଲାଖେଳ ନୁହେଁ ।'' ଯଦି କିଏ ଜଲ୍ଲାଦର ଖଡ୍‌ଗ ଆଗରେ ମାନବର ପରାକାଷ୍ଠା — ଅନ୍ଧ ବିଶ୍ୱାସ ଉପରେ ତାର ବିଚାରଜ୍ଞାନର ବିଜୟକୁ ଘୋଷଣା କରିଛି, ଦ୍ୱିଧାହିନ ଉଦ୍‌ବେଗଶୂନ୍ୟ ଭାବେ ନିଜ ଆତ୍ମବିଶ୍ୱାସରେ ଅଟଳ ରହିଛି, ମାନବତାର ସ୍ୱାଧୀନ ଚିନ୍ତାର ଗୌରବକୁ ଅକ୍ଷୁର୍ଣ୍ଣ ରଖିଆସିଛି, ତାହାର ଏକମାତ୍ର ଦୃଷ୍ଟାନ୍ତ ସେହି ଭଗତ୍ ସିଂହ । ଫାଶିମଞ୍ଚ ଆରୋହଣ କରିବାକୁ ଯିବା ପୂର୍ବରୁ ଅସାଧାରଣ ସେହି ସର୍ଦ୍ଦାର ଭଗତ୍ ସିଂହର ଲେଖା । ତାହା ଟିକେ ଦୀର୍ଘ ହେଲେ ବି ସମସ୍ତଙ୍କ ପକ୍ଷରେ ପ୍ରଣିଧାନଯୋଗ୍ୟ ।

''ମୁଁ ଜାଣେ, ବର୍ତ୍ତମାନ ଅବସ୍ଥାରେ ଈଶ୍ୱରଙ୍କ ପ୍ରତି ମୋର ବିଶ୍ୱାସ, ମୋର ଜୀବନକୁ ସହଜ, ମୋର ଭାରକୁ ଲାଘବ କରିପାରନ୍ତା ଏବଂ ତାଙ୍କ ପ୍ରତି ମୋର ଅବିଶ୍ୱାସ ସମସ୍ତ ପରିସ୍ଥିତିକୁ ଅତିଶୟ ଶୁଷ୍କ କରି ଦେବାରୁ ଅବସ୍ଥା ଅତି କଠୋର ଦୁର୍ବିସହ ରୂପ ଗ୍ରହଣ କରିପାରେ । ସମାନ୍ୟ ଟିକେ ଇନ୍ଦ୍ରିୟାତୀତ ଭାବ ତାକୁ କାବ୍ୟିକ କରି ପାରିଥାଆନ୍ତା । ମୋର ଭାଗ୍ୟକୁ ଭେଟିବା ଲାଗି ମୁଁ କୌଣସି ମାଦକତାର ସାହାଯ୍ୟ ଚାହେଁ ନାହିଁ । ମୁଁ ଜଣେ ବାସ୍ତବବାଦୀ । ମୋ ଭିତରେ ଥିବା ପ୍ରବୃତ୍ତିକୁ ମୁଁ ବିଚାରଜ୍ଞାନ ଦ୍ୱାରା ପରାସ୍ତ କରି ଆସିଛି ।....

''.....ଯେ କୌଣସି ଲୋକ, ବିଚାର-ଶକ୍ତି ଯାହାର ଆୟତ୍ତରେ, ସେ ସବୁବେଳେ ତାର ପାରିପାର୍ଶ୍ୱିକ ଅବସ୍ଥାକୁ ବିଚାର କରି ଦେଖିବାକୁ ଚେଷ୍ଟା କରେ । ଯେଉଁଠି ପ୍ରତ୍ୟକ୍ଷ ପ୍ରମାଣର ଅଭାବ, ସେଠି ଦର୍ଶନ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ନିଏ । ମୁଁ ଆଗରୁ କହିଛି, କେତେକ ବିପ୍ଳବୀ ବନ୍ଧୁ କହନ୍ତି, ଦର୍ଶନଟା ମାନବିକ ଦୁର୍ବଳତାରୁ ଜାତ । ବିଶ୍ୱର ରହସ୍ୟ, ତାର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ, ତାର କାରଣ ଓ ନିମିତ୍ତର ସମାଧାନ ଦିଗରେ ଉଦ୍ୟମ ଲାଗି ଆମ ପୂର୍ବପୁରୁଷଙ୍କର ଯଥେଷ୍ଟ ଅବସର ରହିଥିଲା, ସେତେବେଳେ ପ୍ରତ୍ୟକ୍ଷ ପ୍ରମାଣର ଭୟଙ୍କର ଅଭାବବେଳେ ପ୍ରତ୍ୟେକ

ତାଙ୍କ ନିଜ ନିଜ ଉପାୟରେ ତାର ସମାଧାନର ଚେଷ୍ଟା କରିଛନ୍ତି । ଏଇଠି ଆମେ ବିଭିନ୍ନ ଧର୍ମମତର ମୌଳିକ ପାର୍ଥକ୍ୟର ସନ୍ଧନା ପାଉ । ସେଥିମଧ୍ୟରୁ କେତେକ ବୈର-ଭାବାପନ୍ନ ଓ ପରସ୍ପରର ବିରୋଧୀ.... ପ୍ରତ୍ୟେକ ନିଜକୁ ନିର୍ଭୁଲ ବୋଲି ମନେ କରନ୍ତି । ଦୁର୍ଭାଗ୍ୟଟା ଏଇଠି, ପ୍ରାଚୀନ ବିଜ୍ଞବ୍ୟକ୍ତି ଓ ଚିନ୍ତାଶୀଳ ପଣ୍ଡିତମାନଙ୍କର ମତାମତ, ଗବେଷଣା ଓ ପରୀକ୍ଷାକୁ ଅଜ୍ଞାନତା ବିରୋଧରେ ଭବିଷ୍ୟତ ସଂଗ୍ରାମର ଭିତ୍ତି କରିବା ଏବଂ ସେଇ ରହସ୍ୟମୟ ସମସ୍ୟାର ସମାଧନ ଖୋଜିବାର ଉଦ୍ୟମ କରିବା ପରିବର୍ତ୍ତେ ଆମେ ସେହି ବିଶ୍ୱାସ ପଛରେ କୋଳାହଳ ସୃଷ୍ଟି କରିଥାଉଁ ସେମାନଙ୍କର ବ୍ୟାଖ୍ୟା ଓ ବର୍ଣ୍ଣନା ପ୍ରତି ଦୃଢ଼ ଆସ୍ଥା ଓ ଅଟଳ ବିଶ୍ୱାସ ରଖି ଆମେ ଆମର ଅଜ୍ଞାନ ଜଡ଼ତାର ପ୍ରମାଣ ଦେଇସାରିଛୁ । ଫଳରେ ମାନବିକ ପ୍ରକୃତିକୁ ସ୍ଥାଣୁ ଓ ପଙ୍ଗୁ କରିବା ଦୋଷରେ ଆମେ ଦୋଷୀ ।

''ଯେ କୌଣସି ବ୍ୟକ୍ତି, ଯିଏ ପ୍ରଗତିର ପକ୍ଷପାତୀ, ତାକୁ ପ୍ରାଚୀନ ବିଶ୍ୱାସର ପ୍ରତ୍ୟେକଟି ଜିନିଷକୁ ସମାଲୋଚନା ଓ ଅବିଶ୍ୱାସ କରିବାକୁ ପଡ଼ିବ । ତାହା ବିରୋଧରେ ଠିଆହେବାକୁ ହେବ । ଗୋଟି ଗୋଟି କରି ପ୍ରଚଳିତ ଧର୍ମ ବିଶ୍ୱାସର ପ୍ରତ୍ୟେକଟି ଅନ୍ଧିସନ୍ଧିକୁ ଯୁକ୍ତିଯୁକ୍ତତା ଦ୍ୱାରା ପରିଷ୍କାର କରିବାକୁ ହେବ । ବହୁ ଯୁକ୍ତିଯୁକ୍ତ ବିଚାର ପରେ ଯଦି ଜଣେ କୌଣସି ଦର୍ଶନ ପ୍ରତି ବିଶ୍ୱାସ ରଖେ, ତେବେ ତାର ବିଶ୍ୱାସ ସ୍ୱାଗତଯୋଗ୍ୟ । ତାର ସେଇ ଯୁକ୍ତିଯୁକ୍ତ ବିଚାର ଭୁଲ, ଦୋଷଯୁକ୍ତ, ବିଚ୍ୟୁତିପୂର୍ଣ୍ଣ ବା ବିପଥଗାମୀ ହୋଇପାରେ । କିନ୍ତୁ ତାହା ସଂଶୋଧିତ ହେବାକୁ ବାଧ୍ୟ, କାରଣ ଯେହେତୁ ତାର ଜୀବନର ନିର୍ଦ୍ଦେଶିତ ନୀତି ହେଲା ଯୁକ୍ତିଯୁକ୍ତ ବିଚାର । କିନ୍ତୁ କେବଳ ବିଶ୍ୱାସ ବା ଅନ୍ଧବିଶ୍ୱାସ ବିପଦଜନକ । ତାହା ମସ୍ତିଷ୍କକୁ ଜଡ, ନିସ୍ତେଜ କରିଦିଏ । ମଣିଷକୁ ପ୍ରତିକ୍ରିୟାଶୀଳ କରେ । ମଣିଷ ଯିଏ ନିଜକୁ ବସ୍ତୁବାଦୀ ବୋଲି ଦାବୀକରେ, ତାକୁ ସମସ୍ତ ପ୍ରାଚୀନ ବିଶ୍ୱାସ ପ୍ରତି ଆହ୍ୱାନ ଦେବାକୁ ହେବ । ଯଦି ତାହା ଯୁକ୍ତିଯୁକ୍ତ ବିଚାର ଆକ୍ରମଣରେ ସାମନା କରିପାରିବ ନାହିଁ, ତେବେ ତାହା ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିପଡିବ । ତାପରେ ତାର ପ୍ରଥମ କାର୍ଯ୍ୟ ହେବ ସେସବୁକୁ ଭାଙ୍ଗି, ଧ୍ୱଂସ କରି ତା ଉପରେ ଏକ ନୂତନ ଦର୍ଶନର ନିର୍ମାଣ ଲାଗି ସ୍ଥାନ ପରିଷ୍କାର କରିବା, ..... କେହି ଜଣେ ସଚେତନ ସର୍ବୋଚ୍ଚ ସତ୍ତା ନୁହେଁ , ଯିଏ କି ବିଶ୍ୱ ପ୍ରକୃତିର ଗତିକୁ ନିୟନ୍ତ୍ରଣ କରେ । ସେ ଦିଗରୁ ମୁଁ ଦୃଢ଼ ନିଶ୍ଚିତ । ଆମେ ପ୍ରକୃତିରେ ବିଶ୍ୱାସ କରୁ । ସମସ୍ତ ଆନ୍ଦୋଳନର ଲକ୍ଷ୍ୟ ହେଲା ନିଜର ସେବାରେ ପ୍ରକୃତି ଉପରେ ମଣିଷର ଆଧିପତ୍ୟ ବିସ୍ତାର କରିବା । ସେ ଦିଗରେ ନିର୍ଦ୍ଦେଶ ଦେବାପାଇଁ ତା ପଛରେ କୌଣସି ସଚେତନ ଶକ୍ତି ନାହିଁ ।

''ଯଦି ଜଣେ ସର୍ବବ୍ୟାପୀ ସର୍ବଜ୍ଞ ସର୍ବଶକ୍ତିମାନ୍ ଈଶ୍ୱର ଅଛନ୍ତି ଓ ତମେ ବିଶ୍ୱାସ କର ଯେ, ସିଏ ଏଇ ପୃଥିବୀର ସୃଷ୍ଟିକର୍ତ୍ତା, — ମତେ ଦୟାକରି କୁହ ସେ ତାହା ସୃଷ୍ଟି କଲେ କାହିଁକି ? ଏ ପୃଥିବୀ ଏକ ଦୁଃଖ ଯନ୍ତ୍ରଣାର ସଂସାର । ବାସ୍ତବରେ

ଅସଂଖ୍ୟ ଦୁଃଖ ଦୁର୍ଦ୍ଦଶାର ଏକ ଚିର ମିଳନର ସ୍ଥଳ । ଏଠି ଜଣେ ହେଲେ କେହି ପୂରାପୂରି ସନ୍ତୁଷ୍ଟ ନୁହେଁ ।

''ତମକୁ ପ୍ରାର୍ଥନା କରି କହୁଛି, କୁହ ନାହିଁ ଯେ ଏଇଟା ଭଗବାନଙ୍କର ନିୟମ । ଯଦି ସେ କୌଣସି ନିୟମରେ ବନ୍ଧା, ତେବେ ସେ ସର୍ବଶକ୍ତିମାନ୍ ନୁହନ୍ତି । ସେ ଆମ୍ଭମାନଙ୍କ ଭଳି ଆଉ ଜଣେ ଦାସ । ଦୟାକାରି କୁହ ନାହିଁ ଯେ, ତାହା ତାଙ୍କର ଲୀଳା ଖେଳା ବା ଆମୋଦ ପ୍ରମୋଦ । ନୀରୋ ଗୋଟିଏ ରୋମ୍‌କୁ ପୋଡିଥିଲେ, ସେ ଅତି ସୀମିତ ସଂଖ୍ୟକ ଲୋକଙ୍କୁ ମାରିଥିଲେ, ଅତି ସାମନ୍ୟ କେତେକ ବିୟୋଗାନ୍ତକ ଘଟଣା ସୃଷ୍ଟି କରିଥିଲେ, — ଏଇସବୁ ଥିଲା ତାଙ୍କର ଆମୋଦ ପ୍ରମୋଦ ପାଇଁ । ଇତିହାସରେ ତାଙ୍କର ସ୍ଥାନ କେଉଁଠି ? ଐତିହାସିକମାନେ ତାଙ୍କୁ କେଉଁ ନାମରେ ନାମିତ କରନ୍ତି ? ତାଙ୍କ ଉପରେ ଅଜସ୍ର ବିଷପୂର୍ଣ୍ଣ ଗାଳି ବର୍ଷଣ ହୁଏ । କ୍ରୁର ଅତ୍ୟାଚାରୀ ପିଶାଚ ନୀରୋକୁ ଭର୍ତ୍ସନା କରିବାରେ ଇତିହାସ ପୃଷ୍ଠା ତୀବ୍ର ତିରସ୍କାରରେ କଳଙ୍କିତ । ଜଣେ ଚେଙ୍ଗିଜ୍‌ଖାଁ ଅଳ୍ପ କେତେକ ହଜାର ଲୋକଙ୍କୁ ହତ୍ୟା କରି ଆନନ୍ଦ ଉପଭୋଗ କରୁଥିଲେ । ଆମେ ସେସବୁ କାମକୁ ଘୃଣା କରୁ । ସେଠି ତମ ଲାଗି ସର୍ବଶକ୍ତିମାନ୍ ଚିରନ୍ତନ ନୀରୋଙ୍କୁ ତମେ କିପରି ଯଥାର୍ଥ ନ୍ୟାୟସଙ୍ଗତ ବୋଲି କହିବାକୁ ଯାଅ ? ଯିଏ ଏବେ ବି ପ୍ରତିଦିନ ପ୍ରତିଘଣ୍ଟା ପ୍ରତି ମିନିଟରେ ଅସଂଖ୍ୟ ବିୟୋଗାନ୍ତକ ଘଟଣା ଘଟାଇ ଚାଲିଛନ୍ତି ! ଯିଏ ପ୍ରତି ମୂହୂର୍ତ୍ତରେ ତାଙ୍କ କୁକୁର୍ମରେ ଚେଙ୍ଗିଜ ଖାଁକୁ ବଳି ଯାଆନ୍ତି, ତାଙ୍କୁ କିପରି ତମେ ସମର୍ଥନ ଦେବାର ଚିନ୍ତା କର? ମୁଁ ପଚାରେ, ସେ କାହଁକି ଏପରି ଘୋର ନରକ ଯନ୍ତ୍ରଣା ଓ ଅଶାନ୍ତି ସୃଷ୍ଟି କରନ୍ତି । କାହାର ଭୋଗ ପାଇଁ ? ସେହି ସର୍ବଶକ୍ତିମାନ୍ ମଣିଷକୁ ସୃଷ୍ଟି କଲେ କାହିଁକି, ଯଦି ତାହା ନ କରିବାର କ୍ଷମତା ତାଙ୍କର ରହିଛି !''

## ଈଶ୍ୱରଙ୍କ ଜନ୍ମ ଆବଶ୍ୟକତାରୁ

''ଈଶ୍ୱରଙ୍କ ଉତ୍ପତ୍ତି ସମ୍ବନ୍ଧରେ ମୋର ନିଜର ଧାରଣା ହେଲା, ମଣିଷ ନିଜର ସୀମାବଦ୍ଧାତାକୁ ବୁଝି, ନିଜର ତ୍ରୁଟି ଦୁର୍ବଳତାଗୁଡିକୁ ବିଚାର କରି, ସମସ୍ତ କଠିନ ଅବସ୍ଥାକୁ ସାହସର ସହିତ ସାମ୍ନା କରିବା ପାଇଁ ସମସ୍ତ ବିପଦକୁ ପୌରୁଷ ସହକାରେ ମୁକାବିଲା କରିବାରେ ଉତ୍ସାହ ଓ ପ୍ରେରଣା ଲାଗି ଏବଂ ଧନ ବିଭବ ଐଶ୍ୱର୍ଯ୍ୟ ଭିତରେ ମଣିଷର ବିସ୍ଫୋରଣକୁ ଆୟତ୍ତ ଓ ଦମନ କରିବା ଉଦ୍ଦେଶ୍ୟ ନେଇ, ମଣିଷ ଭଗବାନଙ୍କର ଅସ୍ତିତ୍ୱର କଳ୍ପନା କରିଛି । ଈଶ୍ୱରଙ୍କୁ ତାଙ୍କର ବ୍ୟକ୍ତିଗତ ନିୟମ ସହ, ପିତୃତୁଲ୍ୟ ଉଦାରତା ଭିତରେ, ଉଭୟ ଦିଗରୁ କଳ୍ପନା କରାଯାଇଛି । ସେ ସବୁକୁ ଟିକିନିଖି, ଗୋଟି ଗୋଟି କରି ଚିତ୍ରଣ କରାଯାଇଛି । ତାଙ୍କର କ୍ରୋଧ ଓ ବ୍ୟକ୍ତିଗତ ନିୟମର ଆଲୋଚନାରେ ସେ ଏକ ନିବାରକ ଶକ୍ତି ଭାବରେ କାର୍ଯ୍ୟ କରିଥାନ୍ତି, ଯଦ୍ଦ୍ୱାରା ସମାଜ ପ୍ରତି ବିପଦ ହେବ ନାହିଁ । ତାଙ୍କର ପିତୃତ୍ୱ ଭାବର ବର୍ଣ୍ଣନା କଲାବେଳେ ସେ ପିତା, ମାତା, ଭ୍ରାତା, ଭଗ୍ନୀ, ସଖା, ସମର୍ଥକ ଭାବେ

କାର୍ଯ୍ୟ କରନ୍ତି । ତାଙ୍କୁ ସବୁର କର୍ତ୍ତା କରାଯାଏ । ମଣିଷ ତାର ସବୁ ବନ୍ଧୁ ବାନ୍ଧବଙ୍କ ଦ୍ୱାରା ପରିତ୍ୟକ୍ତ ହୋଇ ଘୋର ଦୁଃଖ ଦୁର୍ଦ୍ଦଶାରେ ପଡିଥିଲାବେଳେ, ତାକୁ କେହି ପଚାରୁ ନଥିବା ସମୟରେ, ସେ ଯେ ତାର ପ୍ରକୃତ ଚିରନ୍ତନ ସଖା ଓ ବନ୍ଧୁ, ତାକୁ ସଦା ସାହାଯ୍ୟ ଦେବାକୁ ପ୍ରସ୍ତୁତ, ଏଇ ଧାରଣା ଦ୍ୱାରା ମଣିଷ ସାନ୍ତ୍ୱନା ଲାଭ କରେ । ସେ ସର୍ବଶକ୍ତିମାନ୍, ସବୁକିଛି କରିପାରନ୍ତି । ବାସ୍ତବରେ, ଆଦିମ ଯୁଗରେ ତାର ପ୍ରୟୋଜନ ଥିଲା । ଈଶ୍ୱରର ଧାରଣା ଦୁର୍ଦ୍ଦଶାଗ୍ରସ୍ତ ମଣିଷ ପକ୍ଷରେ ସହାୟକ ।

ସମାଜକୁ ଏଇ ବିଶ୍ୱାସ ବିରୋଧରେ ମୂର୍ତ୍ତିପୂଜା ଓ ଧର୍ମର ସଂକୀର୍ଣ୍ଣ ଧାରଣା ବିରୋଧରେ ଲଢିବାକୁ ହେବ । ସେହିପରି ମଣିଷ ଯେତେବେଳେ ନିଜ ଗୋଡରେ ଛିଡା ହେବାକୁ ଚେଷ୍ଟା କରେ,ବାସ୍ତବବାଦୀ ହୁଏ, ତାକୁ ସେଇ ବିଶ୍ୱାସକୁ ଫିଙ୍ଗି ଦେବାକୁ ହେବ । ଯେଉଁ କଷ୍ଟ ଦୁର୍ଦ୍ଦଶ ଅବସ୍ଥା ମଧ୍ୟରେ ସେ ନିକ୍ଷିପ୍ତ ଓ ପରିତ୍ୟକ୍ତ,ପୌରୁଷ ପରମ୍ପରା ସହକାରେ ତାର ସାମ୍ନା କରିବାକୁ ପଡିବ । ଠିକ୍ ତାହାହିଁ ହୋଇଛି ମୋର ଅବସ୍ଥା । ମୋ ଏଇ ଚିନ୍ତାର ଧାର ଯାହାକି ମତେ ନିରୀଶ୍ୱରବାଦୀ କରିଛି । .......

ମତେ ନିରୀଶ୍ୱରବାଦୀ ଜାଣି ଜଣେ ବନ୍ଧୁ କହିଥିଲେ ଯେ, 'ଶେଷ ଅବସ୍ଥାରେ ତମେ ଈଶ୍ୱର ବିଶ୍ୱାସ କରିବ' । ମୁଁ କହିଥିଲି ନାଁ, ନାହିଁ ମହାଶୟ, ତାହା ହେବ ନାହିଁ । ମୁଁ ତାକୁ ମୋ ପକ୍ଷରେ ଏକ ଅଧୋଗତି, ନୀତିଭ୍ରଷ୍ଟତା ଅନ୍ଧ ବିଶ୍ୱାସହୀନତା ବୋଲି ମନେକରିବି । ମୋର ଆତ୍ମସ୍ୱାର୍ଥୀ ଉଦ୍ଦେଶ୍ୟରେ ମୁଁ ପ୍ରାର୍ଥନା କରିବାକୁ ଯାଉ ନାହିଁ । ବନ୍ଧୁ ଓ ପାଠକ ଗଣ, ଏହା କ'ଣ ଆତ୍ମ ବଡିମା ? ତାହା ଯଦି ହୁଏ, ସେଥିଲାଗି ମୁଁ ପ୍ରସ୍ତୁତ ।'' (1)

## ଯିଏ ଈଶ୍ୱରଙ୍କ ଊର୍ଦ୍ଧ୍ୱରେ

ପ୍ରଶ୍ନ ଆସେ, ଜଗନ୍ନାଥ ଯିଏ ଈଶ୍ୱର ଭାବେ ପରିକଳ୍ପିତ, ପରମାତ୍ମାଭାବେ ସ୍ୱୀକୃତ, ବିଭିନ୍ନ ଭାବରେ ପୂଜିତ ଓ ଅନୁରୂପ ବିଶ୍ୱାସ ଦ୍ୱାରା ଅନୁସୃତ—ପଦେ କଥାରେ କହିଲେ ଯିଏ ନିଜେ ଖୋଦ୍ ଈଶ୍ୱର, — ସେଠି ଈଶ୍ୱରଙ୍କୁ ପ୍ରତ୍ୟାଖ୍ୟାନ କରିବାରେ ଜଗନ୍ନାଥ କଣ ପ୍ରତ୍ୟାଖ୍ୟାତ ହୁଅନ୍ତି ନାହିଁ ? ଈଶ୍ୱର ନହେଲେ ଜଗନ୍ନାଥଙ୍କ ଗୁରୁତ୍ୱ ଆଉ ମର୍ଯ୍ୟାଦା କେଉଁଠି ? ସେ କାହାର ଅବତାର ନାମ ଧାରଣ କରିବେ ? ସେ କଣ ସେହିପରି ତାତ୍ପର୍ଯ୍ୟହୀନ, ମହତ୍ତ୍ୱଶୂନ୍ୟ, ଅନାବଶ୍ୟକ ହୋଇଯିବେ ନାହିଁ ?

କିନ୍ତୁ କଥାଟି ସମ୍ପୂର୍ଣ୍ଣ ଓଲଟା । କାରଣ ଈଶ୍ୱରଙ୍କ ଗୁଣ, ଶକ୍ତି ଓ ମାହାତ୍ମ୍ୟ ଆଦି ଦର୍ଶନ-ସମ୍ଭୂତ ନୁହେଁ । ଧର୍ମ ବିଶ୍ୱାସରୁ ଜାତ । ସେହି ବିଶ୍ୱାସର ଚୂଡାନ୍ତ ରୂପ, ଈଶ୍ୱର ଧାରଣାର ବିଲୋପରେ ଜଗନ୍ନାଥଙ୍କ ଉପରୁ ଅନ୍ଧ ଆବରଣ ଅପସାରିତ

(1) "Why I am an Atheist." ଶହୀଦ-ଇ-ଆଜାମ ଭଗତସିଂହ, Shahid Bhagat Singh Research Committee.

ହେବ, ତାଙ୍କର ପ୍ରକୃତ ସ୍ୱରୂପ ଜାଜ୍ଜ୍ୱଲ୍ୟମାନ ହୋଇଉଠିବ। ତାଙ୍କର ସହଜାତ ଶକ୍ତି ପ୍ରକାଶ ଲାଭ କରିବ।

କାରଣ, ଇତିହାସ ଯାହାକୁ ଜନ୍ମ ଦେଇ ଲାଳନ ପାଳନ କରେ, ତାକୁ ପୁଣି ଅନ୍ୟଥା କରିବ ଏପରି ଶକ୍ତି କାହାର ? ଜଗନ୍ନାଥ, ଯିଏ କେବଳ ଇତିହାସର ସୃଷ୍ଟି ନୁହନ୍ତି, ଯୁଗ ଯୁଗ ଧରି ସେଇ ଇତିହାସର ଶକ୍ତି ଦ୍ୱାରା ବଳିଷ୍ଠ ଓ ବର୍ତ୍ତମାନ, ତାଙ୍କର ସେହି ଭାବର ବିଲୋପ ନାହିଁ। ତାଙ୍କୁ ପ୍ରତ୍ୟାଖ୍ୟାନ କରବାକୁ ଯିବା ଅର୍ଥ ନିଜର ପ୍ରତ୍ୟାଖ୍ୟାନକୁ ବରଣ କରିବା। ଜଗନ୍ନାଥ ଯେପରି ଇତିହାସର ବାସ୍ତବତା, ତାଙ୍କର ଅନ୍ତର୍ନିହିତ ଭାବ ସେହିପରି ମାନବ ଅନ୍ତରର ଅନିର୍ବାଣ ଆକାଙ୍‌କ୍ଷା। ତାର ପ୍ରାଣର ମାନବିକ ନିର୍ଝର। ମଣିଷର ଅସ୍ତିତ୍ୱ ଥିବା ପର୍ଯ୍ୟନ୍ତ ସେଇ ସାମ୍ୟ, ମୈତ୍ରୀ, ପ୍ରୀତିର ଆକାଙ୍‌କ୍ଷିତ ନିର୍ଝରର ଅବସାନ ନାହିଁ।

କାଳକ୍ରମେ ଈଶ୍ୱର ଧାରଣ ନିଜର ଆବଶ୍ୟକତା ହରାଇ ଚିରଦିନ ଲାଗି ଅବସର ନେଇପାରେ। କିନ୍ତୁ ମାନବସମାଜର ଅଗ୍ରଗତି ସହିତ ରାର ସେଇ ମାନବିକ ଭାବ କ୍ରମାଗତ ପ୍ରଜ୍ଜ୍ୱଳିତ ହେବାରେ ଲାଗିଥିବ। ତାର ବିଲୁପ୍ତ ନାହିଁ। ବିଜ୍ଞାନର ବିକାଶ ଭିତରେ ସେଇ ସାମ୍ୟ, ମୈତ୍ରୀ ପ୍ରୀତିର ଅର୍ଥ, ଲକ୍ଷ୍ୟ ଓ ବ୍ୟାକ୍ତି ସଦା ପ୍ରସାରିତ। ସେଇ ବ୍ୟାପ୍ତି ଓ ଉନ୍ନତିର ଗତି ଅସରନ୍ତି। ଚରମ ସତ୍ୟ ଭଳି ପୂର୍ଣ୍ଣତା ଭିତରେ ତାର ଅପୂର୍ଣ୍ଣତା ସଦା ଆତ୍ମପ୍ରକାଶ କରୁଥିବ।

ଈଶ୍ୱର ଓ ଜଗନ୍ନାଥ ଏ ଦୁହେଁ କେବଳ ପୃଥକ୍ ନୁହନ୍ତି। ଦୁହେଁ ଦୁଇ ବିପରୀତ ଧାରଣା। ଦୁଇ ବିପରୀତ ଗର୍ଭରୁ ଦୁହିଁଙ୍କର ଜନ୍ମ। ମଣିଷ ସମାଜର ଆରମ୍ଭରେ ଈଶ୍ୱର ନାହାନ୍ତି, କାରଣ ମଣିଷ ସେତେବଳେ ତାଙ୍କର ଆବଶ୍ୟକତା ଅନୁଭବ କରିନାହିଁ। ତାର ଆବଶ୍ୟକତା ଅନୁଭବ କରିଛି ସାମାଜର ଏକ ନିର୍ଦ୍ଦିଷ୍ଟ ପର୍ଯ୍ୟାୟରେ ଈଶ୍ୱର ଧାରଣାର ସୃଷ୍ଟି କରିଛି ପୂର୍ବର ସାମ୍ୟ, ମେତ୍ରୀ, ପ୍ରୀତିର ପର୍ଯ୍ୟାୟର ଅବସାନରେ। ଯେତେବେଳେ ପାପ ପୁଣ୍ୟର ବିଚାର ଆସିଛି, ସାଧୁ ଦୁଷ୍କୃତ୍ ଆସିଛନ୍ତି, ସାଧୁଙ୍କର ପରିତ୍ରାଣ ଦୁଷ୍କୃତ୍‌ମାନଙ୍କର ବିନାଶର ଆବଶ୍ୟକତା ପଡିଛି। ସେତେବେଳେ, ସେଥିଲାଗି ଭଗବାନଙ୍କ ନିଜ ଭାଷାରେ, ''ସମ୍ଭବାମି ଯୁଗେ ଯୁଗେ।'' (ଗୀତା)

ଅତ୍ରଏବ, ଜଗନ୍ନାଥ ସାମ୍ୟ ସମାଜରୁ ଉଦ୍ଭବ ହେଲାବେଳେ ଈଶ୍ୱରଙ୍କ ଜନ୍ମ ଅସାମ୍ୟର ଗର୍ଭରୁ। ଦୁହେଁ ଦୁଇ ବିପରୀତ ସାମାଜର ଚିହ୍ନ ବହନ କରନ୍ତି। ଆଦ୍ୟ ସମାଜର ପ୍ରତୀକ, ଜଗନ୍ନାଥ ଧାରଣା ଅତି ସିଧା, ସଳଖ, ସ୍ୱଷ୍ଟ ଓ ପରିଷ୍କାର। ତାକୁ ଦେଖିବା ଲାଗି ଈଶ୍ୱରଙ୍କ କ୍ଷେତ୍ରରେ ଦରକାର ହେଲାଭଳି କୌଣସି ଯୁକ୍ତି ତର୍କ, ଶାସ୍ତ୍ର ପୁରାଣ ବା ପୂଜାପାଠର୍ ଆବଶ୍ୟକତା ନାହିଁ। କାରଣ ଜଗନ୍ନାଥ ସ୍ୱୟଂ ବିରାଜମାନ। ଜଗନ୍ନାଥ ଭାବର ଉପଲବ୍‌ଧି ଲାଗି କୌଣସି ଗୂଢଜ୍ଞାନ, କଠୋର ତପସ୍ୟା ବା କୃଚ୍ଛ୍ର ସାଧନାର ଆବଶ୍ୟକତା ନାହିଁ। ଜଗନ୍ନାଥଭାବ ପ୍ରତ୍ୟେକ ମାନବର

ଅନ୍ତରର ଆକାଙ୍‌କ୍ଷା । ତାର ଦେହ ଓ ମନ ଉଭୟଙ୍କର ଆହ୍ୱାନ । ଈଶ୍ୱର ପରଲୋକରେ ମୋକ୍ଷପ୍ରାପ୍ତିର ଆଶା ଜାଗ୍ରତ କଲାବେଳେ ଜଗନ୍ନାଥ ଇହଲୋକରେ ଦର୍ଶାନ୍ତି ମୁକ୍ତିର ମାର୍ଗ — ସାମ୍ୟ, ମୈତ୍ରୀ ଓ ପ୍ରୀତି । ଈଶ୍ୱର ଜାତିଭେଦ, ବର୍ଣ୍ଣଭେଦ, ଶ୍ରେଣୀଭେଦ, ଧର୍ମଭେଦର କର୍ତ୍ତା, — ''ଚାତୁର୍ବର୍ଣ୍ଣ୍ୟଂ ମୟା ସୃଷ୍ଟଂ'' — ହେଲାବେଳେ ଜଗନ୍ନାଥ ହେଲେ ସର୍ବକାଳବ୍ୟାପୀ, ସାମ୍ୟ ମୈତ୍ରୀର ଚିରନ୍ତର ଇଙ୍ଗିତ ।

ପ୍ରତ୍ୟେକଟି ଜିନିଷର ସ୍ଥିତି ଯେପରି ବିଶ୍ୱଜଗତରୁ ବିଚ୍ଛିନ୍ନ ନୁହେଁ, ପ୍ରତ୍ୟେକଟି ବିଷୟର ସତ୍ତା ଯେପରି ନିଖିଳ ପ୍ରକୃତିର ଏକ ଅଂଶ ବିଶେଷ, ପ୍ରତ୍ୟେକଟି ବିଷୟର ଗତି ଓ ବିବର୍ତ୍ତନ ଯେପରି ସେହି ବିଶ୍ୱ ପ୍ରକୃତିର ଅନ୍ତର୍ଭୂକ୍ତ, — ସେହି ପ୍ରାକୃତିକ ନିୟମର ଅଭିବ୍ୟକ୍ତି, ତାର ସେହି ସୁପ୍ତ ଓ ଜାଗ୍ରତ ଭାବର ପ୍ରତିଫଳନ ହେଲା ଜଗନ୍ନାଥ ଧାରଣା ।



# ଏକାଦଶ ପର୍ବ

## ଧର୍ମ, ଈଶ୍ୱର, ଜଗନ୍ନାଥ

ବିନା ଈଶ୍ୱରରେ ଧର୍ମ ନାହିଁ । ବୌଦ୍ଧଧର୍ମ ଏକମାତ୍ର ଈଶ୍ୱରହୀନ, ପରବର୍ତ୍ତୀ କାଳରେ ସେହି ବୁଦ୍ଧ ନିଜେ ଈଶ୍ୱର । ବିନା ଧର୍ମରେ ଜଗନ୍ନାଥ ନାହାନ୍ତି । ଜଗନ୍ନାଥ କିନ୍ତୁ ଈଶ୍ୱର ନୁହନ୍ତି । ଅଥଚ, ଈଶ୍ୱରଙ୍କର ସକଳ ଗୁଣ ଓ ମହିମା ଜଗନ୍ନାଥଙ୍କ ପ୍ରତି ଆରୋପିତ । ତାଙ୍କଠାରୁ ଅନୁରୂପ ଆଶୀର୍ବାଦ ଭିକ୍ଷା କରାଯାଏ । ଜଗନ୍ନାଥ କିନ୍ତୁ ତାଙ୍କର ଆଚାର, ବ୍ୟବହାର, ଖାଦ୍ୟପେୟ ଓ ଜୀବନ ଯାତ୍ରାରେ ଜଣେ ଖାଣ୍ଟି ଓଡ଼ିଆ ଗୃହସ୍ଥ ଭଳି । ନିଜର ଜ୍ଞାତିଭାଇଙ୍କ ସହିତ ତାଙ୍କର ସମ୍ପର୍କ ଅତି ଅନ୍ତରଙ୍ଗ । ସେମାନେ ଜଗନ୍ନାଥଙ୍କୁ ଯେପରି ଅଶ୍ରାବ୍ୟ ଭାଷାରେ ଗାଳି ଦିଅନ୍ତି, ଥଟ୍ଟା ଟାପରା କରନ୍ତି, ତାହା କେବଳ ଜଣେ ଅତି ଆପଣାର ଲୋକ କ୍ଷେତ୍ରରେ ହିଁ ସମ୍ଭବ । ଜଗନ୍ନାଥଙ୍କ ପାଖରେ ଦେବାଚାରର ବିଶେଷତ୍ୱ ନାହିଁ । ସେ ଲୋକାଚାରର ଅଧୀନ ।

ଧର୍ମ ଦିଗରୁ ବିଚାରିଲେ, ଭାରତରେ ଏମିତି କୌଣସି ଧର୍ମ ନାହିଁ, ଯାହା ଜଗନ୍ନାଥଙ୍କୁ ସ୍ପର୍ଶ ନ କରିଛି । ଏମିତି କୌଣସି ମତ ନାହିଁ, ଯାହା ତାଙ୍କଠାରେ ସମନ୍ୱିତ ନୁହେଁ । ପୁଣି ଏମିତି କୌଣସି ବିଶ୍ୱାସ ନାହିଁ, ଯାହା ଲାଗି ସେ ବନ୍ଦିତ ନୁହନ୍ତି । ଏକମାତ୍ର ବ୍ୟତିକ୍ରମ ଇସଲାମ ଓ ଖ୍ରୀଷ୍ଟିୟାନ୍ ଧର୍ମ । ତାହା ଧର୍ମ ଯୋଗୁ ଯେତେ ନୁହେଁ, ବିଶେଷକରି ରାଜନୀତି ଓ ସାମାଜିକ ଦୃଷ୍ଟିରୁ ଏବେ ନୀତିଗତ ହୋଇ ଉଠିଛି । ଯେଉଁଠି ସବୁ ଧର୍ମର ଈଶ୍ୱର ଏକ'ଏବଂ ସବୁଠି ମାନବିକ ନୀତିବୋଧ ସମାନ, ସେଠି ଧର୍ମର ପୁରୋଧା ଓ ପ୍ରବକ୍ତାଗଣ କିନ୍ତୁ ସେଇ ଧର୍ମର ଦ୍ୱାହି ଦେଇ ଲଢନ୍ତି । ସେ ଧର୍ମ ନାମରେ ଏବେ ବି ଯୁଦ୍ଧ ସଂଘର୍ଷର ଅଭାବ ନାହିଁ । ବାସ୍ତବରେ ଈଶ୍ୱର ବା ଧର୍ମ ଲଢେ ନାହିଁ, ଲଢନ୍ତି ସାଧାରଣ ଲୋକେ । କ୍ଷତିଗ୍ରସ୍ତ ହୁଅନ୍ତି ଓ ମରନ୍ତି ସେହି ସାଧାରଣ ଲୋକ । ଲାଭବାନ ହୁଅନ୍ତି ତାଙ୍କୁ ଲଢାଉଥିବା ମଣିଷମାନେ ।

ଭାରତ ବାହାରୁ ଆସିଥିବା ଇସ୍‌ଲାମ ଓ ଖ୍ରୀଷ୍ଟିୟାନ୍ ଧର୍ମକୁ ଯେ ଜଗନ୍ନାଥଙ୍କ ନିକଟକୁ ଟାଣିବାର, ତାଙ୍କ ସହିତ ମିଳାଇବାର ଚେଷ୍ଟା ନ ହୋଇଛି,

ତାହା ନୁହେଁ । ସମସ୍ତେ ଜାଣନ୍ତି, ସତ୍ୟପୀର ପୂଜା ସେ ଦିଗରେ ଏକ ପଦକ୍ଷେପ । ଅମୀନ୍ ଅହମ୍ମଦଜୀଙ୍କ ରଚିତ ''ହାଫିଜ୍ କଲିମ୍'' ଗ୍ରନ୍ଥରେ ଅଛି ଯେ ସର୍ବଧର୍ମ; ସମନ୍ୱୟ ପୀଠ ଶ୍ରୀମନ୍ଦିରେ ଏକଦା ମୁସଲମାନ ପ୍ରବେଶ ପାଇଁ ପ୍ରତିବନ୍ଧକ ନ ଥିଲା । ଏପରିକି ସତ୍ୟନାରାୟଣ ପୂଜାର ପ୍ରବର୍ତ୍ତନ କରାଯାଇ ଉଭୟ ସମ୍ପ୍ରଦାୟ ମଧ୍ୟରେ ସାମ୍ୟ, ମୈତ୍ରୀ ଓ ଐକ୍ୟ ପ୍ରତିଷ୍ଠା ସମ୍ଭବ ହୋଇଥିଲା । ଗୋଲାମ ହାସେନ୍ ସଲିମଙ୍କ ପ୍ରଣୀତ 'ରକୁସ୍ ମାଲାଡିନ୍' ରୁ ପ୍ରମାଣ ମିଳେ ଯେ, ଶ୍ରୀମନ୍ଦିରରେ ଏକଦା ମୁସଲମାନଙ୍କ ଦ୍ୱାରା ମହନ୍ତ ସେବା ପ୍ରଚଳିତ ଥିଲା । ପରବର୍ତ୍ତୀ ସମୟରେ ଯେତେବେଳେ ହିନ୍ଦୁ ବିଦ୍ୱେଷୀ ମୁସଲମାନମାନେ ବାରମ୍ବାର ଆକ୍ରମଣ ଓ ଲୁଣ୍ଠନ କଲେ, ଶ୍ରୀମନ୍ଦିରର ପ୍ରଭୁତ ଅନିଷ୍ଟ କଲେ, ତତ୍କାଳୀନ ଗଜପତିଙ୍କ ଆଦେଶକ୍ରମେ ମୁସଲମାନ ସେବକ ପରିବର୍ତ୍ତେ ହିନ୍ଦୁମାନେ ଏହି ସେବା କରି ଆସୁଛନ୍ତି । (୧) ଆଜି ବି ରଥରେ ଗଲାବେଳେ ଜଗନ୍ନାଥ ଅଟକି ଯାଆନ୍ତି ସାଲବେଗଙ୍କ ସମାଧି ପାଖରେ, ତାଙ୍କର ପ୍ରୀତି ଶ୍ରଦ୍ଧା ସମ୍ମାନ ଜଣାଇ ।

ଆଉ ମଧ୍ୟ ହିନ୍ଦୁ ପୁରାଣରେ ସେହି ଐକ୍ୟ ବା ମିଳନ ଦିଗରେ ପଦକ୍ଷେପର ସୂଚନା ମିଳେ । ''ଧର୍ମ ପୂଜା ବିଧାନର'' ୨୧୪, ୨୧୫ ପୃଷ୍ଠା ଦୃଷ୍ଟାନ୍ତ ଦେଇ The Cult of Jaganath ରେ Dr. K. C. Mishra କହିଛନ୍ତି, "In the same work, it has further been said that the Lord revealed Himself as Jaganath to unite together, the Hindus and Muslims in his land (Orissa) while in the Country of Gouda, He revealed Himself as the DHARMARAJ" (2)

ଏବେ ସାଧାରଣତଃ ହିନ୍ଦୁ ମୁସଲମାନ ଧର୍ମଗତ ବିଭେଦ ଓ ସଂଘର୍ଷକୁ ବଡକରି ପ୍ରଚାର କରାଯାଏ । ଅଥଚ, ଯେଉଁ ବୁଦ୍ଧଦନ୍ତ ଜଗନ୍ନାଥଙ୍କ ଆତ୍ମା, ସେଇ ବୌଦ୍ଧଙ୍କ ବିରୋଧରେ ବ୍ରାହ୍ମଣ୍ୟ ଧର୍ମର ଆକ୍ରମଣ କଣ ବିଦ୍ୱେଷାତ୍ମକ ରକ୍ତାକ୍ତ ନୁହେଁ ? କଣ କମ୍ ସ୍ତୂପ ବୌଦ୍ଧବିହାର ଧ୍ୱଂସ କରାଯାଇଛି ? ତାର ପ୍ରତ୍ୟକ୍ଷ ପ୍ରମାଣ ଭୁବନେଶ୍ୱରର ଭାସ୍କରେଶ୍ୱର ମନ୍ଦିର । ସେଠାରେ ଥିବା ଶିବଲିଙ୍ଗ ହେଉଛି ମୂଳତଃ ବୌଦ୍ଧ ସ୍ତୁପ । ସପ୍ତମ ଶତାବ୍ଦୀରେ ସେଇ ସ୍ତୂପକୁ କାଟି ତାକୁ ଶିବଲିଙ୍ଗ କରାଯାଇଛି । ତାର ନିହାଣ ଚିହ୍ନ କଟାଦାଗ ଆଉ ବ୍ରାହ୍ମୀଲିପିର ଲେଖା ଏବେ ବି ରହିଛି । ସେହି ସ୍ତୂପର ଲିଙ୍ଗ ଉଚ୍ଚ ହୋଇଥିବାରୁ ତାକୁ ଢାଙ୍କିବା ପାଇଁ ତା' ଉପରେ ଏକ ଦୋମହଲା ମନ୍ଦିର ନିର୍ମିତ ହୋଇଛି । ସେପରି ମନ୍ଦିର ଅନ୍ୟତ୍ର ନାହିଁ । ସେହିପରି ସମ୍ବଲପୁର ମହାଦେବପାଲି ଲାଇଡ଼ାରେ ବୌଦ୍ଧ ମନ୍ଦିରକୁ ଭାଙ୍ଗି ହିନ୍ଦୁ ମନ୍ଦିର ନିର୍ମିତ ହୋଇଛି । ପୁରୀ ମନ୍ଦିରରେ ବୌଦ୍ଧ ସନ୍ନ୍ୟାସୀଙ୍କ ପ୍ରତି ହୋଇଥିବା ଅତ୍ୟାଚାରର ଚିତ୍ର ଏବେ ବି ରହିଛି । ବ୍ରାହ୍ମଣ୍ୟବାଦର ପ୍ରଭାବରେ ଅନଙ୍ଗଭୀମଦେବ ୩୨ ଜଣ ବୌଦ୍ଧଙ୍କୁ ପିଟିପିଟି

---

(୧) (ପଙ୍କଜ ସାହୁ, ଶ୍ରୀଧାମ, ପୃଷ୍ଠା ୫୫, ୧୯୯୧)

(୨) The Cult of Jagannath, Dr. K. C. Mishra, Page-168

(୩) ଓଡ଼ିଶା ଇତିହାସ, କୃଷ୍ଣଚନ୍ଦ୍ର ପାଣିଗ୍ରାହୀ

ମାରିବା କଥା ଚୈତନ୍ୟ ଭାଷାମୃତ କହେ । ତାଙ୍କର ଭାଇ ମଦନ ମହାଦେବ ବୌଦ୍ଧମାନଙ୍କୁ ଅନୁରୂପ ଶାସ୍ତି ଦେବା ବିଷୟର ମାଦଳାପାଞ୍ଜିରେ ରହିଛି । (୩) ଲକ୍ଷ୍ମୀମନ୍ଦିର ଆଗରେ ଠିଆ ହୋଇଥିବା ସୂର୍ଯ୍ୟମନ୍ଦିରର ଲୁକ୍‌କାୟିତ ପ୍ରତିମା ହେଉଛି ସେହି ବୌଦ୍ଧବିରୋଧିତାର ଅନ୍ୟ ଏକ ନିଦର୍ଶନ । ସେଠାରେ ବୁଦ୍ଧମୂର୍ତ୍ତି ଆଗରେ ସୂର୍ଯ୍ୟ ମୂର୍ତ୍ତିକୁ ରଖି ତାକୁ ଢାଙ୍କି ଦିଆଯାଇଛି । ଦୁଇ ମୂର୍ତ୍ତି ମଧ୍ୟରେ ବ୍ୟବଧାନ ଏତେ ସାମାନ୍ୟ ଯେ ଟର୍ଚ୍ଚ ପକାଇ ନିରେଖି ନ ଦେଖିଲେ ସେହି ବୁଦ୍ଧ-ମୂର୍ତ୍ତି ଦେଖାଯିବ ନାହିଁ । ଗଢଣରେ ସୂର୍ଯ୍ୟମୂର୍ତ୍ତି ଯେ ଅପେକ୍ଷାକୃତ ନୂଆ ଓ ଉଦ୍ଦେଶ୍ୟମୂଳକ ଭାବେ ଥୁଆଯାଇଛି, ତାହା ବାରି ହୋଇଯାଏ । ପୁଣି ଐତିହାସିକମାନେ କହନ୍ତି ଯେ ଏକାମ୍ର ପୁରାଣରେ ଗନ୍ଧବତୀ କୂଳରେ ବର୍ଣ୍ଣିତ ଯୁଦ୍ଧ ବାସ୍ତବରେ ବୌଦ୍ଧ ଓ ବ୍ରାହ୍ମଣ-ଶୈବଙ୍କ ମଧ୍ୟରେ ସଂଘର୍ଷ । ଆଉ ସେଇ ଗନ୍ଧବତୀ ନଦୀ ହେଉଛି ଭୂବନେଶ୍ୱର ଉପକଣ୍ଠରେ ଥିବା ଗଙ୍ଗୁଆ ନଈ ।

ଶାସନ-ସ୍ୱାର୍ଥର ବିରୋଧ ହେଲେ, ଧର୍ମ ଦିଗରେ ସଦ୍ଭାବ ମିଳନକୁ ଶାସକଶ୍ରେଣୀ କିପରି ଦମନ କରେ, ଜଗନ୍ନାଥ ମଧ୍ୟ ତାର ଦୃଷ୍ଟାନ୍ତ । ଜଗନ୍ନାଥଙ୍କ ସହିତ ଖ୍ରୀଷ୍ଟଧର୍ମ ସମ୍ବନ୍ଧ ସ୍ଥାପନକୁ ବ୍ରିଟିଶ୍ ସରକାର ମୂଳରୁ ବିରୋଧ କରି ଆସିଛି । ଊନବିଂଶ ଶତାବ୍ଦୀରେ ଚଉଦୁଆର କୁଜିବର ମଠର ମହନ୍ତ ସାଧୁ ସୁନ୍ଦର ଦାସ ପ୍ରଥମେ ବାଇବେଲକୁ ଜଗନ୍ନାଥ ଧର୍ମର ଅର୍ଥପ୍ରଦାନ ସ୍ୱରୂପ ଖ୍ରୀଷ୍ଟଧର୍ମକୁ ଜଗନ୍ନାଥ ଧର୍ମରେ ମିଳାଇବା ଉଦ୍ୟମକୁ ଅନେକ ଖ୍ରୀଷ୍ଟିୟାନ ପାଦ୍ରୀ ପ୍ରଶଂସା କରୁଥିଲେ ମଧ୍ୟ ତତ୍‌କାଳୀନ ଶାସକବର୍ଗଙ୍କ ଦ୍ୱାରା ସେ କାରାରୁଦ୍ଧ ହୋଇଥିଲେ ।'' (୧)

ଜଗନ୍ନାଥ ଏପରି ଏକ ଭାବର ଆଧାର, ଯେଉଁଠି କି ବିଭିନ୍ନ ମତ, ଏପରିକି ପରସ୍ପର-ବିରୋଧୀ ହେଲେ ବି ଏକାଠି ମିଳିତ ହୁଅନ୍ତି । ଜଗନ୍ନାଥ ଏପରି ଏକ ଦେବ, ଯେଉଁଠି ଅସ୍ତି ଓ ନାସ୍ତି ଭିତରେ ସର୍ବୋଚ୍ଚ ଦେବ, — ଈଶ୍ୱର ଧାରଣା ପ୍ରକଟିତ । ପୁଣି ଜଗନ୍ନାଥ ଏପରି ଏକ ଧର୍ମ, ଯିଏ କି ଧର୍ମ ଅର୍ଥରେ ଧର୍ମ ନୁହେଁ । କାରଣ ତାହା କୌଣସି ଏକ ସମ୍ପ୍ରଦାୟ ବା ଗୋଷ୍ଠୀର ସଂକୀର୍ଣ୍ଣତା ଦ୍ୱାରା ଆବଦ୍ଧ ନୁହେଁ । କିନ୍ତୁ ହେଲେ ବି, ଧର୍ମର ସାଧାରଣ ଧାରଣାରୁ ତାହା ମୁକ୍ତ ନୁହେଁ ।

ଏସବୁ ଜଗନ୍ନାଥଙ୍କର କୌଣସି ଅଲୌକିକ ବା ଅତିପ୍ରାକୃତିକ ଶକ୍ତିର ଲକ୍ଷଣ ନୁହେଁ । ତାହା ତାଙ୍କର ଅତି ଲୌକିକତାର ନିଦର୍ଶନ ।

ଧର୍ମ ବିଶ୍ୱାସକୁ ଆଶ୍ରା କଲାବେଳେ, ଦର୍ଶନ ଆଶ୍ରା କରେ ପ୍ରମାଣକୁ । ବିନା ପ୍ରମାଣରେ କୌଣସି ଜିନିଷ, ଏପରିକି ଖୋଦ୍ ଈଶ୍ୱଙ୍କୁ ମଧ୍ୟ ଭାରତୀୟ ଦର୍ଶନ ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହେଁ । ସବୁ ଦର୍ଶନ ମଧ୍ୟରେ ବେଦାନ୍ତ ଓ ନ୍ୟାୟବୈଶେଷିକ ଏଇ ଦୁଇଟି କେବଳ ଈଶ୍ୱରବାଦୀ । ତେବେ ବି ସେମାନେ ସେ ନେଇ ସନ୍ଦେହରୁ

(୧) (No 26//19//3 F. F. VIII Govt. of India. Ministery, Home Affairs, 5the June 1973, ଡ଼ଃ ଲକ୍ଷ୍ମଣ ପଣ୍ଡା, 'ଶ୍ରୀ ଜଗନ୍ନାଥ ସଂସ୍କୃତ ଓଡ଼ିଆ କଲଚରାଲ ଫୋରମ୍')

ମୁକ୍ତ ନୁହନ୍ତି । ବୌଦ୍ଧ, ଜୈନ ଓ ସାଂଖ୍ୟ, ପୂର୍ବମୀମାଂସା ଓ ଲୋକାୟତ ଇତ୍ୟାଦି ପୂରା ନିରୀଶ୍ୱରବାଦୀ । ଶଙ୍କରଙ୍କ ଅଦ୍ୱୈତବାଦରେ ମଧ ଈଶ୍ୱର ନାହାନ୍ତି । ବିଶ୍ୱ ଯେତେବେଳେ ମାୟା, ସେଠି ସୃଷ୍ଟିକର୍ତ୍ତା ପାଳନକର୍ତ୍ତାଙ୍କ ପ୍ରଶ୍ନ ନାହିଁ । ତାହା ମାୟା, ଅବିଦ୍ୟାରୁ ଜାତ — ଅଜାତବାଦ । ଶଙ୍କର ଈଶ୍ୱର ମାନନ୍ତି ନାହିଁ, ଅଥଚ ''ଭଜ ଗୋବିନ୍ଦଂ ସ୍ମର ଗୋବିନ୍ଦଂ'' ରଚନା କରି ଗାଇ ବୁଲିଥାଆନ୍ତି । ଭାରତୀୟ ଦର୍ଶନର ଏକ ବୈଶିଷ୍ଟ୍ୟ ହେଲା, ତାହା ମୁଖ୍ୟତଃ ନିରୀଶ୍ୱରବାଦୀ ହେଲେ ବି ସମସ୍ତେ ସେ ଦିଗରେ ଏକମତର ନୁହନ୍ତି, ବିଭିନ୍ନ ମତର । ଏପରିକି ପରସ୍ପର ବିରୋଧୀ ମତ ବି ରହିଛି । ଈଶ୍ୱବାଦକୁ ମିଥ୍ୟା, ଅଳୀକ, ମାୟା ବୋଲି ପ୍ରତ୍ୟାଖ୍ୟାନ କରି ଏଣେ ଅନ୍ଧ କୁସଂସ୍କାରକୁ ଦୃଢ ସମର୍ଥନ ଦେବାର ଦେଖାଯାଏ । ଏସବୁ ମତ ଏକାଠି ସହାବସ୍ଥାନ କରିଥାଆନ୍ତି ।

ଭାରତୀୟ ଦାର୍ଶନିକଙ୍କର ଈଶ୍ୱର ନେଇ ମୁଖ୍ୟ ପ୍ରଶ୍ନ ହେଲା — ଈଶ୍ୱର ଯେ ଅଛନ୍ତି କ'ଣ ତାର ପ୍ରମାଣ ? ସେ ଜ୍ଞାନ କିପରି ଅକାଟ୍ୟ ? କ'ଣ ସେ ଜ୍ଞାନର ପ୍ରଣାଳୀ ? ତାର ସେଇ ସ୍ୱୀକୃତ-ପଦ୍ଧତି ପୁଣି କେତେଦୂର ନିର୍ଭୁଲ ? ତା'ପରେ, ଜଗତର ସୃଷ୍ଟି ଓ ତାର ସେହି ସମସ୍ୟାର ସମାଧାନ — ଅର୍ଥାତ୍ ବାସ୍ତବତାର ଯଥାର୍ଥ ପର୍ଯ୍ୟବେକ୍ଷଣ ଓ ଉପଲବ୍ଧି ଲାଗି କ'ଣ ଈଶ୍ୱର ଦରକାର ? ତାଙ୍କ ବିନା କ'ଣ ଜଗତକୁ ବୁଝିହେବ ନାହିଁ ? ଶେଷରେ ମଣିଷର ଭାଗ୍ୟ ନିର୍ଣ୍ଣୟ ଲାଗି କ'ଣ ଈଶ୍ୱର ଲୋଡା ? ଜଗତର ପାଳନକର୍ତ୍ତା — ଏବଂ ମଣିଷକୁ ବିଚାରବୁଦ୍ଧି, ମହତ ଉଦ୍ଦେଶ୍ୟ ପ୍ରଦାନ କରି ମଣିଷର ପଥର ନିୟନ୍ତ୍ରଣ ଦିଗରେ ଈଶ୍ୱର କ'ଣ ଅପରିହାର୍ଯ୍ୟ ? ପଦେ କଥାରେ କହିଲେ, ଭାରତୀୟ ଦାର୍ଶନିକମାନେ ଜ୍ଞାନତତ୍ତ୍ୱ, ତତ୍ତ୍ୱବିଦ୍ୟା ଓ ନୀତିବୋଧ ଏଇ ତିନିଦିଗରୁ ଈଶ୍ୱରକୁ ବିଚାର କରିଛନ୍ତି ।

ଦାର୍ଶନିକ ଦୃଷ୍ଟିକୋଣରୁ ଈଶ୍ୱର କାହିଁକି ଗ୍ରହଣଯୋଗ୍ୟ ନୁହନ୍ତି, ସେମାନେ ତାହା ଦର୍ଶାଇଛନ୍ତି । ଈଶ୍ୱରଙ୍କୁ ଏକ ଅଳୀକ ଓ ଭ୍ରମାତ୍ମକ ଧାରଣା ବୋଲି ନ୍ୟାୟ ଯୁକ୍ତି ଦ୍ୱାରା ଏଡାଇ ଦେଇଛନ୍ତି । ଦର୍ଶନ ଦିଗରୁ ଈଶ୍ୱର ଧାରଣାକୁ ଯେତେ ଖଣ୍ଡନ କଲେ ବି ତାହା ସମାଜରେ ଏତେ ବଳିଷ୍ଠ ଓ ସର୍ବବ୍ୟାପୀ ଯେ ଯୁଗ ଯୁଗ ଧରି ବଳବତ୍ତର ହୋଇ ରହି ଆସିଛି, — କିନ୍ତୁ କିପରି ? ଏହା ଜାଣିବାକୁ ହେବ ।

ତାର ଏକମାତ୍ର କାରଣ, ଦାର୍ଶନିକ ଯୁକ୍ତି ଯେତେ ତୀକ୍ଷ୍ଣ, ସୂକ୍ଷ୍ମ, ଶାଣିତ, ଅଖଣ୍ଡନୀୟ ହେଲେ ବି ତାହା ଈଶ୍ୱରଙ୍କୁ ସ୍ପର୍ଶ କରେ ନାହିଁ । କାରଣ, ଈଶ୍ୱର ଧାରଣାର ପ୍ରକୃତ ଚେର ଦର୍ଶନରେ ନାହିଁ । ତାହା ରହିଛି ଅନ୍ୟତ୍ର, ସାମାଜିକ ଅବସ୍ଥା ଭିତରେ । ଯେଉଁ ସାମାଜିକ ଅବସ୍ଥାର ଆଗମନରେ ଈଶ୍ୱରଙ୍କର ଆବିର୍ଭାବ, ସେହି ଅବସ୍ଥାର ବୃଦ୍ଧି ଓ ବିକାଶ ଘଟୁଥିବା ପର୍ଯ୍ୟନ୍ତ ତାର ସେଇ ଧାରଣାର ବିଲୋପର ପ୍ରଶ୍ନ ନାହିଁ । ସେଇ ଅବସ୍ଥାର ବିଲୋପ ଘଟିଲେ ମଧ ବହୁକାଳ ଯାଏ ଈଶ୍ୱର ରହିଛନ୍ତି ବା ରହିବେ, ତାର(inertia) ସ୍ୱକ୍ରୀୟତା ବଳରେ । ଜଗନ୍ନାଥହିଁ ତାର ଦୃଷ୍ଟାନ୍ତ । ସିଏ ଈଶ୍ୱରଙ୍କ ଆସିବା ପୂର୍ବରୁ ରହିଛନ୍ତି, ଈଶ୍ୱରଙ୍କୁ ବାଦ ଦେଲେ ବି ରହିପାରନ୍ତି । ଏବଂ ଈଶ୍ୱରଙ୍କ

ପରେ ମଧ୍ୟ ରହିବେ । କାରଣ, ଈଶ୍ୱର ଅଲୌକିକ ହେଲାବେଳେ ସେ ଲୌକିକ । ଈଶ୍ୱର ସ୍ୱର୍ଗୀୟ କଳ୍ପନା ହେଲାବେଳେ ଜଗନ୍ନାଥ ପାର୍ଥିବ ବାସ୍ତବତା । ଈଶ୍ୱର ''ଆତ୍ମାହୀନ ପରିସ୍ଥିତିର ଆତ୍ମା'' ହେଲାବେଳେ, ଜଗନ୍ନାଥ ହେଲେ ସେ ଆତ୍ମାହୀନ ଅବସ୍ଥାର ବିଲୋପର ଇଙ୍ଗିତ ।

ଯୁଗ ଯୁଗର ଅଶେଷ ଦୁଃଖ, ଯନ୍ତ୍ରଣା ଓ ଭବିଷ୍ୟତର କ୍ରୁର ଅନ୍ଧକାର ଭିତରେ ମଣିଷର ଅବିଶ୍ରାନ୍ତ ଆର୍ତ୍ତନାଦ । ସେହି ହୃଦୟହୀନ ଅବସ୍ଥାରୁ ଉଦ୍ଧାର ଲାଗି ମଣିଷ ଲୋଡେ ଭଗବାନଙ୍କୁ । କାରଣ ସେଇ ହିଁ ଆତ୍ମାହୀନ ଅବସ୍ଥାର ଆତ୍ମା । ସେଇ ଆତ୍ମାର ବିକାଶ ଘଟିଛି, ସେଇ ହୃଦୟହୀନ ଅବସ୍ଥାର ଆବିର୍ଭାବରେ । ଏଇ ଆବିର୍ଭାବ ସମ୍ଭବ ହୋଇଛି, ପୂର୍ବର ସେହି ସାମ୍ୟ, ମୈତ୍ରୀ, ପ୍ରୀତିର ସାମାଜିକ ଅବସ୍ଥାର ଅବସାନରେ । ଅର୍ଥାତ୍ ଜଗନ୍ନାଥ ଭାବର ପ୍ରକୃତ ମହତ୍, ଆଦର୍ଶ ଓ କୃତିତ୍ୱର ପତନରେ । ଅତଏବ, ଯେଉଁ ଅବସ୍ଥାର ତାଡନାରେ ଈଶ୍ୱରଭାବର ଉଦ୍ଭବ, ସେହି ହୃଦୟଦୀନ ଅବସ୍ଥାର ଅପସାରଣରେ, ସେଇ ଆତ୍ମା ବା ଈଶ୍ୱର ଧାରଣାର ସମାପ୍ତି ସ୍ୱତଃସିଦ୍ଧ । ତାହା କେବଳ ସେଇ ସାମ୍ୟ, ମୈତ୍ରୀ, ପ୍ରୀତି ସମାଜର ପୂର୍ଣ୍ଣ ଆଗମନ ଦ୍ୱାରା ହିଁ ସମ୍ଭବ । ତାହାହିଁ ହେବ ସେଇ ଜଗନ୍ନାଥ ଭାବର ପ୍ରକୃତ ମହତ୍ତ୍ୱ, ଆଦର୍ଶ ଓ କୃତିତ୍ୱର ବିକାଶ । ଜଗନ୍ନାଥ-ଭାବର ପୁନରୁତ୍ଥାନ ସହିତ ବିଜ୍ଞାନର ଅପୂର୍ବ ସ୍ପର୍ଶ୍ରେ, ପରିବର୍ତ୍ତନର ଅବିଶ୍ରାନ୍ତ ସ୍ରୋତ ଭିତରେ ଈଶ୍ୱର ଧାରଣା ଆପଣାର ଆବଶ୍ୟକତା ହରାଇବ । ବିକାଶର ନିରବଚ୍ଛିନ୍ନ ପ୍ରକ୍ରିୟା ଭିତରେ ପଲ୍ଲବିତ ହେବ ସେଇ ଜଗନ୍ନାଥ ଭାବର ମହତ୍ତ୍ୱ ।

ଜଗନ୍ନାଥଙ୍କୁ ଧରି ଧର୍ମର ଆଲୋଚନା ବେଶ୍ ଏକ ଜଟିଳ ଓ କଠିନ ସମସ୍ୟା । ଜଗନ୍ନାଥ ମୂଳତଃ ଗୋଟିଏ ଧର୍ମ ନୁହନ୍ତି, ଏକ ସଭ୍ୟତାର ନିଦର୍ଶନ । ପରବର୍ତ୍ତୀ କାଳରେ ଧର୍ମ ଦ୍ୱାରା ଜଗନ୍ନାଥଙ୍କୁ ଢାଙ୍କି ଦିଆଯାଇଛି । ଫଳରେ ସମସ୍ତେ ଧର୍ମକୁହିଁ ଦେଖନ୍ତି । ଜଗନ୍ନାଥ କାହା ଆଖିରେ ପଡେ ନାହିଁ ।

ଧର୍ମ ତୁଳନାରେ ସଭ୍ୟତା ଅଧିକ ପ୍ରାଚୀନ, ଅଧିକ ପ୍ରଭାବଶାଳୀ । ସଭ୍ୟତାର ବିକାଶରେ ଏକ ପର୍ଯ୍ୟାୟରେ ଧର୍ମର ଆବିର୍ଭାବ । ତାହା ସଭ୍ୟତାକୁ ମଧ୍ୟ ପ୍ରଭାବିତ କରିଥାଏ । ମଣିଷ ସହିତ ଜନ୍ମ ଲଭିଛି ତାର ସଭ୍ୟତା । ମଣିଷ ରହିଥିଲାଯାଏ ସଭ୍ୟତା ରହିଛି । କିନ୍ତୁ ଧର୍ମ ମାନବ ଜୀବନର ଗୋଟିଏ ସମୟରେ ଯେପରି ଆସିଛି , ଅନ୍ୟ ଗୋଟିଏ ସମୟରେ ସେହିପରି ଅପସରି ଯିବା ସ୍ୱାଭାବିକ ।

ସବୁଠି ଧର୍ମର ପ୍ରଚାରକ, ପ୍ରତିଷ୍ଠାତା ବା ପ୍ରବର୍ତ୍ତକ ହେଉଛନ୍ତି ଜଣେ ଜଣେ ମହାତ୍ମା, ମହାପୁରୁଷ ବା ଅବତାର, ଈଶ୍ୱରଙ୍କ ପୁତ୍ର ବା ଦୂତ । ମଣିଷଙ୍କୁ ତ୍ରାଣ କରିବା ଲାଗି ସେମାନଙ୍କର ଜନ୍ମ । ତେଣୁ ମଣିଷକୁ ଦୀକ୍ଷା ଦେବା ହେଉଛି ତାଙ୍କ ଜୀବନର ଲକ୍ଷ୍ୟ । ତାଙ୍କରି ଉକ୍ତି ଓ ଅବଦାନ ହେଉଛି ଧର୍ମର ଆଧାର । କିନ୍ତୁ ଜଗନ୍ନାଥଙ୍କ କ୍ଷେତ୍ରରେ ସେପରି କୌଣସି ଜିନିଷର ପ୍ରଶ୍ନ ନାହିଁ । ସ୍ୱୟଂ ଜଗନ୍ନାଥ

ହେଉଛନ୍ତି ସେ ସବୁର ଏକମାତ୍ର କେନ୍ଦ୍ରବିନ୍ଦୁ, ଏକ ନିପଟ ଜଡପଦାର୍ଥ, ଗତିହୀନ, ବାକ୍ୟହୀନ, ଅବଦାନ ଶୂନ୍ୟ— 'ଦାରୁଭୂତ ମୁରାରି' ।

ଯେ କୌଣସି ଧର୍ମ ଓ ମତର ଆବିର୍ଭାବ ପୂର୍ବରୁ ଜଗନ୍ନାଥ-ଭାବ ରହି ଆସିଛି। ଜଗନ୍ନାଥ କୌଣସି ମୂର୍ତ୍ତି ବା ଧର୍ମ ରୂପରେ ନାହାନ୍ତି । ଧର୍ମ ଲାଗି ଯେଉଁ ଈଶ୍ୱର ବିଶ୍ୱାସ, ପ୍ରାର୍ଥନା, ଉପାସନା, ପୂଜାପାଠ, ପାପପୁଣ୍ୟ ଇତ୍ୟାଦିର ବିଚାର ଆବଶ୍ୟକ, ସମାଜରେ ସେତେବେଳେ ଯାଏ ତା'ର ଉଦ୍ରେକ ହୋଇନାହିଁ ଯେହେତୁ, ସେଥିଲାଗି ଆବଶ୍ୟକ ଅବସ୍ଥାର ସୂତ୍ରପାତ ଘଟିନାହିଁ । ଜଗନ୍ନାଥ କୌଣସି ଧର୍ମର ଧ୍ୱଜାଧାରୀ ନୁହନ୍ତି । ସେ ରହିଛନ୍ତି ଏକ ସାମାଜିକ ଆଚାର ବ୍ୟବହାର ଭାବରେ,— ମଣିଷ ମଣିଷ ମଧ୍ୟରେ ସମ୍ପର୍କ ପ୍ରକୃତି ସହିତ ମଣିଷର ସମ୍ପର୍କ ମଣିଷର ନିଜ-ସହ ଆତ୍ମସମ୍ପର୍କ — ଏକ ସଭ୍ୟତା ଆକାରରେ ।

ଅତଏବ, ପୂର୍ବରୁ ସେଇ ଆଦିମ ସଭ୍ୟତା ଓ ପରବର୍ତ୍ତୀ କାଳରେ ଅଲୌକିକ ବିଶ୍ୱାସ, — ସେ ଦୁହିଁଙ୍କର ମିଳନର ଫଳ ହେଲେ ଏବର ଜଗନ୍ନାଥ । ଜଗନ୍ନାଥଙ୍କ ବୈଶିଷ୍ଟ୍ୟ ହେଲା, ସେ ଏକାଧାରାରେ ଆଦିମ ଗଣ (ସାମ୍ୟ) ସମାଜର ପ୍ରତୀକ ଓ ପରିବର୍ତ୍ତୀ କାଳରେ ଧର୍ମୀୟ ଧାରଣାର ପ୍ରକାଶ । ଏହିପରି ଏକ ମିଳନର ଦୃଷ୍ଟାନ୍ତ ଅନ୍ୟ କୌଣସିଠି ନାହିଁ । ତାଙ୍କର ସେଇ ବୈଶିଷ୍ଟ୍ୟକୁ ଭୁଲିଯିବା ଅର୍ଥ ଜଗନ୍ନାଥଙ୍କ ପ୍ରକୃତ ତାତ୍ପର୍ଯ୍ୟ ପ୍ରତି ଆଖି ବୁଜିଦେବା । ପରବର୍ତ୍ତୀ କାଳରେ ସାମାଜିକ ଅବସ୍ଥା ଆଦିମ ଗଣସଭ୍ୟତାକୁ ଗ୍ରାସ କରିଦେବାରେ ପରବର୍ତ୍ତୀ କାଳର ଧର୍ମ ବିଶ୍ୱାସ ପୂର୍ବର ମୌଳିକ ଜଗନ୍ନାଥ-ଭାବର ବାସ୍ତବ ତାତ୍ପର୍ଯ୍ୟକୁ ଲୋପ କରିଦେଇଛି । ତାର ସେଇ ସାମ୍ୟ-ମୈତ୍ରୀ-ପ୍ରୀତିର ବାସ୍ତବତା ରହିଯାଇଛି କେବଳ ଏକ ଧର୍ମୀୟ ଶ୍ରୁତି ଭାବରେ । କାର୍ତ୍ତିକ ପୂର୍ଣ୍ଣିମାର ଡଙ୍ଗାଭସା ଭଳି ।

ପୂର୍ବର ସେଇ ଗଣସମାଜର ମର୍ମ୍ମ ଓ ପରବର୍ତ୍ତୀ ଶ୍ରେଣୀସମାଜ କାଳର ଧର୍ମ୍ମ ଜଗନ୍ନାଥଙ୍କଠାରେ ଏପରି ଅଭିନ୍ନ ହୋଇଯାଇଛି ଯେ, ଏକରୁ ଅନ୍ୟକୁ ବିଚ୍ଛିନ୍ନ କରିବା ସମ୍ଭବ ନୁହେଁ । ବିଚ୍ଛିନ୍ନ କରାଗଲେ ଜଗନ୍ନାଥଙ୍କ ବୈଶିଷ୍ଟ୍ୟ ଲୋପ ପାଏ । ତାଙ୍କର ମର୍ମ୍ମକୁ ବାଦଦେଲେ ଜଗନ୍ନାଥ ଆପଣାର ମହତ୍ତ୍ୱ, ଖୋଦ୍ ନିଜସ୍ୱ ହରାନ୍ତି । ତେଣେ ଧର୍ମକୁ ବାଦଦେଲେ ତାଙ୍କ ପ୍ରତି ଭକ୍ତି ଓ ତାଙ୍କର ଆରାଧାନା ଉପାସନା ଆଦି ଅନାବଶ୍ୟକ ହୋଇପଡେ । ସେ ଆଉ ସର୍ବଦୁଃଖହାରୀ ମୁକ୍ତିଦାତା ହୋଇ ରହନ୍ତି ନାହିଁ । ନିଜର ଆକର୍ଷଣ ହରାଇ ବସନ୍ତି । ତେଣୁ ମର୍ମ୍ମ ବା ଧର୍ମ, ସେଥିଭିତରୁ ଗୋଟିକର ଅନୁସରଣରେ ଆଜିର ଜଗନ୍ନାଥ କେବଳ ଅସମ୍ପୂର୍ଣ୍ଣ ନୁହନ୍ତି, ବିକୃତ ଓ ଭ୍ରମାତ୍ମକ ମଧ୍ୟ ।

ଅଥଚ, ଜଗନ୍ନାଥଙ୍କୁ କେବଳ ଏକ ଧର୍ମ ଭାବେ ବିଚାର କରାଯାଇଥାଏ । ବିଭିନ୍ନ ଧର୍ମ ଭିତରେ ସେ ଏକ ଧର୍ମ । ସବୁ ଧର୍ମ ଭଳି ତାଙ୍କର ବିଚାର । ତାହା ଶାସ୍ତ୍ର ପୁରାଣରେ ଲିପିବଦ୍ଧ । ବିଧିବିଧାନ ଦ୍ୱାରା ନିୟନ୍ତ୍ରିତ । ତାହାର ଅର୍ଥ, ଅନ୍ୟ ଦିଗରେ

ତାଙ୍କର ମର୍ମକୁ ଉପେକ୍ଷା କରାଯାଏ । ସେହି ମର୍ମର ବିଚାର ହେଉଛି ଆଦିମ ଗଣସମାଜର ସାମାଜିକ ଜୀବନ ଓ ତାର ଧାରଣାର ବିଚାର । ତାର ପରିସର ଅତି ବ୍ୟାପକ । ପ୍ରତ୍ନତତ୍ତ୍ୱ, ନୃତତ୍ତ୍ୱଠାରୁ ଆରମ୍ଭ କରି ସାମାଜିକ ଇତିହାସରେ ପ୍ରତ୍ୟେକଟି ବିଷୟ ଏପରିକି ଭାଷା ସେଥିସହିତ ସମ୍ପୃକ୍ତ । ଅଥଚ ଠିକ୍ ସେଇ ମର୍ମ ବିଷୟଟି ପ୍ରତି ଦୃଷ୍ଟି ଦିଆଯାଏ ନାହିଁ । କାରଣ ବିପଦ ରହିଛି । "To tell the whole story from beginning to end, would not only reveal the present as the continuation of the past, it will lift the veil on the future. There is the Rub .(G. Thompson)

ମୂଳରୁ ଶେଷଯାଏ ସମସ୍ତ କାହାଣୀ କହିବାରେ ବର୍ତ୍ତମାନକୁ କେବଳ ଅତୀତର କ୍ରମବିକାଶ ଭାବେ ପ୍ରକାଶ କରାଯାଏ ନାହିଁ, ତାହା ମଧ୍ୟ ଭବିଷ୍ୟତ ଉପରର ଆବରଣ ହଟାଇ ଦିଏ । ଅସଲ ବିପଦ ସେଇଠି; କ'ଣ ସେଇ ବିପଦ ?

ଆମେରିକାର ନୃତତ୍ତ୍ୱବିତ୍ ହେନେରୀ ଲୁଇସ ମର୍ଗାନ ହେଉଛନ୍ତି ତାର ଜ୍ୱଳନ୍ତ ଦୃଷ୍ଟାନ୍ତ । ସେ ତାଙ୍କ ସମସ୍ତ ଜୀବନଟା ପ୍ରାୟ କଟାଇଛନ୍ତି ଆମେରିକାର ଅସଭ୍ୟ ଆଦିବାସୀଙ୍କ ମଧ୍ୟରେ । ସେଇମାନଙ୍କ ଜୀବନକୁ ନେଇ ତାଙ୍କର ଗବେଷଣା । ତାଙ୍କର ସେଇ ଗବେଷଣା ଏକ ବୈଜ୍ଞାନିକ ଆବିଷ୍କାର । ସେ ମାର୍କସ୍‌ଙ୍କ ସମସାମୟିକ ହେଲେ ମଧ୍ୟ ଦୁହେଁ ନିଜ ନିଜ ଉପାୟରେ ସମାନ ସିଦ୍ଧାନ୍ତରେ ପହଞ୍ଚିଥିଲେ । ମାର୍କସ୍ ତାଙ୍କର ସାମାଜିକ, ଅର୍ଥନୈତିକ ଓ ଦାର୍ଶନିକ ଗବେଷଣା ଦ୍ୱାରା ଯେଉଁ ସିଦ୍ଧାନ୍ତରେ ପହଞ୍ଚିଲେ, ମାର୍ଗାନ ତାଙ୍କ ନିଜ ବାଟରେ ତାଙ୍କ କ୍ଷେତ୍ରରେ ଠିକ୍ ସେଇ ସିଦ୍ଧାନ୍ତରେ ପହଞ୍ଚିଛନ୍ତି । ତାକୁ ଲକ୍ଷ୍ୟକରି ଏଙ୍ଗେଲେସ୍ କହିଛନ୍ତି — "Morgan rediscovered in America in his own way. 'The material conception of History' that has been discovered by Marx by forty years ago and in his comparision of barbarism and civilisation was led by this conception to the same conclusions in the main points as Marx had arrived at" (ମାର୍କସ୍ ଚାଳିଶ ବର୍ଷ ଆଗରୁ ଇତିହାସରେ ଯେଉଁ ବସ୍ତୁବାଦୀ ଧାରଣା ଆବିଷ୍କାର କରିଥିଲେ, ମର୍ଗାନ ତାଙ୍କ ବାଟରେ ଆମେରିକାରେ ତାହାକୁ ପୁନଃ ଆବିଷ୍କାର କରିଛନ୍ତି ବର୍ବରତା ସହିତ ସଭ୍ୟତା ତୁଳନା କରିବା ସାଙ୍ଗରେ । ସେଇ ଧାରଣା ସାହାଯ୍ୟରେ ସିଏ ଯେଉଁ ସିଦ୍ଧାନ୍ତରେ ପହଞ୍ଚିଛନ୍ତି, ସେଗୁଡିକ ମଧ୍ୟ ମାର୍କସ୍‌ଙ୍କ ସିଦ୍ଧାନ୍ତ ।

କ'ଣ ସେ ମାର୍କସ୍‌ଙ୍କ ସିଦ୍ଧାନ୍ତ ? ''ଆଧୁନିକ ଦାମ୍ପତ୍ୟ ଜୀବନ, ବ୍ୟକ୍ତିଗତ ସମ୍ପତ୍ତି ଓ ରାଷ୍ଟ୍ର — ଏ କୌଣସିଟା ମାନବଜାତି ପକ୍ଷରେ ଅପରିହାର୍ଯ୍ୟ ନୁହେଁ । ପ୍ରତ୍ୟେକ ଜାତିର ଜୀବନରେ ଏପରି ଗୋଟାଏ ଯୁଗ ଯାଇଛି , ଯେତେବେଳେକି ସେସବୁ ଜାତି ଭିତରେ ଏ ସବୁର କିଛି ଚିହ୍ନ ନ ଥିଲା । ସେମାନେ ଜାଣନ୍ତି ନାହିଁ ସେ ସବୁ କ'ଣ । ଏବେ ବ୍ୟକ୍ତିଗତ ସମ୍ପତ୍ତି ଯେତେ ଟାଣ, ବଳିଷ୍ଠ ଓ ଅପରିହାର୍ଯ୍ୟ

ମନେହେଲେ ବି ପୃଥିବୀ ପୃଷ୍ଠରେ ମାନବ ଜାତି ସହିତ ତାର ସମ୍ପର୍କ କାଳ ଆଖିର ଏକ ପଲକ ଭଳି । ମାନବ ସମାଜ ଆରମ୍ଭରୁ, ମଧ୍ୟ- ବନ୍ୟ ଅବସ୍ଥାରୁ ମଧ୍ୟ- ବର୍ବର ଅବସ୍ଥାଯାଏ, ଦୀର୍ଘକାଳ ହଜାର ହଜାର ବର୍ଷ ଧରି ବ୍ୟକ୍ତିଗତ ସମ୍ପତ୍ତି ସହିତ ମଣିଷର କୌଣସି ପରିଚୟ ନ ଥିଲା । ବୁଝିବାକୁ ହେବ, ବ୍ୟକ୍ତିଗତ ସମ୍ପତ୍ତି ମଣିଷ ଜୀବନ ଲାଗି ଅପରିହାର୍ଯ୍ୟ ନୁହେଁ । ତେଣୁ ଭବିଷ୍ୟତରେ ସେଥିରୁ ସେ ମୁକ୍ତ ହେବା ଅସମ୍ଭବ ନୁହେଁ । ଅଗ୍ରଗତିର ଅବାରିତ ସ୍ରୋତ ଯଦି ଅପରିହାର୍ଯ୍ୟ ହୁଏ, ତେବେ ଯେଉଁ ନିୟମରେ ବ୍ୟକ୍ତିଗତ ସମ୍ପତ୍ତିର ସୃଷ୍ଟି, ସେଇ ନିୟମରେ ତାର ବିଳୟ ସୁନିଶ୍ଚିତ । ମର୍ଗାନ ଭବଷ୍ୟତରେ ସେଇ ପ୍ରାଚୀନ ସମାଜର ପୁନରାବର୍ତ୍ତିନ ଦେଖିଛନ୍ତି । କିନ୍ତୁ ଠିକ୍ ସେଇ ପୂର୍ବଭଳି ନୁହେଁ । ତାହା ତାର ଚରମ ଉନ୍ନତି, ସମୃଦ୍ଧି ଓ ପ୍ରାଚୁର୍ଯ୍ୟର ପର୍ଯ୍ୟାୟରେ । ତାଙ୍କର ସମସ୍ତ ଗବେଷଣାର ସାରକଥା ହେଲା, — "Democracy in Government, brotherhood in society, equality in right and privileges and universal education foreshadow the next higher plain of the society to which experience, intelligence and knowledge are steadily tending. It will be a revival the higher form of liberty, equality and fraternity of ancient gents." ("ସରକାରରରେ ଗଣତନ୍ତ୍ର, ସମାଜରେ ଭ୍ରାତୃତ୍ୱ, ସମାନ ଅଧିକାର ଓ ସୁଯୋଗ, ସାର୍ବଜନୀନ ଶିକ୍ଷା, ସମାଜର ସେଇ ଉଚ୍ଚତର ପର୍ଯ୍ୟାୟର ପୂର୍ବାଭାସ, ଯେଉଁ ଦିଗରେ କି ଜ୍ଞାନ ଓ ଅଭିଜ୍ଞତା ଦୃଢଭାବରେ ଅଗ୍ରସର, ସେଇ ସମାଜ ହେବ ଏକ ଉଚ୍ଚତର ରୂପ, ସେଇ ଗଣଗୋଷ୍ଠୀର ମୁକ୍ତି, ସାମ୍ୟ ଓ ଭ୍ରାତୃତ୍ୱର ଏକ ପୁନରୁତ୍‌ଥାନ ।)

ମାର୍କସ୍‌ଙ୍କ ଭଳି ମର୍ଗାନଙ୍କର ଏଇ ବୈଜ୍ଞାନିକ ଗବେଷଣା ବିରୋଧରେ ଘୋର ପ୍ରତିବାଦର ସ୍ୱର ଉଠିଛି । ସେଇ ଗବେଷଣାକୁ ଚାପିଦେବାର ପ୍ରୟାସ ମଧ୍ୟ ହୋଇଛି । ଅଥଚ ମର୍ଗାନ ତାଙ୍କ ଗବେଷଣା ଦ୍ୱାରା ଯାହା ପ୍ରକାଶ କରିଛନ୍ତି, ଜଗନ୍ନାଥ-ଭାବ ତାକୁ ଯୁଗ ଯୁଗ ଧରି ପ୍ରଚାର କରି ଆସିଛି । ମର୍ଗାନଙ୍କ ଗବେଷଣା କହେ, ଆଦିମ ଗଣସମାଜ ସ୍ୱାଧୀନତା, ସମତା ଓ ଭ୍ରାତୃତ୍ୱ ଉପରେ ପ୍ରତିଷ୍ଠିତ । ଜଗନ୍ନାଥଙ୍କ ଭାବର ମର୍ମ ହେଉଛି ସାମ୍ୟ, ମୈତ୍ରୀ ଓ ପ୍ରୀତି । ଏ ଦୁଇଟି ଜିନିଷ ସବୁଦିଗରୁ ଏକ ଓ ଅଭିନ୍ନ । କେବଳ ସାଧାରଣ ଭାଷା ଓ ଅର୍ଥ ଦୃଷ୍ଟିରୁ ନୁହେଁ । ମର୍ମ ଦିଗରୁ ଦେଖିଲେ ମାର୍କସ୍, ମାର୍ଗାନ ଓ ଜଗନ୍ନାଥଭାବ ମଧ୍ୟରେ କୌଣସି ଫରକ ନାହିଁ । ଫରକ ହେଉଛି, ଜଗନ୍ନାଥଙ୍କର ଭଜନ ପୂଜନ ହେଲାବେଳେ ମର୍ଗାନ ମତକୁ ଚାପି ଦିଆଯାଏ । ଆଉ ମଣିଷ ତୂଣୀରରେ ଏମିତି କୌଣସି ବାଣ ନାହିଁ, ଯାହାକି ମାର୍କସ୍‌ଙ୍କ ବିରୋଧରେ ପ୍ରୟୋଗ ନ ହୋଇଛି ବା ହେଉ ନାହିଁ । ଏହାର କାରଣ ଅତି ସ୍ପଷ୍ଟ । ମାର୍କସ୍‌ବାଦ କେବଳ ତାହା ପ୍ରକାଶ କରେ ନାହିଁ । ସେ ତାର ଉତ୍ପତ୍ତି, ଅଗ୍ରଗତି ଓ ତାର ଅପରିହାର୍ଯ୍ୟ ନିୟମକୁ ଦର୍ଶାଇଥାଏ । ମଣିଷ କିପରି ସେଇ ମାନବିକ ଲକ୍ଷ୍ୟ ହାସଲ କରିବା ଦ୍ୱାରା ମାନବିକତାର ଅଧିକାରୀ ହେବ, ତା' ତାର ସେଇ ମାର୍ଗର ନିର୍ଦ୍ଦେଶ ଦିଏ । ସେ

ଦିଗରେ ଆବଶ୍ୟକୀୟ ପଦ୍ଧତି ଓ ପ୍ରେରଣା ଯୋଗାଇଥାଏ । ତାହା ଯେଉଁମାନଙ୍କ ସ୍ୱାର୍ଥକୁ ଆଘାତ କରେ, ସେମାନେ ତାକୁ ଆକ୍ରମଣ ଓ ଦମନ କରନ୍ତି ।

ସେମିତି ମର୍ଗାନ କେବଳ ତାହାକୁ ପ୍ରକାଶ କରନ୍ତି ନାହିଁ, ମଣିଷର ଆଦ୍ୟ ବାସ୍ତବତାକୁ ବିଦୀର୍ଣ୍ଣ ଓ ଉନ୍ମୁକ୍ତ କରିଦେଲା ଭିତରେ ସେ ମଣିଷର ସୁନିଶ୍ଚିତ ଭବିଷ୍ୟତର ବଳିଷ୍ଠ ଇଙ୍ଗିତ ବା ଦୃଢ଼ ନିର୍ଦ୍ଦେଶ ଦେଇଥା'ନ୍ତି । ଜଗନ୍ନାଥ ଭାବ ଈଶ୍ୱର-ଧାରଣା ଭଳି ଅତୀତହୀନ ଓ ଭବିଷ୍ୟତ୍ ଶୂନ୍ୟ ଧର୍ମର ରୂପ ଧାରଣ କରି କେବଳ ଜଗନ୍ନାଥ ମହିମା କୀର୍ତ୍ତନରେ ଆବଦ୍ଧ ।

ଅତଏବ ସେଇ ଭାବର ପ୍ରତିଷ୍ଠା ଲାଗି ମାର୍କସ୍‌ବାଦ ଡାକ ଦିଏ ଏକ ସାମାଜିକ ପରିବର୍ତ୍ତନକୁ । ମର୍ଗାନ ଜାଗ୍ରତ କରନ୍ତି ମାନବିକ ଚେତନାର ଉତ୍ସକୁ । ସେଇ ଭାବର ସାରଶୂନ୍ୟ ପ୍ରଚାର ଦ୍ୱାରା ଜଗନ୍ନାଥଧର୍ମୀୟ ନେତାମାନେ ସୁରକ୍ଷିତ କରିବାକୁ ଚାହିନ୍ତି ଏଇ ଶୋଷଣସିକ୍ତ ମାନବିକତାଶୂନ୍ୟ ସାମାଜିକ ବ୍ୟବସ୍ଥାକୁ ।

କାରଣ, ଏଇ ସମାଜ ରକ୍ଷା ଦ୍ୱାରା ତାକୁ ଶାସନ କରୁଥିବା ପ୍ରଚଳିତ ଧର୍ମର ରକ୍ଷା ହୁଏ, ତା ଉପରେ ଆଧିପତ୍ୟ କରୁଥିବା ଧନରକ୍ଷକଙ୍କ ଧନ ରକ୍ଷା ହୁଏ, ତା ଉପରେ ରାଜୁତି କରୁଥିବା ଶକ୍ତିଙ୍କର କ୍ଷମତାର ରକ୍ଷା ହୁଏ । କାଳେ କାଳେ ସେହିମାନେ ଜଗନ୍ନାଥକୁ ଆପଣାର ଆୟୁଧ କରି ଆସିଛନ୍ତି । ଜଗନ୍ନାଥ-ଭାବର ମର୍ମ — ସାମ୍ୟ ମୈତ୍ରୀ ପ୍ରୀତିକୁ ପରିହାର କରି ଗାନ କରିଛନ୍ତି ତାଙ୍କର ଅଲୌକିକ ଗୌରବକୁ । ତାର ପାର୍ଥିବ ମହାନ୍ ଉତ୍କର୍ଷକୁ ହତ୍ୟା କରି କୀର୍ତ୍ତନ କରିଛନ୍ତି ତାଙ୍କର ସ୍ୱର୍ଗୀୟ ମହିମାକୁ ।

ଜଗନ୍ନାଥ-ଭାବ ବିରୋଧରେ ସବୁଠାରୁ ଶକ୍ତିଶାଳୀ କମାଣ ଓ କ୍ଷେପଣାସ୍ତ୍ର ହୋଇଛି ଗୀତା, ମହାଭାରତ, ରାମାୟଣ, ଭାଗବତ ଆଦି ହିନ୍ଦୁଧର୍ମର ଶାସ୍ତ୍ର ଓ ପୁରାଣ ଆଦି ।



# ଦ୍ୱାଦଶ ପର୍ବ

## ଜଗନ୍ନାଥ-ବିରୋଧୀ ଅଭିଯାନ

ସର୍ବପ୍ରଥମେ ସ୍ମରଣ ରଖିବାକୁ ହେବ— ଗୀତା ଭଗବାନଙ୍କ ଅମର ବାଣୀ ନୁହେଁ କି ସେଥିରେ ପବିତ୍ରତା ବୋଲି କିଛି ନାହିଁ । ତାହା କୁରୁକ୍ଷେତ୍ର ଯୁଦ୍ଧ ପୂର୍ବର ଏକ ପ୍ରସ୍ତୁତି, ଆକ୍ରମଣ ଲାଗି ପ୍ରବର୍ତ୍ତନା ବା ଏକ ଉଦ୍‌ବୋଧନ ବାଣୀ । ତେବେ ସେ କଥାର ଗୁରୁତ୍ୱ ରହିଛି । ନ ହେଲେ ଯୁଗ ଯୁଗ ଧରି କୋଟି କୋଟି ଲୋକ ତା ପଛରେ ଧାଇଁଥାଆନ୍ତେ କାହିଁକି ? ଗୀତାର ସେଇ ମହତ୍ତ୍ୱକୁ ବୁଝିବାକୁ ହେଲେ ସାମାଜିକ ଜୀବନରେ ତାର ସେହି ଆବଶ୍ୟକତାକୁ ଉଦ୍‌ଘାଟନ କରିବାକୁ ହେବ । ତାର ସେଇ ପ୍ରୟୋଜନୀୟତାର ଉପଲବ୍‌ଧି ହେଉଛି ଗୀତାର ପ୍ରକୃତ ଉପଲବ୍‌ଧିର ଏକମାତ୍ର ଉପାୟ । ସେହି ସାମାଜିକ ଅବସ୍ଥା ଗୀତାକୁ କେବଳ ଜନ୍ମଦେଇ ଧରି ରଖିନାହିଁ, ଗୀତା ମଧ୍ୟ ସେଇ ସାମାଜିକ ଅବସ୍ଥାକୁ ରକ୍ଷା କରିବାରେ ଲାଗିଛି । ଆଜି ବି ତେଣୁ ଗୀତାର ଏତେ ଗୁରୁତ୍ୱ । ଆମର ଜଗନ୍ନାଥ ଭାବର ଆଲୋଚନା ଲାଗି ସେ ସବୁ ଆଲୋଚନା ଅପରିହାର୍ଯ୍ୟ । ଯେହେତୁ ଜଗନ୍ନାଥ-ଭାବର ସମାଧି ଉପରେ ହିଁ ଗୀତାର ଜନ୍ମ ଓ ବିକାଶ । ସେହି ଭାବର ହତ୍ୟାହିଁ ତାର ଏକମାତ୍ର ଉଦ୍ଦେଶ୍ୟ ।

ଗୀତା ମହାଭାରତର ଏକ ଅଂଶବିଶେଷ । ମହାଭାରତ ଯେପରି ବିଶ୍ୱର ସର୍ବବୃହତ ଗ୍ରନ୍ଥ,ଗୀତା ସେପରି ବିଶ୍ୱର ସର୍ବଶ୍ରେଷ୍ଠ ବିଚକ୍ଷଣ ଲେଖା । ତା ନହେଲେ ଯୁଗ ଯୁଗ ଧରି ବିଚକ୍ଷଣ ପଣ୍ଡିତଗଣ ତାର ବିଭିନ୍ନ ବ୍ୟାଖ୍ୟାରେ ଲାଗି ନ ଥାଆନ୍ତେ ! ଏବେ ବି ସେହି ବ୍ୟାଖ୍ୟାର ସମାପ୍ତି କି ଶେଷ ସିଦ୍ଧାନ୍ତ ନାହିଁ ।

ମହାଭାରତ ପୂର୍ବରୁ ପ୍ରଥମେ ଜୟ ଓ ପରେ ଭାରତ ବୋଲି ଦୁଇଟି କାବ୍ୟ ରହିଛି । ତା ବଢ଼ି ବଢ଼ି ଶେଷରେ ବିରାଟ ମହାଭାରତରେ ପରିଣତ ହୋଇଛି । ପ୍ରଥମରେ ଥିବା ୨୪ ହଜାର ଶ୍ଳୋକ ଶେଷରେ ୧୦ ଲକ୍ଷରେ ପହଞ୍ଚିଛି । ସେମିତି

ପ୍ରଥମରେ ଥିବା 'ସପ୍ତଶ୍ଳୋକୀ ଗୀତା' ବଢ଼ି ବଢ଼ି ଶେଷରେ ସପ୍ତଶତୀ ଗୀତାରେ ପରିଣତ ହୋଇଛି । (୧)

ଗୀତା ମହାଭାରତରେ ପ୍ରଥମେ ୭ରୁ ୧୦ ଶ୍ଳୋକ, ପୁଣି ୧୦ରୁ ୧୮, ପୁଣି ୨୮ରୁ ୩୨, ପୁଣି ସେଠୁ ୧୦୦ ଓ ଶେଷରେ ୭୦୦ ଶ୍ଳୋକରେ ପହଞ୍ଚିଛି । ସେହି ମୂଳ ଗୀତାର ସାତଟି ଶ୍ଳୋକ ହେଉଛି, ବର୍ତ୍ତମାନ ଗୀତାର ୮ମ ଅଧ୍ୟାୟର ୯ ଓ ୧୩ ଶ୍ଳୋକ, ୧୧ ଅଧ୍ୟାୟର ୩୬ ଶ୍ଳୋକ, ୧୩ ଅଧ୍ୟାୟର ୧୩ଶ୍ଳୋକ, ୧୫ ଅଧ୍ୟାୟର ୧ ଓ ୧୫ ଶ୍ଳୋକ, ୧୮ ଅଧ୍ୟାୟର ୬୫ ଶ୍ଳୋକ । (ଓଡ଼ିଆ ସାହିତ୍ୟର କ୍ରମ ପରିଣାମ- ''ସପ୍ତଶ୍ଳୋକୀ'' ଓ ''ସପ୍ତଶତୀ'') ତା' ମାନେ ଆବଶ୍ୟକତା ଅନୁସାରେ ପରବର୍ତ୍ତୀ କାଳରେ ବିଭିନ୍ନ ସମୟରେ ଗୀତାକୁ ପରିବର୍ଦ୍ଧିତ କରଯାଇଛି । କିନ୍ତୁ କାହିଁକି ? କ'ଣ ତାର ସେହି ପ୍ରୟୋଜନୀୟତା ?

ନୈମିଷ୍ୟାରଣ୍ୟରେ ଚାରଣ କବି ପ୍ରଥମେ ଉଗ୍ରସର୍ବ ସମବେତ ଋଷିମାନଙ୍କ ଆଗରେ ମହାଭାରତ ଗାନ କରିନ୍ତି । ବ୍ୟାସ ଜନମେଜୟଙ୍କ ଆଗରେ ଯାହା ବୋଲିଥିଲେ ସେ ତାହାକୁ ହିଁ ପୁନରାବୃତ୍ତି କରିଥାଆନ୍ତି । ଗୀତାର ସତ୍ୟତା ବା ପ୍ରମାଣ ନେଇ ବ୍ରାହ୍ମଣମାନେ ପ୍ରଶ୍ନ କରନ୍ତି ନାହିଁ । କିନ୍ତୁ ସେମାନେ ସେଥିରେ ସନ୍ତୁଷ୍ଟ ନ ଥିଲେ । କାରଣ ତାହା ତାଙ୍କ ପ୍ରତି ଲାଭଦାୟକ ନ ଥିଲା । ତେଣୁ 'ଅନୁଗୀ'ତାର ସୃଷ୍ଟି, —ଅଶ୍ୱମେଧ ପର୍ବ, ଚତୁର୍ଥକାଣ୍ଡର ପରିଣତି ସ୍ୱରୂପ ଅର୍ଜ୍ଜୁନ କହନ୍ତି ଯେ ଯୁଦ୍ଧବେଳେ ସେ କ'ଣ ଶୁଣିଥିଲେ, ତାହା ଭୁଲିଯାଇଛନ୍ତି । କୃଷ୍ଣ ଆଉଥରେ କୁହନ୍ତୁ । କୃଷ୍ଣ କହନ୍ତି ତାହା ସମ୍ଭବ ନୁହେଁ । ତାଙ୍କର ସ୍ମୃତିରୁ ମହାନ ପ୍ରଚେଷ୍ଟାକୁ ଆଉଥରେ ନକଲ କରାଯାଇ ନ ପାରେ । ତାହାପରେ ଆରମ୍ଭ ହୋଇଛି ଦ୍ୱିତୀୟ ଗୀତା । ଏହି ଦ୍ୱିତୀୟ ଗୀତା କେବଳ ବ୍ରାହ୍ମଣ୍ୟବାଦ ଓ ବ୍ରାହ୍ମଣଙ୍କର ଗୁଣଗାନ କରେ । ତାଙ୍କରି ପ୍ରଶଂସାରେ ମୁଖର । କାରଣ ତାହାର ସାମାଜିକ ଆବଶ୍ୟକତା ଥିଲା । ଶ୍ରୀଯୁକ୍ତ ଡ଼ି. ଡ଼ି. କୋଶାମ୍ବି କହନ୍ତି - "However an incredibly shoddy second Gita is offered insteared which, which simply extols Brahminism and Brahmins clearly that was felt necessary at the time by the inflators though no one reads it now, and it cannot be compared to the firest Gita even for a moment. (2)

ଗୀତା ହେଲା କୁରୁକ୍ଷେତ୍ର ରଣାଙ୍ଗନରେ କୃଷ୍ଣ ଅର୍ଜ୍ଜୁନଙ୍କ କଥୋପକଥନ, ଦୁଇ ସେନାବାହିନୀ ପରସ୍ପରକୁ ଆକ୍ରମଣ କରବାକୁ ଉଦ୍ୟତ ହୋଲାବେଳେ ଅର୍ଜ୍ଜୁନ ଧନୁ ଛାଡ଼ି ବସିପଡ଼ନ୍ତି, କୃଷ୍ଣ ତାଙ୍କୁ ଯୁଦ୍ଧ କରିବାକୁ ପ୍ରବର୍ତ୍ତାନ୍ତି । ସେହି କଥାବାର୍ତ୍ତା ୧୮ ଅଧ୍ୟାୟରେ ବିଭକ୍ତ । ତାହା ନିଶ୍ଚୟ ବହୁ ସମୟ ଧରି ଚାଲିଥିବ, ଅନ୍ତତଃ ଚାରି ଛଅ ଘଣ୍ଟାରୁ କମ୍ ହେବ ନାହିଁ । ସେ ପର୍ଯ୍ୟନ୍ତ ଦୁଇ ସେନାବାହୀନୀ ଅପେକ୍ଷା କରି

(୨) D. D. Kosambi, 'Myth and reality'. Page - 18

ରହିଛନ୍ତି ! ସେଇ ଯୁଦ୍ଧରେ ପ୍ରାୟ ୫୦ଲକ୍ଷ ଲୋକ ଭାଗ ନେଇଛନ୍ତି ଏବଂ ୧୮ ଦିନ ଭିତରେ ମରିଛନ୍ତି । ଏକଲକ୍ଷ ୩୦ହଜାର ଘୋଡ଼ାଯୋଚିତ ରଥ, ସମାନ ସଂଖ୍ୟକ ହାତୀ, ତାର ୩ ଗୁଣ ଘୋଡ଼ା ଓ ତଦନୁଯାୟୀ ତାଙ୍କର ସେବାକାରୀ ଯୁଦ୍ଧରେ ଲାଗିଛନ୍ତି। ଦେଶର ଲୋକସଂଖ୍ୟା ଓ ଉତ୍ପାଦନ କେତେ ପରିମାଣରେ ହେଲେ ଏତେ ଲୋକ ଯୁଦ୍ଧରେ ଠିଆ ହୋଇପାରନ୍ତେ ! ଇଂରେଜମାନେ ଆସିଲା ବେଳକୁ ଭାରତର ଲୋକସଂଖ୍ୟା କୋଡ଼ିଏ କୋଟି ସୁଦ୍ଧା ନ ଥିଲା । ଅଥଚ ମହାଭାରତ ଯୁଦ୍ଧ ଲାଗି ଲୋକସଂଖ୍ୟା ଅନ୍ତତଃ କୋଡ଼ିଏ କୋଟି ହେବା ଦରକାର । ଖ୍ରୀ: ପୂ: ଷଷ୍ଠ ଶତାବ୍ଦୀ ପର୍ଯ୍ୟନ୍ତ ଭାରତରେ ଲୁହାର ପ୍ରଚଳନ ଘଟି ନାହିଁ । ଅଥଚ ଉତ୍ପାଦନ ବୃଦ୍ଧି ଲାଗି ଲୁହା ଲଙ୍ଗଳ ଦରକାର । ସେପରି ଉତ୍ପାଦନ ବିବା ଏ ବିରାଟ ସେନାବାହୀନୀକୁ ପୋଷି ହେବ ନାହିଁ । ପରବର୍ତ୍ତୀ ଇତିହାସରୁ ଜଣାଯାଏ ଯେ, ଚନ୍ଦ୍ରଗୁପ୍ତଙ୍କ ସମୟରେ ଚାରିଲକ୍ଷ ଲୋକଙ୍କର ବିରାଟ ସୈନ୍ୟବାହିନୀ କେବଳ ସମ୍ଭବ ହୋଇପାରିଥିଲା । ସେତେବେଳକୁ କେନ୍ଦ୍ରସ୍ଥଳୀ ମଥୁରା, ହସ୍ତିନାପୁର ଇନ୍ଦ୍ରପ୍ରସ୍ଥରୁ ମଗଧର ପାଟଳୀପୁତ୍ର ଆସିଯାଇଛି । ଅର୍ଥାତ ଗାଙ୍ଗେୟ ଉପତ୍ୟକାର ଉଦ୍‌ବୃତ୍ତ ଉତ୍ପାଦନ ଫଳରେ ସେଇ ସୈନ୍ୟବାହିନୀ କେବଳ ସମ୍ଭବ ହୋଇଛି । ଅଥଚ ବୁଦ୍ଧଙ୍କ ସମୟକୁ ଏକ କ୍ଷୁଦ୍ର ଟ୍ରାଇବାଲ (ଉପଜାତି) କୁରୁ ରାଜ୍ୟ ରହିଥିଲା । ତାପରେ ଅନ୍ୟ ଟ୍ରାଇବାଲ ଗୋଷ୍ଠୀ ସହିତ ତାହା ମିଶିଯାଇଛି କି ମହାପଦ୍ମ ନନ୍ଦଙ୍କ ଦ୍ୱାରା ଧ୍ୱଂସ ପ୍ରାପ୍ତ ହୋଇଛି ? ଯାହା ଜଣାଯାଏ କୁରୁକ୍ଷେତ୍ରରେ ଏକ ଭାରତ ଯୁଦ୍ଧ ହୋଇଛି । ତାହା ଖ୍ରୀ: ପୂ: ନଅ କି ଦଶ ଶତାବ୍ଦୀର କଥା । ମହାଭାରତ ବର୍ଣ୍ଣିତ ଯୁଦ୍ଧ ଭଳି ତାହା ଏଡ଼େ ବିରାଟ ବା ଭୟଙ୍କର ନୁହେଁ । ଗୀତା ରଚନା କାଳ ହେଉଛି ଏକରୁ ଦୁଇଶ ଖ୍ରୀଷ୍ଟାବ୍ଦ ମଧ୍ୟରେ । ଅର୍ଥାତ୍ ପ୍ରାୟ ହଜାର ବର୍ଷ ଉତ୍ତାରୁ । ଗୀତାକୁ ସେଇ କାହାଣୀ ମଧରେ ଭର୍ତ୍ତି କରାଯାଇଛି । କିନ୍ତୁ କାହିଁକି ? କ'ଣ ସେଇ କାହାଣୀର ତାତ୍ପର୍ଯ୍ୟ ?

ସେ କାହାଣୀ କହେ, ଅର୍ଜ୍ଜୁନ ଯୁଦ୍ଧ କରିବାକୁ ନାରାଜ, କୃଷ୍ଣ ତାଙ୍କୁ ବୁଝାନ୍ତି । ଅର୍ଜ୍ଜୁନ ନାହିଁ କରିବାର କାରଣ ହେଲା ତାହା ଜ୍ଞାତି ହତ୍ୟା । ଟ୍ରାଇବାଲ ଗଣଗୋଷ୍ଠୀର ନିୟମ ଅନୁଯାୟୀ ଜ୍ଞାତିହତ୍ୟା ନିଷେଧ । ସେଇ ସମାଜ ଯାହା ଜ୍ଞାତି,ସଂମ୍ପର୍କ ଉପରେ ପ୍ରତିଷ୍ଠିତ, ସେଠି ତାକୁ ହତ୍ୟା କରିବା ଅର୍ଥ ସେଇ ସମାଜକୁ ହତ୍ୟା କରିବା । ତାହା ସମାଜକୁ ଭାଙ୍ଗୀ ଧ୍ୱଂସ କରିଦେବ । ସେଠି ପ୍ରତ୍ୟେକ ଅନ୍ୟକୁ ରକ୍ଷା କରିବା ହେଲା କୁଳଧର୍ମ । ଜଣେ ସମସ୍ତଙ୍କ ପାଇଁ ଓ ସମସ୍ତେ ଜଣଙ୍କ ପାଇଁ, ଏହାହିଁ ଧର୍ମ ଓ ନୀତିବୋଧ, ଯାହାକି ସାମ୍ୟ — ମୈତ୍ରୀ ପ୍ରୀତି ବିନା ସମ୍ଭବ ନୁହେଁ । କୃଷ୍ଣ ଚାହିଁଛନ୍ତି ସେହିପରି ସାମ୍ୟ ସମାଜର ଧ୍ୱଂସ । ଅର୍ଥାତ୍ ସାମ୍ୟ ମୈତ୍ରୀ ପ୍ରୀତି, ସେଇ ଜଗନ୍ନାଥ ଭାବର ହତ୍ୟା । କିନ୍ତୁ କାହିଁକି ?

ଏକମାତ୍ର କାରଣ ରାଜ୍ୟର ପ୍ରତିଷ୍ଠା ଓ ତାର ବିସ୍ତାର । ସେତେବେଳକୁ ବହୁକାଳ ଧରି ଏକ ଦିଗରେ ଟ୍ରାଇବାଲ ଗଣଗୋଷ୍ଠୀ ସମାଜ, ଅନ୍ୟ ଦିଗରେ ରାଜ୍ୟର ପ୍ରତିଷ୍ଠା ଓ ବିସ୍ତାର, ଏ ଦୁହିଙ୍କ ମଧ୍ୟରେ ସଂଘର୍ଷ ଲାଗିଛି । ତା ଶହ ଶହ ବର୍ଷ ଧରି

ଚାଲିଛି । ବୁଦ୍ଧଙ୍କ ବେଳେ ଆମେ ସେ ସମ୍ବନ୍ଧରେ କିଛି ଆଲୋଚନା କରିଛେ । ସେହି ଦ୍ୱନ୍ଦ୍ୱର ସମାଧାନ ଘଟିଛି ଶେଷରେ ଗୁପ୍ତ ସାମ୍ରାଜ୍ୟର ବିସ୍ତାର ବେଳକୁ । ସେତେବେଳେ ସେଇ ଟ୍ରାଇବାଲ ଗଣଗୋଷ୍ଠୀ ସବୁ ଧ୍ୱଂସ ପାଇଯାଇଛନ୍ତି ବା ଲୋପ ହେବା ଉପରେ । ସେଇ ଟ୍ରାଇବାଲ ଗଣଗୋଷ୍ଠୀ ସମାଜର ବିଲୋପ ଓ ରାଜ ଶାସନର ଉଦ୍‌ଭବର ଏକମାତ୍ର ଅର୍ଥ ହେଉଛି, ସାମ୍ୟ ମୈତ୍ରୀର ଶୋଷଣଶୂନ୍ୟ ଓ ଶାସନହୀନ ସମାଜକୁ ଭାଙ୍ଗି ତାର ଧ୍ୱଂସସ୍ତୂପ ଉପରେ ସମସ୍ତ ପ୍ରକାର ଅସାମ୍ୟ ଓ ବ୍ୟକ୍ତିଗତ ସମ୍ପତ୍ତିର ବିକାଶ, ଆଉ ସେଥି ସହିତ ତାର କୃତିତ୍ୱ କାଏମ କରିବା ଏବଂ ଅନୁରୂପ ରାଷ୍ଟ୍ର କ୍ଷମତା ପ୍ରତିଷ୍ଠା କରିବା ।

ଦ୍ୱିତୀୟରେ, ସମାଜର ସେଇ ଅସାମ୍ୟ ଉତ୍ପୀଡ଼ନକୁ ଗୀତା ଆହୁରି ଶକ୍ତ ଓ କଠୋର କରି ବାନ୍ଧି ଦେଇଛି । ତାକୁ ଅଧିକ ବ୍ୟାପକ ଓ ଉତ୍କଟ କରି ଥୋଇଛି । ସମାଜର ଏକ ବିରାଟ ଅଂଶକୁ ଚିରଦିନ ଲାଗି ଦଳିତ, ପତିତ ଓ ଅସ୍ପୃଶ୍ୟରେ ପରିଣତ କରିଦେଇଛି । ସେମାନଙ୍କର ମୁକ୍ତି, ଇହଜନ୍ମ କଥା ଛାଡ଼, ପରଜନ୍ମରେ ସୁଦ୍ଧା ନାହିଁ । ଚାତୁର୍ବର୍ଣ୍ଣ୍ୟ ବ୍ୟବସ୍ଥା, ଜାତିଭେଦ ହେଲା ତାର ମୂଳଧର୍ମ । ତାହା ପୁଣି ହେଲା ଖୋଦ ଭଗବାନଙ୍କ ବାଣୀ —''ମୟା ସୃଷ୍ଟଂ (ଚତୁର୍ଥ ଅଧ୍ୟାୟ, ୩ୟ ଶ୍ଳୋକ, ଗୀତା) ଆଗରୁ ପୁରୁଷ, ପ୍ରଜାପତି ଓ ବ୍ରହ୍ମା ଆଦି ଚାତୁର୍ବର୍ଣ୍ଣ୍ୟର ସୃଷ୍ଟିକର୍ତ୍ତା ବୋଲି ଥିଲା । ତାଙ୍କ ବଦଳରେ ଏବେ ଭଗବାନ ନିଜେ ହେଲେ ସୃଷ୍ଟିକର୍ତ୍ତା । କାରଣ, ସେମାନଙ୍କ ସମ୍ବନ୍ଧରେ ପ୍ରଶ୍ନ ଆସେ, କିନ୍ତୁ ଭଗବାନଙ୍କ ସମ୍ବନ୍ଧରେ ସନ୍ଦେହର ଅବକାଶ ନାହିଁ । ଆଉ ଭଗବାନଙ୍କ ଜନ୍ମ ହେଲା ଠିକ୍ ସେଇ ଧର୍ମ ଲାଗି — ''ଧର୍ମସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ''(ଗୀତା ୪.୮୭) ଯିଏ ଏହି ଧର୍ମର ବିରୋଧ କରିବ ସେଇ ''ଦୁଷ୍କୃତ୍‌କୁ'' ବିନାଶ କରି ଧର୍ମ ରଖିବାକୁ ହେବ । ସେହି 'ଦୁଷ୍କୃତ୍‌ଙ୍କୁ' ଧ୍ୱଂସ କରିବା ହେଲା ଧର୍ମ ।

ଏବେ ପ୍ରତ୍ୟେକ ଜାତି ତାର କର୍ମ ଦ୍ୱାରା ନିର୍ଦ୍ଧାରିତ । ସେଇ ଜାତିକର୍ମ ପ୍ରତ୍ୟେକଙ୍କର ''ସ୍ୱଭାବଜ'' । ଶୂଦ୍ରଙ୍କର ସ୍ୱାଭାବିକ କାର୍ଯ୍ୟ ହେଲା ଉଚ୍ଚବର୍ଣ୍ଣଙ୍କ ସେବା କରିବା । (ଗୀତା ୧୮.୪୪) ତାହା ତାଙ୍କର ଗୁଣବତ । ତେଣୁ ତାଙ୍କ ପକ୍ଷରେ ତାହା ବାଧ୍ୟତାମୂଳକ । ସେ ତାକୁ ଏଡ଼ିଦେଇ ବାହାରି ଯାଇ ନ ପାରେ । ନିଜର ଜାତିକର୍ମ ନ କରିବାଟା ହେଲା ଅଧର୍ମ । କେହି ଯେପରି ନିଜର ଜାତିକର୍ମ ଛାଡ଼ି ଅନ୍ୟ କର୍ମ ନ କରେ, ତା ବ୍ୟବସ୍ଥା ଲାଗି ରହିଲା - ''ସ୍ୱଧର୍ମେ ନିଧନଂ ଶ୍ରେୟଃ ପରଧର୍ମୋ ଭୟାବହଃ'' (୩.୩୫, ୧୮.୪୫-୪୭ ଗୀତା) ଏହା ହେଲା, ନୀଚବର୍ଣ୍ଣର ଲୋକେ ଉଚ୍ଚବର୍ଣ୍ଣର କାମ ଲାଗି ଯେପରି ଆକାଙ୍‌କ୍ଷିତ ନ ହୁଅନ୍ତି, ସେ ଦିଗରେ ଏକ ଅଧ୍ୟାଦେଶ । ଯାକୁ ଏଡ଼ିବାଲାଗି ଯଦି କିଏ ଶୂଦ୍ରଙ୍କୁ ମତାଇଲା, ତେବେ ତା କଥା ସରିଲା । ଅଜ୍ଞାନ ମୂର୍ଖ ଲୋକଙ୍କ ମନରେ କେହି ଯେପରି ସନ୍ଦେହ, ବିଭ୍ରାନ୍ତି ସୃଷ୍ଟି ନ କରନ୍ତି, ସେଥିପ୍ରତି କଡ଼ା ସତର୍କବାଣୀ ଶୁଣାଇ ଦିଆଯାଇଛି । କାରଣ, ତାହା ସମାଜରେ ବିଶୃଙ୍ଖଳା, ବ୍ୟଭିଚାର ଓ ଅତ୍ୟାଚାର ସୃଷ୍ଟି କରେ । ତାକୁ ଭାଙ୍ଗେ ।

(ଗୀତା ୩ୟ ଅଧ୍ୟାୟ ୨୪ଶ୍ଳୋକ) । ପୁଣି ସ୍ତ୍ରୀଲୋକ, ବୈଶ୍ୟ, ଶୂଦ୍ର ଏମାନେ ପାପଯୋନିରୁ ଜାତ, ତାଙ୍କୁ ଚଣ୍ଡାଳଙ୍କ ସହିତ ସମାନ କରାଯାଇଛି । (୯.୩୨) ଏମାନେ ସମାଜର ସକଳ ଅଧିକାରରୁ କେବଳ ବଞ୍ଚିତ ନୁହନ୍ତି, ତୁଚ୍ଛ ଓ ଘୃଣିତ ମଧ୍ୟ । ଏହା କରିବାଟା ହେଲା ଧର୍ମ । ଗୀତାଂରେ ଭଗବାନଙ୍କ ନିର୍ଦ୍ଦେଶ । ତାକୁ ଅମାନ୍ୟ କରିବାମାନେ ପାପରେ ଭାଗୀଦାର ହେବା । ତାକୁ ପଶ୍ନ କରିବା ଅର୍ଥ, ଖୋଦ ଭଗବାନଙ୍କ ଅସ୍ତିତ୍ୱକୁ ପ୍ରଶ୍ନ କରିବା , — ତାଙ୍କୁ ଅସ୍ୱୀକାର କରିବା !

ଅତଏବ ଯୁଦ୍ଧ ଦ୍ୱାରା ବାହାରୁ ଗଣଗୋଷ୍ଠୀର ଧ୍ୱଂସ ଏବଂ ଭିତରେ ଚାତୁର୍ବର୍ଣ୍ଣ୍ୟ ବ୍ୟବସ୍ଥା ଦ୍ୱାରା ଅସାମ୍ୟ, ଉତ୍ପୀଡ଼ନ ଅବସ୍ଥାର ସୃଷ୍ଟି ସମାଜରେ ଶ୍ରେଣୀ ବିଭାଗକୁ ଅଧିକ କଠୋର କରିଦେଇଛି । ତହା ବ୍ୟକ୍ତିଗତ ସମ୍ପତ୍ତିକୁ ଆହୁରି ଅଗ୍ରସର କରିନେଇଛି । ଅଧିକ ଅଧିକ ଶୋଷଣ ନିର୍ଯ୍ୟାତନାକୁ ଆହ୍ୱାନ କରିଛି । ତଦନୁସାରେ ରୂପ ନେଇଛି ସେହି ସମାଜର ମତାଦର୍ଶ । ତାର ଗୋଟାଏ ପ୍ରତିଫଳନ ଘଟିଛି ଧର୍ମରେ । ଏଣେ ଈଶ୍ୱରଙ୍କ ଅବତାର, ତାଙ୍କ ସାଙ୍ଗକୁ ବହୁ ଦେବଦେବୀଙ୍କ ଆବିର୍ଭାବ, ସେମାନଙ୍କ ପ୍ରତି ଭକ୍ତି, ପୂଜା ପ୍ରାର୍ଥନା ଓ ଭୟର ପ୍ରଚାର ଦ୍ୱାରା ପ୍ରତ୍ୟେକ କ୍ଷେତ୍ରରେ ଧର୍ମ ମଣିଷର ଦ୍ୱିତୀୟ ଜୀବନରେ ପରିଣତ ହୋଇଛି । ତା ମଣିଷର ସେହି କାଳ୍ପନିକ ଜୀବନ ଲାଗି, ତାର ବାସ୍ତବ ଜୀବନକୁ ବଳି ଦିଏ । କାଳ୍ପନିକ ଜୀବନର ମୁକ୍ତି ଖୋଜେ । ସେଇ ପ୍ରକ୍ରିୟା ଭିତରେ ଗୀତା ଏକ ଅଦ୍ୱିତୀୟ ସୃଷ୍ଟି । ତାହା ସମାଜର ସବୁ ଲୋକଙ୍କ ଲାଗି ମୁକ୍ତିର ମାର୍ଗକୁ ଏପରି ବହୁମୁଖୀ ଓ ଆକର୍ଷଣୀୟ କରି ଥୋଇଛି ଯେ, ତାକୁ ଏଡ଼ିଦେଇ ଯିବା ବଡ଼ ବଡ଼ ବିଜ୍ଞ ପଣ୍ଡିତ, ବୁଦ୍ଧିଜୀବୀଙ୍କ ପକ୍ଷରେ ମଧ୍ୟ ସମ୍ଭବ ନୁହେଁ । ସମସ୍ତେ କେବଳ ତାର ବ୍ୟାଖ୍ୟା ଓ ବିଶ୍ଳେଷଣ କରନ୍ତି ନିଜର ଆବଶ୍ୟକତା ଅନୁଯାୟୀ, କିନ୍ତୁ ତା କବଳରୁ ଖସିବା ତାଙ୍କ ପକ୍ଷରେ ସମ୍ଭବ ହୋଇନାହିଁ ।

ଗୀତା ଉପନିଷଦର ପୂର୍ବ ଓ ପରବର୍ତ୍ତୀ ଧାରଣାଗୁଡ଼ିକୁ ପରିବର୍ତ୍ତିତ ଓ ପ୍ରସାରିତ କରିଛି, ଏକ ନୂତନ ପଦ୍ଧତି ଭିତରେ । ତାହା ତାର ନିଜସ୍ୱ ରୂପରେ ପ୍ରକାଶ ପାଇଛି । ପୂର୍ବରୁ ଯେତେସବୁ ଅମେଳକ, ବିରୁଦ୍ଧାତ୍ମକ ଓ ବିଭ୍ରାନ୍ତିକର ବିଷୟ ଥିଲା, ସେସବୁକୁ ଏକାଠି ମିଶାଇ, ତାକୁ ଗୋଟାଏ କରି ଥୋଇଛି । ତାକୁ ଏପରି କରି ଗଢ଼ିଛି ଯେ ପ୍ରତ୍ୟେକ ବ୍ୟକ୍ତି, ଯିଏ ଯାହା ଚାହିଁବ, ତା' ସେ ସେଠି ପାଇପାରିବ । ଯୁଦ୍ଧ, ଶାନ୍ତି, ହିଂସା, ଅହିଂସା, ସାଧୁତା, ନିଷ୍ଠା, ପ୍ରତାରଣା, ଆସକ୍ତି ଅନାଶକ୍ତି, ସକାମ ନିଷ୍କାମ , ପ୍ରେମ ଓ ଘୃଣା ଆଦି ଯାବତୀୟ ବିଷୟ ରହିଛି ଗୀତାରେ । ସେହିସବୁ ଉକ୍ତି କେବଳ ଗୀତାରେ ପ୍ରତିଫଳିତ ନୁହେଁ, ତା ପ୍ରୟୋଗର ଯଥାର୍ଥତାରେ ମଧ୍ୟ ସେଠି ପରିକଳ୍ପିତ, — ଏକ କଳ୍ପିତ ବ୍ୟକ୍ତି ମଧ୍ୟରେ ତାହା ମୂର୍ତ୍ତିମନ୍ତ, — ଯିଏ କି ସର୍ବୋଚ୍ଚ ଦେବ ଭାବରେ ପ୍ରତିଷ୍ଠିତ । ଯେହେତୁ ଗୀତା ସମାଜର ସମସ୍ତ କାର୍ଯ୍ୟ ଓ ଭାବର ଯଥାର୍ଥତାକୁ ସ୍ୱୀକାର କରେ, ତେଣୁ ତା ସମସ୍ତ ସମାଜକୁ ବାନ୍ଧିରଖେ । ସମସ୍ତେ ତାରି ମାର୍ଗରେ ସେଇ ପରମ ଦେବଙ୍କ ଭିତରେ ନିଜ କାମନା ପୂରଣରେ ଅଗ୍ରସର ହୁଅନ୍ତି । ଗଣଗୋଷ୍ଠୀ ସାମଜର ପତନ ପରେ ଅସାମ୍ୟର ଆବିର୍ଭାବରେ ଗୀତାହିଁ ହୋଇଛି ସେହି ଶ୍ରେଣୀ-ବିଭକ୍ତ ସମାଜ ରକ୍ଷାର ଅମୋଘ ଅସ୍ତ୍ର । ଗୀତାରେ ଯେଉଁ

ଆଦର୍ଶ ପୁରୁଷ ''ସ୍ଥିତପ୍ରଜ୍ଞ''ଙ୍କ ବର୍ଣ୍ଣନା ରହିଛି, ସେ ମଧ୍ୟ ସେ ସମାଜରୁ ବହିର୍ଭୂତ ନୁହନ୍ତି । ତାହା ହେବ ସେଇ ସମାଜର ପରିସର ଭିତରେ ଚାତୁର୍ବର୍ଣ୍ଣ୍ୟ ଭିତ୍ତିରେ । ଅର୍ଥାତ୍ ଗୀତାକୁ ଯିଏ ଯେଝା ଭାବରେ ବୁଝି ଯେପରି ଚାଲିପାରେ, ଏକମାତ୍ର ସର୍ତ୍ତ ହେଲା ଜାତିଭେଦ, ଚାତୁର୍ବର୍ଣ୍ଣ୍ୟକୁ ଅନୁସରଣ କରିବା । ଏପରିକି, ମୁଁ ମରିବି ପଛେ ଜାତି-କର୍ମ କରିବି ନାହିଁ କହି ଜଣେ ତାକୁ ଏଡ଼ିଦେଇ ନ ପାରେ, ଯେହେତୁ ତାହା ମିଥ୍ୟା । ଅର୍ଜୁନର କ୍ଷତ୍ରିୟ ଜାତି — ପ୍ରକୃତି ତାକୁ ଯୁଦ୍ଧକୁ ଠେଲିଦିଏ, — 'ପ୍ରକୃତିସ୍ତ୍ୱାଂ ନିଯୋକ୍ଷ୍ୟତି' (୧୮.୧୯), ଜାତି କର୍ମକୁ ନ ମାନିବା ଛଡ଼ା ତମର ଗତି ନାହିଁ ଅର୍ଥାତ୍ ଶ୍ରେଣୀ ସମାଜର ଅକାଟ୍ୟ ସିଦ୍ଧାନ୍ତକୁ ମାନିବା । ଧର୍ମ ଦୃଷ୍ଟିରୁ ବ୍ରାହ୍ମଣଙ୍କ ଆଜ୍ଞାକୁ ଶିରୋଧାର୍ଯ୍ୟ କରି ଚାଲିବା ।

ତେଣୁ ଗୀତାର ମାର୍ଗ ସାମ୍ୟ ମୈତ୍ରୀ ପ୍ରୀତିର କବର ଉପରେ ପ୍ରତିଷ୍ଠିତ । ଗୀତା ସମସ୍ତଙ୍କୁ, ଏପରିକି ଭୌତିକବାଦୀ ସାଂଖ୍ୟକୁ ମଧ୍ୟ ନିଜର ଅନ୍ତର୍ଭୁକ୍ତ କରିଛି । କୃଷ୍ଣ କହିଛନ୍ତି, — ମୁଁ 'ସିଦ୍ଧ'ମାନଙ୍କ ମଧ୍ୟରେ କପିଳ ମୁନି, (''ସିଦ୍ଧାନାଂ କପିଳୋ ମୁନିଃ''। (୧୦.୨୬ ଗୀତା) କପିଳଙ୍କ ସାଂଖ୍ୟର ଭୌତିକବାଦିତାକୁ ଗ୍ରାସ କରିବା ହେଲା ଗୀତାର ଉଦ୍ଦେଶ୍ୟ ।

କିନ୍ତୁ ସ୍ପର୍ଶ କରିପାରି ନାହିଁ କେବଳ ଜଗନ୍ନାଥଙ୍କୁ । ଯୁକ୍ତି ଉଠିପାରେ ସେତେବେଳେ ଜଗନ୍ନାଥଙ୍କର ଜନ୍ମ ନାହିଁ, କିନ୍ତୁ କଥାଟା ତା ନୁହେଁ, ସମ୍ପୂର୍ଣ୍ଣ ଓଲଟା । ଗୀତାର ବହୁ ଆଗରୁ ଜଗନ୍ନାଥ-ଭାବର ସେଇ ସାମ୍ୟ-ମୈତ୍ରୀ-ପ୍ରୀତି ସମାଜର ଜନ୍ମ । ଆଉ ଠିକ୍ ସେଇ ସାମ୍ୟ-ମୈତ୍ରୀ-ପ୍ରୀତି ସମାଜର ବିନାଶ ଲାଗି କୃଷ୍ଣଙ୍କର ଆହ୍ୱାନ । ସେଇ ଅସାମ୍ୟକୁ ସ୍ଥାୟୀ ଓ ସୁଦୃଢ଼ କରିବା ଲାଗି କୃଷ୍ଣଙ୍କର ଉପଦେଶ । ଗୀତାର ସେଇ ଆହ୍ୱାନ ଜଗନ୍ନାଥ ଭାବର ସତ୍ୟତା, ସେଇ ଭାବର ଅନ୍ତର୍ନିହିତ ଶକ୍ତିର ଅପରିହାର୍ଯ୍ୟ ଉତ୍କର୍ଷକୁ ପ୍ରତିପାଦିତ କରେ । ତେଣୁ କେବଳ ଜଗନ୍ନାଥ-ଭାବ ଛାଡ଼ି ପ୍ରତ୍ୟେକ ମନୀଷୀ ତାଙ୍କର ମତକୁ ଗୀତାରେ ଭେଟନ୍ତି । ଶଙ୍କର ଦେଖନ୍ତି ଜ୍ଞାନ ଓ ସନ୍ୟାସକୁ । ଚୈତନ୍ୟ ଦେଖନ୍ତି ଭକ୍ତି ଓ ପ୍ରେମକୁ । ବିବେକାନନ୍ଦଙ୍କ ପାଇଁ ଗୀତା ହେଲା ସବୁ ଶକ୍ତିର ଉତ୍ସ । ତିଳକ ଆବିଷ୍କାର କରନ୍ତି କର୍ମଯୋଗ ଓ ଯେସାକୁ ତେସା ନୀତି (ବ୍ରିଟିଶ ବିରୋଧରେ) । ବ୍ରିଟିଶମାନେ ମଧ୍ୟ ଗୀତାକୁ ଦର୍ଶାଇ କହନ୍ତି ଭାରତୀୟମାନେ ରାଜନୈତିକ କ୍ଷମତା ପାଇବାପାଇଁ ଅଯୋଗ୍ୟ, ଯେହେତୁ ସେମାନେ ଅତ୍ୟଧିକ ଆଧ୍ୟାତ୍ମିକ । ଗାନ୍ଧୀଙ୍କ ଲାଗି ଗୀତା କେବଳ ଜୀବନର ଦର୍ଶନ ନୁହେଁ, ବ୍ରିଟିଶ ବିରୋଧରେ ସଂଗ୍ରାମର ଏକ ଅସ୍ତ୍ର, ସତ୍ୟ ଅହିଂସାର ଆଧାର, 'ସୈତାନ' ବିରୋଧରେ ପ୍ରତିରୋଧର ଆହ୍ୱାନ । ସେଇଠି ସହିଂସ ବିପ୍ଳବୀ ଖୁଦିରାମ ଗୀତା ହାତରେ ଧରି ଫାସି ଖୁଣ୍ଟରେ ଝୁଲିଛନ୍ତି । ଏକାଦିନକେ ରାମପ୍ରସାଦ ବିସମିଲ ଓ ଆସଫ କୁଲା, ଜଣେ ଗୀତା ଓ ଅନ୍ୟ ଜଣେ କୋରାନ ଧରି ଫାଶି ମଞ୍ଚ ଆରୋହଣ କରନ୍ତି । ସେହି ଗୀତା ସ୍ୱାଧୀନତା ପରେ ଏବେ ସାମ୍ପ୍ରଦାୟିକତାବାଦୀଙ୍କ ହାତରେ ଏକ ପ୍ରଧାନ ହତିଆର । ଆର୍. ଏସ୍. ଏସ୍ ଗୋଲୱାଲକର, ଦେଓରସ, ହିନ୍ଦୁ ମହାସଭା ପ୍ରଭୃତିଙ୍କ ଲାଗି ତାହା ହୋଇଛି ଖାଣ୍ଟି ଭାରତୀୟତାର ପ୍ରମାଣ ଏବଂ ମୁସଲମାନ ବିଦ୍ୱେଷର ଆଧାର । ଆଉ ରଜନୀଶ ଓ କୃଷ୍ଣ ଚେତନାମାନେ ଗୀତାରେ ଦେଖନ୍ତି ଅବାଧ ପ୍ରେମ ଓ ସମ୍ମତିର ଭାବ (PERMISSIVE-NESS) ! ଆଉ ଠିକ୍ ତାହାହିଁ ହୋଇଛି ଗୀତାର ବାଣୀ, — ''ଯିଏ ମତେ ଯେମିତି

ଭଜେ, ସିଏ ସେମିତି ପାଏ । '' ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂ ସ୍ତଥୈବ ଭଜାମ୍ୟହଂ'' ! (୪.୧୧ ଗୀତା)

ଗୀତା ହେଲା ଅସାମ୍ୟ, ଉତ୍ପୀଡ଼ିତ ସମାଜର ଶାସ୍ତ୍ରୀୟ ଚରିତ୍ର । ଧର୍ମର ଦ୍ୱାହି ଦେଇ ସବୁ ଅସାମ୍ୟ, ଭେଦାଭେଦର ଅନୁସରଣ, ସାଧାରଣ ଶାସକ ଶ୍ରେଣୀର ତତ୍ତ୍ୱର ପ୍ରତିଫଳନ । ତାହା ସବୁ ଦୋମୁହାଁ ନୀତି, ଦୋମୁହାଁ କଥା ଓ ଦୋମୁହାଁ କାମକୁ ଏକମୁହାଁ ଆଦର୍ଶ ଭାବେ ଟେକି ଧରେ ।

ତାହା ଅହିଂସାର ଗୁଣଗାନ କରେ, କିନ୍ତୁ କାର୍ଯ୍ୟ ହୁଏ ଘୋର ଭୟାବହ ହିଂସାତ୍ମକ ଯୁଦ୍ଧ । ସେ ଦିଗରେ ନିବୃତ୍ତ ଅର୍ଜୁନଙ୍କୁ ପ୍ରବୃତ୍ତ କରିବା ଲାଗି ଲାଭ, ଲୋଭ, ଭୟ, ଭକ୍ତି ଶାସ୍ତି ଆଦି ସକଳ ଅସ୍ତ୍ରର ପ୍ରୟୋଗ । ତାହା ନିଷ୍କାମ କର୍ମର ପ୍ରଚାରକ, କିନ୍ତୁ ଜିତିଲେ ରାଜ୍ୟପ୍ରାପ୍ତି, ମଲେ ସ୍ୱର୍ଗପ୍ରାପ୍ତି, ଠିକ୍ ସେଇ କାମନାର ପୂରଣ ଲାଗି । କୁହାଯାଏ, ଈଶ୍ୱର ନିରାକାର, ନିର୍ଗୁଣ, କିନ୍ତୁ ସେଠି ଭଗବାନ ସମସ୍ତ କୁଗୁଣ ଓ ଦୁର୍ଗୁଣକୁ ଧରି ନିଜେ ମାନବ ରୂପେ ଉପସ୍ଥିତ । କୁହାଯାଏ ମୃତ୍ୟୁର ବାସ୍ତବତା ନାହିଁ, ଯେହେତୁ ଆତ୍ମା ଅମର । ଅଥଚ ପୁରୁଣା ଲୁଗା ବଦଳିଲା ଭଳି ଦେହକୁ ବଦଳା ଯାଏ । ଭଗବାନ ଯିଏ ସର୍ବଶ୍ରେଷ୍ଠ ପୁରୁଷ, — ଭଲ ମନ୍ଦ, ସୁଖ ଦୁଃଖ ଆଦିର ଉର୍ଦ୍ଧ୍ୱରେ ଥିବା ସ୍ଥିତପ୍ରଜ୍ଞର ଗୁଣଗାନ କରନ୍ତି, ସେ ପୁଣି ଅର୍ଜୁନଙ୍କୁ ଶିକ୍ଷା ଦିଅନ୍ତି ଯୁଦ୍ଧରେ ଭାଇ ବନ୍ଧୁଙ୍କୁ ହତ୍ୟା କରିବା ଲାଗି । ସେ ସବୁଥିରେ ବିଫଳ ହେବାରେ ଶେଷରେ ନିଜର ବିଶ୍ୱ (ଆସୁରିକ) ରୂପକୁ ଦେଖାନ୍ତି । ଅର୍ଜୁନ ଦେଖନ୍ତି ଏକ ବିରାଟ ବିକଟାଳ ପୁରୁଷ, ସହସ୍ର ମୁଖରେ ଦୁଇ ପକ୍ଷର ଯୋଦ୍ଧାଙ୍କୁ ଗିଳିବାରେ ଲାଗିଛି । ତାର ଅର୍ଥ ହେଲା ମୁଁ ସମସ୍ତଙ୍କୁ ମାରି ସାରିଲିଣି, ତୁ କେବଳ ନିମିତ୍ତ ମାତ୍ର ହୋଇ ରାଜ୍ୟ, ଧନ, ବିଭବ ଲାଭ କର । ଅର୍ଜୁନ ବିଶ୍ୱରୂପ ପ୍ରଦର୍ଶନରେ ଭୟବିହ୍ୱଳ ହୋଇ ଶେଷରେ ଯୁଦ୍ଧକୁ ରାଜି ହୁଅନ୍ତି ଏବଂ କୃଷ୍ଣ ମାରି ସାରିଥିବା ଲୋକଙ୍କୁ ପୁଣି ମାରି ବୀର ବୋଲାନ୍ତି ।

ଗୀତାରେ ଯଜ୍ଞକୁ ନ୍ୟୁନ କରାଯାଇଛି । ତେଣେ କୁହାଯାଇଛି ଯଜ୍ଞ ବର୍ଷା ଆଣେ, ଖାଦ୍ୟ ସୃଷ୍ଟି କରେ, ଜୀବନ ରଖେ । ଯଜ୍ଞକୁ ନ୍ୟୁନ କରିବାର କାରଣ ହେଲା, ଯଜ୍ଞଦ୍ୱାରା ଫଳ ପ୍ରାପ୍ତିର ଧାରଣାକୁ ଯଦି ସ୍ୱୀକାର କରାଯାଏ, ତେବେ ସେଠି ଈଶ୍ୱରଙ୍କ ପ୍ରୟୋଜନ କେଉଁଠି ? ଗୀତା ତାକୁ କିପରି ବା ଗ୍ରହଣ କରିପାରେ ? ଠିକ୍ ତାହାହିଁ ତ ହେଲା ପୂର୍ବମୀମାଂସା ଓ ଉତ୍ତରମୀମାଂସା ଭିତରେ ଦ୍ୱନ୍ଦ୍ୱର କାରଣ । ତେଣେ ଯଜ୍ଞକଥା ନ କହିଲେ ତାକୁ ବିଶ୍ୱାସ କରୁଥିବା ଲୋକେ ପୁଣି ଗୀତାକୁ ବିଶ୍ୱାସ କରିବେ ବା କିମିତି ?

ଗୀତା ପ୍ରକୃତରେ କୁରୁକ୍ଷେତ୍ର ଯୁଦ୍ଧରେ ଅର୍ଜୁନଙ୍କ ଲାଗି ଉଦ୍ଦିଷ୍ଟ ନୁହେଁ । ତାହା ପ୍ରକୃତରେ ବ୍ୟକ୍ତିଗତ ସମ୍ପତ୍ତିର ଉଦ୍ଭବ ଓ ତାର ଭବିଷ୍ୟତର ସୁରକ୍ଷା ଲାଗି ଅଭିପ୍ରେତ, ଶ୍ରେଣୀ ସମାଜ ପ୍ରାଇଁ ଉଦ୍ଦିଷ୍ଟ । ଯୁଦ୍ଧର ଠିକ୍ ପୂର୍ବକ୍ଷଣରେ, କୌଣସି ଲୋକ ପକ୍ଷରେ ଯେତେ ମହାନ ହେଲେ ବି ଗୀତାର ଗୂଢ଼ ଉପଦେଶରୁ କାଣିଚାଏ ସୁଦ୍ଧା ବୁଝିବା ସମ୍ଭବ ନୁହେଁ । ସେହି ଉପଦେଶର ଏକମାତ୍ର ମର୍ମ୍ମ ହେଉଛି ''ଯଦି କର୍ତ୍ତବ୍ୟ କହେ, ତେବେ ନିର୍ବିକାର ଚିତ୍ତରେ ତମର ଭାଇ

ବନ୍ଧୁଙ୍କୁ ହତ୍ୟା କର । ଯେପର୍ଯ୍ୟନ୍ତ ମୋ ଉପରେ ବିଶ୍ୱାସ ରହିଛି, ସେତେବେଳେ କୌଣସି ପାପ ତୁମକୁ ସ୍ପର୍ଶ କରିବ ନାହିଁ ।'' ଅର୍ଥାତ୍ ମୋତେ ବିଶ୍ୱାସ କଲେ ସବୁ ଦୋଷ ମାଫ୍ ।

ଅତଏବ ଏବେ ରାଜଗାଦି ଓ ସମ୍ପତ୍ତି ଲାଗି ଭାଇ ଭାଇକୁ, ପୁତ୍ର ପିତାକୁ ମଧ୍ୟ ବିନା ଦ୍ୱିଧାରେ ହତ୍ୟା କରିପାରେ । ଏହାହିଁ ଐଶ୍ୱରିକ ଇଙ୍ଗିତ । ଇନ୍ଦ୍ର ତାଙ୍କ ପିତାଙ୍କ ଗୋଡ଼ ଧରି ପିଟି ପିଟି ହତ୍ୟା କରିବାରେ ବ୍ରାହ୍ମଣ ବାମଦେବଙ୍କର ପ୍ରଶଂସାର ପାତ୍ର ହୋଇଛନ୍ତି । (ଋକ୍‌ବେଦ ୪. ୧୮. ୧୨.) ସେମିତି ମଗଧରାଜା ଅଜାତଶତ୍ରୁ ତାଙ୍କ ପିତା ବିମ୍ବିସାରଙ୍କୁ ବନ୍ଦୀ କରି ହତ୍ୟା କରିବାରେ ବୌଦ୍ଧ, ଜୈନ ଏବଂ ବାଦରାୟଣଙ୍କ ଉପନିଷଦ (୨.୧) ତାଙ୍କର ପ୍ରଶଂସା କରିଥାଆନ୍ତି । ଖ୍ରୀ:ପୂ: ୪୬୧ରେ ଅଜାତଶତ୍ରୁଙ୍କ ପରେ ପାଞ୍ଚ ପୁରୁଷ ଧରି ପ୍ରତ୍ୟେକେ ନିଜ ନିଜର ପିତାଙ୍କୁ ହତ୍ୟାକରି ରାଜା ହୋଇଛନ୍ତି । କୃଷ୍ଣଙ୍କର କଂସ ବଧର ମୂଳରେ ରହିଛି ସେହି ସମ୍ପତ୍ତିର ମୋହ । କାରଣ, ମାତୃପ୍ରଧାନ ସମାଜରେ ପିତାର ପୁତ୍ର ନୁହେଁ, ଭଉଣୀର ପୁତ୍ର କେବଳ ସମ୍ପତ୍ତିର ଉତ୍ତରାଧିକାରୀ । ସେଥିପାଇଁ କଂସ ମାମୁଁ ଭଣଜା କୃଷ୍ଣଙ୍କୁ ମୂଳରୁ ମାରିବାକୁ ବସିଲାବେଳେ, ଶେଷରେ କୃଷ୍ଣ ତାଙ୍କୁ ନିଜେ ମାରିଛନ୍ତି ।

କୌଣସି ଯୁଦ୍ଧରେ ସତ୍ୟ, ନିଷ୍ଠା ସାଧୁତାର ପ୍ରଶ୍ନ ନାହିଁ । ତାହା ଘୋର ଅନ୍ୟାୟ, ଅନୀତି, ମିଥ୍ୟା, ପ୍ରତାରଣାରେ ପୂର୍ଣ୍ଣ । ତାର ମୁଖ୍ୟ କର୍ତ୍ତା ହେଉଛନ୍ତି ସେହି ଗୀତାର ପ୍ରବକ୍ତା କୃଷ୍ଣ ଭଗବାନ । ଶିଖଣ୍ଡୀକୁ ଆଗରେ ରଖି ଭୀଷ୍ମଙ୍କୁ ମାରିବା । ମିଥ୍ୟା ପ୍ରଚାର ଦ୍ୱାରା ଦ୍ରୋଣଙ୍କୁ ଅସ୍ତ୍ରତ୍ୟାଗ କରାଇ ତାଙ୍କୁ ମରାଇବା । ରଥ ଟେକୁଥିବା ନିରସ୍ତ୍ର କର୍ଣ୍ଣଙ୍କୁ ନୀତିହୀନଭାବେ ହତ୍ୟା କରିବା ଲାଗି କହିବା । ଅନ୍ୟାୟ ଯୁଦ୍ଧରେ ଦୁର୍ଯ୍ୟୋଧନଙ୍କ ଉରୁଭଙ୍ଗ ଆଦି ପ୍ରତ୍ୟେକଟି କଥା କୃଷ୍ଣଙ୍କ କୁମନ୍ତ୍ରଣା ଓ କୌଶଳ ଫଳରେ ହିଁ ସମ୍ଭବ ହୋଇଛି । ସେ ଶଲ୍ୟପର୍ବରେ ଅତି ରୋକ୍‌ଠୋକ୍ ଭାବରେ କହନ୍ତି ଯେ ଅନ୍ୟ କୌଣସି ଉପାୟରେ ସେମାନଙ୍କୁ ମାରି ହୁଅନ୍ତାନି, କେବେହେଲେ ବିଜୟ ସମ୍ଭବ ହୋଇନଥାନ୍ତା । ଗୀତାର ଉପଦେଶ ଯେଉଁ ସମାଜର ପଥପ୍ରଦର୍ଶକ, ସେହି ସମାଜରେ ଅଭିବୃଦ୍ଧି ଦିଗରେ ଗୀତାର ସେହି ଉପଦେଶକୁ ଐତିହାସିକ ଶାସନ ବିଧାନର ରୂପ ଦିଏ କୌଟିଲ୍ୟଙ୍କ ''ଅର୍ଥଶାସ୍ତ୍ର'' ସ୍ୱାଭାବିକ ନୀତି ଭାବରେ ।

ଏହିସବୁ କ'ଣ ସେହି ସାମ୍ୟ ମୈତ୍ରୀ ପ୍ରୀତି ସମାଜର ପରିପନ୍ଥୀ ନୁହେଁ ? ତାହା କ'ଣ ସେହି ସମାଜର ଧ୍ୱଂସକୁ ପ୍ରକାଶ କରେ ନାହିଁ ? ଜଗନ୍ନାଥ-ଭାବ ବଳବତ୍ତର ଥିବା ପର୍ଯ୍ୟନ୍ତ ତାହା କଣ କେବେ ସମ୍ଭବ ହୋଇଥାଆନ୍ତା ? ସେହିପରି ଅନ୍ୟ ଦିଗରେ ଗୀତାର ସେଇ ବାଣୀ ବଳବତ୍ତର ଥିବାଯାଏ, ତାର ସେଇ ଉପଦେଶ ଓ ଆଦର୍ଶ ଅନୁଯାୟୀ ସମାଜ ତାର ନୀତି ନିୟନ୍ତ୍ରିତ ହେଉଥିବା ପର୍ଯ୍ୟନ୍ତ ଜଗନ୍ନାଥ-ଭାବର ପ୍ରକୃତ ପ୍ରତିଷ୍ଠା କ'ଣ କେବେହେଲେ ସମ୍ଭବ ହୋଇପାରେ ?

ଭୌତିକ ବାସ୍ତବତାକୁ ମଣିଷ ଆଗରୁ ଥରେ ପୋଛିଦେଲା ପରେ ବା ମଣିଷ ବାସ୍ତବତା ପ୍ରତି ଆଖି ବୁଜିହେଲେ, ତେଣିକି ତା ଆଗରେ ସବୁ ବାସ୍ତବତା ମାୟା, ମାୟା ବାସ୍ତବତାର ରୂପ ନେଇ ଠିଆ ହୁଏ । ମାର୍କସ୍‌ଙ୍କ ଭାଷାରେ ତାହା ସୃଷ୍ଟି କରେ ''ବିପରୀତ ବିଶ୍ୱଚେତନା'' (inverted consciousness) ତା କିପରି ସୃଷ୍ଟି ହୁଏ, ଏବଂ କି ଭୟଙ୍କର ଅବସ୍ଥା

ସୃଷ୍ଟି କରେ, ତାକୁ ଯଦି କିଏ ଅତି ପ୍ରାଞ୍ଜଳ ଭାବେ ପ୍ରକାଶ କରିଥାଆନ୍ତି, ସେ ହେଲେ ବିଶ୍ୱକବି ରବୀନ୍ଦ୍ରନାଥ, ସେହି ଗୀତାର ଦୃଷ୍ଟାନ୍ତ ଦ୍ୱାରା ।

ତାହା ସେ ତାଙ୍କ 'ପାରସ୍ୟ ଯାତ୍ରା' ଚିଠିରେ ଲେଖିଛନ୍ତି । ଆକାଶରୁ ବୋମାବର୍ଷଣ ଲାଗି ଉଠୁଥିବା ବ୍ରିଟିଶ୍ ଉଡ଼ାଜାହାଜଙ୍କୁ ଲକ୍ଷ୍ୟ କରି ୧୯୩୨ରେ ସେ କହିଛନ୍ତି :— ବାୟୁତରୀ ଯେତେ ଉପରକୁ ଉଠିଲା, ଧରଣୀ ସହିତ ଆମ ପଞ୍ଚ ଇନ୍ଦ୍ରିୟଙ୍କର ସମ୍ପର୍କ ସେତେ କ୍ଷୀଣ ହୋଇ ଗୋଟିଏ ମାତ୍ର ଇନ୍ଦ୍ରିୟ, ଦର୍ଶନ ଇନ୍ଦ୍ରିୟରେ ଆସି ରହିଗଲା, ତାହା ମଧ ଘନିଷ୍ଠ ଭାବେ ନୁହେଁ । ନାନା ସାକ୍ଷ୍ୟର ମିଳନରେ ଯେଉଁ ପୃଥିବୀକୁ ବିଚିତ୍ର ଓ ନିଶ୍ଚିତ ଭାବେ ଜାଣିଥିଲୁ, ତାହା କ୍ରମେ କ୍ରମେ କ୍ଷୀଣ ହୋଇ ଯାହା ତିନି ଆୟତନର ବାସ୍ତବତା ଥିଲା, ତାହା ହେଲା ଦୁଇ ଆୟତନର ଛବି । ସଂହତ ଦେଶକାଳର ବିଶେଷ ବିଶେଷ ପରିସର ମଧରେ ହିଁ ସୃଷ୍ଟିର ବିଶେଷ ବିଶେଷ ରୂପ । ତାର ସୀମା ଯେତେ ଅନିର୍ଦ୍ଦିଷ୍ଟ ହୋଇଯାଏ, ସୃଷ୍ଟ ସେତିକି ଗତି କରେ ବିଲୟପ୍ରାପ୍ତି ଦିଗରେ । ସେହି ବିଲୟର ଭୂମିକା ମଧରେ ଦେଖାଗଲା ପୃଥିବୀକୁ, ତାର ସତ୍ତାହେଲା ଅସ୍ପଷ୍ଟ, ମନ ଉପରେ ତାର ଅସ୍ତିତ୍ୱର ଦାବୀ କମି କମି ଆସିଲା । ମନେହେଲେ ଏପରି ଅବସ୍ଥାରେ ଆକାଶ ଯାନରୁ ମଣିଷ ଯେତେବେଳେ ଶତଘ୍ନୀ ବର୍ଷଣ କରିବାକୁ ବାହାରେ (ଯେଉଁ ଅସ୍ତ୍ର ଶହେ ଜଣଙ୍କୁ ଏକାବେଳେକେ ମାରିପାରେ) ସେତେବେଳେ ସେ ନିର୍ମ୍ମମ ଭାବେ ଭୟଙ୍କର ହୋଇ ଉଠିପାରେ । ଯାନଯୋଗୁ ତାର ଅପରାଧର ବିଚାରବୋଧ ଉଦ୍ୟତ ବାହକକୁ ଦ୍ୱିଧାଗ୍ରସ୍ତ କରେ ନାହିଁ । କାରଣ ବିଚାରର ଶବ୍ଦଟା ଅଦୃଶ୍ୟ ହୋଇଯାଏ । ଯେଉଁ ବାସ୍ତବତା ଯୋଗୁଁ ମଣିଷର ସ୍ୱାଭାବିକ ମମତା, ତାହା ଯେତେବେଳେ ଝାପ୍‌ସା ହୋଇଆସେ, ସେତେବେଳେ ମମତାର ଆଧାର ମଧ ଲୁପ୍ତ ହୋଇଯାଏ । ଗୀତାରେ ପ୍ରଚାରିତ ତତ୍ତ୍ୱୋପଦେଶ ମଧ ଏହିପରି ଏକ ଉଡ଼ାଜାହାଜ । ଅର୍ଜ୍ଜୁନଙ୍କ କୃପାକାତର ମନକୁ ସେ ଏମିତି ଦୂରଲୋକକୁ ନେଇଗଲା, ଯେଉଁଠାରୁ ସେ ଦେଖିଲେ, ମାରେ ବା କିଏ, ମରେ ବା କିଏ ? କିଏ ବା ଆପଣାର, କିଏ ବା ପର ! ବାସ୍ତବତାକୁ ଆବୃତ କରିବାର ଏପରି ବହୁ ତତ୍ତ୍ୱ ନିର୍ମିତ ଉଡ଼ାଜାହାଜ ମଣିଷର ଅସ୍ତ୍ରାଗାରରେ ରହିଛି, ମଣିଷର ସାମ୍ରାଜ୍ୟ-ନୀତିରେ, ସମାଜ-ନୀତିରେ, ଧର୍ମ -ନୀତିରେ ସେହି ସ୍ଥାନରୁ ଯାହାଙ୍କ ଉପରେ ମରଣ ଅବତରଣ କରେ, ସେମାନଙ୍କ ସମ୍ବନ୍ଧରେ ସାନ୍ତ୍ୱନା ବାକ୍ୟଟି ହେଲା — ''ନ ହନ୍ୟତେ ହନ୍ୟମାନେ ଶରୀରେ ।'' (୧)

ଏଥିରେ ଗୀତାର ପ୍ରକୃତ ରୂପ, ତାର ଉଦ୍ଦେଶ୍ୟ ଓ ପରିଣତି ବେଶ୍ ପରିସ୍ଫୁଟ ହୋଇଉଠେ । ଗୀତାର ମୂଳଭିତ୍ତି ହେଲା ଚାତୁର୍ବର୍ଣ୍ଣ୍ୟ ଓ ଉପନିଷଦ । ତାହାହିଁ ତାର ନୀତିବୋଧ, କର୍ମ୍ମର ନିର୍ଦ୍ଦେଶ ଓ ଜୀବନର ଦର୍ଶନ । ଗୀତାର ସେହି ଉକ୍ତି ସମାଜର ବାସ୍ତବ ଆବଶ୍ୟକତାରୁ ଜାତ, ତାର ସେହି ଆବଶ୍ୟକତା ହେଲା ପୂର୍ବର ସାମ୍ୟ, ମୈତ୍ରୀ, ପ୍ରୀତି, ଜଗନ୍ନାଥ-ଭାବ (ସମାଜ)କୁ ମୂଳୋତ୍ପାଟନ କରିବା । ତେଣୁ ମଣିଷ ମା ପେଟରୁ ଅସାମ୍ୟ, ଅସ୍ପୃଶ୍ୟତା, ଘୃଣ୍ୟ ଭେଦାଭେଦ-ମାନବ ବିଦ୍ୱେଷ ଭାବକୁ ଧରି ଜନ୍ମ ହୁଏ । ତାହା ଜଗନ୍ନାଥ-

(୧) ରବୀନ୍ଦ୍ର ରଚନାବଳୀ, ଏକାଦଶ ଖଣ୍ଡ, ପୃ-୬୨୯

ଭାବର ନିଧନକୁ ସୁନିଶ୍ଚିତ କରେ, ଭବିଷ୍ୟତ ଲାଗି ଜଗନ୍ନାଥ-ଭାବର ପୁନର୍ଜନ୍ମର ପଥକୁ ଚିରଦିନ ଲାଗି ରୁଦ୍ଧ କରିଦିଏ ।

ଉପନିଷଦର ଗୂଢ଼ଜ୍ଞାନର ଦର୍ଶନରେ ମଣିଷ ବସ୍ତୁର ବାସ୍ତବତାକୁ ପ୍ରତ୍ୟାଖ୍ୟାନ କରେ, ପ୍ରକୃତିର ବାସ୍ତବତାକୁ ଅସ୍ୱୀକାର କରେ, ଇନ୍ଦ୍ରିୟ ଜ୍ଞାନର ବାସ୍ତବତାକୁ ଅଗ୍ରାହ୍ୟ କରେ । ତେଣୁ ବାସ୍ତବ ସତ୍ୟକୁ ପ୍ରକୃତ କାର୍ଯ୍ୟର ଅନୁଭୂତି ଦ୍ୱାରା ବିଚାର ନ କରି ଦେଖେ ମନର କଳ୍ପନା, ଧ୍ୟାନର ଧାରଣା ଜରିଆରେ । ତେଣୁ ବାସ୍ତବତା ମଣିଷର ଆଖି ଆଗରୁ ଦୂରେଇଯାଏ । ଫଳରେ ବାସ୍ତବ ଜୀବନରେ ସାମ୍ୟ, ମୈତ୍ରୀ, ପ୍ରୀତିର ସୁଖ ଓ ଲକ୍ଷ୍ୟ ପରିବର୍ତ୍ତେ ପରଜୀବନରେ କାଳ୍ପନିକ ମୋକ୍ଷର ଅଳୀକ ସୁଖ ହୁଏ ମଣିଷ ଜୀବନର ଅନ୍ତିମ ଲକ୍ଷ୍ୟ ।

ଗୀତାରେ ସେହି ଉକ୍ତି, ଜୀବନର ସେହି ମୂଲ୍ୟବୋଧ ଆଉ ମୋକ୍ଷର ସେହି ସୁଖ ପଛରେ ଧାଇଁ — ସେହି ଦିନୁ ମଣିଷ ଧରି ରହିଛି ଏଇ ଅସାମ୍ୟର ମୈତ୍ରୀହୀନ, ଅପ୍ରୀତିକର ଦୁର୍ଗତ ସମାଜକୁ ।



# ତ୍ରୟୋଦଶ ପର୍ବ

## ଭକ୍ତି : ଅନ୍ଧ ଆନୁଗତ୍ୟ

ଭକ୍ତର ଭଗବାନ । ଭଗବାନଙ୍କୁ ପାଇବାର ସହଜ ବାଟ ହେଉଛି ଭକ୍ତି । ଭକ୍ତି ହେଲା ପ୍ରେମ ଅନୁରକ୍ତି ସହକାରେ ବିନା ପ୍ରଶ୍ନ, ବିନା ସର୍ତ୍ତ, ବିନା ଦ୍ୱିଧାରେ ଓ ଭଗବାନଙ୍କ ନିକଟରେ ଆପଣାକୁ ସମର୍ପଣ କରିଦେବା । ସେଥିଲାଗି କୌଣସି ପୂଜା, ପାଠ, ଧ୍ୟାନ, ତପସ୍ୟା ଆଦି ଦରକାର ନାହିଁ । କାରଣ ଭକ୍ତି ଓ ଭଗବାନ, ଏ ଦୁହେଁ ଅବିଚ୍ଛିନ୍ନ । ଭଗବାନ ନ ଥାଇ ଭକ୍ତି ନାହିଁ, କି ଭକ୍ତି ନ ଥାଇ ଭଗବାନ ନାହାନ୍ତି, ଏକ ସଙ୍ଗରେ ଦୁହିଁଙ୍କର ଆବିର୍ଭାବ । ପୁଣି ତାଙ୍କୁ ଛାଡ଼ି ଧର୍ମ ନାହିଁ । ଭକ୍ତି ହେଲେ, ତେଣିକି ଆତ୍ମା, ବ୍ରହ୍ମ ଆଦି ଗୂଢ଼ଜ୍ଞାନର ପ୍ରୟୋଜନ ନାହିଁ । ତେଣୁ ଗୀତା କହେ, 'ଯେଉଁ ଜ୍ଞାନୀମାନେ ଅକ୍ଷରବ୍ରହ୍ମକୁ ଉପାସନା କରନ୍ତି, ସେମାନଙ୍କ ପକ୍ଷରେ ସିଦ୍ଧିଲାଭ କଷ୍ଟଦାୟକ । କିନ୍ତୁ ଯେଉଁମାନେ ମୋଠାରେ ଲୟ ଲଗାଇ ସର୍ବଦା ମୋ ଧ୍ୟାନରେ ରହନ୍ତି, ମତେ ଉପାସନା କରନ୍ତି, ମୋଠାରେ ସମର୍ପିତ ଚିତ୍ତ, ସେ ଭକ୍ତଙ୍କୁ ମୁଁ ଅବିଳମ୍ବେ ସଂସାର-ସାଗରରୁ ଉଦ୍ଧାର କରେ ।' (୧୨ ଅଧ୍ୟାୟ ଶ୍ଳୋକ ୫.୬.୭. ଗୀତା) ସେଥିଲାଗି ଭକ୍ତିର ସହ ପତ୍ର, ପୁଷ୍ପ, ଫଳ, ଏପରିକି ଜଳ ମଧ୍ୟ ଅର୍ପଣ କରିଦେଲେ ତାକୁ ଭଗବାନ ଖୁସିରେ ଗ୍ରହଣ କରନ୍ତି । କାରଣ ପରୀକ୍ଷା ଭକ୍ତିର, ଅର୍ପିତ ଜିନିଷର ନୁହେଁ । (୯ମ ଅଧ୍ୟାୟ ଶ୍ଳୋକ ୨୬ ଗୀତା)

ଏହି ଭକ୍ତିମାର୍ଗ ଦ୍ୱାରା ମୋକ୍ଷପ୍ରାପ୍ତି ଉପନିଷଦରେ ନାହିଁ । ଉପନିଷଦ ହେଲା ଜ୍ଞାନମାର୍ଗ । ଯେଉଁ ମାର୍ଗ କି ବୈଶ୍ୟ ଓ ଶୂଦ୍ରଙ୍କ ଲାଗି ନିଷିଦ୍ଧ । ନାରୀମାନଙ୍କୁ ମଧ୍ୟ ସେମାନଙ୍କ ସହିତ ସମାନ କରି ସେମାନଙ୍କୁ ପାପଯୋନୟ, ପାପଯୋନିରୁ ସମ୍ଭୂତବୋଲି କୁହାଯାଏ । କିନ୍ତୁ ସେଇମାନଙ୍କ ଲାଗି ଏବେ ମୋକ୍ଷର ଦ୍ୱାର ଉନ୍ମୁକ୍ତ ହୁଏ, — ଭକ୍ତି ମାର୍ଗରେ ।

ଉପନିଷଦ ଯୁଗରେ ଆସିଛି ଆତ୍ମା, ବ୍ରହ୍ମ, ମୋକ୍ଷ ଆଦି । ତା ପରବର୍ତ୍ତୀ ଯୁଗରେ ଆସିଛି ଭକ୍ତି । ଭକ୍ତି କିନ୍ତୁ କୌଣସି ବିମୂର୍ତ୍ତ ସତ୍ତା ବା ବ୍ରହ୍ମପ୍ରତି ସମ୍ଭବ ନୁହେଁ । ମଣିଷ ଶୂନ୍ୟକୁ ଭକ୍ତି କରିବ କିପରି ? ଭକ୍ତି ଲାଗି ମୂର୍ତ୍ତିମନ୍ତ ରୂପ ଦରକାର । ତେଣୁ ଅବତାରର କଳ୍ପନା । ଏକ ''ପ୍ରତ୍ୟେକ୍ଷ ଦେବତା'', ଯାହାକୁ ମଣିଷ ଦେଖିପାରେ, ବୁଝିପାରେ, ସ୍ପର୍ଶ କରିପାରେ, — ମାନବରୂପୀ ଭଗବାନ ।

ସେହି ସାମାଜିକ ଅବସ୍ଥାରୁ ଯେପରି କେହି ଖସି ନ ପାରନ୍ତି । ତେଣୁ ସବୁ ଅମେଳ ମତକୁ ମେଳ, ସବୁ ଉନ୍ମୁକ୍ତ ଦ୍ୱାରକୁ ରୁଦ୍ଧ, ସବୁ ଅକାଟ୍ୟ ଯୁକ୍ତିକୁ ଅସୀମ ଭକ୍ତି ଦ୍ୱାରା ଆୟତ୍ତ ଓ ସମାଧାନ କରିବାର ଚେଷ୍ଟା ହୋଇଛି । ଆଗରୁ କୁହାଯାଇଛିଯେ ଋଷି ବୃହସ୍ପତିଙ୍କ ମତ- ବାର୍ହସ୍ପତ୍ୟ — ଏକ ଭୌତିକବାଦୀ ମତ । କିନ୍ତୁ ଗୀତାରେ କୃଷ୍ଣ କହନ୍ତି, ପୁରୋହିତମାନଙ୍କ ମଧ୍ୟରେ ମୁଁ ପୁରୋଧା ''ବୃହସ୍ପତି'' (୧୦.୨୪) ସେମିତି ସାଂଖ୍ୟ ହେଲା ସର୍ବପ୍ରାଚୀନ ଭୌତିକବାଦୀ ମତ, ସେଠି ଈଶ୍ୱରଙ୍କ ପ୍ରଶ୍ନ ନାହିଁ । କିନ୍ତୁ କୁହାଯାଏ ''ସିଦ୍ଧାନାଂ କପିଳୋ ମୁନିଃ'' (୧୦.୨୬) ସିଦ୍ଧ ପୁରୁଷମାନଙ୍କ ଭିତରେ ମୁଁ କପିଳମୁନି । ତା ମାନେ ସବୁ ଶ୍ରେଷ୍ଠମାନଙ୍କ ମଧ୍ୟରେ ମୁ ହେଉଛି ସର୍ବଶ୍ରେଷ୍ଠ । ଗୀତା କାହାରି ଶ୍ରେଷ୍ଠତ୍ୱକୁ ପ୍ରଶ୍ନ ବା ଖଣ୍ଡନ କରେ ନାହିଁ । ସେ ସମସ୍ତଙ୍କୁ ସ୍ୱୀକାର କରେ । ସ୍ୱୀକାର କରିବା ସହିତ କହେ ମୁଁ (ଭଗବାନ) ହେଉଛି ସର୍ବଶ୍ରେଷ୍ଠ, ସର୍ବପ୍ରଧାନ । ତେଣୁ ''ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ'' (୧୮.୬୬) ''ସବୁ ଧର୍ମ, ପୂଜାପାଠ, ବିଧିବିଧାନ ଛାଡ଼ି ମୋର ଶରଣାପନ୍ନ ହୁଅ । ମୁଁ ତୁମକୁ ସବୁ ପାପରୁ ମୁକ୍ତ କରିବି, ''ଭୟ କର ନାହିଁ ।''

ଏହି ପାପ ଓ ଭକ୍ତି ଯେପରି କୌଣସି ବୈଦିକ ଧାରଣା ନୁହେଁ , ସେହିପରି ବୈଦିକ ନୁହେଁ, — ଈଶ୍ୱର ବା ଅବତାରର ଧାରଣା, ଅର୍ଥାତ୍ ପରମାତ୍ମାର ଧାରଣା । ବୈଦିକ ଯୁଗରେ ଇନ୍ଦ୍ରଙ୍କର କୌଣସି କୁକର୍ମ ପାପ ନୁହେଁ । ଇନ୍ଦ୍ର ଯେତେ ଶକ୍ତିଶାଳୀ ହେଲେ ବି କେବେହେଲେ ପରମତ୍ୱ ଦାବୀ କରନ୍ତି ନାହିଁ । ତାହା ବୈଦିକ ଐତିହ୍ୟର ବିରୋଧୀ, କାରଣ ସେମାନେ ସବୁ ବୈଦିକ ସୂକ୍ତରେ ଆବଦ୍ଧ । ସେମିତି ଯଜ୍ଞବିଧାନ ଦ୍ୱାରା ତାହା ବନ୍ଧା, ଯାହାର ବ୍ୟତିକ୍ରମ ନାହିଁ । ଇନ୍ଦ୍ର ସବୁଠୁ ଶ୍ରେଷ୍ଠ ଦେବ ହେଲେ ବି ସେ ଲୋକଙ୍କ ସହିତ ମିଶୁଥିଲେ, ତାଙ୍କ ଭୋଜି ଭାତରେ ବସୁଥିଲେ, ସଭା ସମିତିରେ ଯୋଗ ଦେଉଥିଲେ, ମଦ୍ୟ ବି ପାନ କରୁଥିଲେ । ବୌଦ୍ଧମତ ଆବିର୍ଭାବରେ ଯଜ୍ଞ ଅସ୍ୱୀକୃତ ହେଲା, ଇନ୍ଦ୍ରଙ୍କର ଗୌରବ ହ୍ରାସ ପାଇଲା । ତା ସହିତ ଦେଖାଦେଲା ନୂତନ ନୀତିବୋଧ ଆଉ ସାମାଜିକ ନ୍ୟାୟ । ଏହାର କାରଣ ଇନ୍ଦ୍ର ଥିଲେ ପଶୁଚାରଣ ବ୍ୟବସ୍ଥା ସହିତ ଅବିଚ୍ଛେଦ୍ୟ ଭାବେ ସମ୍ପୃକ୍ତ । ସେ ଯୁଗର ଉତ୍ପାଦନପ୍ରଣାଳୀ ଲୋପ ପାଇବାରେ ଇନ୍ଦ୍ରଙ୍କର ମହତ୍ତ୍ୱର ବିଲୋପ ସ୍ୱାଭାବିକ ।

ସାଧାରଣତଃ ଲୋକେ ଜଗନ୍ନାଥଙ୍କଠାରେ କୃଷ୍ଣଙ୍କୁ ଦେଖନ୍ତି । କୃଷ୍ଣଙ୍କ ଜନ୍ମଠାରୁ ତାଙ୍କ ଜୀବନର ବିଭିନ୍ନ ଲୀଳା ଜଗନ୍ନାଥଙ୍କଠାରେ ପାଳିତ ହୋଇଥାଏ । ତାହା ନିଶ୍ଚିତଭାବେ ବୈଷ୍ଣବ ଧର୍ମର ପ୍ରଭାବ ଯୋଗୁ । କୃଷ୍ଣ କିନ୍ତୁ ଜଣେ ନୁହନ୍ତି, ଏକାଧିକ

କୃଷ୍ଣ ଅଛନ୍ତି । ପ୍ରଥମେ ଐତିହାସିକ କୃଷ୍ଣଙ୍କର ଉଲ୍ଲେଖ ରହିଛି ଋଗ୍‌ବେଦରେ । ତାହା ହେଲା କୃଷ୍ଣ ଓ ଇନ୍ଦ୍ରଙ୍କ ମଧ୍ୟରେ ସଂଘର୍ଷ, ଅନାର୍ଯ୍ୟ କୃଷ୍ଣ (କଳା)ଙ୍କ ସହ ଆର୍ଯ୍ୟ ଆକ୍ରମଣକାରୀ ଇନ୍ଦ୍ରଙ୍କର ଅଂଶୁମତୀ ନଦୀ ତୀରରେ ଯୁଦ୍ଧର ବର୍ଣ୍ଣନା । (ଋଗ୍‌ବେଦ ୮/୯୬/୧୩.୧୪.୧୫) ସେଇ ଯୁଦ୍ଧରେ ଅନାର୍ଯ୍ୟ କୃଷ୍ଣ ଓ ତାଙ୍କ ସୈନ୍ୟଙ୍କର ବିନାଶ ଘଟେ । କୌଣସି କଳା ଚମଡ଼ା ଗୋଟାଏ ପ୍ରତିବନ୍ଧକ ନୁହେଁ । ଜଣେ ବୈଦିକ ଋଷି ଭାବରେ ଜଣେ କୃଷ୍ଣ ଅଙ୍ଗିରସ୍‌ଙ୍କ ପରିଚୟ ମିଳେ । ସେତେବେଳେ ଯଦୁ ବୋଲି ଏକ ବୈଦିକ ଟ୍ରାଇବ୍ ଅଛନ୍ତି, କିନ୍ତୁ ତାଙ୍କ ସହିତ କୃଷ୍ଣଙ୍କର କୌଣସି ସମ୍ବନ୍ଧ ଥିଲା ବୋଲି ବୋଧହୁଏ ନାହିଁ । ପୁଣି ଦେବକୀ ପୁତ୍ର କୃଷ୍ଣଙ୍କର ଉଲ୍ଲେଖ ଛାନ୍ଦୋଗ୍ୟ ଉପନିଷଦ (୩.୧୫୭, ୧.୭)ରେ ଦେଖାଯାଏ । ସେ କୃଷ୍ଣଙ୍କୁ ଶିକ୍ଷା ଦେଇଥିଲେ ଘୋର ଅଙ୍ଗିରସ୍ । ପୁଣି ଜଣେ କୃଷ୍ଣଙ୍କ ଗୁରୁ ହେଲେ ଦୁର୍ବାସା । କଂସକୁ ମାରିବା ଏବଂ କାଳିୟନାଗକୁ ଯମୁନାରେ ମାରିଥିବା କୃଷ୍ଣ ଜଣେ କି ନୁହେଁ, ସନ୍ଦେହଜନକ । ଆଲେକଜାଣ୍ଡର ଭାରତ ଆକ୍ରମଣ କାଳରେ କୃଷ୍ଣଙ୍କୁ ଦେଖିଥିଲେ ତାଙ୍କ ନିଜର ହେରାକ୍ଲେସଙ୍କ ସହ ସମାନ ଭାବରେ । ପୁଣି ଭାରତୀୟ ଐତିହ୍ୟ ଅନୁସାରେ ଭଗବାନଙ୍କ କୌଣସି ଅବତାରକୁ କେହି କେବେ ହତ୍ୟା କରିବାର ଜଣା ନାହିଁ । ଜରା କିନ୍ତୁ କୃଷ୍ଣଙ୍କ ପାଦକୁ ଶରମାରି ମାରିବା ଏକ ଅଦ୍ୱିତୀୟ ଘଟଣା । ସେହିପରି ଏକ ଘଟଣା ଗ୍ରୀକ୍ କାହାଣୀରେ ରହିଛି । ତେଣୁ ଗ୍ରୀକ୍‌ମାନଙ୍କୁ କୃଷ୍ଣ ଆଶ୍ଚର୍ଯ୍ୟ ଲାଗେ ନାହିଁ ।

ତେଣୁ ପ୍ରଥମ କୃଷ୍ଣ ହେଲେ ଅନାର୍ଯ୍ୟ । ଆରମ୍ଭରେ ବହୁ କୃଷ୍ଣଙ୍କ ସୂଚନା ମିଳେ । ପରବର୍ତ୍ତୀ ଅବସ୍ଥାରେ ଦେହାନ୍ତର-ଧାରଣା ଆସିଛି । ପୁନଃ ପୁନଃ ଦେହ ଧାରଣ ବିଶ୍ୱାସ ବଳବତ୍ତର ହୋଇଛି । ସେ ଦୁହିଙ୍କ ମିଶ୍ରଣ ଫଳରେ ଦେଖା ଦେଇଛି ଅବତାରର ଧାରଣା, ଯିଏ କି ବିଭିନ୍ନ ଦେହ ଧରି ଜନ୍ମ ଲଭନ୍ତି, ସମନ୍ୱିତ ହୁଅନ୍ତି । ତେଣୁ ଭକ୍ତମାନଙ୍କ ଦୃଢ଼ ବିଶ୍ୱାସ, ଏ ଜଗତର ନିର୍ଯ୍ୟାତନାରୁ, ଅନ୍ୟାୟ ଅତ୍ୟାଚାରରୁ ତାଙ୍କୁ ମୁକ୍ତ କରିବା ପାଇଁ ନିଶ୍ଚୟ ଗୋଟାଏ ନୂତନ ଅବତାର ଜନ୍ମ ନେବ ।

ଏଠାରେ କୌଣସି ନିର୍ଦ୍ଦିଷ୍ଟ କୃଷ୍ଣଙ୍କ ଦ୍ୱାରା ଜଗନ୍ନାଥଙ୍କୁ ଦେଖିବାର ପ୍ରଶ୍ନ ନାହିଁ । କୃଷ୍ଣଭାବ ବା ଧର୍ମ, ଯାହା ବ୍ରାହ୍ମଣ୍ୟବାଦ ଦ୍ୱାରା ପ୍ରଚାରିତ, ତାରି ଆବରଣରେ ଜଗନ୍ନାଥ ଆବୃତ ଏବଂ ସେହି ଭାବରେ ସାଧାରଣରେ ପ୍ରଚଳିତ । ତାହାହିଁ ଆଲୋଚ୍ୟ ବିଷୟ, ଯେହେତୁ ତାହାହିଁ ଭକ୍ତିର ଆଧାର ।

ଭକ୍ତି କେବଳ ଧର୍ମୀୟ ବିଷୟ ନୁହେଁ, ତାର ସାମାଜିକ ଗୁରୁତ୍ୱ ଯଥେଷ୍ଟ ରହିଛି । ଯେହେତୁ ଭକ୍ତିର ବନ୍ଧନ ସବୁ ଶୃଙ୍ଖଳଠାରୁ ଅଧିକ ଟାଣ, ତାର ଶକ୍ତି ସବୁ ଶକ୍ତିରୁ ଅଧିକ ବଳିଷ୍ଠ, କାରଣ ତାହା ଅପରାଜେୟ । ଭକ୍ତି ଯୋଗୁଁ ମଣିଷ କେବଳ ଧର୍ମ ଓ ଦେବତାଙ୍କ ପାଖରେ ମୁଣ୍ଡିଆ ମାରେ ନାହିଁ, ନିଜକୁ ସମର୍ପଣ କରେ ନାହିଁ, ଏପରିକି ନିଜର ପ୍ରଭୁ, ମାଲିକ ବା ରାଜା (ଶାସକ) ପାଇଁ ପ୍ରାଣ ମଧ୍ୟ ବିସର୍ଜନ କରିପାରେ ।

ସାମନ୍ତବାଦୀ ସମାଜରେ ରାଜାଠାରୁ ଦୂଆରି କଟୁଆଳ ପର୍ଯ୍ୟନ୍ତ ସମସ୍ତ ବୃତ୍ତି, କାର୍ଯ୍ୟ ଓ ଅଧିକାର ବଂଶ-ପରମ୍ପରାଗତ । ସେସବୁ ଯେତେ ବିଭିନ୍ନ, ବିରୁଦ୍ଧାତ୍ମକ ହେଲେ ବି ଯାହା ସମାଜକୁ ବାନ୍ଧି ରଖେ, ସେହି ହେଉଛି ଶ୍ରେଷ୍ଠ ଧର୍ମ । ତାହା ଭକ୍ତିମୂଳକ । ଭକ୍ତି ବିଶ୍ୱାସ ଓ ଅନୁରକ୍ତି ଉପରେ ସବୁ କିଛି ପ୍ରତିଷ୍ଠିତ । ସେଠି ଉପରର ପ୍ରଭୁ, ମାଲିକ, ରାଜା ଆଦିଙ୍କର ଦୋଷତ୍ରୁଟି ଯେତେ ଜଳ ଜଳ ଦିଶିଲେ ବି ଭକ୍ତଙ୍କ ଭଳି ତାହା ତଳ ଲୋକଙ୍କ ଆଖିରେ ପଡ଼େ ନାହିଁ । ତାଙ୍କ ପ୍ରତି ଅନ୍ଧବିଶ୍ୱାସ ଓ ଅନୁରକ୍ତି ''ଭକ୍ତଙ୍କର'' ବିଚାର ଜ୍ଞାନକୁ ଆଚ୍ଛନ୍ନ କରିଦିଏ ।

"To hold this type of society and its states together, the best religion is one which emphasises the role of Bhakti—the personal faith, even though the objects have clearly visibls flaws". (1)

ନିଜ ମାଇଁ ସଙ୍ଗେ ଛନ୍ଦି ହୋଇଥିବା କୃଷ୍ଣଙ୍କର ଯୁଗଳମୂର୍ତ୍ତି ଯେଉଁ ଭକ୍ତି ବଳରେ ପୂଜିତ, ସେହି ଭକ୍ତିମାର୍ଗରେ ପ୍ରବଳ ବ୍ୟଭିଚାର, ପ୍ରଜା ଉତ୍ପୀଡ଼କ ରାଜା ସର୍ବତ୍ର ସେହି ବିଷ୍ଣୁଙ୍କର ଚଳନ୍ତି ପ୍ରତିମା ବୋଲାନ୍ତି ।

ଆମେ ଦେଖିଛେ, ରାଜଶାସନର ଆବିର୍ଭାବ ଓ ରାଜ୍ୟର ବିସ୍ତାର ଗଢ଼ିଉଠିଛି ଟ୍ରାଇବାଲ ସମାଜର ଧ୍ୱଂସସ୍ତୂପ ଉପରେ । ଗୀତା କେବଳ ସେଇ ସମାଜର ସୃଷ୍ଟି ନୁହେଁ । ସେଇ ସାମାଜିକ ପ୍ରକ୍ରିୟାକୁ ତ୍ୱରାନିତ ଓ ସଂଗଠିତ କରିବାର ଉଦ୍ଦେଶ୍ୟ ନେଇ ରଚିତ । ଟ୍ରାଇବାଲ ଗଣସମାଜକୁ ଧ୍ୱଂସ କରିଦେବାଟା ଅପେକ୍ଷାକୃତ ସହଜ, କିନ୍ତୁ ତାକୁ ସବୁଦିନ ଲାଗି ଅଧୀନସ୍ଥ କରି ରଖିବାଟା କଷ୍ଟକର । କାରଣ, ସେହି ସମାଜର ଧ୍ୱଂସ ପରେ ଏବେ ବିଭିନ୍ନ ଅଞ୍ଚଳରେ ଭିନ୍ନ ଭିନ୍ନ ଗଣଗୋଷ୍ଠୀକୁ ନେଇ ଗଠିତ, ଚାତୁର୍ବର୍ଣ୍ଣରେ ବିଭକ୍ତ, ରାଜଶାସନ ଦ୍ୱାରା ଚାଳିତ ସେହି ରାଜ୍ୟକୁ ବାନ୍ଧି ରଖିବ କିଏ ? ପୂର୍ବକାଳର ଗଣଗୋଷ୍ଠୀ ରକ୍ତସମ୍ପର୍କର ବନ୍ଧନ ଆଉ ନାହିଁ । ତାହା ଦିନେ ସାମାଜିକ ଐକ୍ୟର ଭିତ୍ତି ହୋଇଥିଲା, ସାମାଜିକ ଜୀବନର ବନ୍ଧନ, ଏପରିକି ଟ୍ରାଇବାଲ ରାଜାଙ୍କ ପ୍ରତି ଅନୁରକ୍ତିର ଆଧାର ଥିଲା । ଏବେ ତାର ବିଲୋପ ଘଟିଛି । ତାହା ସ୍ଥାନରେ ଏକ ନୂତନ ସମାଜର ଆବିର୍ଭାବ, ଯିଏ କି ଗୁଣାତ୍ମକ ଭାବେ ସମ୍ପୂର୍ଣ୍ଣ ନୂତନ । ଏବେ ବିଭିନ୍ନ ଗୋଷ୍ଠୀର ଲୋକଙ୍କୁ ଏବଂ ଚାତୁର୍ବର୍ଣ୍ଣ୍ୟ ବିଭକ୍ତ ସମାଜକୁ ବାନ୍ଧି ରଖିବାକୁ ହେଲେ ଏକ ନୂତନ ବ୍ୟବସ୍ଥା ଦରକାର । ଦଣ୍ଡର ଜୋରରେ ବଳ ପ୍ରୟୋଗ ଦ୍ୱାରା ସବୁଦିନ ପାଇଁ ଲୋକଙ୍କୁ ଦବାଇ ରଖାଯାଇ ନ ପାରେ । ତାହା କେବଳ ଅଧିକ ଅସନ୍ତୋଷ ଓ ବିଦ୍ରୋହକୁ ଆହ୍ୱାନ କରିବ । ଲୋକଙ୍କୁ ଅଧୀନସ୍ଥ କରି ରଖିବାକୁ ହେଲେ ତାଙ୍କର ମନକୁ ଅଧିକାର କରିବାକୁ ପଡ଼ିବ । ତାହା ବଳପ୍ରୟୋଗ ଦ୍ୱାରା ନୁହେଁ, ବିଶ୍ୱାସ ସୃଷ୍ଟି ଦ୍ୱାରାହିଁ କେବଳ ସମ୍ଭବ । ସମସ୍ତଙ୍କ ମନରେ ଗୋଟାଏ

---

(1) 'Myth and reality'. Kosambi, Page - 32.

ସର୍ବବାଦିସମ୍ମତ ଧାରଣା ଆଣି ଗୋଟାଏ ଆଦର୍ଶରେ ସମସ୍ତଙ୍କୁ ବାନ୍ଧିବାକୁ ହେବ । ଯାହାଫଳରେ ଲୋକେ ରାଜାପ୍ରତି ସବୁବେଳେ ଅନୁରକ୍ତ ରହିବେ । ରାଜାର ରକ୍ଷାକୁ ନିଜର ଧର୍ମ ଓ ସର୍ବଶ୍ରେଷ୍ଠ କର୍ତ୍ତବ୍ୟ ବୋଲି ମଣିବେ । ଦରକାର ପଡ଼ିଲେ ରାଜା ପାଇଁ ନିଜର ପ୍ରାଣ ଦେବାକୁ ମଧ କୁଣ୍ଠିତ ହେବେ ନାହିଁ, ଅକାତରେ ବାହାରି ପଡ଼ିବେ । ସେଇ ଅନୁରକ୍ତିର ଅଦୃଶ୍ୟ ଡୋରି ହେଉଛି ରାଜଭକ୍ତି । ଗୀତାର ଭକ୍ତିମାର୍ଗ ଅନ୍ୟ ଦିଗରେ ସେଇ ରାଜଭକ୍ତିକୁ ହିଁ ଜନ୍ମ ଦିଏ । ତାକୁ ଜାଗ୍ରତ, ପବିତ୍ର ଓ ଅଲଘଂନୀୟ କରି ଗଢ଼େ ।

ଏଥିପୂର୍ବରୁ ନୀଚ ବର୍ଣ୍ଣଙ୍କ ମଧରେ ଘୋର ଅସନ୍ତୋଷ, ଉଚ୍ଚ ବର୍ଣ୍ଣଙ୍କ ସହିତ ସଂଘର୍ଷ, ବ୍ରାହ୍ମଣ୍ୟବାଦ ଓ ଚାତୁର୍ବର୍ଣ୍ଣ୍ୟ ବିରୋଧରେ ବୁଦ୍ଧଙ୍କର ଅଭିଯାନ ଭାରତ ବାହାରୁ ଗ୍ରୀକ୍, ଶକ, ହୁନ ଆଦିଙ୍କ ପ୍ରବେଶ ଦ୍ୱାରା ଚାତୁର୍ବର୍ଣ୍ଣ୍ୟସମାଜ ଦୋହଲି ଯାଇଥିଲା । ଘୋର ବିଶୃଙ୍ଖଳା ଦେଖା ଦେଇଥିଲା । ଗୀତା ଭାଷାରେ ସେଠି ବର୍ଣ୍ଣସଙ୍କର ସୃଷ୍ଟି ହେଲେ । ସେମାନଙ୍କୁ ଶାନ୍ତ, ଆୟତ୍ତ ଓ ପ୍ରତାରିତ କରିବା ଉଦ୍ଦେଶ୍ୟରେ ଏବେ ଖୋଲିଲା "ଭକ୍ତିର ମାର୍ଗ" । ସେମାନେ ସେଇ ଚାତୁର୍ବର୍ଣ୍ଣ୍ୟ ବ୍ୟବସ୍ଥା ମଧରେ ରହିଲେ ବି ସମସ୍ତ ପ୍ରକାର ସାମାଜିକ ଅଧିକାରରୁ ବଞ୍ଚିତ ହେଲେ ମଧ ତେଣେ କିନ୍ତୁ ଭକ୍ତି ଦ୍ୱାରା ମୁକ୍ତିମାର୍ଗର ସନ୍ଧାନ ପାଇଲେ । ତେଣୁ ସେମାନଙ୍କର ସେଇ ସାମାଜିକ ଶୃଙ୍ଖଳ ଆହୁରି ଅଧିକ କଠୋର ହୋଇ ଉଠିଲା ।

## ରାଜା, ବ୍ରାହ୍ମଣ, ଭଗବାନ

ସେଇ ଭକ୍ତି ଫଳରେ ରାଜା ଭଗବାନଙ୍କ ଏକ ଅବତାର, — ଚଳନ୍ତି ବିଷ୍ଣୁରେ ପରିଣତ ହେଲେ । ତାହା ସହିତ ସବୁ ଧ୍ୟାନ, ଧାରଣା, ମତ ଓ ବିଶ୍ୱାସକୁ ନିୟନ୍ତ୍ରିତ କରୁଥିବା ବ୍ରାହ୍ମଣ ହେଲେ ସେଇ ଭକ୍ତିର ଅଧିକାରୀ ।

ରାଜା, ଦେବତା, ବ୍ରାହ୍ମଣ ପ୍ରତି ଭକ୍ତି ପ୍ରଦର୍ଶନ ହେଲା ସମାଜର ବିଧାନ, ପ୍ରତ୍ୟେକ ଲୋକର କର୍ତ୍ତବ୍ୟ । ଇହଲୋକରେ ଜୀବନଯାତ୍ରା ଓ ପରଲୋକର ମୁକ୍ତି ଲାଗି ଭକ୍ତି ହେଲା ଲୋକମାନଙ୍କର ପ୍ରଧାନ ଉପାୟ । "ମହତୀ ଦେବତା ହ୍ୟେଷା ନରରୂପେଣ ତିଷ୍ଠତି ।"

ସାମନ୍ତବାଦୀ ସମାଜରେ କୃଷିର ପ୍ରସାର ସହିତ କ୍ରମାନ୍ୱୟରେ ଗଡ଼ି ଗଡ଼ି ଚାଲିଲା ସେଇ ଭକ୍ତିର ଧାରା । ଈଶ୍ୱର ଅବତାରଙ୍କ ସହିତ ତାଙ୍କ ତଳକୁ ତଳ ଯେତେ ଦେବଦେବୀ ସୃଷ୍ଟି ହେଲେ, ରାସ୍ତାକଡ଼ର ସିନ୍ଦୂରମରା କାଠ ପଥର ବି ଶେଷରେ ଭକ୍ତିଲାଭର ଯୋଗ୍ୟତା ଲାଭ କଲେ । ସେମିତି ରାଜା ସମ୍ରାଟଙ୍କ ସହିତ ତା ତଳକୁ ତଳ ଯେତେ ସାମନ୍ତ ଏବଂ ଜମି ମାଲିକ ଆସିଲେ, ସେମାନେ ସେମିତି ଭକ୍ତିପ୍ରାପ୍ତିର ଯୋଗ୍ୟତା ଲାଭ କଲେ । ବ୍ରାହ୍ମଣମାନଙ୍କ କ୍ଷେତ୍ରରେ ଛୋଟ, ବଡ଼, ପଣ୍ଡିତ, ମୂର୍ଖ, ସାଧୁ, ସନ୍ତଙ୍କର ପ୍ରଶ୍ନ ନାହିଁ । ଭକ୍ତିକୁ ସେମାନେ ତାଙ୍କ ପାଇଁ ଜନ୍ମଗତ ଅଧିକାରରେ

ପରିଣତ କଲେ । ସେମାନେ ସେଇ ଅଧିକାରକୁ ମାତୃ ଗର୍ଭରୁ ଧରି ଜନ୍ମଗ୍ରହଣ କରନ୍ତି । ତାକୁ ଅନ୍ୟଥା କରିବା ଛତିଶ ପାଟକଙ୍କ ପାଇଁ ଗୋଟାଏ ପାତକ ।

ରାଜା, ଦେବତା, ବ୍ରାହ୍ମଣ, ଏମାନଙ୍କ ମୂଳଭିତ୍ତି ହେଲା ଭକ୍ତି । ଏମାନେ ଭକ୍ତି ଉପରେ ଯେପରି ପ୍ରତିଷ୍ଠିତ, ସେହିପରି ପରସ୍ପର ସହିତ ଅବିଚ୍ଛେଦ୍ୟ । ଏମାନଙ୍କ ଭିତରୁ ଜଣକ ପ୍ରତି ଭକ୍ତି ଅନ୍ୟ ଦୁଇଜଣଙ୍କ ପ୍ରତି ଭକ୍ତିର ଆହ୍ୱାନକୁ ସ୍ୱତଃ ଦୃଢ଼ୀଭୂତ କରେ । ଭକ୍ତି ରାଜାଙ୍କ କ୍ଷେତ୍ରରେ ଆଧିପତ୍ୟର ଉପାୟ ହେଲାବେଳେ ବ୍ରାହ୍ମଣଙ୍କ କ୍ଷେତ୍ରରେ ତାହା ହୁଏ ସାମାଜିକ ଆନୁଗତ୍ୟ ଆଦାୟର ଏକ ଚତୁର କୌଶଳ । ଭକ୍ତିର ନିର୍ମ୍ମଳ ନିର୍ଝର ଯାହା ଖୋଦ ଭଗବାନଙ୍କ ମୁହଁରୁ ନିଃସୃତ, ତାହା ସମାଜ ଓ ରାଜ୍ୟର ଅଧିକାରୀ ବ୍ରାହ୍ମଣ ଓ ରାଜାଙ୍କର ସ୍ୱାର୍ଥର କ୍ଷେତ୍ରକୁ ଯୁଗ ଯୁଗ ଧରି ଚିର ଉର୍ବର ଓ ଫଳଦାୟକ କରିବାରେ ଲାଗିଛି । ସବୁ ଶାସ୍ତ୍ର ପୁରାଣ ଠିକ୍ ତାରି ଗୁଣ ଗାନ କରିଥାଏ । ଯଥା, ଭଗବାନ କହନ୍ତି, ''ତେଜଙ୍କ ମଧ୍ୟେ ଥିବି ମୁହିଁ, ମନୁଷ୍ୟେ ନୃପତି ବୋଲାଇ । (ଏକାଦଶ ସ୍କନ୍ଧ, ୭ମ ଅଧ୍ୟାୟ) । ଭକ୍ତିର ପ୍ରଚାରକୁ ପୂଣ୍ୟ, ପବିତ୍ର ଓ ବଳିଷ୍ଠ କରିବା ଉଦ୍ଦେଶ୍ୟରେ ଗୁପ୍ତ ଯୁଗରେ ବହୁ ପୁରାଣ ଲେଖାଯାଇଛି, ପୁନଃସମ୍ପାଦିତ ଓ ପରିବର୍ତ୍ତିତ ହୋଇଛି । ସେଠି ରାଜା, ଦେବତା, ବ୍ରାହ୍ମଣଙ୍କ ସ୍ୱାର୍ଥ କ୍ଷୁର୍ଣ୍ଣ କଲାଭଳି ଲେଶମାତ୍ର କଥାର ସୂଚନା ନାହିଁ । ସେହି ଐତିହ୍ୟ ଏପରି ମଜ୍ଜାଗତ ଯେ, ତାହା ଏକ ପ୍ରାକୃତିକ ତଥା ସାମାଜିକ ବ୍ୟବସ୍ଥା ଭାବେ ସ୍ୱୀକୃତ । ତାର ଦୃଷ୍ଟାନ୍ତ ଓଡ଼ିଆ ଭାଗବତ, ଯାହାକି ଜଗନ୍ନାଥଙ୍କ ସହ ଘନିଷ୍ଠଭାବେ ଜଡ଼ିତ । ଜଗନ୍ନାଥ ଦାସ ଭାଗବତର ଅନୁବାଦ ଦ୍ୱାରା ସଂସ୍କୃତ ବିରୋଧରେ ଓଡ଼ିଆ ଭାଷାକୁ କେବଳ ପ୍ରତିଷ୍ଠା କଲେ ନାହିଁ, ତା ସହିତ ସେ କ୍ଷେତ୍ରରେ ବ୍ରାହ୍ମଣଙ୍କ ଏକଚାଟିଆ ଅଧିକାରକୁ ମଧ୍ୟ ଭାଙ୍ଗିଲେ । ଇତର ଲୋକଙ୍କ ଲାଗି ଭାଗବତ ପ୍ରବେଶର ଦ୍ୱାର ଉନ୍ମୁକ୍ତ କରିଦେଲେ । ସଂସ୍କୃତକୁ ଓଡ଼ିଆରେ ଲେଖିବାରେ ଏତାଦୃଶ କାର୍ଯ୍ୟ ଦ୍ୱାରା ବ୍ରାହ୍ମଣ ସମାଜରେ ଜଗନ୍ନାଥ ଦାସ ଅନାଦୃତ, କିନ୍ତୁ ମୂଳ ଭାଗବତ ସେହି ଭକ୍ତିର ଭାବକୁ ହିଁ ପ୍ରଚାର କରେ । ତାହା ଏବେ ଲୋକଙ୍କ ମଧ୍ୟରେ ଅଧିକ ପ୍ରଚାରିତ ଓ ଦୃଢ଼ୀଭୂତ ହେଲା । ଭାଗବତ କହିଛି -

ସକଳ ପ୍ରାଣୀ ମଧ୍ୟେ ସାର/ବ୍ରାହ୍ମଣ ଜନ ପ୍ରିୟ ମୋର/ ବ୍ରାହ୍ମଣ ସର୍ବ ଦେବମୟ, ନିଶ୍ଚୟ ମୋର ନିଜ ଦେହ/.....ଏହାଙ୍କୁ ସେବାକରି ନିତ୍ୟେ, ମୋ ଭାବ ପାଇବୁ ଯେମନ୍ତେ/ବିପ୍ରେ ସେବିଲେ ମୋତେ ପାଇ, ଅନ୍ୟଥା କୋଟି ଯଜ୍ଞ ଦହି/ (ଦଶମ ସ୍କନ୍ଧ) ବିପ୍ରେ ତୋଷଣ କରି ନିତ୍ୟେ, ମୁଁ ଥାଇ ତାହାର ଅଗ୍ରତେ/ବ୍ରାହ୍ମଣ ମୁଖେ ମୋ ଆହାର, ବିପଦ ଖଣ୍ଡଇ ତାହାର/ (ଏକାଦଶ ସ୍କନ୍ଧ, ଅଷ୍ଟାଦଶ ଅଧ୍ୟାୟ) ବ୍ରାହ୍ମଣ ଦେହେ ଥାଇ ହରି, ଏଣୁ ସୁଜନେ ପୂଜାକରି/ବିପ୍ର ଭୋଜନେ ତୋଷ ଯେତେ, ସେ ନୁହେଁ ଯଜ୍ଞ କୋଟି ମତେ/ଏ ଘେନି ଦେବତା ବ୍ରାହ୍ମଣ, ପୂଜା କରିବ ଅନୁକ୍ଷଣ ଏଣୁ ବ୍ରାହ୍ମଣ ମୁଖେ ଦେଇ, ପୂଜା କରିବ ଭାବଗ୍ରାହୀ । (ସପ୍ତମ ସ୍କନ୍ଧ)

ଏହାର ମୂଳ ହେଲେ ମନୁ। ତାଙ୍କ ମତରେ ଜଗତର ଯେତେ ପଦାର୍ଥ ରହିଛି, ସେ ସବୁ ବ୍ରାହ୍ମଣଙ୍କର ଅଟେ। ବ୍ରହ୍ମୋତ୍ପତ୍ତି ରୂପ ଶ୍ରେଷ୍ଠତା ହେତୁ ବ୍ରାହ୍ମଣ ସମସ୍ତ ଗ୍ରହଣ କରିବାକୁ ଯୋଗ୍ୟ, (ମ୮.୧୦୦) ଏପରିକି ନ ନେବା ଲୋକଠାରୁ ସେ ଦାନ ନେଇପାରେ, ଅଛୁଆଁ ହାତରେ ଅଖାଦ୍ୟ ଖାଇପାରେ, ସେଥିରେ ତାକୁ ଦୋଷ ନାହିଁ କି ପାପ ନାହିଁ, ଯେହେତୁ ବ୍ରାହ୍ମଣ ''ଅଗ୍ନି ଓ ଜଳ ପରି ସଦାପବିତ୍ର । (ମ୧୦.୧୦୩)''। ଏମିତିକି 'ଧର୍ମାଧର୍ମ-ବିଚକ୍ଷଣ ଋଷି ବିଶ୍ୱାମିତ୍ର କ୍ଷୁଧାର୍ତ୍ତ ହୋଇ ଚାଣ୍ଡାଳ ହାତରୁ କୁକୁର ଜଘନ ମାଂସ ଭୋଜନ କରିଥିଲେ' । (ମ୧୦.୧୦୮) ଯେତେ ନିନ୍ଦିତ କାର୍ଯ୍ୟ କଲେ ବି ବ୍ରାହ୍ମଣ ସମସ୍ତଙ୍କର ପୂଜ୍ୟ ଅଟନ୍ତି । ଯେହେତୁ ସେ ମହତୀ ଦେବତା । ''ସର୍ବଥା ବ୍ରାହ୍ମଣାଃ ରାଜା ପରମଂ ଦୈବତଂ ହି ତତ୍'' (ମ୯.୩୮୯) ଥରେ ନିଜକୁ ଦେବତା କରିଦେଲେ ତେଣିକି ଭକ୍ତି ଆପେ ଆପେ ତାଙ୍କୁ ଅନୁସରଣ କରିବ ।

ତେଣୁ ଦେବଦେବୀଙ୍କ ପାଖକୁ ଯିବାକୁ ହେଲେ ପୁଣି ଜନ୍ମରେ ନାମକରଣ, ତା ପରେ ବିଦ୍ୟାରମ୍ଭ, ଯୌବନରେ ବିବାହ, ଶେଷରେ ମୃତ୍ୟୁ, ତା ପଛକୁ ଶୁଦ୍ଧି ଶ୍ରାଦ୍ଧ କରିବାକୁ ହେଲେ ଆଉ ନିଜର ପାପ କ୍ଷୟ, ପୁଣ୍ୟ ଅର୍ଜନ ଓ ସ୍ୱର୍ଗପ୍ରାପ୍ତି ପାଇଁ ଯାହା କିଛି କର, ଯୁଆଡ଼େ ଯାଅ, ଗୋଟାଏ ମାତ୍ର ବାଟ, ସେହି ବ୍ରାହ୍ମଣ ବାଟ ଦେଇ ଯିବାକୁ ହେବ । ଆଜି ମଧ ବୈଜ୍ଞାନିକ ଯୋଜନାର ଶିଳାନ୍ୟାସ ବା ଭୂମି ପୂଜା ପାଇଁ ଲୋଡ଼ା ବ୍ରାହ୍ମଣ ।

ଏହାହିଁ ହେଉଛି ଶେଷରେ ହିନ୍ଦୁ ଧର୍ମର ସ୍ୱାଭାବିକ ପରିଣତି । ଭଗବାନଙ୍କ ପୂଜା ବ୍ରାହ୍ମଣଙ୍କ ପୂଜାରେ ଆସି ପହଞ୍ଚିଛି । ତେଣୁ ଭକ୍ତି ବିନା ଧର୍ମ ନାହିଁ । ଭକ୍ତି ଆଉ ଧର୍ମ ଏହି ସମାଜ ଭିତରୁ ଜାତ, ଦୁହିଁଙ୍କ ମୂଳ କିନ୍ତୁ ଏକ, —ଏକମାତ୍ର ବିଶ୍ୱାସ । ଯେଉଁଠି କି, କାହିଁକି ବୋଲି ପ୍ରଶ୍ନ କରିବା ନିଷେଧ । ଏହାହିଁ ହେଲା ସବୁ ଧର୍ମର ମର୍ମ । ସବୁ ଧର୍ମ ଭିତରେ ହିନ୍ଦୁଧର୍ମର ଗୋଟାଏ ବିଶେଷତ୍ୱ ରହିଛି, ଯାହାକି ଅନ୍ୟମାନଙ୍କଠାରୁ ସମ୍ପୂର୍ଣ୍ଣ ପରକ୍ । ପୁଣି ସେ ସମସ୍ତ ଧର୍ମଠାରୁ ମୌଳିକ ଭାବେ ପରକ ହେଉଛି ଜଗନ୍ନାଥ ଧର୍ମ (ଯାହାକୁ କି ପ୍ରଚଳିତ ଧର୍ମ ଅର୍ଥରେ ନ ଧରି ତାକୁ ଭାବ ବୋଲି କହିବାକୁ ହେବ) । ସେ ଜଗନ୍ନାଥ କେବଳ ସବୁଠାରୁ ପ୍ରାଚୀନ ନୁହନ୍ତି, ସବୁଠାରୁ ଊର୍ଦ୍ଧ୍ୱରେ ।

ଦେଖାଯାଉ ଖ୍ରୀଷ୍ଟିୟାନ ଧର୍ମକୁ । ଦାସମାନଙ୍କର ଦୁଃଖ ନିର୍ଯ୍ୟାତନାରୁ ମୁକ୍ତି ଲାଗି ବ୍ୟାକୁଳ କାମନା ଭିତରେ ତାର ଜନ୍ମ । ''ଖ୍ରୀଷ୍ଟିୟାନ ଧର୍ମ ମୂଳତଃ ଅତ୍ୟାଚାରିତ ଲୋକଙ୍କର ଆନ୍ଦୋଳନ । ତାହା ପ୍ରଥମତଃ ଦାସ, ମୁକ୍ତଦାସ, ସବୁ ଅଧିକାରରୁ ବଞ୍ଚିତ ଦରିଦ୍ର ଲୋକ ଏବଂ ରୋମଦ୍ୱାରା ଅଧିକୃତ ନିର୍ଯ୍ୟାତିତ ଲୋକଙ୍କର ଧର୍ମ ।'' ସମସ୍ତେ ଜାଣନ୍ତି ଲୋକଙ୍କ ପ୍ରତି ଦୟା, କରୁଣା, ଅନୁକମ୍ପା ଭିତରେ ସେମାନଙ୍କ ଦୁଃଖକଷ୍ଟର ମୂଳ କାରଣ ଦୂର କରିବାକୁ ଯାଇ ବୌଦ୍ଧଧର୍ମର ଆବିର୍ଭାବ । ଏକ ଆଲ୍ଲା ଓ ଏକ

ପ୍ରଫେଟଙ୍କୁ ମାନି ସଂଘର୍ଷରତ ସବୁ ଉପଜାତିମାନଙ୍କୁ ସମାନ କରିବା ଭିତରେ ଇସଲାମର ପ୍ରକାଶ । ହିନ୍ଦୁଧର୍ମର ବିକାଶ ଚାତୁର୍ବର୍ଣ୍ଣ୍ୟ ମଧ୍ୟରେ । ଉଚ୍ଚ ନୀଚ, ସାନ ବଡ଼, ସ୍ପୃଶ୍ୟ ଅସ୍ପୃଶ୍ୟ, ଗୂଢ଼ ଜ୍ଞାନୀ, ମୂଢ଼ ଅଜ୍ଞାନୀ, ଅତ୍ୟାଚାରୀ ଅତ୍ୟାଚାରିତ ଆଦି ମଣିଷ ଜାତିକୁ କାଳ କାଳକୁ ଦୁଇ ଭାଗରେ ବିଭକ୍ତ କରି ଦେଖାଦେଇଛି ସେହି ହିନ୍ଦୁଧର୍ମ, ଯେଉଁ ଶ୍ରେଣୀ ବା ଜାତିବିଭାଗକୁ ମଣିଷ ମାତୃଗର୍ଭରୁ ଧାରଣ କରି ଜନ୍ମ ନିଏ । ନୀଚବର୍ଣ୍ଣଙ୍କ ଲାଗି ଇହଲୋକ ଓ ପରଲୋକ, ଉଭୟ କ୍ଷେତ୍ରରେ ମୁକ୍ତିର ପଥ ଚିରଦିନ ଲାଗି ରୁଦ୍ଧ । ବୈଶ୍ୟ ଓ ଶୂଦ୍ରଙ୍କ ଉପରେ ବ୍ରାହ୍ମଣ ଓ କ୍ଷତ୍ରିୟଙ୍କର ଆଧିପତ୍ୟ ହେଲା ସେହି ଧର୍ମର ପ୍ରଧାନ ଭିତ୍ତି । ସେହି ଚାର୍ତୁବର୍ଣ୍ଣ୍ୟ ଖୋଦ୍ ବ୍ରହ୍ମା ବା ପୁରୁଷଙ୍କ ସୃଷ୍ଟି । ବେଦାନ୍ତର ନିରାକାର ନିର୍ଗୁଣ ବ୍ରହ୍ମ ଆଉ ଚାତୁର୍ବର୍ଣ୍ଣ୍ୟ ଜାତିଭେଦ ସୃଷ୍ଟିକର୍ତ୍ତା ବ୍ରହ୍ମା ଏକାଧାରରେ ଚାଲିଛନ୍ତି । ସେହି ଜାତିଭେଦ ଓ ତାର ବିଲକ୍ଷଣକୁ ବିରୋଧ କରିବା ଅର୍ଥ, ଖୋଦ୍ ହିନ୍ଦୁଧର୍ମକୁ ଅସ୍ୱୀକାର କରିବା, ବ୍ରହ୍ମାଙ୍କ ବିଷୟରେ ସନ୍ଦେହ ପ୍ରକାଶ କରିବା ଓ ଭଗବାନଙ୍କର ଅସ୍ତିତ୍ୱକୁ ପ୍ରଶ୍ନ କରିବା ।

ହିନ୍ଦୁଧର୍ମରେ ଭକ୍ତଭାବ ଯେପରି ବ୍ୟାପକ, ସେହିପରି ଗଭୀର । କାଷ୍ଠ ପାଷାଣ ଗାଈ ମାଙ୍କଡ଼ ଯାଏ ମଣିଷ ସମସ୍ତଙ୍କୁ ମୁଣ୍ଡିଆ ମାରେ । ତାଙ୍କ ଲଗି ନିଜ ମୁଣ୍ଡକୁ ବି ପାଣି ଛଡ଼ାଇ ଦେଇପାରେ । କ'ଣ ସେହି ଭକ୍ତିର କାରଣ ? ଅନ୍ୟ ଧର୍ମଠାରୁ ତାର ସେ ଫରକ୍ କାହିଁକି ? ହିନ୍ଦୁଧର୍ମର ଅନ୍ୟାନ୍ୟ ବୈଶିଷ୍ଟ୍ୟ ଭଳି ତାହା ତାର ନିର୍ଦ୍ଦିଷ୍ଟ ସାମାଜିକ ଓ ଐତିହାସିକ ଅବସ୍ଥା ଭିତରେ ନିହିତ । ଅନ୍ୟ ଧର୍ମ ଭଳି ହିନ୍ଦୁଧର୍ମର ଜଣେ କେହି ନିର୍ଦ୍ଦିଷ୍ଟ କର୍ତ୍ତା ବା ପ୍ରତିଷ୍ଠାତା ନାହାନ୍ତି । ଅନ୍ୟ ଧର୍ମ ପରି ତାର କୌଣସି ନିର୍ଦ୍ଦିଷ୍ଟ ଜନ୍ମକାଳ ନାହିଁ । ଏପରିକି ଅନ୍ୟମାନଙ୍କ ସହିତ ତାର ଭଗବାନଙ୍କର ମଧ୍ୟ ପାର୍ଥକ୍ୟ ରହିଛି । ସବୁ ଧର୍ମରେ ଭଗବାନ ମଣିଷକୁ ସମାନ କରି ସୃଷ୍ଟି କରିଛନ୍ତି । କିନ୍ତୁ ହିନ୍ଦୁଧର୍ମର ଭଗବାନ ପ୍ରତ୍ୟେକ ମଣିଷର ଗୁଣ କର୍ମକୁ ବାନ୍ଧି ଦେଇ ବିଭିନ୍ନ ଜାତି କରି ସୃଷ୍ଟି କରିଛନ୍ତି, ଯେଉଁ ଜାତିକୁ କି ସେ ତାର ମଲାଯାଏ, ଏପରିକି ତାର ପିଲାମାନେ ତାଙ୍କର ବଂଶ ଲୋପ ନ ହେବା ପର୍ଯ୍ୟନ୍ତ, ଛାଡ଼ିପାରିବେ ନାହିଁ । କାଳେ ସେ ବିଷୟରେ କାହାର ସନ୍ଦେହ ଉଠିପାରେ, ତେଣୁ ଭଗବାନ ସ୍ୱୟଂ ଘୋଷଣା କରନ୍ତି, ତାହା ତାଙ୍କର ନିଜର ସୃଷ୍ଟି ।

## ଧର୍ମ ଭକ୍ତିରେ ଜଗନ୍ନାଥଙ୍କ ସମାଧି

ହିନ୍ଦୁଧର୍ମର ସେହି ବୈଶିଷ୍ଟ୍ୟ, ତାର ଭଗବାନଙ୍କର ସେହି ଖାସ ଗୁଣ, ସେମିତି ତାଙ୍କ ପ୍ରତି ଭକ୍ତିରେ ପ୍ରତିଫଳିତ ହୁଏ । ତାହା ଦେଖିବାକୁ ହେଲେ ସେହି ଜଗନ୍ନାଥଙ୍କୁ ଦେଖିବାକୁ ହେବ । ସେ ଯେପରି ସାମ୍ୟ ମୈତ୍ରୀ ପ୍ରୀତିକୁ ପ୍ରକାଶ କରନ୍ତି, ତେଣେ ସେହିପରି ହିନ୍ଦୁଧର୍ମର ବର୍ଣ୍ଣାଶ୍ରମ ବ୍ୟବସ୍ଥାକୁ ମଧ୍ୟ ପ୍ରଚାର କରନ୍ତି । ପ୍ରଥମଟି ଜଗନ୍ନାଥଙ୍କର ଜନ୍ମଗତ ପ୍ରକୃତି ହେଲାବେଳେ ଦ୍ୱିତୀୟଟି ତାଙ୍କର ଐତିହାସିକ ଚରିତ୍ର । ପ୍ରଥମଟି ପ୍ରାକ୍‌ଶ୍ରେଣୀ ବିଭକ୍ତ, —ଆଦିମ ସାମ୍ୟ ସମାଜର ରୂପ ହେଲେ ଅନ୍ୟଟି ଶ୍ରେଣୀବିଭକ୍ତ ସମାଜର ସ୍ୱାଭାବିକ ଚିତ୍ର ।

ଜଗନ୍ନାଥ ସମଗ୍ର ମାନବଜୀବନର ଏକ ଜ୍ୱଳନ୍ତ ପ୍ରତୀକ । ବିଶ୍ୱ ଇତିହାସରେ ତାର ସେହି ସାମାଜିକ ବିକାଶର ଏକ ଅଦ୍ୱିତୀୟ ନିଦର୍ଶନ । ମନୁଷ୍ୟର ଅନୁରୂପ, ସେହି ପ୍ରତିମୂର୍ତ୍ତି ଜଗନ୍ନାଥଙ୍କୁ ଛାଡ଼ିଦେଲେ ସାରା ବିଶ୍ୱରେ ଅନ୍ୟତ୍ର ହିନ୍ଦୁଧର୍ମ ସମେତ ଅନ୍ୟ କୌଣସି ଧର୍ମରେ ନାହିଁ । କାରଣ ଜଗନ୍ନାଥ, — ସାମ୍ୟ ମୈତ୍ରୀ ସମାଜର ଭାବକୁ, ପ୍ରାକ୍‌ଶ୍ରେଣୀବିଭକ୍ତ ସମାଜର ଧାରଣାକୁ ପ୍ରକାଶ କରେ । କିନ୍ତୁ ହିନ୍ଦୁଧର୍ମ ଗଢ଼ିଉଠିଛି ଶ୍ରେଣୀବିଭକ୍ତ ସମାଜର ପ୍ରକ୍ରିୟା ଭିତରେ । ସେହି ପ୍ରକ୍ରିୟାର ଅନୁସରଣରେ ବା ସେହି ଭାବର ତାଡ଼ନାରେ ତାହା ନିଜକୁ ପ୍ରତିଷ୍ଠା କରିଛି ଚାତୁର୍ବର୍ଣ୍ଣ୍ୟର ବ୍ୟବସ୍ଥାର ପ୍ରଚାର ମାଧ୍ୟମରେ । ସେହି ବର୍ଣ୍ଣଭେଦ, ଶ୍ରେଣୀଭେଦର ଆଉ ଏକ ରୂପ । ଅନ୍ୟ ସବୁ ଧର୍ମ ଆସିଛନ୍ତି ଶ୍ରେଣୀ ସମାଜର ପ୍ରତିଷ୍ଠା ଉତ୍ତାରୁ । ତେଣୁ ସେହି ସମାଜର ଯେତେ କୁପରିଣାମ, ଦୁଃଖ, କ୍ଲେଶ, ଅତ୍ୟାଚାର, ଉତ୍ପୀଡ଼ନ ଆଦିରୁ ଖୋଜିଛନ୍ତି ମୁକ୍ତିର ବାଟ; ଏମିତିକି ଆରମ୍ଭରେ ଖ୍ରୀଷ୍ଟଧର୍ମ ନିର୍ଯ୍ୟାତିତ ଲୋକଙ୍କର ବିଦ୍ରୋହକୁ ଉତ୍ସାହିତ କରିଛି, ତାହାର ନେତୃତ୍ୱ ନେଇଛି । ଏହିସବୁ ଧର୍ମରେ ଭକ୍ତି ଅବଶ୍ୟ ରହିଛି, କିନ୍ତୁ ତାହା ହିନ୍ଦୁଧର୍ମ ଭଳି ତାତ୍ପର୍ଯ୍ୟପୂର୍ଣ୍ଣ କି ଅପରିହାର୍ଯ୍ୟ ନୁହେଁ । ସେମିତି ଅନ୍ୟ ଧର୍ମରେ ଜଗନ୍ନାଥଙ୍କ କ୍ଷେତ୍ରରେ ହେଲାପରି ସାମ୍ୟ ମୈତ୍ରୀ କି ଭକ୍ତିର ପ୍ରଶ୍ନ ନାହିଁ । କାରଣ ଭକ୍ତି ଲାଗି ସେତେବେଳେ ସାମାଜିକ ବ୍ୟବସ୍ଥା ଆସିନାହିଁ । ତାହା ଆସିଛି ଶ୍ରେଣୀବିଭକ୍ତ ସମାଜରେ, ଚାତୁର୍ବର୍ଣ୍ଣ୍ୟ ବ୍ୟବସ୍ଥାର ସୃଷ୍ଟିରେ ।

ମଣିଷ ଉଚ୍ଚବର୍ଣ୍ଣ ବା ନୀଚବର୍ଣ୍ଣରେ ବିଭକ୍ତ ହେବାର ଅର୍ଥ ହେଲା, ଭଗବାନଙ୍କ ଦ୍ୱାରା କେତେକ ଲୋକ ବିଶେଷଭାବେ ଆଦୃତ ଓ ଉପକୃତ । ଅନ୍ୟ ପକ୍ଷରେ ସେମାନଙ୍କର ସେବକ ଭାବରେ ଆଉ ସବୁ ଚିର ଅଭିଶପ୍ତ ଓ ସଦା ଉପେକ୍ଷିତ । ତେଣୁ ଯେଉଁ ଭଗବାନଙ୍କ ଦୃଷ୍ଟି ଲୋକମାନଙ୍କ ପ୍ରତି ସମାନ ନୁହେଁ, ସେମାନେ କିପରି ବା ଭଗବାନଙ୍କୁ ସମାନ ଦୃଷ୍ଟିରେ ଦେଖିବେ ? ତେଣୁ ସେଠି ଉଚ୍ଚବର୍ଣ୍ଣ ଓ ନୀଚବର୍ଣ୍ଣ ମଧ୍ୟରେ ଶ୍ରଦ୍ଧା ଓ ସୁହୃଦୟତାର ପ୍ରଶ୍ନ ନାହିଁ ।

ଏହି ଉଦ୍ୟମ, ଭେଦଭାବ ଯେ ଉଚ୍ଚବର୍ଣ୍ଣଙ୍କ ପ୍ରତି ଘୋର ବିଦ୍ୱେଷ ଓ ସମାଜରେ ଭୟଙ୍କର ବିଶୃଙ୍ଖଳା ଓ ବୈରତାକୁ ଉଦ୍ରେକ କରିବ, ସେ ଦିଗରେ 'ଭଗବାନ' ବେଶ ସଚେତନ । ତେଣୁ ସେ ଏକ ଦିଗରେ ବର୍ଣ୍ଣାଶ୍ରମ ଦ୍ୱାରା ଲୋକଙ୍କୁ ଦାସତ୍ୱ-ବନ୍ଧନରେ ବାନ୍ଧିଲାବେଳେ, ଅନ୍ୟ ଦିଗରେ ଭକ୍ତି ମାର୍ଗ ଦ୍ୱାରା ତାଙ୍କ ଲାଗି ମୁକ୍ତିର ପଥ ଖୋଲିଦିଅନ୍ତି । ଗୀତାରେ ଚାତୁର୍ବର୍ଣ୍ଣ୍ୟ ସହିତ ଭକ୍ତିମାର୍ଗକୁ କେବଳ ରଖାଯାଇ ନାହିଁ, ତାକୁ ଏମିତି ସରଳ ସୁଗମ କରାଯାଇଛି, ଯେପରିକି ସମସ୍ତେ ସେ ପଥରେ ସ୍ୱତଃ ଅଗ୍ରସର ହେବେ । ଫରକ୍ ହେଉଛି, ଇହଲୋକରେ ଦାସତ୍ୱ-ବନ୍ଧନରେ ରହିଲେ କେବଳ ମୁକ୍ତି ମିଳିବ ପରଲୋକରେ । ମୋକ୍ଷପ୍ରାପ୍ତି କେବଳ ସମ୍ଭବ ଯଦି ମଣିଷ ଇହଲୋକରେ ତାର ଦାସତ୍ୱର କାର୍ଯ୍ୟକୁ ମୁକ୍ତିର ମାର୍ଗ ଭାବି ଆଗ୍ରହରେ କରେ, ସ୍ୱଧର୍ମ ପାଳନ କରେ ।

ତେଣୁ ଜଗନ୍ନାଥ ସମାଜର ପତନରେ, ଯେତେବେଳେ ସାମ୍ୟ ବଦଳରେ ବୈଷମ୍ୟ,ମୈତ୍ରୀ ବଦଳରେ ଈର୍ଷା, ପ୍ରୀତି ବଦଳରେ ପରାଙ୍ଗପୁଷ୍ଟତା, ଏବଂ ଭାତୃତ୍ୱ ବଦଳରେ ଭୟର ଉପକ୍ରମ ଘଟିଛି, ସେତେବେଳେ ଏକମାତ୍ର ଭକ୍ତି ହିଁ ସମାଜକୁ ଏକାଠି ବାନ୍ଧି ରଖିପାରେ । ଭକ୍ତି ହେଲା ଚାତୁର୍ବର୍ଣ୍ଣ ବିଷର ପ୍ରତିଷେଧକ । ଯେ କୌଣସି ସମାଜକୁ ବାନ୍ଧି ରଖିବାର ଉପାୟ ହେଉଛି ଭୟ ଓ ଭକ୍ତି । ଧର୍ମଭୟ ଓ ରାଜଭୟ । ଧର୍ମ ଭକ୍ତି (ଦେବତା ବ୍ରାହ୍ମଣ ) ଓ ରାଜଭକ୍ତି, ଏହା ଉଚ୍ଚବର୍ଣ୍ଣଙ୍କ ସହ ନୀଚବର୍ଣ୍ଣଙ୍କୁ , ରାଜା ସହିତ ପ୍ରଜାଙ୍କୁ ଏବଂ ମଣିଷକୁ ଭଗବାନଙ୍କ ସହିତ ନିବିଡ ବନ୍ଧନରେ ବାନ୍ଧିଦିଏ ।

ସେଥି ସହିତ ଜଗନ୍ନାଥ ସମାଜର ବିଲୟ ଓ ଚାତୁର୍ବର୍ଣ୍ଣ ସମାଜର ବିକାଶରେ ଗଢିଉଠିଛି ଏକ ନୂତନ ବ୍ୟବସ୍ଥା, — ରାଜ୍ୟବ୍ୟାପ୍ତି ଲାଗି ଯୁଦ୍ଧ , ଧନ କ୍ଷମତା ଓ ସେବା ପ୍ରାପ୍ତି ଲାଗି ଜାତିଭେଦ । ସ୍ୱଧର୍ମ ପାଳନ ଦ୍ୱାରା ଉଚ୍ଚବର୍ଣ୍ଣଙ୍କ ଲାଗି ଆଧିପତ୍ୟ ଓ ନୀଚବର୍ଣ୍ଣ ଲାଗି ନିଷ୍କାମ କର୍ମ ଏବଂ ପୁନର୍ଜନ୍ମର କ୍ରମାଗତ ପ୍ରବାହ ଭିତରେ ଗୂଢଜ୍ଞାନ ଦ୍ୱାରା ମୋକ୍ଷ ଲାଭ । ସର୍ବୋପରି ଅଟଳ ଭକ୍ତିଦ୍ୱାରା ଭଗବତ୍ ପ୍ରାପ୍ତି ହୋଇଛି ଗୀତାର ସେହି ଅମରବାଣୀ, ସମାଜର ଅମୋଘ ନିୟମ, ମାନବ ଜୀବନର ଅଦୃଶ୍ୟ ମୂଲ୍ୟବୋଧ, — ଯାହାକି ମାନବଜାତି ପ୍ରତି କୃଷ୍ଣ ଭଗବାନଙ୍କର ଚିରନ୍ତନ ଉଦ୍‌ବୋଧନ ।

ସେହି ସମସ୍ତ ଉଦ୍‌ବୋଧନ ଓ ଉଦ୍ୟମ ସତ୍ତ୍ୱେ ଜଗନ୍ନାଥଭାବ ସେହିପରି ବିଦ୍ୟମାନ ତାହା ଏବେବି ମନ୍ତ୍ର ଭାବେ ସର୍ବତ୍ର ଘୋଷିତ। ସାମ୍ୟ ମୈତ୍ରୀ ଓ ପ୍ରୀତି ବିନା ଜଗନ୍ନାଥ ଯେପରି ଜଗନ୍ନାଥ ନୁହନ୍ତି, ସେହିପରି ତାହା ବିନା ମଣିଷର କାମନା ଓ ଜୀବନର ବିକାଶ ମାନନୋଚିତ ନୁହେଁ ।

ତେବେ ଭକ୍ତର ଏକ ମାନବିକତା ଦିଗ ରହିଛି । ତାହା ନୀଚବର୍ଣ୍ଣ ପ୍ରତି ବ୍ରାହ୍ମଣ୍ୟବାଦର ବ୍ୟବହାର ବିରୋଧରେ ବିଶେଷକରି ମଧ୍ୟଯୁଗରେ ପ୍ରକାଶ ପାଏ । ଶ୍ରୀଚୈତନ୍ୟ ହେଲେ ତାର ଏକ ଦୃଷ୍ଟାନ୍ତ । '' ବାରଜାତି ତେରଗୋଲା , ବୈଷ୍ଣବ ହେଲେ ସବୁ ଗଲା । ''ତାହା ସେଇ ବେଦାନ୍ତ ଉପରେ ପର୍ଯ୍ୟବସିତ । ଯେଉଁ ଚାରିବର୍ଣ୍ଣ ଚାରି ଅଙ୍ଗରୁ ବାହାରିଲେ, ସେମମାନେ ସମସ୍ତେ ଏକ ବ୍ରହ୍ମରୁ ଜାତ । ସେମାନଙ୍କ ଆତ୍ମା ସମାନ, ସେ କ୍ଷେତ୍ରରେ ଜାତିଭେଦର ପ୍ରଶ୍ନ ନାହିଁ । କିନ୍ତୁ ଏହାର ମାନବତାବାଦୀ ବ୍ୟବହାର ଅତି ସୀମାବଦ୍ଧ । ତା ସାମାଜିକ ଧର୍ମୀୟ ବ୍ୟାପାରର ପରିସର ବାହାରକୁ ଯାଏ ନାହିଁ। ସେତିକିରେ ମାତ୍ର ସୀମିତ । ନୀଚବର୍ଣ୍ଣଙ୍କର ଅର୍ଥନୈତିକ ଶୋଷଣ ବା ରାଜନୈତିକ ଅତ୍ୟାଚାର କଥା ଉଠାଏ ନାହିଁ । ତାର କାରଣ କେବଳ ଐତିହାସିକ ନୁହେଁ, ଆଦର୍ଶଗତ । କାରଣ, ସଂସ୍କାରକମାନେ, ଭକ୍ତି ଆନ୍ଦୋଳନ ପ୍ରବର୍ତ୍ତକଗଣ ସେହି ବେଦାନ୍ତକୁ ହିଁ ନିଜର ଭିତ୍ତିକରି ଧରିଛନ୍ତି । ତା ପାଖରେ ଆତ୍ମସମର୍ପଣ କରିବା

ଫଳରେ , କିଛିଦିନ ପରେ ତାଙ୍କ ସଂସ୍କାର ତାର ନିଜତ୍ୱ ହରାଇ, ଗତାନୁଗତିକ ଧାରାରେ ମିଶିଯାଇଛି ।

## ଧର୍ମରୁ ମୁକ୍ତିରେ ଜଗନ୍ନାଥ ପ୍ରାପ୍ତି

ଜଗନ୍ନାଥ କ୍ଷେତ୍ରରେ ପ୍ରଥମ ଅବସ୍ଥାରେ ଭକ୍ତିର ପ୍ରଶ୍ନ ନାହିଁ । ସେଠି ରହିଛି ଆଦିମ/ ଗଣ/ଜ୍ଞାତି ସମାଜର ଆତ୍ମୀୟତା । ପରେ ଧର୍ମ ଓ ଦେବତା ଧାରଣା ଓ ଆସିଲା ଉତ୍ତାରୁ ଭକ୍ତିର ଭାବ ଆସିଛି । ତେଣୁ ଆତ୍ମୀୟତା ଓ ଭକ୍ତି, ଜଗନ୍ନାଥ ଏଇ ଦୁଇ ଭାବର ଅଧିକାରୀ, ଯାହାକି ଅନ୍ୟ କୌଣସି ଦେବତାଙ୍କ କ୍ଷେତ୍ରରେ ନାହିଁ ।

ଜଗନ୍ନାଥଙ୍କ ପ୍ରତି ଯେତେ ଭାବର ଆାରୋପ, ତାଙ୍କ ଉପରେ ଯେତେ ପ୍ରଲେପର ପ୍ରୟୋଗ, ତାଙ୍କ ଲାଗି ଯେତେ ପ୍ରକାର ଉପାସନା, ସେ ସବୁର ଏକମାତ୍ର ପ୍ରକାଶ ହେଉଛି ଧର୍ମ । ସେଇ ଧର୍ମର ମର୍ମକୁ ଉନ୍ମୁକ୍ତ ନ କଲାଯାଏ ଜଗନ୍ନାଥ ସଦା ଅସ୍ପଷ୍ଟ, ଅବୋଧ ଓ ଅନାତ୍ମୀୟ ହୋଇ ରହିବେ । ଅଥଚ ,ଜଗନ୍ନାଥ ହେଉଛନ୍ତି ମଣିଷର ସବୁଠାରୁ ଆପଣାର । କହିବାକୁ ଗଲେ ମାନବ ଜାତି ସହିତ ରକ୍ତର ସମ୍ପର୍କରେ ବନ୍ଧା । ଏକଇ 'ଆତ୍ମା'ର ଅଭିବ୍ୟକ୍ତି । ମଣିଷ ମାନବାତ୍ମାକୁ ଦେବାତ୍ମା ଦୃଷ୍ଟିରେ ଦେଖୁଥିବାଯାଏ ସେ କଦାପି ନିଜକୁ ଆବିଷ୍କାର କରି ନ ପାରେ । ଆଉ ସେହି ମାନବାତ୍ମାର ଆବିଷ୍କାରହିଁ ଜଗନ୍ନାଥଙ୍କ ଉପଲବ୍ଧି ।

ଲୋକ ନିଜର ସ୍ୱାର୍ଥଲାଗି ଜଗନ୍ନାଥଙ୍କୁ ଡାକେ, ନିଜର ମୁକ୍ତି ଲାଗି ତାଙ୍କୁ ଭକ୍ତି କରେ । ଏପରିକି ଭାବରେ ବିହ୍ୱଳ ହୋଇ ଆଖିରୁ ଲୁହ ଝରାଏ, କିନ୍ତୁ ତାଙ୍କୁ କେବେ ଆପଣାର କରିବାକୁ ଯାଏ ନାହିଁ । ଜଗନ୍ନାଥଙ୍କୁ ଆପଣାର କରିବା ହେଉଛି ସମଗ୍ର ମାନବଜାତିକୁ ଆପଣାର କରିନେବା । ତାର ଏକମାତ୍ର ମାର୍ଗ ହେଉଛି ମାନବ-ଜୀବନର ପ୍ରତ୍ୟେକ କ୍ଷେତ୍ରରେ ସେହି ଜଗନ୍ନାଥ-ଭାବ, ସାମ୍ୟ ମୈତ୍ରୀ ପ୍ରୀତିର ଅବାରିତ ପ୍ରବାହ ସଞ୍ଚାର କରିବା । ତାହା ସୃଷ୍ଟି କରିବା ଦିଗରେ ନିଜର ଜୀବନକୁ ଉତ୍ସର୍ଗକରି ସେହି ଜଗନ୍ନାଥ-ଭାବର ସ୍ରୋତରେ ଆପଣାକୁ ମିଳାଇଦେବ ।

ଯେତେଦିନ ଯାଏ ଧର୍ମର ପଟଳ ଆଖିରୁ ନ ଖୋଲିଛି, ସେତେଦିନ ଯାଏ ପ୍ରକୃତ ଜଗନ୍ନାଥଙ୍କୁ ଦେଖିବା ସମ୍ଭବ ନୁହେଁ । ପ୍ରକୃତ ଜଗନ୍ନାଥଙ୍କୁ ଉପଲବ୍ଧି କରିବାକୁ ହେଲେ ସ୍ମରଣ ରଖିବାକୁ ହେବ —

''ମଣିଷ ଧର୍ମକୁ ସୃଷ୍ଟିକରେ, ଧର୍ମ କେବେ ମଣିଷକୁ ସୃଷ୍ଟି କରେନାହିଁ । ଅନ୍ୟ କଥାରେ କହିଲେ, ଯେଉଁ ମଣିଷ ନିଜକୁ କେବେ ପାଇନାହିଁ କିମ୍ବା ନିଜକୁ ପୁଣି ଥରେ ହଜାଇ ଦେଇଛି,. ସେହି ମଣିଷର ଆତ୍ମଚେତନା ଓ ଅନୁଭୂତି ହେଉଛି ଧର୍ମ । କିନ୍ତୁ ମଣିଷର ଏକ ବିମୂର୍ତ୍ତ ସତ୍ତା ନୁହେଁ, ଯିଏ କି ବସିରହିଛି ପୃଥିବୀର ସୀମା ଆରପାରିରେ । ମଣିଷ ହେଉଛି ମଣିଷର ସଂସାର, ରାଷ୍ଟ୍ର ଓ ସମାଜର ସଂସାର ।

ଏହି ରାଷ୍ଟ୍ର, ଏହି ସମାଜ ଧର୍ମକୁ ଜାତ କରେ । ଅର୍ଥାତ୍ ଏକ ବିପରିତ ବିଶ୍ୱ ଚେତନା ଜାତ କରେ କାରଣ ଏହି ସମାଜ ଏକ ବିପରିତ ବିଶ୍ୱ । ଆଉ ଧର୍ମ ହେଉଛି ସେହିପରି ବିଶ୍ୱର ସାଧାରଣ ତତ୍ତ୍ୱ — ତାର ସର୍ବଜ୍ଞାନର ସଂକ୍ଷିପ୍ତ ସଂସ୍କରଣ । ତାର ସାଧାରଣ ବୋଧଗମ୍ୟ ତର୍କଶାସ୍ତ୍ର, ତାର ଅଧ୍ୟାତ୍ମିକ ସମ୍ମାନ, ତାର ଉତ୍ସାହ ଓ ଉଦ୍ଦୀପନା, ତାର ନୈତିକ ସ୍ୱୀକୃତି, ତାର ପବିତ୍ର ପୂର୍ଣ୍ଣତା, ଆଶ୍ୱାସନା ଓ ଯଥାର୍ଥତା ପାଇଁ ତାର ସର୍ବଜନୀନ କାରଣ । ଏହା ହେଉଛି ମାନବିକ ନିର୍ଯ୍ୟାସର ଏକ ଉଦ୍ଭଟ ଉପଲବ୍ଧି । କାରଣ ମାନବିକ ନିର୍ଯ୍ୟାସର କୌଣସି ପ୍ରକୃତ ବାସ୍ତବତା ନାହିଁ । ତେଣୁ ଧର୍ମ ବିରୋଧରେ ସଂଗ୍ରାମ ହେଉଛି ପରୋକ୍ଷରେ ଅନ୍ୟ ବିଶ୍ୱ ବିରୋଧରେ ସଂଗ୍ରାମ, ଯେଉଁ ବିଶ୍ୱର ଆତ୍ମିକ ସୁରଭି ହେଉଛି ଧର୍ମ ।

''ତେଣୁ ଧର୍ମର ଦୁଃଖ ହେଉଛି ଏକ ସମୟରେ ବାସ୍ତବ ଦୁଃଖର ଅଭିବ୍ୟକ୍ତି । ବାସ୍ତବ ଦୁଃଖ ବିରୋଧରେ ପ୍ରତିବାଦ । ଧର୍ମ ହେଉଛି ନିର୍ଯ୍ୟାତିତ ପ୍ରାଣୀର ଦୀର୍ଘଶ୍ୱାସ । ଏକ ହୃଦୟହୀନ ଦୁନିଆର ହୃଦୟ, ଠିକ୍ ଯେପରି ଧର୍ମ ହେଉଛି ଏକ ଆତ୍ମାହୀନ ପରିସ୍ଥିତିର ଆତ୍ମା । ଧର୍ମ ହେଉଛି ଲୋକଙ୍କର ଅଫିମ ।

''ଧର୍ମ ଏକ ଅଳୀକ, ମାୟାମୟ ଆନନ୍ଦ । ତେଣୁ ମଣିଷର ପ୍ରକୃତ ଆନନ୍ଦ ପାଇଁ ଧର୍ମର ଅବସାନ ପ୍ରୟୋଜନ । ନିଜର ଅବସ୍ଥା ସମ୍ପର୍କରେ ଏହି ମାୟାମୋହକୁ ପରିତ୍ୟାଗ କରିବାର ଦାବୀ ହେଉଛି, ଯେଉଁ ଅବସ୍ଥା ମାୟା ମୋହକୁ ଆବଶ୍ୟକ ପରିତ୍ୟାଗ କରିବାର ଦାବୀ । ସୁତରାଂ ଧର୍ମର ସମାଲୋଚନା ହେଉଛି ସୂକ୍ଷ୍ମରେ ବେଦନା ଉପତ୍ୟକାର ସମାଲୋଚନା, ଆଉ ସେହି ଉପତ୍ୟକାର ଜ୍ୟୋତିବଳୟ ହେଉଛି ଧର୍ମ ।

''.......ଧର୍ମର ସମାଲୋଚନା ଲୋକକୁ ମୋହମୁକ୍ତ କରିଦିଏ, ଯାହା ଫଳରେ ମଣିଷ ମୋହମୁକ୍ତ ମଣିଷ ଭଳି, ପ୍ରଜ୍ଞାବାନ ମଣିଷ ଭଳି ଚିନ୍ତା କରେ, ନିଜର ବାସ୍ତବତାକୁ ଗଢ଼େ । ତାହାହେଲା ମଣିଷ ନିଜ ଚତୁର୍ଦ୍ଦିଗରେ ପ୍ରଦକ୍ଷିଣ କରିପାରେ, ଅର୍ଥାତ୍ ତାର ପ୍ରକୃତ ସୂର୍ଯ୍ୟର ଚତୁର୍ଦ୍ଦିଗରେ ପ୍ରଦକ୍ଷିଣ କରିପାରେ । ଧର୍ମ କେବଳ ଏକ ଅଳୀକ ସୂର୍ଯ୍ୟ, ଯିଏ ମଣିଷର ଚତୁର୍ଦ୍ଦିଗରେ ଘୂରେ, ଯେତେଦିନ ପର୍ଯ୍ୟନ୍ତ ମଣିଷ ନିଜ ଚତୁର୍ଦ୍ଦିଗରେ ଘୂରି ଶିଖେ ନାହିଁ ।

''ସୁତରାଂ ସତ୍ୟ ଆରପାରିର ସଂସାର ଥରେ ଉଭେଇଯିବା ପରେ ଇତିହାସର କାମ ହେଉଛି ଏହି ସଂସାରର ସତ୍ୟକୁ ପ୍ରତିଷ୍ଠା କରିବା । ଯେଉଁ ଦର୍ଶନ ଇତିହାସର ସେବକ, ସେହି ଦର୍ଶନର ଆଶୁ କର୍ତ୍ତବ୍ୟ ହେଉଛି ସାମାଜିକ ଆତ୍ମ-ବିଚ୍ୟୁତିର ଧର୍ମଗତ ମୁଖା ଖୋଲିଦେବା । ଏହିପରି ଭାବରେ ସ୍ୱର୍ଗର ସମାଲୋଚନା ମର୍ତ୍ତ୍ୟର ସମାଲୋଚନାରେ ପରିଣତ ହୁଏ । ଧର୍ମର ସମାଲୋଚନା ଅଧିକାରର

ସମାଲୋଚନାରେ ପରିଣତ ହୁଏ ଏବଂ ଧର୍ମଶାସ୍ତ୍ରର ସମାଲୋଚନା ରାଜନୀତିର ସମାଲୋଚନାରେ ପରିଣତ ହୁଏ ।''(କାର୍ଲମାର୍କସ୍)

ମାର୍କସ୍‌ଙ୍କ ଭାଷାରେ ଧର୍ମ ହେଲା ''ଏକ ବିପରୀତ ବିଶ୍ୱ ଚେତନା''। ଏହାର ଫଳରେ ମଣିଷ ସବୁଜିନିଷକୁ ଓଲଟା ଦେଖେ, ବିପରିତ ଭାବେ ଚିନ୍ତାକରେ । ଜଗତକୁ ମାୟା, ମାୟାକୁ ଜଗତ ବୋଲି ଭାବେ । ଇହଲୋକରେ ମୁକ୍ତିଛାଡ଼ି ପରଲୋକରେ ମୋକ୍ଷ ଖୋଜେ । ଇହଲୋକରେ ଦୁଃଖ ନିର୍ଯ୍ୟାତନାକୁ ଶ୍ରେଣୀସମାଜର ଶୋଷଣର ଫଳଭାବେ ନ ଦେଖି ତାକୁ ପୂର୍ବଜନ୍ମର କର୍ମଫଳ ବା ଅଦୃଷ୍ଟର ଲିଖନ ବୋଲି ବିଚାରେ । ଧର୍ମ ମଣିଷକୁ ମୋହଗ୍ରସ୍ତ ଓ ବିମୂଢ଼ କରିଦିଏ, ଦୁଃଖକଷ୍ଟକୁ ଭୂଲିବା ପାଇଁ ଲୋକ ନିଶା ଖାଇଲା ଭଳି ସେ ଧର୍ମକୁ ଆଶ୍ରା କରେ, ଅଫିମ ଖାଇଲା ପରି ଘାରି ହୁଏ । ସେ ନିଜର ଦୁଃଖର କାରଣ ନ ବୁଝି ଯେଉଁମାନେ ତାର ଦୁଃଖର ପ୍ରକୃତ କାରଣ, ସେହିମାନଙ୍କୁ ଓଲଟି ନିଜର ତ୍ରାଣକର୍ତ୍ତା ବୋଲି ମନେକରେ । ଏହାହିଁ ସବୁ ଧର୍ମର ରୀତି ହୋଇ ଆସଛି । କାରଣ ଶ୍ରେଣୀବିଭକ୍ତ ସମାଜରେ ଉତ୍ପାଦନକାରୀର ଉତ୍ପାଦିତ ଜିନିଷକୁ ଅନ୍ୟ ଜଣେ ହରଣ କରିବାରେ ତାର ମର୍ମକୁ ହରଣକରେ । କାରଣ ମଣିଷର ଶ୍ରମ ବା ତାର ମାନବିକ ମର୍ମ୍ମ ସେଠାରେ ରୂପାୟିତ ହୋଇଥାଏ । ଶ୍ରମର ଅପହରଣରେ ତାହାଠାରୁ ସେହି ମର୍ମ୍ମ ଅପହୃତ ହୁଏ । ଯାହାକି ତାର ନିଜର ନ ହୋଇ ତା ହୁଏ ତାର ମାଲିକର । ଅର୍ଥାତ୍ ତାହା ଓଲଟିଯାଏ । ମାଲିକ ହାତରେ ପୁଞ୍ଜିଭୂତ ହୋଇ ଓଲଟି ତା ବିରୋଧରେ ଠିଆହୁଏ । ସେ ମଧ ତାକୁ ମାଲିକର ବୋଲି ମନେକରେ । ନିଜର ସୃଷ୍ଟିକୁ ଅନ୍ୟର ସୃଷ୍ଟି ବୋଲି ମନେ କରି ସେ ତାହାରି ପଛେ ଧାଏଁ । ତେଣୁ ସେ ସବୁକୁ ଓଲଟଭାବେ ଦେଖେ । ଏହାକୁହିଁ ମାର୍କସ୍ କହିଛନ୍ତି ''ବିପରିତ ବିଶ୍ୱ ଚେତନା ।''

ମାର୍କସ୍‌ଙ୍କ ଉପରୋକ୍ତ ଉକ୍ତିର ଯଥାର୍ଥତା ଜଗନ୍ନାଥଙ୍କ କ୍ଷେତ୍ରରେ ପରିସ୍ଫୁଟ । ଯୁଗ ଯୁଗ ହେଲା ଜଗନ୍ନାଥଙ୍କ ଦେହରେ ଜମାଟ ବାନ୍ଧିଥିବା ଧର୍ମ, ଧାରଣା, ମାୟା, ମୋହ ଓ ଅନ୍ଧବିଶ୍ୱାସର ବୋଳକୁ ଧୋଇ ସଫା କରିଦିଅ, ସେଠି ଦେଖିବ ପ୍ରକୃତ ଜଗନ୍ନାଥଙ୍କୁ, ଯାହାଙ୍କଠାରେ ଧର୍ମର ଲେଶମାତ୍ର ସ୍ପର୍ଶ ନାହିଁ । ସେଠି ସନ୍ଧାନ ପାଇବ ମାନବିକ ପରିତୃପ୍ତିର ଚିର ପ୍ରବାହିତ ନିର୍ଝରର, — ଯେଉଁଠୁକି ସାରା ବିଶ୍ୱବ୍ୟାପୀ ସମସ୍ତ ମାନବଜାତି ଲାଗି ସାମ୍ୟ, ଐକ୍ୟ, ପ୍ରୀତିର ସଦା ବର୍ଦ୍ଧିଷ୍ଣୁ ଉତ୍ସର ଉଦ୍ଭବ ।

ଜଗନ୍ନାଥଙ୍କୁ ବୁଝିବାର ପ୍ରଥମ ସର୍ତ୍ତ ହେଲା ଜଗନ୍ନାଥ -ଭାବ ଓ ଜଗନ୍ନାଥ ଧର୍ମ, ଦୁହିଁଙ୍କୁ ଅଲଗା କରି ଦେଖିବା । ସେ ଦୁଇଟି କେବଳ ଦୁଇଟି ସ୍ୱତନ୍ତ୍ର ବିଷୟ ନୁହନ୍ତି, ଗୁଣାତ୍ମକଭାବେ ପରସ୍ପରର ବିପରୀତ । ଏ ପର୍ଯ୍ୟନ୍ତ ସମସ୍ତେ ଜଗନ୍ନାଥଙ୍କୁ କେବଳ

ଧର୍ମ ଭାବରେ ହିଁ ଦେଖି ଆସିଛନ୍ତି, ସେଇ ଭାବରେ ହିଁ ଡାକି ଆସିଛନ୍ତି ଏବଂ ସେଇ ଧର୍ମ ଭାବରେ ପାଇବା ପାଇଁ ତାଙ୍କ ପଛରେ ଧାଇଁଛନ୍ତି । ତେଣୁ ସେ ''ନିର୍ଯ୍ୟାତିତ ପ୍ରାଣର ଦୀର୍ଘଶ୍ୱାସ'' ହୋଇ ରହିଛନ୍ତି । ସେ ଧର୍ମ ହୋଇ ରହିଥିବା ପର୍ଯ୍ୟନ୍ତ ଜଗନ୍ନାଥ ସେହିପରି ''ବାସ୍ତବ ଦୁଃଖର ଅଭିବ୍ୟକ୍ତି'' ହୋଇ ରହିଥିବେ ।

କିନ୍ତୁ ଜଗନ୍ନାଥ- ଭାବ ହେଉଛି ସାମ୍ୟ ମୈତ୍ରୀ ପ୍ରୀତି । ତାହା ନିର୍ଯ୍ୟାତିତ ପ୍ରାଣର ଦୀର୍ଘଶ୍ୱାସ କି ଦୁଃଖର ଅଭିବ୍ୟକ୍ତି ନୁହେଁ, ତାହା ହେଉଛି ସେ ସବୁର ଚିର ଅବସାନ । ଧର୍ମରେ ଜଗନ୍ନାଥଙ୍କୁ ଡକାଯାଏ କାମନାର ପୂରଣ ପାଇଁ, ତାଙ୍କର ଆଶୀର୍ବାଦ ଭିକ୍ଷା କରାଯାଏ ନିଜର ଅଭୀଷ୍ଟ ସାଧନ ଲାଗି । ମଣିଷ ନିଜେ ନୀରବ ନିଶ୍ଚଳ ରହି ତାଙ୍କୁ ଟଳାଇବାର ଚେଷ୍ଟା କରେ, — ଯାହାଙ୍କୁ ସେ ନିଜେ ସଦା ପଙ୍ଗୁ, ଅଚଳ ଓ ନିରାକାର କରି ରଖିଛି ।

କିନ୍ତୁ ଜଗନ୍ନାଥ-ଭାବ ହେଉଛି ସେହି ସାମ୍ୟ ମୈତ୍ରୀ ପ୍ରୀତିର ଆହ୍ୱାନ । ସେ ଦିଗରେ ଗତିର ଇଙ୍ଗିତ, କାର୍ଯ୍ୟର ପ୍ରେରଣା ଆଉ ଜୀବନର ଚିରନ୍ତନ ଅଭିବ୍ୟକ୍ତିର ସଂକେତ ।

ସେଥିଲାଗି ଜଗନ୍ନାଥ ନିକଟରେ ଆକୁଳ ପ୍ରାର୍ଥନା ନୁହେଁ, — ଦରକାର ନିଜର ମାନବିକ କର୍ତ୍ତବ୍ୟର ଅପରିହାର୍ଯ୍ୟ ସାଧନା ।

ସେଥିଲାଗି କୌଣସି ଅଦୃଷ୍ଟ ଶକ୍ତିର ଆଶୀର୍ବାଦ ନୁହେଁ, — ଦରକାର ଆପଣାର ଦୃଢ଼ ଆତ୍ମବିଶ୍ୱାସ ।

ସେଥିଲାଗି କୌଣସି ଅନ୍ଧଭାବର ଆନୁଗତ୍ୟ ନୁହେଁ, — ଦରକାର ଉନ୍ମୀଳିତ ଚିତ୍ତରେ ବିଜ୍ଞାନର ଅବିରାମ ଅନୁସନ୍ଧିତ୍ସା ।

ସେଥିଲାଗି ଜଗନ୍ନାଥ ଧର୍ମର ଗତାନୁଗତିକ ଅନୁସରଣ ନୁହେଁ, — ଦରକାର ଜଗନ୍ନାଥ - ଭାବର ନିରବଚ୍ଛିନ୍ନ ବିସ୍ଫୋରଣ ।



# ଚତୁର୍ଦ୍ଦଶ ପର୍ବ

## ଐତିହ୍ୟର ଇତିହାସରେ

ଦଶଅବତାର ଭିତରେ ରାମ ଏକ ଅବତାର । ସେଥିପାଇଁ ଜଗନ୍ନାଥ ରାମବେଶ ଧାରଣ କରିବା ସ୍ୱାଭାବିକ । ଭଗବାନ କୃଷ୍ଣଙ୍କ ଲୀଳାର ପ୍ରାୟ ପ୍ରତ୍ୟେକଟି ବିଷୟ ଜଗନ୍ନାଥ ମନ୍ଦିରରେ (ଯଥା ଝୁଲଣ, ହରିଜନ୍ମ, ନନ୍ଦୋତ୍ସବ ଆଦି) ପାଳିତ ହେଲା ଭଳି ରାମଙ୍କ ଜୀବନ ସେଠାରେ ପ୍ରତିଫଳିତ ହୁଏ । ବର୍ତ୍ତମାନର ସମାଜ ଲାଗି ପୂର୍ବର ସେହି ବିଶୁଦ୍ଧ ନିର୍ମଳ ଜଗନ୍ନାଥ ଆଉ ଯଥାର୍ଥ ନୁହନ୍ତି । ଯେତେ ଯାହା ହେଲେ ମଧ ସେ ତାଙ୍କର ସାମ୍ୟ ମୈତ୍ରୀ ପ୍ରୀତିକୁ ଛାଡ଼ନ୍ତି ନାହିଁ । ଅଥଚ, ସେହି ନୂତନ ଜାତି ବିଭକ୍ତ, ଶ୍ରେଣୀବିଭକ୍ତ ସମାଜର ପ୍ରସାର ଓ ବ୍ୟକ୍ତିଗତ ସମ୍ପତ୍ତିର ବିକାଶ ଲାଗି ଠିକ୍ ତାର ଓଲଟା ଜିନିଷ ଦରକାର । ତେଣୁ ଜଗନ୍ନାଥଙ୍କ ଭିତରେ ଏପରି ଦେବତାଙ୍କ ଆବିର୍ଭାବ ଦରକାର, ଯିଏ କି ସେହି ସମାଜର ଆବଶ୍ୟକତା ପୂରଣ କରିବ, ସେହି ପ୍ରକାର ବିପରୀତ ଭାବ ଓ ଆଦର୍ଶ ଦ୍ୱାରା ଲୋକଙ୍କୁ ଅଭିଭୂତ କରିବ । ସେହି ଦେବତାଙ୍କ ଲୀଳାଖେଳା ଦ୍ୱାରା ଲୋକ ବିହ୍ୱଳିତ ହୋଇଉଠିବେ । ସେଥିରେ ପ୍ରଭାବିତ ହୋଇ ତଦ୍ୱାରା ପରିଚାଳିତ ହେବେ । ସେହିପରି ଦେବତାଙ୍କ ମାହାତ୍ମ୍ୟ ପ୍ରଚାର ଓ ଲୀଳାର ପ୍ରହସନ ଚାଲିଲା । ଜଗନ୍ନାଥଙ୍କର ମୌଳିକ ଭାବ ପଦେ ପଦେ ପ୍ରତିହତ ହେବାରେ ଲାଗିଲା । ସେହି ନୂତନ ଅସାମ୍ୟ ସମାଜର ନୀତି, ମୂଲ୍ୟବୋଧ ଓ ଆଦର୍ଶ ଅଲକ୍ଷ୍ୟରେ ମଣିଷ ଜୀବନର ଚ଼ରମ ଲକ୍ଷ୍ୟରେ ପରିଣତ ହେଲା । ଏବେ ଜଗନ୍ନାଥ ରାମକୃଷ୍ଣ ହୋଇ ତାଙ୍କର ଲୀଳା ଖେଳା କରିବାରେ ଲାଗିଲେ ।

ରାମକୃଷ୍ଣଙ୍କ ଜୀବନ ଆଦର୍ଶ ଜଗନ୍ନାଥ-ଭାବ ଠାରୁ ସମ୍ପୂର୍ଣ୍ଣ ଭିନ୍ନ । ସେମାନଙ୍କ ମଧ୍ୟରେ କୌଣସି ପ୍ରକାର ସାମଞ୍ଜସ୍ୟ ନାହିଁ । ସେମାନେ ଦୁଇ ପରସ୍ପର ବିପରୀତ ଭାବର ଅଧିକାରୀ । ଜଗନ୍ନାଥ ଓ ରାମକୃଷ୍ଣଙ୍କ ଜୀବନ ଆଦର୍ଶ ପରସ୍ପର ବିରୋଧୀ ।

ସେମାନଙ୍କ କାର୍ଯ୍ୟର ନିର୍ଦ୍ଦେଶ ପରସ୍ପର ବିରୋଧରେ ଉଦ୍ଦିଷ୍ଟ । ଏକମାତ୍ର ହିନ୍ଦୁଧର୍ମହିଁ ସେମାନଙ୍କ ଭିତରେ ମିଳନର ସେତୁ ।

ରାମଙ୍କ ଜନ୍ମ ଆର୍ଯ୍ୟ ଜାତିରେ , କ୍ଷତ୍ରିୟ କୂଳରେ, ରାଜବଂଶରେ । ଜଗନ୍ନାଥଙ୍କ ଆବିର୍ଭାବ କିନ୍ତୁ ଅନାର୍ଯ୍ୟ ସମାଜରେ, ଜାତିହୀନ ବର୍ଣ୍ଣହୀନ ରାଜା ପ୍ରଜାହୀନ ସାମ୍ୟ ସମାଜରେ । ଜଣେ ଦେହଧାରୀ ''ନର ଶ୍ରେଷ୍ଠ'' ହେଲାବେଳେ ଅନ୍ୟ ଜଣେ ପ୍ରାକୃତିକ ଭାବର ନିଦର୍ଶକ । ରାମ ଆର୍ଯ୍ୟ ମୁନିଋଷିଙ୍କ ନିରାପତ୍ତା ଲାଗି ବିଶ୍ୱାମିତ୍ରଙ୍କ ଅନୁରୋଧରେ ଅନାର୍ଯ୍ୟ ରାକ୍ଷସଙ୍କ ନିଧନରେ ବ୍ୟସ୍ତ । ବର୍ଣ୍ଣାଶ୍ରମ ଧର୍ମ୍ମ ରକ୍ଷାକରିବାକୁ ଯାଇ ଶୁଦ୍ରର ମୁଣ୍ଡ କାଟି ପାରନ୍ତି । ଆଉ ସ୍ତ୍ରୀକୁ ନିଜ ସମ୍ପତ୍ତି ମନେକରି ତାକୁ ନିଆଁରେ ପୋଡିବାକୁ କହନ୍ତି, ଗର୍ଭାବସ୍ଥାରେ ତାକୁ ବଣରେ ଫିଙ୍ଗିଦେଇ ପାରନ୍ତି । କିନ୍ତୁ ଜଗନ୍ନାଥଙ୍କ ସାମ୍ୟ - ସମାଜରେ ନାରୀ ପୁରୁଷ କେବଳ ସମାନ ନୁହନ୍ତି, ସେଠି ସାମ୍ୟ ମୈତ୍ରୀ ପ୍ରୀତିର ପ୍ରଚଳନ ହେତୁ ସେପରି ଧାରଣା ମଣିଷର କଳ୍ପନାତୀତ । ମଣିଷ ଜାଣେ ନାହିଁ ସେଗୁଡାକ କ'ଣ ?

ତେଣୁ ଜଗନ୍ନାଥ ସାମ୍ୟ ମୈତ୍ରୀ ପ୍ରୀତିର ପ୍ରତୀକ, ତାର ଅନୁରୂପ ମତ ଓ କାର୍ଯ୍ୟର ଇଙ୍ଗିତ ହେଲାବେଳେ, ରାମ ହେଲେ ଅନ୍ୟ ଦିଗରେ ବର୍ଣ୍ଣାଶ୍ରମ ଧର୍ମ, ଜାତିବର୍ଣ୍ଣ - ଭେଦ ଓ ଶ୍ରେଣୀଭେଦର, — ସାମାଜିକ ଅସାମ୍ୟର ସଙ୍କେତ । ତାର ଅନୁରୂପ ମତ ଓ କାର୍ଯ୍ୟର ଇଙ୍ଗିତ । ଗୋଟିଏଠି ମଣିଷ ଭାଇ ଭାଇର ସମ୍ପର୍କ ଭିତରେ ଚାଲିଲା ବେଳେ, ଅନ୍ୟଠି ସେଇ ମଣିଷ ହୁଏ ବିଭେଦଗ୍ରସ୍ତ । ତାର ସମ୍ପର୍କ ହୁଏ ଉଚ୍ଚ ନୀଚ, ସ୍ପୃଶ୍ୟ ଅସ୍ପୃଶ୍ୟ, ଖାଦ୍ୟ ଖାଦକର ସମ୍ପର୍କ ।

ରାମ-ଭାବ ଇଙ୍ଗିତର ଦୁଃଖଦାୟକ ପରିଣତି ହେଲେ ସ୍ୱୟଂ ଗାନ୍ଧିଜୀ । 'ରଘୁପତି ରାଘବ' ଯାହାଙ୍କ ପାଇଁ ପ୍ରାଣରୁ ବଳି ପ୍ରିୟ, ପ୍ରାଣର ଶେଷ ମୁହୂର୍ତ୍ତରେ 'ହା ରାମ' ଯାହାଙ୍କ ମୁହଁରୁ ସ୍ୱତଃ ବାହାରି ଆସେ, ତାଙ୍କୁ ପୁଣି ହତ୍ୟା କରନ୍ତି ସେହି ଲୋକେ, ଯିଏ ଭାରତରେ ରାମଭକ୍ତିର ଏକଚାଟିଆ ଅଧିକାର ଦାବୀ କରନ୍ତି । ଗାନ୍ଧିଜୀଙ୍କ ଏକମାତ୍ର ଅପରାଧ, ସେ ଚାହିଁଥିଲେ ଜାତି ବର୍ଣ୍ଣ ଧର୍ମ ନିର୍ବିଶେଷରେ ସମସ୍ତଙ୍କ ପାଇଁ ଶାନ୍ତି, ସବୁରି ସାଇଁ ସାମାଜିକ ନ୍ୟାୟ ଓ ପରସ୍ପର ମଧ୍ୟରେ ଭ୍ରାତୃତ୍ୱ ସମ୍ପର୍କ । ରାମଙ୍କ ନାମରେ ଏବେ ରଥ ଚାଳନା, ଇଟା ସଂଗ୍ରହ, ମସ୍‌ଜିଦ୍ ଭାଙ୍ଗି ମନ୍ଦିର ନିର୍ମାଣ ଓ ଭୋଟ ପ୍ରଚାରର ଉଦ୍ଦେଶ୍ୟ ଖୁବ୍ ସ୍ପଷ୍ଟ । ରାମ ଆଜି ଧର୍ମ ନୁହନ୍ତି, ସେ ଏକ ରାଜନୈତିକ ଅସ୍ତ୍ର ଭାବେ ବ୍ୟବହୃତ ।

ରାମାୟଣ ଆଲୋଚନାରେ ବାଲ୍ମୀକିଙ୍କୁ ଆଦିକବି ଓ ରାମାୟଣକୁ ଆଦି କାବ୍ୟ କୁହାଯାଇଥାଏ । କ୍ରୌଞ୍ଚମିଥୁନର ବଧରେ ବାଲ୍ମୀକିଙ୍କ ମୁଖରୁ ସ୍ୱତଃସ୍ପୂର୍ତ୍ତଭାବେ ନିଃସୃତ, ''ମା ନିଷାଦ'' ଶ୍ଳୋକରୁ ସବୁର ଆରମ୍ଭ ବୋଲି କୁହାଯାଏ । ନାରଦଙ୍କଠାରୁ ରାମ ଚରିତ ଶୁଣି, ବ୍ରହ୍ମାଙ୍କ ଆଦେଶ ପାଇ ସେହି ଅନୁସାରେ ବାଲ୍ମୀକି ରାମ ଚରିତ ରଚନା କଲେ । ଏହା ଯଦି ସତ୍ୟ ହୁଏ, ବୁଝିବାକୁ ହେବ ତାହା ଆଗରୁ କୌଣସି

କବି ନ ଥିଲେ କି କାବ୍ୟ ନାହିଁ । ସେଇଠୁ ଆରମ୍ଭ ହେଲା ଭାରତୀୟ ସାହିତ୍ୟ, ଶାସ୍ତ୍ର ସଂସ୍କୃତି ଇତ୍ୟାଦି । ତାହା ହେଲେ ପୂର୍ବରୁ ରହିଥିବା ବେଦ, ଉପନିଷଦ, ଅନ୍ୟାନ୍ୟ ଶାସ୍ତ୍ର ଓ ତାର ସ୍ରଷ୍ଟାମାନଙ୍କ ପ୍ରଶ୍ନ ଉଠୁନାହିଁ । ତାଙ୍କୁ ପୂରାପୂରି ବାଦ ଦେବାକୁ ହେବ । ତାହା ନ ହେଲେ ରାମାୟଣକୁ ପଛକୁ ଆଣିବାକୁ ପଡ଼ିବ । ରାମାୟଣକୁ ଆଗ ଧରିଲେ ଭାରତୀୟ ସଭ୍ୟତା ଓ ଇତିହାସର କେତେକ ଯୁଗକୁ ପୂରାପୂରି ପୋଛିଦେବାକୁ ପଡ଼ିବ । ପ୍ରକୃତରେ ବାଲ୍ମୀକି ଅବା ରାମାୟଣ - କେହି ହେଲେ ଆଦି ନୁହନ୍ତି ।

ରାମାୟଣ ପୂର୍ବରୁ ବହୁ ରାମକଥା ଅଛି । ସାଧାରଣତଃ ଚାରଣ କବିମାନେ ତାକୁ ଗାଇ ଗାଇ ବୁଲୁଥିଲେ । ''ରାମକଥା''ର ''ପ୍ରାକ୍ ଇତିହାସରୁ'' ଜଣାଯାଏ, ସଂସ୍କୃତ ସାହିତ୍ୟରେ — ମହାଭାରତର ଶାନ୍ତିପର୍ବ, ଦ୍ରୋଣପର୍ବଓ ବନପର୍ବରେ ଏବଂ ହରିବଂଶ ବିଷ୍ଣୁପୁରାଣରେ ରାମକଥା ରହିଛି । କାବ୍ୟ ଭିତରେ କାଳିଦାସଙ୍କ ରଘୁବଂଶ, ଅଶ୍ୱଘୋଷଙ୍କ ବୁଦ୍ଧଚରିତ, ଭଟ୍ଟିକାବ୍ୟ ଆଦିରେ ରାମ ଚରିତ ରହିଛି । ଏହାସବୁ ପାଲି ଭାଷାରେ, ବୌଦ୍ଧ ଜାତକରେ,ଜୈନ କବିଙ୍କ ଲେଖାରେ ମଧ ଦେଖାଯାଏ । ତା'ପରେ ଭାରତ ବାହାରେ ତିବ୍ବତ୍, କାମ୍ବୋଡ଼ିଆ, ମାଲୟ, ଫିଲିପାଇନ, ଇଣ୍ଡୋନେସିଆ ଆଦି ବହୁ ଦେଶରେ ରାମକଥା ପ୍ରଚଳିତ । ଏସବୁ ଏବର ପ୍ରଚଳିତ ରାମାୟଣ ସହିତ ମିଶନ୍ତି ନାହିଁ । ସେମାନଙ୍କ ନିଜ ଭିତରେ ବି ବହୁତ ଅମେଳ ରହିଛି । ଦୃଷ୍ଟାନ୍ତ ସ୍ୱରୂପ ବୌଦ୍ଧ ସାହିତ୍ୟରେ ରାମକଥାରେ ରାମ ହେଲେ ବୋଧିସତ୍ତ୍ୱ । ପ୍ରଥମ ଓ ଦ୍ୱିତୀୟ ଶତାବ୍ଦୀରେ ଲିଖିତ ଅଶ୍ୱଯୋଦ୍ଧଙ୍କ ବୁଦ୍ଧ ଚରିତରେ ଦଶରଥଙ୍କ ରାଜଧାନୀ ଅଯୋଧ୍ୟା ନୁହେଁ, ବାରାଣସୀ । ସୀତା ଓ ରାମ ଭାଇ ଭଉଣୀ । ସେମିତି ଚତୁର୍ଥ ଓ ପଞ୍ଚମ ଶତାବ୍ଦୀରୁ ଏକାଦଶ ଶତାବ୍ଦୀ ମଧ୍ୟରେ ରଚିତ ଜୈନ ରାମକଥାରେ ନାମ, ଘଟଣା ଓ ବର୍ଣ୍ଣନା ଆଦି ନେଇ ବହୁ ଅମେଳ ରହିଛି । ଜୈନ ସାହିତ୍ୟରେ ଲକ୍ଷ୍ମଣ ହେଲେ ମୁଖ୍ୟ ନାୟକ, ସେ ରାବଣକୁ ମାରନ୍ତି । ସେମିତି ହରିବଂଶ ରାମକଥାରେ ତାଡ଼କା, ସୀତା ବିବାହ ଓ ରାବଣର ସୀତାହରଣ ଆଦିର ଉଲ୍ଲେଖ ନାହିଁ । ବିଷ୍ଣୁପୁରାଣରେ ରାମ ହେଲେ ବିଷ୍ଣୁଙ୍କ ଅବତାର । ମହାଭାତରରେ ଅଛି, ଅଭିମନ୍ୟୁ ବଧ ପରେ ଯୁଧିଷ୍ଠିରଙ୍କୁ ସାନ୍ତ୍ୱନା ଦେବା ପାଇଁ କୃଷ୍ଣ ଷୋଳଜଣ ବିଖ୍ୟାତ ରାଜାଙ୍କ କାହାଣୀ କହନ୍ତି । ସେମାନଙ୍କ ଭିତରେ ରାମ ହେଲେ ଜଣେ ରାଜା, ସେ କୌଣସି ଅବତାର ନୁହନ୍ତି । ତାଙ୍କର କହିବାର ଉଦ୍ଦେଶ୍ୟ ହେଲା, ରାମଙ୍କ ଭଳି ଜଣେ ଅପ୍ରତିଦ୍ୱନ୍ଦୀ ପରାକ୍ରମୀ ରାଜା ଯଦି ମରିପାରନ୍ତି, ତେବେ ତୁମର ପୁତ୍ର ଲାଗି ଶୋକ କରିବା ଅନୁଚିତ ।

ଉପରେ ଯେତେଗୁଡ଼ିଏ କାବ୍ୟ ଓ ପୁରାଣ କଥା କୁହାଗଲା, ସେଥିରେ କୌଣସି ଗୋଟିକରେ ରାମାୟଣର ପ୍ରଣେତା ବାଲ୍ମୀକି ବୋଲି ଉଲ୍ଲେଖ ନାହିଁ । କାଳିଦାସ ରଘୁବଂଶ ଆରମ୍ଭରେ କହି ଦେଇଛନ୍ତି , ଅନେକ କବି ଇକ୍ଷ୍ୱାକୁ ବଂଶର ଗୁଣକୀର୍ତ୍ତନ କରିଛନ୍ତି । ବହୁ ତତ୍ତ୍ୱଦର୍ଶୀ ଋଷି ରାମକଥାରେ ରାମ ଚରିତ୍ର ବର୍ଣ୍ଣନା କରିଛନ୍ତି । ତା

ମାନେ କାଳିଦାସଙ୍କ ପୂର୍ବରୁ ବହୁ ରାମକଥା ପ୍ରଚଳିତ ଥିଲା । ତାହା ଜଣେ ବାଲ୍ମୀକିଙ୍କର ନୁହେଁ । ସେହିପରି ଭଟିକାବ୍ୟର ଉପସଂହାରରୁ ଜଣାଯାଏ , ପଞ୍ଚମ ଶତାବ୍ଦୀରେ ପ୍ରଚଳିତ ରାମାୟଣରେ ଉତ୍ତରାକାଣ୍ଡ, ଅର୍ଥାତ୍ ସୀତା ବନବାସ ଓ ତାଙ୍କର ପାତାଳ ପ୍ରବେଶ ଆଦି ନଥିଲା । ତା ମାନେ ପରେ ତାହା ଯୋଡ଼ାଯାଇଛି । ପୂର୍ବେ ସେତେବେଳେ ଚାରଣ କବିମାନଙ୍କର ପେସା ଥିଲା — ଗୀତ ଗାଇ ଗାଇ ବୁଲିବା । ସେମାନେ ଗାଇଲା ଭିତରେ ଶ୍ରୋତାଙ୍କୁ ମୁଗ୍ଧ କରିବା ପାଇଁ ନିଜେ ବହୁ ବିଷୟ ମନରୁ ଯୋଡୁଥିଲେ । ସେହି ଚାରଣ ଗୀତ ଗାଇ ବୁଲିବା ଭୃଗୁବଂଶୀୟଙ୍କର କାର୍ଯ୍ୟ ଥିଲା । ସେହି ଭୃଗୁ ବଂଶରେ ଚ୍ୟବନଙ୍କ ପୁତ୍ର ହେଲେ ବାଲ୍ମୀକି, ତେଣୁ ସେହି ଚାରଣ ଗୀତ ଗାଇ ବୁଲିବା ଭିତରେ ବାଲ୍ମୀକି ଉତ୍ତରକାଣ୍ଡକୁ ଯୋଡିଛନ୍ତି । ତାଙ୍କ ନାମରେ ଭଣିତା ହୋଇଛି ।

ପ୍ରକୃତରେ ରାମାୟଣ ବହୁକାଳ ଧରି ଚାରଣ କବିଙ୍କ ରଚନା ଦ୍ୱାରା ସମୃଦ୍ଧ । ରାମ ଯେ ବାଲ୍ମୀକିଙ୍କ ବହୁ ପୂର୍ବର ଏଥିରେ ସନ୍ଦେହ ନାହିଁ । ରାମାୟଣ କୌଣସି ଜଣକର ହୋଇ ନ ଥିବାରୁ ବାଲ୍ମୀକି ତାର ସ୍ରଷ୍ଟା ଭାବରେ ପରିଚିତ । ଶେଷରେ ସେଥିପ୍ରତି ବିଶ୍ୱାସ ଓ ଗୁରୁତ୍ୱ ବୃଦ୍ଧି ଦିଗରୁ ସେ ବ୍ରହ୍ମାଙ୍କ ମୁହଁରେ କୁହାଇଛନ୍ତି । ''ଭବିଷ୍ୟଂ ଉତ୍ତରଂ ଚୈବ ସର୍ବଂ ବାଲ୍ମୀକିନା କୃତମ୍'' । କେବଳ ସେତିକି ନୁହେଁ, ଏହା ପରେ ମଧ୍ୟ ଯାହା ଘଟିବ, ତାହା ମଧ୍ୟ ସେ ରାମାୟଣର ଅଂଶ ହେବ — ଶେଷମ୍ ଭବିଷ୍ୟଂ କାକୁତ୍ସ୍ଥ ''କାବ୍ୟଂ ରାମାୟଣଂ'' ଶୁଭମ୍ ।

## ନୂତନ ଦେବତାଙ୍କ ଆବିର୍ଭାବ

ଏଣିକି ବାଲ୍ମୀକି ଯାହା ଲେଖିଲେ ତାହା ହେଲା ରାମାୟଣ । ଏସବୁ ସମ୍ପର୍କରେ ବହୁ ଆଲୋଚନା ରହିଛି । ତେବେ କାବ୍ୟ ସବୁ କିପରି ଲେଖା ହୋଇଛନ୍ତି, ବିଶେଷ କରି ରାମାୟଣ କିପରି ରୂପ ନେଇଛି, ସେ ବିଷୟରେ କବିଗୁରୁ ରବୀନ୍ଦ୍ର ନାଥଙ୍କ ଆଲୋଚନା ଅଦ୍ୱିତୀୟ । ଐତିହାସିକ ବିଚାର, ସାହିତ୍ୟକ ସୃଷ୍ଟି, ସାମାଜିକ ତତ୍ତ୍ୱ, ଦାର୍ଶନିକ ମତ, ମାନବିକ ନୀତିବୋଧ ଆଉ ଶେଷରେ ବାସ୍ତବବାଦୀ ଦୃଷ୍ଟିଭଙ୍ଗୀ ଦ୍ୱାରା ତାଙ୍କର ସେହି ଆଲୋଚନା ଯେପରି ସମୃଦ୍ଧ, ଅନ୍ୟ ଦିଗରେ ତାହା ସେହିପରି ଅକାଟ୍ୟ ଓ ଅପୂର୍ବ । ଜଣେ ସେଥି ସହିତ ଏକମତ ନ ହୋଇପାରେ । କିନ୍ତୁ ରବିନ୍ଦ୍ର ନାଥଙ୍କୁ ଐତିହାସିକ ପରମ୍ପରା ବିଷୟରେ ଅନଭିଜ୍ଞ, ବୈଦିକ ଧର୍ମପତି ବିମୁଖ ବା ତାର ବିରୋଧୀ କିମ୍ବା ତାଙ୍କୁ ଜଣେ ନିପଟ ନାସ୍ତିକ, ଶାସ୍ତ୍ରପୁରାଣର ନିନ୍ଦୁକ କହି କେହି ଉଡାଇ ଦେଇପାରିବେ ନାହିଁ । ଭାରତୀୟ ସଭ୍ୟତା, ସାହିତ୍ୟ ଓ ସଂସ୍କୃତି ପ୍ରତି ରବୀନ୍ଦ୍ର ନାଥଙ୍କ ତୁଳନାରେ ଆଉ ଅଧିକ ଅବଦାନ କାହାର ? ତେଣୁ ତାଙ୍କର ସେହି ରାମାୟଣ କାବ୍ୟସମ୍ପର୍କ ଆଲୋଚନା ଟିକିଏ ଦୀର୍ଘ ହେଲେ ବି ଆବଶ୍ୟକତା ଦୃଷ୍ଟିରୁ ତାହା ସମସ୍ତଙ୍କ.ପକ୍ଷରେ ପ୍ରଣିଧାନଯୋଗ୍ୟ । ''.... ଦେଶର ସାଧାରଣ ଲୋକଙ୍କ ଭିତରେ ପ୍ରଥମେ କେତେକ ଭାବ କ୍ଷୁଦ୍ର ଖଣ୍ଡ ଖଣ୍ଡ କାବ୍ୟ ହୋଇ ଚାରିଆଡେ ଦଳବାନ୍ଧି ଖେଳି ବୁଲନ୍ତି । ତା'ପରେ

ଜଣେ ବଡ କବି ସେହି କ୍ଷୁଦ୍ର ଖଣ୍ଡ ଖଣ୍ଡ କାବ୍ୟଗୁଡ଼ିକୁ ଏକ କାବ୍ୟ ସୂତ୍ରରେ ଗୋଟାଏ କରି ଗଢ଼ିଦିଏ । ହରପାର୍ବତୀଙ୍କ କେତେ କଥା ଯାହା କୌଣସି ପୁରାଣରେ ନାହିଁ ,ରାମ, ସୀତାଙ୍କର କେତେ କାହାଣୀ, ଯାହା ମୂଳ ରାମାୟଣରେ ମିଳେ ନାହିଁ , ଗାଁର ଗାୟକ, କଥକଙ୍କ ମୁହଁରେ ମୁହଁରେ ଗାଁର କୋରେ କୋଣେ ଭଙ୍ଗ ଛନ୍ଦ ଓ ଗାଉଁଲି ଭାଷାଭିତରେ କେତେ କାଳ ଧରି ଘୁରି ଗୁ ବୁଲିବାରେ ଲାଗିଛି । ସେ ସମୟରେ କୌଣସି ରାଜ ସଭାର କବିଙ୍କୁ ଯେତେବେଳେ କୌଣସି ବିଶିଷ୍ଟ ସଭାରେ ଗାଇବା ଲାଗି ଡାକପଡେ, ସେତେବେଳେ ସେଇ କଥାଗୁଡ଼ିକୁ ଆତ୍ମସ୍ଥ କରି ମାର୍ଜିତ ଛନ୍ଦରେ , ଗମ୍ଭୀର ଭାଷାରେ ବଡକରି ଠିଆ କରି ଦେଇଛନ୍ତି । ପୁରାତନକୁ ନୂତନ କରି, ବିଚ୍ଛିନ୍ନକୁ ଏକ କରି, ଦେଖାଇଲେ ହିଁ ସମସ୍ତ ଦେଶଟା ଆପଣା ହୃଦୟକୁ ଯେପରି ପ୍ରଶସ୍ତ ଦେଖାଇ ଆନନ୍ଦ ପାଏ । ସେଥିରେ ସେ ନିଜର ଜୀବନ ପଥରେ ଆଉ ଗୋଟାଏ ପର୍ବ ଯେପରି ଅଗ୍ରସର ହୋଇଯାଏ । ମୁକୁନ୍ଦରାମଙ୍କ ଚଣ୍ଡୀ, ଘନରାମଙ୍କ ଧର୍ମମଙ୍ଗଳ , ଭରତଚନ୍ଦ୍ରଙ୍କ ଅନ୍ନଦା ମଙ୍ଗଳ ଏହିପରି ଶ୍ରେଣୀର କାବ୍ୟ । ତାହା ବଙ୍ଗଳାର ଛୋଟ ଛୋଟ ପଲ୍ଲୀ ସାହିତ୍ୟକୁ ବୃହତ୍ ସାହିତ୍ୟରେ ବାନ୍ଧିବାର ପ୍ରୟାସ । ଏହିପରି ଗୋଟିଏ ବଡ ଜାଗାରେ ଆପଣାର ପ୍ରାଣର ଜିନିଷକୁ ମିଳାଇ ଦେଇ ପଲ୍ଲୀ ସାହିତ୍ୟ ଫଳ ଧରିଗଲେ ଫୁଲର ପାଖୁଡାଗୁଡ଼ିକ ଭଳି ଝରିପଡେ ।''

'' ପଞ୍ଚତନ୍ତ୍ର କଥାସରିତ ସାଗର, ଆରବ ଉପନ୍ୟାସ, ଇଲିୟଡ ଆର୍ଥର କାହାଣୀ. ସ୍କାଣ୍ଡିନେଭିଆର ସାଗା, ଏହିପରି ଭାବରେ ସାହିତ୍ୟ ଜନ୍ମ ଲଭିଛି । ସେଗୁଡ଼ିକ ମଧ୍ୟରେ ଲୋକମୁଖର ବିକ୍ଷିପ୍ତ କଥା ଗୋଟିଏ ସ୍ଥାନରେ ବଡ଼ ଆକାରରେ ଦାନା ବାନ୍ଧିବାର ଚେଷ୍ଟା ହୋଇଛି ।

'' ଏହିପରି ବିଚ୍ଛୁରିତ ଭାବର ଗୋଟାଏ ହୋଇ ଉଠିବାର ଚେଷ୍ଟା, କେତେକ ସ୍ଥାନରେ ମାନବ ସାହିତ୍ୟରେ ଅତି ଆଶ୍ଚର୍ଯ୍ୟ ଭାବେ ବିକାଶ ଲାଭ କରିଛି , ଗ୍ରୀସ୍‌ରେ ହେମରଙ୍କ କାବ୍ୟ ଏବଂ ଭରତବର୍ଷରେ ରାମାୟଣ, ମହାଭାରତ ।

''ଇଲିୟାଡ ଓ ଓଡେସିଙ୍କର ବିଭିନ୍ନ ଖଣ୍ଡ ଗାଥା କ୍ରମେ କ୍ରମେ ପରସ୍ପ ପରସ୍ପ ଯୋଡ଼ି ହୋଇ ଏକ ହୋଇ ଉଠିଛନ୍ତି । ମୋଟାମୋଟି ଭାବେ ପ୍ରାୟ ସେହିପରି ଜିନିଷ ସର୍ବତ୍ର ଚାଲିଆସିଛି ।ସେ ସମୟରେ ଲେଖା ପୋଥି ବା ଛାପା ବହିର ଚଳଣି ନ ଥିଲା ।ଯେତେ - ବେଳେ ଗାୟକମାନେ ବୁଲି ବୁଲି ଗାନ ଶୁଣାନ୍ତି, ସେତେବେଳେ ସେ କ୍ରମରେ, ବିଭିନ୍ନ ସମୟରେ ବିଭିନ୍ନ ଲୋକଙ୍କ ହାତରେ ଗୋଟାଏ କାବ୍ୟ ରୂପ ନେଇ ଉଠିଥିବାସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କିନ୍ତୁ ଯେଉଁ ବେଷ୍ଟନି ମଧ୍ୟରେ ସେହି କାବ୍ୟଗୁଡ଼ିକ ଠିଆ ହେବା ଲାଗି ଜାଗା ପାଇଛନ୍ତି , ତାହା ଯେ ଜଣେ ବଡ କବିଙ୍କ ରଚନା ସେଥିରେ ସନ୍ଦେହ ନାହିଁ.। ସେହି ଐକ୍ୟର ଗଣ୍ଡି ଭିତରୁ ଖସିଯାଇ ପାରନ୍ତି ନାହିଁ । ମିଥିଳାର.ବିଦ୍ୟାପତିଙ୍କର ଗୀତ କିପରି ବଙ୍ଗଳା ପଦ୍ୟାବଳୀ ହୋଇଉଠିଛି , ତାହା ଦେଖିଲେ ବୁଝାପଡେ, ସ୍ୱାଭାବିକ ନିୟମରେ ଏକ କିପରି ଆଉ ଏକ ହୋଇ ଉଠିଛି । ବଙ୍ଗଳା ପ୍ରଚଳିତ ବିଦ୍ୟାପତିଙ୍କ

ପଦ୍ୟାବଳୀକୁ ବିଦ୍ୟାପତିଙ୍କର ବୋଲି କହିହେବ ନାହିଁ । ମୂଳ କବିଙ୍କର ପ୍ରାୟ କିଛି ବି ତାର ଅଧିକାଂଶ ପଦ୍ୟରେ ନାହିଁ । କ୍ରମେ ବଙ୍ଗଳା ଗାୟକ ଓ ବଙ୍ଗଳା ଶ୍ରୋତାଙ୍କ ଯୋଗୁଁ ତାର ଭାଷା, ତାର ଅର୍ଥ, ଏପରିକି ତାର ରସର ମଧ୍ୟ ପରିବର୍ତ୍ତନ ହୋଇ ସେ ଏକ ନୂତନ ଜିନିଷ ହୋଇ ଠିଆ ହୋଇଛି । ପିଅରସନ ମୂଳ ବିଦ୍ୟାପତିଙ୍କର ଯେଉଁସବୁ ପଦ୍ୟ ପ୍ରକାଶ କରିଛନ୍ତି, ବଙ୍ଗଳା ପଦ୍ୟାବଳୀରେ ତାର ଦୁଇ ଚାରିଟା ବିଷୟ ଠିକ୍ ଠିକ୍ ମିଶେ । ଅଧିକାଂଶ ଭାବକୁ ମିଶାଇବା ସମ୍ଭବ ନୁହେଁ । ଅଥଚ, ବିଭିନ୍ନ ସମୟରେ ବିଭିନ୍ନ ଲୋକଙ୍କ ଦ୍ୱାରା ସେ ସବୁର ପରିବର୍ତ୍ତନ ସତ୍ତ୍ୱେ ପଦଗୁଡ଼ିକ ସଂଗତିହୀନ ପ୍ରଳାପ ଭଳି ହୋଇଯାଇ ନାହିଁ । କାରଣ, ଗୋଟିଏ ମୂଳ ସ୍ୱର ମଝିରେ ରହି ସବୁ ପରିବର୍ତ୍ତନକୁ ଆପଣାର କରିନେବା ଲାଗି ସଦା ସତର୍କ ହୋଇ ବସିଛି । ସେହି ସ୍ୱରଟିର ଯୋଗୁଁହିଁ ଏ ପଦଗୁଡ଼ିକୁ ବିଦ୍ୟାପତିଙ୍କ ପଦ ବୋଲି କହୁ । ପୁଣି ଆମୂଳଚୂଳ ପରିବର୍ତ୍ତନ ଯୋଗୁଁ ସେଗୁଡ଼ିକୁ ବଙ୍ଗାଳୀଙ୍କର ସାହିତ୍ୟ ବୋଲି କହିବାରେ ଦ୍ୱିଧାର କାରଣ ନାହିଁ ।

''ଏଥିରୁ ବୁଝାଯାଏ ଯେ, ପ୍ରଥମେ ନାନା ମୁହଁରେ ପ୍ରଚଳିତ ଗୀତଗୁଡ଼ିକ ଗୋଟିଏ କାବ୍ୟରେ ବନ୍ଧା ହୋଇ ପୁଣି ଯେତେବେଳେ ସେହି କାବ୍ୟ ସାଧାରଣ ଲୋକଙ୍କ ଭିତରେ ବହୁଦିନ ଧରି ବୋଲା ହେଉଥାଏ, ସେତେବେଳେ ପୁଣି ତା ଉପରେ ବିଭିନ୍ନ ଦିଗରୁ ବିଭିନ୍ନ ସମୟର ହାତ ଲାଗିଥାଏ । ସେହି କାବ୍ୟ ଦେଶର ଚାରିଆଡୁ ନିଜର ପୁଷ୍ଟି ନିଜେ ଟାଣିନିଏ । ଏହିପରି କରି ତାହା କ୍ରମଶଃ ସମସ୍ତ ଦେଶର ଜିନିଷ ହୋଇଉଠେ । ସେଥିରେ ସମସ୍ତ ଦେଶର ଅନ୍ତଃକରଣ ଇତିହାସ, ତତ୍ତ୍ୱଜ୍ଞାନ, ଧର୍ମବୋଧ, କର୍ମନୀତି ଆପେ ଆପେ ଆସି ମିଶିଯାଏ । ଯେଉଁ କବି ଆରମ୍ଭରେ ଏହାର ଭିତ୍ତିସ୍ଥାପନ କରିଥିଲେ, ତାଙ୍କର ଆଶ୍ଚର୍ଯ୍ୟଜନକ କ୍ଷମତା ବଳରେ ହିଁ ଏହା ସମ୍ଭବ ହୋଇପାରେ । ସେ ଏପରି ଭାଷାରେ ଏମିତି କରି ମୂଳଭିତ୍ତି ଦେଲେ ଯେ, ତାଙ୍କର ଯୋଜନା (ପ୍ଲାନ) ଏତେ ପ୍ରଶସ୍ତ ଯେ ଦୀର୍ଘକାଳ ଧରି ପ୍ରଶସ୍ତ ଦେଶଟାକୁ ସେ ନିଜ କାର୍ଯ୍ୟରେ ଲଗାଇ ନେଇ ପାରନ୍ତି । ଏତେଦିନ ଧରି ଏତେ ଲୋକଙ୍କ ହାତ ଲାଗିବା ଫଳରେ ଯେ କୌଣସିଠି ବଙ୍କାତେଢ଼ା ହୁଏ ନାହିଁ, ତାହା କହିପାରିବି ନାହିଁ । ମୂଳ ଗଠନର ମାହାତ୍ମ୍ୟ ଯୋଗୁଁ ସେ ସମସ୍ତ ଜିନିଷ ଅଭିଭୂତ ହୋଇ ରହିଥାଏ ।

''ଆମର ରାମାୟଣ, ମହାଭାରତ, ବିଶେଷକରି ମହାଭାରତ ତାର ଦୃଷ୍ଟାନ୍ତ ।

''ଏହିପରି କାଳେ କାଳେ ଗୋଟାଏ ସମସ୍ତ ଜାତି ଯେଉଁ କାବ୍ୟକୁ ଜଣେ କବିର କବିତ୍ୱ ଭିତ୍ତିକୁ ରଚନା କରି ଥୋଇଛି, ତାକୁ ଯଥାର୍ଥରେ ମହାକାବ୍ୟ କୁହାଯାଏ ।

''ତାକୁ ମୁଁ ଗଙ୍ଗା, ବ୍ରହ୍ମପୁତ୍ର ପ୍ରଭୃତି ନଦୀଙ୍କ ସଙ୍ଗରେ ତୁଳନା କରେ । ପ୍ରଥମେ ପର୍ବତର ବିଭିନ୍ନ ଗୋପନ ଗୁହାରୁ ବିଭିନ୍ନ ଝରଣା ଗୋଟିଏ ଜାଗାରେ ମିଶି ନଦୀ ତିଆରି କରନ୍ତି । ସେ ନଦୀ ଯେତେବେଳେ ନିଜ ପଥରେ ଚାଲେ, ସେତେବେଳେ ନାନା ଦେଶରୁ ଉପନଦୀ ଆସି ତା ସଙ୍ଗରେ ମିଶନ୍ତି, ତା ମଧ୍ୟରେ ନିଜକୁ ହଜାଇ ଦିଅନ୍ତି ।

''କିନ୍ତୁ ଭାରତବର୍ଷର ଗଙ୍ଗା, ମିଶରର ନୀଳ, ଚୀନର ଇୟାଙ୍ଗ ସିକିୟାଙ୍ଗଙ୍କ ଭଳି ମହାନଦୀ ପୃଥିବୀରେ କମ୍ ଅଛନ୍ତି । ଏହିସବୁ ନଦୀ ମା ଭଳି ଏକ ବୃହତ୍ ଦେଶର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତକୁ ପାଳନ କରି ଚାଲିଛନ୍ତି । ଏମାନେ ଏକ ଏକ ପ୍ରାଚୀନ ସଭ୍ୟତାର ସ୍ତନ୍ୟଦାୟିନୀ ଧାତ୍ରୀଙ୍କ ଭଳି ।

''ସେହିପରି ମହାକାବ୍ୟ ଆମ ପାଇଁ ସାହିତ୍ୟ ଭିତରେ ଚାରୋଟି ମାତ୍ର ରହିଛି । ଇଲିୟାର୍ଡ ''ଓଡେସି'', ରାମାୟଣ ଓ ମହାଭାରତ । ଅଳଙ୍କାର ଶାସ୍ତ୍ରରେ କୃତ୍ରିମ ଆଇନ ବଳରେ ରଘୁବଂଶ, ଭାରବୀ, ମାଘ ବା ମିଲଟନଙ୍କର ପାରାଡ଼ାଇଜ୍ ଲଷ୍ଟ, ଭଲଟାୟରଙ୍କର ଆଁରିୟାଦ୍ ପ୍ରଭୃତିଙ୍କୁ ମହାକାବ୍ୟର ପଂକ୍ତିରେ ଜୋର କରି ବସାଇ ଦିଆଯାଏ । ତାପରେ ବର୍ତ୍ତମାନର ଆଜିକାଲି ଛାପାଖାନା ଶାସନରେ ମହାକାବ୍ୟ ଗଢିଠିବା ସମ୍ଭାବନା ପର୍ଯ୍ୟନ୍ତ ଲୋପପାଇ ଯାଇଛି ।

''ରାମାୟଣ ରଚିତ ହେବା ପୂର୍ବରୁ ରାମ ଚରିତ ସମ୍ବନ୍ଧରେ ଯେଉଁସବୁ ପୁରାଣକଥା ଦେଶର ଜନସାଧାରଣଙ୍କ ମଧ୍ୟରେ ପ୍ରଚଳିତ ଥିଲା, ଏବେ ସେଗୁଡିକୁ ଖୋଜିଲେ ଆଉ ମିଳେ ନାହିଁ । କିନ୍ତୁ ସେମାନଙ୍କ ଦ୍ୱାରାହିଁ ରାମାୟଣର ଗୋଟାଏ ପୂର୍ବସୂଚନା ଦେଶରେ ଖେଳି ଯାଇଥିଲା, ସେଥିରେ କିଛି ସନ୍ଦେହ ନାହିଁ ।

ଆମ ଦେଶରେ ଯେତେ ବୀର ପୁରୁଷ ଅବତାର ରୂପରେ ଗଣ୍ୟ, ସେମାନେ ଜଗତର ହିତପାଇଁ କୌଣସି ନା କୌଣସି ଅସାମାନ୍ୟ କାମ ନିଶ୍ଚିତ ଭାବେ କରିଥିଲେ । ରାମାୟଣ ରଚିତ ହେବା ପୂର୍ବରୁ ଏହିପରି ଏକ ଜନଶ୍ରୁତି ପ୍ରଚଳିତ ଥିଲା , ସେଥିରେ ସନ୍ଦେହ ନାହିଁ । ସେ ଯେ ପିତୃସତ୍ୟ ପାଳନ ଲାଗି ବନକୁ ଯାଇଥିଲେ ଏବଂ ତାଙ୍କର ପତ୍ନୀ - ହରଣକାରୀକୁ ବିନାଶ କରି ସ୍ତ୍ରୀକୁ ଉଦ୍ଧାର କରିଥିଲେ, ସେଥିରେ ତାଙ୍କର ଚରିତ୍ରର ମହାତ୍ମ୍ୟ ପ୍ରମାଣିତ ହୁଏ ସତ୍ୟ, କିନ୍ତୁ ଯେଉଁ ଅସାଧାରଣ ଲୋକହିତ ସାଧନ କରି ସେ ଲୋକଙ୍କର ହୃଦୟକୁ ଅଧିକାର କରିଥିଲେ, ରାମାୟଣରେ ତାର ଅଭାସ ମାତ୍ର ରହିଛି ।

''ଆର୍ଯ୍ୟମାନଙ୍କର ଭାରତ ଅଧିକାର ପୂର୍ବରୁ ଯେଉଁ ଦ୍ରାବିଡ ଜାତିମାନେ ଆଦିମ ଅଧିବାସୀଙ୍କୁ ଜୟ କରି ଏହି ଦେଶ ଅଧିକାର କରି ବସିଥିଲେ, ସେମାନେ ନିତାନ୍ତ ଅସଭ୍ୟ ନ ଥିଲେ । ସେମାନେ ଆର୍ଯ୍ୟମାନଙ୍କ ପାଖରେ ସହଜରେ ହାର ମାନି ନାହାନ୍ତି । ସେମାନେ ଆର୍ଯ୍ୟମାନଙ୍କ ଯଜ୍ଞରେ ବିଘ୍ନ ଘଟାନ୍ତି । ଋଷିମାନଙ୍କ କାମରେ ବ୍ୟାଘାତ ଆଣନ୍ତି । କୁଳପତିମାନେ ବଣ ଜଙ୍ଗଲ କାଟି ଯେଉଁ ଗୋଟିଏ ଗୋଟିଏ ଆଶ୍ରମ ସ୍ଥାପନ କରୁଥିଲେ,ସେ ଆଶ୍ରମରେ ସେମାନେ କେବଳ ଉତ୍ପାତ କରନ୍ତି ।

''ଦାକ୍ଷିଣାତ୍ୟରେ କୌଣସି ଏକ ଦୁର୍ଗମ ସ୍ଥାନରେ ସେହି ଦ୍ରାବିଡ ଜାତୀୟ ରାଜବଂଶ ଅତ୍ୟନ୍ତ ପରାକ୍ରମଶାଳୀ ହୋଇ ଏକ ସମୃଦ୍ଧିଶାଳୀ ରାଜ୍ୟ ସ୍ଥାପନ କରିଥିଲେ । ତାଙ୍କର ପ୍ରେରିତ ଦଳବଳ ହଠାତ୍ ବନ ମଧ୍ୟରୁ ବାହାରି ଆର୍ଯ୍ୟ ଉପନିବେଶଗୁଡିକୁ ଭୟଭୀତ କରୁଥିଲେ ।

ରାମଚନ୍ଦ୍ର ବାନରଗଣଙ୍କୁ ଅର୍ଥାତ୍ ଭାରତର ଆଦିମ ଅଧିବାସୀଙ୍କୁ ସଙ୍ଗରେ ନେଇ ବହୁଦିନ ଉଦ୍ୟମ ଓ କୌଶଳ ସହକାରେ ସେହି ଦ୍ରାବିଡଙ୍କ ପ୍ରତାପ ଧ୍ୱଂସ କରି ଦିଅନ୍ତି । ସେଥିପାଇଁ ଆର୍ଯ୍ୟମାନଙ୍କ ଭିତରେ ତାଙ୍କର ଗୌରବ ଗାନ ହୋଇଛି । ଯେମିତି ଶକମାନଙ୍କ ଉପଦ୍ରବରୁ ହିନ୍ଦୁମାନଙ୍କୁ ଉଦ୍ଧାର କରି ବିକ୍ରମାଦିତ୍ୟ ଯଶସ୍ୱୀ ହୋଇଥିଲେ, ସେହିପରି ଅନାର୍ଯ୍ୟମାନଙ୍କ ପ୍ରଭାବ ଖର୍ବ କରି ଯିଏ ଆର୍ଯ୍ୟମାନଙ୍କୁ ନିରୁପଦ୍ରବ କଲେ, ସେ ମଧ୍ୟ ସାଧାରଣ ଲୋକଙ୍କ ପାଖରେ ଅତ୍ୟନ୍ତ ପ୍ରିୟ ଓ ପୂଜ୍ୟ ହୋଇଛନ୍ତି ।

''ସେହି ଉପଦ୍ରବ କିଏ ଲୋପ କରିଦେବ, ସେ ଚିନ୍ତା ସେତେବେଳେ ଚତୁର୍ଦ୍ଦିଗରେ ପ୍ରକାଶ ପାଇଥିଲା । ରାମଚନ୍ଦ୍ରଙ୍କୁ କମ୍ ବୟସରେ ଲକ୍ଷ୍ମୀବନ୍ତ ଦେଖି ବିଶ୍ୱାମିତ୍ର ଯୋଗ୍ୟପାତ୍ର ବୋଲି ଠିକ୍ କରିଥିଲେ । କିଶୋର ବୟସରୁ ହିଁ ରାମଚନ୍ଦ୍ର ବିଶ୍ୱାମିତ୍ରଙ୍କ ପ୍ରେରଣା ଓ ଶିକ୍ଷାରେ ଶତ୍ରୁଙ୍କ ସହିତ ଯୁଦ୍ଧ କରିବାରେ ଲାଗିଲେ । ସେତେବେଳେ ବି ଅରଣ୍ୟରେ ଗୁହକଙ୍କ ସହିତ ମିତ୍ରତା କରି କି ପ୍ରଣାଳୀରେ ଶତ୍ରୁ ଧ୍ୱଂସ କରିବାକୁ ହେବ, ତାର ସୂଚନା ଦେଇଥିଲେ । ସେତେବେଳେ ଗାଈ ଗୋରୁ, ଧନ ଏବଂ ଚାଷ ପବିତ୍ର କାମ ବୋଲି ଗଣ୍ୟ ହେଉଥିଲା । ଜନକ ନିଜ ହାତରେ ଚାଷ କରୁଥିଲେ । ଲଙ୍ଗଳ ମୁହଁରେ ଅରଣ୍ୟକୁ ହଟାଇବାରେ କୃଷିକ୍ଷେତ୍ର ବିସ୍ତାର ଲାଭ କରୁଥିଲା । ରାକ୍ଷସମାନେ ଥିଲେ ଆର୍ଯ୍ୟମାନଙ୍କର ସେହି ବ୍ୟାପ୍ତିର ଅନ୍ତରାୟ । ପ୍ରାଚୀନ ମହାପୁରୁଷଙ୍କ ମଧ୍ୟରେ ଜନକ ଥିଲେ ଆର୍ଯ୍ୟ ସଭ୍ୟତାର ପ୍ରଧାନ ପୁରୋଧା । ଭାରତରେ କୃଷିକ୍ଷେତ୍ରର ପ୍ରସାରରେ ସେ ଜଣେ ଉଦ୍‌ଯୋଗୀ ପୁରୁଷ । ସେ ତାଙ୍କର କନ୍ୟାର ନାମ ରଖିଥିଲେ ସୀତା । ପଣ କରିଥିଲେ ଯିଏ ବୀର ଧନୁ ଭାଙ୍ଗି ଅସାମାନ୍ୟ ବଳର ପରିଚୟ ଦେବ, ତାଙ୍କୁହିଁ କନ୍ୟା ଦାନ କରିବେ । ସେଇ ଅଶାନ୍ତି ଦିନରେ ଏହିପରି ଜଣେ ବଳିଷ୍ଠ ପୁରୁଷ ପାଇଁ ସେ ଅପେକ୍ଷା କରି ରହିଥିଲେ । ପ୍ରବଳ ଶତ୍ରୁ ବିରୋଧରେ ଯିଏ ଲୋକ ଠିଆ ହୋଇପାରିବ, ତାକୁ ବାଛିବାରେ ସେଇ ଥିଲା ଏକ ଉପାୟ ।

''ବିଶ୍ୱାମିତ୍ର ରାମଚନ୍ଦ୍ରଙ୍କୁ ଅନାର୍ଯ୍ୟ ପରାଭବ ବ୍ରତରେ ଦୀକ୍ଷିତ କରି ତାଙ୍କୁ ଜନକଙ୍କ ପରୀକ୍ଷା ସ୍ଥଳରେ ଉପସ୍ଥିତ କଲେ । ଭରଦ୍ୱାଜ, ଅଗସ୍ତ୍ୟ ପ୍ରଭୃତି ଯେଉଁସବୁ ଋଷି ଦୁର୍ଗମ ଦକ୍ଷିଣରେ ଆର୍ଯ୍ୟ ନିବାସ ବିସ୍ତାର କରିବାରେ ପ୍ରବୃତ୍ତ ଥିଲେ, ତାଙ୍କର ଉପଦେଶ ଗ୍ରହଣ କରି ଅନୁଚର ଲକ୍ଷ୍ମଣଙ୍କ ସହ ଅପରିଚିତ ଗହନ ଅରଣ୍ୟ ମଧ୍ୟରେ ସେ ଅଦୃଶ୍ୟ ହୋଇଗଲେ ।

''ସେଠି ବାଳୀ ଓ ସୁଗ୍ରୀବ ଦୁଇ ପ୍ରତିଦ୍ୱନ୍ଦୀ ଭାଇଙ୍କ ମଧ୍ୟରୁ ଜଣକୁ ମାରି ଅନ୍ୟଜଣକୁ ନିଜ ସଙ୍ଗକୁ ଆଣିଲେ । ବାନରଗଣଙ୍କୁ ବଶ କଲେ, ସେମାନଙ୍କୁ ଯୁଦ୍ଧବିଦ୍ୟା ଶିକ୍ଷା ଦେଇ ସୈନ୍ୟବଳ ଗଢ଼ିଲେ । ସୈନ୍ୟଧରି ଶତ୍ରୁ ଭିତରେ କୌଶଳରେ ଆତ୍ମବିଚ୍ଛେଦ ଘଟାଇ ଲଙ୍କାପୁରୀ ଛାରଖାର କରିଦେଲେ । ସେହି ରାକ୍ଷସମାନେ ସ୍ଥାପତ୍ୟ ବିଦ୍ୟାରେ ଧୁରନ୍ଧର ଥିଲେ । ଯୁଧିଷ୍ଠିର ଯେଉଁ ଆଶ୍ଚର୍ଯ୍ୟ ପ୍ରାସାଦ ତିଆରି କରିଥିଲେ, ମୟ ଦାନବ ଥିଲେ ତାର କାରିଗର । ନିର୍ମାଣରେ ଦ୍ରାବିଡ଼ ଜାତିର କୌଶଳ ଆଜି ପର୍ଯ୍ୟନ୍ତ ଭାରତବର୍ଷରେ ବିଶିଷ୍ଟତା ଲାଭ କରିଛି । ଏମାନେ ପ୍ରାଚୀନ ଇଜିପ୍ଟର ସ୍ୱଜାତି ବୋଲି ଯଦି କେହି ଅନୁମାନ କରନ୍ତି, ତାହା ନିତାନ୍ତ ଅସଙ୍ଗତ ମନେ ହୁଏ ନାହିଁ ।

''ଯାହା ହେଲେ ବି ସ୍ୱର୍ଣ୍ଣ ଲଙ୍କାପୁରୀର ଯେଉଁ ପ୍ରାସାଦ ଚାଲି ଆସିଥିଲା ତାର ଗୋଟାଏ ବିଦଗ୍‌ଧ ମୂଳ ରହିଛି । ସେହି ରାକ୍ଷସମାନେ ଅସଭ୍ୟ ନ ଥିଲେ ବରଂ ଶିଳ୍ପ ବିନ୍ୟାସରେ ସେମାନେ ଆର୍ଯ୍ୟମାନଙ୍କ ତୁଳନାରେ ଶ୍ରେଷ୍ଠ ଥିଲେ ।

''ରାମଚନ୍ଦ୍ର ଶତ୍ରୁଗଣଙ୍କୁ ବଶ କରିଥିଲେ । ସେମାନଙ୍କର ରାଜ୍ୟ ହରଣକରି ନାହାନ୍ତି । ବିଭୀଷଣ ତାଙ୍କର ବନ୍ଧୁ ହୋଇ ଲଙ୍କାରେ ରାଜତ୍ୱ କରିବାରେ ଲାଗିଲେ । କିଷିନ୍ଧ୍ୟା ରାଜ୍ୟଭାର ବାନରମାନଙ୍କ ହାତରେ ଅର୍ପଣ କରି ସେ ଚିରଦିନ ଲାଗି ତାଙ୍କୁ ବଶ କରିନେଲେ । ଏହିପରି ରାମଚନ୍ଦ୍ର ଆର୍ଯ୍ୟଙ୍କ ସହିତ ଅନାର୍ଯ୍ୟଙ୍କ ମିଳନ ବା ବନ୍ଧୁତା ଆଣି ପରସ୍ପର ମଧ୍ୟରେ ଆଦାନ ପ୍ରଦାନର ସମ୍ବନ୍ଧ ସ୍ଥାପନ କରିଛନ୍ତି । ତାହାରି ଫଳରେ ଦ୍ରାବିଡ଼ମାନେ କ୍ରମେ ଆର୍ଯ୍ୟମାନଙ୍କ ସହିତ ଏକ ହିନ୍ଦୁ ସମାଜଭୁକ୍ତ ହୋଇ ହିନ୍ଦୁ ଜାତି ରଚନା କଲେ । ଏହି ହିନ୍ଦୁ ଜାତି ମଧ୍ୟରେ ଉଭୟ ଜାତିର ଆଚାର, ପୂଜାପଦ୍ଧତି ମିଶିଯାଇ ଭାରତବର୍ଷରେ ଶାନ୍ତି ସ୍ଥାପିତ ହୁଏ ।

କ୍ରମେ କ୍ରମେ ଆର୍ଯ୍ୟ ଅନାର୍ଯ୍ୟମାନଙ୍କ ମିଳନ ଯେତେବେଳେ ସମ୍ପୂର୍ଣ୍ଣ ହେଲା, ପରସ୍ପର ଧର୍ମ ଓ ବିଦ୍ୟାର ବିନିମୟ ଘଟିଲା, ରାମଚନ୍ଦ୍ରଙ୍କ ପୁରାତନ କାହାଣୀ ଲୋକମୁଖରେ ରୂପାନ୍ତର ଓ ଭାବାନ୍ତର ହେବାକୁ ଲାଗିଲା । ଯଦି କୌଣସି ଦିନ ଇଂରେଜଙ୍କ ସହ ଭାରତବାସୀଙ୍କ ପରିପୂର୍ଣ୍ଣ ମିଳନ ଘଟେ, ତେବେ କି କ୍ଲାଇବଙ୍କ କୀର୍ତ୍ତିନେଇ ବିଶେଷକରି ଆଡ଼ମ୍ବର କରିବାର କୌଣସି କାରଣ ରହିବ ? ବା ମ୍ୟୁଟିନିରି ଉଦ୍ଧାମ ପ୍ରଭୃତି ଯୋଦ୍ଧାଙ୍କର କାହାଣୀକୁ ବିଶେଷ -କରି ସ୍ମରଣୀୟ କରିବାର ସ୍ୱାଭାବିକଭାବେ କୌଣସି ଆବେଗ ରହିବ ?

''ଯେଉଁ କବି ପ୍ରଚଳିତ ଗାଥାଗୁଡ଼ିକୁ ମହାକାବ୍ୟରେ ଗୁନ୍ଥିଦେଲେ, ସେ ଏହି ଅନାର୍ଯ୍ୟଙ୍କୁ ବଶ କରିବା ବ୍ୟାପାରକୁ ପ୍ରାଧାନ୍ୟ ନ ଦେଇ ମହତ୍ ଚରିତ୍ରର ଏକ ସମ୍ପୂର୍ଣ୍ଣ ଆଦର୍ଶକୁ ପ୍ରଚାର କଲେ । ସେ ପ୍ରଚାର କଲେ ବୋଲି କହିଲେ ବୋଧହୁଏ ଭୁଲହେବ ନାହିଁ । ରାମଚନ୍ଦ୍ରଙ୍କର ପୂଜ୍ୟସ୍ମୃତି କ୍ରମେ କ୍ରମେ କାଳାନ୍ତର ଓ ଅବସ୍ଥାନ୍ତର ଅନୁସରଣ କରି ନିଜର ପୂଜନୀୟତାକୁ ସାଧାରଣତଃ ଭକ୍ତି ବୃତ୍ତିର ଉପଯୋଗୀ କରି ଗଢ଼ିଲା । କବି ତାଙ୍କର ପ୍ରତିଭା ଦ୍ୱାରା ତାହାକୁ ଗୋଟାଏ ଜାଗାରେ ଘନୀଭୂତ ଓ ସୁସ୍ପଷ୍ଟ କରି ଗଢ଼ିଦେଲେ । ସେତେବେଳେ ସାଧାରଣ ଲୋକଙ୍କର ଭକ୍ତି ଚରିତାର୍ଥ ହେଲା ।

''ଆଜି କବି ତାଙ୍କୁ ଯେଉଁଠି ଠିଆ କରାଇଥିଲେ, ତା' ପରଠାରୁ ତାହା ସେଇଠି ସ୍ଥିର ରହିଛି, ତା' ନୁହେଁ ।

''ରାମାୟଣର ଆଦିକବି ଗାର୍ହସ୍ଥ୍ୟ ପ୍ରଧାନ ହିନ୍ଦୁ ସମାଜର ଯେତେ କିଛି ଧର୍ମ, ରାମକୁ ତାର ଅବତାର କରି ଦେଖାଇଛି । ପୁତ୍ର ରୂପେ, ଭ୍ରାତା ରୂପେ, ପତି ରୂପେ, ବନ୍ଧୁ ରୂପେ, ବ୍ରାହ୍ମଣ୍ୟଧର୍ମ ରକ୍ଷାକର୍ତ୍ତା ରୂପେ, ଅବଶେଷରେ ରାଜା ରୂପେ ବାଲ୍ମୀକିଙ୍କ ରାମ ନିଜ ଲୋକପୂଜ୍ୟତା ପ୍ରମାଣ କରିଛନ୍ତି । ସେ ଯେ ରାବଣକୁ ମାରିଥିଲେ, ତା ମଧ୍ୟ କେବଳ ଧର୍ମପତ୍ନୀ ଉଦ୍ଧାର ଲାଗି । ଶେଷରେ ସେହି ପତ୍ନୀକୁ ତ୍ୟାଗ କରିଛନ୍ତି, ତାହା ମଧ୍ୟ କେବଳ ପ୍ରଜାରଞ୍ଜନର ଅନୁରୋଧରେ, ନିଜର ସମସ୍ତ ସହଜ ପ୍ରବୃତ୍ତିକୁ ଶାସ୍ତ୍ର ମତରେ

କଠୋର ଭାବେ ଶାସନ କରି ସମାଜ ରକ୍ଷାର ଆଦର୍ଶ ଦେଖାଇଛନ୍ତି । ଆମର ସ୍ଥିତିପ୍ରଧାନ ସଭ୍ୟତାର ପଦେ ପଦେ ଯେ ତ୍ୟାଗ, କ୍ଷମା ଓ ଆତ୍ମନିଗ୍ରହର ପ୍ରୟୋଜନ ପଡେ, ରାମ ଚରିତ୍ରରେ ତାହାହିଁ ଫୁଟିଉଠିବାରେ ରାମାୟଣ ହିନ୍ଦୁ ସମାଜରେ ମହାକାବ୍ୟ ହୋଇଉଠିଛି ।

''ଆଦିକବି ଯେତେବେଳେ ରାମାୟଣ ଲେଖିଥିଲେ, ସେତେବେଳେ ଯଦିଓ ରାମ ଚରିତ୍ରରେ ଅତିପ୍ରାକୃତିକତା ମିଶାଇଥିଲେ, ତେବେ ସେ ତାଙ୍କୁ ମଣିଷର ଆଦର୍ଶ ରୂପେ ଚିତ୍ରିତ କରିଥିଲେ । କିନ୍ତୁ ଅତିପ୍ରାକୃତକୁ ଗୋଟାଏ ଜାଗାରେ ସ୍ଥାନ ଦେଲେ ତାକୁ ଆଉ ଅଟକାଇ ରଖାଯାଇ ନ ପାରେ । ସେ କ୍ରମେ ବଢ଼ିଚାଲେ । ଏମିତିଭାବେ ରାମ ଦେବତାର ପଦବୀ ଅଧିକାର କଲେ । ସେତେବେଳେ ରାମାୟଣର ମୂଳ ସ୍ୱର ମଧ୍ୟରେ ଆଉ ଗୋଟିଏ ପରିବର୍ତ୍ତନ ପ୍ରବେଶ କଲା । କୃତ୍ତିବାସ ରାମାୟଣରେ ତାର ପରିଚୟ ମିଳେ ।

ରାମଙ୍କୁ ଦେବତା ବୋଲି ଯେଉଁସବୁ କଠିନ କାମ କରିଥିଲେ, ତା'ର ଦୁଃସାଧ୍ୟତା ଉଲ୍ଲେଖ କରିଛନ୍ତି, ରାମ ଚରିତ୍ରକୁ ମହିୟାନ କରିବା ଲାଗି ସେସବୁର ବର୍ଣ୍ଣନା ଆଉ ଯଥେଷ୍ଟ ହୁଏ ନାହିଁ । ସେତେବେଳେ ଯେଉଁସବୁ ଭାବ ଦିଗରୁ ଦେଖିଲେ ଦେବ ଚରିତ୍ର ମଣିଷ ନିକଟରେ ପ୍ରିୟ ହୁଏ, କାବ୍ୟରେ ସେହି ଭାବଟାହିଁ ପ୍ରବଳ ହୋଇଉଠେ ।

''ସେହି ଭାବଟି ଭକ୍ତବତ୍ସଳତା । କୃତ୍ତିବାସଙ୍କ ରାମ ଭକ୍ତବତ୍ସଳ ରାମ । ସେ ଅଧମ ପାପୀଙ୍କୁ ଉଦ୍ଧାର କରନ୍ତି । ସେ ଗୁହକ ଚାଣ୍ଡାଳକୁ ମିତ୍ର ବୋଲି ଆଲିଙ୍ଗନ କରନ୍ତି । ବଣର ସବୁ ବାନରଙ୍କୁ ପ୍ରେମ ଦ୍ୱାରା ଧନ୍ୟ କରନ୍ତି । ଭକ୍ତ ହନୁମାନ ଜୀବନକୁ ଭକ୍ତିଦ୍ୱାରା ଆର୍ଦ୍ର କରି ନିଜର ଜନ୍ମକୁ ସାର୍ଥକ କରନ୍ତି । ବିଭୀଷଣ ତାଙ୍କର ଭକ୍ତ । ରାବଣ ଶତ୍ରୁଭାବେ ତାଙ୍କ ଦ୍ୱାରା ବିନାଶପ୍ରାପ୍ତ ହେବାରେ ଉଦ୍ଧାର ପାଇଗଲା । ଏହି ହେଲା ରାମାୟଣରେ ସେଇ ଭକ୍ତିର ଲୀଳା ।

''ଭଗବାନ ଯେ ଶାସ୍ତ୍ରଜ୍ଞାନହୀନ ଅନାଚାରୀ ବାନରମାନଙ୍କର ମଧ୍ୟ ବନ୍ଧୁ, ଗୁଣ୍ଡୁଚି ମୂଷାର ଅତି ସାମାନ୍ୟ ସେବା ମଧ୍ୟ ତାଙ୍କ ନିକଟରେ ଅଗ୍ରାହ୍ୟ ନୁହେଁ, ପାପିଷ୍ଠ ରାକ୍ଷସମାନଙ୍କୁ ମଧ୍ୟ ଯେ ସେ ଯଥୋଚିତ ଶାସ୍ତିଦ୍ୱାରା ପରାଭୂତ କରି ଉଦ୍ଧାର କରନ୍ତି, ଏହି ଭାବଟି (କୃତ୍ତିବାସଙ୍କ) ପ୍ରବଳ ହୋଇ ଭାରତବର୍ଷରେ ରମାୟଣ କଥାର ଧାରାକୁ ଗଙ୍ଗାର ଶାଖା ଭାଗୀରଥୀ ଭଳି ଆଉ ଗୋଟାଏ ବିଶେଷ ପଥରେ ଘେନିଯାଏ ।''(୧) ଏହା ହେଲା ରାମଙ୍କ ଦେବତା/ଈଶ୍ୱର ଏବଂ ରାମାୟଣ ଧର୍ମଗ୍ରନ୍ଥ ହେବାର କାହାଣୀ ।

## ନୂତନ ସମାଜର ଆବଶ୍ୟକତା

ଗୀତା, ଭାଗବତ, ପୁରାଣ ଆଦି, କହିବାକୁ ଗଲେ ସବୁ, ରମାୟଣ ମହାଭାରତରୁ ଜାତ । ଖୋଜିଲେ ସମସ୍ତଙ୍କ ମୂଳ ମିଳେ ସେଇଠି । ସେ ସବୁକୁ ପାରାୟଣ ବା ଅନୁସରଣ କରି କା'ର କେବେ ସ୍ୱର୍ଗଲାଭ ବା ମୋକ୍ଷପ୍ରାପ୍ତିର ପ୍ରମାଣ ନାହିଁ । କିନ୍ତୁ ସେ ସବୁର ବର୍ଣ୍ଣିତ ନୀତି ଓ ଆଦର୍ଶ ଯେ ସମାଜର ପ୍ରଦର୍ଶିତ ମାର୍ଗ ହୋଇ ଆସିଛି, ସେଥିରେ ସନ୍ଦେହ ନାହିଁ ।

---

(୧) ରବିନ୍ଦ୍ର ଗନ୍ଥାବଳୀ, ଚତୁର୍ଥ ଖଣ୍ଡ, ପୃଷ୍ଠା ୬୫୯-୬୬୩

ସମାଜକୁ ଧରି ରଖିଥିବା ହେତୁ ସେଗୁଡିକ ସମାଜର ଭିତ୍ତି ହୋଇ ଆସିଛନ୍ତି । ତାର ବିରୋଧିତାର ଅର୍ଥ ହେଉଛି, ହିନ୍ଦୁ ଧର୍ମର ବିରୋଧିତା, ଭାରତୀୟ ସମାଜ ସଂସ୍କୃତିର ବିରେଧିତା । ତେଣୁ ତାକୁ ସମସ୍ତେ ପାଳନ, ପ୍ରଚାର ଓ ପ୍ରତିଷ୍ଠା କରିବାରେ ବ୍ୟସ୍ତ । କିନ୍ତୁ ଅନ୍ୟ ଦିଗରେ ଜଗନ୍ନାଥ- ଭାବର ବିରୋଧିତାର ଅର୍ଥ ହିନ୍ଦୁଧର୍ମର ବିରୋଧିତା ନୁହେଁ, ସମାଜ ସଂସ୍କୃତିର ବିରୋଧିତା ନୁହେଁ । ଜଗନ୍ନାଥଙ୍କର ସେହି ଭାବ, ସାମ୍ୟ-ମୈତ୍ରୀ-ପ୍ରୀତିକୁ କେହି ପାଳନ, ପ୍ରଚାର ବା ପ୍ରତିଷ୍ଠା କରିବାକୁ ଚାହାନ୍ତି ନାହିଁ ,ବରଂ ଯେଉଁମାନେ ତାହା କହନ୍ତି ବା କରିବାକୁ ଚେଷ୍ଟା କରନ୍ତି, ସେମାନଙ୍କୁ ଓଲଟି କୁହାଯାଏ ବିଧର୍ମୀ, ଭାରତୀୟ ସମାଜ ସାଂସ୍କୃତିକ ପରମ୍ପରା ବିରୋଧୀ । କାହାଣୀ, ପୁରାଣ କିମ୍ବଦନ୍ତୀ, — କଳ୍ପନା ପ୍ରସୂତ ଜିନିଷ ହେଲା ସନାତନ ଧର୍ମ । ଆଉ ଯିଏ ସତରେ ମଣିଷର ସୃଷ୍ଟି ସହିତ ପ୍ରତ୍ୟକ୍ଷରେ ବିଦ୍ୟମାନ, — ତାଙ୍କର ଭାବ ହେଲେ ଅସତ୍ ଓ ଅଧର୍ମ । ତହିଁ ଜାତି ଓ ଶ୍ରେଣୀବିଭକ୍ତ ସମାଜର ଦାବୀ ।

ଏଇ ଜିନିଷଟା ମଣିଷର ଶିରା, ପ୍ରଶିରାରେ , ଏମିତି ଭେଦି ଯାଇଛି ଯେ, ସେ ତାକୁ ନିଜର ଗୋଟାଏ ସ୍ୱାଭାବିକ ଅଙ୍ଗ ବୋଲି ଧରିନିଏ । ତାର ସେହି ଆଲୋଚନା ଧର୍ମ ଦୃଷ୍ଟିରୁ ଅଧର୍ମ ଓ ଅକରଣୀୟ, ନୈତିକ ଦିଗରୁ ଅନୈତିକ, ଅପବିତ୍ର ଏବଂ ସଂମାଜିକ ବିଚାରରେ କେବଳ ଅନାବଶ୍ୟକ ନୁହେଁ, ତାକୁ ଆତ୍ମଘାତୀ ବୋଲି ମନେ କରାଯାଏ । ତେଣୁ ମନରୁ ସେଇ ଧାରଣାକୁ ବହିଷ୍କାର ନକଲା ପର୍ଯ୍ୟନ୍ତ ଜଗନ୍ନାଥଭାବର ପ୍ରବେଶ କ'ଣ କେବେ ସମ୍ଭବ ହୋଇପାରେ ?

ସେହି ସମାଜର ବିଧିବିଧାନ କିପରି ରାମାୟଣ ଓ ମହାଭାରତରେ ପ୍ରତିଫଳିତ ହୁଏ ଏବଂ ତାହା କିପରି ପରବର୍ତ୍ତୀ କାଳରେ ସାମାଜିକ ନୀତିବୋଧ ଓ ସେ ଦିଗରେ ପରିବର୍ତ୍ତନର ମାର୍ଗକୁ ପ୍ରଶସ୍ତ କରେ, ଏବଂ ଭବିଷ୍ୟତରେ ତାର ପାଳନର କଠୋର ନିର୍ଦ୍ଦେଶ ଦିଏ, ତାହା ସ୍ୱତଃ ପ୍ରମାଣିତ । ଯେହେତୁ ତାହା ଧର୍ମ, ତାର ସେହି ନୀତି, ତତ୍ତ୍ୱ ଆଉ ଆଦର୍ଶର ଭିତ୍ତି, ତାର ସୃଷ୍ଟି ଓ ଲକ୍ଷ୍ୟ ସମ୍ବନ୍ଧରେ ପ୍ରଶ୍ନର ଅବକାଶ ନାହିଁ । ସେ ବିଷୟରେ ପ୍ରଶ୍ନ କରିବା ଅର୍ଥ, ଭଗବାନଙ୍କ ସତ୍ୟତା ସମ୍ବନ୍ଧରେ ପ୍ରଶ୍ନ କରିବା । ଦୃଷ୍ଟାନ୍ତ ସ୍ୱରୂପ, ଏକ ଅତି ସାଧାରଣ ବିଷୟ ନାରୀ ସ୍ୱାଧୀନତା କଥା । ଗଙ୍ଗା ଶାନ୍ତନୁଙ୍କୁ ବିବାହ କରିବାର ଏକମାତ୍ର ସର୍ତ୍ତ ହେଲା, ସେ ଗଙ୍ଗାଙ୍କ ସ୍ୱାଧୀନତା ଉପରେ କୌଣସି ହସ୍ତକ୍ଷେପ କରିବେ ନାହିଁ । ତାହା କଲାମାତ୍ରେ ଗଙ୍ଗା ସେହି ମୁହୂର୍ତ୍ତରେ ଶା ନ୍ତନୁଙ୍କୁ ତ୍ୟାଗ କରିବେ। ଠିକ୍ ତାହାହିଁ ହୋଇଛି । କିନ୍ତୁ ଧୃତରାଷ୍ଟ୍ର, ପାଣ୍ଡୁ ଓ ବିଦୁରଙ୍କ ଜନ୍ମ ହୋଇଛି ''ନିଯୋଗ'' ପ୍ରଥାଦ୍ୱାରା । ଅମ୍ବା ଓ ଅମ୍ବାଳିକାଙ୍କ ମତ ବିରୋଧରେ । ସେଥିଲାଗି ଜଣେ ଆଖି ବୁଜିବା, ଆଉ ଜଣେ ସନ୍ତାପିତ ଚିତ୍ତ ଯୋଗୁ, ଜଣକ ପୁତ୍ର ଅନ୍ଧ ଓ ଅନ୍ୟ ଜଣଙ୍କର ସନ୍ତାନ ରୋଗାକ୍ରାନ୍ତ ହେଲେ । ପୁନର୍ବାର ତାଙ୍କୁ ବାଧ କରିବାରେ, ସେମାନେ ମୁକ୍ତି ପାଇବା ଲାଗି ଦାସୀକୁ ଦେଖାଇ ଦେବାରୁ ବିଦୁର ଜାତ ହେଲେ ସେଠୁ । ଏଠାରେ ନାରୀ ସ୍ୱାଧୀନତାର ପ୍ରଶ୍ନ ନାହିଁ । ତୃତୀୟରେ ହେଲେ ଦ୍ରୌପଦୀ, ଯିଏ ଜୁଆ ଖେଳରେ ଯେକୌଣସି ଜଡ଼ବସ୍ତୁ ଭଳି ବନ୍ଧା ପଡ଼ନ୍ତି । ତାଙ୍କୁ ବିବସନା କଲାବେଳେ

ତାଙ୍କର ପଞ୍ଚସ୍ୱାମୀଙ୍କ ସହ ସମସ୍ତ ସଭାସଦ୍‌ଗଣ ସମ୍ପୂର୍ଣ୍ଣ ନୀରବ। କାରଣ ନିୟମ ଅନୁସାରେ ଦ୍ରୌପଦୀ ଦୁର୍ଯ୍ୟୋଧନଙ୍କର ଦାସୀ । ସାମାଜିକ ବିଧାନ ଅନୁଯାୟୀ ମାଲିକ ତାକୁ ନିଜ ଖୁସି ଅନୁସାରେ ଯେପରି ଇଚ୍ଛା ସେପରି ବ୍ୟବହାର କରିପାରେ । ସେଠି ଦ୍ରୌପଦୀ କାନ୍ଦି କାନ୍ଦି ଭୀଷ୍ମଙ୍କ ଆଶ୍ରୟ ଲୋଡ଼ିଛନ୍ତି, ଭୀଷ୍ମ ପିତାମହ ହୋଇ ବି ସମ୍ପୂର୍ଣ୍ଣ ନୀରବ, କାରଣ ଦୁର୍ଯ୍ୟୋଧନ ରାଜା, ରାଜା ଆଦେଶ ଅଲଘନୀୟ । ସେ ତାକୁ ଅନ୍ୟାୟ ମଣୁଥିଲେ ବି ସେଥିରେ ହସ୍ତକ୍ଷେପ ନୀତିବିହୀନ କାର୍ଯ୍ୟ । ସେ ପଛେ ନିଜର ପୁତ୍ରବଧୂର ବିବସନ ଦୃଶ୍ୟ ସହ୍ୟ କରିବେ, କିନ୍ତୁ ସେଇ ସାମାଜିକ ବିଧାନର ପ୍ରତିବାଦ ତାଙ୍କ ପକ୍ଷରେ କଳ୍ପନାତୀତ ।

ଉପାରୋକ୍ତ ତିନୋଟି ଘଟଣା ସେହି ଅନୁରୂପ ସାମାଜିକ ଅବସ୍ଥାର ପତିଫଳନ । ପ୍ରଥମଟିରେ ନିଜର ସ୍ୱାଧୀନତା ଉପରେ ହସ୍ତକ୍ଷେପ ହେତୁ ନାରୀ ତାର ପତିକୁ ତ୍ୟାଗ କରେ, ଦ୍ୱିତୀୟରେ ଭୀଷ୍ମଙ୍କର ଭ୍ରାତୃବଧୂ ଦ୍ୱୟ ଅତି କ୍ରୋଧ ସନ୍ତାପର ସହିତ ନିଜର ସ୍ୱାଧୀନତାକୁ ବଳି ଦେଲାବେଳେ ତାକୁ ଫାଙ୍କିବାର ଚେଷ୍ଟା କରନ୍ତି । ତୃତୀୟରେ, ଭୀଷ୍ମଙ୍କର ପୁତ୍ରବଧୂର ଅବସ୍ଥା ସବୁଠାରୁ ଦୟନୀୟ । ସେ ଦାସୀଠାରୁ ହୀନ, ପୁରୁଷର ସମ୍ପୂର୍ଣ୍ଣ ଅଧୀନା ସ୍ୱାମୀ ତାକୁ ବନ୍ଧାରଖି ଜୁଆ ଖେଳେ । ବିଜେତା ପୁରୁଷ ତାକୁ ସଭାରେ ବିବସନ କରିପାରେ । ଭାରତର ଶେଷ ନରପତି ଓ ପଣ୍ଡିତମଣ୍ଡଳୀ ନୀରବରେ ସେଥିପ୍ରତି ସମ୍ମାନ ଜଣାନ୍ତି ।

ରାମାୟଣ ମଧ୍ୟ ନାରୀଜାତିର ସେଇ ଦାସତ୍ୱକୁ ଘୋଷଣା କରେ । ଯେଉଁ ରାମ ସୀତାଙ୍କ ପାଇଁ ଅରଣ୍ୟର ବୃକ୍ଷ ଲତାଙ୍କୁ କୁଣ୍ଢାଇ ବିଳାପ କରନ୍ତି , ରାବଣକୁ ମାରି ସୀତାଙ୍କୁ ଉଦ୍ଧାର କରନ୍ତି, ସେ ପୁଣି ସେଇ ସୀତାଙ୍କୁ ନିକ୍ଷେପ କରନ୍ତି ଅଗ୍ନିରେ ତାଙ୍କର ସତୀତ୍ୱର ପରୀକ୍ଷା ଲାଗି । ଅଗ୍ନିରେ ନିକ୍ଷେପ କଲା ପୂର୍ବରୁ ରାମକୁ ଅତି ହୀନ ନୀଚ ବ୍ୟକ୍ତି କହି ସୀତା ଯେପରି ତାଙ୍କୁ ଧିକ୍‌କାର କରନ୍ତି, ସେଥିରେ ରାମଙ୍କ ମୁହଁରୁ ବାକ୍ୟ ସ୍ଫୁରେ ନାହିଁ । ଅଥଚ ସେଇ ରାମ ତେଣେ ସୁଗ୍ରୀବର ସ୍ତ୍ରୀ ରୁମାଙ୍କୁ ଘେନି ଯିବାରେ ବାଳୀକୁ ଗୋପନରେ ହତ୍ୟା କଲାବେଳେ ଓଲଟି ବାଳୀର ସ୍ତ୍ରୀ ତାରାକୁ ସୁଗ୍ରୀବକୁ ଅର୍ପଣ କରନ୍ତି । ସେମିତି ରାବଣକୁ ମାରି ତାର ସ୍ତ୍ରୀ ମନ୍ଦୋଦରୀଙ୍କୁ ବିଭୀଷଣକୁ ପ୍ରଦାନ କରନ୍ତି । ସତେ ଯେପରି କି ସ୍ତ୍ରୀଗୁଡାକ ଗାଈ ଗୋରୁ ବା କାଠ ପଥର । ଏହି ଥିଲା ସେତେବେଳର ଧର୍ମ, ସାମାଜିକ ବିଧାନ । ସେଇ ସମାଜର ବାସ୍ତବତା, ବର୍ଣ୍ଣାଶ୍ରମ ଧର୍ମକୁ ବ୍ୟାସ ଓ ବାଲ୍ମୀକି କାବ୍ୟରେ ରୂପ ଦେଇଛନ୍ତି । କିନ୍ତୁ ତାହା ଏତେ ଦୂର ଜଘନ୍ୟ ତଥା ଅମାନବିକ ଯେ କବି ହୃଦୟ ତାକୁ କସ୍ମିନକାଳେ ଗ୍ରହଣ କରିପାରି ନାହିଁ । ସେଠି ସେମାନେ ସେଥିରୁ ଖସିବାର କୌଣସି ସାମାଜିକ ବା ମାନବିକ ବିଧାନର ମାର୍ଗ ପାଉନାହାନ୍ତି । ଗ୍ରୀକ୍ ସାହିତ୍ୟରେ ଏହିପରି ଅବସ୍ଥାରେ ନିୟତିର ଆବିର୍ଭାବ ହେଲାଭଳି ଏଠାରେ କବି ଆଣିଛନ୍ତି ସେଇ ଅଲୌକିକ ଶକ୍ତିକୁ ! କୃଷ୍ଣଙ୍କର ବସ୍ତ୍ରଦାନ ଓ ସୀତାକୁ କୋଳରେ ଧରି ଅଗ୍ନିର ଆବିର୍ଭାବକୁ । ସ୍ମରଣ ରଖିବାକୁ ହେବ, ବାଲ୍ମୀକି କି ବ୍ୟାସଦେବ କେହି ଉଚ୍ଚବର୍ଣ୍ଣର ଲୋକ ନୁହନ୍ତି । ବାଲ୍ମୀକି ଦସ୍ୟୁ , ଆଜିର ଭାଷାରେ କ୍ରିମିନାଲ ଟ୍ରାଇବ୍‌ର ଲୋକ ହେଲାବେଳେ ବ୍ୟାସଦେବ ହେଲେ

କେଉଟୁଣୀ ମତ୍ସ୍ୟଗନ୍ଧାର ଗର୍ଭରୁ ଜାତ । ତାହାହେଲେ ମଧ ସେମାନେ ସେ ସାମାଜିକ ବର୍ଣ୍ଣାଶ୍ରମ ଧର୍ମ ବା ବିଧାନର ଊର୍ଦ୍ଧ୍ୱରେ ନୁଅନ୍ତି ।

ଏ ସବୁର ମୂଳରେ ରହିଛି ବ୍ୟକ୍ତିଗତ ସମ୍ପତ୍ତିର ବିକାଶ, ଯେଉଁ ରାଜଗାଦି ଯୋଗୁଁ ରାମଙ୍କ ବନବାସ , ସେହି ରାଜ୍ୟପ୍ରାପ୍ତି ଲାଗି କୁରୁକ୍ଷେତ୍ର ଯୁଦ୍ଧ । ତାରି ଯୋଗୁଁ ପୁରୁଷ ଜାତିର ପ୍ରାଧାନ୍ୟ, ଯେହେତୁ ପୁତ୍ରହିଁ ସମ୍ପତ୍ତିର ଉତ୍ତାରାଧିକାରୀ, ତେଣୁ ପୁରୁଷ ନାରୀକୁ ବ୍ୟବହାର କରେ ତାର ସମ୍ପତ୍ତି ଭାବରେ, ଖୁସି ଅନୁସାରେ । ସେହି ସମାଜର ଦୁଃଖ ଦୁର୍ଦ୍ଦଶା ଅପନୋଦନର ଏକମାତ୍ର ଉପାୟ ହେଲା କୌଣସି ଅଲୌକିକ ଶକ୍ତିର ସୃଷ୍ଟି । ଅବତାର ଭାବରେ ତାର ପ୍ରଚାର । ତାଙ୍କରି ଜରିଆରେ ଏକ ସାମାଜିକ ଧର୍ମ ବିଧାନର ପ୍ରତିଷ୍ଠା, ଆଉ ସେଥିସହିତ ଅନ୍ୟ ଦିଗରେ ସେଥିରୁ ଜାତ ମଣିଷର ଦୈନ୍ୟ ଜଞ୍ଜାଳକୁ ମୁକ୍ତି ଲାଗି ମଧ ତାଙ୍କରି ଆଶୀର୍ବାଦ ଭିକ୍ଷା ହୋଇଛି ମଣିଷର ଏକମାତ୍ର ଆଶ୍ରା ।

ଏକମାତ୍ର ଜଗନ୍ନାଥ ହେଲେ ଏ ସବୁର ବ୍ୟତିକ୍ରମ । ପ୍ରଥମ ଅବସ୍ଥାରେ ମଣିଷ ଅତି ଅସହାୟ । କିନ୍ତୁ ଅନ୍ୟ ଜଣେ ମଣିଷ ତୁଳନାରେ ସେ ଅଧିକ ଅସହାୟ ନୁହେଁ । ସେ ଅତ୍ୟନ୍ତ ଦୁର୍ବଳ, କିନ୍ତୁ ଅନ୍ୟ ଜଣେ ତା ତୁଳନାରେ ଅଧିକ ସବଳ ନୁହେଁ । ସେହି ଆଦିମ ଆବସ୍ଥାରେ ମଣିଷ ପ୍ରକୃତିଠାରୁ ନିଜକୁ ସ୍ୱତନ୍ତ୍ର ବୋଲି ମନେ କରେ ନାହିଁ , ଅନ୍ୟ ମଣିଷଠାରୁ ନିଜକୁ ଅଲଗା କରି ଦେଖେ ନାହିଁ । ତେଣୁ ପ୍ରକୃତିର ଉର୍ଦ୍ଧ୍ୱରେ , ସାମାଜର ଉପରେ ସେ ଅନ୍ୟ କେଣସି ଶକ୍ତିକୁ ଦେଖି ନାହିଁ । ତାର ବାସ୍ତବତା ଅନୁଭବ କରି ନାହିଁ । ସେଠି କୌଣସି ଅତିପ୍ରାକୃତିକ ବା ଅଲୌକିକ ଶକ୍ତି ଆସି ନାହାନ୍ତି । ସେଠି ସେହିପରି ସାମ୍ୟ , ମୈତ୍ରୀ , ପ୍ରୀତିର ସମ୍ପର୍କ ହୋଇଛି ପ୍ରାକୃତିକ, — ସାମାଜିକ ସମ୍ପର୍କ । ଆଉ ସେହି ଭାବ ହେଉଛି ଜଗନ୍ନାଥ ଭାବ । ପରବର୍ତ୍ତୀ କାଳରେ ମଣିଷ ତାର ପ୍ରକୃତିଠାରୁ ଆପଣାକୁ ସ୍ୱତନ୍ତ୍ର କରି ତାହା ଉପରେ ଆଧିପତ୍ୟ ଜାହିର କରିବାର ଚେଷ୍ଟା କଲାବେଳେ, ସେ ପ୍ରକୃତ୍ତିକୁ ଆୟତ ଓ "ସୃଷ୍ଟି" କଲା ଭିତରେ ଏକ ସ୍ୱତନ୍ତ୍ର ଶକ୍ତିର କଳ୍ପନା କରିଛି; ସେମିତି ସମାଜଠାରୁ ଆପଣାକୁ ଅଲଗା କରି ନିଜର ସ୍ୱତନ୍ତ୍ରତା ଜାହିରର ଚେଷ୍ଟାକଲା ଭିତରେ ସେ ଜନ୍ମ ଦେଇଛି ସମାଜ ଉପରେ ଆଧିପତ୍ୟ ବିସ୍ତାରକାରୀ ଶକ୍ତିକୁ । ଆଉ ସେଇ ଅବସ୍ଥାର ବିକାଶ ଭିତରେ ଜଗନ୍ନାଥ-ଭାବ କ୍ରମଶଃ ଜଗନ୍ନାଥ ଧର୍ମରେ ପରିଣତ ହୋଇଛି । ଜଗନ୍ନାଥଙ୍କ ମହତ୍ତ୍ୱ ଯାଇ ପ୍ରକାଶ ପାଇଛି ଜଗନ୍ନାଥଙ୍କ ମାହାତ୍ମ୍ୟରେ ।



# ପଞ୍ଚଦଶ ପର୍ବ

## ବିଶ୍ୱାସ ଓ ବିଜ୍ଞାନର ମିଳନ

ଜଗନ୍ନାଥଙ୍କର ଆଉ ଏକ ବଡ଼ ବିଶେଷତ୍ୱ ରହିଛି । ତାହା ସାଧାରରତଃ ଆଖିରେ ପଡ଼େ ନାହିଁ । ତା ପ୍ରତି କେହି ଗୁରୁତ୍ୱ ଦିଅନ୍ତି ନାହିଁ । ବର୍ଷରେ ପନ୍ଦର ଦିନ ଜଗନ୍ନାଥ ରୋଗରେ ପଡ଼ିଥାଆନ୍ତି । ତାଙ୍କର ଦୈନନ୍ଦିନ ଆହାର ଖାଇ ପାରନ୍ତି ନାହିଁ, ପଥ୍ୟ ଖାଇ ରହନ୍ତି, ଔଷଧ ଖାଇ ଭଲ ହେଲା ପରେ ରଥକୁ ଆସନ୍ତି । ଅନ୍ୟ ସବୁ ଦେବତାଙ୍କ ଭଳି ଜଗନ୍ନାଥ ନୀରୋଗ ବା ଅମର ନୁହନ୍ତି । ଓଷଦ ଖାଇଲେ ବି ମଣିଷଙ୍କ ଭଳି ବେଳେ ବେଳେ ତାଙ୍କର ମୃତ୍ୟୁ ଘଟେ । ତେବେ ମାନବଜାତିର ପ୍ରତୀକ ଭାବେ ସେ କିନ୍ତୁ ସେହି ମାନନବଜାତି ଭଳି ସଦା ଜୀବନ୍ତ ।

ଜଗନ୍ନାଥ ହେଲେ ମର୍ତ୍ତ୍ୟର ଦେବତା । ତାଙ୍କର ଚେର ମାଟିରେ ନିହିତ । ତାଙ୍କର ଚଳଣି ସମାଜ ଭିତରେ ଆବଦ୍ଧ । ଇତିହାସର ଡ଼ୋରି କାଟି ବାହାରିଯିବା ତାଙ୍କ ପକ୍ଷରେ ସମ୍ଭବ ନୁହେଁ । ପୁରାଣ ଦେବତାଙ୍କ ଭଳି ସେ ମଣିଷର ଊର୍ଦ୍ଧ୍ୱରେ ନାହାନ୍ତି କି ମଣିଷ କଳ୍ପନା ଅନୁସାରେ ଚାଲନ୍ତି ନାହିଁ । ସେ ଚାଲନ୍ତି ସେଇ ପ୍ରତୀକର ଅଧିକାର ବଳରେ ମର୍ତ୍ତ୍ୟର ନିୟମ ଅନୁଯାୟୀ । ତେଣୁ ଓଷଦ ବିନା ତାଙ୍କର ଆରୋଗ୍ୟ ନାହିଁ । କଥାଟି ଅତି ସାନ, କିନ୍ତୁ ତାର ତାତ୍ପର୍ଯ୍ୟ ବେଶ୍ ଗଭୀର, —ସୁଦୂର ପ୍ରସାରିତ ।

ତାଙ୍କର ସେଇ ଓଷଦ ହେଉଛି ଦଶମୂଳ ମୋଦକ, ବୃହତ୍ ପଞ୍ଚମୂଳ ଓ ଲଘୁ ପଞ୍ଚମୂଳ ଇତ୍ୟାଦି । ତାଂ ମାନେ ଜଗନ୍ନାଥ କୌଣସି ଦୈବୀରେ ବିଶ୍ୱାସ କରନ୍ତି ନାହିଁ । କାହା ପାଖରେ ଅଧିଆ ପଡନ୍ତି ନାହିଁ ବା କୌଣସି ମନ୍ତ୍ର ଯନ୍ତ୍ର ବା ଗୁଣିଗାରୁଡ଼ିର ପାଖ ମାଡ଼ନ୍ତି ନାହିଁ । ଦୈବୀଶକ୍ତିକୁ ଛାଡ଼ି ଆଶ୍ରା କରନ୍ତି ଦ୍ରବ୍ୟଗୁଣକୁ । ଅର୍ଥାତ୍ ବିଶ୍ୱାସକୁ ଛାଡି ଧରନ୍ତି ବିଜ୍ଞାନକୁ । ଜଗନ୍ନାଥ ''ପରମଆତ୍ମା'' ହେଲେ ବି ନିଜେ ରୋଗରୁ ମୁକ୍ତ ନୁହନ୍ତି କି ନିଜକୁ ଆରୋଗ୍ୟ କରିବାର ଶକ୍ତି ତାଙ୍କର ନାହିଁ । ସେ ବିଜ୍ଞାନ ଉପରେ ନିର୍ଭର କରନ୍ତି । ଏକମାତ୍ର ବିଜ୍ଞାନ ହିଁ

ନିର୍ଭରଯୋଗ୍ୟ । ଧର୍ମର ଆବରଣ ତଳେ ତାହାହିଁ ହେଲା ପ୍ରକୃତ ଜଗନ୍ନାଥ-ଭାବର ସୁସ୍ପଷ୍ଟ ଇଙ୍ଗିତ ।

ଆମେ ଦେଖିଛେ, ଜଗନ୍ନାଥ ଆଦିମ ସମାଜରୁ ବାହାରି, ବୌଦ୍ଧ ଆତ୍ମା ଧାରଣ କରି, ବୈଦିକ ଧାରଣାର ଆବରଣ ତଳେ ନିଜକୁ ପ୍ରକାଶ କରନ୍ତି । ଏବେ ଦେଖିଲେ ତାଙ୍କର ସେଇ ଜୀବନ ବିଜ୍ଞାନ ସହ ଅବିଚ୍ଛିନ୍ନ । ଅଥଚ ତେଣେ ବିଜ୍ଞାନର ବିକାଶରେ ଦେବତାଙ୍କ ସଂଖ୍ୟା ହ୍ରାସ ପାଉଛି । ବିଜ୍ଞାନ ସହିତ ତାଙ୍କର ଜୀବନ ବନ୍ଧା । ବର୍ତ୍ତମାନ ବିଜ୍ଞାନର ଯୁଗ । ବିଜ୍ଞାନ ପ୍ରଯୁକ୍ତିବିଦ୍ୟାର ବିସ୍ଫୋରଣ ଘଟୁଛି । ସେଥିରେ କଳ୍ପନାତୀତ ଭବିଷ୍ୟତର ବିକାଶ । ସେ କ୍ଷେତ୍ରରେ କଣ ହେବ ସେଇ ଜଗନ୍ନାଥଙ୍କର ଭବିଷ୍ୟତ ଜୀବନ ? ମାନବ ଜାତିର ପ୍ରତୀକ ଭାବରେ ଜଗନ୍ନାଥ ସେଇ ବିକାଶରୁ ଆପଣାକୁ କଦାପି ମୁକ୍ତ ରଖି ନ ପାରନ୍ତି । ସେଇ ପରବର୍ତ୍ତନ ଧାରା ଯେତେ ମନ୍ଥର ହେଲେ ବି ତାହା ତାଙ୍କୁ ପ୍ରଭାବିତ କରିବା ନିଶ୍ଚିତ । ଯାହା ଅତୀତରେ ଅଜ୍ଞାତରେ ଧୀରେ ଧୀରେ ଘଟିଆସିଛି, ତାହା ଭବିଷ୍ୟତରେ ସଜ୍ଞାତରେ କ୍ଷିପ୍ର ବେଗରେ ଦେଖାଦେବା ସ୍ୱାଭାବିକ ।

ଏକମାତ୍ର ଜଗନ୍ନାଥଙ୍କୁ ଛାଡିଦେଲେ ଅନ୍ୟ କାହାରି, କୌଣସି ଦେବତାଙ୍କ ଭବିଷ୍ୟତ ନାହିଁ । ସେମାନେ ସମସ୍ତେ ଅନ୍ଧବିଶ୍ୱାସ ଭିତରୁ ଜାତ, ମଣିଷର ଅସହାୟ ଅବସ୍ଥା ଭିତରେ ଆବଦ୍ଧ । ଜଗନ୍ନାଥଙ୍କର ଜନ୍ମ କିନ୍ତୁ ସେହି ବିଶ୍ୱାସର ଆବିର୍ଭାବର ବହୁ ପୂର୍ବରୁ, ଯେତେବେଳେ କି ମଣିଷର ନାଭିଗ୍ରନ୍ଥି ପ୍ରାକୃତିଠାରୁ ବିଚ୍ଛିନ୍ନ ନୁହେଁ, କୌଣସି ଅପ୍ରାକୃତିକତା ତାକୁ ସ୍ପର୍ଶ କରିନାହିଁ । ସେ ପ୍ରକୃତିକୁ ନିର୍ମଳ ଅମିଶ୍ରିତ ଭାବରେ, ତାହା ଯେପରି ବିଦ୍ୟମାନ, ସେହି ଭଳି ଦେଖିଛି । ତେଣୁ ବିଜ୍ଞାନ ଯାହା ପ୍ରକୃତିର ରହସ୍ୟ ଉଦ୍‌ଘାଟନ କରିବାରେ ଲାଗିଛି, ତାହା ମଣିଷ ଓ ପ୍ରକୃତିର ସମ୍ବନ୍ଧକୁ ପ୍ରାକୃତିକ କରିବାରେ ଜଗନ୍ନାଥ ମଧ୍ୟ ତାଙ୍କର ସମସ୍ତ ଅପ୍ରାକୃତିକର ଆବରଣ ବର୍ଜନ କରି ସ୍ୱକୀୟ ଗୁଣରେ ପ୍ରତିଭାତ ହେବେ । ସେଠି ପ୍ରକୃତି ଓ ମଣିଷ ସଚେତନ ଭାବେ ଏକ ଓ ଅଭିନ୍ନ ହୋଇ ଉଠିବାରେ, ଅର୍ଥାତ୍ ପ୍ରକୃତି ମାନବିକ ଓ ମାନବ ପ୍ରାକୃତିକ ହେବାରେ, ଜଗନ୍ନାଥଙ୍କର ପ୍ରକୃତି ଅନ୍ତର୍ନିହିତ ପ୍ରକୃତି ପ୍ରଜ୍ଜ୍ୱଳିତ ହୋଇଉଠିବ ।

ଜଗନ୍ନାଥଙ୍କୁ ଛାଡିଦେଲେ ଅନ୍ୟ କୌଣସି ଦେବଦେବୀ, ଏପରିକି ସ୍ୱୟଂ ଭଗବାନ ବି ବିଜ୍ଞାନର ସମ୍ମୁଖୀନ ହେବାରେ ସମର୍ଥ ନୁହଁନ୍ତି । ସେ ଶକ୍ତି ଏକମାତ୍ର ଜଗନ୍ନାଥଙ୍କଠାରେ ହିଁ ରହିଛି । ବିଜ୍ଞାନ ସବୁର ରହସ୍ୟ ଉଦ୍‌ଘାଟନ ଭିତରେ ସେମାନଙ୍କର ଅବାସ୍ତବତାକୁ ପ୍ରକାଶ କଲାବେଳେ, ପ୍ରତିପାଦିତ କରେ ଜଗନ୍ନାଥଙ୍କର ସେହି ବାସ୍ତବତାକୁ । ଜଗନ୍ନାଥ ରୋଗରୁ ରକ୍ଷାପାଇଁ ଜୀଇଁ ଉଠନ୍ତି ବିଜ୍ଞାନ ବଳରେ, ବିଜ୍ଞାନ ସ୍ପର୍ଶରେ । ଜଗନ୍ନାଥ ପୁନର୍ଜୀବନ ଲାଭ କଲାବେଳେ ଅନ୍ୟସବୁ ଦେବତାଙ୍କର ମହାପ୍ରୟାଣ ଘଟେ । ଜଗନ୍ନାଥଙ୍କ ସହ ସେହି ବିଜ୍ଞାନର ସମ୍ପର୍କ, ଆୟୁର୍ବେଦ ।

ରୋଗରେ ପଡ଼ି ଔଷଧ ଖାଇ ଆରୋଗ୍ୟ ହେବାଟା ଏକ ଆକସ୍ମିକ ଘଟଣା ନୁହେଁ । ତାହା ଏକ ବିଧାନ । ଆୟୁବେଦର ସେହି ତାତ୍ପର୍ଯ୍ୟ ବୁଝିବାକୁ ହେଲେ ତାହା ଉପରୁ ଅନ୍ଧଧାରଣାକୁ ଦୂର କରିବାକୁ ହେବ । ପ୍ରକୃତ ଜଗନ୍ନାଥଙ୍କୁ ଦେଖିବା ଲାଗି ତାଙ୍କ ଉପରୁ ବିଭିନ୍ନ ଧାରଣାର ପ୍ରଲେପକୁ ପୋଛି ଯେପରି ପରିଷ୍କାର କରିବାକୁ ହୁଏ, ସେହିପରି ପରିଷ୍କାର କରିବାକୁ ହେବ ଆୟୁର୍ବେଦ-ବିଜ୍ଞାନ ଉପରେ ଜମାଟ ବାନ୍ଧିଥିବା ବଦ୍ଧମୂଳ ଅନ୍ଧଧାରଣାର ଅଳନ୍ଧୁକୁ । ଆୟୁର୍ବେଦ କେବଳ ଏକ ଚିକିତ୍ସା ବିଧାନ ନୁହେଁ , ତାହା ଏକ ବିଜ୍ଞାନ, ଏକ ପଦ୍ଧତି, ଏକ ଦର୍ଶନ, ଏକ ଜ୍ଞାନତତ୍ତ୍ୱ, ଏକ ସାମାଜିକ ନୀତି ଏବଂ ଏକ ନୀତିବୋଧକୁ ପ୍ରକାଶ କରେ । ତାହା ଏପରି ଏକ ବିଷୟ ,ଯାହାକୁ ଗ୍ରହଣ କରିବାର ଶକ୍ତି ଏକମାତ୍ର ଜଗନ୍ନାଥଙ୍କ ଛଡା ଅନ୍ୟ କୌଣସି ଦେବତା ବା ଈଶ୍ୱରଙ୍କର ନାହିଁ ।

## ଉପନିଷଦ ଆଉ ଆୟୁର୍ବେଦର ପୁରୁଷ

ଆୟୁର୍ବେଦ ଚିକିତ୍ସା ଜଗନ୍ନାଥଙ୍କୁ ଏକ ଦେବତା ବା ପରମାତ୍ମା ବୋଲି ଦେଖେ ନାହିଁ । ତାଙ୍କୁ ଦେଖେ ଜଣେ ସାଧାରଣ ଦେହଧାରୀ ମାନବ ଭାବରେ । କାରଣ, ଆୟୁର୍ବେଦ ଚିକିତ୍ସା କରେ ଦେହକୁ । କୌଣସି ଅଶରୀର ଆତ୍ମାକୁ ନୁହେଁ । ସେପରି ସତ୍ତାର ଚିକିତ୍ସା ବ୍ୟବସ୍ଥା ଆୟୁର୍ବେଦରେ ନାହିଁ । ଏକମାତ୍ର ଜଗନ୍ନାଥଙ୍କୁ ଛାଡିଦେଲେ, ଅନ୍ୟ କୌଣସି ଦେବ ମନ୍ଦିରରେ ଚିକିତ୍ସା ରୀତି ପ୍ରଚଳିତ ନୁହେଁ । ସେମାନେ ଦେହହୀନ ନ ହେଲେ ଜୀବନ ଶୂନ୍ୟ ।

ଚିକିତ୍ସା ଲାଗି ମଣିଷ (ବା ପୁରୁଷ) ଆବଶ୍ୟକ । ବିନା ପୁରୁଷରେ ଚିକିତ୍ସା ନାହିଁ । ପୁରୁଷକୁ ନ ଦେଖିଲା ଯାଏ ଆୟୁର୍ବେଦ ଚିକିତ୍ସା କରିବ କାହାକୁ । କିନ୍ତୁ ଆୟୁର୍ବେଦରେ ଚିକିତ୍ସା—ପୁରୁଷ ଓ ଉପନିଷଦରେ ବର୍ଣ୍ଣିତ ପୁରୁଷ, ଏ ଦୁହେଁ ସମାନ ନୁହନ୍ତି । ଭିନ୍ନ ଭିନ୍ନ ଏପରିକି ପରସ୍ପର ବିରୋଧୀ । ଗୋଟିଏ ଚିନ୍ତାର ନିର୍ମଳ ଭାବନା ହେଲେ, ଅନ୍ୟଟି ପ୍ରକଟିତ ବିଶ୍ୱର ଅକପଟ ବାସ୍ତବତା ।

ଉପନିଷଦ ତା ଜନ୍ମରୁ ପୁରୁଷକୁ ଖୋଜିବାକୁ ଲାଗିଛି । ତାକୁ ସେ ଦେଖିଛି ଅବିନଶ୍ୱର ଆତ୍ମା ଭାବରେ । ସେଇ ଚିର ଭାସ୍ୱର ଦିପ୍ତିମାନ ଅବିନଶ୍ୱର ପୁରୁଷ ଯିଏ ବିଶ୍ୱରେ ଅଛନ୍ତି, ସେଇ ହିଁ ସବୁ ଶରୀରରେ ବିଦ୍ୟମାନ (ବୃହଦାରଣ୍ୟକ ଉପନିଷଦ ୨.୫୧) କିନ୍ତୁ ଚିକିତ୍ସାଶାସ୍ତ୍ର ଚରକ ସଂହିତା କହେ, ''ଶରୀରମୂଳଂ ପୁରୁଷଃ ଭବତି ।'' ଶରୀରର ମୂଳ ପୁରୁଷ (ଚରକ ସଂହିତା ୨୦.୬) ସୁଶ୍ରୁତ ସଂହିତା ସେଇ ପୁରୁଷକୁ ଆହୁରି ନିର୍ଦ୍ଦିଷ୍ଟ କରିଦିଏ । ପୁରୁଷ କହିଲେ ସେଇ ସବୁ ଜିନିଷକୁ ବୁଝିବାକୁ ହେବ,ଯେଉଁଥିରୁ ପୁରୁଷ ଉଦ୍‌ଭବ । ଅର୍ଥାତ୍ ବିଭିନ୍ନ ରୂପରେ ରହିଥିବା ବସ୍ତୁମାନ । ତାକୁ ପୁରୁଷର ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗ ଭଳି ମଧ୍ୟ ଧରିବାକୁ ହେବ । ଯଥା : ଚର୍ମ, ମାଂସ, ଅସ୍ଥି, ସ୍ନାୟୁ ଇତ୍ୟାଦି । (ସୁଶ୍ରୁତ ୧.୧.୪୭)

ଚିକିତ୍ସାଶାସ୍ତ୍ରର ଏଇ ଧାରଣା ପୁରାପୁରି ଭୌତିକ ଧାରଣା । ତାହା ଉପନିଷଦର ଅଧିବିଦ୍ୟାବାଦୀ ଭାବକୁ ସମ୍ପୂର୍ଣ୍ଣ ପ୍ରତ୍ୟାଖ୍ୟାନ କରେ । ତାହା ଲୋକାୟତ, ଚାର୍ବାକ୍,

ବାର୍ହସ୍ପତ୍ୟଙ୍କ ମତ ସହିତ ମିଳିଯାଏ । ଅବଶ୍ୟ ପରବର୍ତ୍ତୀ କାଳରେ ଚିକିତ୍ସାଶାସ୍ତ୍ରର ଧାରଣାକୁ ଭାବବାଦୀ ମତ, ବ୍ରାହ୍ମଣ ପୁରୋହିତଙ୍କ ଦୃଷ୍ଟିକୋଣ ଏବଂ ଶ୍ରେଣୀସମାଜର ଆଭିମୁଖ୍ୟର ଆବରଣରେ ଢ଼ାଙ୍କିବାରେ ଉଦ୍ୟମ ହୋଇଛି । ସେଥିରେ ପୁରୁଷ ପରମାତ୍ମାରେ ଓ ଜଗନ୍ନାଥ ପରମବ୍ରହ୍ମରେ ପରିଣତ ହୋଇଛନ୍ତି । ସେତେବେଳେ ଆୟୁର୍ବେଦ ଚିକିତ୍ସା ହୋଇଛି ଧର୍ମର ଅଧୀନ । ବିଜ୍ଞାନ ଉପରେ ପଡିଛି ଅନ୍ଧବିଶ୍ୱାସର ଦୃଢ଼ ଆବରଣ । କାରଣ ଆୟୁର୍ବେଦ ଚିକିତ୍ସା କରେ ଭୌତିକ ଦେହକୁ, କୌଣସି ରହସ୍ୟମୟ ଆତ୍ମାକୁ ନୁହେଁ । ତେଣୁ ସେଇ ଚିକିତ୍ସାର ପ୍ରକ୍ରିୟା ଭିତରେ ଆୟୁର୍ବେଦ ନ୍ୟାୟଶାସ୍ତ୍ର, ଜ୍ଞାନତତ୍ତ୍ୱ, ଦର୍ଶନ ଆଦି ପ୍ରତ୍ୟେକ କ୍ଷେତ୍ରରେ ଆପଣାକୁ ସାବ୍ୟସ୍ତ କରିଛି । ମଣିଷର ଭୌତିକ ଶରୀର ସେସବୁ ସହିତ ଅବିଚ୍ଛେଦ୍ୟ ଭାବେ ସମ୍ପୃକ୍ତ । ତଦ୍ଦ୍ୱାରା ତାହା ଉନ୍ମୁକ୍ତ କରେ ମଣିଷ ଆଗରେ ନୂତନ ଦିଗ୍‌ବଳୟର ଅନନ୍ତ ଆଲୋକକୁ ।

ତାହାହେଲେ ସେ ପୁରୁଷ କଣ, ଆସେ କେଉଁଠୁ ଏବଂ କେଉଁ ଉପାଦାନରେ ଗଢ଼ା ? ତାର ବିଚାର ମଣିଷର ଚିକିତ୍ସା ଲାଗି ଏକାନ୍ତ ଆବଶ୍ୟକ । ତାହା ପୁରୁଷକୁ ଭଗବାନଙ୍କ ସୃଷ୍ଟି ବୋଲି ଧରେ ନାହିଁ । ଆୟୁର୍ବେଦ କହେ, ମଣିଷ 'ରସ'ରୁ ଉତ୍ପନ୍ନ, ରସ ରକ୍ଷା କରିବା ଦିଗରେ ଜଣେ ବିଶେଷ ଯତ୍ନବାନ ହେବା ଦରକାର । (ସୁଶ୍ରୁତ ୧.୧୪.୧୨) ସେହି 'ରସ' କ'ଣ, ତାହା ପୁଣି ଆସେ କେଉଁଠୁ ଓ କେଉଁଥିରେ ତିଆରି ? 'ରସ' ମଧ୍ୟ ସେହିପରି ଭୌତିକ ପଦାର୍ଥରୁ ଜାତ । ମଣିଷ ଦେହର ମୌଳିକ ପଦାର୍ଥରୁ ବାହାରେ । ''ଖାଦ୍ୟ ଯାହା ପଞ୍ଚ ରୂପର ବସ୍ତୁରୁ ତିଆରି, ଯେତେବେଳେ ତାହା (ଦେହ ଭିତରର) ଅଗ୍ନି ଦ୍ୱାରା ସୂକ୍ଷ୍ମ ନିର୍ଯ୍ୟାସରେ ସମ୍ପୂର୍ଣ୍ଣ ରୂପାନ୍ତରିତ ହୁଏ, ତାହା ହୁଏ 'ରସ' (ସୁଶ୍ରୁତ ୧.୧୪.୧) ''ରସ୍'' ଧାତୁର ଅର୍ଥ, ଗତି କରିବା, ଘୂରି ବୁଲିବା । ସେ ପଦାର୍ଥ ଦେହସାରା ଅବିଶ୍ରାନ୍ତ ଘୂରି ବୁଲୁଥାଏ । ସେଇ ରସରେ ଦେହର ମୌଳିକ ଉପାଦାନ — ରକ୍ତ, ମାଂସ, ଅସ୍ଥି, ମଜ୍ଜା ଓ ଶୁକ୍ରର ସୃଷ୍ଟି ।'' (ଚରକ ୬.୧୫.୧୭)

ତେଣୁ ଚରକ ଗୋଟିଏ ପଦରେ କହେ, ''ଶରୀର ଯଥାର୍ଥରେ ଖାଦ୍ୟରୁ ଉତ୍ପନ୍ନ । (ଚରକ ୧.୨୮.୪୮) ଯେହେତୁ ସେଇ ଖାଦ୍ୟ ବସ୍ତୁର ପାଞ୍ଚ ପ୍ରକାର ରୂପରେ ତିଆରି, ତେଣୁ କହିବାକୁ ଗଲେ ଶରୀର ଅର୍ଥ ସେଇ ବସ୍ତୁର ସର୍ବମୋଟ ରୂପାନ୍ତର । ସୁଶ୍ରୁତ କହେ, ଖାଦ୍ୟ ଯେତେବେଳେ ସମ୍ପୂର୍ଣ୍ଣ ରୂପାନ୍ତରିତ ହୁଏ, ସେତେବେଳେ ଖାଦ୍ୟରେ ଥିବା ପଞ୍ଚଭୂତର ଗୁଣସବୁ ଶରୀର ଭିତରେ ତାଙ୍କର ଅନୁରୂପ ଜିନିଷ ସହିତ ମିଶିଯାଆନ୍ତି । ପ୍ରାଚୀନ ଚିକିତ୍ସକଗଣ ତାଙ୍କର ପର୍ଯ୍ୟବେକ୍ଷଣ ଦ୍ୱାରା ଦେଖନ୍ତି ଯେ ଖାଦ୍ୟର, ଅର୍ଥାତ୍ ମଣିଷର ପ୍ରକୃତିର ସମ୍ପର୍କ ଅତୀବ ଘନିଷ୍ଠ । ପ୍ରକୃତି ଓ ପୁରୁଷ (ମଣିଷ) ଉଭୟ ପଞ୍ଚଭୂତରେ ଗଢ଼ା । ଏହାହିଁ ହେଲା ଚିକିତ୍ସା ଶାସ୍ତ୍ରର ମୂଳ । ''ଯାହା ରହିଛି ପ୍ରକୃତିରେ ତାହା ରହିଛି ମଣିଷଠାରେ । ବୁଦ୍ଧିମାନ ଲୋକ ଏହି ଭାବରେ ଉଭୟଙ୍କୁ ଦେଖିବାକୁ ଚାହିଁବ ।'' (ଚରକ ୪.୪.୧୩) ତେଣୁ, ''ଅୟଂ ଲୋକସମ୍ମତଃ ପୁରୁଷଃ''— ପୁରୁଷ ହେଉଛି ପ୍ରକୃତିର ସଂକ୍ଷିପ୍ତ ସଂସ୍କରଣ । (ଚରକ ୪.୫.୩) ଏପରିକି ମାତୃଗର୍ଭରେ ଯେଉଁ ଭ୍ରୂଣ ଜାତ ହୋଇ ମଣିଷ ହୁଏ, ତାହା ମଧ୍ୟ ବସ୍ତୁର ରୂପାନ୍ତର ଛଡ଼ା ଅନ୍ୟ କିଛି ନୁହେଁ ।

## ପିଣ୍ଡ ବ୍ରହ୍ମାଣ୍ଡ ଅଭିନ୍ନ

ଅତଏବ ଆମର ଗାଉଁଲି କଥାରେ ପିଣ୍ଡ ବ୍ରହ୍ମାଣ୍ଡ ସମାନ । ଯାହା ଅଛି ପିଣ୍ଡେ, ତାହା ଅଛି ବ୍ରହ୍ମାଣ୍ଡେ । ଯାହା ଅଛି ବ୍ରହ୍ମାଣ୍ଡେ, ତାହା ଅଛି ପିଣ୍ଡେ । ମଣିଷ ପଞ୍ଚଭୂତରୁ ଆସେ ଓ ପଞ୍ଚଭୂତରେ ମିଶିଯାଏ, ଅର୍ଥାତ୍ ନୁହେଁ ଏକ ଓ ଅଭିନ୍ନ । ତାହା ସାଧାରଣତଃ ସମସ୍ତେ ମାନନ୍ତି । କିନ୍ତୁ ତାର ତାତ୍ପର୍ଯ୍ୟର ଅନୁସରଣ ଚିକିତ୍ସକ ପକ୍ଷରେ ଅପରିହାର୍ଯ୍ୟ । ପିଣ୍ଡ ବ୍ରହ୍ମାଣ୍ଡ ଯଦି ଅଭିନ୍ନ, ଏକ ଜିନିଷରେ ଗଢ଼ା, ତେବେ ମଣିଷର ସ୍ୱାସ୍ଥ୍ୟ ଓ ତାର ଶରୀରକୁ ଜାଣିବାକୁ ହେଲେ ସେଇ ପ୍ରକୃତି ବା ପଞ୍ଚଭୂତକୁ ଜାଣିବାକୁ ହେବ । ସେ ସମ୍ବନ୍ଧରେ ଜ୍ଞାନ ବିନା ମଣିଷର ଚିକିତ୍ସା ସମ୍ଭବ ନୁହେଁ । ପ୍ରକୃତି ବା ଭୂତମାନଙ୍କ ସମ୍ବନ୍ଧରେ ସେ ଜ୍ଞାନ ହେଲା ଅସଲରେ ତାଙ୍କର ଗତି, ରୂପ, ଗୁଣ ଓ ସ୍ୱଭାବ ଆଦି ସମ୍ପର୍କରେ ଜ୍ଞାନ ।

ମଣିଷ ଓ ପ୍ରକୃତି ଯଦି ଏକ ଓ ଅଭିନ୍ନ, ଦୁହେଁ ଏକ ଜିନିଷରେ ଗଢ଼ା, ଜାଣିବାକୁ ହେବ ଯେ, ସେ ଦୁହେଁ ଏକ ଓ ସମାନ ନିୟମର ଅଧୀନ ଓ ତଦ୍ଦ୍ୱାରା ନିୟନ୍ତ୍ରିତ । ଗୋଟିଏ ନିୟମରେ ଚାଲନ୍ତି । ତାହା ଥିଲା ଅତି ପ୍ରାଚୀନ ଲୋକଙ୍କର ଧାରଣା, ଗୋଟାଏ ସ୍ୱତଃସ୍ଫୂର୍ତଭାବ ଯାହାକୁ ସେ କହୁଥିଲେ ଋତ । ଏଥିପୂର୍ବରୁ ଏଇ ଋତ ବିଷୟଟି ଆମେ ଆଲୋଚନା କରିଛେ । ତାଙ୍କ ଦୃଷ୍ଟିରେ ସୂର୍ଯ୍ୟର ଉଦୟଠାରୁ ଅଙ୍କୁରର ଉଦ୍‌ଗମ ଯାଏ, ସବୁ ଋତ ଅନୁଯାୟୀ ଘଟେ । ମଣିଷର କାର୍ଯ୍ୟଠାରୁ ଗାଈ ଦୁଧ ଦେବାଯାଏ ସବୁ ଚାଲେ ସେଇ ଋତ ଅନୁଯାୟୀ । ସେ ଋତ — (ନିୟମ) ପ୍ରକୃତି ଓ ସମାଜ ସବୁଠି ସମାନ ଭାବେ ପ୍ରବାହିତ । ସେଇ ଋତ, ମଣିଷ ସହ ପ୍ରକୃତିର ସମ୍ବନ୍ଧକୁ ଯେପରି ପ୍ରକାଶ କରେ, ସେହିପରି ଅନ୍ୟ ଦିଗରେ ପ୍ରକାଶ କରେ ମଣିଷ ସହିତ ମଣିଷର ସମ୍ପର୍କକୁ,— ତା ମାନେ, ସବୁ ମଣିଷଙ୍କ ପାଇଁ ସେହି ଏକ, ସମାନ ନିୟମ । ଅନ୍ୟ ଭାଷାରେ କହିଲେ, ସମାନ ନିୟମ ହେଲା ସାମ୍ୟର ସମ୍ପର୍କ ।

ଏଥିପୂର୍ବରୁ ବହୁ ଦୃଷ୍ଟାନ୍ତ ସହ ତାହା ଆଲୋଚିତ ହୋଇଛି । ଋଗ୍‌ବେଦର ପ୍ରଥମ ପର୍ଯ୍ୟାୟରେ ସେହି ଋତର ବହୁ ଉଲ୍ଲେଖ ରହିଛି । ସମସ୍ତେ ଏକତ୍ର ମିଳିତଭାବେ ଏକ ମନରେ ଏକଇ ଧନସମ୍ପତ୍ତି ଭିତରେ ସମାନ ଭାବେ ବାସ କରୁଥିଲେ । (ଋ ୭.୭୬.୪/୫) ଅବଶ୍ୟ ଧନସମ୍ପତ୍ତି ବୋଇଲେ, ତାହା ଅତି ନଗଣ୍ୟ, ଏବର ତୁଳନାରେ କିଛି ନୁହେଁ । ଅସଲ କଥା, ସେତେବେଳେ ଲୁଣ୍ଠନ ବା ଶୋଷଣକାରୀ ବୋଲି କେହି ନ ଥିଲେ । ଅଗ୍ନି ସମସ୍ତଙ୍କ ଲାଗି ସମାନ ଧନ ସୃଷ୍ଟି କରୁଥିଲେ । ଋଗ୍‌ବେଦ ୩.୨.୧ ଇନ୍ଦ୍ର ସମସ୍ତଙ୍କୁ ସମାନ ଭାବେ ରକ୍ଷା କରୁଥିଲେ । ସେହି ସାମୂହିକ ଜୀବନର ଗୌରବଗାନ ଋଗ୍‌ବେଦର ପ୍ରଥମ ପର୍ଯ୍ୟାୟରେ ବେଶ୍ ପରିସ୍ଫୁଟ ।

ଆମେ ଦେଖିଛେ, — ଯେତେବେଳେ ସେହି ସାମୂହିକ ଜୀବନର ଅବସାନ ଘଟିଛି, ଶ୍ରେଣୀସମାଜ ଆବିର୍ଭାବରେ ପୂର୍ବର ସେହି ଋତର ବିଲୋପ ଘଟିଛି, ମଣିଷ ମଣିଷ ମଧ୍ୟରେ ଐକ୍ୟର ସମ୍ବନ୍ଧ ଲୋପ ପାଇଛି । ସେତେବେଳେ ମଣିଷ ଅତି ବିକଳଭାବେ ପୂର୍ବର ସେଇ ଋତକୁ ଝୁରି ହୋଇଛନ୍ତି ତାହା ପ୍ରକାଶ ପାଇଛି, ସେହି ଋଷି କବିଙ୍କର ଆକୁଳ ଆହ୍ୱାନରେ ।

ଋଷି ଡାକ ମାରିଛନ୍ତି ''ମୁଁ ସେମାନଙ୍କୁ ପଚାରେ ଅତୀତର ସେଇ ଋତ ଗଲା କୁଆଡ଼େ — ''କ୍ୱ ପୂର୍ବଂ ଋତଂ ଗତଂ । (ଋ ୧.୧୦୫.୪) ଋତ ପୁଣି ଥରେ ଜନ୍ମଲାଭ କରୁ । ''ନବ୍ୟଂ ଜାୟତାଂ ଋତଂ'' (ଋ ୧.୧୦୫.୧୫) । ବିଶେଷ ଉଲ୍ଲେଖନୀୟ ବିଷୟ ହେଉଛି, ଏଇ ଦୁଇଟି ଶ୍ଳୋକହିଁ ଋଗ୍‌ବେଦର ସର୍ବଶେଷ ସୂକ୍ତ, ଏହା କଣ ତାତ୍ପର୍ଯ୍ୟପୂର୍ଣ୍ଣ ନୁହେଁ ?

## ସମାଜର ବିଭାଗରେ ପୁରୁଷର ବିଭକ୍ତି

ଏହା ହେଲା ଉପନିଷଦର ଠିକ୍ ପୂର୍ବକାଳର କଥା । ସେତେବେଳକୁ ଆଦିମ ସାମ୍ୟ ସମାଜର ପତନ ସହିତ ବିଭେଦ, ବୈଷମ୍ୟର ଭାବ ସଞ୍ଚରିତ ହେଲାଣି । ସେଥିରେ ବ୍ୟଥିତ ପ୍ରାଣର ଆକୁଳ ଆକାଙ୍କ୍ଷା ପ୍ରକାଶ ପାଏ । ତାହା ଚାହିଁଛି ପୁନର୍ବାର ସେଇ ଋତ ସମାଜକୁ ଫେରିବାକୁ । ତେଣୁ ଋଷିକବି ସମସ୍ତଙ୍କୁ ଅତି ଉଚ୍ଚକଣ୍ଠରେ ନିବେଦନ କରି କହନ୍ତି, ''ତମେ ସବୁ ଏକତ୍ର ମିଳିତ ହୁଅ । ଏକ ସ୍ୱରରେ ଘୋଷଣା କର । ଏକତ୍ର ମନ ବିନିମୟ କର, ଯେପରି ଅତୀତରେ ଦେବତାମାନେ ସଚେତନ ଭାବେ ଏକତ୍ର ସେମାନଙ୍କ ଭାଗ ଗ୍ରହଣ କରୁଥିଲେ । ମନ୍ତ୍ର ସମାନ ହେଉ, ସମିତି ସମାନ ହେଉ, ବିଚାର ଏକ ହେଉ, ତମମାନଙ୍କ ସହିତ ମୁଁ ଏକ ମନ୍ତ୍ରରେ ମନ୍ତ୍ରଣା କରେ । ତମମାନଙ୍କ ସହିତ ମୁଁ ଏକ ହବିରେ ହୋମକରେ । ତମମାନଙ୍କ ନିଷ୍ପତ୍ତିଗୁଡିକ ସମାନ ହେଉ, ମନ ଏକ ହେଉ । ତମ ସର୍ବସାଧାରଣଙ୍କ ମଙ୍ଗଳ ପାଇଁ ତମର ସାଧାରଣ ଐକ୍ୟ ପ୍ରତିଷ୍ଠିତ ହେଉ ।'' (ଋ ୧୦.୧୯୧.୨. ଓ ୩)

ଋତର ଅବସାନରେ ଋଷି କବି ପ୍ରାଣର ସେଇ ଶେଷ ଆତୁର ଆହ୍ୱାନ ଆଜି ବି ସନ୍ତପ୍ତ ଜୀବନର ଆକୁଳ ବାସନା ଭାବରେ ସର୍ବତ୍ର ପ୍ରତିଧ୍ୱନିତ । ପାର୍ଲାମେଣ୍ଟ ସେଣ୍ଟ୍ରାଲ ହଲର ପ୍ରବେଶ ପଥରେ ତାହା ଭାରତର ମହାନ୍ ଆଦର୍ଶ ଓ ଅନ୍ତିମ ଲକ୍ଷ୍ୟ ଭାବରେ ଏବେ ବି ପ୍ରକାଶ ପାଏ । ଅତୀତରେ ଆଦିମ ଜୀବନର ସେଇ ଅମର ସ୍ମାରକୀ ହୁଏ ଏବେ ଭବିଷ୍ୟତ ଜୀବନ ଲାଗି ଅମୋଘ ନିର୍ଦ୍ଦେଶର ଅଭ୍ରାନ୍ତ ସୂଚନା ।

ଆଦିମ ସମାଜରେ ଋଗ୍‌ବେଦ ଆରମ୍ଭର ସେଇ ଋତ - ଧରଣାର ମୂଳ ଉତ୍ସ ଏବଂ ଭାରତୀୟ ଚିକିତ୍ସାର ମୂଳ ଦୃଷ୍ଟିକୋଣ, — ଏମାନେ ପରସ୍ପର ସହିତ ଘନିଷ୍ଠଭାବେ ଜଡ଼ିତ, ଯେହେତୁ ଏମାନେ ଗୋଟିଏ ଅଙ୍କୁରରୁ ଉଦ୍ଭବ । ତାହା ହେଲା, ''ପିଣ୍ଡ ଓ ବ୍ରହ୍ମାଣ୍ଡ ଏକ ! ସମଗ୍ର ବିଶ୍ୱପ୍ରକୃତି ପଞ୍ଚଭୂତରେ ଗଢ଼ା — ତାର ସେଇ ଗୋଟିଏ ନିୟମରେ ଚାଳିତ ।

## ଋତ, ଜଗନ୍ନାଥ ଓ ଆୟୁର୍ବେଦ

ଆମେ ଯେଉଁ ଋତ କଥା ଆଲୋଚନା କଲେ, ସେଇଠି ରହିଛି ଜଗନ୍ନାଥ ଭାବ ଓ ଭାରତୀୟ ଚିକିତ୍ସା- ବିଧାନର ମୂଳ ଚେର । ଜଗନ୍ନାଥ - ଭାବ ଯେତେ ପ୍ରକାରରେ ପ୍ରକାଶ ପାଉନା କାହିଁକି, ତାହାର ମର୍ମ ହେଲା ସାମ୍ୟ, ମୈତ୍ରୀ ଓ ପ୍ରୀତି । ତାହା କେବଳ ତାରି ଅନୁରୂପ ସମାଜରେ ସମ୍ଭବ । ତାହା ସେଇ ଆଦିମ ଋତରେ ଜନ୍ମ ନେଇଛି । ତାରି ସାମାଜିକ ପ୍ରତିଫଳନ ମାତ୍ର । ଉପନିଷଦ ଯୁଗ ପରେ ଶ୍ରେଣୀବିଭକ୍ତ ସମାଜରେ ଆତ୍ମା, ବ୍ରହ୍ମ, କର୍ମ, ମୋକ୍ଷ ଚାତୁର୍ବର୍ଣ୍ଣ ଆଦି ଯେତେ ରଙ୍ଗରେ ରଞ୍ଜିତ କଲେ ବି ଜଗନ୍ନାଥଙ୍କର ସେଇ ସାମ୍ୟ

ମୈତ୍ରୀ- ପ୍ରୀତିର ଭାବ ସେଇ ପରି ଅକ୍ଷତ ରହିଛି । ଧର୍ମ, ଦର୍ଶନ, ଶାସ୍ତ୍ର ପୁରାଣ ତାଙ୍କର ସମସ୍ତ ପ୍ରଭାବ ଓ ପ୍ରଚେଷ୍ଟା ସତ୍ତ୍ୱେ କେହି ଜଗନ୍ନାଥଙ୍କ ଭାବକୁ ପୋଛି ଦେବାରେ ସମର୍ଥ ନୁହନ୍ତି । କାରଣ, ଜଗନ୍ନାଥଙ୍କର ଭାବହିଁ ମାନବିକତାର ମୂଳ ମର୍ମ । ମାନବର ପ୍ରାକୃତିକ ପ୍ରକୃତି । ତାହା ବିନା ଜଗନ୍ନାଥ ଯେପରି ତାତ୍ପର୍ଯ୍ୟଶୂନ୍ୟ, ମାନବ ସେହିପରି ମାନବିକତା-ହୀନ । କାରଣ, ପ୍ରକୃତି ଯାହା ମଣିଷ ଭିତରେ ତାର ଚେତନା ଲାଭ କରେ, ମଣିଷ ତାର ସେଇ ପ୍ରାକୃତିକ ଚେତନାରୁ ବଞ୍ଚିତ ହୁଏ ।

ଠିକ୍ ସେମିତି ଭାରତୀୟ ଚିକିତ୍ସା । ତାର ମୂଳ ରହିଛି ସେଇ ଆଦିମ ଋତ ଯୁଗରେ। ଯେଉଁଠି ମଣିଷ ଓ ପ୍ରକୃତି ଦୁହେଁ ଏକ ଓ ଅଭିନ୍ନ । ଦୁହେଁ ଏକଇ ପ୍ରାକୃତିକ ନିୟମରେ ଚାଳିତ । ଋତର ଅବସାନରେ ସେଇ ନିୟମର ଅବସାନ ଘଟିଛି । ସେହି ନିୟମ ଦୁଇ ଭାଗରେ ପରିଣତ ହୋଇଛି । ପ୍ରକୃତି ଓ ସମାଜ ଅଲଗା ହୋଇଯାଇଛନ୍ତି । ପ୍ରକୃତି ତାର ପ୍ରାକୃତିକ ନିୟମରେ ଗତି କଲାବେଳେ ସମାଜ ଗତି କରିଛି ତାର ସାମାଜିକ ନିୟମ ଅର୍ଥାତ୍ ଶ୍ରେଣୀସମାଜର ବିକାଶର ନିୟମ ଅନୁଯାୟୀ । ତାର ବିଚାର ପୂର୍ବର ସେଇ ସମୂହ ଦୃଷ୍ଟିରେ ନ ହୋଇ ହୋଇଛି ବ୍ୟକ୍ତିର ଦୃଷ୍ଟିରୁ । ତେଣୁ ଉପନିଷଦର ଆତ୍ମା, ମୋକ୍ଷ, ବ୍ରହ୍ମ, ପୁନର୍ଜନ୍ମ ଆଦି ସମସ୍ତ ବିଷୟ ହୋଇଛି ବ୍ୟକ୍ତି ବିଶେଷଙ୍କ ଜୀବନର ବିଷୟ । ସେଠି ପୂର୍ବର ଗୋଷ୍ଠୀ - ଜୀବନର ସମସ୍ତ କାମନା ଲୋପ ପାଇଛି । ସେହି ଧାରଣାର ପ୍ରଚାରକ, ପ୍ରବର୍ତ୍ତକ ଆଉ ରକ୍ଷକ ହେଲେ ସମାଜର ରକ୍ଷାକର୍ତ୍ତା, ଶାସକଶ୍ରେଣୀ ।

ଏହାର ପ୍ରଭାବ ପଡ଼ିଛି ସେଇ ବିଜ୍ଞାନର ଅଙ୍କୁର, ଆମର ଆଲୋଚିତ ଚିକିତ୍ସା - ପଦ୍ଧତି ଉପରେ । ତାହା ସେହି ଶ୍ରେଣୀ - ଆଧିପତ୍ୟର ଅଧୀନସ୍ଥ ହୋଇଛି । ସେମାନେ ଚାହିଁଛନ୍ତି ନିଜର ଦୃଷ୍ଟିକୋଣରୁ ସେହି ଆୟୁର୍ବେଦ ବିଜ୍ଞାନକୁ ନିୟନ୍ତ୍ରଣ କରିବାକୁ । କିନ୍ତୁ, ବିଜ୍ଞାନ ବିନା ମଣିଷର ସ୍ଥିତି କି ବିକାଶ ନାହିଁ । ତେଣୁ ସକଳ ପ୍ରତିବନ୍ଧକ ସତ୍ତ୍ୱେ ବିକାଶ ଲଭିଛି ବିଜ୍ଞାନ । ସମସ୍ତ ଅନ୍ଧଧାରଣା, ଧର୍ମୀୟ ବିଶ୍ୱାସ ଓ କୁସଂସ୍କାରର ଘାତ ପ୍ରତିଘାତ ଭିତରେ ଜୀବନ୍ତ ଓ ନିରବଚ୍ଛିନ୍ନ ରହିଛି ମାନବିକତାର ଧାରା । ଗୋଟିକର ଦୃଷ୍ଟାନ୍ତ ମଣିଷର ଜୀବନ ରକ୍ଷାର ବିଜ୍ଞାନ ଆୟୁର୍ବେଦ ହେଲେ, —— ଅନ୍ୟଟି ହେଉଛି ମାନବର ଚରମ ପ୍ରକାଶନ —— ମାନବିକତାବାଦ, ଯାର ପ୍ରତୀକ ସ୍ୱୟଂ ଜଗନ୍ନାଥ । ମାନବର ଜୀବନରକ୍ଷା ଓ ସେହି ଜୀବନର ବିକାଶରେ ମାନବିକତାର ପ୍ରକାଶନ । ମାନବିକତାବାଦର ପ୍ରସାର କେବଳ ମଣିଷ ଜୀବନର ସ୍ୱାଭାବିକତା ଆଣେ, ତାର ଜୀବନକୁ ସାର୍ଥକତା ପ୍ରଦାନ କରେ । ସେହି ମାନବିକତାବାଦହିଁ, ଜଗନ୍ନାଥ, ଆୟୁର୍ବେଦ ଓ ବେଦର ଋତକୁ ଏକ ଅଖଣ୍ଡ ଡୋରିରେ ବାନ୍ଧେ । ଅତଏବ ଆଦିମ ଯୁଗର ସେଇ ବିଚାର ହେଲା ଋତ, ତାର ସାମାଜିକ ଜୀବନ ଯାତ୍ରାର ପ୍ରଣାଳୀ ହେଲା ଜଗନ୍ନାଥ-ଭାବ,ଏବଂ ତାର ଜୀବନ ରକ୍ଷାର ପଦ୍ଧତି (ଅର୍ଥାତ୍ ରୋଗ, ବ୍ୟାଧି ମୁହଁରୁ ରକ୍ଷା ହେଲା ଆୟୁର୍ବେଦ ବିଜ୍ଞାନର ଆଦିମ ଧାରଣା, ଚିକିତ୍ସା ବିଜ୍ଞାନର ତାତ୍ପର୍ଯ୍ୟ, ଜଗନ୍ନାଥ-ଭାବ ସହ ଅତି ନିବିଡ଼ଭାବେ ଜଡିତ । ତାର ଆଲୋଚନା ଦ୍ୱାରା ଉଭୟଙ୍କର ମହତ୍ତ୍ୱ ଓ ଆଭିମୁଖ୍ୟ ପରିସ୍ଫୁଟ ହୋଇଉଠେ । ଏପରି ମାନବିକ - ଭାବର ଦୃଷ୍ଟାନ୍ତ ଅନ୍ୟତ୍ର ନାହିଁ ।

**ଦୃଷ୍ଟି ଭିତ୍ତି ଓ ପଦ୍ଧତି**

ରତ ନଷ୍ଟ ହେବାରେ, ପ୍ରକୃତି ଓ ମଣିଷର ଐକ୍ୟର ଧାରଣା କେବଳ ଲୋପ ପାଇ ନାହିଁ, ସମାଜ କେବଳ ଦୁଇ ଭାଗରେ ବିଭକ୍ତ ହୋଇନାହିଁ, ସେଥିସହିତ ମଣିଷ ନିଜେ ମଧ୍ୟ ଶରୀର ଓ ଆତ୍ମା, ଏହିପରି ଦୁଇ ଭାଗରେ ବିଭକ୍ତ ହୋଇଯାଇଛି । ଉପନିଷଦ ଅନୁସାରେ ଆତ୍ମା, ଏହିପରି ଦୁି ଭାଗରେ ବିଭକ୍ତ ହୋଇଯାଇଛି । ଉପନିଷଦ ଅନୁସାରେ ଆତ୍ମା ହେଲା ମୁଖ୍ୟ । ତାକୁ ପାଇବା ହେଲା ମଣିଷର ଚରମ ଲକ୍ଷ୍ୟ । ଆତ୍ମାର ଗୌରବ ସହିତ ତେଣେ ଶରୀରର ଗୁରୁତ୍ୱ ନ୍ୟୂନ ହୋଇଛି । ଏପରିକି ଉପନିଷଦର ବିଚାରବନ୍ତ ଲୋକେ ତାକୁ ହୀନ ଦୃଷ୍ଟିରେ ଦେଖନ୍ତି । ତେଣୁ ପ୍ରାଚୀନ ଚିକିତ୍ସକଙ୍କ କ୍ଷେତ୍ରରେ ବିଷୟଟି ସମ୍ପୂର୍ଣ୍ଣ ବିପରୀତ । ତାଙ୍କ ପାଇଁ ଶରୀର କେବଳ ମୁଖ୍ୟ ନୁହେଁ, ତାହା ସବୁ କିଛି, ବିନା ଶରୀରରେ ଚିକିତ୍ସାର ପ୍ରଶ୍ନ କାହିଁ ?

ଦ୍ୱିତୀୟରେ, ବିଶ୍ୱପ୍ରକୃତିକୁ ବାଦ ଦେଇ ଶରୀରକୁ କଳ୍ପନା କରାଯାଇ ନ ପାରେ । ଯାହା ବିଶ୍ୱରେ ଅଛି, ତାହା 'ପୁରୁଷରେ' ଅଛି । ଯାହା 'ପୁରୁଷରେ' ଅଛି ତାହା ବିଶ୍ୱରେ ଅଛି । ଚରକ କଥାରେ, 'ଏହି ହେଲା ମାର୍ଗ, ଯଦ୍ୱାରା ବୁଦ୍ଧିମାନ ଲୋକ ଉଭୟଙ୍କୁ ଦେଖିବା ଉଚିତ ।'' (ଚରକ ୪.୪.୧୩) ଏହାର ଏକମାତ୍ର ଅର୍ଥ, ହେଲା, ଶରୀର ପ୍ରାକୃତିକ ବସ୍ତୁର ଏକ ରୂପାନ୍ତର ମାତ୍ର । ମାତୃଗର୍ଭରୁ ଜାତ ଶିଶୁ ସେହିପରି ଏକ ରୂପାନ୍ତର (ଚରକ ୪.୪.୧୨) । ପ୍ରକୃତିରୁ ଶରୀରର ସୃଷ୍ଟି, ପ୍ରାଚୀନ ଭାରତର ଚିକିତ୍ସକଙ୍କ ଏହା ଏକ ମହାନ ଅବଦାନ, ଏକ ବିରାଟ କୃତିତ୍ୱ । ମଣିଷ ପ୍ରକୃତିର ଐକ୍ୟ ଯେପରି ଏକ ବୈଜ୍ଞାନିକ ତତ୍ତ୍ୱ, ସେହିପରି ଏକ ଦାର୍ଶନିକ ଧାରଣା ଏବଂ ସେହି ଭିତ୍ତି ଉପରେ ପ୍ରାଚୀନ ଭାରତୀୟ ଚିକିତ୍ସକଙ୍କ ଚିକିତ୍ସାର ନୀତି, ପଦ୍ଧତି ଓ ଆଭିମୁଖ୍ୟ ପର୍ଯ୍ୟବସିତ ।

ତୃତୀୟରେ, ବିଶ୍ୱର ପ୍ରତ୍ୟେକ ଜିନିଷ ଭୂତଙ୍କର ସମାବେଶରେ ଗଠିତ । ତେଣୁ ସେମାନେ ପରସ୍ପର ସହ ସମ୍ବନ୍ଧଯୁକ୍ତ । ପରସ୍ପର ଉପରେ ନିର୍ଭରଶୀଳ ବା ନିଜ ନିଜ ଭିତରେ ଛନ୍ଦାଛନ୍ଦି । କୌଣସି ଜିନିଷ ଗୋଟିଏ ମାତ୍ର ଭୂତରେ ଗଢ଼ା ନୁହେଁ । ନିର୍ଦ୍ଦିଷ୍ଟ ଭୂତଙ୍କର ସ୍ୱଳ୍ପତା ଓ ଆଧିକ୍ୟ ଯୋଗୁଁ ପଦାର୍ଥର ରୂପ, ଗୁଣ ଆଦିରେ ଫରକ ଘଟିଥାଏ । ଚିକିତ୍ସା ଲାଗି ସେ ସବୁର ଧାରଣା ଆବଶ୍ୟକ । ତେଣୁ ବିଶ୍ୱ ପ୍ରକୃତିରେ କୌଣସି ଜିନିଷ ଚିକିତ୍ସା ଦୃଷ୍ଟିରୁ ଅଦରକାରୀ ବା ଅପ୍ରାସଙ୍ଗିକ ନୁହେଁ । ଚରକ ସଂହିତାର ମହାନ ବାଣୀ ହେଲା — ବୁଦ୍ଧିମାନ ଚିକିତ୍ସକଙ୍କ ଲାଗି ବିଶ୍ୱ ଯେପରି ଶିକ୍ଷାଗୁରୁ, ମୂର୍ଖଙ୍କ ପାଇଁ ସେହିପରି ଶତ୍ରୁ (ଚରକ ୩.୮.୧୪) ।

ବିଶ୍ୱର ପ୍ରତ୍ୟେକ ଜିନିଷର ଆବଶ୍ୟକତା ଅର୍ଥ ହେଲା ପୃଥିବୀର ସମସ୍ତ ଉଦ୍ଭିଦ ଜଗତ, ପ୍ରାଣୀ ଜଗତ ଓ ଜଡ଼ ଜଗତ ଖଣିଜ ପଦାର୍ଥ ଚିକିତ୍ସାର ପରିସରଭୁକ୍ତ । ତେଣୁ କୌଣସି ଗୁଳ୍ମ ଓ ତରୁଲତା କି ପଶୁପକ୍ଷୀ କି ଖଣିଜ ପଦାର୍ଥ ଆଦି କେହି ସେଥିରୁ ବାଦ ପଡ଼ନ୍ତି ନାହିଁ । ସେମାନଙ୍କର ଦ୍ରବ୍ୟଗୁଣ ରହିଛି । ସେସବୁର ଦ୍ରବ୍ୟଗୁଣର ବିଚାର କରିବାକୁ ହେଲେ ପଦାର୍ଥ ଓ ଉଦ୍ଭିତ ବିଜ୍ଞାନ, ରସାୟନ ଓ ପ୍ରାଣୀ ବିଜ୍ଞାନ, ମୃତ୍ତିକା ଓ ଜଳବାୟୁ ବିଜ୍ଞାନ ଆଦି

ପ୍ରତ୍ୟେକ କ୍ଷେତ୍ରରେ ଆୟୁର୍ବେଦକୁ ପ୍ରବେଶ କରିବାକୁ ହେବ । ଦେଖିବାକୁ ଗଲେ, ସେସବୁ କ୍ଷେତ୍ରରେ ପ୍ରଥମ ପ୍ରବର୍ତ୍ତକ ହୋଇଛନ୍ତି ସେହି ପ୍ରାଚୀନ ଭାରତୀୟ ଚିକିତ୍ସକଗଣ । ଆୟୁର୍ବେଦ ସେହି ସବୁ ଆଦିମ ବିଜ୍ଞାନର ପ୍ରଥମ ଦ୍ୱାର ଉଦ୍‌ଘାଟନ କରିଛି । ତାହା ପୂରାପୂରି ଭୌତିକ ଦୃଷ୍ଟିକୋଣ । ପ୍ରାଚୀନ ଚିକିତ୍ସକଗଣ ତାଙ୍କର ନିଜ ବିଜ୍ଞାନ ଦୃଷ୍ଟିରୁ ସମସ୍ତ ପ୍ରକୃତିର ଜ୍ଞାନଲାଭ ଦିଗରେ ଅଗ୍ରସର । ଏକ ବିଜ୍ଞ ଚିକିତ୍ସକ ଲାଗି ତାହା ଏକାନ୍ତ ପ୍ରୟୋଜନ ।

ଇତିହାସ ଦୃଷ୍ଟିରୁ ଦେଖିଲେ ପ୍ରକୃତି ଓ ମଣିଷକୁ ଯଦି କିଏ ବିଶଦଭାବେ ବିଶ୍ଳେଷଣ କରିବାର ଚେଷ୍ଟା କରିଥାଏ, ସେମାନେ ହେଲେ ସେଇ ପ୍ରାକୃତିକ ଚିକିତ୍ସକ ବା ଡାକ୍ତର - ଗଣ । ସେମାନେ ପ୍ରତ୍ୟେକ ବସ୍ତୁର ଗୁଣକୁ ବସ୍ତୁବାଦୀ ଦୃଷ୍ଟିକୋଣରୁ ଦେଖିଛନ୍ତି । ଗୁଣ ହେଲା ତାଙ୍କ ନିକଟରେ ପ୍ରଧାନ ବିଚାର୍ଯ୍ୟ ବିଷୟ । ସେ ହିଁ ଗୁଣରୁ ବସ୍ତୁକୁ ନିର୍ଣ୍ଣୟ କରନ୍ତି । ଶରୀର ଯେଉଁ ପଞ୍ଚଭୂତଙ୍କୁ ଘେନି ଗଢ଼ା , ସେ ପ୍ରତ୍ୟେକଙ୍କର ନିର୍ଦ୍ଦିଷ୍ଟ ଗୁଣ ରହିଛି । ଇନ୍ଦ୍ରିୟମାନଙ୍କର ଥିବା ନ ଥିବା ଉପରେ ଚେତନା ଅଚେତନା ନିର୍ଭର କରେ । ଯାହାର ଇନ୍ଦ୍ରିୟ ରହିଛି, ତାର ଚେତନା ରହିଛି । ଯାହାର ଇନ୍ଦ୍ରିୟ ନାହିଁ, ତାର ଚେତନା ନାହିଁ । ବସ୍ତୁର ରୂପାନ୍ତରରେ କେବଳ ଚେତନାର ଆବିର୍ଭାବ । ସେହି ନିର୍ଦ୍ଦିଷ୍ଟ ରୂପାନ୍ତର ହିଁ ତାକୁ ଚେତନା ପ୍ରଦାନ କରେ ।

ଚରକ ସଂହିତା ଏ ସମ୍ବନ୍ଧରେ ଅତି ସ୍ପଷ୍ଟ । ତାହା ଅତି ରୋକ୍‌ଠୋକ୍ ଭାବେ ଆତ୍ରେୟଙ୍କ ମୁହଁରେ ପ୍ରକାଶ କରିଥାଏ । ''ଏହି ଚିକିତ୍ସା ବିଦ୍ୟାରେ ପ୍ରତ୍ୟେକଟି ଜିନିଷ ପଞ୍ଚଭୂତରେ ଗଢ଼ା ବୋଲି ଦେଖାଯାଏ । ହୁଏତ ସେମାନେ ଚେତନା ଦ୍ୱାରା ସମୃଦ୍ଧ ହୋଇ ପାରନ୍ତି କିମ୍ବା କେବଳ ଅଚେତନ ହୋଇପାରନ୍ତି ।'' (ଚ. ୧.୨୬.୧୦) ତେଣୁ ଅଧିବିଦ୍ୟା ଉପନିଷଦ ଆଦି ଯାହା କହନ୍ତୁ ନା କାହିଁକି, ଚିକିତ୍ସକଙ୍କ ପକ୍ଷରେ ବସ୍ତୁବାଦୀ ନ ହେବାଛଡ଼ା ଅନ୍ୟ ପନ୍ଥା ନାହିଁ । କାରଣ, ଚିକିତ୍ସା ଦୃଷ୍ଟିରୁ ଏମିତି କୌଣସି ପଦାର୍ଥ ନାହିଁ, ଯାହା ବସ୍ତୁରେ ଗଢ଼ା ନୁହେଁ । ତାହା ଚେତନାରେ ସମୃଦ୍ଧ ହେଉ ବା ଅଚେତନ ହେଉ, ସମସ୍ତେ ବସ୍ତୁରେ ତିଆରି । ଏହି ଦୃଷ୍ଟିକୋଣ ବିନା କୌଣସି ଚିକିତ୍ସକ କଣ କେବେହେଲେ ଚିକିତ୍ସା କରିବାରେ ସମର୍ଥ ହେବ ?

ଚତୁର୍ଥରେ, ତେଣୁ ବସ୍ତୁ ବା ଦ୍ରବ୍ୟ ସମ୍ବନ୍ଧରେ ଜ୍ଞାନ ହେଲା ସବୁଠୁ ଗୁରୁତ୍ୱପୂର୍ଣ୍ଣ । ତାହାହିଁ ଲୋକର ସ୍ୱାସ୍ଥ୍ୟରକ୍ଷା ଓ ରୋଗର ନିରାକରଣର ନିଶ୍ଚୟତା ଦିଏ । ଯେହେତୁ ପଞ୍ଚଭୂତ ବା ବସ୍ତୁକୁ ନେଇ ମଣିଷର ଶରୀର ଗଢ଼ା, ତେଣୁ ବସ୍ତୁ ଓ ଦ୍ରବ୍ୟର ଯେତେ ଗୁଣ ଅଛି, ତାହା ମଧ୍ୟ ମଣିଷ ଦେହରେ ରହିଛି । ଦେହରେ ଥିବା ସେହିସବୁ ଦ୍ରବ୍ୟଗୁଣରେ ବିଶୃଙ୍ଖଳା ଘଟିଲେ, ଅର୍ଥାତ୍ କୌଣସି କୌଣସି ଗୁଣ ବୃଦ୍ଧି ବା ହ୍ରାସ ପାଇଲେ, ଦେହର ଭାରସାମ୍ୟ ନଷ୍ଟ ହୁଏ , ତାହାହିଁ ହେଲା ରୋଗ । ବାହାରୁ ଦ୍ରବ୍ୟଗୁଣର ଯୋଗ ବା ବିୟୋଗ କରି ତାହାକୁ ସଜାଡ଼ି ଦେବା, ଅର୍ଥାତ୍ ଦେହର ପୂର୍ବର ଭାରସାମ୍ୟ ଫେରାଇ ଆଣିବା ହେଲା ଚିକିତ୍ସା । ତାହାହିଁ ହେଲା ଚିକିତ୍ସାର ମୁଖ୍ୟ ଉପାୟ ।'' (ସୁ, ୩.୧.୧୭)

ତା' ହେଲେ, ବସ୍ତୁର ଯେତେପ୍ରକାର ରୂପ ଗୁଣ ରହିଛି, ସେ ସବୁ ସମ୍ବନ୍ଧରେ ଜ୍ଞାନ, ଚିକିତ୍ସା ଦୃଷ୍ଟିରୁ ଆବଶ୍ୟକ । ବସ୍ତୁକୁ ଛାଡ଼ି ଅନ୍ୟ କୌଣସି ବିଷୟ ଚିନ୍ତା କରିବା ଅନୁଚିତ । ଚରକଙ୍କ ବକ୍ତବ୍ୟ ହେଲା, ''ଶରୀରର ଅର୍ଥ ବସ୍ତୁର ପଞ୍ଚଭୂତର ରୂପାନ୍ତରର ସମଷ୍ଟି । ଆଉ ସେହି ସମଷ୍ଟି ହେଉଛି ଚେତନାର ଭିତ୍ତି (ଚ ୪.୬) ।'' ସୁଶ୍ରୁତ ଆହୁରି ତାକୁ ନିର୍ଦ୍ଦିଷ୍ଟ କରି କହେ, ''ଶରୀର ପଞ୍ଚଭୂତରେ ଗଢ଼ା । ଖାଦ୍ୟ ମଧ୍ୟ ପଞ୍ଚଭୂତରେ ତିଆରି । ତାହା ଯେତେବେଳେ ସମ୍ପୂର୍ଣ୍ଣ ରୂପାନ୍ତରିତ ହୁଏ , ଖାଦ୍ୟରେ ରହିଥିବା ପଞ୍ଚଭୂତର ଗୁଣସବୁ ଦେହରେ ଥିବା ତାଙ୍କର ଅନୁରୂପ ଅଂଶଗୁଡ଼ିକ ସହିତ ମିଶି ଯାଆନ୍ତି ।'' (ସୁ ୧.୪୬.୫୫୩) ''ତେଣୁ ଚିକିତ୍ସକ ଶରୀରକୁ ପ୍ରତ୍ୟେକ ଦିଗରୁ ତାର ସମଗ୍ରତା ଭିତରେ ଏବଂ ତାର ଭିନ୍ନ ଭିନ୍ନ ଅବସ୍ଥା ମଧ୍ୟରେ ଯେତେବେଳେ ବୁଝିପାରେ, ସେତେବେଳେ ସେ ଆୟୁର୍ବେଦ ସମ୍ବନ୍ଧରେ ପୂର୍ଣ୍ଣ ଜ୍ଞାନ ଲାଭ କରେ । ସେହି ଆୟୁର୍ବେଦହିଁ ସବୁରି ଲାଗି ସୁଖର ନିଶ୍ଚୟତା ଦିଏ । (ଚ.୪.୬.୧୯) ଆଉ ସେହି ଶରୀର ଯଥାର୍ଥଭାବେ ଖାଦ୍ୟରୁ ଉତ୍ପନ୍ନ । ଦେହ ଆହାରରୁ ସମ୍ଭବ ।'' (ଚ ୧.୨୮.୪୧)

ପଞ୍ଚମରେ, ତାହା ସମ୍ଭବ ହୁଏ କିପରି ? ମଣିଷ ସେତେବେଳେ ଜାଣିଥିବା ପ୍ରଯୁକ୍ତି ବିଦ୍ୟାକୁ ଧରି ତାର ସମାଧାନ କରିଛି । ହାଣ୍ଡିରେ ପାଣି ଓ ଚାଉଳକୁ ଥୋଇ ତଳେ ନିଆଁ ଜାଳିଲେ ତହିଁରୁ ଭାତ ହୁ ଏ । ସେହିପରି ଉଦରରେ ଥିବା ଅଗ୍ନି, ମଣିଷ ଖାଉଥିବା ଖାଦ୍ୟକୁ ରସ ଓ ମଳରେ ରୂପାନ୍ତରିତ କରେ । ତାହା ଅଗ୍ନି ଉପରେ ଜୋରଦେଇ କହେ, ''ଦେହାଅଗ୍ନିହେତୁକାଃ''। ମଣିଷର ଜୀବନକାଳ, ତାର ସ୍ୱାସ୍ଥ୍ୟ ଓ ଶକ୍ତି, ତାର ଉତ୍ସାହ ଓ ଉଦ୍ଦୀପନା ଆଦି ଦେହର ସେଇ ଅଗ୍ନି ଉପରେ ନିର୍ଭର କରୁଛି । ସେ ଅଗ୍ନି ଲିଭିଗଲେ ମଣିଷ ମରିଯାଏ ।'' (ଚ.୫.୧୫.୩-୪)

କେବଳ ଶରୀର ନୁହେଁ, ଏପରିକି ''ପ୍ରାଣ ପ୍ରତିଭା ଓ ମେଧା ଆଦି'' ମଧ୍ୟ ସେହି ଖାଦ୍ୟରୁ ଜାତ । ''ପ୍ରାଣଂ ପ୍ରାଣଭୃତଂ ଅନ୍ନଂ'' । (ଚ ୨୭.୨୪୯/୧୫୦) ଜୀବନ ଅନ୍ୟ କିଛି ନୁହେଁ , ଖାଦ୍ୟର ରୂପାନ୍ତର ମାତ୍ର । ସୁଶ୍ରୁତ ତାକୁ ଆହୁରି ସ୍ପଷ୍ଟକରି କହେ, ଯାହାକୁ ଜୀଇଁବାର ଜାଣୁ ତାଙ୍କର ଜୀବନ ରହିଛି ବୋଲି ବିଶେଷଜ୍ଞମାନେ କହନ୍ତି । ସେଇସବୁ ପ୍ରାଣୀ ଠିକଣା ଭାବରେ ଖାଉଥିବା ଖାଦ୍ୟପେୟ ଦ୍ୱାରା ତାଙ୍କର ଅନୁରୂପ ବର୍ଣ୍ଣ, ଗନ୍ଧ, ସ୍ୱାଦ ଓ ସ୍ପର୍ଶ ଆଦି ଗଠିତ, ତାହା ପ୍ରତ୍ୟକ୍ଷ ପର୍ଯ୍ୟବେକ୍ଷଣର ଫଳ ।

ପ୍ରତ୍ୟକ୍ଷ ଫଳ ଦୃଷ୍ଟାନ୍ତ,— ଏ ହେଲା ଆୟୁର୍ବେଦର ମୂଳ ନୀତି । ଆଖିରେ ଦେଖିବା ବିଷୟ କେବଳ ବିଶ୍ୱାସଯୋଗ୍ୟ । 'ଯାହା ନ ଦେଖିବ ବେନି ନୟନେ, ପରତେ ନ ଯିବ ଗୁରୁ- ବଚନେ', କଥାଟା ଠିକ୍ ଏଇଠି ପ୍ରଯୁଜ୍ୟ । ଶରୀର ଜ୍ଞାନ, ରୋଗ ନିର୍ଣ୍ଣୟ, ଦ୍ରବ୍ୟଗୁଣ ଆଦି ପ୍ରତ୍ୟେକଟି କ୍ଷେତ୍ରରେ ଏହା ଗୁରୁତ୍ୱପୂର୍ଣ୍ଣ । ଅର୍ଥାତ୍, ପ୍ରତ୍ୟକ୍ଷ ପର୍ଯ୍ୟବେକ୍ଷଣ ପରୀକ୍ଷାମୂଳକ ଜ୍ଞାନହିଁ ଏକମାତ୍ର ନିର୍ଭରଯୋଗ୍ୟ । ଆୟୁର୍ବେଦ ତାର ଶେଷ ସିଦ୍ଧାନ୍ତରେ ନିଷ୍ପତ୍ତି ନେଲାବେଳେ କହେ, ''ଇଦମ୍ ଚ ନଃ ପ୍ରତ୍ୟକ୍ଷଣମ୍'' ଏସବୁ ଆମ ଦ୍ୱାରା ପ୍ରତ୍ୟକ୍ଷ ପର୍ଯ୍ୟବସିତ ।(ଚ.୧.୦.୬) ।

ପ୍ରତ୍ୟକ୍ଷଜ୍ଞାନ ପଦ୍ଧତି କେବଳ ବିଜ୍ଞାନର ଆୟୁଧ ନୁହେଁ । ତାହା ମଧ୍ୟ ଦର୍ଶନର ବିଚାର । ସେଇ ପ୍ରତ୍ୟକ୍ଷଜ୍ଞାନ ପଦ୍ଧତି ଉପନିଷଦର କଳ୍ପନାମୂଳକ ଗୂଢ଼ଜ୍ଞାନକୁ ପ୍ରତ୍ୟାଖ୍ୟାନ କରେ । ଉପନିଷଦ ମତରେ ଅଭିଜ୍ଞତା ଦ୍ୱାରା ଜ୍ଞାନଲବ୍ଧ ବସ୍ତୁ କେବଳ "ନାମଭବ". ବା ନାମମାତ୍ର । କାରଣ ପରୀକ୍ଷାମୂଳକ ଜ୍ଞାନ ଅନିବାର୍ଯ୍ୟଭାବେ ସୀମାବଦ୍ଧ । ବ୍ରହ୍ମ କିନ୍ତୁ ଅସୀମ, ଅନନ୍ତ, ଅଜ୍ଞାତ — ଅଥଚ ଜାଣିହେବ । ସେହି ବ୍ରହ୍ମଜ୍ଞାନ ହେଉଛି ପରୀକ୍ଷାମୂଳକ ପର୍ଯ୍ୟବେକ୍ଷଣସିଦ୍ଧ ଜ୍ଞାନର ଉର୍ଦ୍ଧ୍ୱରେ । ମଣ୍ଡୂକ ଉପନିଷଦ ଅନୁସାରେ ଜ୍ଞାନ ଦୁଇ ଭାଗରେ ବିଭକ୍ତ । ପରାବିଦ୍ୟା ଓ ଅପରାବିଦ୍ୟା, ଉଚ୍ଚଜ୍ଞାନ ଓ ନିମ୍ନଜ୍ଞାନ । ପ୍ରଥମଟି ବ୍ରହ୍ମଜ୍ଞାନ ହେଲାବେଳେ, ଅନ୍ୟଟି ପ୍ରମାଣି ସିଦ୍ଧି ଜ୍ଞାନ । ସେହି ଦୃଷ୍ଟିକୋଣ, ଶେଷରେ ପ୍ରମାଣସିଦ୍ଧ ଜ୍ଞାନକୁ ଜ୍ଞାନ ବୋଲି ବିଚାରେ ନାହିଁ, ତାକୁ କୁହେ ଅବିଦ୍ୟା । ଆୟୁର୍ବେଦର ଏଇ ପ୍ରମାଣସିଦ୍ଧ ପଦ୍ଧତି ଯୋଗୁଁ, ବୋଧହୁଏ ସମଗ୍ର ଉପନିଷଦ—ସାହିତ୍ୟ ଆୟୁର୍ବେଦର ନାମ ସୁଦ୍ଧା ଧରିନାହିଁ । ସେ ସମ୍ବନ୍ଧରେ ତାହା ସମ୍ପୂର୍ଣ୍ଣ ନୀରବ । ଭାରତୀୟ ସମାଜରେ ଉପନିଷଦର ଜ୍ଞାନ ସର୍ବଶ୍ରେଷ୍ଠ ଭାବେ ଗୃହିତ, ସମାଜରେ ତାହାର ରାଜତ୍ୱ । ବ୍ରହ୍ମଜ୍ଞାନର ସମ୍ମାନ ଓ ସତ୍ୟତା ପ୍ରଶ୍ନ ବହିର୍ଭୂତ । ଅନ୍ୟ ଦିଗରେ ପ୍ରତ୍ୟକ୍ଷ ଜ୍ଞାନ ଓ ଶାରୀରିକ କର୍ମ ନିନ୍ଦିତ । ସେ କ୍ଷେତ୍ରରେ କ'ଣ ସେହି ଚିକିତ୍ସକଙ୍କ କର୍ତ୍ତବ୍ୟ ? ସେସବୁକୁ ଏଡ଼ିଦେଇ ଯିବା କ'ଣ ତାଙ୍କ ପକ୍ଷରେ ସମ୍ଭବ ? ସେ ଦୃଷ୍ଟିରୁ ସୁଶ୍ରୁତ ଚିକିତ୍ସକଙ୍କୁ ସାବଧାନବାଣୀ ଶୁଣାନ୍ତି । ତାଙ୍କୁ ତାଗିଦ କରି କହନ୍ତି, "କୌଣସି ଚିକିତ୍ସକ କେବଳ ବିଶୁଦ୍ଧ ଯୁକ୍ତିର ଭିତ୍ତିରେ ଔଷଧର ଫଳ ପରୀକ୍ଷା କରିବାର ଚେଷ୍ଟା କରିବ ନାହିଁ । ସ୍ୱାଭାବିକ ଭାବେ ଯେଉଁ ପଦାର୍ଥର ଏକ ନିର୍ଦ୍ଦିଷ୍ଟ ଔଷଧଗୁଣ ରହିଛି, ଯାହାକି ପ୍ରତ୍ୟକ୍ଷ ପର୍ଯ୍ୟବେକ୍ଷଣ ଦ୍ୱାରା ପ୍ରତିଷ୍ଠିତ, ତାର ସେହି ଫଳଦାନ ଶକ୍ତିକୁ କେବେହେଲେ ଚିକିତ୍ସକ ବିଶୁଦ୍ଧ ଯୁକ୍ତିର ଭିତ୍ତିରେ ପ୍ରମାଣ କରିବାର ଚେଷ୍ଟା କରିବ ନାହିଁ । ଉଦାହରଣ ସ୍ୱରୂପ, ହଜାର ଯୁକ୍ତି ଦ୍ୱାରା ଆପସ୍ତମ୍ଭ ଗୋଷ୍ଠୀର ରେଚନ କାର୍ଯ୍ୟକୁ ଅନ୍ୟଥା କରାଯାଇ ନ ପାରେ । (ସୁ ୧.୪୦.୧୨/୧୩)

ଅତଏବ କେବଳ ତୁଚ୍ଛା ତର୍କ ଦ୍ୱାରା ନିଷ୍ପତ୍ତି ନେବା ବିରୋଧରେ ଏହା ଏକ କଡ଼ା ନିର୍ଦ୍ଦେଶ । ଅର୍ଥାତ୍ ରୋଗ, ରୋଗୀ, ଔଷଧ , ଖାଦ୍ୟ ପରିବେଶ ଆଦି ପ୍ରତ୍ୟେକ ଜିନିଷର ପ୍ରତ୍ୟକ୍ଷ ପରୀକ୍ଷା ଦରକାର । ତାହା ହିଁ କେବଳ ନିର୍ଭରଯୋଗ୍ୟ । ତତ୍ତ୍ୱ ଦୃଷ୍ଟିରୁ ଦେଖିଲେ, ସେହି ପ୍ରତ୍ୟକ୍ଷ ଜ୍ଞାନ ଅନ୍ୟ ଦିଗରେ ପୂର୍ବଜନ୍ମର କର୍ମ, ଅଦୃଷ୍ଟଲିଖନ, ଅମର ଆତ୍ମାର ଅନ୍ୟ ଦେହଧାରଣ ଆଦି ଯାବତୀୟ ନିର୍ମଳ ବିଶୁଦ୍ଧ ଚିନ୍ତାକୁ ପୋଛି ଦିଏ । ସେହି ପରୀକ୍ଷା-ମୂଳକ ତଥ୍ୟଗତ ସିଦ୍ଧାନ୍ତ ବିଜ୍ଞାନକୁ ବିଶୁଦ୍ଧ ଯୁକ୍ତିର ଫମ୍ପା ସିଦ୍ଧାନ୍ତରୁ ଅଲଗା କରିଦିଏ । ତାହାର ଅର୍ଥ ନୁହେଁ ଯେ, ଆୟୁର୍ବେଦ ଯୁକ୍ତିକୁ ପରିହାର କରେ । ତାର ମାନେ ହେଲା, ଆୟୁର୍ବେଦ ପରୀକ୍ଷାମୂଳକ ତଥ୍ୟ ଓ ପ୍ରତ୍ୟକ୍ଷ ଜ୍ଞାନର ପ୍ରାପ୍ତ ବିଷୟକୁ ବିଚାରଜ୍ଞାନ ଓ ଯୁକ୍ତି ଦ୍ୱାରା ଆଲୋଚନା କରେ । ତାରି ଭିତ୍ତିରେ ପ୍ରାଚୀନ ଚିକିତ୍ସକଗଣ ସତ୍ୟରେ ପହଞ୍ଚିବାର ଚେଷ୍ଟା କରନ୍ତି । ସେହି ସତ୍ୟକୁ ପୁଣି ସେମାନେ ବ୍ୟାବହାରିକ କାର୍ଯ୍ୟରେ ପ୍ରୟୋଗ କରି ତାର ସଫଳତା ଓ ବିଫଳତାକୁ ପର୍ଯ୍ୟବେକ୍ଷଣ ଦ୍ୱାରା ପ୍ରତିପାଦିତ କରିଥାଆନ୍ତି । ତା ହୁଏ ତାଙ୍କର ବୈଜ୍ଞାନିକ ପଦ୍ଧତିର ବାସ୍ତବ ଉପଲବ୍ଧି । ତାହା ତାଙ୍କର ତତ୍ତ୍ୱର ସତ୍ୟତାକୁ ସମୃଦ୍ଧ କରେ । ପ୍ରାଚୀନ ଚିକିତ୍ସକଗଣ ଠିକ୍ ସେହି ପଦ୍ଧତି ଅନୁସରଣ କରନ୍ତି । କାରଣ, ଉପନିଷଦର ଗୂଢ଼ଜ୍ଞାନ ଦ୍ୱାରା ଚିକିତ୍ସା ଅସମ୍ଭବ ।

ଶରୀର-ତତ୍ତ୍ୱ ବିନା ମଣିଷ ଦେହକୁ ବୁଝିହେବ ନାହିଁ । ଦେହକୁ ନ ଜାଣିଲେ ଚିକିତ୍ସା କରିବ କାହାକୁ ? ସେଥିଲାଗି ମଣିଷର ହାଡ଼, ଚମ, ମାଂସ, ଶିରା, ପ୍ରଶିରା, ସ୍ନାୟୁ ଆଦି ପ୍ରତ୍ୟକ ବିଷୟରେ ପ୍ରତ୍ୟକ୍ଷ ଜ୍ଞାନ ଦରକାର । ତାହା ଜାଣିବାକୁ ହେଲେ ମଡ଼ା କାଟି ବା ଶବ ବ୍ୟବଚ୍ଛେଦ କରି ସେସବୁକୁ ଦେଖିବାକୁ ହେବ । କିନ୍ତୁ ବ୍ରାହ୍ମଣ ପୁରୋହିତ ଆଦି ରକ୍ଷଣଶୀଳଙ୍କ ଦୃଷ୍ଟିରେ ଶବସ୍ପର୍ଶ ଗୋଟାଏ ବଡ଼ ଅଶୁଦ୍ଧ, ଅପବିତ୍ର କାର୍ଯ୍ୟ । କିନ୍ତୁ ଚିକିତ୍ସକ ହେଲେ ମଡ଼ା କାଟିବାକୁ ହେବ, ଅଥଚ ତା ବିରୋଧରେ ବ୍ରାହ୍ମଣ ପୁରୋହିତଙ୍କର କଠୋର କଟକଣା । ଆପସ୍ତମ୍ବଙ୍କ ମତରେ ମଡ଼ା ଓ ଚାଣ୍ଡାଳ ଥିବା ସ୍ଥାନର ସମସ୍ତ ବାତାବରଣ ଦୂଷିତ । ଯେଉଁ ଗାଁରେ ମଡ଼ା ପଡ଼ିଛି ବା ଚାଣ୍ଡାଳ ରହିଛି, ସେଠି ଶାସ୍ତ୍ର ଅଧ୍ୟୟନ ନିଷିଦ୍ଧ । (ଆ: ୧.୩.୯.୧୪.୬) ଗୌତମଙ୍କ ନିୟମ ହେଲା ଉଦ୍ଦେଶ୍ୟ ରଖି ମଡ଼ା ଛୁଇଁଲେ ଦଶଦିନ ଅଶୁଦ୍ଧି ପାଳନ କରିବ । ମଡ଼ା, ଚଣ୍ଡାଳ, କୁକୁର ଏମାନଙ୍କୁ ଛୁଇଁବା ସମାନ ଦୋଷ । ଏଇ ଦୁଇ ନିୟାମକ ପୁଣି ଖ୍ରୀଷ୍ଟ ଜନ୍ମ ପୂର୍ବର । ତାଙ୍କ ସହିତ ସ୍ୱର ମିଳାଇବା ମନୁଙ୍କ ପକ୍ଷରେ ଅତି ସ୍ୱାଭାବିକ । ଲକ୍ଷ୍ୟ କରିବାକୁ ହେବ ପ୍ରାଚୀନ ଚିକିତ୍ସକଙ୍କୁ କି ପ୍ରକାର ବାଧାର ସମ୍ମୁଖୀନ ହେବାକୁ ହୋଇଛି । ସେତେବେଳେ ସେମାନେ ତାର ବିରୋଧ କରି ଚିକିତ୍ସା ବିଜ୍ଞାନର ଅଗ୍ରଗତିରେ ଯେଉଁ ଅଟଳ ସାହସ ଓ ଦୃଢ଼ ମନୋବଳର ପରିଚୟ ଦେଇଛନ୍ତି, ତାର ସୂଚନା ଏମିତି କି ବ୍ରିଟିଶ ଅମଳର ଠିକ୍ ସେହିଭଳି ଘଟଣାରୁ ପ୍ରକାଶ ପାଏ ।

ଏପରିକି ଉନବିଂଶ ଶତାବ୍ଦୀରେ, କଲିକତା ମେଡ଼ିକାଲ କଲେଜ ଆରମ୍ଭ ବେଳେ କୌଣସି ଭାରତୀୟ ଶବ ବ୍ୟବଚ୍ଛେଦ କରିବାକୁ ପ୍ରସ୍ତୁତ ନ ଥିଲେ । ଡାକ୍ତରୀ ଶିକ୍ଷା ଦେବାରେ ବ୍ରିଟିଶ ଡାକ୍ତରଙ୍କ ପକ୍ଷରେ ତାହା ଥିଲା ଏକ ଚିନ୍ତାର କାରଣ । ମଡ଼ା ନ କାଟି, ଡାକ୍ତର ହେବ କିପରି ? ଯେଉଁଦିନ ଅଧ୍ୟାପକ ବାବୁ ମଧୁସୂଦନ ଗୁପ୍ତ, ରକ୍ଷଣଶୀଳଙ୍କୁ ଭ୍ରୁକ୍ଷେପ ନ କରି ଛୁରୀ ଧରି ବ୍ରିଟିଶ ଡାକ୍ତରଙ୍କ ସହ ଶବ ବ୍ୟବଚ୍ଛେଦ ଗୃହରେ ପ୍ରବେଶ କଲେ, ସେ ଦିନଟି ଏକ ସ୍ମରଣୀୟ ଦିବସ ରୂପେ ପାଳିତ ହୋଇଥିଲା । ମଧୁସୂଦନ ଗୁପ୍ତଙ୍କର ସାହସକୁ ସମ୍ମାନ ଜଣାଇ ସେଦିନ ଫୋର୍ଟ ଉଇଲିୟମରୁ ତୋପ ଧ୍ୱନି କରାଯାଇଥିଲା । ଏହା ଥିଲା ୧୮୩୬ ସାଲର ଘଟଣା, ପ୍ରାୟ ଦେଢ଼ଶ ବର୍ଷ ତଳର କଥା । ତେଣୁ ୨୦୦୦ ବର୍ଷରୁ ଊର୍ଦ୍ଧ୍ୱକାଳ ତଳେ ପ୍ରାଚୀନ ଚିକିତ୍ସକମାନଙ୍କୁ ସମାଜରେ ସେତେବେଳେ କି ଭିଷଣ ଘୃଣା ବିଦ୍ୱେଷ, ଆଉ ପ୍ରଚଣ୍ଡ ବିରୋଧିତାର ସମ୍ମୁଖୀନ ହେବାକୁ ପଡ଼ି ନ ଥିବ! ଏଇଥିରୁ ଅନୁମାନ କରାଯାଇ ପାରେ । ପ୍ରତ୍ୟକ୍ଷ ପର୍ଯ୍ୟବେକ୍ଷଣ ସିଦ୍ଧ ଜ୍ଞାନ ଆହରଣ ଦିଗରେ ସେମାନଙ୍କର ସେହି ଅଦ୍ୟମ ଉଦ୍ୟମ ହିଁ ସେମାନଙ୍କୁ ବିଜୟମଣ୍ଡିତ କରିଛି ।

ଔଷଧ ପ୍ରସ୍ତୁତି କ୍ଷେତ୍ରରେ ଠିକ୍ ସେହି ପଦ୍ଧତିର ପ୍ରୟୋଗ । ପ୍ରତ୍ୟେକ ପଦାର୍ଥର ଦ୍ରବ୍ୟଗୁଣର ପ୍ରତ୍ୟକ୍ଷ ପର୍ଯ୍ୟବେକ୍ଷଣ ଓ ପରୀକ୍ଷାମୂଳକ ତଥ୍ୟ ଉପରେ ଚିକିତ୍ସା-ତତ୍ତ୍ୱ ପ୍ରତିଷ୍ଠିତ । ସେ ଦିଗରେ ଶହ ଶହ ବୃକ୍ଷଲତା, ଗୁଳ୍ମ, ପତ୍ର, ପୁଷ୍ପ, ଫଳ, ଚେର ମୂଳ ଆଦିର ଦ୍ରବ୍ୟଗୁଣ ରହିଛି । ଅସଂଖ୍ୟ ଜୀବଜନ୍ତୁ, ପଶୁପକ୍ଷୀଙ୍କର ହାଡ଼, ମାଂସ, ଚର୍ମ, ଶିଙ୍ଗ, ରକ୍ତ, ମୂତ୍ର ଆଦି ପ୍ରତ୍ୟେକଟିର ଦ୍ରବ୍ୟଗୁଣର ଆଲୋଚନା ରହିଛି । ପୁଣି

ଜଳ, ମାଟି, ବିଭିନ୍ନ ଖଣିଜ ପଦାର୍ଥ ଆଦିର ଦ୍ରବ୍ୟଗୁଣର ବିଚାର କରାଯାଇଛି । କାରଣ ଆୟୁର୍ବେଦର ମୂଳତତ୍ତ୍ୱ ହେଲା, ଚିକିତ୍ସା ଦୃଷ୍ଟିରୁ ପ୍ରକୃତରେ କୌଣସି ଜିନିଷ ଅପ୍ରାସଙ୍ଗିକ ବା ଅପ୍ରୟୋଜନ ନୁହେଁ ।

ପ୍ରାଚୀନ ଯୁଗରେ ବିକାଶ ସୀମାବଦ୍ଧ । ସେହି ସୀମିତ ଅବସ୍ଥା ମଧ୍ୟରେ ଭାରତୀୟ ଚିକିତ୍ସକଙ୍କର ଏଇ ଆଶ୍ଚର୍ଯ୍ୟ ବିଚାରଜ୍ଞାନ ଓ ବୈଜ୍ଞାନିକ ପଦ୍ଧତି । ସେଥିସହିତ ଦୀର୍ଘକାଳ ଧରି ପର୍ଯ୍ୟବେକ୍ଷଣ ଦ୍ୱାରା ବିଶ୍ୱର ପ୍ରତ୍ୟେକ ପଦାର୍ଥର ଦ୍ରବ୍ୟଗୁଣର ବିଚାର, — ଏସବୁରେ ଯେକୌଣସି ଲୋକ ସ୍ତମ୍ଭୀଭୂତ ହୋଇଯିବ । ପ୍ରାଚୀନ କାଳରେ ଅନ୍ୟ କୌଣସି ଦେଶରେ ଓ ଭାରତର ଅନ୍ୟ କୌଣସି ବିଦ୍ୟାକ୍ଷେତ୍ରରେ ଏପରି ଏକ ଅବଦାନର ପଟାନ୍ତର ନାହିଁ ।

ଅନ୍ୟ ଦିଗରୁ ଦେଖିଲେ, ତା ହେଉଛି କାର୍ଯ୍ୟ ଓ ତତ୍ତ୍ୱର ସମ୍ବନ୍ଧ । କାର୍ଯ୍ୟ ଭିତରେ, — କାର୍ଯ୍ୟର ପ୍ରତ୍ୟକ୍ଷ ପର୍ଯ୍ୟବେକ୍ଷଣ ବା ଅନୁଭୂତି ଭିତରୁ ତାର ସେଇ ତତ୍ତ୍ୱର ଉତ୍ପତ୍ତି । ପୁଣି ସେଇସବୁ ତତ୍ତ୍ୱର ସତ୍ୟତା ପ୍ରମାଣିତ ହୁଏ କାର୍ଯ୍ୟ କ୍ଷେତ୍ରରେ, ରୋଗର ନିରାକରଣ, ତାର ବାସ୍ତବତା ଦ୍ୱାରା । ଏହାର ତାତ୍ପର୍ଯ୍ୟ ଉପଲବ୍ଧି କରିବାକୁ ହେଲେ ଆମକୁ ସେଇ ଚିକିତ୍ସା ଜ୍ଞାନର ତତ୍ତ୍ୱ, ତା ପଛରେ ନିହିତ ଦର୍ଶନ, ତାର କାର୍ଯ୍ୟ ପ୍ରଣାଳୀ ଓ ତାକୁ କାର୍ଯ୍ୟକାରୀ କରୁଥିବା ବ୍ୟକ୍ତି ଆଉ ସେଇ ଚିକିତ୍ସକଙ୍କ ଲାଗି ଉଦ୍ଦିଷ୍ଟ ନୀତି ନିୟମ ପ୍ରତି ଦୃଷ୍ଟି ଦେବାକୁ ହେବ ।

## ବିଜ୍ଞାନ, ଦର୍ଶନ ଓ ମାନବିକତାର ମିଳନ

ଉପନିଷଦର ଋଷିଙ୍କ କ୍ଷେତ୍ରରେ ଜ୍ଞାନ ଧ୍ୟାନମୂଳକ । ଧ୍ୟାନ ବା ତପସ୍ୟା ହେଲା ସେଇ ବ୍ରହ୍ମଜ୍ଞାନ ପ୍ରାପ୍ତିର ମାର୍ଗ । ସେଇ କେବଳ ତାହା ଜାଣିପାରେ ଯିଏ ତାକୁ ପ୍ରାପ୍ତ ବୋଲି ଦାବୀ କରେ । ଏକମାତ୍ର ସେହି ଲୋକର ବଚନ ଛଡ଼ା ତାର ଅନ୍ୟ କୌଣସି ପ୍ରମାଣ ନାହିଁ । କିନ୍ତୁ ଚିକିତ୍ସକ ଜ୍ଞାନ କର୍ମମୂଳକ । ତାହା କର୍ମରୁ ବାହାରି ସେହି କର୍ମଫଳ ପ୍ରାପ୍ତି ଦିଗରେ ଉଦ୍ଦିଷ୍ଟ । ତାହା ପୁଣି ସର୍ବବାଦିସମ୍ମତ । ସେହି ଜ୍ଞାନକୁ ଯେକୌଣସି ଲୋକ ଜାଣିପାରେ, ପାଇପାରେ ଓ ପ୍ରୟୋଗ କରିପାରେ ଏବଂ ତାଦ୍ୱାରା ଉଦ୍ଦିଷ୍ଟ ଫଳ ମଧ୍ୟ ଲାଭ କରିପାରେ । ସେହି ଜ୍ଞାନ କେବଳ ତା ନିଜ ପାଇଁ ନୁହେଁ, ସର୍ବସାଧାରଣଙ୍କ ପାଇଁ ଉଦ୍ଦିଷ୍ଟ । କେବଳ ବ୍ୟକ୍ତି ବିଶେଷ ନୁହେଁ, ତାହା ସମୂହ ସ୍ୱାର୍ଥରେ ନିୟୋଜିତ ହୁଏ ।

ଧ୍ୟାନମୂଳକ ଜ୍ଞନ, ବସିରହି ଭାବି ଭାବି ମନରେ ଆହରଣ କରିବାକୁ ହୁଏ । କିନ୍ତୁ କର୍ମମୂଳକ ଜ୍ଞାନ ଲାଗି ହାତ ଓ ଶରୀର ଚାଳନା ଆବଶ୍ୟକ । ଚିକିତ୍ସକଙ୍କ ପକ୍ଷରେ ତାହା ଅପରିହାର୍ଯ୍ୟ । ନାଡ଼ି ଚିପିବା, ଛୁରି ଧରି ମଡ଼ା କାଟିବା ଓ ଶଲ୍ୟଚିକିତ୍ସା ଯେମିତି କର୍ମମୂଳକ, ଓଷଧ ପାଇଁ ଶିକାରୀ,ଗାଈଜଗାଳୀ ଓ ଜଙ୍ଗଲୀ ଲୋକଙ୍କ ସଙ୍ଗେ ମିଶି ଚିହ୍ନି ଚେରମୂଳ ସଂଗ୍ରହ କରିବା ସେମିତି କର୍ମମୂଳକ ଓ ପର୍ଯ୍ୟବେକ୍ଷଣ ସମ୍ପୃକ୍ତ । କେଉଁ ପ୍ରକାର ଜମିରୁ ତାହାର ସଂଗ୍ରହ ହେବ, ତାର ପରୀକ୍ଷା କରିବା ମଧ୍ୟ

ଆବଶ୍ୟକ । ଚେରମୂଳର ଦ୍ରବ୍ୟଗୁଣ ଲାଗି ଚିକିତ୍ସକକୁ ଭୂବିଜ୍ଞାନୀ ଓ ଉଦ୍ଭିଦବିଜ୍ଞାନୀ ହେବାକୁ ହେବ । ଶଲ୍ୟ-ଚିକିତ୍ସା ଲାଗି କମାର ସାଙ୍ଗେ ମିଶି ବିଭିନ୍ନ ପ୍ରକାର ଛୁରୀ, କତୁରୀ ତିଆରି କରିବାକୁ ପଡ଼ିବ । ଚରକ ସଂହିତା ହାତ ପ୍ରତି ବିଶେଷ ଗୁରୁତ୍ୱ ପ୍ରଦାନ କରେ । କହେ, ''ଜିତହସ୍ତ'' ହେବା ସୁଦକ୍ଷ ଚିକିତ୍ସକର ପ୍ରଧାନ ଗୁଣ । (ଚ. ୩.୮.୪)

ଆୟୁର୍ବେଦ ଯେଉଁ ହସ୍ତର ଗୁଣଗାନ କରେ, ଠିକ୍ ସେହି ହସ୍ତ ବର୍ଣ୍ଣାଶ୍ରମ ଦ୍ୱାରା ନିନ୍ଦିତ । ହାତରେ କାମ କରିବାଟା ନୀଚ, ହୀନ, ଅସ୍ପୃଶ୍ୟ ଜାତିର ଲକ୍ଷଣ । ଯଦି ଚିକିତ୍ସକ ତାହା କରେ, ତେବେ ସେ ସେଇମାନଙ୍କ ଭଳି ଗଣ୍ୟ ହେବା ସ୍ୱାଭାବିକ । ମନୁଙ୍କ ମତରେ, ଜଣେ ଚିକିତ୍ସକଙ୍କ ହାତର ଖାଦ୍ୟ କମାର ହାତ ଖାଦ୍ୟ ଭଳି ଘୃଣ୍ୟ ଓ ଅପବିତ୍ର (ମନୁ ୫.୨୧୨.୨୧୫) । ଏହା ହେଲା ବର୍ଣ୍ଣାଶ୍ରମ ଓ ଶ୍ରେଣୀବିଭକ୍ତ ସମାଜର ନିୟମ । ଗ୍ରୀସ୍‌ର ଦାସମାନଙ୍କ କ୍ଷେତ୍ରରେ ମଧ୍ୟ ଠିକ୍ ଏଇକଥା ଘଟିଥିଲା । ଏଇ ମନୋଭାବ ଫଳରେ ଗ୍ରୀସ୍‌ର ପ୍ରାଚୀନ ଚିକିତ୍ସାର ପରମ୍ପରା ଲୋପପ୍ରାପ୍ତ । ଭାରତରେ ତାହା ନ ହେଲେ ମଧ୍ୟ, ତାର ବିକାଶ ଯେ ଖର୍ବ ହୋଇଛି, ଏଥିରେ ସନ୍ଦେହ ନାହିଁ । ବର୍ଣ୍ଣାଶ୍ରମ ଓ ଶାସକଶ୍ରେଣୀର ସ୍ୱାର୍ଥ ହୋଇଛି ଚିକିତ୍ସାବିଜ୍ଞାନର ପ୍ରଧାନ ଅନ୍ତରାୟ । ନିଜର ସ୍ୱାର୍ଥ ଦୃଷ୍ଟିରୁ ବିଭିନ୍ନ କୁସଂସ୍କାର ଓ ଧାରଣା ଦ୍ୱାରା ତାକୁ ଦୂଷିତ ଓ ଲକ୍ଷ୍ୟଚ୍ୟୁତ କରିବାକୁ ଚେଷ୍ଟା ହୋଇଛି । ଅନ୍ଧବିଶ୍ୱାସର ଦୁର୍ଭେଦ୍ୟ ଆସ୍ତରଣ ଜଗନ୍ନାଥଙ୍କର ପ୍ରକୃତ ମର୍ମକୁ ଆବୃତ କଲାଭଳି ପ୍ରାଚୀନ ଚିକିତ୍ସା-ବିଜ୍ଞାନର ପ୍ରକୃତ ମର୍ମ ନାନାଦି ଅଳୀକ ଧାରଣା ଓ କୁସଂସ୍କାର ଆବରଣ ଦ୍ୱାରା ଆଚ୍ଛନ୍ନ । ତା ସତ୍ତ୍ୱେ ଜଗନ୍ନାଥ - ମର୍ମର ଯେପରି ମୃତ୍ୟୁ ନାହିଁ, ସେହିପରି ମୃତ୍ୟୁହୀନ ହେଉଛି ଚିକିତ୍ସା ବିଦ୍ୟାର ମର୍ମ ଓ ତାହାର ଆଭିମୁଖ୍ୟ । ଏ ଉଭୟଙ୍କ କ୍ଷେତ୍ରରେ ତାଙ୍କୁ ଘେରି ରହିଥିବା ବ୍ୟକ୍ତି, ନୀତି ଓ ଶକ୍ତିମାନେ ହେଲେ ସମଗୋତ୍ରଜ । କାହିଁକି ସେମାନଙ୍କର ସେଇ ବିରୋଧିତା, କେଉଁଠି ତାଙ୍କର ସେଇ ବିରୋଧିତାର ମୂଳ ଉତ୍ସ ?

ଦର୍ଶନ ଦୃଷ୍ଟିରୁ ଆୟୁର୍ବେଦ ଏକ ଚିର ପ୍ରବହମାନ ତତ୍ତ୍ୱର ସ୍ରୋତକୁ ପ୍ରକାଶ କରେ । ତାହା କୁହେ, ସବୁ ଏକ ନିରବଛିନ୍ନ ପ୍ରବାହ (Perpetual flux) । ସମସ୍ତ ବିଷୟ,ପରିବର୍ତ୍ତନର ଅବିଶ୍ରାନ୍ତ ସ୍ରୋତ ମଧ୍ୟରେ ବିଦ୍ୟମାନ । ତାହା ମଧ୍ୟ ଆୟୁର୍ବେଦର ନିଜସ୍ୱ ପ୍ରତ୍ୟକ୍ଷ ପର୍ଯ୍ୟବେକ୍ଷଣର ଫଳ । ମଣିଷର ଶରୀର ହେଉଛି ସେଇ ଅହରହ ପରିବର୍ତ୍ତନର ଏକ ଜଳନ୍ତ ଦୃଷ୍ଟାନ୍ତ । ଚରକ କହେ, ''ଦେହର କୌଣସି ଜିନିଷଟି ସେମିତି ରହିନାହିଁ । ପ୍ରତ୍ୟେକ ତାଙ୍କର ନିରବଚ୍ଛିନ୍ନ ପ୍ରବାହ ଭିତରେ ରହିଛନ୍ତି । ଦେହ ଯଦିଓ ପ୍ରତି ମୁହୂର୍ତ୍ତରେ ନବ ନବ ଭାବରେ ଜାତ ହେବାରେ ଲାଗିଛି, କିନ୍ତୁ ପୁରୁଣା ନୂଆ ଦେହର ସାମଞ୍ଜସ୍ୟ ଯୋଗୁଁ ଉପରକୁ ସେଇ ଏକା ଦେହର ଧାରଣା ଦିଏ (ଚ.୫.୧.୪୬) । ଯେହେତୁ ମଣିଷ ଓ ବିଶ୍ୱ ପ୍ରକୃତି ଉଭୟ ପଞ୍ଚଭୂତରେ ଗଢା, ତେଣୁ ସବୁ କ୍ଷେତ୍ରରେ ଆସିବା ଯିବାର ଚିରନ୍ତନ ପ୍ରକ୍ରିୟା ଚାଲିଛି । କୌଣସି ବିଷୟ କ୍ଷଣକ ପାଇଁ ସୁଦ୍ଧା ସ୍ଥାୟୀ ଓ ସ୍ଥିର ନୁହେଁ । ସେଇ ଯିବା ଆସିବା ପୁଣି କୌଣସି

ବାହ୍ୟ ହସ୍ତକ୍ଷେପ ଦ୍ୱାରା ଘଟେ ନାହି, ଆୟୁର୍ବେଦ ସେଇ ବାହ୍ୟ ହସ୍ତକ୍ଷେପକୁ ଅସ୍ୱୀକାର କରେ । ତାକୁ କାଳର ପ୍ରଣାଳୀରେ ବ୍ୟାଖ୍ୟା କରି କହେ, ''ସମୟ ସ୍ୱାଭାବିକ ଭାବେ ଏକ ଚିରନ୍ତନ ପ୍ରବାହ । ତାର ବିକାଶ ଲାଗି କୌଣସି ବାହ୍ୟ କାରଣ ଯେପରି ନାହିଁ, ଠିକ୍ ସେହିପରି ପଦାର୍ଥମାନଙ୍କର ବିନାଶର ମଧ୍ୟ କୌଣସି ବାହ୍ୟ କାରଣ ଜଣା ନାହିଁ ! ତାହାର କାରଣ ଅତି ସହଜ, ଯେହେତୁ ତାର କୌଣସି କାରଣ ନାହିଁ । ବିଷୟର ସ୍ୱଭାବ ଘେନି ପଦାର୍ଥ ସବୁ ଯେପରି ଆସନ୍ତି, ଠିକ୍ ସେହିପରି ବିଲୁପ୍ତି ଭଜନ୍ତି। (ଚ ୧.୧୬.୩୨/୨)

ତେଣୁ ଦେହର ଯେଉଁ ପରିବର୍ତ୍ତନ ଘଟେ ,ତାହା କୌଣସି ବାହ୍ୟ ଶକ୍ତିର ହସ୍ତକ୍ଷେପ ଦ୍ୱାରା ହୁଏ ନାହିଁ । ତାହା ପ୍ରକୃତିର ସହଜାତ ନିୟମ । ସେହି ଯୋଗୁ ଦେହରେ ପରିବର୍ତ୍ତନ ଆସେ ।ଭୂତ ସବୁ ଭାଙ୍ଗି ଯାଆନ୍ତି ,ତାଙ୍କର ପୂର୍ବ ଅବସ୍ଥାରେ ରହିପାରନ୍ତି ନାହିଁ, ଫଳରେ ଆସିଥିବା ଜୀବନର ଅବସାନ ଘଟେ । ତାକୁହିଁ କହନ୍ତି, ''ମରଣ'' । ମରଣର ଆଉ ଏକ ପ୍ରତିଶବ୍ଦ,''ସ୍ୱଭାବ'' । ସ୍ୱଭାବ ହେଉଛି ପ୍ରକୃତି— ଅର୍ଥାତ୍ ପ୍ରକୃତିର ନିୟମ,ତାର ଅନ୍ୟ ଏକ ପ୍ରତିଶବ୍ଦ ହେଉଛି ''ଅନିତ୍ୟ'' ।

ପ୍ରାଚୀନ ଚିକିତ୍ସକଙ୍କ ଏଇ ଦୃଷ୍ଟିଭଙ୍ଗୀ ଏକ ନିର୍ଦ୍ଦିଷ୍ଟ ପ୍ରକାର ଦୃଷ୍ଟିକୋଣର ପରିଚୟ ଦିଏ । ତାହା କହେ,ପୂର୍ବଜନ୍ମ,କର୍ମଫଳ, ଅଦୃଷ୍ଟ, ଆତ୍ମା ଆଦି ଏସବୁ ଅଳୀକ, ମିଥ୍ୟା ଓ ଅବାସ୍ତବ । କେବଳ ଗୋଟିଏ କଳ୍ପନା ମାତ୍ର । ଅଥଚ ଠିକ୍ ତାହାହିଁ ହୋଇଛି ବ୍ରାହ୍ମଣ,ପୁରୋହିତ ଓ ଶାସକଶ୍ରେଣୀର ସ୍ୱାର୍ଥରକ୍ଷାର ଆଧାର । ତାଙ୍କର ଜୀବନରକ୍ଷା ଓ ଜୀବନ-ନିର୍ବାହର ଉପାୟ । ଆଉ ସବୁ ନିୟାମକ ଓ ଶାସକଗଣ ସେଇ ବିଶ୍ୱାସକୁ ଦୃଢ଼ୀଭୂତ କରିବା ଲାଗି ଯାବତୀୟ ବିଧିବିଧାନ ଗଢିଆସିଛନ୍ତି । ତେଣୁ ସେମାନଙ୍କ ପକ୍ଷରେ ଆୟୁର୍ବେଦର ସେଇ ପ୍ରାଚୀନ ଦୃଷ୍ଟିଭଙ୍ଗୀକୁ ସହ୍ୟ କରିବା କଣ କସ୍ମିନକାଳେ ସମ୍ଭବ ହୋଇପାରେ ?

କାରଣ, ସମଗ୍ର ବିଶ୍ୱ ପ୍ରକୃତି ଓ ତାର ସକଳ ବିଷୟ ଯଦି ଅବିଶ୍ରାନ୍ତ ପରିବର୍ତ୍ତନ ଭିତରେ ଗତି କରେ, ତେବେ ସେଠି ପୁଣି କୌଣସି ଏକ ଚିରନ୍ତନ ଅପରିବର୍ତ୍ତନୀୟ ସତ୍ତାର ସ୍ଥାନ କେଉଁଠି ? ସେଠି ସେମାନେ ନିଜେ ବା କିପରି ଚିରନ୍ତନ ହେବେ ? କିଏ ବା ଚିରସ୍ଥାୟୀ ହୋଇ ରହିପାରେ ?

ଅତଏବ ମଣିଷ ଓ ପ୍ରକୃତି ସମସ୍ତେ ପଞ୍ଚଭୂତରେ ଗଢ଼ା । ସେଇ ଭୂତଙ୍କର ନିର୍ଦ୍ଦିଷ୍ଟ ପ୍ରକାର ସମାବେଶ ଦ୍ୱାରା ଶରୀରର ସୃଷ୍ଟି ଓ ପ୍ରାଣୀ ପ୍ରାଣବନ୍ତ ହୁଏ । ତାଙ୍କର ଜୀବନର ପ୍ରଣାଳୀ ପରିବେଶରୁ ତାର ଆହାର ସଂଗ୍ରହ କରି ନିଜକୁ ପରିପୁଷ୍ଟ କଲା ଭିତରେ ଅହରହ ପରିବର୍ତ୍ତନ ଦେଇ ଗତିକରେ, ତେଣୁ ସେଠି କୌଣସି ଅତିପ୍ରାକୃତିକ ଶକ୍ତି ବା କାରଣର ପ୍ରଶ୍ନ କାହିଁ ? ଆସିବା ଯିବା—ପରିବର୍ତ୍ତନ ଯେତେବେଳେ ସ୍ୱାଭାବିକ ପ୍ରକ୍ରିୟା ଏବଂ ସେଇ ପ୍ରକ୍ରିୟା ଭିତରେ ଭୂତସବୁ ପୁଣି ଯେତେବେଳେ ଫେରିଯାଆନ୍ତି, ଅର୍ଥାତ୍ ତାଙ୍କ ବାହାରର ଅନୁରୂପ ଭୂତ ସହିତ ମିଶିଯାଆନ୍ତି, — ସେତେବେଳେ ତାହା ହୁଏ ମରଣ, ଯାହାର ଅନ୍ୟ ନାମ ପ୍ରକୃତି ।

ଏହାହିଁ ହେଲା ପ୍ରାଚୀନ ଭାରତ ଓ ଗ୍ରୀକ୍ ଚିକିତ୍ସକଙ୍କ ମଧ୍ୟରେ ମୌଳିକ ଫରକ । ଗ୍ରୀକ୍‌ର ଚିକିତ୍ସକ ଦର୍ଶନ ଦିଗରୁ ଭାବବାଦୀ ଧାରଣା ନିକଟରେ ଆତ୍ମସମର୍ପଣ କରି, ତାର ଅଧୀନସ୍ଥ ହେବାରେ ନିଜର ସ୍ୱାତନ୍ତ୍ର୍ୟ ହରାଇଲେ । ବିଜ୍ଞାନର ଅପ୍ରତିହତ ଶକ୍ତିକୁ ସାବ୍ୟସ୍ତ କରିବାରେ ଅସମର୍ଥ ହୋଇ ନିଜେ ଅପସରି ଗଲେ । କିନ୍ତୁ ଭାରତୀୟ ଚିକିତ୍ସକଙ୍କ କ୍ଷେତ୍ରରେ ବିଷୟଟି ସମ୍ପୂର୍ଣ୍ଣ ବିପରୀତ । ସେମାନେ ବ୍ରାହ୍ମଣ ପୁରୋହିତ ଶ୍ରେଣୀର ବର୍ଣ୍ଣାଶ୍ରମ ଦୃଷ୍ଟିଭଙ୍ଗୀ ଓ ଭାବବାଦୀ ଦର୍ଶନ ଦ୍ୱାରା ପ୍ରଭାବିତ ହେବା ପରିବର୍ତ୍ତେ, ଓଲଟି ତାକୁ ପ୍ରଭାବିତ କରିବାକୁ ଚେଷ୍ଟା କରିଛନ୍ତି । ବୈଶେଷିକ ଦର୍ଶନ ଉପରେ ତାଙ୍କର ପ୍ରଭାବ ପରିସ୍ଫୁଟ । ଭାରତୀୟ ଚିକିତ୍ସକ ନିଜର ବିଜ୍ଞାନ ପ୍ରତି ଅନୁରକ୍ତ ରହି ପଞ୍ଚଭୂତ, ପ୍ରତ୍ୟକ୍ଷ ପର୍ଯ୍ୟବେକ୍ଷଣ, ଆଉ ଚିର ପ୍ରବହମାନ ତତ୍ତ୍ୱର ବିଚାରକୁ ବିନା ଦ୍ୱିଧାରେ ଅନୁସରଣ କରିଛନ୍ତ, — ଯାହାକି ବସ୍ତୁବାଦୀ ଦୃଷ୍ଟିକୋଣ ଛଡ଼ା ଅନ୍ୟ କିଛି ନୁହେଁ । ସେଥିରେ ସେମାନେ କୌଣସି ଈଶ୍ୱର ଧାରଣାକୁ ସୁଦ୍ଧା ପ୍ରବେଶ କରିବାକୁ ଦେଇ ନାହାନ୍ତି ।

ତେବେ ଯେତେ ହେଲେ ଶ୍ରେଣୀବିଭକ୍ତ ସମାଜ, — ବିଶେଷକରି ଭାରତୀୟ ବର୍ଣ୍ଣାଶ୍ରମର ଜାତିଭେଦ ଓ ବୈଷମ୍ୟର ପ୍ରଭାବରୁ ତାଙ୍କର ମୁକ୍ତି ନାହିଁ । ସମାଜର ନିୟାମକ ଓ ରାଷ୍ଟ୍ରର ଶାସକ, ଉଭୟ ସେହି ଦୃଷ୍ଟିକୋଣକୁ ଦୃଢ଼ୀଭୂତ କରିବାରେ ତାଙ୍କର ସମସ୍ତ ଶକ୍ତି ନିୟୋଗ କରିଛନ୍ତି । ତାହା ଚିକିତ୍ସକ ଓ ଚିକିତ୍ସା ଶିକ୍ଷାର ବିକାଶକୁ ନାନାଭାବେ ବିରୋଧ ଓ ପ୍ରତିହତ କରି ଆସିଛି । ସାମାଜିକ ଆଭିମୁଖ୍ୟ, ଦାର୍ଶନିକ ଆଦର୍ଶ ଓ ନୈତିକ ଉପଲବ୍‌ଧି ଆଦି ପ୍ରତ୍ୟେକ କ୍ଷେତ୍ରରେ ତାଙ୍କର ସେହି ବିରୋଧିତା ସାଧାରଣ ରାଜନୈତିକ ଦ୍ୱନ୍ଦ୍ୱ ଓ ସଂଘର୍ଷଠାରୁ କୌଣସି ଅଂଶରେ ଊଣା ନୁହେଁ ।

ଧର୍ମର ଧାରଣା ମାତ୍ରେ ପ୍ରତ୍ୟେକେ ଦାବୀ କରନ୍ତି, ସେ ହିଁ ସର୍ବଶ୍ରେଷ୍ଠ ଗୂଢ଼ଜ୍ଞାନ ତଥା ପରମକାରଣବାଦର ଅଧିକାରୀ । ଭାବବାଦୀ ଦର୍ଶନ ମାତ୍ରେ ପ୍ରତ୍ୟେକ ଦାବୀ କରନ୍ତି, ତାହାହିଁ ପରମ ସତ୍ୟ ଓ ଅନ୍ତିମର ବାସ୍ତବତା । ସମାଜ ଓ ରାଷ୍ଟ୍ରର ନିୟାମକମାତ୍ରେ ପ୍ରତ୍ୟେକ ଦାବୀ କରନ୍ତି, ତାଙ୍କରି ବିଚାରହିଁ ସର୍ବଶ୍ରେଷ୍ଠ ଓ ସର୍ବଶେଷ ବ୍ୟବସ୍ଥା । ଯେ ଦିଗରେ ଏକମାତ୍ର ବ୍ୟତିକ୍ରମ ହେଉଛି, ବସ୍ତୁବାଦୀଙ୍କ ଭଳି ପ୍ରାଚୀନ ଚିକିତ୍ସକଗଣ । ବସ୍ତୁବାଦୀମାନେ ସବୁ ଜିନିଷର ସମାଧାନ ବା ତାର ଚରମ ଜ୍ଞାନକୁ ଦାବୀ କରନ୍ତି ନାହିଁ । ସେମାନେ ଅସମାହିତ ସମସ୍ୟାକୁ ନିର୍ଣ୍ଣୟ ଓ ଉପସ୍ଥାପିତ କରିବା ଦ୍ୱାରା ତାର ସମାଧାନକୁ ଆହ୍ୱାନ କରିଥାନ୍ତି । ଲେନିନଙ୍କ ଭାଷାରେ, ବସ୍ତୁବାଦୀମାନେ ସେପର୍ଯ୍ୟନ୍ତ ଅସମାହିତ ସମସ୍ୟାକୁ ନିର୍ଦ୍ଦିଷ୍ଟ ଭାବେ ନିର୍ଦ୍ଧାରଣ କରି ପ୍ରକାଶ କରିବାଦ୍ୱାରା, ସେମାନେ ତାର ସମାଧାନର ଉଦ୍ୟମକୁ ଉଦ୍ଦୀପିତ କରନ୍ତି ।'' ପ୍ରାଚୀନ ଚିକିତ୍ସକଗଣ ସେହି ମାର୍ଗହିଁ ଅନୁସରଣ କରିଛନ୍ତି । ସେମାନେ ଯାହା ପାରିନାହାନ୍ତି, ତାହା ସ୍ୱୀକାର କରି ଭବିଷ୍ୟତ ଲାଗି ତାର ସମାଧାନକୁ ଆହ୍ୱାନ କରି ଯାଇଛନ୍ତି ।

ପ୍ରାଚୀନ ଚିକିତ୍ସକଙ୍କର ଏକମାତ୍ର ଉଦ୍ଦେଶ୍ୟ ଓ କାର୍ଯ୍ୟ ହେଲା, ମଣିଷକୁ ସ୍ୱାସ୍ଥ୍ୟବାନ ଓ ଦୀର୍ଘାୟୁ କରିବା । ସେଥିଲାଗି ଚିକିତ୍ସା-ଜ୍ଞାନର ଆହରଣ । ସେହି ଜ୍ଞାନ ଆହରରଣର ପ୍ରକୃତି ହେଉଛି ଭୂତମାନଙ୍କର ରହସ୍ୟ ଉଦ୍‌ଘାଟନ । ଯାହାର ନାମ ହେଲା ସେମାନଙ୍କର ଦ୍ରବ୍ୟଗୁଣର ଆବିଷ୍କାର ଏବଂ ମଣିଷ ଶରୀର ଉପରେ ତାର କାମ ବା ପ୍ରଭାବର ନିର୍ଦ୍ଧାରଣ । ତାରି ଜ୍ଞାନ ଉପରେ ଚିକିତ୍ସକଙ୍କ ପ୍ରଯୁକ୍ତିବିଦ୍ୟା ନିର୍ଭର କରେ । ତାକୁ ଧରି ସେମାନେ ଶରୀରସ୍ଥିତ ଭୂତ (ବସ୍ତୁ) ଏବଂ ପ୍ରକୃତି ପରିବେଶସ୍ଥିତ ବସ୍ତୁ ( ଭୂତ) ଙ୍କ ମଧ୍ୟରେ କ୍ରିୟା-ପ୍ରତିକ୍ରିୟା ଅର୍ଥାତ୍ ମିଥକ୍ରିୟାକୁ ଲକ୍ଷ୍ୟ ଓ ନିୟନ୍ତ୍ରଣ କରନ୍ତି । ସେମାନେ ତାକୁ ନିୟନ୍ତ୍ରଣ କରନ୍ତି ସେଇ ପ୍ରକୃତିର ନିୟମ ଭିତ୍ତିରେ,— ତାହାରି ଦ୍ୱାରା, ତାହାରି ସାହାଯ୍ୟରେ ହିଁ ରୋଗୀ ଆରୋଗ୍ୟ ହୁଏ । ଚିକିତ୍ସକ ପ୍ରକୃତିର ନିୟମକୁ ବଦଳାଇ ନ ପାରେ । ଅଗ୍ନିର ସ୍ୱଭାବ— ପୋଡ଼ିବା ଓ ଆଲୋକ ଦେବା । ସେହି ପ୍ରାକୃତିକ ନିୟମର ପରିବର୍ତ୍ତନ ନାହିଁ । କିନ୍ତୁ ତାକୁ ଜାଣିବାଦ୍ୱାରା ମଣିଷ ତାକୁ ଆୟତ୍ତ କରି ନିଜ ବ୍ୟବହାରରେ ଲଗାଏ । ଠିକ୍ ତାହାହିଁ ଚରକ ସଂହିତା ପ୍ରକାଶ କରିଥାଏ । ''ବିଷ, ଅଗ୍ନି , ଅସ୍ତ୍ର, ବିଦ୍ୟୁତ୍ ଭଳି ଯେଉଁ ଓଷଦର ପ୍ରକୃତି ଜଣାପଡ଼ି ନାହିଁ, ତାହା ହୁଏ ଅଜଣା ଭୟ ଆତଙ୍କର ଆଧାର । ଯେତେବେଳେ ତାର ପ୍ରକୃତି ବୁଝାପଡ଼େ, ତାହା ହୁଏ ଅମୃତ ଭଳି ମଙ୍ଗଳକର (ଚ ୧.୧.୨୪) ।'' ପଦେ କଥାରେ କହିଲେ ଏଠି ଜ୍ଞାନହିଁ ଶକ୍ତି, ଆଉ ଶକ୍ତି ହିଁ ସ୍ୱାଧୀନତାର ଉତ୍ସ । ସେଇ ସ୍ୱାଧୀନତା ହେଉଛି ଅପରିହାର୍ଯ୍ୟତାର ସ୍ୱୀକୃତି । ଅର୍ଥାତ୍ ପ୍ରକୃତିର ଅପରିହାର୍ଯ୍ୟତାର ଶକ୍ତିରେ ମଣିଷ ତାର ସ୍ୱାଧୀନତା ଲାଭ କରେ । ଅଗ୍ନିର ଅପରିହାର୍ଯ୍ୟ ପ୍ରକୃତି ଜାଣିବାରେ ମଣିଷ ତାକୁ ଅଧିକାର କରେ । ଅଗ୍ନି ମଣିଷର କିଛି କ୍ଷତି କରିବା ପରିବର୍ତ୍ତେ, ମଣିଷ ଓଲଟି ନିଜ ଖୁସି ଅନୁସାରେ ତାକୁ କାମରେ ଲଗାଏ, ଅର୍ଥାତ୍ ଅଗ୍ନି ତାର ବଶ୍ୟତା ସ୍ୱୀକାର କରେ । ଏହା ଆସେ ପ୍ରକୃତିର ସେଇ ଅପରିହାର୍ଯ୍ୟତାର ସ୍ୱୀକୃତି ଦ୍ୱାରା ।

ସ୍ମରଣ ରଖିବାକୁ ହେବ,— ଜ୍ଞାନରେ ଶକ୍ତି, ଏଇକଥା ମଧ୍ୟ ଉପନିଷଦ କହିଥାଏ । ଉପନିଷଦ ଜ୍ଞାନ ହେଉଛି ଗୂଢ଼ ରହସ୍ୟମୟ, ଗୋପନ, ଐନ୍ଦ୍ରିୟଜାଲିକ ଜ୍ଞାନ । ତାହା ପ୍ରକୃତିକୁ ଜାଣି, ପ୍ରକୃତିକୁ ନିୟନ୍ତ୍ରଣ କରିବାର ଜ୍ଞାନ ନୁହେଁ । ତେଣେ ଦ୍ରବ୍ୟଗୁଣ ଜାଣିବା ହେଲା, — ପଦାର୍ଥ, ଅର୍ଥାତ୍ ପ୍ରକୃତିର ସେଇ ନିୟମର ଆବିଷ୍କାର, —ଯାହା ଫଳରେ ବିଷ ବି ମଣିଷର ଜୀବନ ରକ୍ଷା କରିପାରେ । ଏସବୁ କିନ୍ତୁ ଉପନିଷଦର ଜ୍ଞାନଯୋଗେ କସ୍ମିନ୍ କାଳେ ସମ୍ଭବ ନୁହେଁ ।

ଯଦି ଆୟୁର୍ବେଦ ପ୍ରାକୃତିକ ନିୟମର ସମାହାର, ତେବେ ବୁଝିବାକୁ ହେବ ଆୟୁର୍ବେଦ ପ୍ରକୃତି ଭଳି ମଧ୍ୟ ଅନାଦି, — ତାର ଆଦି ନାହିଁ । କାରଣ ତା ପ୍ରକୃତିର ଅନ୍ତର୍ନିହିତ ସ୍ୱଭାବ ବା ପ୍ରକୃତି ଭଳି । 'ଆୟୁର୍ବେଦ' ପ୍ରକୃତରେ ଆଦ୍ୟହୀନ ଅତୀତର ସହଜାତ । ପ୍ରକୃତିର ସେଇ ନିୟମ ଜାଣିବାରେ କେବଳ ଚିକିତ୍ସା-ବିଦ୍ୟାର ଆରମ୍ଭ । ତେଣୁ ଚିକିତ୍ସକଙ୍କ ପକ୍ଷରେ କୌଣସି କୃତ୍ରିମ ଉପାୟର ଉଦ୍ଭାବନାରେ ରୋଗର

ନିରାକରଣ ନାହିଁ । ରୋଗ ଆରୋଗ୍ୟ ହୁଏ ସେଇ ପ୍ରକୃତିର ସହଜାତ ନିୟମ ଦ୍ୱାରା । ଚିକିତ୍ସକଙ୍କ କୃତିତ୍ୱ ହେଲା ସେଇ ନିୟମକୁ ବୁଝି, ତାକୁ ଯଥାର୍ଥଭାବେ ପ୍ରୟୋଗ କରିପାରେ । ସେଇ ସହଜାତ ନିୟମ ହେଉଛି ସ୍ୱଭାବ ।

ପ୍ରକୃତି ଯେତେବେଳେ ଅନାଦି, ତାର ଅନ୍ତର୍ନିହିତ ନିୟମ ସେହିପରି ଆଦିହୀନ । ଚିକିତ୍ସା -ବିଜ୍ଞାନ ସେଇସବୁ ନିୟମର ଜ୍ଞାନ ଛଡ଼ା ଆଉ କିଛି ନୁହେଁ; ତେଣୁ ଚିକିତ୍ସାର ଭିତ୍ତି ଆଗରୁ ନ ଥିଲା, ଗୋଟାଏ ନିର୍ଦ୍ଦିଷ୍ଟ ସମୟରେ ଦେଖା ଦେଲା ବୋଲି ଭାବିବା ଠିକ୍ ନୁହେଁ । କଥା ହେଉଛି, ତାହା ଆଗରୁ ରହିଥିଲା, ଗୋଟାଏ ସମୟରେ ତାହା ଆବିଷ୍କୃତ ହେଲା । ସେହି ନିୟମର ଆବିଷ୍କାର, ତାର ଜ୍ଞାନର ପ୍ରଚାର ଦିଗରୁ ବିଜ୍ଞାନର ଆରମ୍ଭ କଥା କୁହାଯାଇ ପାରେ । ରୋଗ ପ୍ରକୃତିର ସେଇ ନିୟମ ଦ୍ୱାରାହିଁ ନିରାକରଣ ହୁଏ । ଚିକିତ୍ସକ କେବଳ ତାକୁ ଜାଣେ ଓ ପ୍ରୟୋଗ କରିପାରେ । ''ଆୟୁର୍ବେଦକୁ ଚିରନ୍ତନ କୁହାଯାଏ, କାରଣ ତାର କୌଣସି ଆଦି ନାହିଁ । ତାହା ପ୍ରକୃତି — ଅନ୍ତର୍ନିହିତ ନିୟମ ବ୍ୟତୀତ ଅନ୍ୟ କିଛି ନୁହେଁ । କାରଣ, ପ୍ରକୃତି ବା ପଦାର୍ଥର ସେହି ପ୍ରାକୃତିକ ଗୁଣ ଅପରିବର୍ତ୍ତନୀୟ । ଜୀବନର ନିରବଚ୍ଛିନ୍ନ ସ୍ରୋତରେ, ଜ୍ଞାନର ନିରବଚ୍ଛିନ୍ନ ପ୍ରବାହରେ କେବେହେଲେ ବିଶ୍ରାମ ନାହିଁ । ଜୀବନ ସତ୍ତା ସବୁବେଳେ ବିଦ୍ୟମାନ । କଷ୍ଟ ଓ ଆନନ୍ଦ, — ତାକୁ ସୃଷ୍ଟି କରୁଥିବା ପଦାର୍ଥ ଆଦ୍ୟହୀନ ଅଟନ୍ତି, ତାଙ୍କର ସେଇ ପରସ୍ପର ଉପରର ସେଇ ନିର୍ଭରଶୀଳ ସମ୍ପର୍କ ଯୋଗୁ (ଚ. ୧.୩୦.୨୭) ।''

ଅତଏବ ଆୟୁର୍ବେଦର ମୌଳିକ ତତ୍ତ୍ୱ ହେଲା, ପ୍ରକୃତିର ପ୍ରତ୍ୟେକ ବିଷୟ ତାର ନିୟମ ଅନୁଯାୟୀ ଘଟେ । ସେଇ ନିୟମ ଅପରିବର୍ତ୍ତନୀୟ । ତାକୁ କେହି କେବେ ପରିବର୍ତ୍ତନ କରି ନ ପାରେ । କିନ୍ତୁ ତାକୁ ଜାଣିହେବ ଓ ବୁଝିହେବ । ତାକୁ ଜାଣିବା ଦ୍ୱାରା ପ୍ରକୃତି ଉପରେ ପ୍ରଭୁତ୍ୱ ବିସ୍ତାର କରି ତାକୁ ଆୟତ୍ତ କରି ହେବ । ଚିକିତ୍ସା ଦୃଷ୍ଟିରୁ ତାହା କରିବା ହେଲା ଉତ୍ତମ ସ୍ୱାସ୍ଥ୍ୟ ଓ ଦୀର୍ଘଜୀବନର ନିଶ୍ଚୟତା ସୃଷ୍ଟି କରିବା । ଅତି ଚମତ୍କାର ଆୟୁର୍ବେଦର ସେଇ ନିର୍ଦ୍ଧାରଣ । ତାହା କେବଳ ଆୟୁର୍ବେଦ ନୁହେଁ, ସମସ୍ତ ବିଜ୍ଞାନର ମୂଳଭିତ୍ତି । ସମସ୍ତ ମାନବଜାତି ପ୍ରତି ଏକ ଅପରିବର୍ତ୍ତନୀୟ ନିର୍ଦ୍ଦେଶ । ଆୟୁର୍ବେଦ ତାକୁ ଅନୁସରଣ କରେ ସେଇ ମାନବର ଦୀର୍ଘ ଜୀବନ ଓ ଆନନ୍ଦ ଲାଗି । ''ଜୀବନ ପ୍ରତି କଣ ଖରାପ, କଣ ଭଲ, କଣ ଦୁଃଖଦାୟକ, କଣ ସୁଖପ୍ରଦ, କଣ ସ୍ୱାସ୍ଥ୍ୟକର, କଣ ଅସ୍ୱାସ୍ଥ୍ୟକର, ତାକୁ ଯେ ବାଖ୍ୟା ଓ ପ୍ରମାଣ କରେ, ତାକୁ କହନ୍ତି ଆୟୁର୍ବେଦ (ଚ. ୧.୧.୪୧) ।'' ତାକୁ ଆୟୁର୍ବେଦ କହନ୍ତି, ଯେହେତୁ ତାହା ଦୀର୍ଘ ଜୀବନର ସମ୍ଭାବନା ସୃଷ୍ଟି କରେ । ଆୟୁର୍ବେଦ ତାହା ପ୍ରଦାନ କରେ କିପରି ? ନିର୍ଦ୍ଦିଷ୍ଟ ପ୍ରମାଣ ଓ ଅପ୍ରମାଣ ଉପରେ ନିର୍ଭର କରି, ତାହା ଆମକୁ ପଦାର୍ଥର ଗୁଣ ଓ କାମ ସମ୍ବନ୍ଧରେ ଜ୍ଞାନ ପ୍ରଦାନ କରିଥାଏ । ଯେହେତୁ ସେଗୁଡ଼ିକ ତାଙ୍କର ସହଜାତ ପ୍ରକୃତି ଏବଂ ସେହି ସହଜାତ ପ୍ରକୃତି ଯୋଗୁ ସେମାନେ ଆନନ୍ଦ ଓ ଯନ୍ତ୍ରଣା ଆଣନ୍ତି, ସ୍ୱାସ୍ଥ୍ୟକର ଓ ଅସ୍ୱାସ୍ଥ୍ୟକରତାର ପ୍ରମାଣ ଦିଅନ୍ତି, ଉଦ୍ଦୀପନ ବା ନିର୍ବର୍ତ୍ତନ କରିଥାଆନ୍ତି (ଚ, ୧.୩୦.୩୩) ।''

ଉପୋରକ୍ତ ପଦ୍ଧତି ଭିତରେ ଆୟୁର୍ବେଦର ମୂଳ ମର୍ମ ନିହିତ । ତାର ଦୃଷ୍ଟିକୋଣ, ଦର୍ଶନ ଓ ମାନବିକତାବାଦ ଆଦି ବେଶ୍ ପରିସ୍ଫୁଟ । ପ୍ରଥମତଃ ତାହା ଘୋଷଣା କରେ, — ନିର୍ଦ୍ଦିଷ୍ଟ ପ୍ରମାଣ ଓ ଅପ୍ରମାଣ ଉପରେ ଆୟୁର୍ବେଦ ପ୍ରତିଷ୍ଠିତ । ଯାହା ପ୍ରମାଣ-ସିଦ୍ଧ ନୁହେଁ, ତାକୁ ତାହା ପ୍ରତ୍ୟାଖ୍ୟାନ କରେ । ତାର ସଫଳତା ମୁଖ୍ୟତଃ ସେହି ବିଷୟମାନଙ୍କ ଉପରେ ନିର୍ଭର କରେ । ଦ୍ୱିତୀୟରେ ସେଇ ପ୍ରମାଣ ହେଉଛି, — ପଦାର୍ଥ ଗୁଣର ପ୍ରମାଣ । ଯାହାକୁ ଘେନି କି ଏ ବିଶ୍ୱପ୍ରକୃତି ଗଠିତ । ଚିକିତ୍ସା ଲାଗି ସେପରି ପ୍ରତ୍ୟେକଟି ଜିନିଷ ପ୍ରୟୋଜନ । ଅନାବଶ୍ୟକ ବୋଲି କିଛି ନାହିଁ । ଅନ୍ୟ ଦିଗରୁ ଦେଖିଲେ ତାହା ପ୍ରୟୋଗ ହୁଏ ସେଇ ବିଶ୍ୱପ୍ରକୃତି (ମଣିଷ) ପ୍ରତି । ତେଣୁ ତାକୁ କେବଳ ତାରି ନିୟମ ବା ସ୍ୱଭାବ ଦ୍ୱାରା ବୁଝିହେବ । ତାହାର ଏକମାତ୍ର ଉଦ୍ଦେଶ୍ୟ ମଣିଷର ହିତ ପାଇଁ; ସେଥିଲାଗି କୌଣସି ଐଶ୍ୱରିକ ଆଶୀର୍ବାଦ, ଅନ୍ଧବିଶ୍ୱାସ ବା ଅଦୃଷ୍ଟ ଲିଖନର ପ୍ରଶ୍ନ ନାହିଁ । ଏହା ସମ୍ପୂର୍ଣ୍ଣ ବସ୍ତୁବାଦୀ ଦୃଷ୍ଟିକୋଣ ।

ଆମେ ଦେଖିଛେ, ଲୋକାୟତ ଆଉ ଚାର୍ବାକ ସେଇ କଥା କହିଥାଆନ୍ତି । ସ୍ୱଭାବରୁ ସବୁର ଉତ୍ପତ୍ତି । ସ୍ୱଭାବ ହେତୁ ସବୁର ବିକାଶ । ଆଉ ସେଇ ସ୍ୱଭାବ ଯୋଗୁ ସବୁର ବିଳୟ । ତେଣୁ ସ୍ୱଭାବ ହେଉଛି ନିଜେ ନିଜର କାରଣ । ଆୟୁର୍ବେଦ ତାର ଲକ୍ଷ୍ୟ ପ୍ରାପ୍ତି ଦିଗରେ ଠିକ୍ ସେଇ ଦୃଷ୍ଟିକୋଣ ହିଁ ଗ୍ରହଣ କରେ । ସେ ତାହା କରେ , କାହାର କଥାରେ ନୁହେଁ । ନିଜର ପ୍ରତ୍ୟକ୍ଷ ଅଭିଜ୍ଞତାର ଭିତ୍ତିରେ । କାରଣ ତାର ତତ୍ତ୍ୱର ସତ୍ୟତା ଆଉ ସାର୍ଥକତା ଉପରେ ନିର୍ଭର କରେ ତାର ଫଳପ୍ରାପ୍ତି ଅର୍ଥାତ୍ ରୋଗ ନିରାକରଣ ଉପରେ । ଯାହାକି କେବଳ ପ୍ରକୃତିର ସେଇ ନିୟମ ବା ସ୍ୱଭାବକୁ ଆଶ୍ରା କରିବା ଦ୍ୱାରା ସମ୍ଭବ ।

ତାହା ନ ହେଲେ ଅନ୍ୟ ବିକଳ୍ପ ପନ୍ଥା ହେଲା କର୍ମ, ଅଦୃଷ୍ଟ , ଧର୍ମ, ଅତି-ପ୍ରାକୃତିକତା ଅଥବା ଭଗବାନଙ୍କୁ , କିମ୍ବା ଆକସ୍ମିକତାକୁ ଗ୍ରହଣ କରିବା । ଆମ ସମାଜର ଅଧିପତି ଓ ରାଷ୍ଟ୍ରର ଶାସକମାନେ କେହି ଆକସ୍ମିକତାକୁ ଗ୍ରହଣ କରନ୍ତି ନାହିଁ । ସେମାନେ ସମସ୍ତେ ପ୍ରଥମଟିର ପ୍ରଚାରକ , ରକ୍ଷକ ଓ ପୃଷ୍ଟପୋଷକ । ତେଣୁ ଉପନିଷଦ କହେ , " ଯେଉଁମାନେ ଭଲକାମ କରନ୍ତି , ସେମାନେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ହୋଇ ଭଲ ଭାବେ ଅତିଶୀଘ୍ର ପୁନର୍ଜନ୍ମ ଲାଭ କରନ୍ତି । ଯେଉଁମାନେ ମନ୍ଦ କାମ କରନ୍ତି, ସେମାନେ କୁକୁର, ଘୁଷୁରୀ, ଚଣ୍ଡାଳ ହୋଇ ଖରାପ ଭାବରେ ପୁର୍ନଜନ୍ମ ନିଅନ୍ତି । ଯେଉଁମାନେ ଏଥିମଧ୍ୟରୁ କୌଣସି ମାର୍ଗ ଅନୁସରଣ କରନ୍ତି ନାହିଁ, ସେମାନେ ସଦା ବଦଳୁଥାନ୍ତି । ସେମାନେ ନିମ୍ନଧରଣରେ ପ୍ରାଣୀ (ମଶା, ମାଛି, ପୋକ ଜୋକ ) ହୋଇ ଜନ୍ମନ୍ତି । ସେସବୁ ଜନ୍ମନ୍ତି ଓ ମରନ୍ତି । ଅଳ୍ପ ସମୟ ବଞ୍ଚନ୍ତି । ମୃତ୍ୟୁ ପ୍ରାୟ ଏକ ସମୟରେ ଆସେ" (ଛାନ୍ଦୋଗ୍ୟ ଉପନିଷଦ ୫.୧୦.୭)

ଉପରୋକ୍ତ ଦୃଷ୍ଟି ନେଇ ଚିକିତ୍ସକ କ'ଣ କେବେ ଚାଲିପାରେ ? ଯେତେ ଯାହା ହେଲେ ବି ଚିକିତ୍ସକଙ୍କୁ ରୋଗର କାରଣ ଓ ତାର ନିରାକରଣର କାରଣ ବୁଝିବାକୁ ହେବ । ପ୍ରାଚୀନ ଚିକିତ୍ସକଗଣ କେବଳ ପ୍ରତ୍ୟକ୍ଷ ଉପରେ ନିର୍ଭର କରନ୍ତି ନାହିଁ, ସେଥିଲାଗି ଅନୁମାନ ମଧ୍ୟ ଆବଶ୍ୟକ । ସେ ଅନୁମାନ କିନ୍ତୁ କଳ୍ପନାମୂଳକ ନୁହେଁ । ଅନୁମାନ ଦୁଇ ପ୍ରକାରର । କାର୍ଯ୍ୟ (ଫଳ)ରୁ କାରଣକୁ ଅନୁମାନ କରିବା, ଏବଂ କାରଣରୁ (କାର୍ଯ୍ୟ) ଫଳକୁ ଦେଖିବା । ଏହି ଅନୁମାନ କିନ୍ତୁ ପୂର୍ବର ପ୍ରତ୍ୟକ୍ଷ ପର୍ଯ୍ୟବେକ୍ଷଣ ଉପରେ ହିଁ ପ୍ରତିଷ୍ଠିତ । ଯେପରି ଧୂଆଁରୁ ନିଆଁକୁ ଅନୁମାନ କଲାବେଳେ, ଆଗରୁ ନିଆଁରୁ ଧୂଆଁ ହେବାଟା ପ୍ରତ୍ୟକ୍ଷଦ୍ୱାରା ପ୍ରମାଣସିଦ୍ଧ ।

ଆୟୁର୍ବେଦ ଲାଗି କାରଣ ଏକାନ୍ତ ଆବଶ୍ୟକ । ଅନୁମାନ ମଧ୍ୟ ଦରକାର । କିନ୍ତୁ ତାହା ଯୁକ୍ତିଯୁକ୍ତ ବିଚାର ଉପରେ ପ୍ରତିଷ୍ଠିତ ହେବା ଉଚିତ । ଯୁକ୍ତିର ପଦ୍ଧତି ଦୁଇ ପ୍ରକାର । ନ୍ୟାୟ ଓ ଅନ୍ୟାୟ । ଗୋଟାଏ ମତ ହେଉଛି ନ୍ୟାୟଶାସ୍ତ୍ର ଚିକିତ୍ସା ଶାସ୍ତ୍ରଦ୍ୱାରା ତାହା ପ୍ରଭାବିତ । ସେସବୁ ଏଠାରେ ଆଲୋଚ୍ୟ ବିଷୟ ନୁହେଁ । ସେଥିପ୍ରତି ଆୟୁର୍ବେଦର ଅବଦାନ ଯେ ଅତୁଳନୀୟ, ଏଥିରେ ସନ୍ଦେହ ନାହିଁ ।

**ବର୍ଣ୍ଣାଶ୍ରମର ପ୍ରତି-ଆକ୍ରମଣ**

ଭାରତୀୟ ସଭ୍ୟତା ସଂସ୍କୃତି ପ୍ରତି ଯେଉଁମାନଙ୍କର ଏତେ ଅବଦାନ, ଯେଉଁମାନେ ମଣିଷର ସ୍ୱାସ୍ଥ୍ୟ ଓ ତାର ଦୀର୍ଘ ଜୀବନ ପ୍ରତି ସଦା ସଜାଗ ଓ ତତ୍ପର, ସମାଜର ନିୟାମକଙ୍କ ଦୃଷ୍ଟିରେ ଠିକ୍ ସେଇ ଚିକିତ୍ସକଗଣ ହେଲେ ସବୁଠାରୁ ହେୟ, ଘୃଣ୍ୟ ଓ ହୀନଜୀବ । ଚିକିତ୍ସକଙ୍କ ପାଖ ନ ମାଡ଼ିବା ଦିଗରେ ସମାଜ ପ୍ରତି ନିୟାମକଙ୍କର କଠୋର ନିର୍ଦ୍ଦେଶ । କାରଣ ଚିକିତ୍ସକ ଚାଣ୍ଡାଳ ସହିତ ସମାନ । ତାଙ୍କ ହାତରୁ ଖାଦ୍ୟଗ୍ରହଣ ଓ ତାଙ୍କୁ ଖାଦ୍ୟଦାନ ନିଷିଦ୍ଧ । କିନ୍ତୁ ମଣିଷ ଯିଏ ଜୀଇଁ ରହିବାକୁ ଚାହେଁ, ତା' ପାଖରେ ଚିକତ୍ସାବିଜ୍ଞାନକୁ ଆଡ଼େଇ ଦେଇଯିବା ଅସମ୍ଭବ । ତେଣୁ ରକ୍ଷଣଶୀଳମାନେ ଚାହିଁଛନ୍ତି, ତା' ଉପରେ ନିଜର ରଙ୍ଗ ବୋଳି, ଆପଣାର ଛାପ ଲଗାଇ ଚଳାଇବା ଲାଗି । ସେଥିପାଇଁ ବିଜ୍ଞାନ ସହିତ ବିଶ୍ୱାସ, ଦ୍ରବ୍ୟଗୁଣ ସହିତ ଦୈବୀଶକ୍ତି, କର୍ମର ସଫଳତା ପାଇଁ ଧର୍ମର ଧାରଣା, ବିଚାର ଜ୍ଞାନ ପରିବର୍ତ୍ତେ ନାନାଦି କିମ୍ବଦନ୍ତୀ ମିଥ୍ (Myth) ଓ ପୌରାଣିକ କାହାଣୀ, ସର୍ବଶେଷରେ ସ୍ୱାଧୀନ ଚିନ୍ତା ସ୍ଥାନରେ ଯାବତୀୟ କୁସଂସ୍କାରର ଆଶ୍ରୟ ନେଇଛନ୍ତି । ତାହା କାଳେ କାଳେ ବ୍ରାହ୍ମଣ ପୁରୋହିତ, ରକ୍ଷଣଶୀଳ, ସମାଜ ଓ ରାଷ୍ଟ୍ର ଶାସକଙ୍କର ଚିରାଚରିତ ନୀତି ହୋଇଆସିଛି ।

ଚିକିତ୍ସକଙ୍କ ପ୍ରତି ସେଇ ବିଦ୍ୱେଷର ପ୍ରକୃତ କାରଣ 'ତାଙ୍କର ଚିକିତ୍ସା ନୁହେଁ,— ତା ପଛରେ ରହିଥିବା ତାଙ୍କର ଦର୍ଶନ ବା ଦୃଷ୍ଟିକୋଣ । ସେଇ ଦର୍ଶନକୁ ଖଣ୍ଡନ କରିବା ଲାଗି ବର୍ଣ୍ଣାଶ୍ରମର ପ୍ରବର୍ତ୍ତକ ପୁରୋଧାଗଣ ଯାବତୀୟ ମାର୍ଗ ଧରିଛନ୍ତି, ଏପରିକି ନିଜର ବିରୋଧୀ ମତକୁ ମଧ୍ୟ ମାନି ନେଇଛନ୍ତି । ଗୀତାରେ କହିଛନ୍ତି ''ସମସ୍ତଙ୍କ

ଉପରେ ମୁଁ ବଡ । ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ ।'' ସମସ୍ତଙ୍କୁ ଛାଡ଼ି ମତେ ଧର । ତେଣୁ ସେଇ ସମସ୍ତ ଜିନିଷ କିନ୍ତୁ (ଗୀତାର) ପ୍ରଚାରିତ ଧର୍ମ, ସେଇ ବର୍ଣ୍ଣାଶ୍ରମ ବା ଜାତିଭେଦର ଭିତ୍ତିରେ । ଏପରିକି ପ୍ରଚାର ଦ୍ୱାରା ନିରୀଶ୍ୱରବାଦୀ ବୁଦ୍ଧଙ୍କୁ ବିଷ୍ଣୁଙ୍କର ଏକ ଅବତାର କରି ଥୋଇ ଦିଆଯାଇଛି । ଅର୍ଥାତ୍ ବୁଦ୍ଧ ମତ ମଧ୍ଯ ସେଇ ବର୍ଣ୍ଣାଶ୍ରମ ଧର୍ମରୁ ଜାତ ଓ ତାର ନିୟମ ଅଧୀନ । ଏହିପରି କାହାଣୀ, ପୁରାଣ, କିମ୍ବଦନ୍ତୀ ବା ମିଥ୍ ଆଦି ସୃଷ୍ଟିର ଅଭାବ ନାହିଁ । ତାହା ମଧ୍ୟ ଏବେ ବି ସୃଷ୍ଟି କରାଯାଏ । ତାହା ପୁଣି କରେ ସରକାରଙ୍କର ଇଲେକ୍ଟ୍ରୋନିକ୍ ମିଡ଼ିଆ - 'ଦୂରଦର୍ଶନ' । ଏଇ ସେଦିନ ୧୯୯୧ —ଛଅ ତାରିଖ, ବାବା ସାହେବ ଆମ୍ବେଦକରଙ୍କ ଜନ୍ମବାର୍ଷିକୀ ଉପଲକ୍ଷେ ଟି.ଭି.ରେ ପ୍ରଚାର କରାଗଲା ଯେ ଆମ୍ବେଦକରଙ୍କର ଭଳି ଜଣେ ମହାନ ପୁରୁଷ କେବଳ ମାତ୍ର ଐଶ୍ୱରିକ ଆଶୀର୍ବାଦ ବଳରେ ଜନ୍ମଲାଭ କରିପାରନ୍ତି । ତାଙ୍କର ପିତା ଜଣେ ସାଧୁଙ୍କର ଅନୁସରଣ କରି ତାଙ୍କୁ ଲାଭ କରିଥିଲେ । ସାଧୁ ଭବିଷ୍ୟତବାଣୀ ଶୁଣାଇ କହିଥିଲେ ଯେ ତାଙ୍କର ଚତୁର୍ଦ୍ଦଶ ସନ୍ତାନ ଜଣେ ମହାନ୍ ବ୍ୟକ୍ତି ହେବ । ତାଙ୍କର ପିତା ନିଜର ବୟସ ଦୃଷ୍ଟିରୁ ସନ୍ତାନ ଲାଭ ପ୍ରତି ସନ୍ଦେହ ପ୍ରକାଶ କରିବାରୁ ସାଧୁଙ୍କର ଉତ୍ତର ହେଲା, ''ଭଗବାନଙ୍କ ଇଚ୍ଛାରେ ସବୁ ସମ୍ଭବ ।'' ଆମ୍ବେଦକର, ଯିଏ ହିନ୍ଦୁଧର୍ମ ଶାସ୍ତ୍ର ପୁରାଣର ଘୋର ବିରୋଧୀ, ଜାତିଭେଦ ବର୍ଣ୍ଣାଶ୍ରମ ବିରୋଧରେ ଯାହାଙ୍କର ଜୀବନବ୍ୟାପୀ ସଂଗ୍ରାମ, ଶେଷରେ ହିନ୍ଦୁଧର୍ମର ଉତ୍ପୀଡ଼ନରେ ବାଧ ହୋଇ ଯିଏ ବୌଦ୍ଧଧର୍ମର ଆଶ୍ରୟ ନେଲେ, ପୁଣି ତାଙ୍କରି ଜନ୍ମ ହେଲା ସେଇ ବର୍ଣ୍ଣାଶ୍ରମର କଲ୍ୟାଣରୁ ଏବଂ ତାଙ୍କର ସମସ୍ତ ଖ୍ୟାତି ଠିକ୍ ସେଇ ଧର୍ମର ଭବିଷ୍ୟତବାଣୀ ଯୋଗୁ । କୋଉକାଳେ ଶୁଣା ନ ଥିବା ସନ୍ତୋଷୀ ମା'ଙ୍କ ଆବିର୍ଭାବ ଏହିପରି ଆଉ ଏକ ଦୃଷ୍ଟାନ୍ତ । ଏହିପରି କିମ୍ବଦନ୍ତୀ ଶେଷରେ ପାଠ୍ୟ ପୁସ୍ତକରେ ସ୍ଥାନ ପାଏ, ସତ୍ୟରେ ପରିଣତ ହୁଏ । ଏହିପରି ମାଇଥ୍ ବା ଧାରଣା ଯଦି ବର୍ତ୍ତମାନ ଯୁଗରେ ସୃଷ୍ଟି ହୋଇପାରେ, ତେବେ ପ୍ରାଚୀନ କାଳରେ, ମଧ୍ୟଯୁଗରେ ଏହିପରି କେତେ କାହାଣୀ, କିମ୍ବଦନ୍ତୀ ସତ୍ୟଭାବେ ଗୃହୀତ ଓ ଅନୁସୃତ ନୁହେଁ ? ଏହିପରି ସତ୍ୟର ଧାରଣାଦ୍ୱାରା ଚିକିତ୍ସା ବିଜ୍ଞାନକୁ ବର୍ଣ୍ଣାଶ୍ରମ ଧର୍ମରେ ଦୀକ୍ଷିତ କରିବାର ଚେଷ୍ଟା ହୋଇଆସିଛି ।

ଏହାର ମୁଖ୍ୟ କାରଣ, ବୈଜ୍ଞାନିକ ଆଉ ନିୟାମକଙ୍କ କାର୍ଯ୍ୟ ଓ ଲକ୍ଷ୍ୟ ଭିନ୍ନ ଭିନ୍ନ ଚିକିତ୍ସା ବିଦ୍ୟାର ଜନ୍ମ ମଣିଷ ସହିତ ଆଦିମ ଶ୍ରେଣୀହୀନ ସମାଜରେ, କାର୍ଯ୍ୟ ହେଲା, ଚିକିତ୍ସା ଦୃଷ୍ଟିରୁ ପ୍ରକୃତି ଉପରେ ଆଧିପତ୍ୟ ବିସ୍ତାର ମାନବକୁ ସ୍ୱାସ୍ଥ୍ୟବାନ ଓ ଦୀର୍ଘାୟୁ କରିବା ଲକ୍ଷ୍ୟରେ । ନିୟାମକମାନଙ୍କର ଜନ୍ମ ହେଲା ଶ୍ରେଣୀବିଭକ୍ତ ସମାଜରେ । ତାଙ୍କର ଲକ୍ଷ୍ୟ ହେଲା, ମଣିଷ ଉପରେ ମଣିଷର ଆଧିପତ୍ୟ ବିସ୍ତାର । ତାଙ୍କୁ ଅଧୀନସ୍ଥ କରିବା ମୁଷ୍ଟିମେୟ ଲୋକଙ୍କର ସ୍ୱାର୍ଥ ଲାଗି । ସେହି ନିୟମର ତତ୍ତ୍ୱ, କାର୍ଯ୍ୟ ଓ ବିଧାନ ହେଲା ବର୍ଣ୍ଣାଶ୍ରମ ।

ଚିକିତ୍ସାବିଜ୍ଞାନର ଆରମ୍ଭ ଘଟିଛି ବୁଦ୍ଧଙ୍କର ବହୁ ପୂର୍ବରୁ । ପ୍ରଥମ ଜାତକ କାହାଣୀରେ ଚିକିତ୍ସା ବିଦ୍ୟାର ଉଲ୍ଲେଖ ମିଳେ । ବୁଦ୍ଧଙ୍କ ସମୟରେ ଜୀବକ ବୋଲି ଜଣେ ଅତି ବିଖ୍ୟାତ ଚିକିତ୍ସକ ଥିଲେ । ସେ ବୁଦ୍ଧଙ୍କର ଘନିଷ୍ଠ ବନ୍ଧୁ ଓ ତେଣେ ରାଜବୈଦ୍ୟ ମଧ୍ୟ ଥିଲେ । ତାଙ୍କର ଜନ୍ମ କୌଣସି ଉଚ୍ଚ ଜାତିରେ ନୁହେଁ । ସେ ଜଣେ ଗଣିକାର ଅବାଞ୍ଛିତ ସନ୍ତାନଭାବେ ପରିତ୍ୟକ୍ତ । ରାସ୍ତାରେ ପଡ଼ିଥିବା ଅବସ୍ଥାରେ ତାଙ୍କୁ ଜୀଇଁଛି, —"ଜୀବିତ" ବୋଲି କହିବାରେ ତାଙ୍କ ନାମ ଜୀବକ ହେଲା । ସେ ତକ୍ଷଶିଳାର ଜଣେ ପ୍ରସିଦ୍ଧ ଚିକିତ୍ସକଙ୍କ ନିକଟରେ ଅଧ୍ୟୟନ କଲାପରେ ଗୁରୁଙ୍କୁ କହିଲେ, ଦୀର୍ଘ ସାତବର୍ଷକାଳ ଆପଣଙ୍କ ନିକଟରେ ଖୁବ୍ ପଢ଼ିଛି ସବୁ ବୁଝିଛି ଓ ମନେ ରଖିଛି । କିନ୍ତୁ ଏ ବିଦ୍ୟାର ଶେଷ କେଉଁଠି ? ଗୁରୁ ଜୀବକଙ୍କୁ ଏକ କୋଦାଳ ଦେଇ କହିଲେ ଯାଅ, ତକ୍ଷଶିଳାର ଚତୁର୍ଦ୍ଦିଗରେ ଏକ ଯୋଜନ (୯ ମାଇଲ) ଆକ୍ରାନ୍ତରେ ବୁଲି ଯେଉଁ ଜିନିଷଟିକୁ ଔଷଧ ବୋଲି ନ ମଣିବ,ତାକୁ ମୋ ପାଖକୁ ଆଣିବ । ଜୀବକ ଫେରିଆସି କହିଲେ , ମୁଁ ଚତୁର୍ଦ୍ଦିଗରେ ଏକ ଯୋଜନ ବ୍ୟାପୀ ବୁଲିଲି, କିନ୍ତୁ କୌଣସି ଜିନିଷ ପାଇଲି ନାହିଁ , ଯାହା ଔଷଧ ଉପଯୋଗୀ ନୁହେଁ । ଗୁରୁ କହିଲେ ତୁମର ଶିକ୍ଷା ସମାପ୍ତ ହୋଇଛି । ଏଣିକି ଜୀବିକା ଅର୍ଜନ କର ।

ବୁଦ୍ଧଙ୍କର ସେହି ସମୟ ହେଉଛି ଖ୍ରୀଷ୍ଟପୂର୍ବ ଛଅଶହ ଶତାବ୍ଦୀ । ଜଣାଯାଏ, ଏଥିପୂର୍ବରୁ ଚିକିତ୍ସା- ବିଜ୍ଞାନ ରୂପ ନେଇଛି । କଣ ତାର ସେଇ ରୂପ ? ଉପରୋକ୍ତ ଉକ୍ତିରୁ ତାହା ପ୍ରକାଶ ପାଏ । ତାହା କହେ ମଣିଷର ଚିକତ୍ସା ଲାଗି କୌଣସି ଜିନିଷ ଅପ୍ରାସଙ୍ଗିକ ବା ଅନାବଶ୍ୟକ ନୁହେଁ । କାରଣ ମଣିଷ ଓ ଜିନିଷ ଉଭୟ ପଞ୍ଚଭୂତରେ ଗଢ଼ା । ମଣିଷର ରୋଗ ହେଉଛି ଭୂତଙ୍କର ସେଇ ଭାରସାମ୍ୟର ବିଶୃଙ୍ଖଳାର ପ୍ରକାଶ ।ଦେହରେ ଅନୁରୂପ ଭୂତଙ୍କର ବୃଦ୍ଧି ଓ ହ୍ରାସ ଦ୍ୱାରା ସେଇ ଭାରସାମ୍ୟ ଅଣାଯାଇପାରେ । ତାହାହିଁ ରୋଗ ନିରାକରଣର କାରଣ । ଏହା କୌଣସି ଦେବୀ ଆଶୀର୍ବାଦ ବା ବାହ୍ମଣ ପୁରୋହିତଙ୍କ ଆଶ୍ରୟ ଭିକ୍ଷା କରେ ନାହିଁ । ଏସବୁ ପୂର୍ବରୁ ଆଲୋଚିତ ହୋଇଛି । ଅନ୍ଧବିଶ୍ୱାସ ଉପରେ ଏହି ଆଘାତ ନିୟାମକ ଓ ରକ୍ଷଣଶୀଳଙ୍କ ପକ୍ଷରେ ଅସହ୍ୟ ।ତାହାର ଜ୍ୱଳନ୍ତ ଦୃଷ୍ଟାନ୍ତ ହେଲେ ଆପସ୍ତମ୍ବ ଗୌତମ, ବଶିଷ୍ଠ ମନୁ ଆଉ ତାଙ୍କ ସାଙ୍ଗଙ୍କୁ ଧର୍ମଶାସ୍ତ୍ର ଇତ୍ୟାଦି । ଏ ସମସ୍ତ ପ୍ରାୟ ଖ୍ରୀ: ପୁ: ୬୦୦ ରୁ ଖ୍ରୀ:ପର ୬୦୦ ମଧ୍ୟରେ ଆସିଛନ୍ତି । ଆପସ୍ତମ୍ବ ଖ୍ରୀ.ପ.ର ୬୦୦ ବିଷ୍ଣୁଙ୍କ ଧର୍ମଶାସ୍ତ୍ର ଖ୍ରୀ: ପୁ ୩୦୦-ଖ୍ରୀ.ପ.ର ୬୦୦, ସମସ୍ତ ବିଧାନ ସେଇ ୧୦୦୦ ବର୍ଷ ମଧ୍ୟରେ ରୂପ ନେଇଛି , ତେବେ ମନୁଙ୍କ ଭାଷ୍ୟ ୧୩୦୦ ଶତାବ୍ଦୀ ଯାଏ ଲେଖା ଚାଲିଛି । ଅର୍ଥାତ, ହଜାର ଦେଢ଼ ହଜାର ବର୍ଷ ଧରି ଚିକିତ୍ସକଙ୍କ ବିରୋଧରେ ସେମାନେ କ୍ରମାଗତ ବାଣ ପ୍ରହାରରେ ଲାଗିଛନ୍ତି ।

ଆପସ୍ତମ୍ବ ଘୋଷଣା କରନ୍ତି—ଚିକିତ୍ସକ, ଶଲ୍ୟ ଚିକିତ୍ସକ, ଶିକାରି, ଅବିଶ୍ୱାସୀ ସ୍ତ୍ରୀ ଓ ନପୁଂସକ ହାତରୁ ଖାଦ୍ୟ ଗ୍ରହଣ କରିବ ନାହିଁ । ପୁଣି ଗଣ (Tribal) ଗୋଷ୍ଠୀ

:- ସମାଜ , କାରିଗର ଆଉ ଚିକିତ୍ସକଙ୍କ ଖାଦ୍ୟ ସ୍ପର୍ଶ କରିବ ନାହିଁ । ଗୌତମଙ୍କ ନିୟମ କହେ, କାରିଗର, ଅସତୀ ସ୍ତ୍ରୀ, ବଢ଼େଇ, କମାର, ଚୋର, ଅପରାଧୀ ଆଉ ଚିକିତ୍ସକ ହାତରୁ ଖାଦ୍ୟ ଖାଇବ ନାହିଁ । ବଶିଷ୍ଠଙ୍କ ମତ ହେଲା, ଏପରିକି ଚିକିତ୍ସକ ଦେବା ଭିକ୍ଷା ଅପବିତ୍ର । ଚିକିତ୍ସକ, ଶଲ୍ୟ ଚିକିତ୍ସକ, ଦୁଷ୍ଟଲୋକ, ନପୁଂସକ, ଅବିଶ୍ୱାସୀ ସ୍ତ୍ରୀ ଆଦି ଭିକ୍ଷା ଦେଲେ ତାକୁ ଗ୍ରହଣ କରିବ ନାହିଁ । ଏ ଦିଗରେ ମନୁ ସମସ୍ତଙ୍କୁ ଟପି ଯିବା ସ୍ୱାଭାବିକ । ତାଙ୍କ ବିଧାନ ହେଲା ଚିକିତ୍ସକ ହାତରୁ ଗୃହୀତ ଖାଦ୍ୟ ପୂଜଭଳି । " ପୂୟଂ ଚିକିତ୍ସକସ୍ୟ ଅନ୍ନଂ" (ମ.ସଂ. ୪.୨୨୦) ସେହିପରି ଚିକିତ୍ସକଙ୍କୁ ଦେବା ଖାଦ୍ୟ ପୂଜ ଓ ରକ୍ତ ଭଳି । (ମନୁ ୩. ୧୮୦) ଚିକିତ୍ସକଗଣ ଜନ୍ମରୁ ଅପବିତ୍ର । ପୂଜା ପାଠ, ଶାସ୍ତ୍ର ପାରାୟଣ ଆଦି ସ୍ଥାନକୁ ତାଙ୍କୁ ଯିବାକୁ ଦେବ ନାହିଁ । (ମନୁ ୩.୧୫୨) ମହାଭାରତ ଶାନ୍ତିପର୍ବରେ ବ୍ରାହ୍ମଣ କେଉଁମାନଙ୍କ ହାତରୁ ଖାଦ୍ୟ ଖାଇବେ ନାହିଁ, ତାର ଏକ ଦୀର୍ଘ ତାଲିକା ଦେଇଛନ୍ତି । ତାହା ଭିତରେ ଚିକିତ୍ସକ ଅନ୍ତର୍ଭୁକ୍ତ । କାରଣ ସେମାନେ ଦେବା ଖାଦ୍ୟ ଧୋବା, କମାର, ବେଶ୍ୟାଙ୍କ ଦେଲାଭଳି ଅପବିତ୍ର । ପୁଣି ଅନୁଶାସନ ପର୍ବରେ ମଧ୍ୟ ସେହିପରି ବିବରଣୀ ରହିଛି । ଅଧିକ ଦୃଷ୍ଟାନ୍ତ ଅନାବଶ୍ୟକ ।

ସେ ବର୍ଣ୍ଣାଶ୍ରମ ଧର୍ମ, ଜାତିଭେଦ କେବଳ ମଣିଷଙ୍କ ମଧ୍ୟରେ ସୀମାବଦ୍ଧ ନୁହେଁ , ତାହା ମଧ୍ୟ ସ୍ୱର୍ଗଲୋକରେ ଦେବତା ଓ ଉଭିଦ ଜଗତରେ ତରୁଲତାଙ୍କ ଭିତରେ ପଶିଛି । "ବରୁଣ ହେଲେ ନିଃସନ୍ଦେହରେ ସମ୍ଭ୍ରାନ୍ତବଂଶଜ । ମରୁତ୍ ହେଲେ ଇତର, ସାଧାରଣ ଲୋକ । ପୁରୋହିତ ସେହି ଭାବରେ ସମ୍ଭ୍ରାନ୍ତ ବ୍ୟକ୍ତିଙ୍କୁ ସାଧାରଣ ଲୋକଙ୍କ ତୁଳନାରେ ଉଚ୍ଚ ମର୍ଯ୍ୟାଦା ପ୍ରଦାନ କରିଥାଆନ୍ତି । ତେଣୁ ଲୋକେ ତାଙ୍କ ଉପରେ ଥିବା କ୍ଷତ୍ରିୟଙ୍କୁ ସେବା କରନ୍ତି । (ଶତପଥ ବ୍ରାହ୍ମଣ ୨.୫.୨୫୬) ସେମିତି ଇନ୍ଦ୍ର ହେଲେ ସମ୍ଭ୍ରାନ୍ତ । ବୃକ୍ଷଲତାଙ୍କ କ୍ଷେତ୍ରରେ କୁହାଯାଇଛି, "ସୋମଲତାଙ୍କ ମଧ୍ୟରେ କୁଟାକାଠି ଦେଖି କେତେ ତାଙ୍କୁ ଫିଙ୍ଗି ଦିଅନ୍ତି, ସେମାନେ ତାହା ନ କରନ୍ତୁ, କାରଣ କୁଟାକାଠି ସେମାନଙ୍କ ଖାଦ୍ୟ ଭଳି । ସୋମ ସମ୍ଭ୍ରାନ୍ତ, ଅଥଚ ଅନ୍ୟାନ୍ୟ ବୃକ୍ଷ ସାଧାରଣ ହୋଇଥିବା ଦୃଷ୍ଟିରୁ ଦେଖାଯିବ ଯେ ସତେ ଯେପରି ସମ୍ଭ୍ରାନ୍ତ ସୋମଲତା ମୁହଁରେ ଲଗାଇଥିବା ଖାଦ୍ୟକୁ ଟାଣିଆଣି ଫିଙ୍ଗି ଦିଆଯାଉଛି । (ଶତପଥ ବ୍ରାହ୍ମଣ ୩.୩.୨.୨୮.) । ସମ୍ମାନିତ ଦେବବୈଦ୍ୟ ଅଶ୍ୱିନୀକୁମାର ଯୁଗଳ ମଧ୍ୟ ପରବର୍ତ୍ତୀ କାଳରେ ନିନ୍ଦିତ, ଏସବୁର ଏକମାତ୍ର ଉଦ୍ଦେଶ୍ୟ ହେଲା ସାଧାରଣ ଲୋକଙ୍କୁ ଉଚ୍ଚ ବର୍ଣ୍ଣର ଅଧୀନସ୍ଥ କରି ରଖିବା । ଏପରି ଏକ ଧର୍ମ, ସାମାଜିକ ବିଧାନ ଏବଂ ନୀତିବୋଧ ଭିତରେ ବାନ୍ଧିଦେବା ଯେପରି ଅବାଧ ଲୁଣ୍ଠନ ବିଧିସମ୍ମତ ଓ ନ୍ୟାୟସିଦ୍ଧ ହୋଇଉଠିବ, ସେଠି ଶୋଷକ ଓ ଶୋଷିତ, ଲୁଣ୍ଠିତ ଲୁଣ୍ଠନକାରୀ ଉଭୟ ଭାବିବେ ସେମାନେ ତାଙ୍କର ସ୍ୱ-ଧର୍ମ ପାଳନ କରୁଛନ୍ତି । ସମସ୍ତ ସମାଜ ଦୃଷ୍ଟିରେ ସେଇ ବ୍ୟବସ୍ଥା ସଦାପବିତ୍ର ଓ ଶାଶ୍ୱତ ବୋଲି ମନେ ହେବ ।

ସାଧାରଣତଃ ବେଦର ଦୁହାଇ ଦେଇ ପ୍ରାଚୀନ ଚିକିତ୍ସକ ଓ ତାଙ୍କର କାର୍ଯ୍ୟକୁ ନିନ୍ଦିତ କରାଯାଇଥାଏ । ନିୟାମକମାନେ ବେଦକୁ କେବଳ ସ୍ୱୀକାର କରନ୍ତି ନାହିଁ, ଦାବୀ କରନ୍ତି ଯେ ତାଙ୍କର ସମସ୍ତ ବିଷୟ ବେଦାନୁମୋଦିତ । ବେଦର ଅର୍ଥ ଜ୍ଞାନ । ସବୁ ନିୟାମକଙ୍କ

ପାଇଁ ବେଦ ହେଲା ସକଳ ଜ୍ଞାନ, ସମସ୍ତ ବିଧାନର ଏକମାତ୍ର ଉତ୍ସ । ଅଥଚ, ଚିକିତ୍ସା ଓ ଚିକିତ୍ସକଙ୍କ ସମ୍ବନ୍ଧରେ ନିୟାମକଙ୍କର ଉପରୋକ୍ତ ନୀତିର ଲେଶମାତ୍ର ସୂଚନା ଋଗ୍‌ବେଦରେ ନାହିଁ । ସେଥିରେ ଚିକିତ୍ସକଙ୍କ ପ୍ରତି କୌଣସି ପ୍ରକାର ଘୃଣାଭାବ, ନିନ୍ଦା ବା ବିଦ୍ୱେଷର ପ୍ରଶ୍ନ ନାହିଁ । ଓଲଟି, ଚିକିତ୍ସାବିଦ୍ୟା ଓ ଚିକିତ୍ସକଙ୍କ ପ୍ରତି ବିଶେଷ ସମ୍ମାନ ରହିଛି । ସେମାନଙ୍କର ଉଚ୍ଚ ପ୍ରଶଂସାରେ ବେଦ ଉ ଚ୍ଛ୍ୱସିତ । (ଋଗ୍‌ବେଦ ୧୦.୯୭) ତା କହେ, ''ହେ ଦୀପ୍ତିଶାଳୀ ଔଷଧଗଣ !ତମେମାନେ ଜନନୀ ସ୍ୱରୂପା । ତମ ସମ୍ମୁଖରେ ମୁଁ ସଂକଳ୍ପ କରୁଛି , ମୁଁ ଚିକିତ୍ସକ ବ୍ୟକ୍ତିଙ୍କୁ ଗୋ, ଅଶ୍ୱ, ବସ୍ତ୍ର, ଏପରିକି ଆପଣାକୁ ଅର୍ପଣ କରିବାକୁ ପ୍ରସ୍ତୁତ । ଯେପରି ରାଜାମାନେ ଯୁଦ୍ଧରେ ଏକତ୍ର ହୁଅନ୍ତି, ସେହିପରି ଯେଉଁ ଲୋକ ନିକଟରେ ଓଷଧିଗଣ ମିଳିତ ହୁଅନ୍ତି, ଅର୍ଥାତ୍ ଯିଏ ଔଷଧ ଜାଣେ ସେ ବୁଦ୍ଧିମାନ, ଭିଷକ୍ ବ୍ୟକ୍ତିଙ୍କୁ ଚିକିତ୍ସକ କହନ୍ତି, ସେ ରୋଗକୁ ଧ୍ୱଂସ କରେ । (ଋ ୧୦.୯୭. ୪/୬)

ଏହା ଦର୍ଶାଇଦିଏ ଯେ ଋଗ୍‌ବେଦରେ ଚିକିତ୍ସକ ସମ୍ମାନିତ, ଯାହା ପାଖରେ ଲୋକ ନିଜକୁ ଅର୍ପଣ କରେ ।

ଯେଉଁ ଦେବତାଗଣ ଚିକିତ୍ସା-ବିଜ୍ଞାନରେ ଅଭିଜ୍ଞ ଓ ପାରଦର୍ଶୀ, ଋଗ୍‌ବେଦ ସେମାନଙ୍କ ଗୌରବଗାନ କରିଛି । ତାହା କହେ, ''ହେ ଅଭୀଷ୍ଟବର୍ଷୀ ରୁଦ୍ର .....ତୁମେ ଆମର ପୁତ୍ରଙ୍କୁ ଓଷଧିଦ୍ୱାରା ପରିପୁଷ୍ଟ କର । ମୁଁ ଶୁଣିଛି, ତୁମେ ଭିଷକ୍‌ଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ।'' (ଋ୨.୩.୩.୪) ତାଙ୍କର ହସ୍ତର ପ୍ରଶଂସା କରି ପୁଣି କୁହାଯାଇଛି, '' ହେ ରୁଦ୍ର, ତୁମର ସେ ସୁଖପ୍ରଦ ହସ୍ତ କାହିଁ ? ଯେଉଁ ହସ୍ତରେ ତୁମେ ଔଷଧ ପ୍ରସ୍ତୁତ କରି ସମସ୍ତଙ୍କୁ ସୁଖୀ କର ।'' (ଋ ୨.୩.୩.୭) ପୁଣି ସେହି ରୁଦ୍ରଙ୍କୁ ବିଶ୍ୱର ସମସ୍ତ ଓଷଧିର ଅଧିପତି ଭାବେ ସ୍ତବ କରାଯାଇଛି । (ଋ ୫.୪.୭.୧୧) ରୁଦ୍ରଙ୍କ ପଛକୁ ସେମାନଙ୍କର ପ୍ରଶଂସା । ପୃଥିବୀର ରୁଗ୍‌ଣ ଲୋକଙ୍କୁ ସେ ଆରୋଗ୍ୟ କରନ୍ତି (ଋ ୮.୭.୯୨) ତାଙ୍କ ସହିତ ବରୁଣଙ୍କ ପ୍ରଶଂସା, ଯେହେତୁ ତାହାଙ୍କର ଶହ ଶହ ଓଷଧି ରହିଛି । (ଋ ୧.୨୪.୯) ବରୁଣଙ୍କର ସହ ମିତ୍ର ଓ ସୋମ ଆତୁରଙ୍କୁ ଔଷଧ ଦେବା ଦିଗରୁ ସଂପୃକ୍ତ । (ଋ ୮.୭୨.୧୧) ସେମିତି ମରୁତଙ୍କ ଗୁଣଗାନ କରି ତାଙ୍କୁ ଡକାଯାଇଛି — '' ଆମ ଭିତରେ ଯେଉଁମାନେ ରୋଗଗ୍ରସ୍ତ, ତାଙ୍କୁ ରୋଗମୁକ୍ତ କର । ତାଙ୍କର ଆରୋଗ୍ୟ ଲାଗି ପର୍ବତ ଓ ସାଗର, ଯେଉଁଠି ଔଷଧ ରହିଛି, ତାକୁ ଆହରଣ କର ।'' (ଋ ୮.୨୦.୨୦./୬) ଔଷଧ ଦିଗରୁ ଜଳ ମଧ୍ୟ ଉଚ୍ଚ ପ୍ରଶଂସିତ । କୁହାଯାଇଛି ''ଜଳରେ ଅମୃତ ଅଛି, ଜଳରେ ଔଷଧ ଅଛି,. ଜଳ ଭିତରେ ସବୁ ପ୍ରକାର ଭେଷଜ ଅଛି । ସେ ଜଳ ଆମ ଶରୀର ପାଇଁ ରୋଗନିବାରକ । ଔଷଧ ପରିପୁଷ୍ଟ କର ଯେମିତି ବହୁକାଳ ସୂର୍ଯ୍ୟଙ୍କୁ ଦେଖିପାରୁ ।'' (ଋ ୧.୨୩.୧୯/୨୦) ''ଜଳହିଁ ଔଷଧ-ସ୍ୱରୂପ । ଜଳହିଁ ରୋଗଶାନ୍ତିର କାରଣ । ସେ ଜଳ ଯେପରି ତମର ଔଷଧ ବିଧାନ କରେ ।'' (ଋ ୧୩୭.୬) ସେମିତି, ''ହେ ବାୟୁ, ତମେ ଏକ ଦିଗରୁ ଔଷଧ ବୋହିଆଣ । ଯାହା ଅହିତକର, ବୋହି ନେଇଯାଅ. ଯେହେତୁ ଦେବତାଙ୍କ ଦୂତ, ସଂସାରରେ ଔଷଧ-ସ୍ୱରୂପ ।'' (ଋ ୧୦.୩୭.୩) ଏହିପରି ଉକ୍ତିର ଅଭାବ ନାହିଁ ।

ଏହି ହେଲା ଋଗ୍‌ବେଦରେ ଭେଷଜ ଓ ଚିକିତ୍ସକଙ୍କ ପ୍ରତି ଦୃଷ୍ଟିକୋଣ । ଦେବ, ମାନବ ବା ଜଡ଼ପଦାର୍ଥ, ଯିଏ ହୁଅନ୍ତୁ ନା କାହିଁକି, ଯାହାଙ୍କଠାରେ ରୋଗ ଆରୋଗ୍ୟ ଶକ୍ତି ଓ ଗୁଣ ରହିଛି, ସେ ସମସ୍ତେ ପ୍ରଶଂସିତ । ତାଙ୍କ ଭିତରୁ ଅନେକ ପୂଜିତ, ଆଦୃତ ଓ ସମ୍ମାନିତ । ଆଉ ଠିକ୍ ସେହି ପରମ୍ପରା ଭିତରୁ ଆୟୁର୍ବେଦ, ଚରକ ଓ ସୁଶ୍ରୁତର ଉଦ୍ଭବ । ଆୟୁର୍ବେଦର ସେଇ ସ୍ୱତଃସ୍ଫୂର୍ତ୍ତ ଆଦିମ ଦୃଷ୍ଟିକୋଣ ଏବଂ ବିଚାରଯୁକ୍ତ ବିଜ୍ଞାନ ଭାବରେ ଆୟୁର୍ବେଦର ବିକାଶ ମଧ୍ୟରେ ନିଶ୍ଚୟ ବହୁକାଳ ଅତିବାହିତ ହୋଇଛି । ସମାଜରେ ଗୁଣାତ୍ମକ ପରିବର୍ତ୍ତନ ଆସିଛି । ଶ୍ରେଣୀ-ପ୍ରାଧାନ୍ୟ ପ୍ରକାଶ ପାଇଛି । ଆଗର ଋଗ୍‌ବେଦର ସାମୂହିକ ଜୀବନ, ତାର ଚରିତ୍ର ଓ ଦୃଷ୍ଟିକୋଣ ସ୍ଥାନରେ ପ୍ରସାର ଲଭିଛି ବ୍ୟକ୍ତିଗତ ଜୀବନର ଆକାଂକ୍ଷା; ସେହି ସମାଜର ବିଧାନ ଓ ତାର ଆଭିମୁଖ୍ୟ । ଉତ୍ପାଦନ ପ୍ରଣାଳୀର ପରିବର୍ତ୍ତନ ସହ ଜ୍ଞାନର ବିକାଶ ସହିତ ପ୍ରକାଶ ପାଇଛି ବ୍ରାହ୍ମଣ, ପୁରୋହିତ ଓ ଶାସକ ଶ୍ରେଣୀର ଆଧିପତ୍ୟ ।

ଫଳରେ ଆସିଛି ସମଷ୍ଟି ଭିତରେ ବ୍ୟଷ୍ଟିର ଆଧିପତ୍ୟ, ପ୍ରକୃତି ବିରୋଧରେ ସାମୂହିକ ସଂଗ୍ରାମ ଭିତରେ ମଣିଷର ମଣିଷ ବିରୋଧରେ ସ୍ୱାର୍ଥର ସଂଗ୍ରାମ । ତଦନୁରୂପ ଧାରଣା, ଯାହା ଆଗେ କେବେ ଦେଖା ନ ଥିଲା , ତାହା ଏବେ ଏକ ବାସ୍ତବ ସମସ୍ୟା ହୋଇ ଉଠିଛି । ଏବେ ମଣିଷକୁ ଆୟତ୍ତ ଅଧୀନସ୍ଥ କରି ରଖିବା , କେତେକଙ୍କ ପକ୍ଷରେ ଏକ ଜରୁରୀ ସମସ୍ୟା ହୋଇ ଉଠିଛି, ତାର ଅପରିହାର୍ଯ୍ୟ ଉପାୟ ହେଉଛି ବ୍ରାହ୍ମଣ ପୁରୋହିତ ଓ ଶାସକ ଶ୍ରେଣୀଙ୍କର ଦୃଷ୍ଟିକୋଣ । ସମାଜର ସମସ୍ତ ବିଚାର, ସକଳ ବିଧାନ ଏବଂ ସମସ୍ତ ନୀତି ନିୟମ ଏହି ଦୃଷ୍ଟିକୋଣ ଦ୍ୱାରା ନିୟନ୍ତ୍ରିତ । ଚିକିତ୍ସା ଓ ଚିକିତ୍ସକଙ୍କ କ୍ଷେତ୍ରରେ ତାର ବ୍ୟତିକ୍ରମ ନାହିଁ । ସେମାନେ ମଧ୍ୟ ସେଇ ବିଧାନ ଓ ଦର୍ଶନ ଦ୍ୱାରା ପରିଚାଳିତ । କିନ୍ତୁ ଚିକିତ୍ସବିଦ୍ୟା, ମୂଳତଃ ଏକ ବିଜ୍ଞନ ।ସେହି ସାମାଜିକ ବିଧାନ ଓ ଦୃଷ୍ଟିକୋଣ ବିଜ୍ଞାନର ଅନ୍ତରାୟ । ତେଣୁ ଏକ ବିଜ୍ଞାନ ଭାବେ ଆୟୁର୍ବେଦକୁ ବଞ୍ଚିବାକୁ ଓ ବଢ଼ିବାକୁ ହେଲେ ତାକୁ ସେହି ବିରୋଧିତାର ସମ୍ମୁଖୀନ ହେବାକୁଇ ହେବ । ତାର ତାଡନାରେ କେତେ ଚିକିତ୍ସକ ତା ଆଗରେ ନତମସ୍ତକ ହୋଇଛନ୍ତି , ନିଜର ବିଜ୍ଞାନକୁ ପରିହାର କରିଛନ୍ତି , କେତେକ ନିଜର ନୀତି ଓ ବିଜ୍ଞାନ ପ୍ରତି ଅଟଳ ରହିଛନ୍ତି । ଆଉ କେତେ ଉପରକୁ ଆତ୍ମସମର୍ପଣର ଛଳନା କରି ନିଜର ବିଚାର ରକ୍ଷାର ଉପାୟ ଗ୍ରହଣ କରିଛନ୍ତି ।

ସେହି ନିୟାମକମାନଙ୍କ ମତ ଓ ବିଧାନ କିପରି ଭେଷଜ କାର୍ଯ୍ୟକୁ ନିନ୍ଦିତ ଓ ଭିଷକ୍‌ମାନଙ୍କୁ ଚୋର ଚାଣ୍ଡାଳଙ୍କ ସହ ଘୃଣିତ ଓ ଅସ୍ପୃଶ୍ୟ କରି ରଖେ, ମଣିଷର ଜୀବନ ଯାହାଙ୍କ ଉପରେ ନିର୍ଭର କରେ , ସେମାନଙ୍କୁ ସମାଜରେ ଅବାଞ୍ଛିତ ଜାରଜ ସନ୍ତାନ କରେ, ତାହା ଆମେ ଆଗରୁ ଆଲୋଚନା କରିଛେ ।ମୋଟ ଉପରେ , ମଣିଷର ଜୀବନରକ୍ଷା ଲାଗି ସମାଜରେ ଯେଉଁମାନଙ୍କ ଉପସ୍ଥିତି ଅପରିହାର୍ଯ୍ୟ, ସେମାନେ ହେଲେ ଉପେକ୍ଷିତ । ଯେଉଁମାନେ ସ୍ୱାଗତଯୋଗ୍ୟ ,ସେମାନେ ହେଲେ ସବୁଠୁ ଅଭିଶପ୍ତ ।ଅତଏବ ବର୍ଣ୍ଣାଶ୍ରମ ମଣିଷର ବିପରୀତରେ ପରିଣତ କରିଦିଏ ।

ଯେଉଁ ବର୍ଣ୍ଣାଶ୍ରମ ଦୃଷ୍ଟି ଦ୍ୱାରା ଜଗନ୍ନାଥ ତାଙ୍କର ବିପରୀତରେ ପରିଣତ, ଠିକ୍ ତାହାରି ଦ୍ୱାରା ଆୟୁର୍ବେଦ ପ୍ରତି ସେହି ଆକ୍ରମଣ । କାରଣ , ଜଗନ୍ନାଥ ଓ ଆୟୁର୍ବେଦ

ଏକଇ ମୂଳରୁ ଉଦ୍ଭବ । କେବଳ ସମାନ ମୂଳରୁ ଉଦ୍ଭବ ନୁହନ୍ତି, ସେମାନେ ସମାନ ଭାବ ଧରି ସମଯାତ୍ରା ପଥରେ ଏକଇ ଲକ୍ଷ୍ୟରେ ଚାଲିବାଯୋଗୁଁ ସେଇ ସମାନ ବିରୋଧିତାର ସମ୍ମୁଖୀନ । ବିଭିନ୍ନ ଧର୍ମଧାରଣା ଦ୍ୱାରା ଜଗନ୍ନାଥ-ଭାବ ଯେପରି ଆବୃତ, ବିକୃତ ଓ ବିପନ୍ନ, ସେହିପରି ନିଷ୍ପ୍ରଭ, ବିକାଶ ଓ ଲକ୍ଷ୍ୟହୀନ ହୋଇଛି ଆୟୁର୍ବେଦ, — ସେହି କୁସଂସ୍କାର ଓ ଅନ୍ଧବିଶ୍ୱାସ ଧାରଣା ଦ୍ୱାରା ।

## ମହତ ବିଦ୍ୟା ଲୋଡେ ମହତ ମଣିଷ

ବିଶ୍ୱରେ ସର୍ବମହତ୍ ବିଦ୍ୟା ଆୟୁର୍ବେଦ, ମଣିଷର ଜୀବନ ରକ୍ଷା ଭଳି ସର୍ବ ମହାନ କାର୍ଯ୍ୟ ଦିଗରେ ଉଦ୍ଦିଷ୍ଟ । ତାର ସେହି ଉଦ୍ଦେଶ୍ୟ ପୂରଣ ଲାଗି ଲୋଡେ ସେହିପରି ସର୍ବଗୁଣସମ୍ପନ୍ନ ବ୍ୟକ୍ତିଙ୍କୁ ।ଲୋକ କେବଳ ଅନୁରୂପ ଗୁଣ, ଶକ୍ତି ଓ ପ୍ରବୃତ୍ତି ଦ୍ୱାରା ସେହି ମହାନ୍ ଲକ୍ଷ୍ୟ ସମ୍ପାଦନ କରିବାକୁ ସମର୍ଥ ହୋଇ ନ ପାରେ ।

ତେଣୁ ଚିକିତ୍ସକର ମନ ସ୍ୱଭାବ, ଶରୀର କିପରି ହେବା ଉଚିତ, ସେହି ବିଦ୍ୟା ଅଧ୍ୟୟନ ଲାଗି ଆଗ୍ରହୀ ଛାତ୍ରର ଯୋଗ୍ୟତା କିପରି ସ୍ଥିର କରିବାକୁ ହେବ, ତାର ଉଲ୍ଲେଖ ରହିଛି 'ଚରକ ସଂହିତା 'ରେ । ତାହା କହେ ଚିକିତ୍ସକ ହେବ ପ୍ରଶାନ୍ତ, ସାଧୁ, ପ୍ରଶସ୍ତ ଚରିତ୍ର, ଛୋଟ ନୀଚକାର୍ଯ୍ୟ କରିବାରେ ଅସମର୍ଥ । ସଳଖ ମୁଖ, ଶାଣିତ ଚକ୍ଷୁ, ନାକ ସହିତ କୃଶକାୟ, ନିର୍ମଳ ଲୋହିତଜିହ୍ୱା, ନିଖୁଣ ଦନ୍ତ, କର୍ଣ୍ଣ ସହ ସୁସ୍ପଷ୍ଟ ସ୍ୱର (ଅସ୍ପଷ୍ଟ ବା ଅନୁନାସିକ ନୁହେଁ), ଧୈର୍ଯ୍ୟଶୀଳ, ଅହମିକାହୀନ, ବୁଦ୍ଧିମାନ, ବିଚାରଜ୍ଞାନ ଓ ଉତ୍ତମ ସ୍ମରଣଶକ୍ତିଯୁକ୍ତ (ବିତର୍କ ସ୍ମୃତି ସମ୍ପନ୍ନ) ଉଦାରମନା, ଚିକିତ୍ସକ ପରିବାରରେ ଜନ୍ମ ବା ସ୍ୱାଭାବିକ ପ୍ରବୃତ୍ତି ହେତୁ ଚିକିତ୍ସା ଶିକ୍ଷାଲାଗି ଆଗ୍ରହୀ । ଅଙ୍ଗପ୍ରତ୍ୟଙ୍ଗ ଦୋଷଶୂନ୍ୟ ଓ ଅବିକଳାଙ୍ଗ , ଭଦ୍ର, ବିନମ୍ର ଓ ମାର୍ଜିତ ସ୍ୱଭାବ, ପଦାର୍ଥ ପ୍ରକୃତି ସମ୍ବନ୍ଧରେ ଚିନ୍ତକ (ଅର୍ଥତତ୍ତ୍ୱ ଭାବୁକ ) ରାଗ କ୍ରୋଧଶୂନ୍ୟ, ନିଶାସକ୍ତିହୀନ, ଉତ୍ତମ ଆଚରଣଯୁକ୍ତ, ପରିଷ୍କାର ପରିଚ୍ଛନ୍ନ, ଉତ୍ତମ ସ୍ୱଭାବ ଏବଂ ସ୍ନେହ ଶ୍ରଦ୍ଧାଶୀଳ,ଦକ୍ଷ ଓ ବିନୟୀ ହୋଇଥିବ । ( ଶୀଳ-ଶୌଚ ଆଚର, ଅନୁରାଗ ଦାକ୍ଷିଣାସ୍ୟ ପ୍ରଦକ୍ଷିଣ ଉପପାନ ) ସବୁ ପ୍ରାଣୀଙ୍କର ମଙ୍ଗଳକାର୍ଯ୍ୟ-ପରାୟଣ, ଲୋଭ, ଆଳସ୍ୟଶୂନ୍ୟ, (ଅଲୁବ୍ଧଂ, ଅନାଳସ୍ୟଂ ସର୍ବଭୂତହିତୈଷିଣଂ ) ଗୁରୁଙ୍କ ପ୍ରତି ପୂର୍ଣ୍ଣ ଆନୁଗତ୍ୟ , ଆସକ୍ତି ଓ ଅନୁରାଗ ଯୁକ୍ତ । (ଚ ୩.୮.୮)

ଏଥି ସହିତ ଶଲ୍ୟ-ଚିକିତ୍ସା ପ୍ରାପ୍ତିଲାଗି ଆଉ ଟିକିଏ ବିଶେଷ ବିଚାର ରହିଛି । ତାହା ଚିକିତ୍ସକଙ୍କ ସମ୍ବନ୍ଧରେ ପୂର୍ଣ୍ଣାଙ୍ଗ ଧାରଣ ପ୍ରଦାନ କରିଥାଏ । ଆନୁଷ୍ଠାନିକ ଭାବେ ଜଣେ ଚିକିତ୍ସାବୃତ୍ତି ଗ୍ରହଣ କଲା ପୂର୍ବରୁ ସେ କିପରି ହେବା ଉଚିତ ସେ ସମ୍ପର୍କରେ ସୁଶ୍ରୁତ ସଂହିତାର ନିର୍ଦ୍ଦେଶ ହେଲା ,—ସେ ତାର ସ୍ୱଭାବ , ବୃତ୍ତି ଓ ଚାଲିଚଳନରେ ପରିଷ୍କାର -ପରିଚ୍ଛନ୍ନ ହୋଇଥିବ । ନଖ ବଢାଇବାକୁ ଦେବ ନାହିଁ , ଭଲ କରି ଖିଅର ହେଉଥିବ । ସଫା ଧଳା ପୋଷାକ ପିନ୍ଧୁଥିବ, ଜୋତା ମାଡୁଥିବ,ହାତରେ ବାଡି ଓ ଛତା ଥିବ । ସ୍ଥିର ସବୁପ୍ରାଣୀଙ୍କ ପ୍ରତି ବନ୍ଧୁଭାବ ପୋଷଣ କରି ଶାନ୍ତି , କୋମଳ,

ଦୟାର୍ଦ୍ର ଦୃଷ୍ଟି ପକାଇ ଚାଲୁଥିବ । ସମସ୍ତଙ୍କୁ ସାହାଯ୍ୟ ଦେବାରେ ପ୍ରସ୍ତୁତ ଥିବ । କଥାବାର୍ତ୍ତାର, ବ୍ୟବହାରରେ ଖୋଲା ଓ ବନ୍ଧୁତ୍ୱପୂର୍ଣ୍ଣ ହେବ । ନିଜର ବିଚାରଜ୍ଞାନ ଓ ବୌଦ୍ଧିକ ଶକ୍ତିକୁ କୌଣସି ପ୍ରକାରେ ଇତସ୍ତତଃ ଓ ବ୍ୟାହତ ହେବାକୁ କେବେହେଲେ ଦେବ ନାହିଁ । ତାକୁ ସମ୍ପୂର୍ଣ୍ଣ ଆୟତ୍ତରେ ରଖିଥିବ ! (ସୂ ୧.୧୦.୨)

ଏହା ଚିକିତ୍ସକ ହେବାର ଯୋଗ୍ୟତାକୁ ପୂର୍ଣ୍ଣାଙ୍ଗ କରେ । ଏହିଭଳି ଚରିତ୍ରର ଲୋକେ, ଯେଉଁମାନେ ଚିକିତ୍ସକ ହୁଅନ୍ତି, ସମାଜର ନିୟାମକଙ୍କ ଦୃଷ୍ଟିରେ ସେମାନେ ହେଲେ ଘୃଣ୍ୟ,ଅନାଦୃତ ।

ସେହି ଚିକିତ୍ସକଙ୍କ ପାଇଁ ତାଙ୍କର ଲକ୍ଷ୍ୟ ଓ କାର୍ଯ୍ୟର ଆଭିମୁଖ୍ୟ ମଧ୍ୟ ନିର୍ଦ୍ଦିଷ୍ଟ । ସେ ସମ୍ବନ୍ଧରେ ଚରକଶାସ୍ତ୍ରର ନିର୍ଦ୍ଦେଶ ହେଲା—

''ଚିକିତ୍ସକଙ୍କ ମଧ୍ୟରେ ଯେଉଁ ଲୋକ କୌଣସି ଅର୍ଥଲାଭ ବା କୌଣସି ପ୍ରକାର ଭୋଗ ବାସନା ଚରିତାର୍ଥ କରିବା ଲାଗି ଚିକିତ୍ସା ବୃତ୍ତି କରେ ନାହିଁ,. କେବଳ ମାତ୍ର ପ୍ରାଣୀମାନଙ୍କ ପ୍ରତି ଦୟା ଓ ବେଦନାଦ୍ୱାରା ଅନୁପ୍ରାଣିତ ହୋଇ ତାହା କରେ, ସିଏ ହିଁ ସମସ୍ତଙ୍କୁ ଅତିକ୍ରମ କରିଯାଏ ।''

ଯେଉଁମାନେ ଅନ୍ୟ ଯେ କୌଣସି ପଣ୍ୟ ଭଳି ଚିକିତ୍ସା-ନୈପୁଣ୍ୟକୁ ବିକ୍ରୟ କରିବାକୁ ଚାହାନ୍ତି, ସେମାନେ ପ୍ରକୃତ ସୁବର୍ଣ୍ଣର ଗଚ୍ଛିତ ଭଣ୍ଡାରକୁ ଛାଡ଼ି ମାଟିର ଗଦା ଆଡ଼େ ଧାଇଁବାରେ ଲାଗିଥାଆନ୍ତି । ''

''ଭୟାନକ ରୋଗର କବଳରେ ପଡ଼ି ଯେଉଁମାନେ ମୃତ୍ୟୁ ମୁହଁକୁ ଟଣା ହେଉଥାନ୍ତି, ତାଙ୍କର ସେଇ ମୃତ୍ୟୁ - ଫାଶର ଡୋରିକୁ ଛିନ୍ନ କରି ଯେଉଁ ଚିକିତ୍ସକ ସେମାନଙ୍କୁ ପୂର୍ଣ୍ଣ ଜୀବନ ଦାନକରେ, ତା' ତୁଳନାରେ ମାନବ ଜୀବନ ପ୍ରତି ଅନ୍ୟ କେହି ଅଧିକ ନୈତିକ ଓ ଭୌତିକ ଆଶୀର୍ବାଦ ଅର୍ପଣ କରି ପାରେ ନା' ।''

''ସମସ୍ତଙ୍କ ଭିତରେ ସର୍ବମହତ୍ ଓ ସର୍ବଶ୍ରେଷ୍ଠ କର୍ତ୍ତବ୍ୟ ଭାବରେ ମାନବ ପ୍ରତି ଦୟା, କରୁଣା, ଅନୁକମ୍ପାର ସହ ଯିଏ ଆରୋଗ୍ୟ କାର୍ଯ୍ୟ ସମ୍ପାଦନ କରେ, ସେ ପ୍ରକୃତରେ ନିଜର ଲକ୍ଷ୍ୟ ପୂରଣ କରେ । ତଦ୍ଦ୍ୱାରା ସର୍ବୋଚ୍ଚ ଆନନ୍ଦ ଲାଭର ଅଧିକାର ପ୍ରାପ୍ତ ହୁଏ ।'' (ଚରକ ୫.୫୮-୬୨)

ଅତଏବ ଚିକିତ୍ସାଜ୍ଞାନ, ଯାହା ସମସ୍ତ ମାନବ ସୃଷ୍ଟିର ସର୍ବୋଚ୍ଚ ଅବଦାନ ଦ୍ୱାରା ସମୃଦ୍ଧ,— ସେହି ସର୍ବଶ୍ରେଷ୍ଠ ଜ୍ଞାନକୁ ପଣ୍ୟରେ ପରିଣତ କରିବା ଅର୍ଥ, ମାନବିକତାର ମର୍ମକୁ ସାଧାରଣ ବିକ୍ରି- ଖର୍ଦ୍ଦିରେ ରୂପାନ୍ତରିତ କରିବା । ଯେଉଁଠି ମାନବିକତାର ମର୍ମ ତାର ବିପରୀତ ଭାବ — ପଣ୍ୟର ରୂପ ନିଏ, ସେଠି ଯଥେଚ୍ଛା ମୂଲ୍ୟ ଦ୍ୱାରା ଯଥାସାଧ୍ୟ ଅର୍ଥ ଆହରଣ ହୁଏ ଚିକିତ୍ସକଙ୍କର ଏକମାତ୍ର ଲକ୍ଷ୍ୟ । ଆଉ ସେଇଥିରେ ହିଁ ଚିକିତ୍ସକ ତାର ଆନନ୍ଦ ପାଏ । ସେ ତା ପାଏ , ଚିକିତ୍ସକ ନିଜର ମହତ୍ ଅଭିବ୍ୟକ୍ତିକୁ ବଳି ଦେଇ ନିଜର ମାନବତାକୁ ହତ୍ୟା କରିବାରେ । ଅର୍ଥର ସେଇ ଲାଳସା ତାକୁ ଏତେଦୂର ଅମଣିଷ କରିଦିଏ

ଯେ, କୌଣସି ନିନ୍ଦା, ଭର୍ତ୍ସନା, ଜଘନ୍ୟ ଗାଳି କି ଅପମାନ, ଏପରିକି ଶାରୀରିକ ଆଘାତ ମଧ୍ୟ ତାକୁ ବାଧେ ନାହିଁ । ତାର ଦୃଷ୍ଟାନ୍ତ ଆମର ଅର୍ଥସର୍ବସ୍ୱ ସମାଜରେ ବିରଳ ନୁହେଁ ।

ଅଥଚ, ଆୟୁର୍ବେଦ ଆରମ୍ଭରୁ ଯୁଗ ଯୁଗ ଧରି ଠିକ୍ ସେଇ ବିଷୟଟି ପ୍ରତି ଚିକିତ୍ସକଙ୍କୁ ସଦା ସାବଧାନ କରି ଆସିଛି । କେବଳ ରୋଗର ଆରୋଗ୍ୟ ତାର କାମ୍ୟ ନୁହେଁ, ମାନବିକତାର ଚରକ ଉପଲବ୍ଧି ହେଉଛି ତାର ଲକ୍ଷ୍ୟ । ଅନ୍ୟକୁ ଆନନ୍ଦ ପ୍ରଦାନ କରିବା ବିନା ତା ପକ୍ଷରେ ଆନନ୍ଦ ଲାଭର ଅଧିକାର ନାହିଁ । ଅନ୍ୟ ଜୀବନରେ ଆନନ୍ଦ ସୃଷ୍ଟି କରିବାରେହିଁ କେବଳ ସେ ନିଜ ଜୀବନକୁ ଆନନ୍ଦମୟ କରିପାରେ ।

ସେ ଦିଗରେ ତାର ନିଶ୍ଚୟତା ଦେଇଥାଏ ସେଇ ଜଗନ୍ନାଥ-ଭାବ, ଅନ୍ୟକୁ ଆନନ୍ଦ ଦେବାରେ ନିଜର ଆନନ୍ଦପ୍ରାପ୍ତି, ଅନ୍ୟକୁ ମାନବିକତାର ଆସନରେ ଅଭିଷିକ୍ତ କରିବାରେ ନିଜର ଅନ୍ତରରେ ମାନବିକତାର ପରିତୃପ୍ତି, — ମାନବିକତାର ସେଇ ଅଭିନ୍ନ ବିକାଶ ଜଗନ୍ନାଥ-ଭାବର ମୂଳ ମର୍ମ । ଜଗନ୍ନାଥ ସମାଜର ଆବିର୍ଭାବରେ କେବଳ ତାହା ରୂପ ନିଏ ଓ ପଲ୍ଲବିତ ହୋଇପାରେ ।

ବ୍ୟାଧି ମୋଚନ ଚିକିତ୍ସକର କାମ୍ୟ ହେଲେ ବି ମାନବିକତାର ଉପଲବ୍ଧି ଓ ପ୍ରସାର ଯେପରି ତାର ଲକ୍ଷ୍ୟ, ସେହିପରି ଆତ୍ମତୃପ୍ତି ଜଗନ୍ନାଥ ଆରାଧନାର କାମ୍ୟ ହେଲେ ବି ଜଗନ୍ନାଥ-ମର୍ମର ସେହି ଉପଲବ୍ଧି, ତାର ପ୍ରସାର ଆଉ ପ୍ରତିଷ୍ଠା ବିନା ମଣିଷର ମାନବିକ ଲକ୍ଷ୍ୟ-ସାଧନ କଦାପି ସମ୍ଭବ ନୁହେଁ ।

ବ୍ୟାଧି-ମୋଚନରେ ସ୍ୱାର୍ଥସିଦ୍ଧି ଚିକିତ୍ସକଙ୍କର ଏକମାତ୍ର କାମ୍ୟ ହେଲେ, ଶେଷରେ ମନୁଷ୍ୟତା ଯେପରି ତାଠାରୁ ଅପସରିଯାଏ, ନିଜ ପାଇଁ ଜଗନ୍ନାଥଙ୍କ ଆରାଧନାରେ ସ୍ୱାର୍ଥସିଦ୍ଧି ଏକମାତ୍ର କାମ୍ୟ ହେବାରେ ମଣିଷ ଜଗନ୍ନାଥ-ଭାବର ପ୍ରକୃତ ମର୍ମକୁ ସେହିପରି ପରିହାର କରେ । ଶେଷରେ ଆତ୍ମସୁଖ ଆତ୍ମସ୍ୱାର୍ଥ ସମୂହସୁଖର ପ୍ରତିପକ୍ଷ ଭାବେ ଦେଖା ଦିଏ ।

ଅତଏବ ମାନବିକବାଦ, ଜଗନ୍ନାଥ ଭାବର ଯେପରି ଅନ୍ତର୍ନିହିତ ସ୍ୱଭାବ, ଆୟୁର୍ବେଦର ମର୍ମ, ସେହିପରି ତାର ସହଜାତ ଧର୍ମ । ସିଏ ଦୁହେଁ ପରସ୍ପର ସହିତ ଏପରି ଛନ୍ଦାଛନ୍ଦି ଯେ, ଗୋଟିକର ଅଭାବରେ ସେଇ ମାନବିକତାବାଦ କେବଳ କ୍ଷୀଣ ଓ ଖଣ୍ଡିତ ନୁହେଁ, ତାର ଅସ୍ତିତ୍ୱ ମଧ୍ୟ ବିପନ୍ନ । ଆୟୁର୍ବେଦ-ବିଜ୍ଞାନ ବିନା ମଣିଷ ଯେତେ ଐଶ୍ୱର୍ଯ୍ୟଶାଳୀ ହେଲେ ବି ତାର ସମସ୍ତ ସୁଖ ବିଭବ ବୃଥା, ଅର୍ଥହୀନ ତାର ଜୀବନ୍ ରୋଗ, ବ୍ୟାଧୀ, ଯନ୍ତ୍ରଣାରେ ପୂର୍ଣ୍ଣ, ସାଧାରଣ ପଶୁ ଭଳି ସେ ଏକ ଅସହାୟ ପ୍ରାଣୀ । ଅନ୍ୟ ଦିଗରେ ଜଗନ୍ନାଥ ଭାବ — ସାମ୍ୟ- ମୈତ୍ରୀ- ପ୍ରୀତି ବିନା ମଣିଷ ଯେତେ ନୀରୋଗ, ସ୍ୱାସ୍ଥ୍ୟବାନ୍ ଓ ଦୀର୍ଘାୟୁ ହେଲେ ବି ତାହା ସଦା ସର୍ବଦା ଦ୍ୱନ୍ଦ୍ୱ, ଈର୍ଷା, ହିଂସା, ପ୍ରତାରଣା, ଲୁଣ୍ଠନ, ନିର୍ଯ୍ୟାତନା ପୂର୍ଣ୍ଣ, ଘୋର ଅଥଳ ସମାଜରେ ଏକ ନିରାଶ୍ରୟ ... କରି ଭାସଥାଏ । ଯେହେତୁ ... ଧର୍ମ

ଜଗନ୍ନାଥ ସହିତ ଆୟୁର୍ବେଦର ସେହି ମିଳନ ଏକ ସାଧାରଣ ଧର୍ମୀୟ ବିଧାନ ନୁହେଁ, ମଣିଷର ସେହି ଅନ୍ଧବିଶ୍ୱାସ ବିରୋଧରେ ମାନବିକ ଉତ୍କର୍ଷର ଅବ୍ୟର୍ଥ ଇଙ୍ଗିତ ।

**ବିଜ୍ଞାନ ଉପରେ ବିଶ୍ୱାସର ପ୍ରଲେପ**

ଜଗନ୍ନାଥ ଓ ଆୟୁର୍ବେଦ ଯଦି ଏକ ମୂଳରୁଜାତ, କାର୍ଯ୍ୟକ୍ଷେତ୍ରରେ ଦୁହେଁ ପରସ୍ପରଠାରୁ ଭିନ୍ନ ଏପରିକି ପରସ୍ପରର ବିପରୀତ । ଆୟୁର୍ବେଦ ଏକ ବିଜ୍ଞାନ ହେଲେ ଜଗନ୍ନାଥ ଏକ ବିଶ୍ୱାସ । ପ୍ରମାଣସିଦ୍ଧ ବିଜ୍ଞାନ ଏବଂ ପ୍ରଶ୍ନବିହୀନ ବିଶ୍ୱାସ— ଏ ଦୁହିଁଙ୍କ ଭିତରେ ମିଳନ କିପରିବା ସମ୍ଭବ ? କିନ୍ତୁ ଯେତେବେଳେ ଜଗନ୍ନାଥଠି ତାହା ସମ୍ଭବ ହୋଇଛି, ବୁଝିବାକୁ ହେବ ଦୁହିଁଙ୍କ ଭିତରେ ନିଶ୍ଚୟ ଗୋଟାଏ କିଛି ମେଳ ରହିଛି , ଏକ ସମ-ଭାବରେ ସ୍ରୋତ ପ୍ରବାହିତ ।

ସେଥିଲାଗି ହୁଏତ ଆୟୁର୍ବେଦ (ବିଜ୍ଞାନ)କୁ ଧର୍ମ, କୁସଂସ୍କାର ଆଉ ଅନ୍ଧବିଶ୍ୱାସ ନିକଟରେ ଆତ୍ମସମର୍ପଣ କରିବାକୁ ହେବ, ନାହିଁ ତ ଧର୍ମ, କୁସଂସ୍କାର, ଅନ୍ଧବିଶ୍ୱାସକୁ ବିଜ୍ଞାନର ସତ୍ୟତାର ନିଶ୍ଚୟତା ଦେବାକୁ ହେବ । ତେଣୁ ଜଗନ୍ନାଥଙ୍କ ପ୍ରତି ଅଟଳ ବିଶ୍ୱାସ ବିଜ୍ଞାନର ଅବ୍ୟର୍ଥ ନିୟମକୁ ବଳିପଡେ । ସବୁ ଆଶା ତୁଟିଲେ ମଣିଷ ଆଶ୍ରାକରେ ବିଶ୍ୱାସକୁ । ଯେଉଁ ବିଶ୍ୱାସ ଓ ଅନ୍ଧଧାରଣା ଦ୍ୱାରା ଜଗନ୍ନାଥ-ଭାବରେ ପ୍ରକୃତ ଚରିତ୍ର ଆଛନ୍ନ, ଅନ୍ୟ ଦିଗରେ ତାହାହିଁ ଆୟୁର୍ବେଦର ବୈଜ୍ଞାନିକ ରୂପକୁ ଆବୃତ ଓ ପ୍ରତ୍ୟାଖ୍ୟାନ କରେ । ଦୁହେଁ ସେଇ ଗୋଟିଏ ଧାରଣାର ଡୋରିରେ ବନ୍ଧା ।

ଯେତେହେଲେ ଆୟୁର୍ବେଦ ଏକ ବିଜ୍ଞାନ । ସେହି ବିଜ୍ଞାନ ଓ ଅନ୍ଧବିଶ୍ୱାସ ଭିତରେ ବିରୋଧିତାର ଚିତ୍ର ଆୟୁର୍ବେଦର ପ୍ରତି ଛତ୍ରେ ଛତ୍ରେ ପ୍ରତିଫଳିତ । ସେହି ନିୟାମକ ବ୍ରାହ୍ମଣ୍ୟବାଦ ତାକୁ ଏପରି ପ୍ରକ୍ଷିପ୍ତ ଓ ପରିବର୍ତ୍ତିତ କରିଛି ଯେ, ବହୁ କ୍ଷେତ୍ରରେ ବିଜ୍ଞାନ ଓ ବିଶ୍ୱାସ ମଧ୍ୟରେ ସୀମାରେଖା ଠଉରେଇବା କଷ୍ଟକର । ନିଜର କର୍ତ୍ତୃତ୍ୱ ପ୍ରତିଷ୍ଠା ଲାଗି ସେମାନେ ପାପ-ପୁଣ୍ୟର ଭୟ, ସାମାଜିକ ନୀତି ଓ ନୈତିକତାର ଦାବୀଠାରୁ ଆରମ୍ଭ କରି ପୁରାଣ, କିମ୍ବଦନ୍ତୀ ଓ ଅତିକଥାର ପ୍ରୟୋଗ ପର୍ଯ୍ୟନ୍ତ ଆଉ କିଛି ବାକି ରଖି ନାହାନ୍ତି ।

ଆଗରୁ ଦେଖିଛେ, ଚିକିତ୍ସାବିଦ୍ୟା ଶିକ୍ଷା ନୀଚ ଓ 'ଜାରଜ' ଲୋକଙ୍କ କାର୍ଯ୍ୟ ହୋଇଥିଲା । ଉଚ୍ଚବର୍ଣ୍ଣଙ୍କ ଲାଗି ତାହା ଉଦ୍ଦିଷ୍ଟ ନ ଥିଲା । କାରଣ ଯାହା ଧର୍ମ ଓ ନୈତିକତାର ବିରୁଦ୍ଧାଚରଣ କରେ, ସେପରି ବୃତ୍ତି ବ୍ରାହ୍ମଣଙ୍କ ପକ୍ଷରେ ଅନୁଚିତ । '' ଧର୍ମ ଅବିରୋଧିନଃ ବୃତ୍ତିଃ ।'' (ଚ.ଶ.୧୦୪) ପରେ ଚିକିତ୍ସାବିଦ୍ୟା ଆଦୃତ ଓ ଲାଭଦାୟକ ହେବାରେ ତାହା ବଦଳି ଯାଇଛି । କୁହାଗଲା, ''ଏହି ବିଜ୍ଞାନକୁ କେବଳ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟମାନେ ଅଧ୍ୟୟନ କରିବେ ।'' ତା'ମାନେ ଚିକିତ୍ସା ବିଦ୍ୟା ଏବେ କେବଳ ଉଚ୍ଚବର୍ଣ୍ଣଙ୍କ ଲାଗି ସଂରକ୍ଷିତ ହେଲା । ଅଥଚ, ଜାତି ସହିତ ଚିକିତ୍ସାର କୌଣସି ସମ୍ପର୍କ ନାହିଁ । ସେହି ଚରକ କହେ, ''ନ ବିଦ୍ୟା ପୂର୍ବଜନ୍ମନା'' । ବିଦ୍ୟା ଅଧ୍ୟୟନ ସହିତ ଜନ୍ମର କୌଣସି ସମ୍ପର୍କ ନାହିଁ । (ଚ.ଶ.୧.୫୧.)

ମଣିଷର ଶରୀରର ଚିକିତ୍ସା ଦୃଷ୍ଟିରୁ ଯାହାକୁ ଆୟୁର୍ବେଦ ଆଗେ ପ୍ରତ୍ୟାଖ୍ୟାନ କରିଥିଲା, ଏବେ ସେହି ସବୁ ବିଷୟ— ଆତ୍ମା, କର୍ମ, ପରଜନ୍ମ, ମୋକ୍ଷ ଆଦି ସେଠାରେ ଦେଖାଦେଲେ । ଯାହା ସବୁ ପ୍ରତ୍ୟକ୍ଷ ପର୍ଯ୍ୟବେକ୍ଷଣ ଦ୍ୱାରା ସିଦ୍ଧ ନୁହେଁ, ତାହା ଏବେ ଆୟୁର୍ବେଦରେ ପ୍ରଚାରିତ ହେଲା ।

ସେହି ଦ୍ୱନ୍ଦ୍ୱକୁ ଆଲୋଚନା କରି, '' କେତେକ ପ୍ରତ୍ୟକ୍ଷଜ୍ଞାନ ବା ପର୍ଯ୍ୟବେକ୍ଷଣ ପ୍ରତି ଗୁରୁତ୍ୱ ଦିଅନ୍ତି । ଯେହେତୁ ପରଜନ୍ମ ପ୍ରତ୍ୟକ୍ଷ ଭାବେ ଜଣାନାହିଁ କି ପର୍ଯ୍ୟବସିତ ନୁହେଁ, ତେଣୁ ସେମାନେ ତାକୁ ଅସ୍ୱୀକାର କରିବାକୁ ବାଧ୍ୟ ହୁଅନ୍ତି । ଆଉ ପୁଣି ଅଛନ୍ତି, ଯେଉଁମାନେ କି ଶାସ୍ତ୍ରପ୍ରତି ନିଜର ଆନୁଗତ୍ୟ ଯୋଗୁଁ ପରଜନ୍ମକୁ ସ୍ୱୀକାର କରନ୍ତି ।(ଚ ୧.୧୧.)

ଅତଏବ ଚରକ ସଂହିତା ସେହି ଦୁଇ ବିରୋଧୀ ମତକୁ ଅତି ସ୍ପଷ୍ଟ ଓ ସୁନ୍ଦର ଭାବେ ଉପସ୍ଥାପିତ କରେ । ତାହା ବିଜ୍ଞାନର ଭିତ୍ତି ପ୍ରତ୍ୟକ୍ଷ ଜ୍ଞାନକୁ ଅସ୍ୱୀକାର କରେ ଶାସ୍ତ୍ରର ଜ୍ଞାନଦ୍ୱାରା । ଯେହେତୁ ଶାସ୍ତ୍ର ଜ୍ଞାନ ନିର୍ଭୁଲ ଓ ଅଭ୍ରାନ୍ତ । ପରଜନ୍ମକୁ ଅସ୍ୱୀକାର କରିବା ହେଲା, ''ନାସ୍ତିକ ବୁଦ୍ଧି । ପ୍ରତ୍ୟକ୍ଷ ଦୃଷ୍ଟିର ଦୌଡ ଅତି ଅଳ୍ପଦୂର । ପ୍ରତ୍ୟେକ୍ଷ ଦୃଷ୍ଟିରେ ବାହାରେ ଯାହା ରହିଛି, ତାହା ଅତି ବ୍ୟାପକ ।'' (ପ୍ରତ୍ୟକ୍ଷମ୍ହିଁ ଅଳ୍ପଂ. ଅନଳ୍ପଂ ଅପ୍ରତ୍ୟକ୍ଷଂ ଅସ୍ତି ) । (ଚ. ୫.୧୧.୭)

ଆତ୍ମା, କର୍ମ, ପୁନର୍ଜନ୍ମ, ମୋକ୍ଷ ଏବେ ଆୟୁର୍ବେଦ-ଚିକିତ୍ସାର ଅନ୍ତର୍ଭୁକ୍ତ ହେଲା । ରୋଗୀର ଆରୋଗ୍ୟ ସହିତ ସେ ସବୁକୁ ଯୁକ୍ତ କରାଗଲା । ମଣିଷର ଅନ୍ତିମ ଶାନ୍ତି କେବଳ ଆରୋଗ୍ୟ ଦ୍ୱାରା ନୁହେଁ, ମୋକ୍ଷ ପ୍ରାପ୍ତି ଦ୍ୱାରାହିଁ ସମ୍ଭବ । ସେହି ମୋକ୍ଷର ପ୍ରତିଶବ୍ଦ-ଗୁଡ଼ିକ ହେଉଛି,—'' ବିପାକଃ, ବିରାଗଃ, ଶାନ୍ତଂ, ପରମାକ୍ଷରଂ, ଅବ୍ୟୟଂ, ଅମୃତଂ, ବ୍ରହ୍ମନିର୍ମାଣଂ ପର୍ଯ୍ୟାୟଶାନ୍ତିଃ ଉଚ୍ୟତେ । (ଚ. ୫.୭.୨୪)

ଆୟୁର୍ବେଦ ଅନୁସାରେ ଚିକିତ୍ସକ, ପଦାର୍ଥ, ପରିଚାରକ (ନର୍ସ) ଆଉ ରୋଗୀ, ଏହି ଚାରୋଟିଙ୍କୁ ନେଇ ଚିକିତ୍ସାର ବ୍ୟବସ୍ଥା । ଏମାନଙ୍କୁ ବାଦ ଦେଲେ ଆଉ ସବୁ ଅପ୍ରାସଙ୍ଗିକ । ରୋଗୀର ପରୀକ୍ଷା ବେଳେ ସେଠି ଆତ୍ମା, ପରଜନ୍ମ, ମୋକ୍ଷ ଆଦିକୁ ଦେଖିବାର କୌଣସି ସୁଯୋଗ ନାହିଁ । କାରଣ, ମଣିଷ ଶରୀରରେ ପ୍ରତିଷ୍ଠିତ । ଶରୀର ନଷ୍ଟ ହେଲେ ତା ସହିତ ସତ୍ତାର ସମସ୍ତ ବୈଶିଷ୍ଟ୍ୟ ନଷ୍ଟ ହୋଇଯାଏ । (ଚ.୨.୬./୭) ଏବେ ଶରୀର ନଷ୍ଟ ହେଲା ପରେ ସବୁ ନଷ୍ଟ ହେଉନାହିଁ, ଆତ୍ମା ରହିଯାଉଛି । ତେଣୁ ମୋକ୍ଷକୁ ଯିବାକୁ ହେବ । ମୋକ୍ଷ ନ ହେଲେ ପୁନର୍ଜନ୍ମ ଭୋଗ୍ୟ ହବ ।ସେହି ମୋକ୍ଷଲାଗି କୌଣସି ଦ୍ରବ୍ୟଗୁଣଯୁକ୍ତ ଔଷଧ ନାହିଁ । ରହିଛି ବ୍ରାହ୍ମଣ ପୁରୋହିତଙ୍କର ଶାସ୍ତ୍ରୀୟ ବିଧାନ— ଦାନ ଦକ୍ଷିଣା, ପୂଜା ଅର୍ଚ୍ଚନା ଆଦି । ଆଉ ସେଥିଲାଗି ସେଇ ବ୍ରାହ୍ମଣ ପୁରୋହିତଙ୍କ ବିଧାନର ଅନୁସରଣ,— ତାଙ୍କର ଆନୁଗତ୍ୟ ।

ଚିକିତ୍ସକ ଭଲକରି ଜାଣନ୍ତି,ଚିକିତ୍ସା ସହିତ ସେସବୁର କୌଣସି ସମ୍ପର୍କ ନାହିଁ, ତାହାହିଁ ସମ୍ପୂର୍ଣ୍ଣ ଅର୍ଥହୀନ । ତାର ଉଲ୍ଲେଖ କିନ୍ତୁ ଉଦ୍ଦେଶ୍ୟହୀନ ନୁହେଁ ।ଯଦି ତାର କୌଣସି ଚିକିତ୍ସାଗତ ଆବଶ୍ୟକତା ନାହିଁ, ତେବେ ଯେତେଦୂର ସମ୍ଭବ ଚିକିତ୍ସକ ନିଜକୁ ଓ ନିଜର ବିଜ୍ଞାନକୁ

ସେହି ନିୟାମକ ରକ୍ଷଣଶୀଳଙ୍କର ଆକ୍ରମଣରୁ ରକ୍ଷା କରିବା ଲାଗି ଏହାକୁ ଏକମାତ୍ର ପନ୍ଥା ଭବେ ଗ୍ରହଣ କରିଛନ୍ତି । ଚିକିତ୍ସା ବିଜ୍ଞାନର ରକ୍ଷା ଲାଗି ସେମାନଙ୍କୁ ସେଇ ପନ୍ଥା ଧରିବାକୁ ହୋଇଛି । ଆତ୍ମା, କର୍ମ, ପରଜନ୍ମ ଓ ମୋକ୍ଷର ବାସ୍ତବତାକୁ ପ୍ରଶ୍ନ କରି ଆତ୍ରେୟଙ୍କୁ କହିବାକୁ ପଡିଛି "ସେସବୁ ନାସ୍ତିକତା । ନାସ୍ତିକତା ଘୋର ପାପ । " ପାତକଂ ବା ପରଂ ଚୈତତ୍ ପାତକଂ ନାସ୍ତି (ଚ ୧ ୧. ୧୫ ) ନିୟମଙ୍କ ରକ୍ଷଣଶୀଳ ଲୋକେ ଠିକ୍ ଏଇ କଥା ହିଁ କରିଥାନ୍ତି । ଚିକିତ୍ସକ ଏହାକୁ ଗ୍ରହଣ କଲାପରେ ନିଜେ ନିଜେ ନିରସ୍ତ ହେଲେ । ତେଣେ ସେମାନଙ୍କ ଉପରେ ଆକ୍ରମଣର ଆଉ କୌଣସି ସୁଯୋଗ ବା ଅସ୍ତ୍ର ରହିଲା ନାହିଁ ।

ବିଜ୍ଞାନର ରକ୍ଷାଲାଗି ଏହିପରି ଛଳନାପୂର୍ଣ୍ଣ ଆତ୍ମସମର୍ପଣ ଭାରତର ଅନ୍ୟତ୍ର ମଧ୍ୟ ଦେଖାଯାଏ । ତାର ଜ୍ୱଳନ୍ତ ଦୃଷ୍ଟାନ୍ତ ଭାରତର ପ୍ରସିଦ୍ଧ ଜ୍ୟୋତିଷ ବିଜ୍ଞାନୀ ବରାହମିହିର (ଖ୍ରୀ.ପୂ. ୬୦୦ଶତାବ୍ଦ) ଓ ବ୍ରହ୍ମଗୁପ୍ତ (ଖ୍ରୀଷ୍ଟାବ୍ଦୀ ୭/୮) । ସେମାନେ ତାଙ୍କର ବୈଜ୍ଞାନିକ ଗଣନା ଦ୍ୱାରା ପ୍ରତିପାଦିତ କରନ୍ତି ଯେ ଗ୍ରହଣ ଓ ପରାଗ ରାହୁରାସ କାରଣରୁ ଘଟେ ନାହିଁ । ପୃଥିବୀର ଛାଇ ଚନ୍ଦ୍ର ଉପରେ ଓ ଚନ୍ଦ୍ରର ଛାଇ ସୂର୍ଯ୍ୟ ଉପରେ ପଡିବା ଯୋଗୁ ଘଟିଥାଏ । କିନ୍ତୁ ରକ୍ଷଣଶୀଳଙ୍କ ଦାଉରୁ ରକ୍ଷା ପାଇବା ଲାଗି ସେମାନେ କିପରି ପନ୍ଥା ଗ୍ରହଣ କରିଛନ୍ତି, ତା' କେନ୍ଦ୍ର, ଏସିଆର ମନୀଷୀ ଆଲବରେଣୀଙ୍କ ଲେଖାରୁ ଜଣାଯାଏ । ସେ 'ବ୍ରହ୍ମ ସଂହିତାକୁ' ଉଦ୍ଧାର କରି ଦର୍ଶାଇଛନ୍ତି ଯେ, ବରାହମିହିର ପ୍ରଥମେ ପୌରାଣିକ କାହାଣୀ ରାହୁଗ୍ରାସକୁ ମାନି ନେଇଛନ୍ତି । କିନ୍ତୁ ତା ପର ବର୍ଣ୍ଣନାରେ ରାହୁ ସହିତ ତାର କୌଣସି ସମ୍ପର୍କ ନାହିଁ । ସେଥିରେ ସେ ନିଜ ମତକୁ ହିଁ ଉପସ୍ଥାପନା କରିଛନ୍ତି । କାରଣ ସେ ସମୟରେ ବ୍ରାହ୍ମଣ ମତ ଓ ବିଧାନର ବିରୋଧିତା, ଏକ ଅତି ଦୂଃସାହସିକ କାର୍ଯ୍ୟ । ଆଲବରେଣୀ ସେହିପରି ବ୍ରହ୍ମଗୁପ୍ତଙ୍କ ସମ୍ବନ୍ଧରେ ଆଲୋଚନା କରି କହନ୍ତି ଯେ, ଯଦି ରାହୁଗ୍ରାସ ଦ୍ୱାରା ଗ୍ରହଣକୁ ସେ ବିଶ୍ୱାସ କରୁଥିଲେ, ତେବେ ସୂର୍ଯ୍ୟଙ୍କୁ ଘୋଡାଇବା ଦିଗରେ ଚନ୍ଦ୍ରର ପରିଧିକୁ ଗଣନା କରୁଥିଲେ କାହିଁକି ସେହିପରି ଚନ୍ଦ୍ରକୁ ଘୋଡାଇବା ଦିଗରେ ପୃଥିବୀର ଛାଇର ପରିଧିକୁ ମାପୁଥିଲେ କିଆଁ ? ଯେଉଁମାନଙ୍କ ସାଙ୍ଗରେ ତମର ମତ ମିଳେ, ତାଙ୍କୁ ଛାଡ଼ି ନାସ୍ତିକମାନଙ୍କର ତତ୍ତ୍ୱ ଅନୁସାରେ ଗ୍ରହଣର ଗଣନା କରିବାର କାରଣ କ'ଣ ? ଆଲବରେଣୀ ବ୍ରହ୍ମଗୁପ୍ତଙ୍କର ବିରାଟ ଜ୍ଞାନ, ତୀକ୍ଷ୍ଣ ବୁଦ୍ଧିର ଉଚ୍ଚ ପ୍ରଶଂସା କରି କହନ୍ତି ଯେ, ସେ ମାତ୍ର ତେତିଶି ବର୍ଷ ବୟସରେ 'ବ୍ରହ୍ମସିଦ୍ଧାନ୍ତ' ଭଳି ଗ୍ରନ୍ଥ ରଚନା କରିବାରେ ସମର୍ଥ ହୋଇଥିଲେ । ସେ ଯଦି ସେଇ ଛଳନାର ଆଶ୍ରୟ ନ ନେଇଥାଆନ୍ତେ, ତାଙ୍କୁ ସକ୍ରେଟିସ୍‌ଙ୍କ ଦଶା ଭୋଗିବାକୁ ପଡ଼ିଥାନ୍ତା । ଏହିପରି ଦୃଷ୍ଟାନ୍ତ ଦର୍ଶନକ୍ଷେତ୍ରରେ ମଧ୍ୟ ଦେଖିବାକୁ ମିଳେ । କଣାଦ, ଗୌତମ, ବାତ୍ସାୟନ ଆଦି ବେଦର ରକ୍ଷଣଶୀଳତାକୁ ଉପରେ ମାନିନେଇ ପରେ ନିଜ ମତରେ ଅଟଳ ରହିଛନ୍ତି । କଣାଦଙ୍କର ଅଣୁବାଦ, ଗୌତମଙ୍କର ନ୍ୟାୟ ଓ ବାତ୍ସାୟନଙ୍କ ଯୁକ୍ତିଶାସ୍ତ୍ର ଆଦି ବେଦ ଓ ବ୍ରାହ୍ମଣ୍ୟବାଦ ନିର୍ଦ୍ଧାରଣକୁ ପଦେ ପଦେ ଖଣ୍ଡନ କରେ । ତାକୁ ଉପହାସରେ ଉଡ଼ାଇଦିଏ । ଉପରେ ତାର ଅନ୍ଧ ଧାରଣାକୁ ମାନି ନ ଥିଲେ ସେମାନଙ୍କୁ ସାମାଜିକ ନିୟାମକ ଆକ୍ରମଣର ଶିକାର ହେବାକୁ ପଡ଼ିଥାଆନ୍ତା ।

ଏବେ ଶରୀରର ଆରୋଗ୍ୟ ଘେନି ମୋକ୍ଷର ପ୍ରଶ୍ନ ଆସିଲାବେଳେ, ତା' ସହିତ ଅଶରୀରୀ ଆତ୍ମା ଓ ତାର ଅନୁଷଙ୍ଗିକ ବିଷୟ ଗୁଡ଼ିକ ଦେଖାଦେବା ସ୍ୱାଭାବିକ । ମୋକ୍ଷ

ବା ପରଜନ୍ମରୁ ରକ୍ଷା ପାଇବାର ଅଳୀକ ଧାରଣା ହେଲା, ''ତତ୍ ପରମପ୍ରଶାନ୍ତଂ ତତ୍ ଅକ୍ଷରଂ, ତତ୍ ବ୍ରହ୍ମ, ସ ମୋକ୍ଷଃ । '' ଏବେ ସେଇ ମୋକ୍ଷ ପୁଣି ଆସିବ କିପରି ? ତାହା ସେଇ ଅବସ୍ଥାରେ ଆସେ, ଯେତେବେଳେ ''ସକଳ ଇନ୍ଦ୍ରିୟାନୁଭୂତିର ଅନ୍ତିମ ପରିହାର ସହିତ ତାର ମୂଳକାରଣ, — ଅବଧାରଣା, ଧ୍ୟାନ ଜ୍ଞାନ ଓ ସଙ୍କଳ୍ପର ପୂର୍ଣ୍ଣ ପରିସମାପ୍ତି ଘଟେ । ତା ପରେ ବ୍ୟକ୍ତିଗତ ଆତ୍ମା, ବିଶ୍ୱଜନୀନ ଆତ୍ମା ସହିତ ବିଲୀନ ହୋଇ ଏକ ହୋଇଯାଏ । ତାର କୌଣସି ନିର୍ଦ୍ଦିଷ୍ଟତା ରହେ ନାହିଁ , ସବୁ ଗୁଣରୁ ମୁକ୍ତ ହୋଇଯାଏ । ତାର କୌଣସି ବୈଶିଷ୍ଟ୍ୟ, ଚିହ୍ନ ରହେ ନାହିଁ । ବ୍ରହ୍ମଙ୍କ କେବଳ ସେହି ଜ୍ଞାନ ପ୍ରାପ୍ତ ହୁଏ, ଅଜ୍ଞାନୀ ତାହା ଜାଣିବାକୁ ଅକ୍ଷମ ( ଚ ୫.୧.୩/୪ ଓ ୧.୫/୫) ଏହା ପୁରାପୂରି ଏକ ବିଶ୍ୱାସ ବା ଧର୍ମଧାରଣା । ଏଥି ସହିତ ଚିକିତ୍ସାବିଦ୍ୟାର କୌଣସି ସମ୍ପର୍କ ନାହିଁ । ବର୍ତ୍ତମାନ ଏହିପରି ଅନ୍ଧବିଶ୍ୱାସ ଚିକିତ୍ସାବିଜ୍ଞାନ ଭିତରେ ଭର୍ତ୍ତି ହେଲା । ଏପରି ନିର୍ଦ୍ଧାରଣର ଅଭାବ ନାହିଁ । ଆଉ ଅଧିକ ଉଦାହରଣ ନିଷ୍ପ୍ରୟୋଜନ । ଥରେ ଅନ୍ଧବିଶ୍ୱାସ ତାର ଆଧିପତ୍ୟ ବିସ୍ତାର କଲେ ତେଣିକି ତାର ଅନୁରୂପ ଉପଚାର ତାକୁ ଅନୁସରଣ କରିବା ସ୍ୱାଭାବିକ ।

ତେଣୁ ଚରକ ସଂହିତା ଏଣିକି ଆତ୍ମବିରୋଧିତାର ଅଧାର ହେଲା । ଧର୍ମୀୟ କୁସଂସ୍କାର ତାର ବିଧାନ ହୋଇ ଉଠିଲା । ଉତ୍ତମ ଆଚରଣ ଲାଗି ଆତ୍ରେୟଙ୍କ ଭାଷାରେ ଦେବତା, ଗୋ, ବ୍ରାହ୍ମଣ, ଗୁରୁ, ଶିକ୍ଷକ, ବିଜ୍ଞ ବ୍ୟକ୍ତିଙ୍କୁ ପୂଜା କରିବାକୁ ପଡ଼ିବ । (ଚ. ୧.୮.୧୮) ସେଇ ଉତ୍ତମ ଆଚରଣ ହେଲା ଗୋ ବ୍ରାହ୍ମଣଙ୍କ ପ୍ରତି ଭକ୍ତି, ଶ୍ରଦ୍ଧା, ହୋମ, ଯଜ୍ଞ, ଧର୍ମାତ୍ମା ଓ ଧାର୍ମିକ ଭାବ ଓ କେବଳ ଆସ୍ତିକ ମତ ପୋଷଣ । ଆଧାର୍ମିକ ରାଜବିରୋଧୀ ସଂଘ'' ପରିତ୍ୟାଗ କରିବ (''ଅଧାର୍ମିକେଣ ସହ ନ ଅଶ୍ନୀତ ନରେନ୍ଦ୍ରଦ୍ୱିଷ୍ଟିୟଃ ନ ଆର୍ଯ୍ୟମ୍ ଆଶ୍ରୟତେ)'' । ମୂଲ୍ୟବାନ ପ୍ରସ୍ତର, ହୋମ, ଘିଅ, ପୂଜାଫୁଲ ଭଳି ପବିତ୍ର ପଦାର୍ଥ ସ୍ପର୍ଶ ନ କରି ଘରୁ ଗୋଡ଼ କାଢ଼ିବ ନାହିଁ । ଉପାସନା, ହୋମ ବା ଇଷ୍ଟଦେବଙ୍କୁ ଅର୍ପଣ ନ କରି ଭୋଜନ କରିବ ନାହିଁ । (ଚ ୧.୮.୧୮-୨୮) ରୋଗର ଚିକିତ୍ସା ଦିଗରେ ଏ ସବୁର ପ୍ରାସଙ୍ଗିକତା କେଉଁଠି ?

ଗୋ ବ୍ରାହ୍ମଣଙ୍କ ପ୍ରତି କୌଣସି ବିରୁଦ୍ଧାଚରଣ କରିବ ନାହିଁ ''ନ ବ୍ରାହ୍ମଣନାନ୍ ପରିବଧେତ୍, ନ ଗାବଂ ଦଣ୍ଡା ଉଚ୍ଚ୍ୟତ୍ୟେ'' (ଚ.୧.୮ ୨୫) ଶିକ୍ଷାଦାନ ପୂର୍ବରୁ ଛାତ୍ରଙ୍କୁ ଦେବତା, ଗୋ, ବ୍ରାହ୍ମଣ, ସାଧୁ, ସନ୍ୟାସୀ ଗୁରୁ ଓ ବିଜ୍ଞବ୍ୟକ୍ତି ଆଦିକୁ ପ୍ରାର୍ଥନା କଲାଭଳି କେତେକ ପବିତ୍ର କାର୍ଯ୍ୟ କରିବାକୁ ହେବ । (ଚ.୩.୩.୭) ପୁଣି ଚିକିତ୍ସା କରିବାକୁ ଯିବା ସମୟରେ ବାଟରେ କଣ ସବୁ ଭେଟିଲେ ମଙ୍ଗଳ, ଅମଙ୍ଗଳ ସୂଚନା ଦିଏ, ସ୍ୱପ୍ନରେ କାହାକୁ ଦେଖିଲେ କ'ଣ ହୁଏ ତାର ମଧ୍ୟ ଉଲ୍ଲେଖ ରହିଛି । କୁହାଯାଇଛି, ଚିକିତ୍ସା ଲାଗି ରୋଗୀ ଗୃହରେ ପ୍ରବେଶ କଲା ପୂର୍ବରୁ କାହାଙ୍କୁ ପୂଜା, ପ୍ରାର୍ଥନା କରିବ, —ସେମାନଙ୍କ ଭିତରେ ଗୋ, ବ୍ରାହ୍ମଣ, ଦେବତା ଉଚ୍ଚବର୍ଣ୍ଣ ଆଦି ଅନ୍ତର୍ଭୁକ୍ତ(ଚ ୫.୧୨.୮୬.୭୧ ) ଏପରିକି ଏକପ୍ରକାର ପାଗଳାମି ସୁଦ୍ଧା ଗୋ, ବ୍ରାହ୍ମଣାଦିଙ୍କ ପୂଜା ଦ୍ୱାରା ଆରୋଗ୍ୟ ହୋଇପାରେ । (ଚ.୯.୯୪ ) ଚେରମୂଳି ଔଷଧ ସଂଗ୍ରହ ପୂର୍ବରୁ ତାକୁ ଶୁଦ୍ଧ, ପବିତ୍ର କରିବା ଲାଗି ଦେବତା ଅଶ୍ୱିନୀ ଓ ଗୋ, ବ୍ରାହ୍ମଣଙ୍କ ପୂଜାର ବିଧାନ ରହିଛି (''ସମପୂଜ୍ୟ ଦେବତା ଅଶ୍ୱିନୌ ଗୋ ବ୍ରାହ୍ମଣନୌ'') (ଚ ୭.୧.୧୦)

ଗୋରୁ ଯେଉଁଠି ଦେବତା, ବ୍ରାହ୍ମଣଙ୍କ ସହିତ ସମାନ, ଯାହାକୁ ଚରକ ସଂହିତା ଚିକିତ୍ସା ଦୃଷ୍ଟିରୁ ପୂଜା କରିବାର ନିର୍ଦ୍ଦେଶ ଦିଏ, ସେହି ଚରକ ସ୍ୱାସ୍ଥ୍ୟ ଦୃଷ୍ଟିରୁ ଗୋମାଂସ ଭକ୍ଷଣ ଲାଗି ଯୁକ୍ତି ବାଢ଼େ, ପରାମର୍ଶ ଦେଇଥାଏ । ମଣିଷ ସ୍ୱାସ୍ଥ୍ୟରକ୍ଷା ଲାଗି ଅନ୍ୟ ସବୁ ପ୍ରାଣୀଙ୍କ ମଧ୍ୟରେ ଗୋରୁ ଏକ ପ୍ରାଣୀ ମାତ୍ର । ୧୫୦ କିସମର ପ୍ରାଣୀକୁ ଚିକିତ୍ସା ଦୃଷ୍ଟିରୁ ଆଠୋଟି ଶ୍ରେଣୀରେ ବିଭକ୍ତ କରାଯାଇଛି । ଗୋରୁଙ୍କ ସହିତ ଗଧ, ଘୋଡ଼ା, ଓଟ, ଖଚର, ସିଂହ, ବାଘ, ଭାଲୁ, ମାଙ୍କଡ଼ ଆଦି ୨୯ଟି ପ୍ରାଣୀ ସମଶ୍ରେଣୀଭୁକ୍ତ । ଗୋମାଂସର ଖାଦ୍ୟମୂଲ୍ୟ ଦୁଇଟି ଦିଗରୁ ଆଲୋଚିତ ହୋଇଛି । ଗୋଟିଏ ସାଧାରଣ ଶ୍ରେଣୀର ପଶୁମାଂସ ଭାବରେ, ଅନ୍ୟଟି ତାର ନିର୍ଦ୍ଦିଷ୍ଟ ଖାଦ୍ୟ ମୂଲ୍ୟ ଦୃଷ୍ଟିରୁ । କାରଣ ତାହା ''ମାଂସକର'' (ଚ. ୫.୨.୧୫୮) ଗୋମାଂସର ସେଇ ଅନୁପାନ ବିଧି, ସ୍ୱତନ୍ତ୍ର ଗୁଣ ହେଉଛି ଆତ୍ରେୟଙ୍କ ଭାଷାରେ—''ଯେଉଁମାନେ ଅତ୍ୟଧିକ ବାୟୁ, ଜ୍ୱର, ଡାଇରିଆ, ଶୁଖିଲା କାଶ, ଶାରୀରିକ କ୍ଲାନ୍ତି ଇତ୍ୟାଦି ଯୋଗୁଁ ମାଂସହୀନ ହୁଅନ୍ତି ଓ କଠିନ ପରିଶ୍ରମ ହେତୁ ଅତ୍ୟଧିକ କ୍ଷୁଧାଗ୍ରସ୍ତ ହୁଅନ୍ତି ସେମାନଙ୍କ ପକ୍ଷରେ ଗୋରୁମାଂସ ହିତକାରକ । (ଚ.୧.୨୭.୭୯.୮୦)

''ଗାବାମ୍ କେବଳ ବାତେଷୁ ପିନସେ ବିଷମ ଜ୍ୱରେ
ଶୁଷ୍କ କାଶ-ଶ୍ରମାତ୍ୟଅଗ୍ନି ମାଂସକ୍ଷୟହିତଶ୍ଚ ତତ୍ ।''

ସେହିପରି କେତେକ ରୋଗ ପାଇଁ ଗୋରୁ, ମଇଁଶି, ଘୋଡ଼ା, ହାତୀ ମାଂସର ସୁରୁଆ ସୁପାରିଶ କାରାଯାଇଛି । ଅତ୍ୟଧିକ ବାୟୁ ଓ ଅନ୍ୟାନ୍ୟ ବହୁରୋଗ ଲାଗି ଗୋମାଂସକୁ ମୟୁର, ହଂସ, ଗଧ ମାଂସ ସହିତ ସମାନ କରାଯାଇଛି । (୫.୧୪.୧୨୬/୧୨୭) (୫.୮.୧୫୮) ପ୍ରାୟ ଏପରି କୌଣସି ମାଂସ ନାହିଁ, ଚିକିତ୍ସା ଯୋଗୁଁ ଯାହାର ବ୍ୟବହାର ନାହିଁ । ଏମିତିକି ଯଦି କୌଣସି ମାଂସ ପ୍ରତି ଘୃଣା ଥାଏ, ରୋଗୀ ଖାଇଲେ ବାନ୍ତି କରେ, ତେବେ ତାକୁ ସୁସ୍ୱାଦୁ କରି ଅନ୍ୟ ପ୍ରାଣୀର ମାଂସ କହି ସ୍ୱାସ୍ଥ୍ୟଦୃଷ୍ଟିରୁ ଖାଇବାକୁ ଦେବ ।

ମନେହୁଏ, ''ଗୋ ବ୍ରାହ୍ମଣ ହିତାୟ '' ବିଷୟଟି ଦ୍ୱିତୀୟ ଖ୍ରୀଷ୍ଟାବ୍ଦ ବେଳକୁ ଆସିଲାଣି । ଧର୍ମ ଦୃଷ୍ଟିରୁ ଗୋମାଂସ ଏବେ ଚିନ୍ତାର ବହିର୍ଭୂତ ହେବାକୁ ଲାଗିଲା । କେଉଁ ସାମାଜିକ ଅର୍ଥନୈତିକ ଅବସ୍ଥା ଭିତରେ ଗୋମାଂସକୁ ନିଷେଧ କରି ତାକୁ ଏତେ କଠୋର ନିୟମ ଭିତରେ ଧର୍ମର ଅନ୍ତର୍ଭୁକ୍ତ କରାଗଲା, ତାହା ଆଉ ଏକ ସ୍ୱତନ୍ତ୍ର ବିଷୟ ।

ଚରକଙ୍କ ମତରେ ସବୁ ଖାଦ୍ୟ ଗୋଟାଏ, ଯାହାକୁ କି ଖିଆଯାଇ ପାରେ । ଉତ୍ପତ୍ତି ଦୃଷ୍ଟିରୁ ଖାଦ୍ୟ ଦୁଇ ପ୍ରକାର, ପ୍ରାଣବନ୍ତ ଓ ପ୍ରାଣଶୂନ୍ୟ । କାର୍ଯ୍ୟ ଦୃଷ୍ଟିରୁ ଦୁଇ ପ୍ରକାର ସ୍ୱାସ୍ଥ୍ୟକର ଓ ଅସ୍ୱାସ୍ଥ୍ୟକର । ଖାଇବା ପ୍ରଣାଳୀ ଦୃଷ୍ଟିରୁ ଚାରି ପ୍ରକାର । ଖାଇବା, ପିଇବା, ଚୂଷିବା ଓ ଚାଟିବା । ସ୍ୱାଦ ଦୃଷ୍ଟିରୁ ଛଅ ପ୍ରକାର, (ଚ.୧.୨୫.୩) ଏଥିରେ କୌଣସି ଧର୍ମର ପ୍ରଶ୍ନ ନାହିଁ । ଚିକିତ୍ସା ବହିର୍ଭୂତ ବିଚାରର ପ୍ରଶ୍ନ ନାହିଁ । ଏକମାତ୍ର ନିର୍ଦ୍ଦେଶ ହେଲା ଲୋଭରେ ହେଉ ବା ଅଜ୍ଞାନତା ବଶତଃ ହେଉ, ଖାଦ୍ୟ ପଥ୍ୟ ବିଧି କିନ୍ତୁ ଅନୁସରଣ କାରିବ । ଶରୀର ଖାଦ୍ୟରୁ ଉତ୍ପନ୍ନ, ରୋଗ ଖାଦ୍ୟରୁ ଆସେ । ସୁଖ ଦୁଃଖ ହେଉଛି ସ୍ୱାସ୍ଥ୍ୟକର ଅସ୍ୱାସ୍ଥ୍ୟକର ଖାଦ୍ୟର ଫଳ ।'' (ଚ.୨୮.୪୫)

ଅଥଚ କୁଷ୍ଠରୋଗର କାରଣ ସ୍ୱରୂପ କୁହାଯାଇଛି ଯେ, ''କଥାରେ ଅସତ୍ୟତା, ଅକୃତଜ୍ଞତା, ଖରାପ ଖାଦ୍ୟ, ଦେବତାଙ୍କ ପ୍ରତି ନିନ୍ଦା, ବୟସ୍କଙ୍କ ପ୍ରତି ଅଶ୍ରଦ୍ଧା ଓ ତାଚ୍ଛଲ୍ୟ ଓ ପୂର୍ବ ଜନ୍ମର ପୁଞ୍ଜୀଭୂତ ପାପକର୍ମରୁ ଘଟିଥାଏ ।'' (ଚ ୫.୭.୧୭୭) କେବଳ ଖରାପ ଖାଦ୍ୟକୁ ଛାଡ଼ିଦେଲେ ଆଉ କିଛି ଚିକିତ୍ସା-ବିଜ୍ଞାନ ଭିତରେ ପଡ଼େନାହିଁ ।

ସେହିପରି ଜ୍ୱର ଶିବଙ୍କ କ୍ରୋଧହେତୁ ହୁଏ । (ଚ ୨୨.୧.୩୫) (ଅଥଚ ଜ୍ୱରର ଆଠୋଟି କାରଣ ନିଦାନ ଅଧ୍ୟାୟରେ ଆଲୋଚିତ ହୋଇଛି ।) ଜ୍ୱରର ଆରୋଗ୍ୟ ଲାଗି ତେଣେ ଈଶ୍ୱରଙ୍କଠାରୁ ଆରମ୍ଭକରି ଅଗ୍ନି, ମରୁତ, ହିମାଚଳ, ଗଙ୍ଗା ଆଦି ବହୁ ଦେବତାଙ୍କର ପୂଜା ଅର୍ଚ୍ଚନାର ଏକ ଦୀର୍ଘ ବ୍ୟବସ୍ଥା ଖଞ୍ଜା ହୋଇଛି । (ଚ ୫.୩.୩୧୦-୩୧୩) ଆଉ ଅଧିକ ଦୃଷ୍ଟାନ୍ତ ଅନାବଶ୍ୟକ ।

ଆୟୁର୍ବେଦର ମୂଳ ହେଉଛି ''ବୃହତ୍ ତ୍ରୟୀ'', —ଚରକ ସଂହିତା, ସୁଶ୍ରୁତ ସଂହିତା ଏବଂ ଅଷ୍ଟାଙ୍ଗ ସମଗ୍ରଃ । ଅବଶ୍ୟ ଏହା ପରେ ଆଉ ଅନ୍ୟମାନେ ରହିଛନ୍ତି । କିନ୍ତୁ ସୁଶ୍ରୁତରେ ରହିଛି ତାର ଆଠୋଟି ଅଧ୍ୟାୟ ବେଦର ସହାୟକ ଓ ଅତିରିକ୍ତ ବିଷୟ ଭାବରେ — ସ୍ୱୟଂ ବ୍ରହ୍ମାଙ୍କ ଦ୍ୱାରା କଥିତ । ତେଣୁ ଚିକିତ୍ସକ ନିଜର ଭୂମିକା ପ୍ରତି ସଜାଗ ରହି, ପୁରୋହିତଙ୍କ ପ୍ରତି ଆନୁଗତ୍ୟ ରଖି (କାରଣ ସେମାନେ ବେଦର ରକ୍ଷକ) କାର୍ଯ୍ୟ କରିବ । (ସୁଶ୍ରୁତ ୧.୩୪.୮)

ଉପରୋକ୍ତ ବିଷୟଗୁଡ଼ିକର ଏକମାତ୍ର ଉଦ୍ଦେଶ୍ୟ ହେଲା, ଚିକିତ୍ସକର ଭୂମିକାକୁ ଗୁରୁତ୍ୱହୀନ ଓ ଚିକିତ୍ସା ବିଜ୍ଞାନକୁ ସମ୍ପୂର୍ଣ୍ଣ ତାତ୍ପର୍ଯ୍ୟଶୂନ୍ୟ ବୋଲି ଦର୍ଶାଇବା । କାରଣ ବେଦପରି ଆୟୁର୍ବେଦ ମଧ ବ୍ରହ୍ମାଙ୍କ ମୁହଁରୁ ନିଃସୃତ । ରୋଗର କାରଣ ପୂର୍ବ ଜନ୍ମର କର୍ମ ଓ ଦେବତାଦିଙ୍କ କୋପ ଉପରେ ନିର୍ଭର କରେ । ସେମିତି ଆରୋଗ୍ୟ ଲାଗି ଗୋ, ବ୍ରାହ୍ମଣ, ଦେବତାଙ୍କ ଆଶ୍ରୟ ନେବାକୁ ହେବ । ତାର ଏକମାତ୍ର ପନ୍ଥା ହେଲା ଚିକିତ୍ସକଙ୍କୁ ବ୍ରାହ୍ମଣ ପୁରୋହିତଙ୍କ ଆନୁଗତ୍ୟ ସ୍ୱୀକାର କରି, ତାଙ୍କର ନିର୍ଦ୍ଦେଶ ଓ ବିଧାନକୁ ଅନୁସରଣ କରିବାକୁ ପଡ଼ିବ । ଅନ୍ୟ ଦିଗରୁ ବିଚାରିଲେ ସେହି ବର୍ଣ୍ଣାଶ୍ରମର ଆଧିପତ୍ୟ କାଏମ କରିବା ହେଲା ଏକମାତ୍ର ଲକ୍ଷ୍ୟ ।

ଅଥଚ, ଏଥିପୂର୍ବରୁ ଆୟୁର୍ବେଦର ଦୃଷ୍ଟି କୋଣ, ଆଦର୍ଶ, ବିଜ୍ଞାନ ପଦ୍ଧତି, ପ୍ରୟୋଗ ଓ ପ୍ରୟୋଗକାରୀ ବ୍ୟକ୍ତିଙ୍କ ଚରିତ୍ର ଆଦି ସମ୍ବନ୍ଧରେ ଆଲୋଚନା କରିଛେ । ସେହିସବୁର ଏକମାତ୍ର ପରିଣତି ଓ ଲକ୍ଷ୍ୟ ହେଉଛି ଚରକ ଅନୁସାରେ '' ଚିକିତ୍ସକ ଠିକଣା ସମୟରେ ଯଥାର୍ଥ ଚିକିତ୍ସା ଜ୍ଞାନ ନେଇ — ଆରୋଗ୍ୟ ଓ ଅନାରୋଗ୍ୟ ରୋଗ ଭିତରର ପାର୍ଥକ୍ୟ ଜ୍ଞାନକୁ ଧରି ଚିକିତ୍ସା କଲେ ସଫଳତା ସମ୍ପୂର୍ଣ୍ଣ ନିଶ୍ଚିତ ।'' (ଚ ୧.୧୦.୭)

## ସେହି ପ୍ରଲେପର ବିଲୋପରେ

ଲକ୍ଷ୍ୟ କରିବାକୁ ହେବ, ଜଗନ୍ନାଥ-ଭାବର ସେହି ମହାନ୍ ମୌଳିକ ଚରିତ୍ର ଆଜି ଯେପରି ବିଭିନ୍ନ ଅନ୍ଧବିଶ୍ୱାସ କୁସଂସ୍କାର ଦ୍ୱାରା ଲୁକ୍‌କାୟିତ, ବିକୃତ ଓ କଳଙ୍କିତ ରୂପରେ

ପ୍ରଚାରିତ, ଆଉ ଠିକ୍ ତାହାହିଁ ଘଟିଛି ଆୟୁର୍ବେଦ ଚିକିତ୍ସା-ବିଜ୍ଞାନ କ୍ଷେତ୍ରରେ । ଆଉ ମଧ୍ୟ ଲକ୍ଷ୍ୟ କରିବାକୁ ହେବ ସେହି ଏକା, ସମାନ ପ୍ରକାରର ଧର୍ମ ଓ ଧାରଣା ବିଶ୍ୱାସ ଦ୍ୱାରା ଉଭୟେ ଆକ୍ରାନ୍ତ । ଶେଷରେ ଉଭୟେ ପୁଣି ନିଜ ନିଜର ବିପରୀତରେ ପରିଣତ ହୁଅନ୍ତି । ଆହୁରି ଲକ୍ଷ୍ୟ କରିବାକୁ ହେବ, ଏ ସବୁର ସୂତ୍ରଧର ପ୍ରବର୍ତ୍ତନ ହେଉଛନ୍ତି ଉଭୟଙ୍କ କ୍ଷେତ୍ରରେ ସେଇ ଏକା ସମାନ ଶ୍ରେଣୀର ସମାନ ସ୍ୱାର୍ଥ ଓ ସମାନ ମତର ଲୋକେ ସେହିପରି ସମାନ ସାମାଜିକ ଅର୍ଥନୈତିକ ଅବସ୍ଥା ଭିତରୁ ଉଦ୍‌ଭବ । ତା' ସେହି ସମାନ ଭାବଧାରାର ପ୍ରତିଫଳନ ।

ଅତଏବ ଏହା କୌଣସି ଆକସ୍ମିକ ଘଟଣା ନୁହେଁ । ଇତିହାସର ଏକ ଦୀର୍ଘ ଦିନର ପ୍ରକ୍ରିୟା ଭିତରୁ ଜାତ । ତେଣୁ ବିଜ୍ଞାନ ଓ କୁସଂସ୍କାର ସମ୍ପର୍କକୁ ସେହି ଦୃଷ୍ଟିରେ ଦେଖିବାକୁ ହେବ । କୁସଂସ୍କାରକୁ ମଣିଷର ଅଜ୍ଞତା, ନିର୍ବୋଧତା ବା ଅଳୀକ ଧାରଣା କହି ଉଡ଼ାଇ ଦେଲେ ତାହା ଉଡ଼ିଯାଏ ନାହିଁ । ତାର ଆବଶ୍ୟକତା ରହିଛି ବୋଲି ମଣିଷ ତାକୁ ସୃଷ୍ଟି କରିଛି, ଧରି ରଖିଛି । ତାହାର ସେଇ ଆବଶ୍ୟକତା ପୂରଣ ପର୍ଯ୍ୟନ୍ତ ତାକୁ ସେମିତି ଜାବୁଡ଼ି ଧରିଥିବ, କାରଣ ତାର ଆକାଙ୍‌କ୍ଷା ପୂରଣ ଦିଗରେ ତାହାହିଁ ପ୍ରକୃଷ୍ଟ ଉପାୟ ।

ସେହି କାମନା ବା ଆବଶ୍ୟକତା ପୂରଣର ଉପାୟ କଣ ? ଜଗନ୍ନାଥ ପୂଜା ଆରାଧନା ତାର ଏକମାତ୍ର କାରଣ କାହିଁକି ? ଯେହେତୁ ଜଗନ୍ନାଥ ସର୍ବଶକ୍ତିର ଆଧାର, ସର୍ବଗୁଣର ଆକାର ଏବଂ ସର୍ବ ଉତ୍କର୍ଷର ନିରବଚ୍ଛିନ୍ନ ନିର୍ଝର ଭାବେ ପରିକଳ୍ପିତ, —— ତେଣୁ ସେଇ ହିଁ କେବଳ ସମସ୍ତଙ୍କର ସକଳ ବିକାଶ, ସକଳ ଇଚ୍ଛା ପୂରଣ କରିବାରେ ସମର୍ଥ । ଅନ୍ୟ କାହା ପାଖରେ ତାହା ସମ୍ଭବ ନୁହେଁ । କାରଣ ଅନ୍ୟ କେହି ମଣିଷର ସେଇପରି ଅସୀମ ଦାନର ଅଧିକାରୀ ନୁହନ୍ତି । ମଣିଷ ଏହି ଯେଉଁ ଶକ୍ତି ଅନ୍ୟକୁ ପ୍ରଦାନ କରିନାହିଁ, ତାଙ୍କଠାରୁ ସେ ତାର ଅନୁରୂପ ଆଶୀର୍ବାଦ ଆଶା କରି ନ ପାରେ । କେଉଁଠି ତାର ସେଇ ଶକ୍ତିର ଉତ୍ସ ?

କ'ଣ ସେଇ ମଣିଷର ଶକ୍ତି ? କେଉଁଠି ତାର ସେହି ଅସୀମ ଶକ୍ତିର ଅଜ୍ଞାତ ଉତ୍ସ ? ସୁପ୍ତ ବା ଜାଗ୍ରତ, ପ୍ରକାଶିତ ବା ଅପ୍ରକାଶିତ, ଚେତନା ବା ଅଚେତନ ଆଦି ପ୍ରକୃତିର ସକଳ ଗୁଣ, ଶକ୍ତି ଓ ସ୍ୱଭାବ, ଯାହାକିଛି ମଣିଷ ଭିତରେ ଅନ୍ତର୍ନିହିତ, ତାହାହିଁ ତାର ମାନବିକ ନିର୍ଝରର ଉତ୍ସ । ପ୍ରକୃତିର ସେହି ଉପଲବ୍‌ଧିର ପ୍ରସାରରେ ମଣିଷର ଶକ୍ତିର ବିସ୍ତାର, ପ୍ରକୃତି ଭଳି ଅନନ୍ତ ତାର ସେହି ବିକାଶର ଧାରା, ତାର ସେଇ କଳ୍ପନାର ବାସ୍ତବ ମୂର୍ତ୍ତି ହେଲା ଜଗନ୍ନାଥ । ଏପରିକି ଯେଉଁ ଶକ୍ତି ମଣିଷର ବାସ୍ତବ ଅନୁଭୂତିର ବହିର୍ଭୂତ, ତାକୁ ସେ ଆୟତ୍ତ କରେ ନିଜର କଳ୍ପନା ଭିତରେ । ଯାହାକୁ ସେ ବାସ୍ତବରେ ପାଇବା ସମର୍ଥ ନୁହେଁ , ତାକୁ ସେ ଲାଭ କରେ ସ୍ୱପ୍ନର ବାସ୍ତବତାରେ । ତେଣୁ ସକଳ ଅପ୍ରାପ୍ତ କାମନାର ପ୍ରାପ୍ତି ଦିଗରେ ସେ ଏପରି ଏକ ପ୍ରଜ୍ଞାନ ସୃଷ୍ଟି କରେ ଯିଏ କି ନିଜେ ଅବ୍ୟକ୍ତ ଓ ଅନନ୍ତ । କାରଣ ସେହିପରି ଏକ ଅବ୍ୟକ୍ତ, ଅନନ୍ତ ଶକ୍ତି କେବଳ ତାର ଅଶେଷ ଅଜ୍ଞତା ପୂରଣରେ ସମର୍ଥ, ଅସୀମ ଜିଜ୍ଞାସାର ଉତ୍ତର, ସବୁ ପ୍ରଶ୍ନର ଏକମାତ୍ର ସମାଧାନ ।

ମଣିଷ ସେଇ ଯେଉଁ ଶକ୍ତି ଜଗନ୍ନାଥଙ୍କୁ ପ୍ରଦାନ କରେ,ତାହା ପ୍ରକୃତି ଭଳି କେବଳ ଅସୀମ ଓ ଅଫୁରନ୍ତ ନୁହେଁ. ଠିକ୍ ସେହି ପ୍ରକୃତି ଭଳି ତାର ପ୍ରସାର ଓ ପରାକ୍ରମ । ଆଉ ଠିକ୍ ସେଇ ପ୍ରକୃତି ଭଳି ସେହିପରି ତାହା ସର୍ବଗୁଣ ସର୍ବଶକ୍ତି ସକଳ ଐଶ୍ୱର୍ଯ୍ୟର ଭଣ୍ଡାର ।

ମଣିଷର ଚେତନାର ବୃଦ୍ଧି, ସେଇ ପ୍ରକୃତିକୁ ଆତ୍ମସ୍ଥ କରିବାରେ । ତାର ସେଇ ଚେତନା ଯେତେ ବୃଦ୍ଧିପାଏ, ସେ ସଚେତନ ଭାବେ ପ୍ରକୃତିକୁ ସେତେ ଆତ୍ମସ୍ଥ କରେ । ସେ ତାକୁ ଯେତେ ଆତ୍ମସ୍ଥ କରେ, ପ୍ରକୃତି, ମଣିଷ ଭିତରେ ସେତେ ଅଧିକ ଚେତନଶୀଳ ରୂପ ନିଏ । ସେ ଏକ ଅସରନ୍ତି ପ୍ରକ୍ରିୟା । ସେଇ ପ୍ରକ୍ରିୟା ଭିତରେ କେବଳ ବିଜ୍ଞାନ ଓ ଅନ୍ଧବିଶ୍ୱାସକୁ ବୁଝାଯାଇପାରେ । ଯାହା ମଣିଷଠାରେ ପ୍ରତିଫଳିତ, ତାର ପ୍ରତିଫଳନ ହେଲେ ଜଗନ୍ନାଥ ।

ତେଣୁ ଜଗନ୍ନାଥଙ୍କୁ ବୁଝିବାକୁ ହେଲେ ଖୋଦ୍ ମଣିଷକୁ ବୁଝିବାକୁ ହେବ । ଜଗନ୍ନାଥଙ୍କଠି ଅନ୍ଧବିଶ୍ୱାସର ରହସ୍ୟ ଉଦ୍‌ଘାଟନ କରିବାକୁ ହେଲେ ମଣିଷ ଭିତରେ ତାର ବିଶ୍ୱାସର ଭିତ୍ତି ଉଦ୍‌ଘାଟନ କରିବାକୁ ପଡ଼ିବ । ଶେଷରେ ଜଗନ୍ନାଥଙ୍କୁ ପାଇବାକୁ ହେଲେ ଆଗ ମଣିଷକୁ ପାଇବାକୁ ହେବ । ସେଇ ମାର୍ଗର ଅନୁସରଣ ହେଉଛି ସେହି ଅନ୍ଧବିଶ୍ୱାସର ଅପସାରଣ ଦିଗରେ ସଚେତନ ପଦକ୍ଷେପ ।

ଅତଏବ, ପ୍ରକୃତି ଯେତେବେଳେ ଶେଷରେ ସବୁରି ଭିତ୍ତି, ସମସ୍ତଙ୍କ ଜନ୍ମଦାତ୍ରୀ, ସେତେବେଳେ ତାର ସେହି ନୀତି ନିୟମ ଓ ପରିବର୍ତ୍ତନର ଉପଲବ୍‌ଧି ହେଉଛି ବିଜ୍ଞାନ । ତାକୁ ନ ଜାଣି ବା ଜାଣିବାକୁ ଚେଷ୍ଟା ନ କରି ଆଖିବୁଜି ବିଶ୍ୱାସରେ ଏଣେ ତେଣେ ଧାଇଁବାଟା ହେଲା ଅନ୍ଧବିଶ୍ୱାସ ।

ପ୍ରକୃତିର ନିୟମ ଅପ୍ରତିହତ, ତେଣୁ ସଦା ଜୀବନ୍ତ ଆୟୁର୍ବେଦର ସେହି ବୈଜ୍ଞାନିକ ଅବଦାନ, ସେହିପରି ଚିର ଦୀପ୍ତିମାନ ଜଗନ୍ନାଥ-ଭାବର ମାନବିକ ମର୍ମ ।

ଆୟୁର୍ବେଦ ଜୀବନକୁ ଦୀର୍ଘାୟୁ କଲା ଭିତରେ ସଦା ନିରବଚ୍ଛିନ୍ନ ଭାବେ ଗଡ଼ି ଚାଲେ ମଣିଷ ଜୀବନ-ସ୍ରୋତର ପ୍ରବାହ । ଜଗନ୍ନାଥ-ଭାବ ମାନବତାର ସ୍ଫୁଲିଙ୍ଗରେ ପ୍ରଜ୍ୱଳିତ କରେ ମଣିଷ ଭିତରେ ବିଶ୍ୱ-ଭାବର ଅନିର୍ବାଣ ଦୀପ୍ତୀକୁ ।

ଆୟୁର୍ବେଦ ବିନା ମଣିଷର ଜୀବନର ସ୍ଥିତି ଯେପରି ସମ୍ଭବ ନୁହେଁ , ଜଗନ୍ନାଥ-ଭାବ ବିନା ମଣିଷର ମାନବତ୍ୱର ପ୍ରାପ୍ତି ସେହିପରି ଅସମ୍ଭବ ।

ଗୋଟିଏ ପ୍ରଦୀପ ହେଲେ ଅନ୍ୟଟି ପ୍ରକାଶ ।



# ଷୋଡ଼ଶ ପର୍ବ

## ଜଗତର ପ୍ରକୃତିରେ ନାଥର ସ୍ୱଭାବ

ମଣିଷର ଉଦ୍ୟମ, କିପରି ଜଗନ୍ନାଥଙ୍କୁ ପାଇବ। ଥରେ ତାଙ୍କୁ ପାଇପାରିଲେ ତେଣିକି ଜଗତରେ ଆଉ କିଛି ଅପ୍ରାପ୍ୟ ରହିବ ନାହିଁ। କିନ୍ତୁ ଜଗନ୍ନାଥଙ୍କୁ ଜାଣିବାକୁ ହେଲେ ତା ଆଗ ଜଗତକୁ ଜାଣିବାକୁ ହେବ, ନ ହେଲେ ଜଗନ୍ନାଥଙ୍କୁ ଭେଟିବ ବା ପାଇବ କେଉଁଠି ? ସେ ପୁଣି ନାଥ ହେବେ କାହାର ? ତେଣୁ ଆଗ ଜାଣିବାକୁ ହେବ ଜଗତ ବୋଇଲେ କଣ, କଣ ତାର ତାତ୍ପର୍ଯ୍ୟ ? ପୁଣି ନାଥ ବୋଇଲେ କଣ, କ'ଣ ତାର ମହତ୍ତ୍ୱ ? କୌଣସି ଭକ୍ତ ବା ଗବେଷକ ଏ ପ୍ରଶ୍ନକୁ କେବେ ଆଲୋଚନା କରିବାର ଦେଖାଯାଏ ନାହିଁ। ତାର ଆଲୋଚନା ବିନା ଜଗନ୍ନାଥଙ୍କର ସ୍ଥିତି, ପ୍ରକୃତି, ଶକ୍ତି ବ୍ୟାପ୍ତି ଏବଂ ତାଙ୍କର ଉତ୍କର୍ଷ ଆଦିର ପ୍ରକୃତ ସନ୍ଧାନ କ'ଣ ସମ୍ଭବ ହୋଇପାରେ ? ଜଗତକୁ ଜାଣିବାରେ ଦୁଇଟି ମାର୍ଗ ରହିଛି। ଗୋଟିଏ ମନରେ, — କଳ୍ପନା ଭିତରେ ତାକୁ ଦେଖିବା। ଅନ୍ୟଟି ଭୌତିକ ବାସ୍ତବତା ଭିତରେ ତାକୁ ପରୀକ୍ଷା କରି ଗ୍ରହଣ କରିବା। ପ୍ରଥମଟିରେ, ଜଗତ ମଣିଷର ଭାବନା ରାଜ୍ୟରେ, —ତାର ଚେତନା ଭିତରେ ବିଦ୍ୟମାନ। ଅର୍ଥାତ୍, ମଣିଷ ଜଗତକୁ ଯେପରି ଭାବିବ, ଯେପରି ଚାହିଁବ, ତାକୁ ସେହିପରି ମନରେ ଗଢ଼ି ଦେଇପାରିବ। ଦ୍ୱିତୀୟଟିରେ, ମଣିଷର କଳ୍ପନା ସହ ଜଗତର କୌଣସି ସମ୍ପର୍କ ନାହିଁ, ତାହା ମଣିଷର ବାହାରେ ବିଦ୍ୟମାନ ! ଏକ ସ୍ୱତନ୍ତ୍ର, ସ୍ୱାଧୀନ ସତ୍ତାଭାବରେ ଅବସ୍ଥିତ। ତାକୁ; ମଣିଷ ନିଜର କଳ୍ପନା ଅନୁଯାୟୀ ଗଢ଼ିବାର ପ୍ରଶ୍ନ ଉଠେ ନାହିଁ। ସେପରି ଜଗତ ମଣିଷର ପୂର୍ବରୁ ରହିଛି ଓ ପରେ ରହିବ। ତେଣୁ ଆଗ ମଣିଷ ନୁହେଁ, ଆଗ ହେଉଛି ଜଗତ; ଜଗତରୁ ମଣିଷର ଉଦ୍ଭବ, ମଣିଷରୁ ଜଗତର ଜନ୍ମ ନୁହେଁ।

ତେଣୁ, ଯେଉଁଠି ଜଗତ ମଣିଷର ଚିନ୍ତା, ଭାବନା ବା କଳ୍ପନା ଉପରେ ନିର୍ଭର କରେ, ସେଠି ତାର ଜଗତର ନାଥ ସେହିପରି ମନୋଗତ ହେବା ସ୍ୱାଭାବିକ। ଯେଉଁଠି ଜଗତ ମଣିଷର ମନର ବାହାରେ ଭୌତିକ ବାସ୍ତବତାକୁ ପ୍ରକାଶ କରେ, ସେଠି ସେଇ ଜଗତର

ନାଥ ତାର ଭୌତିକ ନିୟମର ସାର୍ବଭୌମତ୍ୱକୁ ସାବ୍ୟସ୍ତ କରିବା ସୁନିଶ୍ଚିତ । ଜଗତର ଚରିତ୍ର ଯାହା ହେଉନା କାହିଁକି, ନାଥର ଅର୍ଥ ସ୍ୱାମୀ ବା ନିୟନ୍ତା, —ଯିଏ ସକଳ ବିଷୟକୁ ନିୟନ୍ତ୍ରଣ କରେ । ଏହି କ୍ଷେତ୍ରରେ ଜଗତର କାରକ, ପାଳକ, ରକ୍ଷକ ଓ ତାରକ, — ତାର ସକଳ କାର୍ଯ୍ୟର ନିୟନ୍ତା ଭାବେ ଯିଏ ସ୍ୱୀକୃତ, ସେ ହେଲେ ଜଗନ୍ନାଥ ।

ଜଗନ୍ନାଥ ଗୋଟିଏ, କ୍ଷେତ୍ରରେ ମଣିଷର ମନୋଗତ ଭାବ, ତାର ମନର ଭାବର ସର୍ବୋଚ୍ଚ ରୂପ ହେଲାବେଳେ, ଅନ୍ୟ କ୍ଷେତ୍ରରେ ସେ ହେଲେ ଭୌତିକ ଜଗତର ବାସ୍ତବତାର ସର୍ବୋଚ୍ଚ ଭାବ — ତାର ଅଲଘନୀୟ ନିୟମର ଅବ୍ୟର୍ଥ ସଙ୍କେତ । ଅତଏବ, ଜଗନ୍ନାଥ ଏକ ଦୃଷ୍ଟିରେ ମନୋଗତ ହେଲେ, ଅନ୍ୟ ଦୃଷ୍ଟିରେ ଭୌତିକ ।

ଜଗତ ଓ ତାର ନାଥ ଯେଉଁଠି ଦୁହେଁ ମନୋଗତ, ଅର୍ଥାତ୍ ଦୁହେଁ ଏକ ମୂଳରୁ ଜାତ, ସେଠି କିନ୍ତୁ ସେମାନେ ପରସ୍ପରଠାରୁ ପୃଥକ୍ । ଏକ ଓ ଅଭିନ୍ନ ନୁହନ୍ତି । ବରଂ ଦୁହେଁ ପରସ୍ପରର ବିରୋଧିତାରେ ବିଭକ୍ତ । ସେଠି ଜଣେ ସ୍ରଷ୍ଟା ହେଲେ ,ଅନ୍ୟ ଜଣେ ସୃଷ୍ଟି । ଜଣେ ଚାଳିତ ହେଲେ ଅନ୍ୟ ଜଣେ ଚାଳକ । ଜଣେ ଶାସକ ହେଲେ, ଅନ୍ୟ ଜଣେ ଶାସିତ । ଜଣେ ସର୍ବେଶ୍ୱର ହେଲେ, ଅନ୍ୟ ଜଣେ ଶର୍ବଶକ୍ତିଶୂନ୍ୟ — ପଶାପାଲିର ଗୋଟିଏ — ନିମତ୍ତ ମାତ୍ର ।

ଅନ୍ୟ ପକ୍ଷରେ ଯେଉଁଠି, ଭୌତିକ ବାସ୍ତବତା, ଜଗତର ଭିତ୍ତି, ସେଠି ଜଗତ ତାର ନାଥଠାରୁ ଭିନ୍ନନୁହେଁ । ସୃଷ୍ଟି ଓ ସ୍ରଷ୍ଟା ଅଲଗା ଓ ବିଭକ୍ତ ନୁହନ୍ତି । ଭୌତିକତାର ସ୍ୱଭାବ ହିଁ ତାର ସୃଷ୍ଟି । ସେଇ ଜଗତ ହିଁ ନିଜେ ନିଜର ସୃଷ୍ଟିର କାରଣ, — ସେହି ତାର ସ୍ରଷ୍ଟା, ଚାଳକ ଓ ଶାସକ । ତାହାହିଁ ସର୍ବଶକ୍ତିମାନ୍ । ତାର ସେଇ ଭୌତିକ ବାସ୍ତବତାଠାରୁ ,— ତାର ସ୍ୱଭାବକୁ ବିଚ୍ଛିନ୍ନ କରାଯାଇ ନ ପାରେ । ଅଗ୍ନିଠାରୁ ତାର ଉତ୍ତାପକୁ ଅଲଗା କରିବା ଯେପରି ଅସମ୍ଭବ, ସେହିପରି ସମ୍ଭବ ନୁହେଁ , ଜଗତଠାରୁ ତାର ସ୍ୱଭାବକୁ ବିଚ୍ଛିନ୍ନ କରିବା । ଅତଏବ ସେଇ "ସ୍ୱଭାବ" — ନାଥର ଆଦେଶ ଅଲଘନୀୟ ।

ବିଶ୍ୱଜଗତର ଅନ୍ୟ ନାମ ବିଶ୍ୱପ୍ରକୃତି । ପ୍ରକୃତିକୁ ଜାଣିବା ଅର୍ଥ ସେଇ ପ୍ରକୃତିର ପ୍ରକୃତି, — ତାର ସ୍ୱଭାବ ବା ନିୟମକୁ ଜାଣିବା । ତାକୁ ନିଜ ଉଦ୍ଦେଶ୍ୟ ସାଧନର ଆୟୁଧ କରିବା । ସେଇ ଆୟୁଧ ସର୍ବଶକ୍ତିମାନ ଓ ଅପ୍ରତିହତ । ଯେହେତୁ ତାହା ପ୍ରାକୃତିକ, ପ୍ରକୃତିର ଶକ୍ତି, ତେଣୁ ସେଇ ପ୍ରାକୃତିକ ନିୟମର ଉଦ୍‌ଘାଟନ ଓ ତାକୁ ଆୟତ କରିବା ହେଲା ବିଜ୍ଞାନର ଏକମାତ୍ର ଲକ୍ଷ୍ୟ । ତାହାହିଁ ସକଳ ସଫଳତାର ଚାବିକାଠି ।

ପ୍ରଥମ କ୍ଷେତ୍ରରେ ସୃଷ୍ଟି ଓ ସ୍ରଷ୍ଟା ପରସ୍ପରଠାରୁ କେବଳ ବିଚ୍ଛିନ୍ନ ନୁହନ୍ତି, ଦୁହେଁ ବିରୁଦ୍ଧାତ୍ମକ । ପରସ୍ପର ପ୍ରତି ନିଷ୍ପ୍ରୟୋଜନ । ମଣିଷର ମୌଳିକ ପ୍ରଶ୍ନ ସେଠି ନିରୁତ୍ତର । ସୃଷ୍ଟି ଯଦି ପୂର୍ବରୁ ନ ଥିଲା, ତେବେ ସ୍ରଷ୍ଟା ଥିଲେ କେଉଁଠି ? କେଉଁଠି ଥାଇ ସେ ସୃଷ୍ଟିର ରଚନା କଲେ ? ଯଦି ସ୍ରଷ୍ଟାଙ୍କ ପୂର୍ବରୁ ସୃଷ୍ଟି ରହିଛି , ସେଠି ପୁଣି ସ୍ରଷ୍ଟା ଆଉ କାହିଁକି ? ସୃଷ୍ଟି ଲାଗି ସେ ସମ୍ପୂର୍ଣ୍ଣ ନିଷ୍ପ୍ରୟୋଜନ । ଏହା ଏକ ଚିର ଅମୀମାଂସିତ ଦ୍ୱନ୍ଦ୍ୱ ।

ସୃଷ୍ଟିର ଉଦ୍ଦେଶ୍ୟ ଯାହାହେଲେ ବି ସେଥିରେ କେହି ଜଣେ କସ୍ମିନ୍‌କାଳେ ସନ୍ତୁଷ୍ଟ ନୁହେଁ । ଯିଏ ସ୍ରଷ୍ଟା , ସେହି କେବଳ ନିଜ ସୃଷ୍ଟିକୁ ବଦଳାଇ ପାରନ୍ତି, ଅନ୍ୟ କେହି ନୁହେଁ । ତେଣୁ ତାଙ୍କୁ ମନେଇବା ଲାଗି ମଣିଷର ପ୍ରାର୍ଥନା । ହୁଏତ କୋପେ ବର, ନ ହେଲେ ତପେ ବର । ଯେହେତୁ ସ୍ରଷ୍ଟା ନିରାକାର, ତାଙ୍କୁ ବାନ୍ଧି ବାଡ଼େଇ ତାଙ୍କଠାରୁ ନିଜର ସୁଖ ସୌଭାଗ୍ୟ ଆଦାୟର ଉପାୟ ନାହିଁ । ତେଣୁ ଏକମାତ୍ର ଉପାୟ ହେଲା ତାଙ୍କ ପାଖରେ ପ୍ରାର୍ଥନା । ତାଙ୍କୁ ସମସ୍ତ ପ୍ରକାର ଉପଚାର ଦ୍ୱାରା ସନ୍ତୁଷ୍ଟ କରିବା । ତେଣୁ ମଣିଷ ତାଙ୍କ ପାଖରେ ଆପଣାକୁ ସମର୍ପଣ କରିଦିଏ । ସେ ନିରାକାର ସ୍ରଷ୍ଟାଙ୍କ ମର୍ଜି ଉପରେ ନିର୍ଭର କରେ ଅନ୍ଧ ଭାବରେ ।

ଅନ୍ୟ କ୍ଷେତ୍ରରେ ଯେଉଁଠି ଭୌତିକ ଜଗତ ଓ ତାର ସ୍ରଷ୍ଟା (ସ୍ୱଭାବ), ବିଶ୍ୱପ୍ରକୃତି ତାର ସ୍ରଷ୍ଟା (ପ୍ରାକୃତିକ ନିୟମ)ର କଥା, ସେଠି କୌଣସି ଦ୍ୱନ୍ଦ୍ୱର ପ୍ରଶ୍ନ ନାହିଁ । ମଣିଷର ସୃଷ୍ଟି ଓ ସ୍ରଷ୍ଟାର ସେଇ ମୌଳିକ ପ୍ରଶ୍ନ ମୂଳରୁ ମୀମାଂସିତ । କାରଣ ଭୌତିକ ଜଗତ ଓ ତାର ସ୍ୱଭାବ,ପ୍ରକୃତି ଓ ତାର ପ୍ରାକୃତିକ ନିୟମ, ଏ ସବୁ ଏକ ଓ ଗୋଟାଏ । ଭୌତିକ ଜଗତରୁ ତାର ସ୍ୱଭାବକୁ ଅଲଗା କରିହେବ ନାହିଁ, କି ପ୍ରକୃତିଠାରୁ ତାର ନିୟମକୁ କେହି କାଢ଼ି ନେଇ ନ ପାରେ । ପ୍ରାକୃତିକ ନିୟମର ଆଧାର ଯେପରି ପ୍ରକୃତି, ସେହି ନିୟମର ପ୍ରକାଶନ ହେଉଛି ସେହିପରି ପ୍ରକୃତିର ନିଦର୍ଶନ । ଅନ୍ୟ କ୍ଷେତ୍ରରେ ହେଲାଭଳି, ଏଠାରେ ସୃଷ୍ଟି ଓ ସ୍ରଷ୍ଟା ପରସ୍ପରରୁ ଭିନ୍ନ ନୁହନ୍ତି । ସୃଷ୍ଟି,—ପ୍ରକୃତି ବା ଜଗତ ଏବଂ ସ୍ରଷ୍ଟା—ପ୍ରକୃତିର ନିୟମ ବା ସ୍ୱଭାବ, ଏମାନେ କେହି କାହାରି ସୃଷ୍ଟି ବା କେହି କାହାର ସ୍ରଷ୍ଟା ନୁହନ୍ତି । କିଏ ଆଗରୁ ରହି ଅନ୍ୟକୁ ସୃଷ୍ଟି କରିନାହିଁ  ବା କିଏ ସୃଷ୍ଟି ନ ହୋଇ ସ୍ରଷ୍ଟା ବୋଲାଏ ନାହିଁ ।

ଏହି ନିଖିଳ ବିଶ୍ୱପ୍ରକୃତି ନିଜେ ସୃଷ୍ଟି ନୁହେଁ କି କାହାର ସ୍ରଷ୍ଟା ମଧ୍ୟ ନୁହେଁ । ତାହା ଚିର ବିଦ୍ୟମାନ । ସୃଷ୍ଟି ଓ ସ୍ରଷ୍ଟା, ଏଠି ଏକ ଦେହରେ ମୂର୍ତ୍ତିମନ୍ତ । ତାହା ତାର ନିଜସ୍ୱ ସ୍ୱଭାବ, — ବିବର୍ତ୍ତନର ଭିତର ଦେଇ ସଦା ଗତିଶୀଳ । ନିଜର ପ୍ରକୃତି, — ବିବର୍ତ୍ତନ ଭିତରେ ତାହା ସଦା ବିକାଶ ଲାଭକରେ । ତାର ସେଇ ଗତିର ରହସ୍ୟ, ସେଇ ନିୟମର ଉଦ୍‌ଘାଟନ କରିବାରେ ମଣିଷ କେବଳ ବିଶ୍ୱପ୍ରକୃତିକୁ ବୁଝେ ନାହିଁ, —ନିଜେ ମଧ୍ୟ ତାର ସେହି ସୃଷ୍ଟିର ଶକ୍ତି ଅର୍ଜନ କରେ । ପ୍ରକୃତିର ନିୟମ ଦ୍ୱାରା ସେଇ ପ୍ରକୃତିର ପରିବର୍ତ୍ତନ, ଏହାହିଁ ହେଲା ମଣିଷର ସକଳ ସୃଷ୍ଟିର ଭିତ୍ତି । ସୃଷ୍ଟିର ସେଇ ନିୟମର ଉଦ୍‌ଘାଟନରେ ସମାହିତ ହୁଏ ସୃଷ୍ଟି ଓ ସ୍ରଷ୍ଟାର ମୌଳିକ ଦ୍ୱନ୍ଦ୍ୱ । ପ୍ରକୃତିର ସହିତ ତାର ନିୟମ, ଭୌତିକ ଜଗତ ସହିତ ତାର ସ୍ୱଭାବର ଅଭିନ୍ନତାକୁ ତାହା ଯେପରି ପ୍ରକାଶ କରେ, ସେହିପରି ଅନ୍ୟ ଦିଗରେ ଦର୍ଶାଇଦିଏ ସେଇ ସୃଷ୍ଟି ଓ ସ୍ରଷ୍ଟାଙ୍କର ଭିନ୍ନତାର ଅଭିନ୍ନତାକୁ । ତେଣୁ ମଣିଷ ପ୍ରକୃତିକୁ ଅଧିକାର କରେ ପ୍ରାକୃତିକ ନିୟମର ଅଧୀନସ୍ଥ ହୋଇ ।

ବିଶ୍ୱପ୍ରକୃତିର ନିୟମକୁ ଉଦ୍‌ଘାଟନ କରିବାରେ ମଣିଷ ତାକୁ ଯେପରି ଅଧିକାର କରେ, ସେହିପରି ପ୍ରକୃତିକୁ ଆପଣାର କରିନିଏ । ‘ଅଧିକାର କରିବା ଓ ଆପଣାର କରିବା,’ ଏ ଦୁଇଟି ପରସ୍ପର ବିରୁଦ୍ଧାତ୍ମକ କ୍ରିୟା । କିନ୍ତୁ ସେହିପରି ଦୁଇ ବିରୋଧିତାର ଐକ୍ୟ । ଯେଉଁଠି ସେଇ ଐକ୍ୟର ବ୍ୟତିକ୍ରମ, ସେଠି ସଙ୍କଟର ସୃଷ୍ଟି । ସେଥିଯୋଗୁ ମଣିଷର ଅସ୍ତିତ୍ୱ ଆଜି

ବିପନ୍ନ । ଏବର ପରିବେଶ ସଙ୍କଟ ତାର ସଦ୍ୟ ଦୃଷ୍ଟାନ୍ତ । ପ୍ରଭୁର ମନୋଭାବ ନେଇ ମଣିଷ ଆଜି ପ୍ରକୃତିକୁ ପ୍ରତିଦିନ ନିର୍ବିଚାରରେ ରାକ୍ଷସ ଭଳି ଗ୍ରାସ କରିବାରେ ଲାଗିଛି । ଫଳରେ ଜଳ, ସ୍ଥଳ, ଆକାଶ, ଆଜି ଏପରି ପ୍ରଦୂଷିତ ଯେ, ନିଃଶ୍ୱାସ ମାରିବାକୁ ମଣିଷ ପାଇଁ ମୁକ୍ତ ବାୟୁ ନାହିଁ, ପିଇବାକୁ ନିର୍ମଳ ଜଳ ନାହିଁ କି ତାର ଖାଦ୍ୟ ମିଶ୍ରଣମୁକ୍ତ ନୁହେଁ । ପରିବେଶର ପ୍ରଦୂଷଣରେ ତାର ଜୀବନ ଆଜି ଅସହ୍ୟ । କାରଣ ସେ ପ୍ରକୃତିକୁ ଆପଣାର ନ କରି, ତା ଉପରେ ପ୍ରଭୁତ୍ୱର ଶାସନ ଚଳାଏ, ତାକୁ ଶତ୍ରୁ ଭାବରେ ବ୍ୟବହାର କରେ । ମଣିଷ, ଯିଏ ପ୍ରକୃତିର ଏକ ଅଂଶ, ସେ ପ୍ରକୃତିକୁ ଧ୍ୱଂସ କରିବାରେ ନିଜେ ଧ୍ୱଂସର ସମ୍ମୁଖୀନ ହୁଏ । ତାହା ମଣିଷ ଓ ପ୍ରକୃତିର ବିରୋଧିତାର ଐକ୍ୟକୁ ବା ଐକ୍ୟ ଭିତରେ ତାଙ୍କର ବିରୋଧିତାକୁ ପ୍ରକାଶ କରେ । ଜଣାଇଦିଏ, ପ୍ରକୃତି ସହିତ କେବଳ ଐକ୍ୟରେ ଯେପରି ମଣିଷର ବିକାଶ ନାହିଁ, ସେହିପରି କେବଳ ବିରୋଧିତାରେ ତାର ବିନାଶ ଅପରିହାର୍ଯ୍ୟ । କାରଣ ଉଭୟ କ୍ଷେତ୍ରରେ ତାହା ପଶୁର ଚରିତ୍ରକୁ ପ୍ରକାଶ କରିଥାଏ ।

ସୃଷ୍ଟି ଓ ସ୍ରଷ୍ଟାଙ୍କର ସେଇ ସମ୍ବନ୍ଧ ବା ଦ୍ୱନ୍ଦ୍ୱ ଭିତରେ ଜଗନ୍ନାଥଙ୍କ ସ୍ଥାନ କେଉଁଠି ? ଜଗନ୍ନାଥଙ୍କୁ ଯଦି ସ୍ରଷ୍ଟା କୁହାଯାଏ, ତେବେ ସେ ଜଗତର ନାଥ ହୋଇ ନ ପାରନ୍ତି । କାରଣ ପୂର୍ବରୁ ତ ଜଗତ ନ ଥିଲା । ତେବେ ସେ ଥିଲେ କେଉଁଠି ? ଜଗତର ନାଥତ୍ୱର ପ୍ରଶ୍ନ ଉଠୁଛି କୁଆଡୁ ? ନାହିଁ ତ, ତାଙ୍କୁ ଯଦି ଜଗତର ପରେ ସୃଷ୍ଟି ବୋଲି ଧରାଯାଏ, ତେବେ ସେ ସୃଷ୍ଟିକର୍ତ୍ତା ହୋଇ ନ ପାରନ୍ତି । ତାଙ୍କର ସ୍ରଷ୍ଟା ହେବାର ପ୍ରଶ୍ନ ନାହିଁ । କିନ୍ତୁ ଯେତେବେଳେ ଜଗନ୍ନାଥ ଅଛନ୍ତି, ତାଙ୍କର ନାଥତ୍ୱ ରହିଛି, ସେଠି କଣ ସେହି ନାଥତ୍ୱର ତାତ୍ପର୍ଯ୍ୟ ?

ସୃଷ୍ଟିର ସ୍ରଷ୍ଟା, — ଈଶ୍ୱର ଘେନି ମତଭେଦ ରହିଛି । ନାସ୍ତିକ, ନିରୀଶ୍ୱରବାଦୀ ରହିଛନ୍ତି । କିନ୍ତୁ ଜଗନ୍ନାଥଙ୍କୁ ଘେନି ସନ୍ଦେହର ଅବକାଶ ନାହିଁ । ଯେହେତୁ ସେ ନିରାକାର ବା ଅଚିନ୍ତନୀୟ ନୁହନ୍ତି, —ବାସ୍ତବରେ ଦେହ ଧରି ବିଦ୍ୟମାନ । ଇତିହାସର ବହୁ ଆଲୋଚିତ ବିବର୍ତ୍ତିତ ବିଷୟ ଜଗନ୍ନାଥ, ଯିଏ ସୃଷ୍ଟି କି ସ୍ରଷ୍ଟା ନୁହନ୍ତି, ସେ ବିଶ୍ୱଜଗତର ଭାବ, କିମ୍ବା ବିଶ୍ୱପ୍ରକୃତିର କେବଳ ଏକ ପ୍ରତୀକ ହୋଇପାରନ୍ତି, — ଯାହାଙ୍କ ଭିତରେ କି ମଣିଷ ସେଇ ବିଶ୍ୱପ୍ରକୃତିର ଗୁଣ, ଶକ୍ତି ଓ ସ୍ୱଭାବର ଅଫୁରନ୍ତ ଉତ୍ସକୁ ଅନ୍ୱେଷଣ କରେ । ଏକ ବିଶ୍ୱଭାବର ପ୍ରେରଣା ପାଏ । ସେହି ବିଶ୍ୱଭାବ, ପ୍ରକୃତି ଓ ମାନବର ଐକ୍ୟ ଭିତରେ ମାନବିକତାକୁ ରୂପାୟିତ କରେ । ଏକ ମାତ୍ର ଜଗନ୍ନାଥ-ଭାବ ହିଁ ସେହି ରୂପର ଆଧାର ଓ ଆୟୁଧ ।

ତେଣୁ ବିଶ୍ୱଭାବର ସେଇ ଅନ୍ତର୍ନିହିତ ସ୍ୱଭାବ, ମାନବିକତାର ସେଇ ଅନ୍ତର୍ନିହିତ ଅଙ୍କୁରର ଉନ୍ମେଷରେ ଜଗନ୍ନାଥ ଭାବର ଆବିର୍ଭାବ । ତାହାହିଁ ହେଉଛି ଜଗନ୍ନାଥ ଭାବର ସହଜାତ ମର୍ମ । ତାର ତତ୍ତ୍ୱର ମୂଳ ମନ୍ତ୍ର । ତାର କର୍ମର ଏକମାତ୍ର ଇଙ୍ଗିତ, — ଯାହା ଯୁଗେ ଯୁଗେ ପ୍ରକାଶିତ ସାମ୍ୟ, ମୈତ୍ରୀ, ପ୍ରୀତିର ଆହ୍ୱାନରେ ।

ଅତଏବ ଯେଉଁ ଧାରଣା ଦ୍ୱାରା ସୃଷ୍ଟି ଓ ସ୍ରଷ୍ଟାଙ୍କର ଆବିର୍ଭାବ, ଜଗତରେ ପାଳକ ଓ ପାଳିତ, ଶାସକ ଓ ଶାସିତ, ନିୟନ୍ତା ଓ ନିୟନ୍ତ୍ରିତ ଆଦି ମତବାଦର ଉଦ୍ଭବ, ଠିକ୍ ସେହି

ଧାରଣା ଅନୁଯାୟୀ ସମାଜରେ ରାଜା ପ୍ରଜା, ଶୋଷକ ଓ ଶୋଷିତ, ଶାସକ ଓ ଶାସିତ ଆଦି ଶ୍ରେଣୀ ଚିନ୍ତାଧାରାର ଉତ୍ପତ୍ତି । କିମ୍ବା ଅନ୍ୟ ଦିଗରୁ ସେଇ ଧାରଣାର ଉତ୍ପତ୍ତି ହେଉଛି ସେହି ଶ୍ରେଣୀ-ବାସ୍ତବତାର ପ୍ରତିଫଳନ । ସେଥିଲାଗି ତାହା ପବିତ୍ର, ସନାତନ ଓ ଐଶ୍ୱରିକ ଆଶୀର୍ବାଦଭାବେ ପ୍ରଚାରିତ ।

କିନ୍ତୁ ବିଶ୍ୱଜଗତ ବା ବିଶ୍ୱପ୍ରକୃତି ଯେଉଁଠି ଚିର ବିଦ୍ୟମାନ, ସୃଷ୍ଟି ଓ ସ୍ରଷ୍ଟା ଏକୀଭୂତ, ସେଠି ପାଳକ ପାଳିତ, ଶାସକ ଶାସିତ, ନିୟନ୍ତା ନିୟନ୍ତ୍ରିତର କୌଣସି ଅବକାଶ ନାହିଁ । ତାର ବାସ୍ତବ ଜଗତରେ ନାହିଁ ରାଜା ପ୍ରଜା, ଶୋଷକ ଶୋଷିତ, ଶାସକ ଶାସିତ ଆଦି ଚିନ୍ତାଧାରାର ଭିତ୍ତି ଭୂମି । ତାର ସେହି ସମାଜ ଧନଗତ, ଧର୍ମଗତ, କ୍ଷମତାଗତ, ସକଳ ପ୍ରକାରର ବୈଷମ୍ୟହୀନ ଭେଦାଭେଦ ଶୂନ୍ୟ ଏକମାତ୍ର ମାନବିକତାର ସମାଜକୁହିଁ ପ୍ରକାଶ କରେ । ନାହିଁ ସେଠି ଜଗନ୍ନାଥଙ୍କର ଆଜ୍ଞା , ଆଶୀର୍ବାଦର ପ୍ରଶ୍ନ, ତାହା ହେଲା ମାନବର ନିଜ ଭିତରେ ସେହି ଜଗନ୍ନାଥଙ୍କର ଭାବ — ତାଙ୍କ 'ଆତ୍ମାର' ପ୍ରକାଶ ମାତ୍ର ।

ମନୋଗତ ଓ ଭୌତିକ, ଦୁଇ ଜଗତ ଭିତରେ ମୂଳ ଫରକ ହେଉଛି, ଗୋଟିଏ ବିଶ୍ୱାସ ଉପରେ ପ୍ରତିଷ୍ଠିତ ହେଲେ, ଅନ୍ୟଟିର ଭିତ୍ତି ବସ୍ତୁଗତ ବାସ୍ତବତା । ଗୋଟିଏ ଇନ୍ଦ୍ରିୟାନୁଭୂତିକୁ ଅଗ୍ରାହ୍ୟ କଲାବେଳେ, ଅନ୍ୟଟି ପାଇଁ ଇନ୍ଦ୍ରିୟାନୁଭୂତି ଅପରିହାର୍ଯ୍ୟ । ପରୀକ୍ଷା ଭିତରେ ମନୋଗତ ଜଗତ ଉଭେଇ ଗଲାବେଳେ ଭୌତିକ ଜଗତ ଅଧିକ ଜାଜ୍ୱଲ୍ୟମାନ ହୋଇଉଠେ । ମନୋଗତ ଜଗତରେ ଦୂବ ନ କଅଁଳୁଥିବା ବେଳେ, ମଣିଷ ନିଜ ଇଚ୍ଛା ଅନୁସାରେ ନୂତନ ସୃଷ୍ଟି ରଚନା କରେ ଭୌତିକ ଜଗତରେ ।

ଯେହେତୁ ସେଇ ଭୌତିକ ଜଗତ ମଣିଷଠାରୁ ସ୍ୱତନ୍ତ୍ର ଓ ସ୍ୱାଧୀନ ଭାବେ ଅବସ୍ଥିତ, ତେଣୁ ତାହାହିଁ ହେଉଛି ବିଜ୍ଞାନର ଭିତ୍ତି । ଆଇନ୍‌ଷ୍ଟାଇନ୍‌ଙ୍କ ଭାଷାରେ- "The belief in external world, independent of percipient subject is the found of all sciences." ବାହ୍ୟ ଜଗତ ପ୍ରତ୍ୟକ୍ଷ୍ୟକାରୀ ବ୍ୟକ୍ତିବିଶେଷଠାରୁ ସ୍ୱାଧୀନ, ଏଇ ବିଶ୍ୱାସହିଁ ସବୁ ବିଜ୍ଞାନର ସିଦ୍ଧାନ୍ତ । ତେଣୁ ବିଜ୍ଞାନହିଁ ଜଗତକୁ ଜାଣିବାର ଏକମାତ୍ର ଉପାୟ । ତାହାହିଁ କେବଳ ଜଗତର ରହସ୍ୟ ଉଦ୍‌ଘାଟନ କରିବାରେ ସକ୍ଷମ । କିନ୍ତୁ ଜ୍ଞାନ ମନର ବିଷୟ ହେଲେ ବି ତାହା ଆପେ ଆପେ ଚିନ୍ତା ଦ୍ୱାରା ଆସେ ନାହିଁ । "Thinking by itself, not result in true knowledge about external objects, sensual perception is the starting point of all studies. True theoretical knowledge is achieved solely through its connection with the sum total of data of sensual experience." (ଆଇନ୍‌ଷ୍ଟାଇନ୍)

ଅର୍ଥାତ୍ ଚିନ୍ତା ନିଜେ ବାହ୍ୟବସ୍ତୁ ସମ୍ପର୍କରେ ପ୍ରକୃତ ଜ୍ଞାନର ଫଳ ନୁହେଁ । ଇନ୍ଦ୍ରିୟଙ୍କ ଦ୍ୱାରା [illegible] ଆସେ । ଇନ୍ଦ୍ରିୟାନୁଭୂତିର ସକଳ [illegible] ସମ୍ଭବ ।

ମଣିଷ ତାର ସେଇ ବାସ୍ତବ ଜ୍ଞାନର ସୀମା ଅନୁସାରେ ପ୍ରଥମେ ଏକ କ୍ଷୁଦ୍ର ଅଞ୍ଚଳକୁ ଜଗତ ବୋଲି ମଣୁଥିଲା । ଭାବୁଥିଲା ପୃଥିବୀଟି ହିଁ ବିଶ୍ୱଜଗତର କେନ୍ଦ୍ରବିନ୍ଦୁ । ତାହା ସ୍ଥିର ନିଶ୍ଚଳ ହୋଇ ଠିଆହୋଇ ରହିଛି । ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ନକ୍ଷତ୍ର ଆଦି ତାର ଚତୁର୍ଦ୍ଦିଗରେ ଘୂରୁଛନ୍ତି । ପୃଥିବୀ ନିଜେ ଅସଂଖ୍ୟ ତାରକା ଖଚିତ ନଭୋମଣ୍ଡଳ ଦ୍ୱାରା ପରିବେଷ୍ଟିତ । ଧୀରେ ଧୀରେ ମଣିଷ, ସୌରମଣ୍ଡଳ, ନୀହାରିକା ବଳୟ ଓ ଛାୟାପଥ ଆଦି ବହୁ ପ୍ରକାର ମହାକାଶୀୟ ବିଷୟ ପର୍ଯ୍ୟବେକ୍ଷଣ କଲା । ସେ ସବୁକୁ ବୁଝିବା, ତାଙ୍କର ଗତିପଥ ଓ ଉପାଦାନ ଆଦିକୁ ଅନ୍ୱେଷଣ କରିବାରେ ମଣିଷ ସଦା ଉଦ୍ୟମଶୀଳ । ସେଥିରେ ଟିକିଏ ହେଲେ ବିଶ୍ରାମ ନାହିଁ । ଏବେ ଦେଖାଯାଏ, ପ୍ରତ୍ୟେକଟି ଛାୟାପଥ ଅସଂଖ୍ୟ ନକ୍ଷତ୍ରଙ୍କ ସମାହାର । ପୁଣି ସେଇ ଛାୟାପଥଙ୍କର ସଂଖ୍ୟା ମଧ୍ୟ ଅସୁମାରୀ । ଗୋଟିଏ ଗୋଟିଏ ଛାୟାପଥର ବ୍ୟାସାର୍ଦ୍ଧର ବିସ୍ତାର ଏକଶହ ହଜାର କୋଟି ଆଲୋକ ବର୍ଷ । ଗୋଟିଏ ଆଲୋକବର୍ଷର ଦୈର୍ଘ୍ୟ ୧୦୦୦,୦୦୦,୦୦୦,୦୦୦ ମାଇଲ । ସେହି ଛାୟାପଥ ପୁଣି ସ୍ଥିର ବା ଅଚଳ ନୁହନ୍ତି, ସଦା ପ୍ରସାରିତ ହେବାରେ ଲାଗିଛନ୍ତି । ମହାକାଶରେ କେବଳ ଉଜ୍ଜ୍ୱଳ ନକ୍ଷତ୍ର ନାହାନ୍ତି, ଘୋର କଳା ଅନ୍ଧକାରମୟ ଚିହ୍ନମାନ ରହିଛି । ମହାକାଶ କସ୍ମିନକାଳେ ସ୍ଥିର, ଶାନ୍ତ, ଶୂନ୍ୟ ନୁହେଁ । ସେଠି କ୍ରମାଗତ ବିସ୍ଫୋରଣ ଲାଗିଛି । ଅସୀମ ଶକ୍ତି ବିସ୍ଫୋରିତ ହେଉଛି । ଏ ବିଶ୍ୱଜଗତରେ କେନ୍ଦ୍ରସ୍ଥଳ ବୋଲି କିଛି ନାହିଁ । ମଣିଷର ଜ୍ଞାନ ଏପର୍ଯ୍ୟନ୍ତ ତାର ନିକଟତମ ନକ୍ଷତ୍ରକୁ ସୁଦ୍ଧା ସ୍ପର୍ଶ କରିନାହିଁ । ତାର ଯାନ ସୌରମଣ୍ଡଳକୁ ଅତିକ୍ରମ କରିବାର ଏପର୍ଯ୍ୟନ୍ତ ସମର୍ଥ ହୋଇନାହିଁ । ଜଗତର ବିସ୍ତାର ମଣିଷର କଳ୍ପନାତୀତ । ଏହିପରି ଏକ ଦୃଶ୍ୟ ଅଦୃଶ୍ୟ, ବୋଧ ଅବୋଧ, ଚିନ୍ତ୍ୟ ଅଚିନ୍ତ୍ୟ ବିଷୟକୁ ନେଇ ଏ ବିଶ୍ୱଜଗତ ଗଢା । ଏହିପରି ଜଗତର ନାଥ ହେଉଛନ୍ତି ଜଗନ୍ନାଥ ।

ନାଥ ବା ସ୍ୱାମୀ ଭାବରେ ଜଗନ୍ନାଥ ହେଲେ ଏ ବିଶ୍ୱ ଜଗତର ନିୟନ୍ତା । ସେଇ ନାଥତ୍ୱ ବିଶ୍ୱର ଦୃଶ୍ୟ ଅଦୃଶ୍ୟ, ଜଡ଼ ଅଜଡ଼, ଚେତନ ଅଚେତନ, ସକଳ ବସ୍ତୁ ଓ ପ୍ରାଣୀଙ୍କୁ ଅଧିକାର କରିଛି । ସମସ୍ତେ ତାର ଅଧୀନ । ତାର କବଳରୁ କେହି କେବେ ଖସି ଯାଇ ନ ପାରେ । ଆମେ ଆଗରୁ ଦେଖିଛେ ଯେ, ଭୌତିକ ଜଗତର ସେଇ ନାଥ ହେଲା,— ତାର ସ୍ୱଭାବ, ପ୍ରାକୃତିକ ନିୟମ, ସେଇ ଯେଉଁ ନିୟମ ଦ୍ୱାରା ସମସ୍ତ ବିଶ୍ୱଜଗତ ନିୟନ୍ତ୍ରିତ—ଯାହାକି ସମସ୍ତଙ୍କର ଆବିର୍ଭାବ ଓ ତିରୋଭାବର ଅବିଶ୍ରାନ୍ତ ପ୍ରବାହ । ନାଥ ଭାବରେ ଜଗନ୍ନାଥ ସେଇ ନିୟମର ପ୍ରତୀକ । ତାରି ଭାବରୂପ ଜଗତର ପ୍ରକୃତି ସେହି ନିୟମରେ ହିଁ ତାଙ୍କର ନାଥତ୍ୱ ସ୍ୱଭାବର ପ୍ରକାଶ ।

## ବିଜ୍ଞାନ, ଜଗନ୍ନାଥ : ଅପୂର୍ବ ମିଳନର ଅଦ୍ଭୁତ ଭବିଷ୍ୟ

ପ୍ରକୃତି ସବୁଠି ସମାନ । ଯୁଆଡ଼େ ଚାହଁ, ଯାହାକୁ ଦେଖ, ସେ ସବୁ ପ୍ରକୃତି ସେ ଅଭିନ୍ନ ଏକରୂପତା ହେଉଛି ତାର ରୂପ । ଯାହାକୁ କହନ୍ତି, uniformity of Nature, ପ୍ରକୃତିର ବହିର୍ଭୂତ ଆଉ କିଛି ନାହିଁ । ଦ୍ୱିତୀୟଟି ହେଲା ତାର କାର୍ଯ୍ୟ, କାରଣ, ନିୟମ, ଯାହାକୁ କହନ୍ତି law of Causation । ପ୍ରକୃତିର କେଉଁଠି କାର୍ଯ୍ୟ ବିନା କାରଣ ନାହିଁ । ସବୁଠି କାର୍ଯ୍ୟ ଭିତରୁ କାରଣର ଉଦ୍ଭବ । ପ୍ରତ୍ୟେକଟି କାରଣ ତାର କାର୍ଯ୍ୟକୁ ଅନୁସରଣ କରେ ।

କୌଣସି କାରଣ ଆକାଶରୁ ଖସିନାହିଁ । ତେଣୁ କାରଣବାଦ ବା ପରମକାରଣ ବୋଲି କିଛି ନାହିଁ, ଯାହାକୁ କି ସବୁର କାରଣ, ସମଗ୍ର ବିଶ୍ୱର ସୃଷ୍ଟିର କାରଣ ବୋଲି ଧରିହେବ ।

ଅତଏବ ପ୍ରକୃତିରେ ତାର ରୂପ ଯେପରି ସବୁଠି ସମାନ ଓ ଏକାପରି, (uniform) ସେହିପରି ତାର ନିୟମ ସବୁଠି ସମାନ ଓ ଏକାପରି । ପ୍ରକୃତି ଯେପରି ତାର ରୂପକୁ ଲଘଂନ କରେ ନାହିଁ, ସେହିପରି ଲଘଂନ କରେ ନାହିଁ ତାର ନିୟମକୁ । ତେଣୁ ପ୍ରକୃତି ନିଜେ ତଥା ତା ବକ୍ଷର ପ୍ରତ୍ୟେକ ଜିନିଷ ସେହି ନିୟମର ଅଧୀନ । ସେହି ନିୟମରେ ସମସ୍ତ ନିୟନ୍ତ୍ରିତ । ସେହି ନିୟମ ହିଁ ସବୁର ନିୟନ୍ତା; ଯାହାକୁ କି ଆମେ 'ନାଥ' ଆଖ୍ୟା ଦେଉ । ବୈଜ୍ଞାନିକ ଆଇନଷ୍ଟାଇନଙ୍କ ଭାଷାରେ ତାହାହିଁ ଈଶ୍ୱର । "I believe in Spinoza's God, who reveals himself in orderly harmoney of what exists. Not in God who concerns himself with the fate and action of human beings." ମୋର ସ୍ପିନୋଜାଙ୍କ ଈଶ୍ୱରରେ ବିଶ୍ୱାସ, ଯିଏ କି ଯାହା ଶୃଙ୍ଖଳିତ ତଥା ସମନ୍ୱିତ ଭାବେ ବିଦ୍ୟମାନ, ତାରି ଭିତରେ ଆପଣାକୁ ପ୍ରକାଶ କରନ୍ତି । ମୁଁ ସେପରି ଈଶ୍ୱରଙ୍କୁ ବିଶ୍ୱାସ କରେ ନାହିଁ, ଯିଏ କି ମନୁଷ୍ୟର ଭାଗ୍ୟ ଓ କାର୍ଯ୍ୟ ନେଇ ନିଜେ ବ୍ୟସ୍ତ ଓ ଉଦ୍‌ବିଗ୍ନ ।'' ଏହାଦ୍ୱାରା ମଣିଷ ଧର୍ମ ଦିଗରୁ ଜଗନ୍ନାଥଙ୍କୁ ଈଶ୍ୱର ଭାବେ ପ୍ରତ୍ୟାଖ୍ୟାନ କରି ବିଜ୍ଞାନ ଦୃଷ୍ଟିରୁ ତାଙ୍କୁ ଜଗତର ନାଥ ଭାବରେ ପ୍ରତିଷ୍ଠିତ କରେ । ବିଜ୍ଞାନର ପଦ୍ଧତି ଏତେଦୂର ଶକ୍ତିଶାଳୀ ଯେ ତାହା ଈଶ୍ୱର ଧାରଣାକୁ ସମ୍ପୂର୍ଣ୍ଣ ବଦଳାଇ ଦିଏ । ବିଜ୍ଞାନର ସମ୍ମାନ, ମର୍ଯ୍ୟାଦା ଆଉ ଗୌରବ ଏପରି ସର୍ବଜୟୀ ଯେ, ନିଜର ସ୍ଥିତି ଓ ପ୍ରତିଷ୍ଠା ପାଇଁ ଧର୍ମକୁ ବିଜ୍ଞାନର ସ୍ୱୀକୃତି ଲୋଡ଼ା ପଡ଼େ ।

କରଣ, ବିଜ୍ଞାନ ସତ୍ୟ, ଯେହେତୁ ତାହା ପ୍ରମାଣିସିଦ୍ଧ । ଆଉ ସତ୍ୟହିଁ ଭଗବାନ । ପ୍ରତ୍ୟେକଟି ସିଦ୍ଧାନ୍ତ ବାସ୍ତବ ବିଶ୍ୱଜନୀନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାରେ ହିଁ ବିଜ୍ଞାନର ସ୍ୱୀକୃତି ଲାଭ କରେ । ତଦ୍ୱାରା ନିଜର ସତ୍ୟତାକୁ ପ୍ରତିପାଦିତ କରେ । ତେଣୁ ଶାସ୍ତ୍ର ଯେତେ ପ୍ରାଚୀନ, ପୁରାଣ ଯେତେ ପବିତ୍ର , ଆଉ ମହାପୁରୁଷ ଯେତେ ବିରାଟ ହେଲେ ବି କାହାରି କର୍ତ୍ତୃତ୍ୱ ବା ଆପ୍ତ ବଚନକୁ ବିଜ୍ଞାନ ସତ୍ୟର ମର୍ଯ୍ୟାଦା ପ୍ରଦାନ କରିପାରେ ନାହିଁ । ବିଜ୍ଞାନ ମଣିଷର ଇଚ୍ଛା ଅନିଚ୍ଛାର ବହିର୍ଭୂତ, ତାହା ଏକମାତ୍ର ସତ୍ୟ ପ୍ରତିହିଁ ଅନୁରକ୍ତ । ତେଣୁ ସମ୍ପୂର୍ଣ୍ଣ ନୈର୍ବ୍ୟକ୍ତିକ ସ୍ୱାର୍ଥଶୂନ୍ୟ, ନିଷ୍ଠାବାନ ଏବଂ ତାହା ମତାନ୍ଧତାକୁ ବର୍ଜ୍ଜନ କରେ । ପ୍ରତ୍ୟେକ ସିଦ୍ଧାନ୍ତକୁ ପରୀକ୍ଷାମୂଳକ ଦୃଷ୍ଟିରେ ଦେଖେ । ନୂତନ ତଥ୍ୟ ନୂତନ ଅଭିଜ୍ଞତା ଦ୍ୱାରା ତାକୁ ସଂଶୋଧନ ଓ ସମୃଦ୍ଧ କରେ । ତାର ଏକମାତ୍ର ଲକ୍ଷ୍ୟ—ସତ୍ୟପ୍ରାପ୍ତି ।

ବିଜ୍ଞାନର ବୈଶିଷ୍ଟ୍ୟ ତାର କୃତିତ୍ୱରେ ନାହିଁ । ତାହାର ସେହି କୃତିତ୍ୱ କମ୍ ବେଶୀ, ଛୋଟ ବା ବଡ଼ ହୋଇପାରେ । ତାର ପ୍ରକୃତ ମହତ୍ତ୍ୱ ହେଉଛି ଟେକ୍‌ନିକ୍ ବା ଜ୍ଞାନକୌଶଳ । କାରଣ ବିଜ୍ଞାନର ସେହି ଟେକ୍‌ନିକ୍ ଓ ପଦ୍ଧତି ବିଶ୍ୱଜନୀନ । ପ୍ରତ୍ୟେକ ଲୋକ ପ୍ରତ୍ୟେକ କୋଣରେ ପ୍ରତ୍ୟେକ କାଳରେ ତାକୁ ବ୍ୟବହାର କରିପାରେ । ଯଥା — ମହାକାଶ ଯାନ ବିଜ୍ଞାନର ଏକ ବିରାଟ କୃତିତ୍ୱ, କିନ୍ତୁ ତାହାର କାରିଗରି ଜ୍ଞାନକୌଶଳ ସବୁଠାରୁ ମହତ୍ତ୍ୱପୂର୍ଣ୍ଣ । ସେପରି ଜ୍ଞାନ-କୌଶଳକୁ ଯିଏ ହାସଲ କରିବ, ସେହିଁ ବିଜ୍ଞାନର କୃତିତ୍ୱକୁ ଆୟତ୍ତ କରିବ ।

ବିଜ୍ଞାନ କେବଳ ସମସ୍ୟା ବୁଝିବାରେ ସହାୟକ ନୁହେଁ, ତାହା ମଧ୍ୟ ତାର ସମାଧାନର ଉପାୟ ।

ବିଜ୍ଞାନ ଯଦି ସତ୍ୟ ଆଉ ଜଗନ୍ନାଥ ଯଦି ସତ୍ୟ ହୁଅନ୍ତି, ତେବେ ଜଗନ୍ନାଥ ଯେପରି ବିଜ୍ଞାନସମ୍ମତ ହେବେ, ବିଜ୍ଞାନ ମଧ୍ୟ ସେହିପରି ଜଗନ୍ନାଥ-ଭାବ ସମ୍ମତ ହେବା ଅନିର୍ବାର୍ଯ୍ୟ । ତାହା ହୋଇପାରେ,— ଦୁହେଁ ବିଶ୍ୱଜନୀନ ହେବାରେ । ସେମାନେ ବିଶ୍ୱଜନୀନ ହେଲାବେଳେ, ତାଙ୍କର ସେଇ ମିଳନର ଏକମାତ୍ର ପରିପ୍ରକାଶ ଘଟିବ ସାମ୍ୟ-ମୈତ୍ରୀ-ପ୍ରୀତିର ଭାବରେ । କାରଣ ସାମ୍ୟ-ମୈତ୍ରୀ-ପ୍ରୀତି ଏକମାତ୍ର ବିଶ୍ୱଜନୀନ ବ୍ୟବସ୍ଥା । ତାହା କୌଣସି ଦେଶ, ଜାତି, ବର୍ଣ୍ଣ, ଧର୍ମ ମାନେ ନାହିଁ । ତାହା ସେତେବେଳେ ବିଜ୍ଞାନ ଦ୍ୱାରା ରୂପାୟିତ ହେବ, ଯେତେବେଳେ ବିଜ୍ଞାନ ସେହିପରି ସାମ୍ୟ-ମୈତ୍ରୀ-ପ୍ରୀତି ଦ୍ୱାରା ତାର ମାନବିକ ରୂପ ଧାରଣ କରିବ । ବିଜ୍ଞାନ ଓ ଜଗନ୍ନାଥ - ଭାବ ମଧ୍ୟରେ ବ୍ୟବଧାନ, ସେମାନଙ୍କର ମିଳନର ଅଭାବ ହେଉଛି ସକଳ ଦୁର୍ଦ୍ଦଶାର ମୂଳ କାରଣ । ତାହା ପ୍ରକାଶ ପାଏ ସାମାଜିକ ବ୍ୟବହାର ମଧ୍ୟରେ । ସେହି ସାମାଜିକ ସମ୍ପର୍କ ଭିତରେହିଁ ଜଗନ୍ନାଥ - ଭାବ ତାର ରୂପ ଗ୍ରହଣ କରେ । ଆମେ ସ୍କୁଲରେ ପଢୁ ସ ପଢ଼ାଉ ସେ ଜଡ଼ରୁ ଚୈତନ୍ୟର ଉତ୍ପତ୍ତି । ବିବର୍ତ୍ତନ ତତ୍ତ୍ୱ ଅନୁଯାୟୀ ମଣିଷର ବିକାଶ । କିନ୍ତୁ ବିଶ୍ୱାସ କରୁ ବ୍ରହ୍ମାଙ୍କ ସୃଷ୍ଟିକୁ । ତାଙ୍କ ହାତଗୋଡ଼ ମୁହଁ ସ ପାଦରୁ ଜାତ ମଣିଷ ପ୍ରତି ଅନୁରୂପ ଭେଦ ବ୍ୟବସ୍ଥାକୁ ଅନୁସରଣ କରୁ । ସେମିତି ସ୍କୁଲରେ ଗ୍ରହଣ ସ ପରାଗର ବୈଜ୍ଞାନିକ ତତ୍ତ୍ୱ ପଢୁ ଓ ପଢ଼ାଉ । ତେଣେ ରାହୁ, କେତୁ ଆମ ଘର ଛାଡ଼ନ୍ତି ନାହିଁ । ଏପରିକି ଗବେଷଣା-ଲିପ୍ତ ଲୋକେ ମଧ୍ୟ ତାଙ୍କର ସଫଳତା ଲାଗି ଜ୍ୟୋତିଷ ତଥା ତାନ୍ତ୍ରିକଙ୍କ ଦ୍ୱାରସ୍ଥ ହୁଅନ୍ତି । କାରଣ ବିଜ୍ଞାନ ଆମ ଜୀବନର ନୀତି ବା ଚାଲିଚଳନର ରୀତି ନୁହେଁ । ତାହା ଜୀବିକା ନିର୍ବାହର ଉପାୟ ମାତ୍ର । ଏବେ ସମ୍ବାଦପତ୍ରମାନଙ୍କରେ ରାଶିଫଳର ପ୍ରଚାର, ସାଂପ୍ରଦାୟିକତାବାଦୀ ସ ମୌଳିକତାବାଦୀଙ୍କ ବୃଦ୍ଧି କ'ଣ ବୈଜ୍ଞାନିକ ଦୃଷ୍ଟିକୋଣ ଅଭାବର ପ୍ରମାଣ ନୁହେଁ ?

ଯେଉଁଠି ସାମାଜିକ ବ୍ୟବହାରରେ ବିଜ୍ଞାନର ଏ ଅବସ୍ଥା, ସେଠି ଜଗନ୍ନାଥଙ୍କ ସ୍ଥାନ କେଉଁଠି ? ଯାହାକି ପୁଣି ଅନ୍ଧବିଶ୍ୱାସକୁ ଆଶ୍ରାକରେ । ମଣିଷ ଜଗନ୍ନାଥ-ଭାବକୁ ଜଗନ୍ନାଥ ଧର୍ମରେ ପରିଣତ କରିଦେଇଛି । ବିଜ୍ଞାନ ଭଳି ଏଠି ମଧ୍ୟ ଜଗନ୍ନାଥ-ଭାବ ସାମ୍ୟ-ମୈତ୍ରି-ପ୍ରୀତି-ମଣିଷ ଜୀବନର ରୀତି କି ତାର ଦୈନନ୍ଦିନ ଚଳଣି ନୁହେଁ । ଜଗନ୍ନାଥ ଦର୍ମ ଜୀବିକା ନିର୍ବାହର ଏକ ସହଜ ଉପାୟ, ମୋକ୍ଷପ୍ରାପ୍ତିର ସୁଗମ ପନ୍ଥା । ପ୍ରକୃତରେ ଜଗନ୍ନାଥଙ୍କୁ ଜାଣିବାର ଏକମାତ୍ର ମାର୍ଗ ହେଉଛି ଜଗନ୍ନାଥ ଭାବକୁ ତାର ସେହି ଧର୍ମଠାରୁ ଅଲଗା କରି ଦେଖିବା ।

ଜଗନ୍ନାଥ-ଭାବ ସ ବିଜ୍ଞାନ ମଣିଷ ଲାଗି ଏକ ଅନ୍ୟର ପରିପୂରକ, ଅଥଚ ଜଗନ୍ନାଥ-ଧର୍ମ ଓ ବିଜ୍ଞାନ ପରସ୍ପରର ପରିପନ୍ଥୀ । ବିଜ୍ଞାନର ଅଗ୍ରଗତି ସହିତ ଧର୍ମର ପଛଘୁଞ୍ଚା ଜଡ଼ିତ । ଦେବତା ଈଶ୍ୱର ଯଦି କେଉଁଠି ଆଶ୍ରୟ ନିଅନ୍ତି, ତେବେ ତାହା ସେହି ବିଜ୍ଞାନର ଆଲୋକର ବାହାରେ, ଯେଉଁଠି ବିଜ୍ଞାନର ବାର୍ତ୍ତା ଏ ପର୍ଯ୍ୟନ୍ତ ପହଞ୍ଚି ପାରିନାହିଁ । ବିଜ୍ଞାନ ଲାଗି ପ୍ରକୃତିର ଅଦୃଶ୍ୟ ଜୀବାଣୁଠାରୁ ଅଚିନ୍ତନୀୟ ଜାଗତିକ ଶକ୍ତି ପର୍ଯ୍ୟନ୍ତ ସବୁକିଛି ଆବଶ୍ୟକ । ଏକମାତ୍ର

ନିଷ୍ପ୍ରୟୋଜନ, ଅନାବଶ୍ୟକ ବିଷୟ ହେଲେ ଭଗବାନ । ସେ ବିଜ୍ଞାନର କୌଣସି କାମରେ ଆସନ୍ତି ନାହିଁ । ବିଜ୍ଞାନ ତାଙ୍କୁ ପୂରାପୂରି ଉପେକ୍ଷା କରି ଚାଲେ । ତେଣୁ ବିଜ୍ଞାନ ଜଗନ୍ନାଥଙ୍କୁ ଈଶ୍ୱର ଭାବରେ ଉପେକ୍ଷା କରେ । ଧର୍ମ ଭାବରେ ପ୍ରତ୍ୟାଖ୍ୟାନ କରେ । ତାଙ୍କୁ ଅନ୍ଧବିଶ୍ୱାସ ଭାବରେ ଅନାବୃତ କଲାବେଳେ ତାଙ୍କର ସେହି ଭାବ ଆଗରେ ତାର ମସ୍ତକ ଅବନତ କରେ । ବିଜ୍ଞାନ ଯେତେ ମହା ମହା ବିସ୍ମୟ ସୃଷ୍ଟି କଲେ ବି ସାମାଜିକ ଲକ୍ଷ୍ୟ ସୃଷ୍ଟି କରିବାର କ୍ଷମତା ତାର ନାହିଁ । ମାନବିକ ମୂଲ୍ୟବୋଧରେ ମଣିଷ ଉଦ୍‌ବୁଦ୍ଧ କରିବା ଶକ୍ତି ତାର ନାହିଁ । ମଣିଷ ପ୍ରାଣରେ ମାନବିକ ଭାବର ଉଚ୍ଛ୍ୱାସ ଏବଂ ସାମାଜିକ ଜୀବନରେ ତାର ସେହି ଉଦ୍‌ବେଳନର ସୃଷ୍ଟି ବିଜ୍ଞାନର ଶକ୍ତିର ବହିର୍ଭୂତ । କିନ୍ତୁ ବିଜ୍ଞାନର ସକ୍ରିୟ ହସ୍ତକ୍ଷେପ ବିନା ସେହି ମାନବିକ ଭାବର ପ୍ରସାର ଓ ପ୍ରତିଷ୍ଠା ସମ୍ଭବ ନୁହେଁ । ବିଜ୍ଞାନ ବିନା ମାନବିକତା ନିଜର ଲକ୍ଷ୍ୟ ପୂରଣ କରିବାରେ ଅସମର୍ଥ । ତେଣୁ ଜଗନ୍ନାଥଙ୍କୁ, ଆପଣା ଭାବର ପ୍ରକୃତ ପ୍ରକାଶ ସ ପ୍ରତିଷ୍ଠା ଦିଗରେ ଆଶ୍ରା କରିବାକୁ ହେବ ସେହି ବିଜ୍ଞାନକୁ । ବିଜ୍ଞାନ ବିନା ଜଗନ୍ନାଥଙ୍କର ପ୍ରକୃତ ମାହାତ୍ମ୍ୟ ସ ପରାକାଷ୍ଠାର ଉନ୍ମେଷ କଦାପି ସମ୍ଭବ ନୁହେଁ । ସାମ୍ୟ -ମୈତ୍ରୀ-ପ୍ରୀତି-ମାନବିକତାର ସେହି ସାମାଜିକ ଲକ୍ଷ୍ୟ ସୃଷ୍ଟି କରିବାରେ ବିଜ୍ଞାନ କିପରି ଅସମର୍ଥ ଏବଂ ତାହା ନିଜେ କିପରି ଲକ୍ଷ୍ୟହୀନ, ସେ ବିଷୟରେ ସାବଧାନ ବାଣୀ ଶୁଣାଇଛନ୍ତି ବିଶ୍ୱର ସର୍ବଶ୍ରେଷ୍ଠ ବୈଜ୍ଞାନିକ ଆଇନ୍‌ଷ୍ଟାଇନ୍ ।

"... ... ....Socialism is directed towards a social ethical end. Science however can not create ends and even less in still then in human beings, science utmost can supply the means by which to attend certain ends. But ends themselves are conceived by personalities with lofty ethical ideas and of those ends are not stillborn, but vital and vigorous — are adopted and created and carried forward by those human being — who half-unconsciously, determine the social evolution of society."

"For these reasons, we should be on guard not to over-estimate science and scientific methods when it is a human problem, and we should not assume that experts are the only one who have ritht to express themselves on questions, or problems affecting organisation of society." (Why Socialism, Mainstream. June 30 1992)

.........ଅର୍ଥାତ୍ ସାମାଜିକ ନୀତିବୋଧର ଲକ୍ଷ-ଲାଭ ଦିଗରେ ସାମାଜିକବାଦ ଉଦ୍ଦିଷ୍ଟ । ବିଜ୍ଞାନ ନିଜେ କିନ୍ତୁ କୌଣସି ଲକ୍ଷ୍ୟ ସୃଷ୍ଟି କରିପାରେ ନାହିଁ , ଏପରିକି ଆହୁରି ଊଣା କାମ କରେ, ତାକୁ ମଣିଷଙ୍କ ଭିତରେ ସଞ୍ଚାରିତ କରିବାରେ ସମର୍ଥ ନୁହେଁ । ଢୁବ୍ ହେଲେ ସେଥିଲାଗି ଉପାୟ ଯୋଗାଇ ଦେଇପାରେ , ଯାହାଦ୍ୱାରାକି କୌଣସି ଲକ୍ଷ୍ୟ ହାସଲ କରିବା ସମ୍ଭବ ।

ଲକ୍ଷ୍ୟସବୁ ମହାନ୍ ଉଚ୍ଚ ଆଦର୍ଶବାନ ବ୍ୟକ୍ତିବିଶେଷଙ୍କ ଦ୍ୱାରା ପରିକଳ୍ପିତ । ସେହିସବୁ ଲକ୍ଷ୍ୟ ଯଦି ମୃତଜନ୍ମା ନ ହୁଅନ୍ତି, ବଳିଷ୍ଠ ଶକ୍ତିଶାଳୀ ହୋଇଥା'ନ୍ତି, ତେବେ ଯେଉଁମାନେ ଅର୍ଦ୍ଧଚେତନ ଭାବରେ ସାମାଜିକ ବିବର୍ତ୍ତନକୁ ନିର୍ଣ୍ଣୟ କରନ୍ତି, ସେପରି ଲୋକେ ତାକୁ ଗ୍ରହଣ କରନ୍ତି, ସୃଷ୍ଟି କରନ୍ତି ସ ତାକୁ ଆଗେଇ ନେଇଯାଆନ୍ତି ।

ମାନବିକ ସମସ୍ୟାର ପ୍ରଶ୍ନ ଆସିଲାବେଳେ ବିଜ୍ଞାନ ସ ବୈଜ୍ଞାନିକ ପଦ୍ଧତିକୁ ମାତ୍ରାଧିକ ଦୃଷ୍ଟିରେ ଦେଖିବା ଦିଗରେ ଆମକୁ ସାବଧାନ ରହିବାକୁ ହେବ । ସମାଜର ସଂଗଠନ ପଅଶ୍ନ ସମସ୍ୟା ଉପରେ କେବଳ ଯେ ବିଶେଷଜ୍ଞ ବିଶାରଦମାନଙ୍କର କହିବାର ଅଧିକାର ଅଛି, ଆମର ସେପରି ଧାରଣା ହେବା ଉଚିତ ନୁହେଁ ।''

ତେଣୁ ବିଜ୍ଞାନ ଯେତେ ବଳିଷ୍ଠ ହେଲେ ବି ତା' ଉଚ୍ଚ ମାନବିକ ଭାବ ଆଣିବାରେ ଅକ୍ଷମ । ବିଜ୍ଞାନ କେବଳ ପ୍ରମାଣ-ସିଦ୍ଧ , ନିର୍ଭରଶୀଳ ଓ ପ୍ରାଚୁର୍ଯ୍ୟ ସୃଷ୍ଟିର ଉପାୟ । ମାନବିକତା କିନ୍ତୁ ମାନବପ୍ରାଣର ମାନବିକ ଉତ୍ସ, ତାର ଅନାବିଳ ଉଚ୍ଛ୍ୱାସ, ମଣିଷ ହୃଦୟର ସ୍ୱତଃସ୍ଫୂର୍ତ୍ତ ସଂବେଗ, ତାର ଏକଳ ଐଶ୍ୱର୍ଯ୍ୟର ଐକାନ୍ତିକ ଭିତ୍ତି । ବିଜ୍ଞାନ ଓ ମାନବିକତାର ମିଳନ ହେଉଛି ପ୍ରକୃତରେ ସେହି ପ୍ରାଚୁର୍ଯ୍ୟ ଓ ଐଶ୍ୱର୍ଯ୍ୟର ମିଳନର ପ୍ରକ୍ରିୟା । ତାଙ୍କର ସେହି ମିଳନର ପରିଣତି ହେଉଛି ସାମ୍ୟ-ମୈତ୍ରୀ-ପ୍ରୀତିର ଅସୀମ ବିକାଶ, —ଜଗନ୍ନାଥ-ଭାବର ଅନନ୍ତ ପ୍ରବାହ ।

ପ୍ରକୃତିର ନିୟମର ଉଦ୍‌ଘାଟନ ସ ତାର ପ୍ରୟୋଗ ବିଜ୍ଞାନର ଭିତ୍ତି ହେଲେ, ଜଗନ୍ନାଥ-ଭାବର ସ୍ପର୍ଶରେ ତାହା କେବଳ ନିଜର ମାନବିକ ଲକ୍ଷ୍ୟ ଲାଭ କରେ , ସେମିତି ଜଗନ୍ନାଥ-ଭାବ ମାମନବ ଜୀବନର ଅନ୍ତିମ କାମନା ହେଲେ, ତାର ସେହି ଭାବର ଉପଲବ୍ଧି କେବଳ ବିଜ୍ଞାନର ବୈଜ୍ଞାନିକ ପଥରେ ନିଜର ବାସ୍ତବତାକୁ ପ୍ରକାଶ କରେ । ତେଣୁ ବିଜ୍ଞାନ ସ ଜଗନ୍ନାଥଙ୍କର ମିଳନ ଦ୍ୱାରା ନିଜର କର୍ତ୍ତବ୍ୟ ସମାଧାନ ଭିତରେ ମଣିଷ ନିଜର ସ୍ୱାଭାବିକ ମାନବିକ ଗୁଣ, ଶକ୍ତି ଓ ମହତ୍ତ୍ୱର ସାର୍ଥକତା ଲାଭ କରେ, ତାର ପ୍ରକୃତ ମାନବତ୍ୱ ପ୍ରାପ୍ତ ହୁଏ ।

ଅତଏବ ମଣିଷର ମାନବତ୍ୱ ପ୍ରାପ୍ତିର ଏକମାତ୍ର ପଥ ହେଲା ତାର ଜୀବନ-ଦର୍ଶନ ସ କର୍ମକ୍ଷେତ୍ରରେ ସେହି ବିଜ୍ଞାନ ଓ ଜଗନ୍ନାଥ-ଭାବର , ତାର ଅବିଚ୍ଛନ୍ନ ସମନ୍ୱୟର ନିରବଚ୍ଛିନ୍ନ ପ୍ରସାର ।

## ଭାବ ଓ ସ୍ୱଭାବର ସଂଯୋଗରେ

ଫୁଲ ଆପେ ଫୁଟିଲା ଭଳି, ମଣିଷର ବିକାଶ ସ୍ୱତଃସ୍ଫୁର୍ତ୍ତ ବିକାଶ ତାର ସ୍ୱାଭାବିକ ପ୍ରକୃତି । ସେହି ପ୍ରକୃତିର ଆଭିମୁଖ୍ୟ ମାନବତାର ପ୍ରକାଶନ । ସେ ତାର ସଙ୍କେତ ଦେଇଛି ନିଜ ଜୀବନର ପ୍ରଥମ ଉନ୍ମେଷରେ, ମଣିଷ ମଣିଷ ମଧ୍ୟରେ ପ୍ରଥମ ଦେଖା କଥା ଓ କାମ ଭିତରେ, — ତାର ସେଇ ଆଦ୍ୟ ସାମାଜିକ ସମ୍ପର୍କ ଦ୍ୱାରା ।

ତାର ଅତି ଅନୁନ୍ନତ ଅବସ୍ଥାରେ ମଣିଷର ସେଇ ସମ୍ପର୍କ-ଭାବ ଯେତେ ସୁପ୍ତ ବା ଅପ୍ରକାଶ୍ୟ ରହିଥିଲେ ବି ଏବଂ ସେ ନିଜ ବିଷୟରେ ଯେତେ ଅଚେତନ ଥିଲେ ମଧ, ତାହାହିଁ ତା'ର ଆଦ୍ୟ ମାନବିକ ଚେତନାର ଅମୂର୍ତ୍ତ ଉପାଦାନ। ତାର ସେହି ମାନବିକ ଭ୍ରୁଣ ଯେତେ କ୍ଷୀଣ ବା ଦୁର୍ବଳ ହେଉ ପଛେ ଏବଂ ତାର ବିକାଶ ଯେତେ ବିକୃତ ଓ ବିପଥଗାମୀ ହେଲେ ବି ତାକୁ କେହି ମଣିଷ ଠାରୁ କାଢ଼ିନେଇ ନପାରେ। ତେଣୁ ଅଜ୍ଞାନରେ ହେଉ ଅବା ସଜ୍ଞାନରେ ହେଉ , ମଣିଷର ଜୀବନଯାତ୍ରା ନିଶ୍ଚୟ ଦିନେ ମାନବିକତାର ପଥ ଗ୍ରହଣ କରିବ। ତାହା ଇତିହାସର ଗତି ଦ୍ୱାରା ଯେପରି ପ୍ରମାଣିତ, ମଣିଷର ନିଜର ଆକାଙ୍‌କ୍ଷା ଦ୍ୱାରା ସେହିପରି ପ୍ରକାଶିତ। ଇତିହାସର ଅପରିହାର୍ଯ୍ୟ ଗତି ଭଳି ଅଦମନୀୟ ମଣିଷର ସେଇ ମାନବିକ ଭାବ। ସେ ଦିଗରେ ତାର ଉଦ୍ୟମ ଯେତେ ବ୍ୟର୍ଥ ସ ବିଫଳ ହେଲେ ବି, ଏପରିକି ବାରମ୍ବାର ପଦଦଳିତ ହେଉଥିଲେ ମଧ ମଣିଷର ଅସ୍ତିତ୍ୱ ଥିବା ଯାଏ ସେମିତି ଅବ୍ୟାହତ ରହିଥିବ ତାର ସେହି ଆତ୍ମପ୍ରକାଶର ଉଦ୍ୟମ। ତାହା ଯେପରି ମଣିଷର ନିଜର ଅସ୍ତିତ୍ୱର ପ୍ରମାଣ, ସେହିପରି ତାର ମାନବତ୍ୱର ନିଦର୍ଶନ। ତାର ସେହି ଆଦ୍ୟ ସୂଚନା ସ ଅନ୍ତିମ ସନ୍ଦେଶର ଆଲୋକବର୍ତ୍ତିକା ହେଉଛି , —— ସାମ୍ୟ,-ମୈତ୍ରୀ-ପ୍ରୀତି ଯାହାର ପ୍ରତୀକ ——ଜଗନ୍ନାଥ।

ଜଗନ୍ନାଥ ଇତିହାସର ଦେବତା। ଇତିହାସ ବକ୍ଷରେ ଯେପରି ଜଗନ୍ନାଥଙ୍କର ପ୍ରକାଶନ, ସେହିପରି ଜଗନ୍ନାଥ-ଭାବର ବକ୍ଷରେ ଇତିହାସର ପ୍ରତିଫଳନ। ଇତିହାସ ବିନା ଜଗନ୍ନାଥ ଯେପରି ଅସ୍ତିତ୍ୱହୀନ, ଜଗନ୍ନାଥଙ୍କ ବିନା ଇତିହାସ ସେହିପରି ଲକ୍ଷ୍ୟହିନ, ଉଦ୍ଦେଶ୍ୟ- ଶୂନ୍ୟ। ଏଇଠି ଜଗନ୍ନାଥଙ୍କ ସହିତ ଅନ୍ୟସବୁ ଦେବତାଙ୍କର ପରକ। ସବୁ ଦେବତାଙ୍କ କୃତିତ୍ୱ ପୌରାଣିକ କଳ୍ପନାରେ ପ୍ରଚାରିତ ହେଲାବେଳେ, ଜଗନ୍ନାଥ-ଭାବର ମହତ୍ତ୍ୱ ଇତିହାସର ବାସ୍ତବତାରେ ପ୍ରତିଷ୍ଠିତ। ସେହି ଭାବର ଆକର୍ଷଣରେ ଇତିହାସ ଅଗ୍ରସର।

ଆଦିମ ସାମ୍ୟ ସମାଜର ପତନ ସ ଅସାମ୍ୟର ପ୍ରସା କାଳରେ ତାର ସେହି ଆକର୍ଷଣର ପ୍ରଥମ ଦୃଷ୍ଟାନ୍ତ ହେଲେ ଗୌତମ ବୁଦ୍ଧ। ସେ ଚାହିଁଛନ୍ତି ସବୁ ତୃଷ୍ଣା, କାମନା, ସ୍ୱାର୍ଥ ଲାଳସାର ପରିହାର। ସମସ୍ତେ ସ୍ୱାର୍ଥହୀନ ତଥା କାମନା ବାସନାଶୂନ୍ୟ ହେଲେ ପୂର୍ବର ସାମ୍ୟ-ମୈତ୍ରୀ-ପ୍ରୀତି ପ୍ରକଟିତ ହେବ। ପୃଥିବୀରୁ ଅସାମ୍ୟ-ସୃଷ୍ଟ ଦୁଃଖର କଣ୍ଟାକୁ ଦୂର କରିବାର ଉପାୟ ନ ଦେଖି ବୁଦ୍ଧଙ୍କର ଉପଦେଶ ହୋଇଛି ନିଜ ପାଦକୁ ଚର୍ମରେ ଆବୃତ୍ତ କର, ନିଜ ଭିତରୁ ତୃଷ୍ଣା କାମନା ପରିହାର କର। ସେ ନିଜେ ମଧ ତାଙ୍କର ସଂଘକୁ ସ୍ୱାର୍ଥ ସମ୍ପତ୍ତି ଶୂନ୍ୟ କାମନାବାସନାହୀନ ଭିତ୍ତିରେ ଗଢ଼ିବାର ପ୍ରୟାସ କରିଛନ୍ତି। କିନ୍ତୁ ସେମିତି ଅପ୍ରତିହତ ଭାବେ ବହିଛି ଅସାମ୍ୟର ଅବାଧ ବିକାଶର ଧାରା।

ତା ପରେ ସାମ୍ୟ, ମୁକ୍ତି, ଭ୍ରାତୃତ୍ୱର ଡାକ ଦେଇ ସମାଜକୁ ପ୍ରକମ୍ପିତ କରି ଆସିଛି ଫରାସୀ ବିପ୍ଳବ। ଲୋପ କରିଛି ମନମୁଖୀ ଏକଛତ୍ରବାଦୀ ଶାସନ। ସମାଜର ମୁଖ୍ୟ ଶତ୍ରୁ ରାଜା, ସମ୍ରାଟ ଓ ସାମନ୍ତଗଣ ଗିଲୋଟିନର ଶିକାର ହୋଇଛନ୍ତି। ତାହା ଆଇନ ଆଗରେ ସମସ୍ତଙ୍କୁ ସମାନ କରିଦେଲାବେଳେ , ତେଣେ ସୃଷ୍ଟି କରିଛି ସାମାଜିକ ଅର୍ଥନୈତିକ ଅସାମ୍ୟର ଅଗାଧ ପାରାବାର। ପୁଞ୍ଜିର ପାହାଡ଼ ସାଙ୍ଗକୁ ଦେଖାଦେଇଛନ୍ତି ସର୍ବସ୍ୱାନ୍ତ ସର୍ବହରା ଦଳ। ସାମ୍ୟର ପ୍ରଚାର ତଳେ ପ୍ରସାର ଲଭିଛି ନିର୍ମମ ଶୋଷଣର ଅଦୃଶ୍ୟ ବନ୍ଧତି।

ଅସାମ୍ୟର ବିକାଶ ହୋଇଛି ସମାଜର ଅଲିଖିତ ବିଦାନ। ମଣିଷ ମଣିଷ ମଧ୍ୟରେ, ଖାଦ୍ୟ ଖାଦକର ସମ୍ପର୍କ ହୋଇଛି ସବୁ ଧର୍ମର ମୂଳତତ୍ତ୍ୱ , ସମସ୍ତ ମତର ଲୁକ୍କାୟିତ ଲକ୍ଷ୍ୟ, ସକଳ ଶାସନର ମୂଳ ନୀତି।

ତା ପଛକୁ, ସମସ୍ତ ପ୍ରକାର ଶୋଷଣ ଅତ୍ୟାଚାର ଧ୍ୱଂସର ଡାକ ଦେଇ ଆସିଛି ରୁଷର ସର୍ବହରା ସମାଜବାଦୀ ବିପ୍ଳବ। ତାର ରଡ଼ିରେ ଥରିଉଠିଛି ସମଗ୍ର ବିଶ୍ୱ। ତାହା ଅତୀତର ସମସ୍ତ ବିପ୍ଳବଠାରୁ ମୌଳିକଭାବେ ଫରକ। ତାହା ଧ୍ୱଂସ କରିଛି ଯୁଗ ଯୁଗ ଧରି ଚାଲିଥିବା ମଣିଷ ଦ୍ୱାରା ମଣିଷର ଶୋଷଣକୁ । ଅତୀତରେ ସବୁ ବିପ୍ଳବରେ ଗୋଟାଏ ଶୋଷକ - ଶ୍ରେଣୀ ବଦଳରେ ଆଉ ଗୋଟାଏ ଶୋଷକଶ୍ରେଣୀ ଆସିନ୍ତି, ଏଇଠି ଘଟିଛି ତାର ପ୍ରଥମ ଅବସାନ। ଶୋଷିତ ସର୍ବହରା ଶ୍ରେଣୀ ହୋଇଛି ସମାଜର ମାଲିକ। ଶୋଷଣର ବିଲୋପ ହୋଇଛି ତାର ଜୀବନର ଧର୍ମ। ମଣିଷ ମଣିଷ ମଧ୍ୟରେ ଖାଦ୍ୟ-ଖାଦକ ସମ୍ପର୍କର ସ୍ଥାନରେ ତାହା ଗଢ଼ିଛି ଭାଇ ବନ୍ଧୁ ସଖା ସହୋଦରର ସମ୍ପର୍କର ଭିତ୍ତି, - - ସମାଜବାଦ ନିର୍ମାଣର ମୂଳଦୁଆ। ଯାହାର ଚରମ ବିକାଶ- ସାମ୍ୟ-ମୈତ୍ରୀ-ପ୍ରୀତି, ସେହି ଜଗନ୍ନାଥ-ଭାବର ଅଭିବ୍ୟକ୍ତି ଦିଗରେ ଅଭିପ୍ରେତ। ଆଜି ୭୦ ବର୍ଷ ପରେ ସୋଭିଏତ ରୁଷ ଓ ତାର ଢାଞ୍ଚାରେ ଗଠିତ ପୂର୍ବ ଇଉରେପରେ ସମାଜବାଦର ପତନ ଘଟିଛ। ଏକମାତ୍ର କାରଣ, ସେହି ଜଗନ୍ନାଥ - ଭାବର କ୍ରମାଗତ ଆହରଣ ମାର୍ଗରୁ ତାର ବିଚ୍ୟୁତି, ସେଥିରୁ ବିପଥଗାମୀ ହେବା। (ପରେ ଏହାର ଆଲୋଚନା)

ସେହି ସର୍ବହରା ବିପ୍ଳବର ପ୍ରଭାବ, ତାର ପ୍ରେରଣା ଓ ପ୍ରୋତ୍ସାହନରା ଫଳରେ ଲୋପ ପାଇଛି ବହୁ ଦେଶରୁ ପରାଧୀନତାର ଚିହ୍ନ, କେତେଠି ଶୋଷଣର କଳଙ୍କ। ଏବେ କେତେ ଦେଶ ସମାଜବାଦ ଗଠନରେ ବ୍ୟସ୍ତ ଥିଲା ବେଳେ, ଆଉ କେତେକ ସେହି ଆଭିମୁଖ୍ୟ ନେଇ ଅଗ୍ରସର। ତା'ଛଡା ମଣିଷ ପକ୍ଷରେ ଅନ୍ୟ ବିକଳ୍ପ ପନ୍ଥା ନାହିଁ। ଅନ୍ୟ ମାର୍ଗ ହେଲା ଅସାମ୍ୟ ଶୋଷଣର ବିସ୍ତାର, ଯାର ଶେଷ ପରିଣତି ମଣିଷ ସମାଜର ସମୂହ ନିଧନ। ସମାଜବାଦର ଏବର ବିପର୍ଯ୍ୟୟ ମଣିଷର ବିଜୟ - ପଥରେ ଏକ ଅମୋଘ ଶିକ୍ଷା ଭଳି। ପିଲା ଥିଲେ ମଧ୍ୟ ତାହାହିଁ ତା'ର ଆଦ୍ୟ ମାନବିକ ଚେତନାର ଅମର୍ତ୍ତ ଉପାଦାନ। ତାର ସେହି ମାନବିକ ଭ୍ରୂଣ ଯେତେ କ୍ଷୀଣ ବା ଦୁର୍ବଳ ହେଉ ପଛେ ଏବଂ ତାର ବିକାଶ ଯେତେ ବିକୃତ ଓ ବିପଥଗାମୀ ହେଲେ ବି ତାକୁ ହେଲେ ବି ତାକୁ କେହି ମଣିଷଠାରୁ କାଢ଼ିନେଇ ନପାରେ। ତେଣୁ ଅଜ୍ଞାନରେ ହେଉ ଅବା ସଜ୍ଞାନରେ ହେଉ, ମଣିଷର ଗତି ଦ୍ୱାରା ଯେପରି ପ୍ରମାଣିତ, ମଣିଷର ନିଜର ଆକାଙ୍କ୍ଷା ଦ୍ୱାରା ସେହିପରି ପ୍ରକାଶିତ। ଇତିହାସର ଅପରିହାର୍ଯ୍ୟ ଗତି ଭଳି ଅଦମନୀୟ ମଣିଷର ସେଇ ମାନବିକ ଭାବ। ସେ ଦିଗରେ ତାର ଉଦ୍ୟମ ଯେତେ ବ୍ୟର୍ଥ ଓ ବିଫଳ ହେଲେ ବି, ଏପରିକି ବାରମ୍ବାର ପଦଦଳିତ ହେଉଥିଲେ ମଧ୍ୟ ମଣିଷର ଅସ୍ତିତ୍ୱ ଥିବା ଯାଏ ସେମିତି ଅବ୍ୟାହତ ରହିଥିବ ତାର ସେହି ଆତ୍ମବିକାଶର ଉଦ୍ୟମ। ତାହା ଯେପରି ମଣିଷର ନିଜର ଅସ୍ତିତ୍ୱର ପ୍ରମାଣ, ସେହିପରି ତାର ମାନବତ୍ୱର ନିଦର୍ଶନ। ତାର ସେହି ଆଦ୍ୟ ସୂଚନା ଓ ଅନ୍ତିମ ସନ୍ଦେଶର ଅଶୋକବର୍ତ୍ତିକା ହେଉଛି, - ସାମ୍ୟ - ମୈତ୍ରୀ - ପ୍ରୀତି,ଯାହାର ପ୍ରତୀକ - ଜଗନ୍ନାଥ।

ଜଗନ୍ନାଥ ଇତିହାସର ଦେବତା । ଇତିହାସବକ୍ଷରେ ଯେପରି ଜଗନ୍ନାଥଙ୍କର ପ୍ରକାଶନ, ସେହିପରି ଜଗନ୍ନାଥ - ଭାବର ବକ୍ଷରେ ଇତିହାସର ପ୍ରତିଫଳନ । ଇତିହାସ ବିନା ଜଗନ୍ନାଥ ଯେପରି ଅସ୍ତିତ୍ୱହୀନ, ଜଗନ୍ନାଥଙ୍କ ବିନା ଇତିହାସ ସେହିପରି ଲକ୍ଷ୍ୟହୀନ, ଉଦ୍ଦେଶ୍ୟ - ଶୂନ୍ୟ । ଏଇଠି ଜଗନ୍ନାଥଙ୍କ ସହିତ ଅନ୍ୟସବୁ ଦେବତାଙ୍କର ଫରକ । ସବୁ ଦେବତାଙ୍କ କୃତିତ୍ୱ ପୌରାଣିକ କଳ୍ପନାରେ ପ୍ରଚାରିତ ହେଲାବେଳେ, ଜଗନ୍ନାଥ - ଭାବରେ ମହତ୍ତ୍ୱ ଇତିହାସର ବାସ୍ତବତାରେ ପ୍ରତିଷ୍ଠିତ । ସେହି ଭାବର ଆକର୍ଷଣରେ ଇତହାସ ଅଗ୍ରସର ।

ଆଦିମ ସାମ୍ୟସମାଜର ପତନ ଓ ଅସାମ୍ୟର ପ୍ରସାର କାଳରେ ତାର ସେହି ଅକାର୍ଷଣରେ ପ୍ରଥମ ଦ୍ୟଷ୍ଟାନ୍ତ ହେଲେ ଗୌତମ ବୁଦ୍ଧ । ସେ ଚାହିଁଛନ୍ତି ସବୁ ତୃଷ୍ଣା, କାମନା, ସ୍ୱାର୍ଥ ଲାଳସାର ପରିହର । ସମସ୍ତେ ସ୍ୱାର୍ଥହୀନ ତଥା କାମନା ବାସନାଶୂନ୍ୟ ହେଲେ ପୂର୍ବର ସାମ୍ୟ - ମୈତ୍ରୀ - ପ୍ରୀତି ପ୍ରକଟିତ ହେବ । ପୃଥିବୀରୁ ଅସାମ୍ୟ - ସୃଷ୍ଟି ଦୁଃଖର କଣ୍ଟାକୁ ଦୂର କରିବାର ଉପାୟ ନ ଦେଖି ବୁଦ୍ଧଙ୍କର ଉପଦେଶ ହୋଇଛି ନିଜ ପାଦକୁ ଚର୍ମରେ ଆବୃତ କର, ନିଜ ଭିତରୁ ତୃଷ୍ଣା କାମନାବାସନାହୀନ ଭିତ୍ତିରେ ଗଢ଼ିବାର ପ୍ରୟାସ କରିଛନ୍ତି ନେ କିନ୍ତୁ ସେମିତି ଅପ୍ରତିହତ ଭାବେ ବହିଛି ଅସାମ୍ୟର ଅବାଧ ବିକାଶର ଧାରା ।

ତା ପଛକୁ, ସମସ୍ତ ପ୍ରକାର ଶୋଷଣ ଅତ୍ୟାଚାର ଧ୍ୱଂସର ଡାକ ଦେଇ ଆସିଛି ରୁଷର ସର୍ବହରା ସମାଜବାଦୀ ବିପ୍ଳବ । ତାର ରଡିରେ ଥରିଉଠିଛି ସମଗ୍ର ବିଶ୍ୱ ତାହା ଅତୀତର ସମସ୍ତ ବିପ୍ଳବ ଠାରୁ ମୌଳିକଭାବେ ଫରକ । ତାହା ଧ୍ୱଂସ କରିଛି ଯୁଗ ଯୁଗ ଧରି ଚାଲିଥିବା ମଣିଷ ଦ୍ୱାରା ମଣିଷର ଶେ୍ଷଣକୁ । ଅତୀତରେ ସବୁ ବିପ୍ଳବରେ ଗୋଟାଏ ଶୋଷକଶ୍ରେଣୀ ଆସିଛି, ଏଇଠି ଘଟିଛି ତାର ପ୍ରଥମ ଅବସାନ । ଶେଷିତ ସର୍ବହରା ଶ୍ରେଣୀ ହୋଇଛି ସମାଜର ମାଲିକ । ଶୋଷଣର ବିଲୋପ ହୋଇଛି ତାର ଜୀବନର ଧର୍ମ ମଣିଷ ମଣିଷ ମଧ୍ୟରେ ଖାଦ୍ୟ-ଖାଦକର ସର୍ମ୍ପକର ସ୍ଥାନରେ ତାହା ଗଢ଼ିଛି ଭାଇ ବନ୍ଧୁ ସଖା ସହୋଦରର ସମ୍ପର୍କର ଭିତ୍ତି, -ସମାଜବାଦ ନିର୍ମାଣର ମୂଳଦୁଆ । ଯାହାର ଚରମ ବିକାଶ-ସାମ୍ୟମୈତ୍ରୀ-ପ୍ରୀତି, ସେହି ଜଗନ୍ନାଥ-ଭାବର ଅଭିବ୍ୟକ୍ତି ଦିଗରେ ଅଭିପ୍ରେତ । ଆଜି ୭୦ ବର୍ଷ କରେ ସୋଭିଏତ ରୁଷ ଓ ତାର ଢାଞ୍ଚାରେ ଗଠିତ ପୂର୍ବ ଇଉରୋପରେ ସମାଜବାଦର ପତନ ଘଟିଛି । ଏକମାତ୍ର କାରଣ, ସେହି ଜଗନ୍ନାଥ-ଭାବର କ୍ରମାଗତ ଆହରଣ ମାର୍ଗଅରୁ ତାର ବିଚ୍ୟୁତି, ସେଥିରୁ ବିପଥଗାମୀ ହେବା । (ପରେ ଏହାର ଆଲୋଚନା)

ସେହି ସର୍ବହରା ବିହ୍ଳବର ପ୍ରଭାବ, ତାର ପ୍ରେରଣା ଓ ପ୍ରୋତ୍ସାହନାର ଫଳରେ ଲୋପ ପାଇଛି ବହୁ ଦେଶରୁ ପରାଧୀନତାର ଚିହ୍ନ, କେତେଠି ଶୋଷଣର କଳଙ୍କ । ଏବେ କେତେ ଦେଶ ସମାଜବାଦ ଗଠନରେ ବ୍ୟସ୍ତ ଥିଲା ବେଳେ, ଆଉ କେତେକ ସେହି ଆଭିମୁଖ୍ୟ ନେଇ ଅଗ୍ରସର । ତା ଛଡ଼ା ମଣିଷ ପକ୍ଷରେ ଅନ୍ୟ ବିକଳ୍ପ ପନ୍ଥା ନାହିଁ । ଅନ୍ୟ ମାଗ୍ର ହେଲା ଅସାମ୍ୟ ଶୋଷଣର ବିସ୍ତାର, ଯାର ଶେଷ ପରିଣତି ମଣିଷ ସମାଜର ସମୂହ ନିଧନ । ସମାଜବାଦର ଏବର ବିପର୍ଯ୍ୟ ମଣିଷର ବିଜୟ-ପଥରେ ଏକ ଅମୋଘ ଭଳି । ପିଲା ଚାଲି ଶିଖିବା ଆଗରୁ ଯେପରି ବାରମ୍ବାର ପଡ଼େ ଉଠେ, ବେଳେ ବେଳେ ମୁଣ୍ଡ ଫାଟେ, ଗୋଡ଼ହାତ ଭାଙ୍ଗେ, ସେହିପରି ମଣିଷର ଏହି ଶିକ୍ଷା । ତାକୁ ମାନବିକ ପଥରେ

ଚାଲି ଶିଖିବାକୁ ହେଲେ ଅନୁରୂପ ଅବସ୍ଥା ଦେଇ ଯିବାକୁ ହେବ । ସମସ୍ତ ଦୁର୍ଘଟଣା ସତ୍ତ୍ୱେ ଚାଲିବା ଯେପରି ଶିଶୁର ସହଜାତ ପ୍ରକୃତି , ସମସ୍ତ ବିପର୍ଯ୍ୟୟ ସତ୍ତ୍ୱେ ମାନବିକତାର ପଥରେ ଅଗ୍ରସର ହେବା ସେମିତି ମଣିଷର ଅନ୍ତର୍ନିହିତ ସ୍ୱଭାବ ।

ଜଗନ୍ନାଥ-ଭାବ ଓ ମଣିଷର ଅନ୍ତର୍ନିହିତ ମାନବିକ ସ୍ୱଭାବ, ଏମାନେ ପରସ୍ପରଠୁ ଭିନ୍ନ ନୁହନ୍ତି । ଉଭୟ ଏକ ଓ ସମାନ ଉପାଦାନରେ— ସାମ୍ୟ-ମୈତ୍ରୀ-ପ୍ରୀତିରେ ଗଢ଼ା । ଦୁହିଁଙ୍କର ପ୍ରକାଶର ପରିସର ଭିନ୍ନ ହେଲେ ବି ଶେଷ ପରିଣାମରେ ଦୁହେଁ ଅଭିନ୍ନ, ଦୁହିଁଙ୍କର ମିଳନ ସମ୍ଭବପର । ଜଗନ୍ନାଥ-ଭାବ ଜଗତର ବାସ୍ତବ ଜୀବନରେ ରୂପାନ୍ତରିତ ହେଲାବେଳେ, ମଣିଷର ଅନ୍ତର୍ନିହିତ ସ୍ୱଭାବ ରୂପ ନିଏ ତାର ସେହି ଅମୂର୍ତ୍ତ ମର୍ମର ଅବିଶ୍ରାନ୍ତ ଉଦ୍‌ବେଳନରେ, ବୋହିଯାଏ ମାନବିକ ଉଚ୍ଛ୍ୱାସ ରୂପରେ, ଜୀବନ କର୍ମ ଭିତରେ ।

ଧର୍ମ ଦୃଷ୍ଟିରୁ ଦେଖିଲେ, ଜଗନ୍ନାଥ ଯେପରି ଅଚଳ ଓ ବିକାଶହୀନ, ତାଙ୍କୁ ଆଶ୍ରା କରି ମଣିଷ ମଧ୍ୟ ସେହିପରି ଅଚଳ ଓ ବିକାଶହୀନ ହୋଇପଡ଼େ । ଜଗନ୍ନାଥ ମାହାତ୍ମ୍ୟ ଯେପରି କେବଳ ତାଙ୍କ ଗୁଣ-କୀର୍ତ୍ତନରେ ସୀମାବଦ୍ଧ, ତାଙ୍କ ପ୍ରତି ମଣିଷର ସର୍ବଶ୍ରେଷ୍ଠ ପ୍ରାର୍ଥନା ସେହିପରି ସବୁବେଳେ 'ଶରଧା ବାଲିରୁ ହାତେ ।'

ଭାବ ଦୃଷ୍ଟିରୁ ବିଚାରିଲେ, ଜଗନ୍ନାଥ ସର୍ବୋଚ୍ଚଭାବ ରୂପରେ ଯେପରି ସୀମାତୀତ , ବାସ୍ତବ ଜଗତରେ ତାଙ୍କର ବ୍ୟବହାର ସେହିପରି ସୀମାହୀନ ଓ ଅବଧିଶୂନ୍ୟ । ଯାହା ସଦା ବିକାଶଶୀଳ ଓ ବ୍ୟବହାରସିଦ୍ଧ, ତାହା ସତ୍ୟର ଅବ୍ୟର୍ଥ ଶକ୍ତି ବହନ କରେ । ଆଉ ତାହାହିଁ ବିଜ୍ଞାନର ନିର୍ଦ୍ଦେଶ । ଜଗନ୍ନାଥ-ଭାବ ସେହି ସାମ୍ୟ-ମୈତ୍ରୀ-ପ୍ରୀତିର ବିକାଶ ସଦା ଗତିଶୀଳୟ । ତାର ଗତି ରହିଛି, ଗନ୍ତବ୍ୟ ନାହିଁ । ସେହି ଭାବ ଯେହେତୁ ବ୍ୟବହାରସିଦ୍ଧ, ତେଣୁ ସମଗ୍ର ମାନବ ଜଗତର ଚିର ଆକାଂକ୍ଷିତ ଅଭିଳାଷ ।

ଜଗନ୍ନାଥ -ଭାବ , ତାର ସେହି ଗତିଶୀଳତା ଓ ଯଥାର୍ଥତା ଯୋଗୁଁ, ଯୁଗେ ଯୁଗେ ବୈଜ୍ଞାନିକ ସତ୍ୟର ସନ୍ଧାନ ଦିଏ । ମଣିଷ ତାର ସେହି ମାନବିକ ସ୍ୱଭାବର ମହତ୍ତ୍ୱ ଯୋଗୁଁ , ତାକୁ ଆହରଣରେ ସଦା ଉଦ୍ୟମଶୀଳ । ସମସ୍ତ ଘାତ ପ୍ରତିଘାତ , ବିପର୍ଯ୍ୟୟ ସତ୍ତ୍ୱେ ମଣିଷର ସେହି ଉଦଅମରେ ତିଳେ ହେଲେ ବିରାମ ନାହିଁ । ତାର ପ୍ରମାଣ ସେହି ଇତିହାସ ।

ଇତିହାସ କହେ, ମଣିଷ ପ୍ରଥମେ ବୁଦ୍ଧଭଙ୍କ ଭିତର ଦେଇ କାମନା ବିନାଶରେ ସାମ୍ୟର ପଥ ଖୋଜିଛି । ଦ୍ୱିତୀୟରେ , ଫରାସୀ ବିପ୍ଳବ ଭିତାରେ ଆଇନରେ ସାମ୍ୟ ଅଣି ବ୍ୟକ୍ତିଗତ କାମନା ଉତ୍ପାଦନ ଦିଗରେ ପୂରଣ ବୃଦ୍ଧି କରିବା ଭିତରେ ଅସାମ୍ୟକୁହିଁ ବୃଦ୍ଧି କରିଛି । ତୃତୀୟରେ , ମଣିଷ ସର୍ବହରା ବିପ୍ଳବ ଦେଇ ସମସ୍ତ ଶୋଷଣ ଅସାମ୍ୟକୁ ଲୋପ କରି ସାମ୍ୟ ଆଣିଲେ ମଧ୍ୟ ଯେହେତୁ ସମଷ୍ଟିର କାମନା ପୂରଣ ଦିଗରେ ଉତ୍ପାଦନର ପର୍ଯ୍ୟାପ୍ତ ବୃଦ୍ଧି କରିପାରି ନାହିଁ ଏବଂ ସମାନ ଭାବରେ ରାଷ୍ଟ୍ର କ୍ଷମତା ବିତରଣ କରି ପାରିନାହିଁ, ସେହେତୁ ବଫଳତା ହେଇଛି ତାର ପରିଣତି ।

ଇତିହାସ ଜଣାଇ ଦିଏ , ପ୍ରଥମତଃ, ସାମ୍ୟ- ମୈତୀ-ପ୍ରୀତିର ମାର୍ଗର ଅନ୍ୱେଷଣରେ ମଣିଷର ଟିକିଏ ହେଲେ ବିରାମ ନାହିଁ । ତାହା ସବୁବେଳେ, ସବୁକାଳରେ ସେମିତି ଅବ୍ୟାହତ

ରହିଛି । ଦ୍ୱିତୀୟରେ, ସେ ଦିଗରେ ତାର ଉଦ୍ୟମ ଯେତେ ବଫଳ ହେଲେ ବି ତାର ପ୍ରତ୍ୟେକଟି ପଦକ୍ଷେପ ପୂର୍ବ ତୁଳନାରେ ଅଧିକ ଅଗ୍ରସରତା ଅଧିକ ନିଶ୍ଚୟତା ଆଣେ । ତୃତୀୟରେ , ସବୁ ବିଫଳତା ଓ ସମସ୍ତ ବିପର୍ଯ୍ୟୟକୁ ଅତିକ୍ରମ କରିବାର ଅନ୍ତର୍ନିହିତ ଶକ୍ତି ମଣିଷ ରହିଛି । ଚତୁର୍ଥରେ , ତାର । ସେହି ଅସୀମ ଅଫୁରନ୍ତ ଶକ୍ତିର ଉତ୍ସ ହେଉଛି ମଣିଷର ନିଜର ମାନବିକ ସ୍ୱଭାବ ସହିତ ବିଶ୍ୱବ୍ୟାପ୍ତ ଜଗନ୍ନାଥ-ଭାବର ଅଦୃଶ୍ୟ ମିଳନ ।

ସେହି ମିଳନର ଭାବ , ଯାହାକୁ ମଣିଷ ଜନ୍ମରୁ ତାର ଅବଚେତନରେ ଧରି ଚାଲିଛି, ଯାହାକୁ ସେ ଅଚେତନଭାବେ ଅନୁସରଣ କରେ , ଅଜିର ଅବସ୍ଥା ଦରକାର କରେ ତାର ସଚେତନ ଉପଲବ୍ଧି ।



# ସପ୍ତଦଶ ପର୍ବ

## ସାମ୍ୟ ମୈତ୍ରୀର ପୀଠରେ

ମଣିଷ ଯେବେ ଚାହେଁ ନିଜ ଧର୍ମକୁ ସହଜରେ ବଦଳାଇ ନେଇପାରେ । ସ୍ୱଭାବ କିନ୍ତୁ ତାର ସହଜାତ; ଚାହିଁଲେ ବି ତାକୁ ଛାଡିପାରେ ନାହିଁ । ଜଗନ୍ନାଥ -ଧର୍ମର ପରିବର୍ତ୍ତନ ରହିଛି, ତାଙ୍କ ଭାବର କିନ୍ତୁ ପରିବର୍ତ୍ତନ ନାହିଁ ବିଭିନ୍ନ କାଳାର ।ସେହି ଧର୍ମର ଭିନ୍ନ ଭିନ୍ନ ମତ ଓ ବାଖ୍ୟାର ଅଭାବ ନାହିଁ, କିନ୍ତୁ ତାଙ୍କର ଭାବ, -ସାମ୍ୟ,-ମୈତ୍ରୀ - ପ୍ରୀତି ଘେନି ସମସ୍ତେ ଏକମତ । ତାର ଆଉ ଦ୍ୱିତୀୟ ବ୍ୟାଖ୍ୟା ନାହିଁ । ତାହା ଯେପରି ଅପରିବର୍ତ୍ତନୀୟ, ସେହିପରି ସତ୍ୟ । କାରଣ, ତା'ବିନା ଜଗନ୍ନାଥ ଯେପରି ଜଗନ୍ନାଥ ନୁଅନ୍ତି, ମଣିଷ ସେହିପରି ମାନବତ୍ୱହୀନ ସେଇ ଭାବର ପ୍ରତିଭୂ ଭାବରେ ଜଗନ୍ନାଥଙ୍କ ପ୍ରତିଫଳନ, ସେହି ଭାବର ଉପଲବ୍ଧିରେ ମଣିଷର ମାନବତ୍ୱର ପ୍ରକାଶ ।

ତେବେ ସାମ୍ୟ -ମୈତ୍ରୀ -ପ୍ରୀତି — ଏଇ ପଦକ ଛଡା ଜଗନ୍ନାଥଙ୍କର ଆଉ କିଛି ବାଣୀ ନାହିଁ । ତାହା କ 'ଣ, କେବେ ଓ କିପରି ଆସିବ , ତାକୁ ଆଣିବାର ଉପାୟ ଅଦି ବିଷୟରେ ସେ ସମ୍ପୂର୍ଣ୍ଣ ନୀରବ । ତାର ଲେଶ ମାତ୍ର ସୂଚନା ଜଗନ୍ନାଥଙ୍କଠି ନାହିଁ । ଜଗନ୍ନାଥଙ୍କ ନାମରୁ ନାମରୂ କେବଳ ଜଣାଯାଏ ଯେ , ସେଇ ଭାବର ମହତ୍ତ୍ୱ ଜଗତପ୍ରସାରୀ ।

ବିଶ୍ୱରେ ଯେତେ ଧର୍ମ ମତ ଆଦର୍ଶ ଓ ମତବାଦ ରହିଛି , କେହି ଗୋଟିଏ ଜଗନ୍ନାଥ -ଭାବର ପାଖ ମାଡନ୍ତି ନାହିଁ । ସେମାନେ ପ୍ରତେକେ ନିଜ ନିଜର ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଓ ନିର୍ଦ୍ଧାରିତ ବିଧାନ ଭିତରେ ଆବଦ୍ଧ ।ତାଙ୍କର ସଂକୀର୍ଣ୍ଣ ଗଣ୍ଡର ବାହାରକୁ ବାହାରି ପାରନ୍ତି ନାହିଁ । ବାହାରିବା ମାନେ ନିଜର ନିଜତ୍ୱ ହରାଇବା । ତେଣୁ ଜଗନ୍ନାଥ -ଭାବ ଯେତେ ଉତ୍କୃଷ୍ଟ ଓ ମହତ୍ତ୍ୱପୂର୍ଣ୍ଣ ହେଲେ ବି ତାକୁ ସେମାନେ ଗ୍ରହଣ କରିବାରେ ସମର୍ଥ ନୁହନ୍ତି । ଏଠି ଜଗନ୍ନାଥଙ୍କ -ଭାବକୁ ପ୍ରକାଶ କରିବେ କିଏ ? କାହା ଜରିଆରେ ଜଗନ୍ନାଥ ତାଙ୍କର ଇଚ୍ଛା ଓ ଉଦ୍ଦେଶ୍ୟ

ପୂରଣ କରିବେ ? କାରଣ ଜଗନ୍ନାଥ -ଭାବ ପ୍ରାପ୍ତିର ମୂଳ ସର୍ତ୍ତ ହେଲା ମଣିଷ ଦ୍ୱାରା ମଣିଷର ଶୋଷଣର ବିଲୋପ ଓ ସାମ୍ୟର ପ୍ରତିଷ୍ଠା । ଶୋଷଣ ଓ ସାମ୍ୟ କସ୍ମିନ୍‌କାଳେ ଏକାସାଙ୍ଗରେ ଯାଇ ନ ପାରନ୍ତି । ଶୋଷଣ ଥିଲା ପର୍ଯ୍ୟନ୍ତ ସାମ୍ୟ ମୈତ୍ରୀ ପ୍ରୀତିର ପ୍ରଶ୍ନ ନାହିଁ । ଦ୍ୱିତୀୟରେ ଜଗନ୍ନାଥ-ଭାବର ବିସ୍ତାର ବିଶ୍ୱବ୍ୟାପୀ ହେଲାବେଳେ, ଆଉ ସମସ୍ତେ ନିଜ ନିଜର ଗୋଷ୍ଠୀ, ସମ୍ପ୍ରଦାୟ ମଧ୍ୟରେ ସୀମାବଦ୍ଧ । ସେମାନେ ତାଙ୍କର ସେଇ କ୍ଷୁଦ୍ର ପରିସର ମଧ୍ୟରେ ଜଗନ୍ନାଥଙ୍କର ବିଶ୍ୱଭାବକୁ ଧାରଣା କରିବେ କିମିତି ? ତା କଣ କେବେ ସମ୍ଭବ?

ଜଗନ୍ନାଥ ପୁରାଣର ଦେବତା ନୁହନ୍ତି । ତାଙ୍କ ରୂପ ''ବିଶ୍ୱ-ରୂପ'' ଭଳି ଏକ ପୌରାଣିକ ବିଶ୍ୱାସ ନୁହେଁ । ଜଗନ୍ନାଥ ଇତିହାସର ଦେବତା । ତାଙ୍କର ସେଇ ଭାବ ରୂପ ଇତିହାସର ଭାବ-ରୂପ । ତେଣୁ ଇତିହାସ ବକ୍ଷରେ,- ପ୍ରତ୍ୟେକ ମାନବର ବାସ୍ତବ ଜୀବନରେ ତାକୁ ପ୍ରତିଫଳିତ କରିବାକୁ ହେବ ।

ଯେତେବେଳେ ଅନ୍ୟ କୌଣସି ଧର୍ମ, ମତ ଓ ଭାବାଦର୍ଶ ଭୁଲରେ ସୁଦ୍ଧା ଶୋଷଣର ବିଲୋପ ଓ ସାମ୍ୟର ପ୍ରତିଷ୍ଠାର ନାମ ଉଚ୍ଚାରଣ କରନ୍ତି ନାହିଁ, ସେତେବେଳେ କିଏ ସେହି ଜଗନ୍ନାଥ ଭକ୍ତ ? ତାକୁ କରିବ କିଏ ?

ସେହି ଭକ୍ତିର ପ୍ରମାଣ ବିଶ୍ୱାସରେ ନାହିଁ, ରହିଛି ମଣିଷର ବାସ୍ତବ ଆଦର୍ଶ ଆଉ କର୍ମ ଭିତରେ, ଆଖିବୁଜା ଧ୍ୟାନରେ ନୁହେଁ. ଆଖିବୁଜା ଧ୍ୟାନରେ ନୁହେଁ, ଆଖି ଖୋଲା କାମରେ । ତେଣୁ ଜଗନ୍ନାଥ-ଭାବକୁ ଇତିହାସରେ ରୂପାୟିତ କରିବାକୁ ହେବ ନିଜର କର୍ମ, ପ୍ରକୃତ କର୍ମ ଦ୍ୱାରା । ଯେଉଁ ଭାବ ବିନା ଜଗନ୍ନାଥ ଜଗନ୍ନାଥ ନୁହଁନ୍ତି କିମ୍ବା ମଣିଷ ମନୁଷ୍ୟ ପଦବାଚ୍ୟ ନୁହେଁ, ସେହି ଭାବ ବିନା ମଣିଷ ତାଙ୍କର ଭକ୍ତ ହେବ କିପରି ? ଜଗନ୍ନାଥ -ଭାବର ଭକ୍ତ ହେବା ବିନା ସେହି ଭକ୍ତି ନିଶ୍ଚୟ ଛଳନାପୂର୍ଣ୍ଣ ଓ ତାତ୍‌ପର୍ଯ୍ୟହୀନ ସିନା ! ଜଗନ୍ନାଥଙ୍କ ସହିତ ସମଗୋତ୍ରଜ ହେବାରେ ହିଁ କେବଳ ଭକ୍ତ ତାର ଭକ୍ତିର ସ୍ୱାଭାବିକ ମର୍ଯ୍ୟାଦା ଲାଭ କରିପାରେ ।

ଜଗନ୍ନାଥ ଯଦି ଏପରି ଭକ୍ତର ସନ୍ଧାନ ନ ଦିଅନ୍ତି ବା ତାକୁ ସୃଷ୍ଟି ନ କରନ୍ତି,- ଜାଣିବାକୁ ହେବ ସେ ଏକ ଅଳୀକ ଅବାସ୍ତବ ଶକ୍ତି ହୋଇ ରହିବେ । କାରଣ ତାହା ବିନା ତାଙ୍କର ସେଇ ଭାବ ସବୁଦିନ ପାଇଁ ଏକ ଅବାସ୍ତବ ଓ ଅଳୀକ ବିଶ୍ୱାସ ହୋଇ ରହିଯିବ । ତେଣେ ମଣିଷ ଯଦି ସେହିପରି ଏକ ମାଧ୍ୟମ ସୃଷ୍ଟି ନ କରେ, ଜାଣିବାକୁ ହେବ ସେ ମଧ୍ୟ ସଦା ସେମିତି ଅମଣିଷ ହୋଇ ରହିଥିବ । ତାର ମାନବିକତା ଲାଭ କଦାପି ସମ୍ଭବ ହେବ ନାହିଁ । କିନ୍ତୁ ଜଗନ୍ନାଥଙ୍କ ଭାବ ଅସତ୍ୟ ନୁହେଁ କି ମଣିଷର ''ଆତ୍ମା'' ମାନବତ୍ୱହୀନ ନୁହେଁ । ତେଣୁ ଜଗନ୍ନାଥଙ୍କର ସୃଷ୍ଟ ତାଙ୍କର ସେଇ ସ୍ୱାଭାବିକ ଭକ୍ତ ଏବଂ ମଣିଷ ସୃଷ୍ଟି ତାର ସେଇ ସ୍ୱତଃସ୍ଫୂର୍ତ୍ତ ମାଧ୍ୟମ ହେଉଛି—— ମାର୍କ୍‌ସ୍‌ବାଦ ।

ଜଗନ୍ନାଥ ଓ ମାର୍କସବାଦ, ଏମାନଙ୍କର ଆତ୍ମୀୟତା ଅତି ଘନିଷ୍ଠ । ଏହା ଶୁଣିଲାମାତ୍ରେ ଲୋକର ଆଖି ଛାଏଁ ଛାଏଁ ଖୋସି ହୋଇଯିବ, ଲୋକେ ନିଜ କାନକୁ ବିଶ୍ୱାସ କରିପାରିବେ

ନାହିଁ । କିନ୍ତୁ ତାହା କେବଳ ଏକ ସାଧାରଣ ସତ୍ୟ ନୁହେଁ , ତାହା ମଣିଷର ନିଜର ମୁକ୍ତି,- ମାନବତ୍ୱ ପ୍ରାପ୍ତିର ଏକମାତ୍ର ପଥ । ସେଥିଲାଗି ସେହି ଆତ୍ମୀୟତାକୁ ଗ୍ରହଣ କରିବାକୁ ସେ ବାଧ୍ୟ । ସେ ଦିଗରେ ତାର ଅନବରତ ଉଦ୍ୟମର ସାକ୍ଷୀ ନିଜେ ସେହି ଇତିହାସ ।

ଜଗନ୍ନାଥ -ଭାବ ଓ ମାର୍କସ୍ ବାଦର ମିଳନ ଯେପରି ଇତିହାସର ସ୍ୱାଭାବିକ ଗତି, ସେହିପରି ବିଜ୍ଞାନର ଅପରିହାର୍ଯ୍ୟ ସିଦ୍ଧାନ୍ତ ଆଉ ମଣିଷର ମାନବିକତାର ଅବଶ୍ୟମ୍ଭାବୀ ପରିଣତି । ଜଗନ୍ନାଥ-ଭାବ ମଣିଷର ଅନ୍ତର୍ନିହିତ ଆକାଙ୍କ୍ଷା ହେଲେ ମାର୍କସ୍‌ବାଦ ହୁଏ ଠିକ୍ ସେଇ ମାନବିକ ଆକାଙ୍କ୍ଷା ପୂରଣର ବୈଜ୍ଞାନିକ ତତ୍ତ୍ୱ । ଜଗନ୍ନାଥ-ଭାବ ମାନବତାର ଅନ୍ତର୍ନିହିତ ମର୍ମ ହେଲେ, ସେହି ବିମୂର୍ତ୍ତ ମର୍ମକୁ ମୂର୍ତ୍ତିମନ୍ତ କରେ ମାର୍କସ୍‌ବାଦ । ଜଗନ୍ନାଥ-ଭାବ ମାନବ ସହିତ ମାନବର ମିଳନ, ବିଶ୍ୱ ପ୍ରକୃତି ସହିତ ମାନବର ଏକତ୍ୱ ଏବଂ ମାନବ ସହିତ ମାନବତାର ସମନ୍ୱୟର ଇଙ୍ଗିତ ଦେଲାବେଳେ ତାକୁ ରୂପାୟିତ କରିବାର ଉପାୟର ସନ୍ଧାନ ଦିଏ ମାର୍କସବାଦ ।

ଜଗନ୍ନାଥ-ଭାବ ଯେପରି ଜଗତପ୍ରସାରୀ, ମାର୍କସ୍‌ବାଦ ସେହିପରି ଆନ୍ତର୍ଜାତୀୟ । ଜଗନ୍ନାଥ-ଭାବ ଯେପରି ସବମତ, ବିଶ୍ୱାସ ଓ ଧର୍ମ ଧାରଣାରୁ ଉର୍ଦ୍ଧ୍ୱରେ, ମାର୍କସବାଦ ସେହିପରି ସବୁ ଧର୍ମ ,ମତ, ବିଶ୍ୱାସ ଓ ଧାରଣାର ମୂଳକୁ ଉଦ୍‌ଘାଟନ କରେ । ଜଗନ୍ନାଥ-ଭାବ ଯେପରି ବିଭିନ୍ନ ଜାତି, ଗୋଷ୍ଠି ଓ ସମ୍ପ୍ରଦାୟରେ ବିଭକ୍ତ ଲୋକଙ୍କୁ ସାମ୍ୟ-ମୈତ୍ରୀ-ପ୍ରୀତିର ଡୋରି ବାନ୍ଧେ ସେହିପରି ମାର୍କସ୍‌ବାଦ ବିଭିନ୍ନ ଜାତି, ଶ୍ରେଣୀ ଓ ସ୍ୱାର୍ଥରେ ବିଭକ୍ତ ମଣିଷକୁ ଶୋଷଣଶୂନ୍ୟ ଶାସନଶୂନ୍ୟ କରି ସାମ୍ୟ-ମୈତ୍ରୀର ପତାକା ତଳେ ଗୋଟାଏ କରି ଗଢ଼େ । ଉଭୟ ବ୍ୟକ୍ତି ମାନବଙ୍କୁ ପରିଣତ କରନ୍ତି ବିଶ୍ୱମାନବରେ । ଜଗନ୍ନାଥ ଭାବ ଯେପରି ନିର୍ମଳ ମନ, ନ୍ୟାୟୋଚିତ ବିଚାର ଓ ସୁନିଷ୍ଠ ଆଚରଣ ଦାବୀ କରେ, ସେହିପରି ମାର୍କସ୍‌ବାଦ ସେସବୁ ସହିତ ଆଉ ଦାବୀ କରେ ବିଜ୍ଞାନ ପ୍ରତି ଅନୁରକ୍ତି , ବିବେକ ପ୍ରତି ବିଶ୍ୱସ୍ତତା ଓ କର୍ମରେ କର୍ତ୍ତବ୍ୟନିଷ୍ଠା । ମାନବିକତାର ଚରମ ଅଭିବ୍ୟକ୍ତି ଆଗରେ ଆପଣାକୁ ନିଃସଙ୍କୋଚରେ ସମର୍ପି ଦେବା ଉଭୟଙ୍କର ଚିରାଚରିତ ଅନ୍ତର୍ନିହିତ ନିର୍ଦ୍ଦେଶ ।

ଅତଏବ ଜଗନ୍ନାଥ-ଭାବ ମଣିଷର ଇଚ୍ଛା, କାମନା ଓ ଆକାଙ୍କ୍ଷାରେ ପ୍ରକାଶ ପାଉଥିଲା ବେଳେ, ମାର୍କସ୍‌ବାଦର ପ୍ରୟାସ ହୁଏ ତାକୁ ବାସ୍ତବ ରୂପ ଦେବାରେ । ଜଗନ୍ନାଥ-ଭାବ ପୁଷ୍ପର ପ୍ରସ୍ଫୁଟନ ଯେପରି ଏକମାତ୍ର ମାର୍କସବାଦର ମଳୟର ସ୍ପର୍ଶରେ ସମ୍ଭବ, ସେହିପରି ମାର୍କସ୍ ବାଦ ତାର ସାର୍ଥକତା ଲାଭ କରେ କେବଳ ସେଇ ପୁଷ୍ପର ସୌରଭ ବିତରଣରେ ।

ଜଗନ୍ନାଥଙ୍କୁ ବୁଝିବା ତାଙ୍କର ମାହାତ୍ମ୍ୟ କରିବାରେ ଉଦ୍ୟମର ଯେପରି ଅନ୍ତ ନାହିଁ ସେହିପରି ମାର୍କସ୍‌ବାଦର ବ୍ୟାଖ୍ୟା ଓ ବିମର୍ଶର ସୀମା ନାହିଁ । ସେହିପରି ଉଭୟଙ୍କ କ୍ଷେତ୍ରରେ ଅଭାବ ନାହିଁ ସନ୍ଦେହ ବିଭ୍ରାନ୍ତି ଓ ସ୍ଖଳନର । ସମସ୍ତ ଉତ୍‌ଥାନ-ପତନ ଭିତରେ ଉଭୟଙ୍କର ଯାତ୍ରା କିନ୍ତୁ ସେହିପରି ସଦା ଅବ୍ୟାହତ ।ତାହା ଜଣାଇଦିଏ. ତାହାହିଁ ଏକମାତ୍ର ପଥ । ଯୁଗ ଯୁଗ ଧରି ମଣିଷର ପଞ୍ଜିଭୂତ କାମନା, ତାର ଅଗଣିତ ପ୍ରାଣର ଆକୁଳ ପାର୍ଥନା ଏବଂ ବିଜ୍ଞ ।

ବିଚାରବନ୍ତ ଲୋକଙ୍କର ଅଭିଜ୍ଞ କଳ୍ପନା ଯାହା ଜଗନ୍ନାଥ-ଭାବ ରୂପରେ ଆତ୍ମପ୍ରକାଶ କରେ, ତାହା ସହିତ ମାର୍କସ୍‌ବାଦର ମିଳନ ହେଉଛି ମଣିଷର ସେହି ମାନବୀୟ ମର୍ମ ଓ ଆକାଙ୍କ୍ଷା ସହିତ ବିଜ୍ଞାନର ଅଜେୟ ଶକ୍ତି ସମନ୍ୱୟ । ସେହି ମାନବିକ ଉତ୍କର୍ଷ ଓ ବୈଜ୍ଞାନିକ ସିଦ୍ଧାନ୍ତର ସଂଯୋଗରେ ବିସ୍ଫୁରିତ ଶକ୍ତି ବିଶ୍ୱଜୟୀ । ତାହା ସେଇ ଜଗନ୍ନାଥ-ଭାବର ବିଜୟକୁ ହିଁ ଘୋଷଣା କରିଥାଏ ।

**ଜଗନ୍ନାଥ-ଭାବର ବିଜୟର ପଥ ମାର୍କସ୍‌ବାଦ**

ଜଗନ୍ନାଥ -ଭାବ ଓ ମାର୍କସବାଦ ,ଏମାନଙ୍କର ଘନିଷ୍ଠତାର କାରଣ ଏମାନେ ସମଗୋତ୍ରଜ , ଏକ ମୂଳରୁ ଜାତ । ଉଭୟ ସମାନ ଲକ୍ଷ୍ୟ ଦିଗରେ ଉଦ୍ଦିଷ୍ଟ । ଫରକ,କେବଳ ସେହି ଲକ୍ଷ୍ୟପ୍ରାପ୍ତିର ପଦ୍ଧତିରେ, ତାଙ୍କର ଯନ୍ତ୍ରର ପଥ ଘେନି ସେହି ପାର୍ଥକ୍ୟର କାରଣ ମୂଳତଃ ଇତିହାସର ବ୍ୟବଧାନ । ଉଭୟ ଭିନ୍ନ ଭିନ୍ନ ସାମାଜିକ ଅର୍ଥନୈତିକ ଅବସ୍ଥା ଭିତରୁ ଉଦ୍ଭବ ।

ଜଗନ୍ନାଥ-ଭାବର ଅବିର୍ଭାବ ବୋଧହୁଏ ଖ୍ରୀଷ୍ଟଜନ୍ମର ଦୁଇ ହଜାର ବର୍ଷ ପୂର୍ବରୁ । ମାର୍କସ୍‌ଙ୍କ ଜନ୍ମ ଖ୍ରୀଷ୍ଟ ଜନ୍ମର ପ୍ରାୟ ଦୁଇ ହଜାର ବର୍ଷ ପରେ ଉନବିଂଶ ଶତାବ୍ଦୀରେ । ସେତେବେଳେକୁ ସମାଜ ବହୁ ଦୂରକୁ ଅଗେଇ ଗଲାଣି ପ୍ରଥମଟି, ଶ୍ରେଣୀହୀନ ଆଦିମ ସାମ୍ୟ-ସମାଜରେ ଘଟିଲାବେଳେ ,ଅନ୍ୟଟି ଘଟିଛି ଶ୍ରେଣୀ ବିଭକ୍ତ ସମାଜରେ, - ଅସାମ୍ୟର ବିକାଶ ଭିତରେ ।

ପ୍ରଥମେ ଅସାମ୍ୟ କାହିଁକି, ଅସାମ୍ୟ ଜନିତ ଦୁଃଖର ଉଦ୍ଭବ ମଣିଷ ତା ଜାଣିନାହିଁ , ଜାଣେ ନାହିଁ ତାର କାରଣ । ସେ ସେହି ଦୁଖରୁ ଉଦ୍ଧାର ଓ ନିଜ କାମନାର ପୂରଣର ଭାବନା ମଧ୍ୟରେ ଜଗନ୍ନାଥଙ୍କୁ ତାର ଭାବ ଭାବେ ଭାବିଛି ତାହା ପାଇବାକୁ ଚେଷ୍ଟା କରିଛି ସେଇ ଭାବ ପ୍ରତି ଜଣାଣ ଓ ପ୍ରାର୍ଥନାର ମଧ୍ୟଦେଇ ମାର୍କସ୍‌ଙ୍କ ବେଳେ, ପ୍ରଶ୍ନ ହୋଇଛି,- ସେହି ଅସାମ୍ୟ କାହିଁକି ? ତାହା ସୃଷ୍ଟି ହୁଏ କିପରି ? ତାକୁ କରେ କିଏ ? କୋଉଠି ତାର ଶେଷ ପରିଣତି ? ଏବଂ କିପରି ତାକୁ ଲୋପକରି ସାମ୍ୟର ପୁନଃ ପ୍ରତିଷ୍ଠା କରାଯାଇପାରେ ?

ଇତିମଧ୍ୟରେ ମାର୍କସ୍‌ବାଦ ତତ୍ତ୍ୱର ବାସ୍ତବତା କେଉଁଠି ପରୀକ୍ଷିତ ଓ ଅନୁସୃତ ହେଲେ ବି ଆଉ କେଉଁଠି ପରତ୍ୟକ୍ତ । କିନ୍ତୁ ତାହା ସାଧାରଣ ବିଶ୍ୱର ଏକମାତ୍ର ବିକଳ୍ପ ଭାବେ ସର୍ବତ୍ର ସ୍ୱୀକୃତ । ତେଣୁ ଜଗନ୍ନାଥ ଆଲୋଚନାରେ ତାର ସମଗୋତ୍ରଜ ମାର୍କସବାଦକୁ ଏଡ଼ି ଦେଇଯିବା ସମ୍ଭବ ନୁହେଁ ସେହି ଆଲୋଚନା ଜଗନ୍ନାଥ -ଭାବର ପ୍ରକୃତ ତାତ୍ପର୍ଯ୍ୟକୁ ଉଦ୍‌ଘାଟନ୍ କରେ ତା ବିନା ସେହି ଭାବରେ ପ୍ରକୃତ ମାର୍ଗରେ ଉପଲବ୍‌ଧି ନାହିଁ । ଯେଉଁମାନେ ଜଗନ୍ନାଥ-ଭାବକୁ ଛାଡ଼ି ଗତାନୁଗତିକ ଭାବେ କେବଳ ଧର୍ମକୁ ମଣ୍ଡିଆ ମାରି ଚାଲିଥାନ୍ତି , ତାଙ୍କ ଲାଗି ତାହା ଅନାବଶ୍ୟକ ହୋଇପାରେ , କିନ୍ତୁ ଯେଉଁମାନେ ଜଗନ୍ନାଥ-ଭାବକୁ ଚାହାନ୍ତି , ସେମାନେଙ୍କି ଲାଗି ତାହା ଅପରିହାର୍ଯ୍ୟ । କାରଣ, ମାର୍କସ ତାଙ୍କ ତତ୍ତ୍ୱ ଭିତରେ ମଣିଷର ଜନ୍ମ,ବିକାଶ ଓ ତାର ମାନବତ୍ୱ ପ୍ରାପ୍ତିର ମାର୍ଗ ଲାଭ କରେ । ଯାହାକି

ଅଖିବୁଜି ମଣ୍ଡିଆ ମାରିବା ଦ୍ୱାରା ସମ୍ଭବ ନୁହେଁ । କିନ୍ତୁ ଯେଉଁମାନେ ଜଗନ୍ନାଥ-ଭାବକୁ ଚାହାନ୍ତି, ସେମାନଙ୍କ ଲାଗି ତା ଅପରିହାର୍ଯ୍ୟ ।

ମାର୍କସବାଦ ପ୍ରଥମେ ଅସାମ୍ୟ ସୃଷ୍ଟିର ମୂଳକୁ ଉଦ୍‌ଘାଟନ କରନ୍ତି ତାଙ୍କର ଉଦ୍‌ବୃତ୍ତ ମୂଲ୍ୟତତ୍ତ୍ୱର ଆବିଷ୍କାର ଦ୍ୱାରା । ଶ୍ରମ ମୂଲ୍ୟ ସୃଷ୍ଟି କରେ । ତାହା ଆଗରୁ ଜଣାଥିଲା । କିନ୍ତୁ ସେଥିସହିତ ତାହା ଯେ ଉଦ୍‌ବୃତ୍ତ ମୂଲ୍ୟ ସୃଷ୍ଟି କରେ , ଶ୍ରମର ସେଇ ଖାସ ପ୍ରକୃତି ଏ ପର୍ଯ୍ୟନ୍ତ ଲୁକ୍‌କାୟିତ ଥିଲା । ତାର ଖାସ ପ୍ରକୃତି ହେଲା ସବୁ ଜିନିଷ ଭିତରେ ଘୋରି ହୋଇଯାଏ, ସରିଯାଏ, ତାହାର ମୂଲ୍ୟ ହରାଏ । ଶ୍ରମ କିନ୍ତୁ ତାର ମୂଲ୍ୟ ଅପେକ୍ଷା ଅଧିକ ମୂଲ୍ୟ ସୃଷ୍ଟି କରେ । ଶ୍ରମହିଁ ଏକମାତ୍ର ଜିନିଷ, ଯିଏ କି ତାର ବ୍ୟବହାର ମଧ୍ୟରେ ଅଧିକ ମୂଲ୍ୟ ପ୍ରଦାନ କରେ । ତାହା ଯଦି ହେଉ ନଥାନ୍ତା, ମଣିଷ ମୂଳରୁ ବଢ଼ିପାରନ୍ତା ନାହିଁ ତାର ଆଉ କିଛି ଉଦ୍‌ବୃତ୍ତ ରହନ୍ତା ନାହିଁ । ମଲା ପରେ ପଶୁ ଭଳି ସେ କେତେଖଣ୍ଡ ହାଡ ମାତ୍ର ଛାଡି ଯାଉଥାନ୍ତା । ପଶୁର ସ୍ତରରୁ ଉପରକୁ ଉଠିପାରି ନ ଥାନ୍ତି ମଣିଷର ସ୍ଥିତି ତାର ସମାଜ ସଂସ୍କୃତି ଆଦିର ଭିତ୍ତି ହେଲା ସେଇ ଉଦ୍‌ବୃତ୍ତ ମୂଲ୍ୟ,- ଶ୍ରମର ସୃଷ୍ଟି କାରୀ ପ୍ରକୃତି । ଯେଉଁ ଦେଶ ,ଯେଉଁ ସମାଜ ଯେତେ ଉଦ୍‌ବୃତ୍ତ ମୂଲ୍ୟ ସୃଷ୍ଟିକରେ, ସେହି ଅନୁଯାୟୀ ତାତ ଉନ୍ନତିର ସ୍ତର । ଆଉ ଲୋକ ଯେତେ ପରିମାଣରେ ତାକୁ ଅଧିକାର ବା ଅପହରଣ କରେ ସେହି ପରିମାଣରେ ସେ ସମ୍ପତ୍ତିବାନ୍, ବିଭବଶୀଳ ।

ଶ୍ରମର ସେହି ଅନ୍ତର୍ନିହିତ ସମ୍ପଦ ପରିସ୍ଫୁଟ ଓ ବିକଶିତ ହୋଇ ଉଠିଛି ଶିଳ୍ପ ବିକାଶରେ, ପୁଞ୍ଜିବାଦୀ ଯୁଗରେ, ଶ୍ରମର ଖର୍ଦ୍ଦି ବିକ୍ରି ଭିତରେ । ସେଠି ଶ୍ରମର କିଣା ମୂଲ୍ୟ ଓ ଶ୍ରମଶକ୍ତି ସୃଷ୍ଟି କରୁଥିବା ଉଦ୍‌ବୃତ୍ତ ମୂଲ୍ୟ , ଦୁହେଁ ପରିଷ୍କାର ଦେଖାଦିଅନ୍ତି । ମାଲିକ କିଣାମୂଲ୍ୟ ଦେଇ ଶ୍ରମିକର ଶ୍ରମଶକ୍ତିକୁ କିଣି ନିଏ । ତାକୁ ଖଟେଇ ତାଠାରୁ ଉଦ୍‌ବୃତ୍ତ ମୂଲ୍ୟ ବାହାର କରେ । ସେହି ମୂଲ୍ୟକୁ ବିନା ପଇସାରେ ଘେନିଯାଏ , ଯେଉଁଟା ହେଲା ଶୋଷଣ ।

ସମାଜରେ ଧନ-ସମ୍ପଦର ଅଧିକାରୀ ହେବାକୁ ହେଲେ, ଯେକୌଣସି ଉପାୟରେ ସେହି ଉଦ୍‌ବୃତ୍ତ ମୂଲ୍ୟକୁ ଅଧିକାର ବା ଅପହରଣ କରିବାକୁ ହେବ । ସେ ମୂଲ୍ୟ କେବଳ ଉତ୍ପାଦନ -ପ୍ରକ୍ରିୟାର ଭିତରେ ସୃଷ୍ଟି ହୁଏ । ଶ୍ରମକୁ ଉତ୍ପାଦନରେ ଲଗାଇଲେ, ସେ ନିଜେ ଉତ୍ପାଦନ ଉପକରଣର ମାଲିକ ହେବା ଦରକାର । ଅର୍ଥାତ୍, କଳ କାରକାନା, ଖଣି ଖାଦାନ, ଜମି ବାଡ଼ି ଆଦି ତା' ହାତରେ ନ ଥିଲେ ମଣିଷ ଶ୍ରମିକକୁ ଖଟାଇବ କେଉଁଠି ? ସେହି ଉତ୍‌ପାଦନର ଉପାୟ ହେଲା ଶ୍ରମକୁ ଶୋଷଣ କରିବା ଉପାୟ । ଅତଏବ ସେହି ଶୋଷଣକୁ ଦୂର କରିବାର ଏକମାତ୍ର ଉପାୟ ହେଲା ଶୋଷଣର ସେହି ଉପାୟକୁ ଦଖଲ କରିବା, ତାର ମାଲିକ ହେବା । ଅର୍ଥାତ୍ ଯିଏ ନିଜେ ଶ୍ରମକାରୀ, ସେ ସେହି ଉତ୍ପାଦନ ଉପାୟ ଉପକରଣର ଅଧିକାରୀ ହେବା ଦରକାର । ତାହାହେଲେ ମଣିଷ ଅନ୍ୟକୁ ଶୋଷଣ କରିବା ଓ ନିଜେ ଶୋଷିତ ହେବାର ପ୍ରଶ୍ନ ଉଠିବ ନାହିଁ । ନିଜେ ନିଜର ସୃଷ୍ଟ ମୂଲ୍ୟ ବା ସମ୍ପଦର ମାଲିକ ହେବା ତଥା ଶୋଷଣ ଲୋପ ହେବାର ଅନ୍ୟ ପନ୍ଥା ନାହିଁ ସାମ୍ୟର ପ୍ରତିଷ୍ଠା ଲାଗି ସର୍ବ୍ବପ୍ରଥମ ଆବଶ୍ୟକ ସେହି ଶୋଷଣର ବିଲୋପ ।

ଏହି ପ୍ରକ୍ରିୟାକୁ ନ ଦେଖିଲାଯାଏ ଜଗନ୍ନାଥଙ୍କ-ସାମ୍ୟ ଆସିବ କୁଆଡୁ ? ସମସ୍ତେ ଜଗନ୍ନାଥଯଙ୍କ ମାହାତ୍ମ୍ୟ କୀର୍ତ୍ତନରେ ବ୍ୟସ୍ତ କିନ୍ତୁ ତାଙ୍କର ଅସଲ ମର୍ମ୍ମକୁ ଆଡେଇ ଦିଅନ୍ତି । ତାକୁ ଏକ ସାଧାରଣ ମାମୁଲି କଥା ବୋଲି ଧରନ୍ତି । ଜଗନ୍ନାଥ-ଭାବର ପ୍ରତିଷ୍ଠା କଥା ଦିନେହେଲେ କେହି ଭୁଲରେ ଭାବନ୍ତି ନାହିଁ କି ଟିକିଏ ହେଲେ ସେ ଦିଗରେ ପାଦ କାଢନ୍ତି ନାହିଁ । ଅଥଚ ଜଗନ୍ନଥଙ୍କର ସେଇ ଭାବ ହେଉଛି ଭକ୍ତଙ୍କ ପାଇଁ ଦେବତ୍ୱର ପ୍ରାପ୍ତି, ସାଧାରଣ ମଣିଷଙ୍କ ପକ୍ଷରେ ମାନବତ୍ୱ ଲାଭ ଏବଂ ସାରା ଜଗତ ପକ୍ଷରେ ତାଙ୍କର ନାଥତ୍ୱର ଉପଲବ୍ଧି ।

ମଣିଷ ସୃଷ୍ଟି ଦ୍ୱାରା ଆପଣାକୁ ପ୍ରକାଶ କରେ । ସେ ସୃଷ୍ଟିକରେ ନିଜର ଶ୍ରମର ଭିତର ଦେଇ । ଶ୍ରମର ସ୍ୱଭାବ ଗୁଣ ଓ କର୍ମ ଅନୁଯାୟୀ ମଣିଷର ପରିଚୟ । ଶ୍ରମର ବିକାଶ ଅନୁଯାୟୀ ମଣିଷର ବିକାଶ । ଶ୍ରମହିଁ ମଣିଷର ବିମୂର୍ତ୍ତ ମର୍ମ୍ମ !ମଣିଷର ଶ୍ରମର ଶୋଷଣ ହେଉଛି ଅନ୍ୟ ଦିଗରେ ସେ ମାନବ ମର୍ମ୍ମର ଶୋଷଣ । ମଣିଷ ସେଇି ମର୍ମ୍ମ ଶୋଷିତ ବା ଅପହୃତ ହେବାରେ, ସେହି ତାର ମଣିଷର ମର୍ମ୍ମ,- ମାନବିକତା ଶୋଷିତ ହୁଏ, ମଣିଷ ପଶୁତୁଲ୍ୟ ହୋଇଯାଏ । ଯିଏ ତାକୁ ଶୋଷଣ କରେ , ସେ ମାନବିକ ମର୍ମ୍ମର ଖାଦକ ହେବାରେ ନିଜର ପଶୁତ୍ୱକୁ ପ୍ରକାଶ କରେ । ଫଳରେ, ଉଭୟ ତାଙ୍କର ମନୁଷ୍ୟତା ହରାନ୍ତି । ବର୍ତ୍ତମାନ ସାମାଜିକ ସଂକଟ ତାର ଜ୍ୱଳନ୍ତ ଦୃଷ୍ଟାନ୍ତ । ଅନ୍ୟ ଦିଗରେ ସେଇ ଶୋଷଣର ବିଲୋପ ମଣିଷର ମାନବତା ପ୍ରାପ୍ତିର ମାର୍ଗକୁ ଉନ୍ମୁକ୍ତ କରେ ।

କିନ୍ତୁ ପ୍ରକୃତିର ସାହାଯ୍ୟ ବିନା କେବଳ ଶ୍ରମ ଦ୍ୱାର ସୃଷ୍ଟି ନାହିଁ । ମଣିଷ ପ୍ରକୃତି ଦତ୍ତ ପଦାର୍ଥକୁ ନେଇ ସୃଷ୍ଟିକରେ । ସୃଷ୍ଟି କରିବାକୁ ଯାଇ ମଣିଷ ମଣିଷକୁ ଶୋଷଣ କଲା ଭଳି ପ୍ରକୃତିକୁ ମଧ୍ୟ ନିର୍ବିଚାରରେ ଶୋଷଣ କରେ । ପ୍ରକୃତିର ସେି ଅମାନୁଷିକ ଶୋଷଣ ହେଉଛି ମଣିଷର ନିଜର ସ୍ୱାଭାବିକ ପ୍ରକୃତିର ହତ୍ୟା । ତାହା ତାର ପ୍ରକୃତିଛଡା ଭାବକୁ ହିଁ ପ୍ରକାଶ କରେ । ପ୍ରକୃତି ଛଡା ହେବାରେ ମଣିଷ ତାର ବାନବିକ ପ୍ରକୃତି ହରାଏ । ଯାହାର ପରିଣାମ ''ଆଜିର ପରିବେଶର ସଙ୍କଟ'' । ପ୍ରକୃତିର ସନ୍ତାନ ହୋଇ ପ୍ରକୃତି- ମାତାକୁ ବିକ୍ଷତ କରିବାରେ ସେ ନିଜର ଅସ୍ତିତ୍ୱକୁ ବିପନ୍ନ କରେ ।

ମଣିଷ ଭିତରୁ ତାର ସେଇ ମାନବିକ ମର୍ମ୍ମ, ସ୍ୱାଭାବିକ ପ୍ରକୃତି ଅପହୃତ ବା ଅନ୍ତରିତ ହେବାରେ ତାର ବାନବିକ ବିଚାର ଓ ବିବେକ ତାଙ୍କର ସ୍ୱାଭାବିକ ସ୍ୱଚ୍ଛତା ହରାନ୍ତି । ତାହା କରୁଥିବା ଲୋକେ ନିର୍ବିକାର ଚିତ୍ତରେ ତାକୁ ସ୍ୱାଭାବିକ ଧର୍ମ ଭାବରେ କରିଥାନ୍ତି । ତାହା ଭୋଗୁଥିବା ଲୋକେ ତାକୁ ନଜର ଅଦୃଷ୍ଟର ଲିଖନ ଭାବରେ ନିରାନନ୍ଦ ଚିତ୍ତରେ ସହ୍ୟ କରିଯାଆନ୍ତି । ଆଉ ତାକୁ ଦେଖୁଥିବା ଲୋକେ ସେ ସବୁକୁ ସମାଜର ଚିରଚରିତ ନୀତି ଓ ଧର୍ମ ଭାବରେ ଗ୍ରହଣ କରିଥାଆନ୍ତି । ସାମାଜିକ ଚିନ୍ତାଧାରାରେ ପ୍ରତିଫଳିତ ହେବାରେ ସେହି ଧାରଣାର ପ୍ରଭାବ ଓ ପ୍ରକ୍ରିୟା ଅଧିକ ପ୍ରଶସ୍ତ ଓ ଗଭୀର ହୋଇଉଠେ ।

ଅତଏବ ପାଶବିକତାର ଏଇ ଯେଉଁ କ୍ରମାଗତ ପ୍ରସାର , ଜଗତ୍‌ବ୍ୟାପୀ ମାନବିକତାର ବିପର୍ଯ୍ୟୟ ଏବଂ ଅନିଶ୍ଚିତ ଭବିଷ୍ୟତର ସେହି ଭୟାବହ ପରିଣତିର ଯଦି

କିଏ ସମ୍ମୁଖୀନ ହେବାରେ ସମର୍ଥ, ସିଏ ହେଲା ଏକମାତ୍ର ସେଇ ଜଗନ୍ନାଥ-ଭାବ। ସାମ୍ୟ -ମୈତ୍ରୀ- ପ୍ରୀତିହିଁ କେବଳ ସେଇ ପାଶବିକତାକୁ ପ୍ରତିହତ କରିପାରେ ଏବଂ ମଣିଷକୁ ପ୍ରତିଷ୍ଠିତ କରିପାରେ ତାର ମାନବୋଚିତ ଆସନରେ।

ଇତିହାସ କହେ, ମଣିଷ ସହ ଜଗନ୍ନାଥ-ଭାବର ବିଚ୍ଛେଦ ନାହିଁ। ତାହା ତାର ଆଦ୍ୟ ଜୀବନର ପ୍ରକାଷନ ହେଲେ, ତାର ଅନ୍ତିମ ଜୀବନର ପରିଣତି। ଯେହେତୁ ସେ ସେଥିପ୍ରତି ଅଚେତନ ,ତେଣୁ ତାର ଉପଲବ୍ଧି ଲାଗି ମଣିଷ ଅନବରତ ତା ପଛରେ ଧାଇଁବାରେ ଲାଗିଛି। ଏକମାତ୍ର ମାର୍କସବାଦହିଁ ତାକୁ ସେହି ଭାବର ଯଥାର୍ଥ ରୂପ ଚରିତ୍ର ଓ ପଥ ପ୍ରଦାନ କରେ ଓ ତାର ପ୍ରକୃତ ମହତ୍ତ୍ୱର ସନ୍ଧାନ ଦିଏ ।ଅର୍ଥନୀତି, ସମାଜନିତୀ ,ବିଜ୍ଞାନ ଓ ଦର୍ଶନ ଆଦି ସବୁ ଦିଗରୁ ତାକୁ ପ୍ରତିପାଦିତ କରେ। - ସେଇ ଜଗନ୍ନାଥ -ଭାବ ସାମ୍ୟ-ମୈତ୍ରୀ -ପ୍ରୀତିକୁ ପରପଣ୍ଡ କରି ଗଢେ ମାର୍କସ୍‌ବାଦ ପ୍ରଦର୍ଶିତ ସେହି ସମାଜର ସର୍ବୋଚ ସ୍ତର, ସାମ୍ୟବାଦ ବା କମ୍ୟୁନିଜ୍‌ମର-ବ୍ୟାଖ୍ୟା ହେଉଛି ନିଜସ୍ୱ ଶକ୍ତି ଅନୁଯାୟୀ କାମ କରିବେ ଓ ନିଜ ଆବଶ୍ୟକତା ଅନୁସାରେ ପାଇବେ।

## ଆଦିମ ଆକାଙ୍କ୍ଷାର ଅନ୍ତିମ ପରଣତି

ସମାଜର ବିକାଶ ଯେତେ ପଥରେ ଗତି କଲେ, ଯେତେ ବିଭିନ୍ନ ରୂପରେ ଦେଖାଦେଲେ ବି ସେ ସମସ୍ତଙ୍କର ଶେଷ ପରିଣତ କେବଳ ସେଇ ସାମ୍ୟବାଦ୍ୟରେ, ଯେଉଁଠି ପ୍ରତ୍ୟକେ ନିଜର ଶକ୍ତି ଅନୁସାରେ ଶ୍ରମ ଦେବେ ତାଙ୍କ ଆବଶ୍ୟକତା ଅନୁସାରେ ସବୁ ଦେବା ନେବା ହେବ ଶକ୍ତି ଓ ଆବଶ୍ୟକତା ଅନୁଯାୟୀ।

ଏହା କାନକୁ ବେଶ୍ ସୁନ୍ଦର ଶୁଣାଯାଏ, କିନ୍ତୁ କାର୍ଯ୍ୟତଃ ତାକୁ ଲାଭ କରିବା ଆଦୌ ସହଜ ନୁହେଁ। ସବୁଠୁ କଷ୍ଟସାଧ। ସେ ଦିଗରେ ପ୍ରଥମ ସର୍ତ୍ତ ହେଲା, ସମସ୍ତ ପ୍ରକାର ଶୋଷଣର ବିଲୋପ। ଶୋଷଣର ବିଲୋପ ଉପରେ ହିଁ ସାମ୍ୟ-ସୌଧର ନିର୍ମାଣ କେବଳ ସମ୍ଭବ। ସାମ୍ୟର ଅନ୍ୟ କୌଣସି ଭିତ୍ତି ନାହିଁ। ଦ୍ୱିତୀୟରେ, ସାମ୍ୟର ପ୍ରତିଷ୍ଠା ଲାଗି ସବୁ କ୍ଷେତ୍ରରେ ସବୁ ଜିନିଷର ପ୍ରାଚୁର୍ଯ୍ୟ ଦରକାର। ତା ହେଲେ କେବଳ ଯିଏ ଯାହା ଚାହିଁବେ ତାହା ପାଇପାରିବେ। ତେଣୁ ତଦନୁଯାୟୀ ଉତ୍ପାଦନ ବୃଦ୍ଧି ଓ ଉତ୍ପାଦନ ଶକ୍ତିର ବିକାଶ ଆବଶ୍ୟକ। ତୃତୀୟରେ, ସେହି ସାମ୍ୟ ସମାଜର ପରିସର କେତେ ଓ କ'ଣ ହେବ ? ତାହା କୌଣସି ଏକ କ୍ଷୁଦ୍ର ଅଞ୍ଚଳରେ ଆବଦ୍ଧ ହୋଇ ରହିବ ନା ବିଶ୍ୱବ୍ୟାପୀ ହେବ ? କାରଣ, ସେହି ଅନୁଯାୟୀ ଉତ୍ପାଦନରେ ପ୍ରାଚୁର୍ଯ୍ୟ ଆବଶ୍ୟକ। ଏବେ ସମସ୍ତ ପୃଥିବୀଟା ଗୋଟାଏ ହେବାର ଲାଗିଛି। ପ୍ରତ୍ୟେକ ଅଞ୍ଚଳ ଓ ଦେଶ ଅନ୍ୟ ସହ ସମ୍ପୃକ୍ତ ସ ତାହା ଉପରେ ନିର୍ଭରଶୀଳ। କେଉଁଠି କିଛି ଗୋଟାଏ ନୂଆ ଜିନିଷ ବାହାରିଲେ ତାହା ସଙ୍ଗେ ସଙ୍ଗେ ସାରା ପୃଥିବୀରେ ଖେଳିଯାଏ। ତାର ଖବର ମୂହୂର୍ତ୍ତିକ ମଧ୍ୟରେ ଉପଗ୍ରହ ଟି.ଭି. ଇଲେକ୍‌ଟ୍ରୋନିକ୍ ମାଧ୍ୟମରେ ପୃଥିବୀର ପ୍ରତ୍ୟେକ କୋଣରେ ନିମିଷେକ ପହଞ୍ଚିଯାଏ। ତାହା ନୂଆ ନୂଆ ଚାହିଦା ଓ ଆବଶ୍ୟକତା ସୃଷ୍ଟି କରିବା ସ୍ୱାଭାବିକ। ତେଣୁ ସବୁ ଜିନିଷ ଉତ୍ପାଦନ ସେହିପରି

ପ୍ରଚୁର ପରିମାଣରେ ସେମିତି କ୍ରମାଗତ ବିଶ୍ୱବ୍ୟାପୀ ହେବା ଦରକାର, ଯେପରିକି ତାହା ବିଶ୍ୱର ସମସ୍ତ ଚାହିଦା ପୂରଣ କରିବାରେ ସକ୍ଷମ ହେବ। ତାହା ନ ହେଲେ, ସାମ୍ୟ ରହିବ ନାହିଁ। ଅଭାବ ଓ ଚାହିଦାଗ୍ରସ୍ତ ଲୋକଙ୍କର ଅଭିଯାନରେ ଅଭାବ ନଥିବା ଅଞ୍ଚଳରେ ଅଭାବ ଦେଖାଦେବ, ସାମ୍ୟରେ ଫାଙ୍କ ସୃଷ୍ଟି ହେବ। ସାମ୍ୟ ସବୁବେଳେ ଜଗତବ୍ୟାପୀ ସାମ୍ୟର ସୂଚନା ଦିଏ। ସାମ୍ୟ କ୍ଷୁଦ୍ର, ଖଣ୍ଡିତ ବା ସଂକୀର୍ଣ୍ଣ ହୋଇ ନ ପାରେ।

ସାମ୍ୟ ଥରେ ଆସିଗଲେ, ତାର ପୂର୍ଣ୍ଣତା ପ୍ରାପ୍ତି ଘଟିଗଲା, ତା ଯେ ଚିରଦିନ ସେମିତି ରହିବ, ତାହା ଆଦୌ ନୁହେଁ। ବର୍ତ୍ତମାନ ବିଜ୍ଞାନ ଯୁଗରେ ନୂତନ ଉଦ୍ଭବନର ସୀମା ନାହିଁ। ଗୋଟିଏ ଜିନିଷ ବଜାରକୁ ଆସିଲା ପୂର୍ବରୁ ତାହା ପୁରୁଣା ହୋଇଯାଏ। ତାହା ଠାରୁ ଆହୁରି ଉତ୍କୃଷ୍ଟତର ଆଗୁଆ ଜିନିଷ ବାହାରି ପଡ଼େ। ତାହା ନୂତନ ଚାହିଦା ସାଙ୍ଗକୁ ଅସାମ୍ୟକୁ ଆହ୍ବାନ କରେ। ସେହି ନୂତନ କାମନାର ପୂରଣ ଦ୍ୱାରା ସାମ୍ୟର ପୂନର୍ଗଠନ ଦାବୀ କରେ। ମଣିଷର ବିକାଶ ଭଳି ସେହି ସାମ୍ୟର ବିକାଶର ପ୍ରକ୍ରିୟା ଅସରନ୍ତି।

ସାମ୍ୟ ସହିତ ମୈତ୍ରୀ ଓ ପ୍ରୀତି ଘନିଷ୍ଠ ଭାବେ ବନ୍ଧା ସତ, ସେମାନେ ସମାନ ପଦକ୍ଷେପରେ ଆସନ୍ତି ନାହିଁ। ସାମ୍ୟ ସାମାଜିକ ଓ ଅର୍ଥନୈତିକ ଆଦି ଭୌତିକ କ୍ଷେତ୍ରର ଅବସ୍ଥାକୁ ପ୍ରକାଶ କଲାବେଳେ, ମୈତ୍ରୀ ପ୍ରୀତି ହେଲେ ମଣିଷର ମନ ଗହନର କଥା, ତାହା ହୃଦୟ ଭିତର ଭାବ ଓ ଆବେଗକୁ ପ୍ରକାଶ କରେ। ଭୌତିକ ଅବସ୍ଥା ତାର ଭିତ୍ତି ହେଲେ ବି ସେଇ ଭାବର ଯଥାର୍ଥ ବିକାଶ ଓ ପ୍ରସ୍ଫୁଟନ ପାଇଁ ମଣିଷର ମାନବିକ ପରିପକ୍ୱତା ଲୋଡ଼ା। ଅନୁରୂପ ମାନବିକ ଭାବର ଉନ୍ମେଷ ବିନା ମେତ୍ରୀ ପ୍ରୀତି ଆତ୍ମପ୍ରକାଶ କରି ନ ପାରନ୍ତି। ମଣିଷ ତାର ଶକ୍ତି ଅନୁଯାୟୀ କାମକୁ ନିଜର ମାନବିକତାର ପ୍ରକାଶନ ବୋଲି ମନେ କଲେ କେବଳ ତାହା ସମ୍ଭବ। ସେହିପରି ନିଜର ଆବଶ୍ୟକତାଠାରୁ ଅଧିକ ଘେନି ଯିବାଟାକୁ ଅମାନବୀୟ କାର୍ଯ୍ୟ ବୋଲି ମାନିଲେ କେବଳ, ତାକୁ ସେ ବର୍ଜନ କରିପାରେ। ସେସବୁ ତାର ଜୀବନର ଏକ ଅଙ୍ଗ ହୋଇ ଉଠିବାରେ କେବଳ, ସେହି ସାମ୍ୟ ମୈତ୍ରୀର ଭାବ ଆତ୍ମପ୍ରକାଶ କରିପାରନ୍ତି। ତାହା ଏକ ଦୀର୍ଘକାଳୀନ ଜଟିଳ ପ୍ରକ୍ରିୟା। ସେହି ପ୍ରକ୍ରିୟା ଭିତରେ ମଣିଷ ତାର ମାନସିକ ବିବର୍ତ୍ତନର ମଧ୍ୟ ଦେଇ ଗତି କରେ। ସାମ୍ୟ-ମୈତ୍ରୀ-ପ୍ରୀତି ପରସ୍ପରକୁ ପ୍ରଭାବିତ ଓ ପରିପୁଷ୍ଟ କରିବାରେ ଲାଗିଥାନ୍ତି, ତାହା ଯେପରି ଜଗନ୍ନାଥ-ଭାବର ସାର୍ଥକତା, ସେହିପରି ମାର୍କସ୍‌ବାଦର ବିଜୟ।

ରୁଷରେ ସମାଜବାଦର ପତନ ଯୋଗୁଁ ସାମ୍ୟବାଦକୁ ଯଦି ଅସାର, ତାର ତତ୍ତ୍ୱ ମାର୍କସବାଦକୁ ଯଦି ଅବାସ୍ତବ କୁହାଯାଏ, ତେବେ ଜାଣିବାକୁ ହେବ ଜଗନ୍ନାଥ ଏକ ଅଳୀକ ଧାରଣା। ତାଙ୍କର ସେହି ସାମ୍ୟ-ମୈତ୍ରୀ-ପ୍ରୀତିର ଭାବ ଗୋଟାଏ ଦିବାସ୍ୱପ୍ନ ମାତ୍ର।

ତା' ଦିବାସ୍ୱପ୍ନ ନୁହେଁ,-ଚିରନ୍ତନ ସ୍ୱପ୍ନ, ଯିଏ କି ସେହି ଦିବସ ଭଳି ବାସ୍ତବଳ ସୂର୍ଯ୍ୟ ଭଳି ଅଶେଷ। କାରଣ ମଣିଷ ପରି ଅଶେଷ ତାର ସେହି ବୈଶିଷ୍ଟ୍ୟ। ତେଣୁ ମଣିଷ ଅତୀତରେ ତାର ସେହି ଉଦ୍ୟମରୁ ଦିନେ ହେଲେ କ୍ଷାନ୍ତ ହୋଇ ନାହିଁ, ଭବିଷ୍ୟତରେ ମଧ୍ୟ କେବେ ହୋଇ ନ ପାରେ । ରୁଷରେ ସମାଜବାଦର ପତନ, ସମାଜବାଦୀର ତତ୍ତ୍ୱର

ଅବାସ୍ତବତାର ପ୍ରମାଣ ନୁହେଁ । ତାକୁ ବାସ୍ତବ କରିବା ଦିଗରେ ମଣିଷର ସେହି ଅନବରତ ଉଦ୍ୟମରେ ତା' ଏକ ସାମୟିକ ବିଚ୍ୟୁତି ମାତ୍ର ।

ଏଠାରେ ସେହି ସମାଜବାଦ ନିର୍ମାଣରେ ଦୋଷ, ତ୍ରୁଟି ଓ ଦୁର୍ବଳତା ଆଦିର ଆଲୋଚନା ଆମର ବିଷୟବସ୍ତୁ ନୁହେଁ । କେବଳ ଏତିକି କହିଦେବା ଯଥେଷ୍ଟ ହେବ ଯେ, ଅର୍ଥନୈତିକ ଓ ସାମାଜିକ ଶୋଷଣର ବିଲୋପରେ ସାମ୍ୟର ଭିତ୍ତି ପଡ଼େ ସହିତ ତେଣିକି ଶାସନକ୍ଷେତ୍ରରେ ଶାସନକ୍ଷମତାର ସାମ୍ୟ ଦରକାର । ଅର୍ଥାତ୍ ରାଷ୍ଟ୍ର-କ୍ଷମତାର ସମ ବିତରଣ ଆବଶ୍ୟକ । ପ୍ରତ୍ୟେକ ସ୍ତରରେ ଲୋକଙ୍କର ଆତ୍ମଶାସନ ରହିବା ଦରକାର, ଯାହାର କ୍ରମଶଃ ଗତି ହେବ ରାଷ୍ଟ୍ର ଶାସନର ବିଲୋପ ଦିଗରେ, କିନ୍ତୁ କଥାଟା ଠିକ୍ ଓଲଟା ଘଟିଛି । ସମସ୍ତ କ୍ଷମତା ଉପରେ ସର୍ବହରା ଏକଛତ୍ର ଶାସନର କେନ୍ଦ୍ରୀଭୂତ ହୋଇ କମ୍ୟୁନିଷ୍ଟପାର୍ଟି ଏକ ଗୋଷ୍ଠୀର ଏବଂ ଶେଷକୁ ବ୍ୟକ୍ତିବିଶେଷଙ୍କର ଏକଛତ୍ର ଶାସନ ହୋଇଉଠିଛି । ତଳୁ ଉପର ଯାଏ, ସବୁ କ୍ଷେତ୍ରରେ ଦେଖାଦେଇଛି ଅମଲାତନ୍ତ୍ରର ପ୍ରାଧାନ୍ୟ । ଗଣତାନ୍ତ୍ରିକ ଅଧିକାର, ନାଗରିକ ସ୍ୱାଧୀନତା, ସଭା ସମିତି ପ୍ରଚାର ଆଦିର ସମାନ ଅଧିକାର, ଯାହା ସାମ୍ୟର ଅଗଗତି ସହିତ ସୁପ୍ରସାରିତ ହେବାର କଥା, ତାହା ଓଲଟି ସଙ୍କୁଚିତ ହୋଇ ଚାଲିଲା । ଲୋକର ସ୍ୱାତନ୍ତ୍ର୍ୟ ନଷ୍ଟ ହେବାରେ ମଣିଷର ନିଜସ୍ୱ ଉଦ୍ୟମ କ୍ରମଶଃ ଶିଥିଳ ହୋଇଆସିଲା । ଯୋଜନା ତାର ଲକ୍ଷ୍ୟ ହାସଲ କରିପାରିଲା ନାହିଁ । ବିଜ୍ଞାନ ଓ କାରିଗରୀ ବିଦ୍ୟା, ଯାହା ଆଧୁନିକ ଉତ୍ପାଦନର ମୂଳଭିତ୍ତି, ତାହା ମଧ ପଛେଇଗଲା । ଲୋକଙ୍କର ବର୍ଦ୍ଧିଷ୍ଣୁ ଚାହିଦା ପୂରଣର ବିପର୍ଯ୍ୟୟ, ଅର୍ଥାତ୍ କ୍ରମାଗତ ଗଣତନ୍ତ୍ରର ବିକାଶ ଓ ଉତ୍ପାଦନ ଶକ୍ତିର ପ୍ରସାର, ଯାହା ।ସମାଜପାଦ ଲାଗି ଅପରିହାର୍ଯ୍ୟ, ତାର ଅଧୋଗତି ହେଲା-ସେହି ପତନର ମୁଖ୍ୟ କାରଣ ।

ତତ୍ତ୍ୱ ଦୃଷ୍ଟିରୁ ଦେଖିଲେ, ସମାଜବାଦ ହେଉଛି ମାର୍କସଙ୍କର ସାମାଜିକ ବିକାଶ ବିଜ୍ଞାନର ଫଳ । ସେ ବୈଜ୍ଞାନିକ ଐତିହାସିକ ଦୃଷ୍ଟିରୁ ସମାଜକୁ ବିଚାର କରିଛନ୍ତି । ତାଙ୍କ ସମୟ ପର୍ଯ୍ୟନ୍ତ ଦର୍ଶନ, ଇତିହାସ, ଅର୍ଥନୀତି ଓ ରାଜନୀତି ଆଦି ଜ୍ଞାନର ଭିତ୍ତିରେ ସମାଜର ପରିବର୍ତ୍ତନ ପ୍ରକ୍ରିୟାକୁ ଉପସ୍ଥାପିତ କରିଛନ୍ତି । ପୁଞ୍ଜିବାଦର ବିକାଶ ଓ ତାର ବିନାଶକୁ ଦର୍ଶାଇବା ସହିତ ଜଣାଇ ଦେଇଛନ୍ତି, ପୁଞ୍ଜିବାଦର ଏକମାତ୍ର ବିକଳ୍ପ ହେଉଛି ସମାଜବାଦ । ପୁଞ୍ଜିବାଦ ବିଭିନ୍ନ ଦେଶରେ ବିଭକ୍ତ ହେଲେ ବି ତାହା ଯେପରି ଗୋଟାଏ ବିଶ୍ୱବ୍ୟାପୀ ବ୍ୟବସ୍ଥା ଏବଂ ଦୁନିଆକୁ ଶୋଷକ ଓ ଶୋଷିତ ଶ୍ରେଣୀରେ ବିଭକ୍ତ କରିଦେଇଛି, ତାର ରୂପାନ୍ତର ସେହିପରି ବିଶ୍ୱବାସୀଙ୍କ ଦ୍ୱାରା ବିଶ୍ୱବ୍ୟାପୀ ହେବା ଅବଶ୍ୟମ୍ଭାବୀ । ଉତ୍ପାଦନ-ଶକ୍ତିର ବିକାଶ ହେଲା ସମାଜ-ବିକାଶର ମୌଳିକ ଜିନିଷ । ତାର ବିକାଶରେ ମଣିଷ ସମାଜ ଅଗ୍ରଗତି କରି ଚାଲିଛି । ପୁଞ୍ଜିବାଦ ଯେପରି ଜନ୍ମଲଭି ଲୋପ ପାଏ, ତାହା ସେହିପରି ସମାଜବାଦକୁ ଜନ୍ମଦେଇ ଆଗେଇ ନିଏ ।

ତାଙ୍କର ସେହି ମତକୁ ମାର୍କସ ଚୂଡାନ୍ତ ସତ୍ୟ ରୂପେ ଧରିନାହାନ୍ତି । ତାହା ହେଉଛି ସମାଜବିଜ୍ଞାନର ଏକ ଭିତ୍ତି-ପ୍ରସ୍ତର । ସବୁ ବିଜ୍ଞାନ ଭଳି ତାର ମଧ ବୃଦ୍ଧି ଓ ବିକାଶ ରହିଛି ।

## ॥ ୩୨୩ ॥

ବିଜ୍ଞାନ ସଦା ଗତିଶୀଳ । ଯେ କୌଣସି ଏକ ମତକୁ ଚରମ ସତ୍ୟର ଆଖ୍ୟା ଦେଇ ତାକୁ ଏକସ୍ଥାନରେ ବାନ୍ଧିଦେବା, ନିଜର ମତକୁ ଏକମାତ୍ର ସତ୍ୟ ବୋଲି ଦାବୀ କରିବା ଅର୍ଥ ହେଉଛି ସେହି ବିଜ୍ଞାନକୁ ବିକୃତ ଓ ତାର ବିକାଶର ପଥକୁ ରୁଦ୍ଧ କରିଦେବା । ଭାରତୀୟ ପରମ୍ପରା ଅନୁଯାୟୀ ଧର୍ମର ଧ୍ୱଜାଧାରିଗଣ ତାଙ୍କର ପ୍ରବଚନକୁ ଭଗବତ ବାଣୀ ବୋଲି ପ୍ରଚାର କରନ୍ତି । ତାର ସତ୍ୟତା ନେଇ ପ୍ରଶ୍ନ ଉଠିଲେ ମଣିଷ ଧର୍ମ-ଦ୍ରୋହିତାର ଶିକାର ହୁଏ । କିନ୍ତୁ ମାର୍କସ୍‌ବାଦ ସଦା ଚାହେଁ ତାର ସୃଜନଶୀଳ ପ୍ରୟୋଗ । ବିକାଶ ବିନା ମାର୍କସବାଦ ନାସ୍ତି ।

ଏପର୍ଯ୍ୟନ୍ତ ଜଗତରେ ସାମ୍ୟ-ମୈତ୍ରୀ-ପ୍ରୀତି କେଉଁଠି ହେଲେ ରୂପାୟିତ ହୋଇ ପାରିନାହିଁ । ତା ବୋଲି କ' ଣ ଜଗନ୍ନାଥ-ଭାବ ଅସତ୍ୟ ? ତେଣୁ ତାକୁ ପ୍ରତ୍ୟାଖାନ କରିବାକୁ ହେବ ? ମାର୍କସବାଦକୁ ଯଦି ଅସତ୍ୟ କୁହ, ତେବେ ଜଗନ୍ନାଥ-ଭାବକୁ କିଏବାକୁ ଆଉ କେହି ସମର୍ଥ ନୁହନ୍ତି ।

ଜଗନ୍ନାଥ-ଭାବହିଁ ଅକାଟ୍ୟ ଓ ସତ୍ୟ, ସେହି ସତ୍ୟପ୍ରାପ୍ତିର ଏକମାତ୍ର ଉପାୟ ହେଲେ ମାର୍କସ୍‌ବାଦ । ଯେହେତୁ ତାହା ସାମାଜିକ ବିକାଶର ବୈଜ୍ଞାନିକ ପ୍ରକ୍ରିୟା ଦ୍ୱାରା ପ୍ରତିପାଦିତ । ଆଉ ସାମାଜିକ ବିକାଶର ବିଜ୍ଞାନ ଯଦି ବାସ୍ତବରେ ବୈଜ୍ଞାନିକ, ତେବେ ଜଗନ୍ନାଥ-ଭାବର ଅନ୍ୟଥା-ନାହିଁ ।



# ଅଷ୍ଟାଦଶ ପର୍ବ

## ନାଥତ୍ୱର ପ୍ରକୃତିରେ ମାନବ ଓ ପ୍ରକୃତିର ସଂହତି

ଉପସଂହାର ଦାବୀ ପରେ ଆଲୋଚନାରେ ସମ୍ୟକ୍ ଉତ୍ତର, ରୋକ୍‌ଠୋକ୍ ଭାବେ । ଆଲୋଚନାରୁ ଜଣାଯାଏ, ମଣିଷ ଜଗନ୍ନାଥଙ୍କୁ ଆଦ୍ୟରୁ ଧରିଛି, ପୁଣି ସେଇଠି ହିଁ ତାର ଅନ୍ତିମ ଆଶ୍ରୟସ୍ଥଳ । କିଏ ବା ଧର୍ମଦିଗରୁ ଦେଖେ, କିଏ ବା ସାମଜର ବିକାଶ ଦିଗରୁ ତାକୁ ବିଚାର କରେ । ଜଣକ ପାଇଁ ଜଗନ୍ନାଥ ସ୍ୱର୍ଗୀୟ ସୁଖ ଓ ମୁକ୍ତିର ପ୍ରାପ୍ତି ହେଲେ, ଅନ୍ୟ ଜଣକ ପାଇଁ ପାର୍ଥିବ ବାସ୍ତବତାରେ ସାମ୍ୟ-ମୈତ୍ରି-ପ୍ରୀତିର ମାନବିକ ଅଭାବ୍ୟକ୍ତି ।

ଜଗନ୍ନାଥଙ୍କ ପ୍ରତି ମଣିଷର ଦୃଷ୍ଟିକୋଣ ଦୁଇ ଭାଗରେ ବିଭକ୍ତି । ବ୍ୟକ୍ତିଗତ ଓ ସମଷ୍ଟିଗତ । ବ୍ୟକ୍ତିଗତ କାମନାର ପୂରଣ ସ ସମଷ୍ଟିଗତ ଆକାଙ୍‌କ୍ଷାର ଉପଲବ୍‌ଧି । ବ୍ୟକ୍ତିବିଶେଷଙ୍କ ପାଇଁ ତାହା ପରଲୋକରେ ମୋକ୍ଷ ହେଲାବେଳେ, ସର୍ବସାଧାରଣଙ୍କ ପାଇଁ ଇହଲୋକରେ ଐଶ୍ୱର୍ଯ୍ୟ । ପ୍ରଥମଟିର ମାର୍ଗ ହେଲା ଧର୍ମ । ତାର ପ୍ରାପ୍ତିର ମାଧମ ହେଲା ବିଶ୍ୱାସ । ଅନ୍ୟଟିର ମାର୍ଗ ହେଲା ସେଇ ଜଗନ୍ନାଥ ଭାବ । ତାର ପ୍ରାପ୍ତିର ମାଧମହେଲା ସାମାଜିକ ଐକ୍ୟ ସ ମିଳିତ ପ୍ରଚେଷ୍ଟା ।

ପ୍ରଥମ ମାର୍ଗରେ, ମଣିଷ ଲାଗିପଡ଼ି ଜଗନ୍ନାଥଙ୍କୁ ଡାକେ । ସେ ସେଇ ଲକ୍ଷ୍ୟ ପ୍ରତି ସଦା ସଚେତନ । ଦ୍ୱିତୀୟ ମାର୍ଗରେ, ସେ ତା ଜୀବନ-ସଂଗାମରେ ଅନବରତ ଲଢ଼େ, ସେ ତାର ଲକ୍ଷ୍ୟ ସ ଭାବ ପ୍ରତି ସଚେତନ ନୁହେଁ । ପ୍ରଥମ ମାର୍ଗରେ ତାର ଗତି ପାଳ କାଳ ଧରି ସେହି ବିଶ୍ୱାସ ଭିତରେ ହିଁ ଜୀମାବଦ୍ଧ । ତାର ଆଉ ଅଗ୍ରତି ନାହିଁ । ଦ୍ୱିତୀୟ ମାର୍ଗରେ ମଣିଷର ଗତି ସଦା ବିକାଶଶୀଳ । ତାହା ବୁଦ୍ଧଙ୍କର କାମନା-ଶୂନ୍ୟ ସାମ୍ୟର ବାଣୀଠାରୁ ନାନା ବିପ୍ଳବ ଦେଇ ସାମାଜବାଦ ନିର୍ମାଣରେ ପହଞ୍ଚିଛି । ଦୁଇ ମାର୍ଗରେ ଫରକ ହେଲା — ଗୋଟିକ ଲାଗି ଆଖିବୁଜି ଧ୍ୟାନ ଦରକାର ହେଲା, ଅନ୍ୟଟି ଲାଗି ଆଖିଖୋଲା କର୍ମ ଅପରିହାର୍ଯ୍ୟ । ଜଗନ୍ନାଥଙ୍କ ପ୍ରତି ଅଟଳ ବିଶ୍ୱାସହିଁ ଏକ ଦିଗରେ ଜ୍ଞାନପ୍ରାପ୍ତି, ଧର୍ମ ଅର୍ଜନ,

ଓ ମୋକ୍ଷଲାଭର ଏକମାତ୍ର ପଥ ହେଲାବେଳେ, ଅନ୍ୟ ଦିଗରେ ଜଗନ୍ନାଥ-ଭାବର କ୍ରମାଗତ ଅନୁସରଣ,—ସାମ୍ୟ—ମୈତ୍ରୀ-ପ୍ରୀତିକୁ ରୂପାୟିତ କରିବାର ସଂଗ୍ରାମ ହେଲା ଏକମାତ୍ର ପନ୍ଥା । ପ୍ରଥମଟି ମଣିଷ ମଣିଷ ମଧ୍ୟରେ, ଖାଦ୍ୟ-ଖାଦକର ସମ୍ପର୍କକୁ ଆବୃତ ଓ ଆଦର୍ଶସ୍ଥାନୀୟ କଲାବେଳେ, ଦ୍ୱିତୀୟଟି ସେହି ସମ୍ପର୍କ ଓ ବୀଭତ୍ସ ରୂପକୁ ଅନାବୃତ କରିବା ସହିତ ତାର ବିଲୋପକୁ ସୁନିଶ୍ଚିତ କରେ । ପ୍ରଥମଟି ବ୍ୟକ୍ତିଗତ ଧର୍ମବିଶ୍ୱାସ । ତେଣୁ ସାଧୁଙ୍କଠାରୁ ଚୋର ଖଣ୍ଟ ଯାଏ ପ୍ରତ୍ୟେକେ ଜଗନ୍ନାଥଙ୍କୁ ଲୋଡ଼ନ୍ତି ସ୍ୱ ସ୍ୱ ଇଚ୍ଛା ଓ ସ୍ୱାର୍ଥ ସାଧନରେ । ଦ୍ୱିତୀୟଟି ସମଷ୍ଟିର ଡାକ, ସେଠି କୌଣସି ବ୍ୟକ୍ତିଗତ ଇଚ୍ଛା, ସ୍ୱାର୍ଥ ଓ ଅଭିଳାଷ ପ୍ରଶ୍ନ ନାହିଁ । ସମସ୍ତ ସମାଜ ଲୋଡ଼େ ଜଗନ୍ନାଥଙ୍କୁ ସମୂହ ସ୍ୱାର୍ଥ ପାଇଁ, - ସାମ୍ୟ-;ମୈତ୍ରୀ-ପ୍ରୀତି ଲାଗି - ଏଠି ଅସାମାଜିକ ମାନବିକତା ବିରୋଧୀଗଣ କୁଲାରେ ପାଛୁଡ଼ା ଅଗାଡ଼ି ପରି ଅଲଗା ହୋଇ ବାହାରନ୍ତି ।

ଲକ୍ଷ୍ୟ କରିବାକୁ ହେବ, ଗଦା ଗଦା ଶାସ୍ତ୍ର ପୁରାଣ ବ୍ୟକ୍ତି ବିଶେଷଙ୍କର ବିଶ୍ୱାସର ଗାରିମା ବର୍ଣ୍ଣନା କରିବା ଉଚିତ । କିନ୍ତୁ ଜଗନ୍ନାଥଙ୍କ ସର୍ବଶ୍ରେଷ୍ଠ ଅଭିବ୍ୟକ୍ତି,- ତାଙ୍କର ସେଇ ଭାବ ବିଷୟରେ ସମ୍ପୂର୍ଣ୍ଣ ନୀରବ । ତାର ଉପେକ୍ଷା ଇଚ୍ଛାକୃତ ନ ହେଲେ ବି ଉଦ୍ଦେଶ୍ୟହୀନ ନୁହେଁ । ଶ୍ରେଣୀବିଭକ୍ତ ସାମାଜରେ ସର୍ବତ୍ର ସମୂହ ସ୍ୱାର୍ଥ ଉପରେ ବ୍ୟକ୍ତିଗତ ସ୍ୱାର୍ଥର ରାଜୁତି ।

ବିଶ୍ୱାସ ସ୍ୱତଃ ପ୍ରମାଣିସିଦ୍ଧ । ଏହି ମତର ପରିଣତ ସମଗ୍ର ବିଶ୍ୱ ପକ୍ଷରେ ଘୋର ଭୟାବହ । ବେଦ ହିନ୍ଦୁଙ୍କ ପାଇଁ, ବାଇବେଲ ଖ୍ରୀଷ୍ଟିୟାନଙ୍କ ପାଇଁ, କୋରାନ୍ ମୁସଲମାନଙ୍କ ପାଇଁ ପ୍ରମାଣସିଦ୍ଧ ତାହା ବିଶ୍ୱାସ ଉପରେ ପ୍ରତିଷ୍ଠିତ । ପ୍ରତ୍ୟେକେ ଚାହାନ୍ତି, ଜଗତଟା ତାଙ୍କରି ପ୍ରମାଣରେ ଚାଲୁ । ସେଥିଲାଗି ଧରଣୀ କେତେ ରୁଧିରସିକ୍ତ ନ ହୋଇଛି ! ମାନବଜାତିର କି ଅମୂଲ୍ୟସମ୍ପଦ ଧ୍ୱଂସ ନ ପାଇଛି !! ଖ୍ରୀଷ୍ଟ ଧର୍ମଯୁଦ୍ଧ କ୍ରୁଶେଡ଼, ମୁସଲମାନଙ୍କ ଦ୍ୱାରା ଆଲେକ୍‌ଜାଣ୍ଡ୍ରିୟାର ବହୁ ଯୁଗର ରକ୍ଷିତ ଜ୍ଞାନର ଭଣ୍ଡାର ଗ୍ରନ୍ଥାଗାରର ଧ୍ୱଂସ କ'ଣ ତାର ଦୃଷ୍ଟାନ୍ତ ନୁହେଁ ? ମଣିଷ ବାଇବେଲ ଓ କୋରାନକୁ ପ୍ରମାଣସିଦ୍ଧ ବୋଲି ମାନୁ ନ ଥିଲେ, କେବେ କ'ଣ ତା କରିଥା'ନ୍ତା ? ଏମିତି କି, ଏ ଯୁଗରେ ବି ଆଜି ବାବରୀ ମସଜିଦ୍‌କୁ ଭାଙ୍ଗି ତା ସ୍ଥାନରେ ମନ୍ଦିର ନିର୍ମାଣ ଲାଗି ସାରା ଦେଶଟାକୁ ବଳି ମୁହଁକୁ ଠେଲି ଦିଆଯାଏ । ଏକ ହନ୍ଦୁ ସମ୍ପ୍ରଦାୟର ବିଶ୍ୱାସ ଯେ, ଠିକ ସେହି ସ୍ଥାନରେ ହିଁ ରାମଙ୍କର ଜନ୍ମ,— ଆଉ ସେହି ବିଶ୍ୱାସ ହିଁ ପ୍ରମାଣସିଦ୍ଧ । ସମସ୍ତଙ୍କ ଭିତରେ ଏକମାତ୍ର ଜଗନ୍ନାଥହିଁ ବିଶ୍ୱାସସିଦ୍ଧ ପ୍ରମାଣର ଉର୍ଦ୍ଧ୍ୱରେ । ଏହାହିଁ ଅନ୍ୟ ସମସ୍ତଙ୍କ ସହ ଜଗନ୍ନାଥଙ୍କର ମୌଳିକ ପାର୍ଥକ୍ୟ । ଜଗନ୍ନାଥ-ଭାବର ଉପଲବ୍ଧି, ତାର ବାସ୍ତବ ରୂପାୟନ, ସେଇ ବିଶ୍ୱାସସିଦ୍ଧ ଦୃଷ୍ଟିକୋଣକୁ ପ୍ରତ୍ୟାଖ୍ୟାନ କରେ । କାରଣ, ଅହରହ ପରିବର୍ତ୍ତନର ଭାବକୁ ସଦା ଜାଗ୍ରତ ଏବଂ ବାସ୍ତବତାକୁ ସଦା ଗତିଶୀଳ କରିବା ଦ୍ୱାରାହିଁ କେବଳ ସାମ୍ୟ ମୈତ୍ରୀ-ପ୍ରୀତି ଦିଗରେ ଅଗ୍ରଗତି ସମ୍ଭବ । ଯେଉଁମାନେ ସେହି ସାମ୍ୟକୁ ମହାପ୍ରସାଦ ସେବନ ଭିତରେ ଦେଖନ୍ତି, ସେମାନେ ଜଗନ୍ନାଥଙ୍କୁ କେବଳ ଅନ୍ୟ ଧର୍ମ ସହିତ ସମାନ କରିଦିଆନ୍ତି । ସେଠି ଅନ୍ୟ ଧର୍ମ ଭଳି କୌଣସି ସାମାଜିକ ଅର୍ଥନୈତିକ ସାମ୍ୟର ପ୍ରଶ୍ନ ନ ଥାଏ ।

ଧର୍ମଦିଗରୁ ଆଲୋଚନାର ଅଭାବ ନାହିଁ । ଯେତେ ଆଲୋଚନା କଲେ ବି ବିଶ୍ୱାସ ଛଡ଼ା ସେଥିରୁ ଆଉ କିଛି ବାହାରି ନ ପାରେ । ସେଇ ବିଶ୍ୱାସରୁ ବିଚ୍ୟୁତି ଅର୍ଥ ଧର୍ମରୁ ସ୍ଖଳନ । ସବୁଧର୍ମର ଏକମାତ୍ର ଡାକ ସେଇ ବିଶ୍ୱାସକୁ ଅଧିକ ଦୃଢ଼ ଓ ମଜବୁତ୍ କର । କିନ୍ତୁ 'ସେଇ ଭାବର' ଚରିତ୍ର ହେଲା — ମଣିଷର ଗତାନୁଗତିକ ଧାରଣା, ତାର ଭାବନାର ଦାସତ୍ୱ ଓ କର୍ମକ୍ଷେତ୍ରରେ ଅଚଳତାକୁ ଭାଙ୍ଗିବା । ମଣିଷର ବାସ୍ତବ ଜୀବନ ତାର ଅଲକ୍ଷ୍ୟରେ ତାକୁ ସେ ଦିଗରେ ପ୍ରଣୋଦିତ କରିଆସିଛି । ବିବର୍ତ୍ତନ ସ ଗତିର ଭିତର ଦେଇ ଜୀବନର ଉତ୍ପତ୍ତି । ତେଣୁ ସେି ଗତିହିଁ ସମାଜରେ ମଣିଷର ବିକାଶର କାରଣ । ତାହା କିପରି ଆରମ୍ଭରୁ ବୃନ୍ଦଙ୍କଠାରୁ ସମାଜବାଦ ନିର୍ମାଣ ପର୍ଯ୍ୟନ୍ତ ବିଭିନ୍ନ ଉଦ୍ୟମ, ଆନ୍ଦୋଳନ ଓ ବିପ୍ଳବ ମଧ୍ୟରେ, ସମସ୍ତ ଉତ୍‌ଥାନ ପତନ ଭିତର ଦେଇ ଗତି କରିଆସିଛି, ପୂର୍ବରୁ ଆଲୋଚିତ ହୋଇଛି । ତାହା ଯଦି ମଣିଷର ଅଲକ୍ଷ୍ୟରେ ସେଇ ଜଗନ୍ନାଥଭାବର ରୂପାୟନ ଦିଗରେ ତାର ଗତିର ଲକ୍ଷଣ ହୁଏ, ତେବେ ଜଗନ୍ନାଥ-ଭାବର ସେଇ ସଲକ୍ଷ୍ୟ ବିଚାରକୁ କିଏ ମଣିଷ କେବେ ଏଡ଼ିଦେଇ ପାରେ ?

ସେଇ ଜଗନ୍ନାଥ-ଭାବର ଡାକ ହୋଇଛି ସାମାଜିକ ବିକାଶର ନିର୍ଦ୍ଦେଶ । ସାମାଜିକ ବିକାଶ, ବିଜ୍ଞାନର ପରିଣତି । ଏକ ବିଜ୍ଞାନ ଭାବେ ତାର ପ୍ରୟୋଗରେ ସାମୟିକ ଭାବେ କେବେ କେଉଁଠି ସ୍ଖଳନ ଘଟିଲେ, ଏପରିକି ବିପର୍ଯ୍ୟୟ ଦେଖାଦେଲେ ବି ସେଇ ନିୟମର ଅନ୍ୟଥା ନାହିଁ । ମଣିଷ ତାର ଯାତ୍ରାପଥରେ ଯେତେ ଭୁଆଁ ବୁଲିଲେ ବି ଶେଷରେ ସେଇ ସାମାଜିକ ବିଜ୍ଞାନର ମାର୍ଗରେ ହିଁ ପହଞ୍ଚିବ । ସେହିପରି ପହଞ୍ଚିବ ଜଗନ୍ନାତ-ଭାବର ଧାମରେ । ଯେତେଦିନଯାଏ ସେଇ ଅସାମ୍ୟର ମୂଳ, ଉଦ୍‌ବୃତ୍ତ ମୂଲ୍ୟର ଅପହରଣ ରହିଛି, ସେତେବେଳଯାଏ ଯେଉଁ ରୂପରେ ହେଉ ପଛେ ମଣିଷ ମଣିଷ ଭିତରେ ସଂଘର୍ଷ ରହିଥିବ, ସାମ୍ୟ ଦିଗରେ ଯାତ୍ରାର ଅବସାନ ନାହିଁ । ଯେତେଦିନଯାଏ ଉଦ୍‌ବୃତ୍ତ ମୂଲ୍ୟ ଶୋଷଣର ଅବସାନ ଦ୍ୱାରା ମଣିଷର ସେଇ ଅପହୃତ ସତ୍ତା, - ତାର ଅନ୍ତରିତ ମାନବିକ ଆତ୍ମା, ମଣିଷ ଭିତରକୁ ପ୍ରତ୍ୟାବର୍ତ୍ତନ ନ କରିଛି ଓ ପ୍ରସ୍ଫୁଟିତ ନ ହୋଇଛି, ସେତେଦିନଯାଏ, ଜଗନ୍ନାଥ-ଭାବ ମାନବ ଜୀବନର ଧ୍ରୁବତାରା ହୋଇ ଜଳୁଥିବ ।

ସାମ୍ୟବାଦ ସମାଜର ଭବିଷ୍ୟତ, — ଏହା କହି ଜଗନ୍ନାଥ-ଭାବର ବାସ୍ତବତାକୁ ଦର୍ଶାଇବା ଏକ ସହଜ ଦୃଷ୍ଟାନ୍ତ । ଜଗନ୍ନାଥ କିନ୍ତୁ କେବଳ ମଣିଷର ସାମାଜିକ ନିୟମ ଭିତରେ ନାହାନ୍ତି । ତାଙ୍କର ସେଇ ଭାବର ପରିସର ସମସ୍ତ ଜଗତପ୍ରସାରୀ । ବିଜ୍ଞାନ, ଦର୍ଶନ, ଅର୍ଥନୀତି ଏବଂ ନୀତିବୋଧ ସହିତ ଖୋଦ ବିଶ୍ୱ ପ୍ରକୃତି, ପ୍ରତ୍ୟେକ ସେଇ ଭାବର ପ୍ରତିଫଳନକୁ ଧାରଣ କରନ୍ତି । ଅର୍ଥାତ୍ ପ୍ରକୃତିର ସହଜାତ ସ୍ୱଭାବ ପ୍ରତ୍ୟେକ କ୍ଷେତ୍ରରେ ଆପଣାକୁ ପ୍ରକାଶ କରେ । ତାର ସେଇ ସ୍ୱଭାବ, ସାମ୍ୟ-ମୈତ୍ରୀ-ପ୍ରୀତିର ଭାବକୁ ପ୍ରତିପାଦିତ ଓ ଉତ୍ସାହିତ କରିଥାଏ । ସେସବୁର ଆଲୋଚନା ଏଠାରେ ସମ୍ଭବ ନ ହେଲେ ବି ସଂକ୍ଷେପରେ ସେ ବିଷୟରେ କେତେକ ଦୃଷ୍ଟାନ୍ତ ବିନା ଆମର କଥା ଅସମ୍ପୂର୍ଣ୍ଣ ରହିଯିବ ।

ମଣିଷ ପ୍ରକୃତିର ସନ୍ତାନ । ମଣିଷ କିନ୍ତୁ ତାର ମାତାକୁ ବ୍ୟବହାର କରେ ଶତ୍ରୁ ଭାବରେ । ତାକୁ ନିଜ ଜୀବନର ଆଧାର ଭାବେ ନ ଦେଖି ତାକୁ ଆହାର୍ଯ୍ୟ ଭାବେ ଭୋଗ କରେ । ନିଜ ଜୀବନର ଉତ୍ସକୁ ପରିଣତ କରେ ଆପଣାର ଭୋଜ୍ୟ ବସ୍ତୁରେ । ତାର ଧ୍ୱଂସଜନିତ ପ୍ରକ୍ରିୟା ଆଜି ଏତେଦୂର ଉତ୍କଟ ଯେ, ପ୍ରକୃତି ମଣିଷ ଉପରେ ତାର ଚରମପତ୍ର ଛାଡ଼ି କରି କହେ, - ମଣିଷ ଯଦି ସେଇ ପଥରୁ କ୍ଷାନ୍ତ ନ ହୁଏ, ତେବେ ଅଚିରେ ତାର ଧ୍ୱଂସ ଅନିବାର୍ଯ୍ୟ । ତେଣୁ ପୃଥିବୀର ସବୁ ରାଷ୍ଟ୍ରମୁଖ୍ୟ ଓ ବେସରକାରୀ ପ୍ରତିନିଧି ତାର ପ୍ରତ୍ୟୁତ୍ତର ଦେବାଲାଗି ରିଓଠାରେ ଆଲୋଚନାରେ ବ୍ୟସ୍ତ । ପୃଥିବୀ ଏତେ ବଡ଼ ବ୍ୟାପକ ପ୍ରତିନିଧିମୂଳକ ସମ୍ମିଳନୀ କେବେ୧ ଦେଖି ନଥିଲା । ତାହା ଜଣାଇଦିଏ ମଣିଷ-ସମାଜ ଆଜି କେତେଦୂର ବିପନ୍ନ। ସେଠାର ଘୋଷଣା ହେଲା, "ଶାନ୍ତି, ବିକାଶ ଓ ପାରିବେଶର ସୁରକ୍ଷା, ପରସ୍ପର ନିର୍ଭରଶୀଳ, ଅବିଭକ୍ତ ।" ଏହା ଏକ ତାତ୍ପର୍ଯ୍ୟପୂର୍ଣ୍ଣ ପବିତ୍ର କାମନା ହେଲେ ବି ତାର ଆବଶ୍ୟକତା ମାନବସମାଜ ଏତେ ଦିନେକେ ଉପଲବ୍‌ଧି କରିବା ଆରମ୍ଭ କରିଛି । ତାର ସମାଧାନ ବିନା ତାର ନିଜର ଅସ୍ତିତ୍ୱ ସମ୍ଭବ ନୁହେଁ ।

ଏହା କୌଣସି ଲୋକ, ସମ୍ପ୍ରଦାୟ ବା ଦେଶଜାତିର ପ୍ରଶ୍ନ ନୁହେଁ, ସମସ୍ତ ଜଗତର ସମସ୍ୟା । ତେଣୁ ସେଥିସହିତ ଜଗନ୍ନାଥ ଅସମ୍ପୃକ୍ତ ରହି ନ ପାରନ୍ତି । ସିଏ ଦେତେବେଳେ ଜଗଦର ନାଥ, ତାଙ୍କର ସେଇ ନାଥତ୍ୱର ନିଦର୍ଶନ ହେଲା ମଣିଷ ଓ ପ୍ରକୃତିର ସେହି ଦ୍ୱନ୍ଦର ସମାଧାନର ପଥ ନିର୍ଦ୍ଧାରଣ ।

ମଣିଷ ପ୍ରକୃତିର ଦ୍ୱନ୍ଦ ଅସଲରେ ସାମାଜିକ ନିୟମ ସ ପ୍ରାକୃତିକ ନିୟମ ଭିତରେ ଦ୍ୱନ୍ଦ । ବିଶେଷ କରି ପ୍ରାଣୀବିଜ୍ଞାନ ଓ ଭୂବିଜ୍ଞାନ , ଏଇ ଦୁଇ ନିୟମ ମଧରେ ସଂଘର୍ଷ । ପ୍ରଥମରେ ମଣିଷ ସ ସମାଜ, ପ୍ରାକୃତିକ ନିୟମକୁ ନିଜର ଉନ୍ନତି ଓ ଅଗ୍ରଗତି ଦିଗରେ ବ୍ୟବହାର କରୁଥିଲା । କିନ୍ତୁ ସମାଜ ବିକାଶର ଗୋଟାଏ ଅବସ୍ଥାରେ ବୃହଦ୍ ଶିଳ୍ପ, ବୃହଦ୍ ଉତ୍ପାଦନ ପ୍ରଣାଳୀ, ଏକମାତ୍ର ଲାଭ ଦୃଷ୍ଟିରୁ ଅଗ୍ରସର ହେବାରେ ଧ୍ୱଂସାତ୍ମକ ଉପାୟର ପ୍ରୟୋଗ ହେଲା । ସେତେବେଳେ ତାହା ପ୍ରାଣିବିଜ୍ଞନକ ଓ ଭୂବିଜ୍ଞାନ ପ୍ରାକୃତିକ ନିୟମକୁ ଗୁରୁତର ଭାବେ ଲଙ୍ଘନ କରିବାକୁ ଆରମ୍ଭ କଲା । ମଣିଷ-ସମାଜ ଓ ପ୍ରକଙ୍ଗୃତି, ଦୁହେଁ ମୁହାଁମୁହିଁ ସଂଘର୍ଷରେ ଠିଆହେଲେ । ତାହା ଭୀଷଣ ଆକାର ନେଲାବେଳେ ସେଠି ମଣି-ସମା'ଜ ଭିତରର ପାର୍ଥକ୍ୟ ପଛକୁ ପଡ଼ିଯାଏ । ଧନୀ ଦରିଦ୍ର, ସର୍ବହରା ପୁଞ୍ଜିପତି, ପୁଞ୍ଜିବାଦୀ ବା ସମାଜବାଦୀ ସମାଜର ବିଚାର ରହେ ନାହିଁ । ଯେହେତୁ ମଣିଷ ମାତ୍ରେ ପ୍ରକୃତିର ପ୍ରକୋପରେ ସମସ୍ତଙ୍କ ଅସ୍ତିତ୍ୱ ବିପନ୍ନ ।

ଆଜି ସେଇ ଅବସ୍ଥା ଘଟେ । ମଣିଷ ପ୍ରାକୃତିକ ନିୟମ ଲଙ୍ଘନ ଦିଗରେ ଅଗ୍ରସର ହୁଏ । ତାର ମୌଳିକ କାରଣ, ମଣିଷ ସମାଜର ନିଜର ବିରୋଧିତା । ପୁଞ୍ଜିବାଦୀ ସମାଜରେ ମଣିଷ କେବଳ ମଣିଷକୁ ନୁହେଁ , ପ୍ରକୃତିକୁ ମଧ ଶୋଷଣ କରେ ନିଜର ଲାଭ ଓ ଲୋଭ ପାଇଁ । ଲାଭ ଦୃଷ୍ଟିରୁ ସେହି ଶୋଷଣର ପରିଣତିର ନିରାକରଣ ଦିଗରେ କୌଣସି ବ୍ୟବସ୍ଥା

ଗ୍ରହଣ କରେ ନାହିଁ। ତେଣୁ ପ୍ରକୃତିର ପ୍ରଦୂଷଣ ବଢ଼ି ବଢ଼ି ଚାଲେ ଓ ଚାରିଆଡ଼େ ବ୍ୟାପିଯାଏ । ତାହା କୌଣସି ଦେଶର ସୀମା ସରହଦ ମାନେ ନାହି, ତା ପାଇଁ ସମସ୍ତ ପୃଥିବୀ, ସମସ୍ତ ପ୍ରକୃତି, ଗୋଟାଏ । ଦଅଷ୍ଟାନ୍ତ ସ୍ୱରୂପ, - ପୃଥିବୀର ସମସ୍ତ ଜଙ୍ଗଲର ଏକ ପଞ୍ଚମାଂଶ ରହିଛି ବ୍ରାଜିଲ ଦେଶରେ । ତାକୁ କହନ୍ତି ପୃଥିବୀର ହୃଦ୍‌ପିଣ୍ଡ । ପୃଥିବୀର ମଣିଷଙ୍କ ଲାଗି ଯେତେ ପ୍ରାଣବାୟୁ ବା ଅମ୍ଳଜାନ ଦରକାର,ସେହି ଜଙ୍ଗଲ ହିଁ ତାର ଶତକଡ଼ା ୫୦ ଭାଗ ଯୋଗାଇଥାଏ । ଏବେ ଯେପରି ଜଙ୍ଗଲ କଟା ଚାଲିଛି, ସେଥିରେ ତାର ପରିଣତି କ'ଣ ହେବ ? ସେମିତି ଦେଖିଲେ, ପୃଥିବୀର ବହୁ ଉପରେ ଓଜୋନ ବା ଘନୀଭୂତ ଅମ୍ଳଜାନର ଗୋଟାଏ ଅସ୍ତରର ରହିଛି। ସେହି ଆସ୍ତରଣ ଯଦି ଲୋପ ପାଏ, ତେବେ ସୂର୍ଯ୍ୟରୁ ଆସୁଥିବା ସମସ୍ତ ଅଲଟ୍ରା ଭାଓଲେଟ୍ (ଅତିବାଇଗଣୀ) ରଶ୍ମି ସିଧା ସଳଖ ପଅଥିବୀ ଉପରେ ପଡ଼ିବ, ପୃଥିବୀର ସବୁ ଜୀବନ ଏଥିରେ ଜଳିଯିବ। ବର୍ତ୍ତମାନ ଯେଉଁ ସାମାନ୍ୟ ରଶ୍ମି ଖସି ଆସୁଛି ତାହା ହୋଇଛି ଚର୍ମ୍ମ ପାନ୍‌ସରର ପ୍ରଧାନ କାରଣ । ତାହା ମଧ ଉଭିଦ ଓ ପ୍ରାଣିଜଗତର କ୍ଷତି କରେ। ପୃଥିବୀକୁ ଘେରି ରହିଥିବା ସେହି ଓଜୋନ ବଳୟରେ  ଏବେ ଏକ ବଡ଼ କଣା ଦେଖାଦେଲାଣି । ସେଥିରେ କଣା ହେବାର କାରଣ ହେଲା ପୃଥିବୀର ଯାନବାହନ, କଳକାରଖାନା ନନାଦି ଇନ୍ଧନରୁ ନିର୍ଗତ ବାଷ୍ପ ରସାୟନ ଦ୍ରବ୍ୟର ପ୍ରଭାବ । ତାକୁ ଯଦି ରୋକା ନ ଯାଏ, ସେ ଫାଟର ବୃଦ୍ଧି ଘଟେ, ତେବେ ମୂଳରୁ ମଣିଷ ରହିବଟି ? ସେଥିଲାଗି ଦରକାର ସମସ୍ତ ବିଶ୍ୱର ଏକତା ଏବଂ ପୁଞ୍ଜିପତିଙ୍କ ଉପରେ କଣ୍ଟ୍ରୋଲ ଜାରୀ ।

ଜଳବାୟୁର ପ୍ରଦୂଷଣ ଓ ଅନିଶ୍ଚୟତା, ମରୁଭୂମିର ବିସ୍ତାର ଆଦି କିପରି ମଣିଷଜୀବନକୁ ବିପନ୍ନ କରିବାରେ ଲାଗିଛି, ସେ ଦିଗରେ ଗବେଷଣା ଓ ତଥ୍ୟର ଅଭାବ ନାହିଁ । ବୈଜ୍ଞାନିକ ସ୍ୱାମୀନାଥନ୍‌ଙ୍କ ଭାଷାରେ ପୃଥିବୀର ଶତକଡ଼ା ୨୦ ସର୍ବବୃହତ୍ ଧନୀ, ପୃଥିବୀର ସମସ୍ତ ଆୟର ୮୨.୭ ଶତାଂଶ ଉପଭୋଗ କଲାବେଳେ ପୃଥିବୀର ସବୁଠୁ ଦରିଦ୍ରତମ ୨୦ ଭାଗ ଲୋକ ସେହି ଆୟର ୧.୪ ଶତାଂଶ ଭୋଗ କରିଥାଆନ୍ତି । ଅର୍ଥାତ୍ ପୃଥିବୀର ସବୁଠାରୁ ବଡ଼ ଧନୀ ଶ ହେକେ କୋଡ଼ିଏ ଏବଂ ସବୁଠାରୁ ଅଧିକ ନିର୍ଦ୍ଧନ ଶହେକେ କୋଡ଼ିଏ ମଧ୍ୟରେ ଏହାହିଁ ପାର୍ଥକ୍ୟ । ଏହି ସମାଜରେ ଦାରିଦ୍ର୍ୟରୁ ପ୍ରାଚୁର୍ଯ୍ୟ ଏବଂ ପ୍ରାଚୁର୍ଯ୍ୟରୁ ପ୍ରଦୂଷଣ ହୋଇଛି ବର୍ତ୍ତମାନର ରୀତି । ମଣିଷ ଓ ପ୍ରକୃତି ଦୁହିଁଙ୍କର ଆଖିବୁଜା ଶେଷଣର ଫଳ। ଏଇ ଯେଉଁମାନେ ମଣିଷକୁ ଶୋଷନ୍ତି, ଠିକ୍ ସେଇମାନେ ପ୍ରକୃତିକୁ ଶେଷଣ କରନ୍ତି, ସେଇ ସମାନ ମୁନାଫା ଲୁଣ୍ଠନ ଉଦ୍ଦେଶ୍ୟରେ । ସେଇମାନେ ଏକ ଦିଗରେ ସାମାଜିକ ସଙ୍କଟ ସୃଷ୍ଟି କଲାବେଳେ, ଅନ୍ୟ ଦିଗରେ ପ୍ରାକୃତିକ ସଙ୍କଟକୁ ଆହ୍ୱାନ କରନ୍ତି । ଉଭୟ କ୍ଷେତ୍ରରେ ସେଇ ସଂକଟ ବିଶ୍ୱବ୍ୟାପୀ ସାମାଜିକ ସଙ୍କଟ ଦ୍ୱାରା ଯେପରି ଅନାହାର, ଉତ୍ପୀଡ଼ନ, ରୋଗବ୍ୟାଧି ବ୍ୟାପେ, ଯୁଦ୍ଧ ସଂଘର୍ଷ ଘଟେ, ପରମାଣୁ ଅସ୍ତ୍ରର ପ୍ରୟୋଗରେ ମାନବସତ୍ତା ନିଶ୍ଚିହ୍ନ ହେବାକୁ ବସେ, ସେହିପରି ପ୍ରକୃତିର ଅବାଧା ଲୁଣ୍ଠନ ଦ୍ୱାରା ସମସ୍ତ ପ୍ରକାର ରୋଗ, ବ୍ୟାଧି, ଅନାହାର ମୃତ୍ୟୁ ବ୍ୟାପେ, ଶେଷରେ ପ୍ରଦୂଷଣ ଜନିତ ବ୍ୟାପକ ମୃତ୍ୟୁର ପଥ ଉନ୍ମୁକ୍ତ ହୁଏ । ଏସବୁର ମୂଳ ରହିଛନି ସେଇ ଅସାମ୍ୟର ସୃଷ୍ଟି ଆଉ ଶୋଷଣର ପ୍ରସାରରେ । ସେଥିରୁ ଉଦ୍ଧରିବାର ଏକମାତ୍ର ବାଟ ହେଉଛନି ସେଇ ଜଗନ୍ନାଥ-ଭାବ, ସାମ୍ୟ-ମୈତ୍ରୀର

ପ୍ରତିଷ୍ଠା । ଯେହେତୁ ତାହା ବିଶ୍ୱବ୍ୟାପୀ, ସେଇ କେବଳ ବିଶ୍ୱବ୍ୟାପୀ ସଙ୍କଟକୁ ପ୍ରତିହତ କରିବାରେ ସମର୍ଥ । ତାହା ସହିତ ମଣିଷର ବିକାଶର ସମସ୍ୟା ଜଡ଼ିତ । କୌଣସି ବିକାଶ ଯେପରି ପରିବେଶର ସୁରକ୍ଷା ବିନା ସମ୍ଭବ ନୁହେଁ , ସେହିପରି ପରିବେଶକୁ ସୁରକ୍ଷିତ କରିବାକୁ ହେଲେ ଲୋକଙ୍କର ଦାରିଦ୍ର୍ୟ, ଅନାହାର, ଅଶିକ୍ଷା ସ ରୋଗବ୍ୟାଧି ଆଦିକୁ ଦୂର କରିବାକୁ ହେବ । ସେହି ବିକାଶ ବିନା ଯେତେ ଗଛ ଲଗାଇଲେ ବି ଜଙ୍ଗଲ କଟାର ଅବସାନ ହେବ ନାହିଁ । ପ୍ରତିବର୍ଷ ବନ ଉତ୍ସବର ପ୍ରହସନ ଚାଲିଥିବ ।

ସାମାଜିକ ସଂଙ୍କଟରୁ ଉଦ୍ଧାର ପାଇବା ଲାଗି ମଣିଷ ଅନ୍ୟ ମଣିଷକୁ ଦମନ କରେ । ତାର ପ୍ରତିପକ୍ଷ ବିରୋଧରେ ଯୁଦ୍ଧ ଓ ହିଂସାର ଆଶ୍ରୟ ନେଇପାରେ, କିନ୍ତୁ ପ୍ରାକୃତିକ ସଂକଟରୁ ଉଦ୍ଧାର ପାଇବା ଦିଗରେ ସେପରି ରାସ୍ତା ସଦା ଅବରୁଦ୍ଧ । ପ୍ରକୃତିକୁ ଅଧିକ ଦମନ ତଥା ଶାସନ କରିବା, ତା ପ୍ରତି ବିଜେତାର ମନୋଭାବ ପୋଷଣ କରିବାକୁ ଯିବା ଅର୍ଥ, ଅଧିକ ଅଧିକ ପ୍ରକୃତିର କ୍ରୋଧ ଅଭିଶାପକୁ ଆହ୍ୱାନ କରିବା, ତାର ପ୍ରତିଶୋଧର ଶିକାର ହେବା । ପରମାଣୁ ଅସ୍ତ୍ର ପ୍ରୟୋଗକାରୀର ନିଜର ଯେପରି ମୃତ୍ୟୁ ମୁହଁରୁ ରକ୍ଷା ନାହିଁ, ପରିବେଶ ବିନାଶକାରୀ ନିଜେ ସେହିପରି ତାର ନିଶ୍ଚିତ ବିନାଶ ଦିଗରେ ଅଗ୍ରସର ହୁଏ ।

ଏହା ଦର୍ଶାଇଦିଏ , ମାନବର ସୁଖ ଶାନ୍ତି କେବଳ ମାନବଜାତିର ସୁଖ ଶାନ୍ତି ଭିତରେ ହିଁ ଆସିପାରେ ଏବଂ ତାର ମାନବିକ ପ୍ରକୃତିର ଉନ୍ମେଷ କେବଳ ସେଇ ବିଶ୍ୱ ପ୍ରକୃତିକୁ ମାନବିକ ପରିବାରେ ହିଁ ସମ୍ଭବ । ଆ ସେହି ବିଶ୍ୱମାନବ, ବିଶ୍ୱ ପ୍ରକୃତିର ପ୍ରାକୃତିକ ଭାବ— ଜଗନ୍ନାଥ-ଭାବ !!

## ନାଥତ୍ୱ ସନ୍ଦେଶରେ - ମାନବତ୍ୱର ବିକାଶ

ସାମ୍ୟ-ମୈତ୍ରୀ-ପ୍ରୀତି, - ସେଇ ଜଗନ୍ନାଥ-ଭାବ କୌଣସି ଏକ ଦେଶ, ଜାତି ବା ବ୍ୟକ୍ତିମାନବର ଆକାଙ୍କ୍ଷା ନୁହେଁ, ସମସ୍ତ ବିଶ୍ୱ ମାନବିକତାର ଚିରନ୍ତନ ଅଖଣ୍ଡନୀୟ ସନ୍ଦେଶ । ସେଇ ସନ୍ଦେଶ ଆପଣାକୁ ପ୍ରକାଶ କରେ ମଣିଷର କ୍ରମାଗତ ବିବର୍ତ୍ତନ ଭିତରେ, ନିଜକୁ ପ୍ରତିପାଦିତ କରେ ତାର ପ୍ରକୃତିର ନିଜସ୍ୱ ସ୍ୱଭାବ ଦ୍ୱାରା ଏବଂ ଶେଷରେ ନିଜେ ସୁପ୍ରତିଷ୍ଠିତ ହୁଏ, ବିଜ୍ଞାନର ଅପରିହାର୍ଯ୍ୟ ନିୟମ ବଳରେ । ଯେହେତୁ ସେଇ ବିଶ୍ୱପ୍ରକୃତି ଭିତରୁ ବିଶ୍ୱମାନବର ଜନ୍ମ, ତେଣୁ ତା ଅଲକ୍ଷରେ ସେହି ପ୍ରକୃତିର ଚରିତ୍ର ବହନ କରେ ଓ ତାର ନିର୍ଦ୍ଦେଶ ପାଳନ କରିବାକୁ ବାଧ୍ୟ । ତେଣୁ ମଣିଷର ଯାତ୍ରା ପଥରେ ଜଗନ୍ନାଥ-ଭାବ ହିଁ ତାର ଏକମାତ୍ର ପାଥେୟ । ତାହା ପୂର୍ବରୁ ଆଲୋଚିତ ହୋଇଥିଲେ ବି ଏବେ ବିଜ୍ଞାନର ଆଲୋକରେ ଦେଖିବାକୁ ହେବ ସେହି ଜଗନ୍ନାଥ-ଭାବ କେତେଦୂର ବୈଜ୍ଞାନିକ । ପ୍ରସ୍ତରଯୁଗର ସେଇ ଆଦିମ ଭାବନାକୁ କଳିବାକୁ ହେବ, ଏବର ଅଣୁଯୁଗର ଅସୀମ ବାସ୍ତବତା ଭିତରେ ।

ମଣିଷର ଅଗ୍ରଗତି ନିର୍ଭର କରେ ଶକ୍ତିର ବ୍ୟବହାର ଉପରେ । ସେ ପ୍ରଥମେ ନିଜର ଦୈହିକ ଶକ୍ତି, ପରେ ଅଶ୍ୱଶକ୍ତି, ତା'ପରକୁ ବାଷ୍ପ ଓ ବିଦ୍ୟୁତ୍ ଶକ୍ତି ଆଦି ଦେଇ ଶେଷରେ ଏବେ ପହଞ୍ଚିଛି ଅଣୁ ଶକ୍ତିରେ । ସେଇ ଅଣୁଶକ୍ତି ଅନ୍ୟ ସବୁ ଶକ୍ତିଙ୍କଠାରୁ ଅତି ଗୁଣାତ୍ମକ

ଭାବେ ଫରକ । ଅଣୁ ହେଲା ଅକ୍ଷୟ, ଅବିନଶ୍ୱର— ତାହା ଅସୀମ । ଯେତେ ବ୍ୟବହାର କଲେ ବି କାଠ, କୋଇଲା ବା ତେଲ ଭଳି ତାର ଶେଷ ନାହିଁ । ତାହା ପରିବର୍ତ୍ତନଶୀଳ, ବିଭିନ୍ନ ରୂପ ଓ ଗତି ଧାରଣ କରିପାରେ , ଯେଉଁଆଡ଼େ ଯେପରି ଚାହିଁବ, ତାକୁ ଲଗାଇ ପାରିବ ।

ପ୍ରଥମେ, ମଣିଷ ତାର ହାତ ହତିଆର, ଯନ୍ତ୍ରପାତିକୁ ସିଧାସଳଖ ବ୍ୟବହାର କରୁଥିଲା । ପରେ ମଣିଷ ତାର ଶାରୀରିକ କାର୍ଯ୍ୟ ମେସିନ୍‌କୁ ଅର୍ପଣ କଲା । ମେସିନ ଚାଳିତ ହେଲା ବାଷ୍ପ ଓ ବିଦ୍ୟୁତ୍‌ଶକ୍ତି ଦ୍ୱାରା । ଏବେ ତାହା ସ୍ଥାନରେ କମ୍ପ୍ୟୁଟର ଦ୍ରୁତ ବେଗରେ ପ୍ରସାର ଲାଭ କରୁଛି । ତାହା କେବଳ ମଣିଷର ଶାରୀରିକ କାର୍ଯ୍ୟର ସ୍ଥାନ ନେଉ ନାହିଁ , ତାହା ମଧ ମଣିଷର ମାନସିକ କ୍ଷେତ୍ରରେ ପ୍ରବେଶ ଆରମ୍ଭ କରିଛି । ସମସ୍ତ ପ୍ରକ୍ରିୟା ସ୍ୱୟଂକ୍ରିୟ ଅବସ୍ଥାରେ ପରିଣତ ହେଉଛି । ତାହା ମଣିଷର ବିନା ହସ୍ତକ୍ଷେପରେ, ବା ସ୍ୱଳ୍ପ ହସ୍ତକ୍ଷେପରେ ଚାଲେ । ମଣିଷ ଉତ୍ପାଦନର ସୀମା, ସଂଖ୍ୟା, ସ୍ତର ବା ଦିଗ ଆଦି ନିର୍ଣ୍ଣୟ କରି ଛାଡ଼ିଦେଲେ ତେଣିକି ମଝିରେ ମଝିରେ କେବଳ ପର୍ଯ୍ୟବେକ୍ଷଣ କରିଥାଏ । ଉତ୍ପାଦନ, ବିନିମୟ, ଯୋଗାଯୋଗ, ଯାତାୟାତ, ଅଫିସ ଦପ୍ତର, ପ୍ରତ୍ୟେକ କ୍ଷେତ୍ରରେ ମଣିଷର ସ୍ଥାନ କମ୍ପ୍ୟୁଟର ନେବାରେ ଲାଗିଛି ।

ଏହାଦ୍ୱାରା ଆଗ ଅପେକ୍ଷା କମ୍ ସମୟରେ, କମ୍ ଖର୍ଚ୍ଚରେ ଅଧିକ ଜିନିଷ ଉତ୍ପାଦିତ ହୁଏ । ଅସୀମ ସେହି ବୃଦ୍ଧିର ସମ୍ଭାବନା । ଅର୍ଥାତ୍ ଏକ ଦିଗରେ ଉତ୍ପାଦନଶୀଳି ବୃଦ୍ଧି ପାଇଲାବେଳେ ଅନ୍ୟ ଦିଗରେ ଶ୍ରମ ଓ ସମୟର ହ୍ରାସ ଘଟେ । ଶ୍ରମ ଅତିମାତ୍ରାରେ ହ୍ରାସ ପାଇ ଗୋଟାଏ ସର୍ବନିମ୍ନ ଅବସ୍ଥାରେ ପହଞ୍ଚେ, ଯେଉଁଠି କି କେବଳ ଥରେ ବୋତାମ ଟିପିଲେ କାମ ଚଳେ ।

ପରମାଣୁ ଶକ୍ତି କେବଳ ଅକ୍ଷୟ ନୁହେଁ, ତାହା ଯେପରି ଅଫୁରନ୍ତ ତାର ଗତିବେଗ ମଧ ସେହିପରି କଳ୍ପନାତୀତ । ଯେଉଁ ଶକ୍ତିର ବିସ୍ଫୋରଣ ଏକ ପଲକରେ ଗୋଟାଏ ଗୋଟାଏ ଧ୍ୱଂସ କରିପାରେ, ତାହା ମଧ ଅନୁରୂପ ସୃଷ୍ଟି କରିବାରେ ସମର୍ଥ । ଆଜିକାଲି ଯୋଗାଯୋଗ ଓ ସୂଚନା ସରବରାହ ବ୍ୟବସ୍ଥା ଏତେଦୂର କ୍ଷିପ୍ର ଓ ଦ୍ରୁତଗାମୀ ଯେ, ତାହା ମୁହୂର୍ତ୍ତକ ମଧରେ ଏକ ସଙ୍ଗରେ ବିଶ୍ୱର ପ୍ରତ୍ୟେକ କୋଣରେ ପହଞ୍ଚି ଯାଇପାରେ । ମଣିଷ ଘରେ ବସି ଅଫିସ କଲାଭଳି ଲୋକ ଆମେରିକାରେ ବସି କଟକରେ ତାର ଅଫିସ ଚଳାଇପାରେ । ତାହା ପକ୍ଷରେ ପ୍ରତି ମୁହୂର୍ତ୍ତରେ ଅଫିସ କାମ ତନଖି କରିବା ଓ ନିର୍ଦ୍ଦେଶ ଦେବା ସମ୍ଭବପର । ମଣିଷ ପକ୍ଷରେ ବହୁ ଦୂରରେ ବସି ଦେଶ ଶାସନ ଓ ବାଣିଜ୍ୟ ବ୍ୟବସାୟ ପରିଚାଳନା କରିବା ଆଉ ଅସମ୍ଭବ ହୋଇ ନାହିଁ । ମଝିରେ ପୁଣି କୌଣସି ମଧବର୍ତ୍ତୀ ସ୍ତର ବା ଏଜେଣ୍ଟର ଆଉ ଆବଶ୍ୟକତା ନାହିଁ । ତଳେ ପୃଥିବୀରୁ ବୋତାମ ଟିପି ଅନ୍ତରୀକ୍ଷରେ ଉପଗ୍ରହ ଚଳାଏ । ତା ଜରିଆରେ ପୃଥିବୀ ଭିତରେ ଖଣିଜ ପଦାର୍ଥର ସନ୍ଧାନ କରେ , ଜଳ ଓ ସାଗର ତଳେ ଜୀବନ ପ୍ରବାହକୁ ଦେଖେ, — ସବୁ ଅସମ୍ଭବ ସମ୍ଭବ ହୋଇ ପାରୁଛି । ଏପରିକି , ଆମ ବାଲେଶ୍ୱର ଚାନ୍ଦିପୁରରୁ ଚାଳକ-ବିହୀନ ବିମାନର ସଫଳ ପରୀକ୍ଷା ହୋଇଗଲାଣି । ଘରେ ବସି ଯଦି କମ୍ପ୍ୟୁଟର ସାହାଯ୍ୟରେ ଚାଳକବିହୀନ ବିମାନ ଆକାଶରେ ଚାଲିପାରେ, ତେବେ

ପୃଥିବୀ ଉପରେ ରେଳ ମଟର, ଫାକ୍ଟେରୀରେ ମେସିନ୍ ଓ ବିଲରେ ଟ୍ରାକ୍ଟର ଆଦି ଚାଲିବା କାହିଁକି ସମ୍ଭବ ହେବ ନାହିଁ ? ଏହା କ୍ଷେତ୍ରରେ ଏକ ମୌଳିକ ପରିବର୍ତ୍ତନର ଆହ୍ୱାନ ଦିଏ ।

ସେହି ପରମାଣୁ ଶକ୍ତିର ପ୍ରୟୋଗବିଜ୍ଞାନ ସ ପ୍ରଯୁକ୍ତିବିଦ୍ୟାର ପ୍ରସାର ସମସ୍ତ ପୃଥିବୀକୁ ଗୋଟାଏ କରି ବାନ୍ଧିଦିଏ । ଲୋକ ଲୋକ, ଦେଶ ଦେଶ ଓ ଜାତି ଜାତି ମଧ୍ୟରେ ଘନିଷ୍ଠ ସମ୍ବନ୍ଧ ପ୍ରତିଷ୍ଠା କରେ । ପଦେ କଥାରେ କହିଲେ, ସମସ୍ତ ବିଶ୍ୱବାସୀ ଏକ ଗ୍ରାମବାସୀରେ ପରିଣତ ହୋଇଯାଆନ୍ତି । ଦ୍ୱିତୀୟତଃ , ଉତ୍ପାଦନ କ୍ଷେତ୍ରରେ ଅଦ୍ଭୁତ ଅଭିବୃଦ୍ଧି ସାଧିତ ହୁଏ । ମଣିଷ ଯେତେବେଳେ ଯାହା ଚାହିଁବ, ଯେତେ ଚାହିଁବ ତାର ଉତ୍ପାଦନ କରିବା କ୍ଷମତା ଲାଭ କରେ । ସକଳ କାମନା ପୂରଣ ଦିଗରେ ଭୌତିକ ଅବସ୍ଥା ସୃଷ୍ଟି ହୁଏ ।

ସବୁଠୁ ଗୁରୁତ୍ୱପୂର୍ଣ୍ଣ ହେଲା ମଣିଷ ନିଜର ପରିବର୍ତ୍ତନ । କମ୍ପ୍ୟୁଟର ଯେତେବେଳେ ସବୁ ଜିନିଷ ଚଳାଏ, ପ୍ରତ୍ୟେକ୍ଷ ଉତ୍ପାଦନ କରେ, ସେତେବେଳେ ମଣିଷ ଉତ୍ପାଦନ ପ୍ରକ୍ରିୟାରୁ ଅଲଗା ହୋଇଯାଏ । ତାର ଅନୁପସ୍ଥିତିରେ ମଧ ଉତ୍ପାଦନ ଚାଲିପାରେ । ତାର ଶ୍ରମ, କେବଳ ବୋତାମ ଟିପିବାରେ ଆସି ରହିଯାଏ, ତାର କାର୍ଯ୍ୟ ମାତ୍ର ପର୍ଯ୍ୟବେକ୍ଷଣରେ ସୀମିତ ହୁଏ । ଏପରିକି ମଣିଷ ଯନ୍ତ୍ର-ମାନବକୁ ଲଗାଇ ତାର କାର୍ଯ୍ୟ ସମ୍ପାଦନ କରିପାରେ । ଏହିପରି କାର୍ଯ୍ୟ , ଶ୍ରମର ପ୍ରକ୍ରିୟା ନା ଶ୍ରମର ବିଲୋପର ପ୍ରକ୍ରୀୟା ? ତାହା କରିବା ଲୋକ ଶ୍ରମିକ ନା ବୈଜ୍ଞାନିକ ପଦବାଚ୍ୟ ହେବ ? ଉତ୍ପାଦନ ପ୍ରକ୍ରିୟା ଯଦି ଶ୍ରମର ନା ବୈଜ୍ଞାନିକ ପଦବାଚ୍ୟ ହେବ ? ଉତ୍ପାଦନ ପ୍ରକ୍ରିୟା ଯଦି ଶ୍ରମର ପକ୍ରିୟା ନ ହୁଏ , ସେଠି ଶ୍ରମ ସ ଶ୍ରମିକ ମଜୁରୀ ଇତ୍ୟାଦିରେ ମୌଳିକ ପରିବର୍ତ୍ତନ ଘଟିବା ସ୍ୱାଭାବିକ । କିନ୍ତୁ ମଣିଷର ବିକାଶ ଯେତେ ନଭଶ୍ଚୁମ୍ବୀ, ତାର ଉତ୍‌ପାଦନ ଯେତେ ସ୍ୱଳ୍ପ ସମୟ ଦରକାର କଲେ ମଧ ମଣିଷର ହାତର ସ୍ପର୍ଶ ବିନା କିଛି ଚାଲି ନ ପାରେ । ଶ୍ରମର ବିଲୋପ ହେଉଛି, ମଣିଷର ସେହି ମାନବିକ ମର୍ମର ବିଲୁପ୍ତି, ଯାହା ମଣିଷକୁ ମଣିଷ କରିଛି,— କେବଳ ତାର ଗୁଣାତ୍ମକ ପରିବର୍ତ୍ତନରେ ମଣିଷ ମଣିଷ ହେବ, ତାର ବିଲୁପ୍ତିରେ ନୁହେଁ । ଏହା ସେହି ପରିବର୍ତ୍ତନ ଯାହା ଭୌତିକ ଅବସ୍ଥା ସୃଷ୍ଟି କରେ ।

ମାର୍କସ୍‌ଙ୍କ ବେଳେ ପରମାଣୁ ଶକ୍ତି ପି କମ୍ପ୍ୟୁଟରର ଉଦ୍ଭାବନ ଘଟିନାହିଁ । ତେବେ ସୁଦ୍ଧା ମଣିଷର ବିକାଶର ଧାରାକୁ ଲକ୍ଷ୍ୟ କରି କହିଛନ୍ତି ଯେ ଉତ୍ପାଦନ ପ୍ରକ୍ରିୟା ଦିନେ ଆଉ ଶ୍ରମ ପ୍ରକ୍ରିୟା ହୋଇ ରହିବ ନାହିଁ । ଅର୍ଥାତ୍ ବିନା ଶ୍ରମରେ ଉତ୍ପାଦନ ଚାଲିପାରେ । ସେମିତି ସାମାଜିକ ସମ୍ପଦର ସୃଷ୍ଟି, ଶ୍ରମ ସମୟ ଉପରେ କ୍ରମଶଃ କମ୍ କମ୍ ନିର୍ଭର କରିବ । ବେଶୀ ବେଶୀ ନିର୍ଭର କରିବ ବିଜ୍ଞାନ ସ ପ୍ରଜୁକ୍ତି ବିଦ୍ୟାର ବିକାଶର ସାଧାରଣ ସ୍ତର ଉପରେ ।

ଅତଏବ ମଣିଷ ଯେଉଁ ସାମ୍ୟ, ମୈତ୍ରୀ, ପ୍ରୀତିର ଆକାଙ୍କ୍ଷା ଧରି ଚାଲିଥିଲା, ତାହା ଚରିତାର୍ଥ ହେବା ଦିଗରେ ଏବେ ରାସ୍ତା ମୁକ୍ତ ହୋଇଯାଏ । କାରଣ, ମଣିଷ ମଣିଷ ଭିତରେ, ମଣିଷ ଓ ପ୍ରକୃତି ଭିତରେ , ମଣିଷ ଓ ତାର ମାନବିକ ମର୍ମ ଭିତରେ ଲାଗି ରହିଥିବା ଦ୍ୱନ୍ଦ ଓ ସଙ୍କଟର ସମାଧାର ପନ୍ଥା ଖୋଲିଯାଏ । ତାର ସେଇ ଯୁକ୍ତିଯୁକ୍ତ ପରିଣତି ହୁଏ ଜଗନ୍ନାଥ-

ଭାବର ପ୍ରସାର । ତାଛଡ଼ା ଅନ୍ୟ କିଛି ବିକଳ୍ପ ରହେନାହିଁ । ସେ ଜଗନ୍ନାଥ-ଭାବ କିପରି ଆସିପ, କେବେ ଆସିବ, କିଏ ଆଣିବ, ଇତ୍ୟାଦିର ଆଲୋଚନା ଆଉ ଏକ ସ୍ୱତନ୍ତ୍ର ବିଷୟ । କିନ୍ତୁ ତାହା ଯେ ଆଖିବୁଜି ଧ୍ୟାନରେ ବସିବାରେ ଆସିବ ନାହିଁ , ତାହା ଆଗରୁ ଆଲୋଚି ହୋଇଛି । ସାଧାରଣ ଜ୍ଞାନ କହେ, ସେହି ଜଗନ୍ନାଥ-ଭାବକୁ ଆଣିବା ଓ ତାର ପ୍ରସାରରେ ଯେଉଁମାନେ ବାଧା ଦିଅନ୍ତି, ପ୍ରତିବନ୍ଧକ ସୃଷ୍ଟି କରନ୍ତି, ତାଙ୍କୁ ପ୍ରତିହତ କରିବା ହେଲା ସେ ଦିଗରେ ଅଗ୍ରଗତିର ମାର୍ଗ । ମଣିଷର ଯାତ୍ରାପଥରୁ ସେମାନଙ୍କୁ ନ ହଟାଇଲେ ଜଗନ୍ନାଥ-ଭାବର ସଫଳତା ନାହିଁ ।

ଭବିଷ୍ୟତରେ ଏହିପରି ବିକାଶ ସହିତ ମଣିଷର ମାନସିକ ପରିବର୍ତ୍ତନ ସ୍ୱାଭାବିକ । ସେତେବେଳେ ସେହି ମାନବିକ ବିବେକରେ ଗତାନୁଗତିକ ପ୍ରକୃତି ମଧ୍ୟ ବଦଳିଯିବ । ଦୟା ଧର୍ମ କରୁଣା ଅନୁକମ୍ପା ପାପପୁଣ୍ୟ ଓ ମୋକ୍ଷ ଆଦିର ଧାରଣା ଯାହାକୁ ବିବେକର ବିଚାର କୁହାଯାଏ ଏବଂ ଯାହାସବୁ ଅସାମ୍ୟ ଅବସ୍ଥାରୁ ଉଦ୍ଭବ, ତା ସ୍ଥାନରେ ସାମ୍ୟ ଅବସ୍ଥାରେ ଦେଖା ଦେବ ସମଦୃଷ୍ଟି, ସହୃଦୟତା ଓ ସମ କଲ୍ୟାଣର ଭାବ — ମାନବିକ ମହତ୍ୱର ପ୍ରସାର ଏତେବେଳେ ମଣିଷର ନିଜର ଅସ୍ତିତ୍ୱ ନିର୍ଭର କରିବ ଅନ୍ୟର ବିକାଶ ଉପରେ । ଅନ୍ୟର ମାନବିକ ରକ୍ଷାରେ ହେବ ନିଜର ମାନବିକ ଅଧିକାରର ସୁରକ୍ଷା । ମଣିଷ ନିଜର ମାନବିକତାର ରୂପ ଦେଖିବ ଅନ୍ୟର ମାନବିକ ଜୀବନ ଦର୍ପଣରେ ।

ଅତଏବ ପ୍ରକୃତ ସାମ୍ୟ ମୈତ୍ରୀ ପ୍ରୀତିର ଭିତ୍ତିରେ କେବଳ, ମାନବ ଜାତିକୁ ତାର ଭାଇ ଭାଇର ଆସନ, ବିଶ୍ୱପ୍ରକୃତିକୁ ତାର ଜନ୍ମଦାତ୍ରୀ ମାତାର ଆସନ ଏବଂ ଆପଣାକୁ ନିଜର ଅନ୍ତର୍ନିହିତ ମାନବତ୍ୱର ଆସନରେ ଅଧିଷ୍ଠିତ କରିବାରେ ମଣିଷ ଜଗନ୍ନାଥଙ୍କୁ ପାଇପାରେ ।

ସେ ଦିଗରେ ଆପଣାକୁ ଉତ୍ସର୍ଗ କରିବା ହେଉଛି ସେହି ଜଗନ୍ନାଥ ପ୍ରାପ୍ତିର ଏକମାତ୍ର ପଥ ।

ଆଖି ବୁଜି, ଆଖି ଖୋଲି ଜଗନ୍ନାଥଙ୍କୁ ଦେଖିବାର ଫରକ ଏଇଠି ।



# ପରିଶିଷ୍ଟ

**ଋକ୍‌ବେଦ - ୧୦/୧୨୯**

ନା ସଦାସୀନ୍ନୋ ସଦାସୀତ୍ ତଦାନୀଂ
ନାସୀଦ୍ ରଜୋ ନୋ ବ୍ୟୋମା କରୋଯତ୍ ।
କିବାବରୀବଃ କୁହ କସ୍ୟ ଶର୍ମ-
ନ୍ନମ୍ଭଃ କିମାସୀଦ୍ ଗହନଂ ଗଭୀରଂ ।୧

ନ ମୃତ୍ୟୁରାସୀଦମୃତଂ ନ ତର୍ହି
ନ ରାତ୍ୟା ଅହ୍ନ ଆସୀତ୍ ପ୍ରକେତଃ ।
ଆନୀଦବାତଂ ସ୍ୱଧୟା ତଦେକଂ
ତସ୍ମାଦ୍ଧାନ୍ୟନ୍ନ ପରଃ କିଂଚନାଽସ ।୨

ତମ-ଆସୀତ୍ ତମସା ଗୂଢ଼ମଗ୍ରେଽ-
ପ୍ରକେତଂ ସଲିଳଂ ସର୍ବମା ଇଦଂ ।
ତୁଚ୍ଛେନାଭ୍ୱପିହିତଂ ଯଦାସୀତ୍
ତପସସ୍ତନ୍ମହିନାଽଦାୟତୈକଂ ।୩

କାମସ୍ତଗ୍ରେ ସମବର୍ତ୍ତତାଧି
ମନତୋ ରେତଃ ପ୍ରଥମଂ ଯଦାସୀତ୍ ।
ସତୋ ବନ୍ଧୁ ସମତି ନିରବିନ୍ଦନ୍
ହୃଦି ପ୍ରତୀଷ୍ୟା କବୟୋ ମନୀଷା ।୪

ତିରଶ୍ଚୀନୋ ବିତତୋ ରଶ୍ମିରେଷାଂ
ଅଧସ୍ୱି ଦାସୀଦୁପରିସ୍ୱି ଦାସୀତ୍ ।
ରେତୋଧା ଆସନ୍ ମହିମାନ ଆସନ୍
ସ୍ୱଧା ଅବସ୍ତାତ୍ ପ୍ରୟତିଃ ପରସ୍ତାତ୍ ।୫

କେ ଅଦ୍ଧାବେଦ କ ଇହ ପ୍ରମୋଚତ୍
କୁତ ଆଜାତା କୁତ ଇୟଂ ବିସୃଷ୍ଟିଃ ।
ଅର୍ବାଗ୍‌ଦେବା ଅସ୍ୟ ବିସର୍ଜ୍ଜନେନା-
ଥକୋ ବେଦ ଯତ୍ ଆବଭୂବ ।୬

**(ଖ)**

ଇୟଂ ବିସୃଷ୍ଟିର୍ଯତ ଆବଭୂବ
ଯଦି ବା ଦଧେ ଯଦି ବା ନ ।
ଯୋ ଅସ୍ୟାଧକ୍ଷଃ ପରମେ ବ୍ୟୋମନ୍
ସୋଅଙ୍ଗ ବେଦ ଯଦି ବା ନ ବେଦ ।୬

**(ଛାଗ ମାଂସ ଭକ୍ଷଣ)**

ଯନ୍ନିନଜା ରେକ୍‌ନସା ପ୍ରାବୃତସ୍ୟ
ରତିଂ ଗୃଭୀତାଂ ମୁଖତୋନୟନ୍ତ
ସୁପ୍ରାଙ୍‌ଜୋ ମେମ୍ୟଦ୍ୱିଶ୍ୱରୂପ
ଇନ୍ଦ୍ରାପୂଂଜୋଃ ପ୍ରିୟମପ୍ୟେତି ପାଥଃ ।୨
ଏଜ ଛାଗଃ ପୁନରାଅଶ୍ୱନ ବାଜିନା
ପୂଂଜୋ ଭାଗୋ ନୀୟତେ ବିଶ୍ୱଦେବ୍ୟଃ

ଅଭିପ୍ରିୟଂ ଯତ୍ପୁରୋଳାମମବିତା
ଦ୍ୱଷ୍ଟୌଦେନଂ ସୌଶବସାୟ ଜିନ୍ୱତି ।୩

**(ଅଶ୍ୱ ମାଂସ ଭକ୍ଷଣ)**

ଯନ୍ତ୍ରେ ଗାତ୍ରାଦଗ୍ନିନା ପଚ୍ଛମାନାଦଭି
ଶୂଲଂ ନିହତସ୍ୟାବଧାବତି ।
ମା ତଦ୍ଭୂମ୍ୟାମା ଶ୍ରି ଦନ୍ମାତୃଣେଷୁ
ଦେବେଭ୍ୟସ୍ତବୁଶଲ୍ ଭେ୍ୟା ରାତମସ୍ତୁ । (୧-୧୬୨-୧୧)

**(ମହିଷ ଓ ବୃଷ ମାଂସ ଭକ୍ଷଣ)**

ଯମଭ ଇନ୍ଦ୍ର ଭକ୍ଷନଃ ପ୍ରିୟକିଂଚିଦ୍କରଂ
ହବିର୍ବିଶ୍ୱସ୍ମାଦ୍ର ଉତ୍ତରଃ ।୧୩
ଭକ୍ଷନୋ ହି ମେ ପଞ୍ଚଦଶ
ସାକଂ ପଚନ୍ତି ବିଂଶତିମ୍
ଉତାହମଦ୍ମି ପୀବ ଇଦୁଭା କୁକ୍ଷୀ
ପୃନନ୍ତି ମେ ବଶ୍ୱସ୍ମାଦିନ୍ଦ୍ର ଉତ୍ତରଃ । (୧୦-୮୬-୧୪)
ଯୋ ରାଜଭ୍ୟ ଋତନିଭେ୍ୟ ଦଦାଶ ଯଂ
ବର୍ଦ୍ଧୟନ୍ତି ପୁଷ୍ଟୟଶ୍ଚ ନିତ୍ୟାଃ ।(୨-୨୭-୧୨)
ନୃ୍ୟ ପ୍ରିୟୋ ମନୁଯୀଃ ସାଦି ହତୋ
ନାସତ୍ୟା ଯୋ ଯଜତେ ବନ୍ଦତେ ଚ ।
ଅଶ୍ୱୀତଂ ମଧ୍ୱୋ ଅଶ୍ୱିନାଉପାକ ଆ ବାଂ
ବୋଚେ ବିଦଥେଯୁ ପ୍ରୟସ୍ୱାନ୍ । (୭-୭୫-୨)
ବିତଦୋବ୍ଚେରଧ ହିତାନ୍ତଃ ପଶ୍ୟନ୍ତି ରଶ୍ମିଭିଃ ।
ସ ଯା ବିଦେ ଅନିନ୍ଦ୍ରୋ-ଗବେନୋ
ବନ୍ଧୁକ୍ଷିଦ୍ଭେ୍ୟା ଗବେଷଣଃ । (୧-୧୩୨-୩)
ତା ନଃ ସ୍ତିପା ତନୂପା ବରୂଦ ଜଇତୃନାଂ ।
ମିତ୍ର ସାଧାୟତଂ ଧିୟଃ । (୭-୫୫-୩)
ପବମାନଃ ଋତଃ କବିଃ ସୋମଃ
(ଅର୍ଥାତ୍, ରକ୍ଷାକାରୀ ସୋମ, ଯିଏ ଋତ ଓ କବି) (ଋଗ୍ବେଦ ୯-୬୨-୩୦ )

ଋତେନ ଯ ଋତଜାତୋ ଇବାବୃଧେ
ରାଜା ଦେବ ଋତଂ ବୃହତ୍ । ଅର୍ଥାତ୍,
ଯିଏ (ସୋମ) ରାଜା ଓ ଦେବତା, ଋତରୁ ଜାତ (ସିଏ)
ଋତଦ୍ୱାରା ଋତକୁ ବୃହତ୍ରୂପରେ ବର୍ଦ୍ଧିତ କରନ୍ତି । (୯-୬୨-୩୦)

ଅଗ୍ନିର୍ବିଦ୍ୱାନ୍ ଋତଚିଦ୍ଧି ସତ୍ୟଃ
ଅର୍ଥାତ୍ , ଅଗ୍ନି ବିଦ୍ୱାନ୍, ଋତର ଜ୍ଞାତା ଏବଂ ସତ୍ୟ ସ୍ୱରୂପ । (୧-୧୪୫-୫)

ଋତଧୀତୟ ଆଗତ ସତ୍ୟଧର୍ମାନୋ ଅଧବରଂ ।
ଅଗ୍ନେଃ ପିବତ ଜିହ୍ୱାୟା । ଅର୍ଥାତ୍,
ହେ ଋତକର୍ମ ଯୁକ୍ତ ବିଶ୍ୱ ଦେବଗଣ, ତୁମେ ଯଜ୍ଞକୁ ଆସିଅଛ,
ଅଗ୍ନିର ଜିହ୍ୱାଦ୍ୱାରା ତମେ ପାନ କର । (୫-୫୧-୨)

ଋତଂ ସପନ୍ତୋ ଅମୃତମେବୈଃ । ଅର୍ଥାତ୍,
ଋତଦ୍ୱାରା ସମବେତ ହୋଇ (ଅଗ୍ନ) ଅମୃତତ୍ୱ ପ୍ରାପ୍ତ ହେଲେ । (୧-୫୮-୪)

କସ୍ତେ ମାତରଂ ବିଧବାମଚକ୍ରଚ୍ଛୟୁଂ କସ୍ତାମଜିଂସାଂ ସଚ୍ଚନ୍ତମ୍ ।
କସ୍ତେ ଦେବୋ ଆଧିମାର୍ଡୀକ ଅସୀଦ୍ୟତ୍ପ୍ରାକ୍ଷିନାଃ ପିତରଂ ପାଦଗୃହ୍ୟ ।(୪-୧୯-୧୨)
ଅସ୍ମାକଂ ଜୋସ୍ୟଧ୍ୱରମସ୍ମାକଂ ଯଜ୍ଞମଙ୍ଗିରଃ ।
ଅସ୍ମାକଂ ଶୃନୁଧୀ ଇବମ୍ ।୭
ପରିତେ ଦୂଲଭୋ ରଥୋଇମାଂ ଅଶ୍ନୋତୁ ବିଶ୍ୱତଃ
ଯେମ ରକ୍ଷସି ଦାଶୁଷଃ । (୪-୯-୮)

**ଶ୍ରମ ବିଭାଜନ**

ଯନାନଂ ବା ଉନୋ ଧିୟୋବ୍ରାନି ଜନାନାମ୍
ତକ୍ଷା ରିଷ୍ଟଂ ରୁତଂ ଭିଷଣବ୍ରକ୍ଷା
ସୁନ୍ୱନ୍ତମିଚ୍ଛନ୍ତୀନ୍ଦ୍ରାୟେନ୍ଦୋ ପରିସ୍ରବ । (୯-୧୧୨-୧)

**ଧନ ବିଭାଜନ**

ଏକପାଦ୍‌ଭୂୟୋ ଦ୍ୱି ପଦୋ ବିଚକ୍ରମେ ଦ୍ୱିପାତ୍ରିପାଦମଭ୍ୟେତି ପଶ୍ଚାତ୍ୟ ।
ଚତୁଷ୍ପାଦେତି ଦ୍ୱପଦାଭିସ୍ୱରେ ସଂପବାଗାନ୍ ପଂକ୍ତିରୁପତିଷ୍ଠମାନଃ । ୮
ସମୌବିଧ୍ୱସ୍ତୌନ ସମଂ ବିବିଷ୍ଟଃ ସମ୍ମାତରା ଚନ୍ନ ସମଂ ପୁଣୀତଃ ।
୯(୧୦/୧୧୭/୮୯)
ଆ ନୋ ମିତ୍ରାବରୁଣା ଯୁତୈର୍ଗବ୍ୟୁତିମୁକ୍ଷତମ୍ ।
ମଧ୍ୱା ରଜାଂସି ସକ୍ରତୁ । (୩-୬୨-୧୬)

**ଧର୍ମପଦ (ବୁଦ୍ଧ)**

ମନୋ ପୂବ୍ ବଙ୍ଗମା ଧମ୍ମା ମନୋସେଟ୍‌ଠା ମନୋମୟା
ମନସା ଚେ ପଦୁଟ୍‌ଠେନ ଭାସତି ବା କରୋତି ବା
ତତୋ ନଂ ମୁଖମନ୍ୱେତି ଚକ୍‌କଂ ବ ବହତୋଽଜଂ ।୧
ମନୋ ପୂବ୍‌ଙ୍ଗମାଧମ୍ମା ମନୋସେଟ୍‌ଠା ମନୋମୟା
ମନସା ତେ ଚସନ୍ନେନ ଭାସତି ବା କରୋତି ବା
ତତୋ ନଂ ମୁଖମନ୍ୱେତି ଚକ୍‌କଂ ବ ବହତୋଽଜଂ । ୧
ମନୋ ପୂବ୍‌ଙ୍ଗମାଧମ୍ମା ମନୋସେଟ୍‌ଠା ମନୋମୟା
ମନସା ତେ ଚସନ୍ନେନ ଭାସତି ବା କରୋତି ବା
ତତୋ ନଂ ସୁଖମନ୍ୱେତି ଛାୟା ବ ଅନପାୟୀନୀ । ୨
ନହି ବେରେନ ବେରାନି ସମ୍ମନ୍ତାଧ କଦାଚନଂ
ଅବେରେନ ଚ ସମ୍ମନ୍ତି ଏସ ଧମ୍ମୋ ସନନ୍ତନୋ
ତାରେଚନ ବିଜାନନ୍ତି ୀୟମେତଥ ଯମାସେ
ନେ ତ ବିଜାନନ୍ତି ତତୋ ସମ୍ମତି ମେଧଗା ।୩
ଅକ୍‌କୋଛର୍ମଂ ଅବଧି ମଂ ଅଦିନି ମଂ ଅହାସିତମ୍
ଯେ ତଂ ଉପନହ୍ୟନ୍ତି ଚେରଂତେସିଂ ନ ସମ୍ମତି
ଅକ୍‌କୋଚ୍ଛର୍ମଂ ଅବଥି ଅଜିନି ମଂ ଅହାସିମେ
ଯେ ତଂ ନ ଉପହନ୍ୟନ୍ତି ବେରଂ ତେସୂପସମ୍ମତି ।

**ମନୁ ସଂହିତା**

ଶୂଦ୍ରାନ୍ତୁ କାରୟେଦ୍ଦାସ୍ୟଂ କ୍ରୀତ ମକ୍ରୀତମେବ ବା ।
ଦାସ୍ୟାୟେବ ହି ସୃଷ୍ଟୋଽସୈ ବ୍ରାହ୍ମଣସ୍ୟ ସ୍ୱୟମ୍ଭୁବା । (୮-୪୧୩)
ନ ସ୍ୱାମିନା ନିସୃଷ୍ଟୋଽପି ଶୂଦ୍ରୋ ଦାସ୍ୟାଦ୍ ବିମୁଚ୍ୟତେ ।
ନିସର୍ଗଜଂ ହି ତତ୍ତସ୍ୟ କସ୍ତସ୍ମାତ୍ତଦପୋହତି । (୮- ୪୧୪)

ବିସ୍ରବ୍ଧଂ ବ୍ରାହ୍ମଣଃ ଶୂଦ୍ରାଦ୍ ଦ୍ରବ୍ୟୋପାଦାନମାଚରେତ୍ ।
ନ ହି ତସ୍ୟାସ୍ତି କିଞ୍ଚିତ୍ସ୍ୱଂ ଭର୍ତୃହାର୍ଯ୍ୟଧନୋ ହି ସଃ । (୮ - ୪୧୭)
ଶକ୍ତେନାପି ହି ଶୂଦ୍ରେଣ ନ କାର୍ଯ୍ୟୋ ଧନସଞ୍ଚୟଃ ।
ଶୂଦ୍ରୋ ହି ଧନମାସାଦ୍ୟ ବ୍ରାହ୍ମଣାନେବ ବାଧତେ । (୧୦ - ୧୨୯)
ଶତଂ ବ୍ରାହ୍ମଣ ମାକ୍ରୁଷ୍ୟ କ୍ଷତ୍ରିୟୋଦଣ୍ଡମର୍ହତି ।
ବୈଶ୍ୟୋଽପ୍ୟତିଶତଂ ଦ୍ୱେ ବା ଶୂଦ୍ରସ୍ତୁ ବଧମର୍ହତି । (୮ - ୨୬୭)
ପଞ୍ଚାଶଦ୍ ବ୍ରାହ୍ମଣୋ ଦଣ୍ଡଃ କ୍ଷତ୍ରିୟସ୍ୟାଭିଶଂସନେ ।
ବୈଶ୍ୟେ ସ୍ୟାଦର୍ଦ୍ଧ ପଞ୍ଚାଶଚ୍ଛୂଦ୍ରେ ଦ୍ୱାଦଶକୋ ଦମଃ । (୮ - ୨୬୮)
ଏକଜାତି ଦ୍ୱିଜାତୀଂସ୍ତୁ ବାଚା ଦାରୁଣୟା କ୍ଷପନ୍ ।
ଜିହ୍ୱାୟାଃଚ୍ଛେଦଂ ଜଘନ୍ୟପ୍ରଭବୋ ହି ସଃ । (୮ - ୨୭୦)
ନାନା ଜାତିଗ୍ରହଂ ଦ୍ରେଷ୍ୟମଭି ଦ୍ରୋହେଣ କୁର୍ମତଃ ।
ନିକ୍ଷେପ୍ୟୋଽୟୋମୟଃ ଶଙ୍କୁର୍ଜ୍ୱଳନ୍ନାସ୍ୟେ ଦଶାଙ୍ଗୁଳଃ ।(୮ - ୨୭୧)
ଧର୍ମୋପଦେଶଂ ଦର୍ପେଣ ବିପ୍ରାଣାମସ୍ୟ କୁର୍ବତଃ ।
ତପ୍ତମାସେଚୟେତ୍ତୈଳଂ ବକ୍ତ୍ରେ ଶ୍ରୋତ୍ରେଚ ପାର୍ଥିବଃ । (୮-୨୭୨)
ପାଣି ମୁଦ୍ୟମ୍ୟ ଦଣ୍ଡଂ ବା ପାଣି ଚ୍ଛେଦନମର୍ହତି ।
ପାଦେନ ପ୍ରହରନ୍ କୋପାତ୍ପାଦଚ୍ଛେଦନମର୍ହତି । (୮- ୨୮୦)
ନ ଜାତୁ ବ୍ରାହ୍ମଣଂ ହନ୍ୟାତ୍ସର୍ବ ପାପେଷ୍ୱପି ସ୍ଥିତମ୍ ।
ବହିଷ୍କୁର୍ଯ୍ୟାତ୍ସମଗ୍ରଧନକ୍ଷିମତମ୍ । ( ୮- ୩୮୦)
ଗୁରୁଂ ବାଳବୃଦ୍ଧୈ ବା ବ୍ରାହ୍ମଣଂ ବା ବହୁଶ୍ରୁତମ୍ ।
ଆତ ତାୟିନମାୟନ୍ତଂ ହନ୍ୟାଦେବା ବିଚାରୟନ୍ । (୮-୩୫୦)
ତସ୍ୟାର୍ଥେ ସର୍ବଭୂତାନାଂ ଗୋପ୍ତାରଂ ଧର୍ମାମାତ୍ମଜମ୍ ।
ବ୍ରହ୍ମତେଜୋମୟଂ ଦଣ୍ଡମସୃଜତ୍ ପୂର୍ବମୀଶ୍ୱରଃ । (୭ -୧୪)
ଦଣ୍ଡଃ ଶାସ୍ତି ପ୍ରଜାଃ ସର୍ବା ଦଣ୍ଡ ଏବାଭିରକ୍ଷତି ।
ଦଣ୍ଡଃ ସୁପ୍ତେଷୁ ଜାଗର୍ତ୍ତି ଦଣ୍ଡଂ ଧର୍ମଂ ବିଦୁର୍ବୁଧାଃ । (୭-୧୮)
ଆଦ୍ୟାତ୍କାକଃ ପୁରୋଡାଶଂ ଶ୍ୱାବଲିହ୍ୟାଦ୍ଧବିସ୍ତଥା ।
ସ୍ୱାମ୍ୟଞ୍ଚ ନ ସ୍ୟାଦ୍ କସ୍ମିଂଶ୍ଚିଦ୍ ପ୍ରବର୍ତ୍ତେଣଧରୋତ୍ତରମ୍ । (୭-୨୧)
ଦେବଦାନବ ଗନ୍ଧର୍ବା ରକ୍ଷାଂସି ପତଗୋରଗାଃ ।
ତେଽପି ଭୋପାୟ କଳ୍ପନ୍ତେ ଦଣ୍ଡେନୈବ ପିପୀଡ଼ିତାଃ । (୭-୨୩)
ଦୁଷ୍ୟେୟୁଃ ସର୍ବବର୍ଣ୍ଣାଶ୍ଚ ଭିଦ୍ୟେରନ୍ ସେତବଃ ।
ସର୍ବଲୋକ ପ୍ରକୋପାଚ ଭବେଦ୍ଦଣ୍ଡସ୍ୟ ବିଭ୍ରମାତ୍ । (୭-୨୪)
ଯୋଽବମନ୍ୟେତ ତେ ମୂଳେ ହେତୁଶାସ୍ତ୍ରାଶ୍ରୟାଦ୍ଦ୍ୱିଜଃ ।
ସ ସାଧୁଭିର୍ବହିଷ୍କାର୍ଯ୍ୟୋ ନାସ୍ତିକୋ ବେଦନିନ୍ଦକଃ ।(୨-୧୧)
ନାଧ୍ୟାପନାଦ୍ ଯାଜନାଦ୍ ବା ଗର୍ହିତାଦ୍ ବା ପ୍ରତିଗ୍ରହାତ୍ ।
ଦୋଷୋ ଭବତି ବିପ୍ରାଣାଂ ଜ୍ୱଳନାମ୍ବୁ ସମାହିତେ । (୧୦-୧୦୩)
ଜୀବତାତ୍ୟୟମାପନ୍ନୋ ଯୋଽନ୍ନମତ୍ତି ଯତସ୍ତତଃ ।
ଆକାଶମିବ ପଙ୍କେନ ନ ସ ପାପେନ ଲିପ୍ୟତେ । (୧୦-୧୦୪)
କ୍ଷୁଧାର୍ତ୍ତଶ୍ଚାର୍ତ୍ତୁମଭ୍ୟାଗାଦ୍ୱିଶ୍ୱାମିତ୍ରଃ ଶ୍ୱଜାଘନୀମ୍ ।
ଚଣ୍ଡାଳହସ୍ତାଦାଦାୟ ଧର୍ମାଧର୍ମ ବିଚକ୍ଷଣଃ । (୧୦-୧୦୮)

— ସମାପ୍ତ —



ଗୁରୁଚରଣ ପଟ୍ଟନାୟକ

୧୯୧୭ ମସିହା ଅକ୍ଟୋବର ୩୧ ତାରିଖରେ ପୁରୀ ଜିଲ୍ଲା ଅନ୍ତର୍ଗତ ଚଣାହାଟରେ ଏହି ପ୍ରଖ୍ୟାତ ଚିନ୍ତାନାୟକଙ୍କ ଜନ୍ମ । ମାର୍କସବାଦୀ ଅନୁଚିନ୍ତନ ଓ ଆନ୍ଦୋଳନକୁ ପ୍ରବର୍ଦ୍ଧିତ ତଥା ପରିପୁଷ୍ଟ କରିବାରେ ତାଙ୍କ ଅବଦାନ ଅନସ୍ୱୀକାର୍ଯ୍ୟ । ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଏବଂ ଓଡ଼ିଶାରେ କମ୍ୟୁନିଷ୍ଟ ପାର୍ଟିର ଅନ୍ୟତମ ପ୍ରାଣପ୍ରତିଷ୍ଠାତା ଭାବରେ ସେ ସୁପରିଚିତ । ସଂଗଠନ ସହିତ ସୃଜନ କ୍ଷେତ୍ରରେ ମଧ୍ୟ ତାଙ୍କ ସାଧନାର ସ୍ୱାକ୍ଷର ବେଶ୍ ସମୁଜ୍ଜ୍ୱଳ । ଦୀର୍ଘକାଳର ସାରସ୍ୱତ ସାଧନାର ଫଳଶ୍ରୁତି ସ୍ୱରୂପ, ଓଡ଼ିଆ ସାହିତ୍ୟ ତାଙ୍କ କଲମରୁ ଉପହାର ପାଇଛି ଅଜସ୍ର ଅମୂଲ୍ୟ ଗ୍ରନ୍ଥ । 'ଓଡ଼ିଆ ସାହିତ୍ୟର ମତି ଓ ଗତି','ସୃଷ୍ଟି-ଦୃଷ୍ଟି-କୃଷ୍ଟି', 'ସଙ୍କଟରେ ସାହିତ୍ୟ ସଭ୍ୟତା ସଂସ୍କୃତି', 'ଖଣ୍ଡା ଓ କଲମ', 'ଧର୍ମ ଓ ରାଜନୀତି' ପରି ବହୁ ଉଲ୍ଲେଖଯୋଗ୍ୟ ପୁସ୍ତକ ସହିତ ସେ ଲେଖିଛନ୍ତି 'ରୁଷରେ ଯାହା ଦେଖିଲି', 'ପ୍ରଳୟ ଗର୍ଭରୁ' ଓ 'ନବମାନବର ସୃଷ୍ଟି' ପ୍ରଭୃତି ନାନା ସୁସ୍ୱାଦ୍ୟ ଭ୍ରମଣ କାହାଣୀ — ଏହାଛଡ଼ା ଶତାଧିକ ଅନୁବାଦ ପୁସ୍ତକ । ନିଜର ଏହି ସୃଜନକର୍ମ ଏବଂ ଅନୁବାଦ ପାଇଁ ୧୯୭୧ ମସିହାରେ ସେ ପାଇଛନ୍ତି ସୋଭିଏତ୍ ଦେଶ ନେହରୁ ପୁରସ୍କାର ।

'ଜଗତ ଦର୍ଶନରେ ଜଗନ୍ନାଥ' — ଶ୍ରୀ ପଟ୍ଟନାୟକଙ୍କ ବୁଦ୍ଧିଦୀପ୍ତ ବିଶ୍ଳେଷଣ ଓ ଅନନ୍ୟ ଅନୁଚିନ୍ତନର ଅନ୍ୟ ଏକ ଅଭିବ୍ୟକ୍ତି । ଏହି ଗ୍ରନ୍ଥ ପାଇଁ ସେ ଲାଭ କରିଛନ୍ତି ୧୯୯୨ର କେନ୍ଦ୍ର ସାହିତ୍ୟ ଆକାଦେମୀ ପୁରସ୍କାର ।

